

ଯେଉଁମାନେ ମୋତେ ଜନ୍ମ ଦେଇଛନ୍ତି,
ଯେଉଁମାନେ ମୋତେ ବର୍ଦ୍ଧିତ କରିଛନ୍ତି,
ଯେଉଁମାନଙ୍କର ସଦିଚ୍ଛା, ସାହାଯ୍ୟ
ମୋତେ ଏହା ଲେଖିବା ପାଇଁ
ସକ୍ଷମ କରିଛି, ସେମାନଙ୍କ
ଉଦ୍ଦେଶ୍ୟରେ ଏହା
ନିବେଦିତ ।

Digitized by srujan ka@gmail.com

ଜୀବନର ବାଟେ ଘାଟେ
ଆତ୍ମଜୀବନୀ

ଲେଖକ :
**ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ**

ପ୍ରକାଶକ :
**ଇନ୍‌ଷ୍ଟିଚ୍ୟୁଟ ଅଫ ଓରିଏଣ୍ଟାଲ୍ ଏଣ୍ଡ ଓରିଶାନ ଷ୍ଟଡ଼ିଜ୍**
ଦି' ୟୁନିଭର୍ସ, ମୈତ୍ରୀ ସରଣୀ, କଟକ- ୧

ପ୍ରଥମ ପ୍ରକାଶନ :
**ଫେବୃଆରୀ ୯, ୨୦୦୧**

ପ୍ରଚ୍ଛଦ :
**ଶ୍ରୀ ବ୍ୟୋମକେଶ ମହାନ୍ତି**
ବିଭୂତି କାନୁନ୍‌ଗୋ କଳା ମହାବିଦ୍ୟାଳୟ, ଭୁବନେଶ୍ୱର

ମୁଦ୍ରଣ :
**ଦି' ପ୍ରିଣ୍ଟୋଭର୍ସ**
ଦି' ୟୁନିଭର୍ସ, ମୈତ୍ରୀ ସରଣୀ, କଟକ- ୧

ମୂଲ୍ୟ : **୧୨୦ ଟଙ୍କା** (ଏକଶହ କୋଡ଼ିଏ ଟଙ୍କା ମାତ୍ର)

**JIBANARA BATE GHATE**
An autobiography

Writer :
**Sri Girija Bhusan Patnaik**

Publisher :
**Institute of Oriental & Orissan Studies**
The Universe, Maitree Sarani, Cuttack-1

First Edition :
**February 9, 2001**

Cover Design :
**Sri Byomakesh Mohanty**
B.K. College of Art & Crafts, Bhubaneswar

Printers :
**The Printoverse,**
The Universe, Maitree Sarani, Cuttack-1

Price : **Rs. 120/-**
(Rupees One Hundred Twenty only)

Digitized by srujan ka@gmail.com

## ଶପଥ ପାଠ

ମୁଁ ଯାହା ଲେଖୁଚି,
ସତ ଲେଖୁଚି,
ମିଛ ଲେଖୁନାହିଁ
କିନ୍ତୁ ପୂରା ସତ୍ୟ ଲେଖୁନାହିଁ,
କାରଣ ତାହା
ମୁଁ ଲେଖି ପାରିବି ନାହିଁ ।
କିନ୍ତୁ କାହାରି ବ୍ୟକ୍ତିଗତ ଆଘାତ ପାଇଁ
ମୋର ଲେଖା ଉଦ୍ଦିଷ୍ଟ ନୁହେଁ ।
ସମୟ ଉପରେ ଯେତିକି ଲେଖା
କେବଳ ସେଇତକ ମୁଁ ଲେଖିବାକୁ
ବାଧ୍ୟ ହୋଇଚି ।
ଦୈବାତ୍, କେହି ବ୍ୟକ୍ତିଗତ ଆଘାତ ପାଇଥିଲେ,
ସେଥିପାଇଁ କ୍ଷମା ମାଗି ନେଉଛି ।

— ଲେଖକ

Digitized by srujan ka@gmail.com

# କୈଫିୟତ୍

ଦିନେ ଯେ ଆତ୍ମ-ଜୀବନୀ ଲେଖିବାକୁ ହେବ ଇମିତି ଏକ ଧାରଣା ମୋର ନ ଥିଲା । ତେଣୁ କୌଣସି ନଥିପତ୍ର, ଚିଠି, ଫଟୋ କିଛି ନ ଥିଲା । ରଖିପାରି ନାହିଁ । ଯାହା ଆସିଥିଲା ତାକୁ କିଏ ସବୁ ନେଇ ଯାଇଛନ୍ତି । କିଛି ମୂଲ୍ୟବାନ ଚିଠି (ପ୍ରାୟ ଦୁଇଶହ ହେବ) ରଖିଥିଲି । ଭାବିଥିଲି ସେ ସବୁକୁ ଏକାଠି କରି ପ୍ରକାଶ କରିବି । ମହାବାତ୍ୟାରେ ସବୁ ଗଲା । ଯେଉଁ ଆଲମାରୀରେ ତାହା 'ସଂରକ୍ଷିତ' ଥିଲା, ତାହା ବୁଡ଼ିଗଲା ଛ'ଫୁଟ ପାଣିରେ, ପ୍ରାକୃତିକ ମହାବାତ୍ୟା ଏବଂ ମନୁଷ୍ୟକୃତ ବନ୍ୟାପ୍ଲାବନ ଯୋଗୁ । ସେଇ ଭିତରେ ଆତ୍ମ-ଜୀବନୀରୁ ପାଳେ ବୁଡ଼ିଯାଇ ଭାସିଗଲା ନର୍ଦ୍ଦମାକୁ, ଟେବୁଲ ଉପରୁ ।

ସେଇଯୋଗୁଁ  ନିଜର ସ୍ମୃତି ଚାରଣ ପ୍ରଥମ ଖଣ୍ଡ ଛପା ନ ହେଲା ପର୍ଯ୍ୟନ୍ତ ମନରେ ସାହସ ପାଉନି ପ୍ରକାଶନ ସଂପର୍କରେ । କାରଣ ସମ୍ବଲପୁରରେ ମୋର ଅଭିଜ୍ଞତା ବହନ କରିଥିବା ଅଂଶର ଖଣ୍ଡେ କେଉଁଠି ହଜିଗଲାଣି । କିମିତି ହଜିଲା ସେଥିରୁ କ'ଣ ମିଳିବ ? ସେ ଅଭିଜ୍ଞତାକୁ ଯୋଡ଼ିବାକୁ ପଡ଼ିବ ପରେ । ବଞ୍ଚିଥିଲେ ଦ୍ୱିତୀୟ ଖଣ୍ଡରେ । ବହିଟି ଲେଖିଲାବେଳେ ମୋର ଗୋଟାଏ ଷ୍ଟ୍ରୋକ ହେଲା ମସ୍ତିଷ୍କରେ । ସ୍ମୃତି ଶକ୍ତିରୁ ବି ପାଳେ ହଜିଗଲାଣି । ସବୁଥିରୁ ପାଳେ ପାଳେ ହଜିଯିବ । ଭୟ ହେଉଛି ଆତ୍ମ-ଜୀବନୀରୁ ପାଳେ ରହିଯିବ କି ଅପ୍ରକାଶିତ ହୋଇ !

ବୟସ ସତୁରୀ ହେଲାଣି । ପଛକୁ ଫେରି ଅନାଇଲେ ମନେ ହେଉଛି କ'ଣ ମୁଁ କରିଛି କି ଯେ ତାକୁ ଲିପିବଦ୍ଧ କରିବା ପାଇଁ ଏକ ''ଜୀବନୀ''ର ଆବଶ୍ୟକତା ପଡ଼ିଲାଣି ? ଜୀବନ ତ କଟିଗଲା ସମାଜର ମୌଳିକ ପରିବର୍ତ୍ତନ ପାଇଁ ସଂଗ୍ରାମରେ, ଯେଉଁଠି ବ୍ୟକ୍ତିର ଚିହ୍ନ ନାହିଁ, ସାମୂହିକ ଉଦ୍ୟମରେ ବ୍ୟକ୍ତିର ପ୍ରଶ୍ନ କେଉଁଠି ? ସେ ସାମୂହିକ ପରିବର୍ତ୍ତନ ତ ଆସିଲା ନାହିଁ, ଆସିଥିଲେ ବି ବିଜୟର ସେଇ ''କର୍ମୀ''ମାନେ ରହିଯାଆନ୍ତେ "Unknown soldiers" (ଅପରିଚିତ ସୈନିକ) ଭାବରେ । ତେଣୁ ଲେଖିବି କ'ଣ ?

କିନ୍ତୁ ଅନୁରୋଧ, ତାଗିଦା, ନିର୍ଦ୍ଦେଶ, ନିବେଦନ ବହୁତ । ସାନବଡ଼, ଜଣାଅଜଣା, ଦୂରପାଖ ବହୁ ବଂଧୁ, ଶୁଭେଚ୍ଛୁ, ହିତୈଷୀମାନଙ୍କର । ଚିତ୍ତବାବୁ ତ ପ୍ରତିବର୍ଷ ଅନ୍ତତଃ ଚାରି ପାଞ୍ଚଥର ମନେ ପକାଇଛନ୍ତି, ତାଗିଦ କରିଛନ୍ତି । ସେମାନଙ୍କର ଅନୁରୋଧ ଭାଙ୍ଗି ପାରିନାହିଁ ।

Digitized by srujan ka@gmail.com

ତେଣୁ ଲେଖିବି ସ୍ଥିର କଲି । ସ୍ମୃତିଚାରଣ ମାତ୍ର । ଯାହା ଦେଖିଚି, ଶୁଣିଚି ତାହା ହିଁ ଟିପିଯିବି । ତାହା ଘଟଣାବଳୀର କ୍ରମ ମାନିବ ନାହିଁ, କେବଳ ମାନିବ ମୋର ମନେ ପକାଇବାର ବା ମନେ ପଡ଼ିବାର କ୍ରମ । ଏଥିରେ ମୋ ବିଷୟରେ ତେଣୁ ଯେଉଁମାନେ ଖୋଜିବେ ସେମାନେ ହତାଶ ହେବେ । ସମସାମୟିକ ଘଟଣାବଳୀ ହିଁ ଟିପାହୋଇ ଯାଇଛି । ପ୍ରତ୍ୟେକ ମଣିଷର ଦୋଷ ଦୁର୍ବଳତା ରହିଛି, କାରଣ ସେ ମଣିଷ । ଆଉ ଯେଉଁ ମଣିଷ କାମ କରିଛି ତାର ତ୍ରୁଟି ରହିଛି । ମୁଁ ଡ୍ରେନ ଇନ୍ସପେକ୍ଟର କାମ କରି ନାହିଁ । ଯେତେଦୂର ସମ୍ଭବ ତାକୁ ମୁଁ ଏଡ଼ାଇ ଯାଇଛି ।

ସେଇଯୋଗୁଁ ବହିର ନାମକରଣ ହେଲା 'ଜୀବନର ବାଟେ ଘାଟେ' । ସମ୍ମାନାସ୍ପଦ ଚିତ୍ତରଂଜନ ଦାସ ତାଙ୍କର ଜୀବନୀ ଲେଖିଚାଲିଛନ୍ତି ବହୁ ଖଣ୍ଡରେ । ମୁଁ ଠିକ୍ ସେଇପରି ଟିପିଯିବି ଅବଶ୍ୟ ତାଙ୍କ ଭଳି ନୁହେଁ, ତାଙ୍କ ପରି । କଲମ ମୋର ସେପରି ପୋଷା ମାନି ନାହିଁ । ଯେପରି ମାନିଛି ଚିତ୍ତବାବୁଙ୍କର ।

ମୋତେ ଜୀବନୀ ପଢ଼ିବାକୁ ଭଲ ଲାଗେ । ଏ ପର୍ଯ୍ୟନ୍ତ ଯେତେ ଆତ୍ମ-ଜୀବନୀ ପଢ଼ିଛି ସବୁଠାରୁ ଭଲ ଲାଗିଚି ହାରୀନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟଙ୍କର ଜୀବନୀ ଏବଂ ଏଚ୍.ଜି. ୱେଲସଙ୍କ ଜୀବନୀ । କିନ୍ତୁ ସେଭଳି ସାହସ ମୋର ନାହିଁ । ଠିକ୍ ସେଇପରି ଡକ୍ଟର ଏସ୍. ଗୋପାଳଙ୍କ ଦ୍ୱାରା ଲିଖିତ ତାଙ୍କ ପିତା ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କ ଜୀବନୀ ମୋତେ ଖୁବ୍ ଭଲ ଲାଗିଛି । ନିଜ ପିତା ଓ ପରିବାର ସଂପର୍କରେ ଲେଖିବାର ଯେଉଁ ସାହସ ସେ ପ୍ରଦର୍ଶନ କରିଛନ୍ତି ତାହା ମଧ ମୋର ନାହିଁ ।

କିନ୍ତୁ ମୁଁ ପ୍ରଥମରୁ ଶପଥ ପାଠ କରିଛି ଯେ ''ଯାହା କହୁଚି ସତ କହୁଚି, ମିଛ କହୁ ନାହିଁ, କିନ୍ତୁ ପୂରା ସତ କହୁ ନାହିଁ, କାରଣ ପୂରା ସତ କହିବା ପାଇଁ ମୋର ସାହସ ନାହିଁ ।''

ଫକୀରମୋହନ, ନୀଳକଣ୍ଠ, ଗୋଦାବରୀଶ, ହରିହର ମହାପାତ୍ର, ଗଙ୍ଗାଧର ରଥ, ଚିତ୍ତରଂଜନ ଦାସ, ନୀଳମଣି ରାଉତରାୟ, ଗୋବିନ୍ଦ ମିଶ୍ର, ମନମୋହନ ଚୌଧୁରୀ, ମନୋରଂଜନ ଦାସ, ରବୀନ୍ଦ୍ର ପ୍ରସାଦ ପଣ୍ଡା ପ୍ରଭୃତିଙ୍କ ଜୀବନୀ ପଢ଼ିଛି ଏବଂ ସବୁଥିରୁ କିଛି କିଛି ପାଥେୟ ସଂଗ୍ରହ କରିଛି ।

ଲେଖିବାକୁ ଡର ମାଡ଼ିଲା । କାହାକୁ ବ୍ୟକ୍ତିଗତ ଭାବରେ ଆଘାତ କରିବା ମୁଁ କେବେ ଚିନ୍ତା କରି ନାହିଁ । ଯେଉଁଠି ଜଣେ ଲୋକର କାର୍ଯ୍ୟ ସମାଜ ଉପରେ ରେଖା ଟାଣେ, ତାହା ହିଁ ଆମର ବିଚାର୍ଯ୍ୟ ।

କିଛି ତ ଟିପି ନାହିଁ । ସମ୍ମାନନୀୟ ଗୁରୁଚରଣ ପଟ୍ଟନାୟକ ଉପଦେଶ ଦେଲେ, ଏତେ କଥା ଲେଖିବୁ । କିଛି ଡକୁମେଣ୍ଟାରୀ ଏଭିଡେନ୍ସ ଦେବୁ ନାହିଁ ? ଦେଲେ ଭଲ ହୁଅନ୍ତା । ମୋର

Digitized by srujan ka@gmail.com

ମସ୍ତିଷ୍କ (ଯାହା ମଧ୍ୟ ଅବକ୍ଷୟୋନ୍ମୁଖୀ) ଛଡ଼ା ତ ଆଉ କିଛି ଡକୁମେଣ୍ଟ ନାହିଁ । କିଏ ଜଣେ ପଢ଼ିଦିଅନ୍ତା ନାହିଁ ? ଚିତ୍ତବାବୁ ଏହା ଶୁଣି ରାଗିଯାଇ କହିଲେ ଆପଣ ଯାହା ଲେଖିବାର ଲେଖିଯିବେ । କାହାକୁ ଦେଖାଇବା କ'ଣ ଦରକାର ? କେହି ଦେଖିବା ଦରକାର ନାହିଁ ।

ଡର ଥରେ ପଶିଗଲେ ଯାହା ହୁଏ । ଭାବିଲି ଜଣେ ପ୍ରବୀଣ, ଜଣେ ତରୁଣଙ୍କୁ ଦେଖାଇବି । ସେମାନେ ଥରେ ପଢ଼ିଦେବେ । ମୋତେ ତୃପ୍ତି ଲାଗିବ । ଅଧ୍ୟାପକ ପଠାଣି ପଟ୍ଟନାୟକ, ଡକ୍ଟର ବିଜୟାନନ୍ଦ ସିଂହଙ୍କୁ ଏଥିପାଇଁ ମନେ ମନେ ଭାବି ସ୍ଥିର କଲି । ସେମାନଙ୍କୁ ପଢ଼ିବାକୁ ଦେଲି । ସେମାନେ ବେଶ୍ କିଛି ଅଂଶ ପଢ଼ିଲେ । ସେମାନେ ପଢ଼ି ଯେଉଁ ମନ୍ତବ୍ୟ ଦେଲେ ତାହା ଶୁଣି ମନଟା ଖୁସି ହୋଇଗଲା । କିନ୍ତୁ ପର ମୁହୂର୍ତ୍ତରେ ମୁଁ ସଚେତନ ହୋଇଗଲି ଯେ ସେ ଦୁହେଁଯାକ ମୋତେ ଖୁବ୍ ଭଲ ପାଆନ୍ତି । ଏହା ତାହାରି ଫଳ ନୁହେଁ ତ ?

ମତଲୁବ ଅଲ୍ଲୀ ମୋର ଜଣେ ପାରିବାରିକ ବନ୍ଧୁ । ସେ ହଠାତ୍ ଦିନେ କହିଲେ ଯେ ମୋର ଆତ୍ମ-ଜୀବନୀ ବା ସ୍ମୃତିଚାରଣକୁ ସେ ଛାପିବେ କ୍ରମାନ୍ୱୟରେ ତାଙ୍କ ଦ୍ୱାରା ପ୍ରକାଶିତ 'ଆଗାମୀ ଶତାବ୍ଦୀ'ରେ । ତାଙ୍କୁ ମନାକରିବା କଠିନ । ତେଣୁ 'ଜୀବନର ବାଟେ ଘାଟେ'ର ପ୍ରଥମ କିଛି ଅଂଶ ଏହା ଭିତରେ ପ୍ରକାଶିତ ହୋଇ ସାରିଛି । ଆମର ଅନ୍ୟତମ ପାରିବାରିକ ବନ୍ଧୁ ୟୁନିଭର୍ସର କାର୍ଯ୍ୟକ୍ରମ ସଂପାଦକ ବିଭୁରଂଜନ ଦାସ ସେ ଖଣ୍ଡକୁ ନେଇ କିଛି ଲୋକଙ୍କୁ ପଢ଼ାଇଛନ୍ତି, ସ୍ନେହର ସହିତ । କିନ୍ତୁ ସେମାନଙ୍କ ଭିତରୁ କେବଳ ତାଙ୍କ ଭାଇ ସମ୍ମାନନୀୟ ମନୋରଂଜନ ଦାସଙ୍କ ମୋର ଭାଷା ପ୍ରତି ପ୍ରଶଂସା ଛଡ଼ା, ଅନ୍ୟ କାହାରିଠାରୁ ଆପ୍ରିସିଏସନ ପାଇ ନାହାନ୍ତି ବୋଲି କହିଲେ ।

କିନ୍ତୁ ମନ୍ତବ୍ୟ ଅନୁକୂଳ ହେଉ ବା ପ୍ରତିକୂଳ ହେଉ ଏହାଠାରୁ ଭଲ ତ ଲେଖିପାରିବି ନାହିଁ । ତେଣୁ ଯେଉଁମାନଙ୍କ ମନକୁ ପାଇବ ନାହିଁ, ସେମାନଙ୍କ ପାଖରେ କ୍ଷମା ମାଗି ନେଉଛି ।

ୟୁନିଭର୍ସର ସହକର୍ମୀମାନେ ବିଶେଷତଃ ଶ୍ରୀ ଉମେଶ ଚନ୍ଦ୍ର ନାଏକ, ଶ୍ରୀ ସନ୍ତୋଷ କୁମାର ରାୟଚୌଧୁରୀ, ଶ୍ରୀ କୈଳାସ ଚନ୍ଦ୍ର ଦାସ ଓ ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ ଏହାକୁ ୟୁନିଭର୍ସ ଆନୁକୂଲ୍ୟରେ ପ୍ରକାଶନ କରିବା ପାଇଁ ଆଗ୍ରହ ପ୍ରକାଶ କରି ମୋତେ କୃତଜ୍ଞ କରିଛନ୍ତି । ବହିର ପ୍ରକାଶନ ଖର୍ଚ୍ଚ ୟୁନିଭର୍ସର, ଆୟ ମଧ୍ୟ ୟୁନିଭର୍ସର । ୟୁନିଭର୍ସ ଓ ପ୍ରିଣ୍ଟୋଭର୍ସର ସବୁ କର୍ମୀ ମୋର ଧନ୍ୟବାଦାର୍ହ । କେତେକ ବନ୍ଧୁ ପ୍ରକାଶକ ଏହାକୁ ପ୍ରକାଶ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । କିନ୍ତୁ ସେମାନଙ୍କର ଅନୁରୋଧ ମୁଁ ରକ୍ଷା କରିପାରିଲି ନାହିଁ ବୋଲି ଦୁଃଖିତ ।

ଇଂଜିନିଅର, ସାହିତ୍ୟିକ, ସଂଗଠକ, ବଂଧୁ ପ୍ରଭାକର ସ୍ୱାଇଁଙ୍କ ଅବଦାନ ମଧ୍ୟ ଉଲ୍ଲେଖଯୋଗ୍ୟ । ସେ କେବଳ ମୋର ସ୍ମୃତିଚାରଣ ପାଇଁ ଆଗ୍ରହ ପ୍ରକାଶ କରି ନାହାନ୍ତି, ଏଇବର୍ଷ ମୋର ଜନ୍ମ ତିଥିରେ ଏହାର ପ୍ରକାଶନ ହେବାର ସବୁ ଆୟୋଜନ କରିଛନ୍ତି । ଅଧ୍ୟାପକ ପଠାଣି

Digitized by srujan ka@gmail.com

ପଟ୍ଟନାୟକ, ଡକ୍ଟର ବିଜୟାନନ୍ଦ ସିଂ ଏବଂ ଇଂଜିନିଅର ପ୍ରଭାକର ସ୍ୱାଇଁ ଜନ୍ମଦିବସ ସଭା ଓ ସେଥିରେ 'ଜୀବନର ବାଟେ ଘାଟେ'ର ପ୍ରକାଶନର ମଧ୍ୟ ଦାୟିତ୍ୱ ଗ୍ରହଣ କରିଛନ୍ତି । ସେଥିଯୋଗୁଁ ସେମାନଙ୍କ ନିକଟରେ ମୁଁ କୃତଜ୍ଞ । ୟୁନିଭର୍ସର ପୂର୍ବତନ ସହଯୋଗୀ ବ୍ରଜ ମୋହନ ମହାପାତ୍ରଙ୍କ କ୍ରମାଗତ ଅନୁରୋଧ ଏବଂ ଜିଗର ମଧ୍ୟ ଏହି ବହି ପାଇଁ ଦାୟୀ ।

କୁମାରୀ ରୀନା, କୁମାରୀ ରାଜଲକ୍ଷ୍ମୀ ମୋ ଲେଖାର ନକଲ କରିଛନ୍ତି, ପ୍ରୁଫ ଦେଖିବାରେ ସାହାଯ୍ୟ କରିଛନ୍ତି, ବିକ୍ଷିପ୍ତ କାଗଜରେ ଲିଖିତ ଲେଖାଗୁଡ଼ିକୁ ସଜାଡ଼ିଛନ୍ତି । ଗାଳି ଶୁଣିଛନ୍ତି ତଥାପି କାମ କରିଛନ୍ତି । ସେମାନଙ୍କର ସାହାଯ୍ୟ ପାଇଁ ସେମାନଙ୍କୁ ବହୁତ ବହୁତ ଧନ୍ୟବାଦ ।

ମୋ ଝିଅ ପ୍ରଜ୍ଞା ଓ ସାନପୁଅ ବ୍ୟାପ୍ତି ଏବଂ ମୋ ସ୍ତ୍ରୀ କମଳକୁମାରୀ ମଧ୍ୟ ପାଣ୍ଡୁଲିପିର କିଛି ପଢ଼ି ବା ଶୁଣି ସେମାନଙ୍କର ମନ୍ତବ୍ୟ ଦେଇ ମୋତେ ସାହାଯ୍ୟ କରିଛନ୍ତି ।

ଲେଖି ତ ଦେଲି । ଲେଖି ସାରିଲା ପରେ ଲେଖା ଆଉ ଲେଖକର ନୁହେଁ । ତାହା ପାଠକଙ୍କର । ସେମାନଙ୍କ ବିଚାର ଉପରେ ମୁଁ ଏହାକୁ ଛାଡ଼ି ଦେଉଛି ।

୭୧ତମ ଜନ୍ମ ଦିବସ
ଫେବୃଆରୀ ୯, ୨୦୦୧

**ଗିରିଜା ଭୂଷଣ ପଟ୍ଟନାୟକ**

Digitized by srujan ka@gmail.com

# ଆଷାଢ଼ସ୍ୟ ପ୍ରଥମ ଦିବସେ

ଆଜି ବର୍ଷର ପ୍ରଥମ ବର୍ଷା। ଆଷାଢ଼ର ପ୍ରଥମ ଦିବସ ଆଉ କେତେଦିନ ଡେରି ମୁଁ ଜାଣେ ନାହିଁ। ହିସାବ ବି ରଖୁନାହିଁ। କିନ୍ତୁ ଆଜି ଏ ବର୍ଷର ପ୍ରଥମ 'ମେଘମାଶ୍ଳିଷ୍ଟ ସାନୁ' । ଝରୁଛି, ବର୍ଷର ପ୍ରଥମ ବରଷାର ଧାରା । ଝୁପ୍, ଝୁପ ବର୍ଷା । ଝୁପ୍, ଝୁପ୍, ଝୁପ୍ । ରାତିରେ ଶୋଇ ଶୁଣିବାକୁ ଭଲ ଲାଗେ । ସେ ଯେମିତି କଥା କହୁଛି । ଆଉ ବରଷାର ପ୍ରଥମ ସ୍ପର୍ଶରେ ମାଟିର ଗନ୍ଧ । କି, ଉତ୍ତଳା ସେଇ ଗନ୍ଧ । ଦିହ ମନକୁ ଯେମିତି ରୁନ୍ଧି ଦେଇଯାଏ । ମନେହୁଏ ଯେମିତି.... ସେଇ କୁଆଁରୀ ଝିଅ, ହଠାତ୍ ଉନ୍ମୁକ୍ତ କରିଦେଇଛି ତାର ମେଖଳା ଆଉ ତା'ରି ଉନ୍ମୁକ୍ତ ଦେହର ଗନ୍ଧ ବାଜୁଛି ନାକରେ । ଆଃ ! ଓଦା ମାଟିର ଏଇ ଗନ୍ଧ ମୋତେ ସବୁଦିନେ ମତୁଆଲା କରିଛି । ବୟସକୁ ଯେପରି ଫେରାଇ ନେଇଛି ବହୁବର୍ଷ ପଛକୁ । ଯେମିତି ମନେ ହୁଏ, ଏବେ ବି ଠିଆ ହେଇଛି ସେଇ ରେଭେନ୍ସା କଲେଜର ପୋର୍ଟିକୋ ବା 'ସନଡାଏଲ' ପାଖରେ । ତାରୁଣ୍ୟ ଯେମିତି ହାବୁକା ମାରେ ଦିହରେ । ବାର୍ଦ୍ଧକ୍ୟ ହାତ ଯୋଡ଼ି ଦୂରେଇଯାଏ, ପାଚିରୀର ସେ ପଟକୁ କୁର୍ଣ୍ଣିସ କରି କରି ।

ଜନ୍ମ ହୋଇଛି, ନିଘଞ୍ଚ ଅରଣ୍ୟ ଭିତରେ । ଅରଣ୍ୟ, ନିବୁଜ ନିରନ୍ଧ୍ର ଅରଣ୍ୟ । ମନେହୁଏ ଯେମିତି ସେଇ ପାହାଡ଼, ଅରଣ୍ୟ ମୋ ଜିନ (gene)ରେ ଆସି ଯାଇଛି । ଆଜି ତ ଜୀବନର ମଧ୍ୟାହ୍ନ ଗଡ଼ିଗଲାଣି । ବେଳ ରତ ରତ । କେତେବେଳେ ସନ୍ଧ୍ୟା ଆସିବ କହିହେବ ନାହିଁ । ଉପରୁ, ତଳରୁ ଅନେକ ଗଲେଣି । ଆଜି ବି ଏଇ ଜୀବନରେ ଅରଣ୍ୟ, ପର୍ବତର ଡାକ ଧ୍ୱନିତ ହୁଏ । ପର୍ବତର ଖୋଲ ଦେଇ ଝରି ଯାଉଥିବା ନିର୍ଝରିଣୀ ଆଜି ମଧ କମ୍ପନ ସୃଷ୍ଟିକରେ । ଶାଳଫୁଲ, ମହୁଲ, କୁରେହିଁ ଫୁଲର ଗନ୍ଧ ଉତ୍ତାଳ କରେ ମନକୁ ।

ସମୁଦ୍ର ମୋତେ ଖୁବ୍ ମୁଗ୍ଧ କରିପାରି ନାହିଁ । କିଛି ସମୟ ଭଲ ଲାଗେ, ତା'ପରେ ଲାଗେ ଅଶାନ୍ତ । ଇଃ ! କି ପରିଶ୍ରମ, କି ସାଧନା, କି ନିଷ୍ଫଳ ପ୍ରାର୍ଥନା– ସମୁଦ୍ରର, କୁମାରୀ ବେଳା ପାଖରେ । ବାରମ୍ବାର ନିବେଦନ କରୁଛି ତରଙ୍ଗର ହାତରେ । ଆଉ ଫେରିଯାଉଛି । ବେଳା ତାକୁ ଗ୍ରହଣ କରିବାକୁ ନାରାଜ । ବେଳା ତାର୍ ପ୍ରଣୟ ନିବେଦନ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ସାଗରର ଏଇ କୃଚ୍ଛ୍ର ସାଧନା କେତେ ଦିନ ? ଅଶାନ୍ତ ଲାଗେ ଆଉ ଯେମିତି ଅଶାନ୍ତିର ପ୍ରତୀକ ଭାବରେ ଦିହ ମନ ସବୁ ଅଠା ଅଠା ଲାଗେ ।

Digitized by srujan ka@gmail.com

ହଁ, ସେଇ ଦିନ ମୁଗ୍ଧ କରିଥିଲା ସାଗର । ସେଦିନ ସାଗର ଥିଲା ଅଶାନ୍ତ, ବିକ୍ଷୁବ୍ଧ । ଗୋପାଳପୁରରେ ରାତ୍ରି ଯାପନ କରୁଥାଉ ଆମେ କେଇଜଣ ବନ୍ଧୁ । ଦଣ୍ଡପାଣି ଆଉ ନାହାନ୍ତି । ଅନ୍ୟମାନେ କିଏ ସବୁ କୁଆଡ଼େ ଛିନ୍ନଚତ୍ର ହୋଇଗଲେଣି ଜୀବନର ଜୁଆରରେ ତାର ହିସାବ ନାହିଁ । ସେଇ ରାତିରେ.... ସାଗର ବକ୍ଷ ଉଦ୍‌ବେଳିତ ହୋଇଥିଲା ପ୍ରଚଣ୍ଡ ବାତ୍ୟାରେ । ଆକାଶରେ ମ୍ଳାନ ଚନ୍ଦ୍ର, ମେଘର ଆସ୍ତରଣରେ । ଅଧା ବାସ୍ତବ, ଅଧା କଳ୍ପନା ପରି । ଆଉ ପ୍ରଚଣ୍ଡ ବାତ୍ୟାର ଆଘାତରେ ଫୁଲି ଫୁଲି ଉଠୁଥିଲା ତରଙ୍ଗ, ଉଦ୍‌ଫଣ ଅହିରାଜର ଫଣା ପରି । ଆଉ ତାର ନିବିଡ଼ ଆଶ୍ଲେଷରେ ଲଂଘି ଯାଇଥିଲା ବେଳାକୁ । ବେଳା ପଡ଼ି ରହିଥିଲା ରତିକ୍ଲାନ୍ତା ନାୟିକା ପରି । ସମୁଦ୍ର ତଟ ନିର୍ଜନ । କେବଳ ସମୁଦ୍ରର ବିଜୟ ଉଲ୍ଲାସ, ବେଳାକୁ ପାଇଛି ବୋଲି । ଆମେ ବଂଧୁମାନେ ଠିଆହୋଇ ଦେଖୁଥିଲୁ ସମୁଦ୍ରର ପ୍ରଣୟ ନିବେଦନ ଦେଖିବା ପାଇଁ ନୁହେଁ, ରହୁଥିବା ସ୍ଥାନରେ ପାଣି ପଶିଯିବା ଭୟରେ । ଆମରି ଭଳି ବହୁ ଭୀତ ଯାତ୍ରୀ ସେଦିନ ସେଇ ଅପାସୋରା ଦୃଶ୍ୟ ଦେଖିଥିଲେ ।

ସମୁଦ୍ର କୂଳକୁ ଯାଆନ୍ତି ଲୋକେ ବୁଲିବା ପାଇଁ, ପ୍ରେମିକା ସଂଗରେ, ସ୍ତ୍ରୀ ପିଲା ଛୁଆମାନଙ୍କ ସଂଗରେ ବା ବୃଦ୍ଧ ବାପା, ମାଆଙ୍କ ସଂଗରେ, ବନ୍ଧୁମାନଙ୍କ ସାଂଗରେ । ମୁଁ ବି ବାଦ ଯାଇନି ସେଥିରୁ । କିନ୍ତୁ ଅରଣ୍ୟ, ପାହାଡ଼ର ରୂପ, କୁଟ୍ରା ବା ମୟୂରର ଡାକ, ଜଂଗଲୀ ଫୁଲର ଜଂଗଲୀ ବାସନା ମୋତେ ଯେପରି ମୁଗ୍ଧ କରିଛି, ସମୁଦ୍ର ସେପରି କରିପାରି ନାହିଁ । ଓଡ଼ିଶାର ଅରଣ୍ୟକୁ ଯେ ଚିହ୍ନି ନାହିଁ, ସେ ଓଡ଼ିଶାକୁ ଚିହ୍ନି ନାହିଁ । ଅରଣ୍ୟ, ବଣୁଆ ପବନ, ବଣୁଆ ବାସ୍ନା, ବଣୁଆ ଜନ୍ତୁ ଏବଂ ବଣୁଆ ମଣିଷ ସବୁ ଯେପରି ମୋର ନିବିଡ଼, ଏକାନ୍ତ, ଅନ୍ତରଂଗ । ସେଇ ଯୋଗୁଁ ବୋହେମିଆନ୍ କବି, ରୋମାଞ୍ଚକର ଭାବନାରେ ଆକ୍ରାନ୍ତ ନାରୀ, ଆଦିବାସୀ ମଣିଷ... ସବୁ ଭଲ ଲାଗେ, ଡ୍ରଇଂ ରୁମ୍‌ର ସେଇ ମାପଦିଆ ହସ, ମାପଦିଆ କଥା, ବେଶଭୂଷାର, କହିବାର ସେଇ ମେକାନିକାଲ ଷ୍ଟାଇଲ, କିମିତି ଭୟ ସୃଷ୍ଟି କରେ । ଯେଉଁ ହସ ଉପରର ଛାତକୁ ହଲାଇ ଦିଏ, ସେଇ ହସ ଯେମିତି ଛୁଇଁ ଯାଏ ମନକୁ । ସେମିତି ମନ ଛୁଏଁନା, ମୁରୁକି ମୁରୁକି ମିନିଙ୍ଗଫୁଲ-ହସକୁ । ତଥାକଥିତ ସଭ୍ୟତାର ମାପଦିଆ କଥା ସଫୋକେଟ କରେ, ଶ୍ୱାସରୁଦ୍ଧ ଲାଗେ ।

ମନେପଡୁଛି ବର୍ଲିନ ସହରର ଏକ ଅନୁଭୂତି । ଆମେ ରହିଥାଉ ଉଣ୍ଟର ଡେନ୍ ଲିଣ୍ଡେନ ବା 'ଲିଣ୍ଡେନ ଗଛର ଛାୟାରେ' ନାମକ ଏକ ବିଳାସପୂର୍ଣ୍ଣ ହୋଟେଲରେ । ଅନତି ଦୂରରେ ବ୍ରାଣ୍ଡେନ ବର୍ଗ ଗେଟ୍ । ପୂର୍ବ ଓ ପଶ୍ଚିମ ବର୍ଲିନର ସୀମାରେଖା । ସେ ସୀମାରେଖା ହଜି ଗଲାଣି । ଭୂଗୋଳରୁ ଯାଇ ତାହା ବର୍ତ୍ତମାନ ଇତିହାସର ବସ୍ତୁ । ସେ ହୋଟେଲ ଆଉ ଅଛି କି ନାହିଁ ତା' ବି ଜାଣେନା । ସବୁଦିନ ଗରମ ସୁଟ୍ ପିନ୍ଧି ପିନ୍ଧି କ୍ଳାନ୍ତ ଲାଗିଲାଣି । ଏୟାର କଣ୍ଡିସନ୍‌ଡ ହୋଟେଲ । ଦିନେ ରାତିରେ ପଂଜାବୀ ଓ ପାଇଜାମା ପିନ୍ଧି ମୁଁ ଡାଇନିଂ ହଲକୁ ଯାଇଥିଲି । ମୋର ଡ୍ରେସ୍

Digitized by srujan ka@gmail.com

ଅନ୍ୟ କାହାର ଦୃଷ୍ଟି ଆକର୍ଷଣ କଲା କି ନାହିଁ, ଜଣେ ବିଲାତି ଭାରତୀୟ ମୋତେ ଚାପା, ଚାପା କଣ୍ଠରେ କହିଲେ– ‘‘କଣ ଏଇ ଡ୍ରେସ୍ ପିନ୍ଧି ଆପଣ ଆସୁଛନ୍ତି ଡାଇନିଂ ହଲ୍‌କୁ ?’’ ‘‘କାହିଁକି, କଣ ହେଲାକି’’ ମୋର ଉତ୍ତର । ‘‘ବର୍ମାର ନେତାମାନେ ଲୁଙ୍ଗି ପିନ୍ଧି ଗଲାବେଳେ, ଆଫ୍ରିକାର ନେତାମାନେ ପରଟୋପି ପିନ୍ଧି ପଶିଲା ବେଳେ, ଏପରିକି କେରଳୀ ନେତାମାନେ ମୁଣ୍ଡୁ ପିନ୍ଧି ହୋଟେଲ ଗଲାବେଳେ ତ ଆପଣଙ୍କର ଆପତ୍ତି ହୁଏନା ?’’ ‘‘ସେଇଟା ତାଙ୍କର ନାସନାଲ ଡ୍ରେସ୍ ।’’ ମୋତେ ହସ ଲାଗିଲା, ‘‘ଏଇଟା ହେଉଛି ମୋର ନାସନାଲ ଡ୍ରେସ ।’’ ମୋର ଉତ୍ତର ପାଟିରେ ଅଛି, ଭିତରକୁ ପଶି ଆସିଲେ କେତୋଟି ଯୁବତୀ । ଟପ୍‌ଲେସ ଏବଂ ଯେତିକି ଡ୍ରେସ ଅଛି ଦିହରେ ତାହା ମଧ୍ୟ ଟ୍ରାନସପାରେଣ୍ଟ । ଅନେଇ ହେଉନି । ଆମ ପ୍ରତିନିଧି ଦଳର ନେତା ହେଉଛନ୍ତି ଜଣେ ମହିଳା । ନା ସେ ଅନେଇ ପାରୁଛନ୍ତି ନା ଆମେ ଅନେଇ ପାରୁଛୁ । ସମସ୍ତେ ମୁହଁକୁ ପୋତି ସୁପ୍ ପିଇବାରେ ଲାଗିଲୁ । ତାଙ୍କୁ ମୁଁ ସେଇ ଭିତରେ ପଚାରିଲି, ‘‘ବଂଧୁ ଏଇ ଡ୍ରେସଟା କେଉଁ ଦେଶର ଜାତୀୟ ଡ୍ରେସ ?’’

ମୋର ମନେ ପଡୁଚି ଏକ ଘଟଣା । କଟକରେ ଜନ୍ମ ହୋଇଥିବା ମିହିର ସେନ ଇଂଲିଶ ଚାନେଲକୁ ସଫଳତାର ସହିତ ପହଁରି ଫେରି ଥାଆନ୍ତି । ତାଙ୍କୁ ରେଭେନ୍ସା କଲେଜରେ ସଂବର୍ଦ୍ଧନା ଦିଆଯାଉ ଥାଏ । ସେ ଛାତ୍ରଥିଲେ ରେଭେନ୍ସା କଲେଜର । ସେ କହୁଥିଲେ ତାଙ୍କର ଜଣେ ବନ୍ଧୁଙ୍କ କଥା । ସେ ବାରମ୍ବାର ଚେଷ୍ଟା କରିଛନ୍ତି ଇଂଲିଶ ଚାନେଲକୁ ପହଁରି ପାର ହୋଇଯିବା ପାଇଁ । କିନ୍ତୁ ସଫଳ ହୋଇ ନାହାନ୍ତି । ମିହିର ସେନ ବିହ୍ୱଳ ହୋଇ କହୁଥିଲେ– ‘‘ ସେଥର ସେ ଇଂଲିଶ ଚାନେଲ ସନ୍ତରଣ କରିବାକୁ ଆରମ୍ଭ କଲାଦିନ ତାଙ୍କର ଜନ୍ମଦିନ ପଡ଼ିଥାଏ । ଆପଣାର ୩୮ତମ ଜନ୍ମ ଦିବସ ପାଳନ କରିବା ଅବସରରେ ସେ ଇଂଲିଶ ଚାନେଲ ପହଁରିବାକୁ ଆରମ୍ଭ କଲେ । ବିବାହ କରିବାକୁ ସମୟ ପାଇ ନାହାନ୍ତି । ସତେ ଯେପରି ଏଇ ଉଚ୍ଛୃଙ୍ଖଳା ଇଂଲିଶ କୁମାରୀ ଇଂଲିଶ ଚାନେଲର ପ୍ରେମରେ ପଡ଼ି ଯାଇଛନ୍ତି ସେ । ଚାନେଲକୁ ଉଲଂଘନ କରି ସେ ଯେପରି ଧରିନେବାକୁ ଚାହାନ୍ତି ଏଇ କୁମାରୀକୁ ଆପଣାର ବାହୁ ପାଶରେ । କିନ୍ତୁ ଇଂଲିଶ ଚାନେଲ କୁମାରୀ ତଥାପି ତାଙ୍କୁ ଧରାଦେଲା ନାହିଁ ସେ ଥର ମଧ୍ୟ ।’’

ମିହିର ସେନ ପରେ ପରେ ପକ୍ ପ୍ରଣାଳୀ, ଜିବ୍ରାଲେଟର ପ୍ରଣାଳୀ ସନ୍ତରଣ କରିବାରେ ସଫଳ ହେଲେ । ବାରିଷ୍ଟର ହୋଇ ଆସିଥିଲେ ଇଂଲଣ୍ଡରୁ । ଜୀବନର ପ୍ରଥମ ସାହାଯ୍ୟ ସେ ପାଇଥିଲେ ବିଜୁ ପଟ୍ଟନାୟକଙ୍କ ପାଖରୁ ବୋଲି ସେଦିନ ସମ୍ବର୍ଦ୍ଧନା ସଭାରେ କହୁଥିଲେ । କଲିକତାରେ ଓକିଲାତି ଆରମ୍ଭ କଲେ । ବିବାହ କରିଥିଲେ ଏକ ବ୍ରିଟିଶ ମହିଳାଙ୍କୁ । ବୋଧହୁଏ ଦୁଇଟି କନ୍ୟା । ପହଁରିବାର ନିଶା ଏତେ ପ୍ରବଳ ଯେ ସେଥିରେ ଓକିଲାତି ହୁଏ କେତେ ?

ସେ ଓଡ଼ିଶାର ହସ୍ତତନ୍ତ ସାମଗ୍ରୀର ରପ୍ତାନୀ ଆରମ୍ଭ କଲେ ଜାପାନକୁ । ପ୍ରତି ମାସରେ ପ୍ରାୟ ଥରେ ଦୁଇଥର ଆସନ୍ତି ଓଡ଼ିଶା । ଝିଅ ଦୁଇଟି ବିବାହ କରି ଆମେରିକାରେ ।

Digitized by srujan ka@gmail.com

ଘରେ ସ୍ୱାମୀ ସ୍ତ୍ରୀ ଏକୁଟିଆ । ହଠାତ୍ ଆଇଜେମିର୍ସ (ସ୍ମରଣଶକ୍ତି ବିଲୋପ) ରୋଗରେ ଆକ୍ରାନ୍ତ ହେଲେ । ଘରୁ ବାହାରିଗଲେ ଫେରି ପାରନ୍ତି ନାହିଁ । ବାଟ ଭୁଲିଯାଆନ୍ତି । ଦାରୁଣ ବିପର୍ଯ୍ୟୟ ଦେଖାଦେଲା । ଆର୍ଥିକ ପରିସ୍ଥିତି ସାଂଘାତିକ । ଭାରତବର୍ଷ ପାଇଁ ଗୌରବ ଆଣିଥିବା ମିହିର ସେନ ଧୀରେ ଧୀରେ କ୍ଷୟ ହେବାକୁ ଲାଗିଲେ ଏବଂ ସେହିପରି ଅବହେଳିତ ଅବସ୍ଥାରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଏକ ଷ୍ଟିରିଓଟାଇପ ଜୀବନ ଭଲ ଲାଗେନା । ସେ ଜୀବନରେ କିମିତି ମାଦକତା ନ ଥାଏ । ନ ଥାଏ ନୋଭେଲ୍‌ଟି । ଆମ ଘରେ କୌଣସି ପୂଜା ପାର୍ବଣ ହୁଏନା । ପିଲାଦିନୁ ସେ ସବୁ ପ୍ରଥା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛି । ମୋର ସେ ବିଧି ବିଧାନରେ ଆଦୌ ବିଶ୍ୱାସ ନାହିଁ ଏବଂ ମୋର ଧାରଣା ଯେ ଆଜି କୌଣସି ବିବାହ ବ୍ରତ, ଶୁଦ୍ଧିକ୍ରିୟା ତଥାକଥିତ ପୁରୋହିତ ପଦ୍ଧତିରେ ହୋଇପାରିବ ନାହିଁ । ସେ ନିୟମସବୁ ହୋଇଥିଲା ଆଦ୍ୟ କୃଷି ସଭ୍ୟତା ସମୟରେ । ସେତେବେଳ ପାଇଁ ସେ ସବୁର କାର୍ଯ୍ୟକାରିତା ଥିଲା ହୁଏତ । ଏବେ କିନ୍ତୁ ସମୟର ଗତିରେ ଉତ୍ପାଦନ, ଜୀବନ ଧାରଣର ପ୍ରକ୍ରିୟାସବୁ ବଦଳି ଯାଇଛି । ସେଇ ପୁରାତନ ପଦ୍ଧତିରେ ତାହା ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ, ଶୁଦ୍ଧିକ୍ରିୟାରେ କୁହାଯାଏ ଯେ, ହେ ସ୍ୱର୍ଗତ ଆତ୍ମା ତମେ ଆମ ପାଖରେ ଥିଲ, ଆଜି ନାହଁ, ଆମେ ଯାହା ଉତ୍ପାଦନ କରୁଛୁ ତମ ଉଦ୍ଦେଶ୍ୟରେ ଅର୍ପଣ କରୁଛୁ । ଯେଉଁ ଇଂଜିନିୟର ପୋଲ ତିଆରି କରେ, ଟେଲିଭିଜନ ତିଆରି କରେ, ଯେଉଁ ଆଇ.ଏ.ଏସ୍ ଫାଇଲରେ ଦସ୍ତଖତ କେବଳ କରେ, ସେ କଣ ଉତ୍ପାଦନ କରେ ଯେ ତାକୁ ଅର୍ପଣ କରିବ ?

ଆମ ଘରେ ସୋମବାର, ମଙ୍ଗଳବାର, ଗୁରୁବାର ସବୁ ସମାନ । ବାରଗୁଡ଼ାକ ବୈଦିକ ନୁହେଁ, ଏହା ଗ୍ରୀକ୍ ଓ ରୋମାନମାନଙ୍କର ଅବଦାନ । ଆମର ପରମ୍ପରା ହେଉଛି ତିଥି । ଶ୍ରୀକୃଷ୍ଣ ବା ରାମଚନ୍ଦ୍ର କେଉଁ ବାରରେ ଜନ୍ମ ହୋଇଥିଲେ ? ଆମ ଘରେ ତିଥି ବାର କିଛି ମନା ଯାଏନା । କାର୍ତ୍ତିକ ମାସ କେବେ ଆସି, କେବେ ଯାଏ ଜାଣି ପାରୁନା । ମାଛ ବା ମାଂସ କାଇଁ କାର୍ତ୍ତିକରେ ଶସ୍ତା ହେଉନି ? ସେ ଯାହାହେଉ ପୂଜା ପାର୍ବଣ ନ ହେବା ଫଳରେ ଗୋଟାଏ କ୍ଷତି ଆମର ନିଶ୍ଚୟ । ବାର ମାସରେ ତେର ପର୍ବର ଗୋଟିଏ ସୁବିଧା । ଖାଇବାଟା ବଦଳିଯାଏ ପ୍ରତି ପର୍ବରେ । ଭିନ୍ନ ଭିନ୍ନ ଖାଦ୍ୟ ହୁଏ, ବିଭିନ୍ନ ପର୍ବରେ । କିନ୍ତୁ ଆମ ଘରେ ଖାଇବା ପ୍ରାୟ ସମାନ ପ୍ରତିଦିନ । ସେଇଥିରୁ ରକ୍ଷା ମିଳେ ବିଭିନ୍ନ ବନ୍ଧୁବାନ୍ଧବ, ସାଙ୍ଗମାନଙ୍କ ଦୟାରୁ । ମୋତେ କାଞ୍ଜି, ବଡ଼ି, ଆରିସା, ଘାଣ୍ଟତରକାରୀ ଖାଇବାକୁ ଭଲଲାଗେ । ତେଣୁ ଅନେକ ବନ୍ଧୁବାନ୍ଧବ କରି ପଠାନ୍ତି ଏ ସବୁ । ଷ୍ଟିରିୟୋଟାଇପ୍ ପ୍ରତି ମୋର ବିରାଗ ସେଇଥିରେ ଭାଙ୍ଗିଯାଏ । ବେଳେ ବେଳେ ସ୍ତ୍ରୀ କମଳ କୁମାରୀ ମଧ ଆପଣାର ବ୍ୟସ୍ତ କର୍ମ ନିର୍ଘଣ୍ଟ ଭିତରେ କରନ୍ତି ବିଭିନ୍ନ ପ୍ରକାରର ଖାଦ୍ୟ, ବାର ବା ତିଥି ଯୋଗୁଁ ନୁହେଁ, ନିଜର ଇଚ୍ଛାନୁଯାୟୀ ।

Digitized by srujan ka@gmail.com

ବଣରେ ଜନ୍ମ ହୋଇଛି । ବଗିଚା ଭଲ ଲାଗେ । ତା'ଠାରୁ ଭଲ ଲାଗେ ଅରଣ୍ୟ । ଗଛସବୁ ବଢ଼ିଯାଇଛନ୍ତି ଉପରକୁ, ପରସ୍ପର ସହିତ ପ୍ରତିଯୋଗିତା କରି । ଲତାସବୁ ଛନ୍ଦିହୋଇ ଯାଇଛି ସେମାନଙ୍କ ଦିହରେ । ଶିରିଷ ଲତା, କଣ୍ଟେଇ କୋଳି, ଚାରକୋଳି....... ଛତୁ । ଏବେ ଛତୁ ଏକ ବିଳାସପୂର୍ଣ୍ଣ ଖାଦ୍ୟ । କିଲୋ ଅଶୀ ଟଙ୍କା । ଛତୁ ତୋଳା ହୋଇ ଆସେ । ସିଜନରେ ପ୍ରତିଦିନ ଜଂଗଲରୁ । ହାଟରେ ପତ୍ରରେ ବିକ୍ରିହୁଏ ଛତୁ । ପଇସାକରେ ପତ୍ରରେ ଭରା ଛତୁ । କେତେ ପ୍ରକାରର ଛତୁ ଏବଂ ସ୍ୱାଦରେ କି ଫରକ । ମନେ ପଡୁଛି, ଜାପାନର ରାଷ୍ଟ୍ରଦୂତ ଖାଇବାକୁ ଡାକିଥିଲେ ମଧ୍ୟାହ୍ନ ଭୋଜନରେ ଦିଲ୍ଲୀର ଏକ ହୋଟେଲରେ । ମୋତେ କହିଲେ ଯେ ମୁଁ ଆଜି ଆପଣଙ୍କୁ ଜାପାନର ଏକ ମୂଲ୍ୟବାନ ସୁସ୍ୱାଦୁ ସୁପ୍ ଖାଇବାକୁ ଦେବି । ମୁଁ ଆଗ୍ରହର ସହିତ ଅପେକ୍ଷା କଲି । ଆସିଲା ବାଉଁଶ କରଡ଼ିର ସୁପ୍ । ହୋଷ୍ଟ ହସି ହସି କହିଲେ, ଟେଷ୍ଟ କରନ୍ତୁ, ଏହା ଜାପାନର ସବୁଠାରୁ କଷ୍ଟଲି ବା ମୂଲ୍ୟବାନ ସୁପ୍ । ମହା ମୁଷ୍କିଲରେ ପଡ଼ିଲି ମୁଁ । ବାଉଁଶ କରଡ଼ି ମୋତେ ଗନ୍ଧ ହୁଏ ଭୟାନକ । ତା'ର ବାସନା ମୁଁ କେବେ ସହ୍ୟ କରିପାରେ ନାହିଁ । କିମିତି ଫେରାଇବି ମୁଁ ? ମୁଁ କହିଲି ରାଷ୍ଟ୍ରଦୂତ ମହାଶୟ, ମୁଁ ଭାବିଥିଲି ଯେ ଆପଣ ମୋତେ ଅନ୍ୟକିଛି ଜିନିଷ ଖାଇବାକୁ ଦେବେ, କିନ୍ତୁ ଓଡ଼ିଶାର ଦୁର୍ଭିକ୍ଷରେ ଯେଉଁ ଜିନିଷ ହେଉଛି ଲୋକଙ୍କର ଖାଦ୍ୟ, ଆମର ସବୁଠାରୁ ଦରିଦ୍ରର ଖାଦ୍ୟ, ସେଇ ବାଉଁଶ କରଡ଼ି ଖାଇ ମୁଁ ଆପଣଙ୍କୁ ଅପମାନିତ କରିବାକୁ ଚାହେଁନା । (Scarcity adds to the value.) ଜାପାନରେ ବାଉଁଶ ଗଛ ଦୁଷ୍ପ୍ରାପ୍ୟ । ତେଣୁ ବାଉଁଶ କରଡ଼ିର ସୁପ୍ ଆପଣଙ୍କ ପାଇଁ ମୂଲ୍ୟବାନ । ବାଉଁଶ ଗଛ, କୋଇଲାଦ୍ୱାରା ଚାଳିତ ଇଂଜିନ ବର୍ତ୍ତମାନ ଜାପାନରେ ସଂରକ୍ଷିତ ବସ୍ତୁ ଭାବରେ ସୁରକ୍ଷିତ ।

ଆଷାଢ଼ର ପ୍ରଥମ ଦିବସରେ ନୁହେଁ, ବର୍ଷର ପ୍ରଥମ ବର୍ଷାରେ ମନେପଡ଼ିଲା ପିଲାଦିନର କଥା, ବାପା, ମାଆଙ୍କ କଥା ଏବଂ ଓଡ଼ିଶାର ଗିରି ପର୍ବତ ଅରଣ୍ୟର କଥା । ଆଜି ହିଁ ଆରମ୍ଭ କଲି ଜୀବନର ସ୍ମୃତି । କିଛି ଟିପି ନାହିଁ । ଡାଇରୀ ନାହିଁ । ଲେଖା ବି ଯାହା ଲେଖୁଛି ତାର କପି ନାହିଁ । କାରଣ ଯାହା ଥରେ ଲେଖେ ତାକୁ ସଂଶୋଧନ କରିପାରି ନାହିଁ । ସଂଶୋଧନ କରିବାକୁ ଚେଷ୍ଟାକଲେ ତାକୁ ତିରି ଆଉଥରେ ଲେଖିବାକୁ ହୋଇଛି । ପରୀକ୍ଷା ଖାତାରେ ମଧ ସେଇ ଦୁରବସ୍ଥା । ରିଭାଇଜ୍ କରିପାରି ନାହିଁ ଉତ୍ତରକୁ । ତେଣୁ କେବଳ ଯାହା ମନେ ରହିଛି ତାକୁ ହିଁ ଟିପି ଯିବି ।

ଜୀବନରେ ଏକ ଟିପାଖାତାର ଆବଶ୍ୟକତା ପଡ଼ିବ ବା ଜୀବନୀ ଲେଖିବାକୁ ପଡ଼ିବ, ତାହା ଭାବି ନ ଥିଲି । ଯାହା ଲେଖିବି ସତ ଲେଖିବି, ମିଛ ଲେଖିବି ନାହିଁ । କିନ୍ତୁ ପୂରା ସତ ଲେଖିପାରିବି ନାହିଁ । କାରଣ ସେତିକି ସାହସ ହୋଇନାହିଁ । ଏଇତକ କେବଳ କହି ପାରିବି ଆଜି ବର୍ଷାତୁର ସଂଧ୍ୟାରେ ।

Digitized by srujan ka@gmail.com

# ଜନ୍ମ ଲଭିଲି ଅରଣ୍ୟରେ

ନିବୁଜ, ରନ୍ଧ୍ରହୀନ ଅରଣ୍ୟ । ତାରି ଭିତରେ ଛୋଟିଆ ଗାଆଁଟିଏ । ନାଁ ବାଘମୁଣ୍ଡା । ବାଘ ଦିନରେ ମୁଣ୍ଡ ଖାଏ । ସେଇଯୋଗୁଁ ଏମିତି ନାମକରଣ । ସେଇଠି ଜଙ୍ଗଲ ବିଭାଗ ରେଞ୍ଜ ଅଫିସରଙ୍କ ଘର । ଜଙ୍ଗଲ ଚାରିଆଡ଼େ । ସେଇଠି ଫେବୃଆରୀ ୯ ତାରିଖ ୧୯୩୧ ମସିହାରେ ମୁଁ ଜନ୍ମ ହେଲି, ବାପା, ମାଆଙ୍କ ଦ୍ୱିତୀୟ ସନ୍ତାନ ଏବଂ ପ୍ରଥମ ପୁତ୍ର ଭାବରେ । ଆଗରୁ ଭଉଣୀଟିଏ । ନାଁ ଥିଲା 'ଲତା' । ହେତୁ ନାହିଁ ମୋର ତାକୁ । ସେ ଆଖି ବୁଜି ଦେଲା ବସନ୍ତ ରୋଗରେ । ଟୀକା ବସନ୍ତ ରୋଗରେ ପରିଣତ ହେଲା । ବସନ୍ତ ଟୀକା ନେବାପାଇଁ ସେତେବେଳେ କୋକୁଆ ଭୟ । ଟୀକାଦିଆ ଗାଆଁକୁ ଆସିଛି ଜାଣିଲେ ଗାଆଁ ଗାଆଁରେ ତାଟି ପଡ଼ିଯାଏ । ବାପା ବା ଦାଦା କିନ୍ତୁ ପିଲାଙ୍କୁ ଟୀକା ଦେବାର ବ୍ୟବସ୍ଥା କଲେ । ଦୁର୍ଭାଗ୍ୟକୁ ସେଇ ଟୀକା ମୋ ଭଉଣୀର କାଳ ହେଲା । ସେତେବେଳେ ଇଲାକାରେ ଅଫିସର କହିଲେ 'ଜଙ୍ଗଲ ଅଫିସର' । ଆଉ ଅଫିସର କାହାନ୍ତି । ସେ ଜଙ୍ଗଲ ବୁଝିବେ, ରେଭେନ୍ୟୁ ବୁଝିବେ, ଅବକାରୀ ବୁଝିବେ, କେତେ ଜାଗାରେ ଶିକ୍ଷା ଏବଂ ସ୍ୱାସ୍ଥ୍ୟ ବୁଝିବେ । ପ୍ରତ୍ୟେକ ଫରେଷ୍ଟ ଅଫିସର ସେଥିପାଇଁ ଜଣେ ଜଣେ ଡାକ୍ତର । ଡାକ୍ତର କହିଲେ ହୋମିଓପାଥି । ଏଲୋପାଥିକ ଔଷଧ ତ ଏତେ ନ ଥିଲା । କିଛି ଜର୍ମାନ ତିଆରି ଔଷଧ ଥିଲା । ଅନେକ ରୋଗ ପାଇଁ । ଇମିତି ଏକ ଔଷଧର ନାଁ ମୋର ଏବେ ବି ମନେ ଅଛି । ଆଟେବ୍ରିନ । ହଇଜା ଆସେ । ଗାଁ ଗାଁରେ ହା ହୁଲୋଳ ପଡ଼ିଯାଏ । ମୋର ଟିକେ ଟିକେ ମନେ ପଡୁଛି । ୧୯୩୯ ମସିହା କି ଆଗରୁ ମନେ ପଡୁନି । ମୋର ବଡ଼ବାପାଙ୍କର ପୂଝାରୀକୁ ହଇଜା ହେଲା । ସାଲାଇନ ଦିଆଯିବ । ଜଣେ ଡାକ୍ତର ବନ୍ଧୁ ଆସି ପହଞ୍ଚିଲେ ଦୈବାତ୍ । ସେତେବେଳେ ଡାକ୍ତରମାନେ ସାଂଗରେ ଏକ ବ୍ୟାଗ ନେଇ ଯାଉଥିଲେ । ସେଥିରେ ସବୁ ଥିଲା ଯନ୍ତପାତି ଏବଂ ଔଷଧ । ସାଲାଇନ୍ ବର୍ତ୍ତମାନ ଡାକ୍ତରମାନଙ୍କ ପାଇଁ ମାମୁଲି, ସାଧାରଣ କଥା । କିନ୍ତୁ ସେଦିନ ସେଇ 'ସାଲାଇନ୍'କୁ ଦେଖିବାପାଇଁ ରାସ୍ତାରେ ଭିଡ଼ ଜମିଥିଲା । ହତା ଭିତରେ କେହି ନାହାନ୍ତି । ସବୁ ଶୂନ୍‌ଶାନ । ସାଲାଇନ ଚାଲିଛି, କିଏ ଯିବ ହତା ଭିତରକୁ ? କାଳେ କଣ ହୋଇଯିବ ! ଆଜି ମଧ ଯେ ସେମିତି ଅବସ୍ଥା ପୂରା କଟି ଗଲାଣି ତା ନୁହେଁ । ଏଇ ଗଲାବର୍ଷ କଥା । କୁଜଙ୍ଗ ଅଞ୍ଚଳରୁ ଜଣେ ବ୍ୟକ୍ତିକୁ କଟକ ବଡ଼ ଡାକ୍ତରଖାନାରେ ଭର୍ତ୍ତି କରାଯାଇଥାଏ କୌଣସି ଏକ ବେମାର ଯୋଗୁଁ । ତାଙ୍କର ଦୁଇଜଣ ଆତ୍ମୀୟ— ଜଣେ ଶିକ୍ଷକ ଏବଂ ଜଣେ ଶିକ୍ଷୟିତ୍ରୀ କ୍ଷେତ୍ରବାସୀ ଭୂୟାଁ ଏବଂ ପ୍ରମିଳା ତ୍ରିପାଠୀ (ପମି) ଆସିଥିଲେ ବୁଝିବାପାଇଁ ରୋଗୀର ଅବସ୍ଥା । ମୁଁ ମୋର ବନ୍ଧୁ ଡାକ୍ତର ସବ୍ୟସାଚୀ ଦାସଙ୍କ ପାଖରୁ ବୁଝିଥାଏ ଯେ ରୋଗୀ

Digitized by srujan ka@gmail.com

ଅବସ୍ଥା ଭଲ ଅଛି ଏବଂ ଦିନେ ଦୁଇଦିନ ଭିତରେ ଡାକ୍ତରଖାନାରୁ ଛୁଟି ମିଳିଯିବ । ସେ ଦି'ଜଣଙ୍କୁ ଏ ଖବର ଦେଲାବେଳକୁ ସେ ଦି'ଜଣ ମହାବ୍ୟସ୍ତ । ତାଙ୍କୁ ବିବ୍ରତ ଏବଂ ଶୋକାତୁର ଦେଖି ମୁଁ ଘଟଣା କଣ ପଚାରିଲା ବେଳକୁ ସେମାନେ କହିଲେ ଯେ ରୋଗୀର ଯିବା ଆସିବା ବେଳ ହେଲାଣି କାଲି ରାତିରୁ, ଆପଣ କଣ କହୁଛନ୍ତି ଯେ ତାଙ୍କ ଅବସ୍ଥା ଭଲ ଅଛି ? ମୁଁ ଡାକ୍ତରଙ୍କ ପାଖକୁ ଦୌଡ଼ିଲି । ସେ କହିଲେ ଯେ ମୁଁ ପରା ଆପଣଙ୍କୁ କହିଲି ଯେ ରୋଗୀ ଭଲ ଅଛି । ତାଙ୍କର ଲୋକ ଆସିଥିଲେ, ଆଜି ବି ଛୁଟି କରି ଦିଆଯାଇପାରେ ଡାକ୍ତରଖାନାରୁ । କାଲି ରାତିରେ ସେ କହିଲେ ଯେ ନିଶ୍ୱାସ ନେବାପାଇଁ ଟିକିଏ ଅସୁବିଧା ହେଉଛି, ତେଣୁ ମୁଁ ତାଙ୍କୁ ଅକ୍ସିଜେନ ଦେବାପାଇଁ କହି ଦେଇ ଆସିଥିଲି । ଆଜି ଦେଖିଲି ଯେ ତାଙ୍କର ଦେହ ଠିକ୍ ଅଛି । ସେ ଯାଇପାରନ୍ତି । ମୁଁ ରୋଗୀର ଆତ୍ମୀୟ ଦୁଇଜଣ ଶିକ୍ଷକଙ୍କୁ ଅନେଇଲି । ସେ କହିଲେ ଯେ ଆମେ କଣ ଜାଣିନ୍ତୁ । ସେଇ ଯନ୍ତ୍ରଟା ଅଣାଗଲା ମାନେ ଆମେ ଭାବିଲୁ ଯେ ତାଙ୍କର କାଳ ପୂରି ଆସିଲାଣି । ଏ ହେଉଛି ଆଜି ପର୍ଯ୍ୟନ୍ତ ଅବସ୍ଥା ।

ଅଗନା ଅଗନି ବନସ୍ତ । ତାରି ଭିତରେ ଜନ୍ମ । ଆଜି ହୋଇଥିଲେ କୌଣସି ଡାକ୍ତର, କୌଣସି ଜାଣିବା ଶୁଣିବା ପିତାମାତା ମୋତେ ମା' ପେଟରେ ବି ରଖିବାପାଇଁ ଦେଇ ନ ଥାନ୍ତେ । ଜନ୍ମ ହେବାର ତ ଦୂରର କଥା । କାରଣ ମୋ ଭଉଣୀ ଜନ୍ମ ହୋଇଥିଲା ଏକ ଅସ୍ୱାଭାବିକ ପରିସ୍ଥିତିରେ । ସିଜ୍‌ରିନ୍ ହୋଇଥିଲା ଏବଂ ସେଇ ସିଜ୍‌ରିନରେ ମଧ୍ୟ କଣ ଗଣ୍ଡଗୋଳ ହୋଇ ଯାଇଥିଲା । ଫଳରେ ମୋ ବୋଉ କେବଳ ଅସୁସ୍ଥ ରହିଲା ନାହିଁ, ତାର ଆଉ ପିଲାପିଲି ହେବନି ବୋଲି ଡାକ୍ତରମାନେ ଧରିନେଲେ । ଏହାର ଏକ ପ୍ରତିକ୍ରିୟା ସୃଷ୍ଟିହେଲା ପରିବାରରେ । ବାପାଙ୍କୁ ଆଉଥରେ ବିବାହ କରିବାପାଇଁ ଚାପ ଆରମ୍ଭ ହେଲା ବିଭିନ୍ନ ଦିଗରୁ । ମୋ ଜେଜେମାଆ ଆସି ପହଞ୍ଚିଗଲେ, ନାତୁଣୀର ପରିଚର୍ଯ୍ୟା କରିବା ପାଇଁ ଏବଂ ଆବଶ୍ୟକ ହେଲେ ବାପାଙ୍କୁ ପ୍ରବର୍ତ୍ତାଇବା ପାଇଁ । ବାପା ଓ ତାଙ୍କର ଭାଇ, ଭଉଣୀ ମିଶି ୨୧ । ସେ ଭିତରୁ ସେତେବେଳକୁ କେତେ ଜୀବିତ ଥିଲେ ମୁଁ କହି ପାରିବି ନାହିଁ । ମୁଁ ହେତୁ ପାଇଲା ବେଳୁ ଦେଖି ଆସିଛି ପାଞ୍ଚ ଭାଇ ଏବଂ ଗୋଟିଏ ଭଉଣୀକୁ । ଅନ୍ୟମାନେ ବାହୁଡ଼ି ସାରିଛନ୍ତି ଆଗରୁ । ବାପା ବୋଧହୁଏ ପଞ୍ଚଦଶ କିମ୍ବା ଷଷ୍ଠଦଶ ସନ୍ତାନ । ସେ କହୁଥିଲେ ଯେ ତାଙ୍କର ସବା ବଡ଼ ଭଉଣୀର ବାହାଘର ତାଙ୍କର ମନେ ନାହିଁ । ବାପା ଭଲ ମଣିଷ । ଭଲ କହିଲେ ଯାହା ବୁଝାଏ । ପାନ, ବିଡ଼ି, ସିଗାରେଟ୍, ମଦ କୌଣସି ପ୍ରକାର ଅଭ୍ୟାସ ତାଙ୍କର ନ ଥିଲା । ହଲୁଥିବା ପାଣିକୁ ଗୋଡ଼ ବଢ଼ାଇବେ ନାହିଁ । ସତ୍ୟକୁ ସତ୍ୟ ବୋଲି କହି ଡିଫେଣ୍ଡ (Defend) କରିପାରିବେ ନାହିଁ କି ମିଛକୁ ମିଛ ବୋଲି କହି ପ୍ରତିରୋଧ କରିପାରିବେ ନାହିଁ । ବାପା ତାଙ୍କର ଚାକିରିକାଳ ଭିତରେ ଭଲ ଅଫିସରଙ୍କଠାରୁ ଗୁଡ କଣ୍ଡକ୍ଟ ସାର୍ଟିଫିକେଟ ଯେପରି ପାଇଛନ୍ତି, ଖରାପ ଅଫିସରଙ୍କଠାରୁ ବି ସେଇପରି ଗୁଡ୍ କଣ୍ଡକ୍ଟ ସାର୍ଟିଫିକେଟ ପାଇଛନ୍ତି, ମୁଁ ଥରେ ତାଙ୍କୁ କାରଣ ପଚାରିଥିଲି । ବାପା ମୋତେ ସେଇକଥା

Digitized by srujan ka@gmail.com

କହିଥିଲେ ଏବଂ ଯେହେତୁ ସେ ମିଥ୍ୟାର ପ୍ରତିରୋଧ କରନ୍ତି ନାହିଁ ବା ସତ୍ୟକୁ ଡିଫେଣ୍ଡ କରନ୍ତି ନାହିଁ, ଭଲ ଖରାପ ଉଭୟ ଅଫିସରଙ୍କ ଆଗରେ ସେ ଭଲ ଲୋକ । ଭଉଣୀର ଦୁରବସ୍ଥା ଖବର ପାଇ ପହଞ୍ଚିଥିଲେ ମୋର ଜଣେ ମାମୁଁ ଏବଂ ମୋର ଦାଦା । ସେଇ ପ୍ରତିକ୍ରିୟାରେ କି କଣ ମୋ ଦାଦା ଆଉ ବିବାହ କଲେ ନାହିଁ । ରହିଗଲେ ଅବିବାହିତ ମୃତ୍ୟୁ ପର୍ଯ୍ୟନ୍ତ । ବାପାଙ୍କ ଉପରେ ଏଇ ଚାପ ବଢ଼ିଚାଲିଲା ଏବଂ ବଢ଼ିଚାଲିଲା ବାପାଙ୍କ ମନସ୍ତାପ । କିନ୍ତୁ ଉପାୟ କଣ ? ସେତେବେଳେ ତ ଏକରୁ ଅଧିକ ବିବାହ ଉପରେ କଟକଣା ସରକାରୀ ଚାକିରିରେ ଦେଖାଦେଇ ନ ଥିଲା । ଏହା ଛଡ଼ା 'ସମ୍ଭ୍ରାନ୍ତ' କରଣମାନେ ପତ୍ନୀ ସହିତ ଏକରୁ ଅଧିକ ରକ୍ଷିତା ରଖିବା ତାଙ୍କର ଆଭିଜାତ୍ୟର ପରିଚୟ ଥିଲା । ଆମ ନିଜ କୁଳରେ ଏବଂ ମାମୁଁ ବଂଶରେ ତାହାର ଉଦାହରଣ ଥିଲା ବହୁତ ।

ଠିକ୍ ଏଇପରି ଏକ ସମୟରେ ମୁଁ ଆସିଲି ଧରାପୃଷ୍ଠକୁ । ବୋଉ ପାଇଁ ଥିଲା ଏହା ଆଶ୍ୱସ୍ତି, ଆଶୀର୍ବାଦ, ସାନ୍ତ୍ୱନା ଓ ଭରସା ମଧ । କିନ୍ତୁ ମୋ ପାଇଁ ? ମୋ ପାଇଁ ଥିଲା ଏହା ଏକ ଅଭିଶାପ କି ନୁହେଁ, ତାହା ଠିକ୍ କହିପାରି ନାହିଁ । ପ୍ରଥମତଃ କେତେକ ଫିଜିକାଲ ଡିଫରମିଟି ନେଇ ମୁଁ ଜନ୍ମ ହେଲି । ମୋର ଆଙ୍ଗୁଠି, ହାତର ବଳା ନାହିଁ । ଆଙ୍ଗୁଠି ପଗସବୁ ଯେପରି ସକେଟ୍ ଏବଂ ସିଲିଣ୍ଡର ହୋଇଥାଏ, ମୋର ସେପରି ନାହିଁ । ତେଣୁ ମୁଁ ପହଁରିପାରେ ନାହିଁ, ଗଛ ଚଢ଼ିପାରେ ନାହିଁ, ପାହାଡ଼ ଚଢ଼ିବା କଠିନ କିନ୍ତୁ ଓହ୍ଲାଇବା ତା ଠାରୁ ଆହୁରି କଠିନ । କାହିଁକି ଏସବୁ କରିପାରେ ନାହିଁ, ତାହା ମଧ୍ୟ ଜାଣି ନ ଥିଲି । ଜଣା ପଡ଼ିଲା ଜେଲଖାନା ଭିତରେ । ପଳାତକ ଜୀବନ ପରେ ଦ୍ୱିତୀୟ ଥର କାରାବାସ ବେଳେ ଡାକ୍ତର ଗିରିଜା ଶଙ୍କର ଦାସ ମହାପାତ୍ର ଏବଂ ଡାକ୍ତର ରଘୁନାଥ ସାହୁଙ୍କୁ ସରକାର ପଠାନ୍ତି ମୋର ଡାକ୍ତରୀ ପରୀକ୍ଷା ପାଇଁ । ପ୍ରସିଦ୍ଧ ସର୍ଜନ ଗିରିଜା ଶଙ୍କର ଦାସ ମହାପାତ୍ର ଏହା ଆବିଷ୍କାର କରନ୍ତି । ଆଙ୍ଗୁଠିଗୁଡ଼ିକ ପଛପଟକୁ ଓଲଟାଇ ଦିଆଯାଏ ବିନା କଷ୍ଟରେ । ସେ ଆଶ୍ଚର୍ଯ୍ୟ ହୁଅନ୍ତି, ଏବଂ ଏକ ପେପର ଲେଖନ୍ତି ଏହା ଉପରେ । ପରେ ଉତ୍ତର ଜୀବନରେ ବନ୍ଧୁ ଡାକ୍ତର ତେଜେଶ୍ୱର ରାଓ ଲେଖନ୍ତି ମଧ ଏହା ଉପରେ ଏକ ପେପର । ଏଇଭଳି ଆଙ୍ଗୁଠି ଦେଖିଚି ମୁଁ ଶ୍ରୀମତୀ ଶାନ୍ତି ଦାସଙ୍କର (ନେତ୍ରୀ ଶାନ୍ତି ଦାସ) । ଏହା ଛଡ଼ା ଗୋଟିଏ ମାତୃଦତ୍ତ ରୋଗ ଆଣିଲି ମୁଁ । ତାହା ହେଉଛି ବହୁମୂତ୍ର ରୋଗ । ଆଇ ଏବଂ ଅଜାଙ୍କର ବହୁମୂତ୍ର ରୋଗ ଥିଲା । ବୋଉର ଥିଲା ଏବଂ ମୋତେ ବି ସେଇ ରୋଗ ଉତ୍ତରାଧିକାର ସୂତ୍ରରେ ମିଳିଲା । ବଡ଼ ଭଉଣୀ ଆଗରୁ ଯାଇଛି । ତାର ପିଲା ଦିନରୁ । ସାନ ଭାଇ ମଧ ଚାଲିଗଲା ୧୯୮୮ ମସିହା ଫେବୃଆରୀ ୯ ତାରିଖରେ, ମୋର ଜନ୍ମ ଦିନରେ । ଝିଅ ପ୍ରଜ୍ଞାର ବିବାହର ମାତ୍ର ୪/୫ ଦିନ ପରେ ।

ତାର କିନ୍ତୁ ସେ ବହୁମୂତ୍ର ରୋଗ ନ ଥିଲା । କେବଳ ମୁଁ ହିଁ ତାର ଉତ୍ତରାଧିକାରୀ । ବୋଉର ଚିକିତ୍ସା କରୁଥିଲେ ପ୍ରାୟତଃ ଡାକ୍ତର ଶରତ ଚନ୍ଦ୍ର ମିଶ୍ର ଏବଂ ଡାକ୍ତର ବିଭୂତି ଭୂଷଣ

Digitized by srujan ka@gmail.com

ତ୍ରିପାଠୀ । ଆଉ ମୁଁ ମଧ ଉତ୍ତରାଧିକାର ସୂତ୍ରରେ ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀଙ୍କର ଚିକିତ୍ସାରେ । ସେ ମୋ ପାଇଁ ଖାଲି ଡାକ୍ତର ନୁହଁନ୍ତି, ପରିବାରର ଅଂଶ ବିଶେଷ, ଆତ୍ମୀୟ ।

କିନ୍ତୁ ସେତିକିରେ ତ ସମାପ୍ତି ହେଲା ନାହିଁ ଘଟଣାର । ଏକ ପ୍ରୋଟେକ୍ଟେଡ୍ ଚାଇଲଡ ବା ଅଲିଅଳ ଗେଲବସର ପୁଅ ଭାବରେ ମୁଁ ବଢ଼ିଲି । ବୋଉ, ବାପା, ବିଶେଷତଃ ଜେଜେମାଆ ମୋତେ ଏପରି ଭାବେ ବଢ଼ାଇବା ଯୋଗୁଁ ସଂସାର ବିଷୟରେ କିଛି ଜାଣିବାର ଉପାୟ ନ ଥିଲା । ପରେ ଯେତେବେଳେ ମୁଁ ପରିବାରରୁ ଅଲଗା ହୋଇ ଆସିଲି କଲେଜରେ ପଢ଼ିବା ପାଇଁ, ସେତେବେଳେ ମୁଁ ସଚେତନ ହେଲି ଯେ ମୁଁ ଏକ ୟୁସଲେସ ଚାଇଲ୍ଡ । ମୋର ଶାରୀରିକ ଏବଂ ମନସ୍ତାତ୍ତ୍ୱିକ ଡେଫିସେନ୍ସିକୁ ମୁଁ ତା'ପରେ ଯଥାସାଧ ପାରିଛି କାଟିବାପାଇଁ । ତଥାପି ରହିଯାଇଛି ଅନେକ ।

ଗୋଟିଏ ଉଦାହରଣ । ପିଲାଦିନେ ଏଇପରି ବଢ଼ିଲି । ଜେଜେମାଆ ମୋତେ ତା ପାଖରେ ଶୁଆଏ । ଫଳ ଯାହାହୁଏ । ପିଲାଦିନରୁ ଏଇ ଝରକାବାଟେ ଭୂତ ଆସିଲା, ବାଘ ଆସିଲା କହି ଶୁଆଇ ପକାଏ । ଫଳରେ ଖୋଲା ଝରକା, ଖଂଜା ଘର ମୋ ପାଇଁ ବର୍ତ୍ତମାନ ପର୍ଯ୍ୟନ୍ତ ଭୟର ଜିନିଷ । ଆମେସବୁ ବଢ଼ିଆସିଛୁ ଜଂଗଲ ଭିତରେ । ବିଜୁଳି ଆଲୁଅ ତ ସ୍ୱପ୍ନର କଥା । ଆମେସବୁ ହେତୁହେଲା ଦିନଠୁଁ ବାରଣ୍ଡାରେ ଶୋଉ । ଜଂଗଲ ବିଭାଗର ଘର । ବଡ଼ ବଡ଼ ବାରଣ୍ଡା । ନିଶ୍ଚୟ ଆଠ ଦଶଟା ଖଟିଆ ପଡ଼ିଥିବ । କାରଣ ଜଂଗଲ ବିଭାଗର ସହକର୍ମୀମାନେ ଆସିଲେ ସେମାନେ ଆଉ କେଉଁଠି ରହିବେ ନାହିଁ, ରହିବେ ସେଠାରେ ଥିବା ଜଂଗଲ ବିଭାଗ କାର୍ମଚାରୀଙ୍କ ଘରେ । ଏଇଟା ହେଉଛି ଫରେଷ୍ଟ ଡିପାର୍ଟମେଣ୍ଟର କନ୍‌ଭେନ୍‌ସନ୍ । ଆଜିକାଲି ସେଇଟା କମିଗଲାଣି । କମିଯିବାକୁ ବାଧ । ଆଗ ଓଡ଼ିଶାର ବନ୍ୟ ବିଭାଗ ଏକ ପରିବାର ଭଳି ଥିଲା । ଜଣକର ଆନନ୍ଦ ଓ ଦୁଃଖ ଉଭୟରେ ସମସ୍ତେ ଆସି ଠିଆ ହେଉଥିଲେ ପାଖରେ, ବିବାହରେ, ବ୍ରତରେ, ବାଧିକାରେ ବା ଯେକୌଣସି ସମସ୍ୟାରେ । ଏବେ ବି ତାର ସୂଚନା ମିଳେ ଜଂଗଲ ବିଭାଗୀୟ କର୍ମଚାରୀମାନଙ୍କର ବିବାହ, ବ୍ରତ ପ୍ରଭୃତିରେ । ବାରଣ୍ଡାରେ ଶୋଇବା ଏକ ଅଭ୍ୟାସ । ଏବେ ବି ତାହା ଅତୁଟ ରହିଛି । ଖରାଦିନେ ତ ଆମର ସବୁ ତିନି ସେଟ୍ ଖଟ ପଡ଼ିଥାଏ । ଗୋଟାଏ ସେଟ୍ ବାହାରେ, ଖୋଲା ଆକାଶ ତଳେ, ଆଉ ଗୋଟାଏ ସେଟ୍ ବାରଣ୍ଡାରେ, ତୃତୀୟ ସେଟ୍‌ଟା ଘର ଭିତରେ । ଘରେ ଗେଷ୍ଟ ଥିଲେ ସ୍ତ୍ରୀ ଲୋକମାନେ ଅଗଣାରେ ଶୁଅନ୍ତି, ଆମେ ବାହାରେ ଶୋଉ । ବର୍ଷା ପଡ଼ିଲେ ବିଛଣାକୁ ଗୁଡ଼ାଇ ନେଇଆସୁ ବାରଣ୍ଡାକୁ । ବାରଣ୍ଡାରେ ବର୍ଷା ଛାଟିଲେ ପୁଣି ବିଛଣା ଗୁଡ଼ାଇଦେଇ ଯାଉ ଭିତରକୁ । ବାରଣ୍ଡାରେ ଶୋଇବା ଅଭ୍ୟାସ ଏବେ ବି ଅଛି । ବାହାରେ ଝୁପ୍ ଝୁପ୍ ବର୍ଷାର ଶବ୍ଦ । ଗଛ ଉପରେ, ଲତା ଉପରେ ତାର ଝଂକାର ଶୁଣିବାକୁ ଭଲ ଲାଗେ । ନିର୍ଜନତା ଭିତରେ ବର୍ଷାର ଖେଳ ଏକ ଝଂକାର ସୃଷ୍ଟିକରେ । କାନପାତି ଶୁଣିବାକୁ ଭଲ ଲାଗେ । ମନେପଡ଼େ ପିଲାଦିନର କଥା । କିନ୍ତୁ ଘର

Digitized by srujan ka@gmail.com

ଭିତରେ ଝରକା ଖୋଲି ଆଜିବି ଶୋଇ ହୁଏନା । କିମିତି ଚାଉଁ-ଚାଉଁ ଲାଗେ । ବାହାରେ ଶୋଇ ହେବ କିନ୍ତୁ ଘର ଭିତରେ ଝରକା ଖୋଲି ଶୋଇବା ଅସମ୍ଭବ ମୋ ପକ୍ଷରେ । ଠିକ୍ ଓଲଟା ମୋ ସାନଭାଇ । ସେ ଶୁଏ ଦାଦା ପାଖରେ । ଦାଦା ନିର୍ଭୀକ । ଜୀବନରେ ବଡ଼ଭାଇ (ମୋ ବାପା)ଙ୍କ ଛଡ଼ା କାହାକୁ ମାନି ନାହାନ୍ତି । ପିଲାଦିନରୁ ସାନଭାଇ ଇମିତି ନିର୍ଭୀକ ଯେ ଟିକରପଡ଼ାରୁ ରାତିରେ ଏକୁଟିଆ ଚାଲି ଆସେ ସାଇକେଲରେ ।

ପରେ ୰ଗୋଦାବରୀଶ ମିଶ୍ରଙ୍କର ଏଇ ରୋଗଥିବା ଦେଖି ଆଶ୍ୱସ୍ତ ହୋଇଥିଲି । ସାଂଗ ହୋଇ ଯାଉଥାଉଁ ବ୍ରହ୍ମପୁର । ସେ ହସନ୍ତି ନାହିଁ କିନ୍ତୁ ହସାନ୍ତି ବେଶ୍ । ବାଟରେ ବଳଦଟା ଶୋଇଛି । ଗାଡ଼ିର ହର୍ଣ୍ଣ ଦେଲେ ଉଠୁନି । ଡ୍ରାଇଭର ବିରକ୍ତ । ଗୋଦାବରୀଶ ବାବୁ ପଚାରିଲେ ଧୀର ଶାନ୍ତ କଣ୍ଠରେ । ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀ ପାର ହେଲୁଣି ନା ନାହିଁ ? ତା ସହିତ ବଳଦର ନ ଉଠିବାର ସଂପର୍କ କଣ ? ନା, ଏଇଟା ତା'ର ନିର୍ବାଚନ ମଣ୍ଡଳୀ ତ ସେଇଯୋଗୁଁ ଉଠୁନି ରାସ୍ତାରୁ । କଂଗ୍ରେସର ସେତେବେଳେ ନିର୍ବାଚନ ଚିହ୍ନଥିଲା ଯୋଡ଼ିବଳଦ । ହସ ଉଚ୍ଛୁଳିଲା । କିନ୍ତୁ ପଣ୍ଡିତ ଗୋଦାବରୀଶଙ୍କ ମୁହଁରେ ସେମିତି ହସର ଏକ ମ୍ଳାନ ରେଖା ଉକୁଟି ମିଳାଇଗଲା । ରାତିରେ ରହିଲୁ ବରକୂଳ ଡାକ ବଂଗଳାରେ । ସେତେବେଳେ ପାନ୍ଥନିବାସ ତିଆରି ହୋଇ ନ ଥାଏ । ଗୋଟିଏ ବଖରାରେ ସେ । ଆର ବଖରାରେ ଆମେମାନେ । ଚିଲିକା ଉପରେ ଜ୍ୟୋତ୍ସ୍ନାର ଢେଉ । ପାରଦ ରାତ୍ରି । ଦେଖିଲି ନୀରବରେ ପଣ୍ଡିତଜୀ ଝରକା ସବୁ ବନ୍ଦ କରୁଛନ୍ତି ଶୋଇବାର ଉପକ୍ରମରେ । ବାହାରେ ଚିଲିକା ଶୋଇ ରହିଛି କାମାତୁରୀ ନାୟିକା ପରି । ଆଉ ପଣ୍ଡିତଜୀ ଝରକା ବନ୍ଦ କରୁଛନ୍ତି, ଟିକିଏ ହସି ସେ କହିଲେ ଯେ ମୁଁ ଝରକା ଖୋଲି ଆଦୌ ଶୋଇପାରେ ନାହିଁ । ଏତେ ଦିନକେ ମିଳିଗଲା ଆଶ୍ୱାସନା, ନିଜର ଦୁର୍ବଳତା ସପକ୍ଷରେ ।

ଜୀବନରେ ଇମିତି ଅନେକ ଆଶ୍ୱାସନା ଖୋଜିଛି । ଶିକ୍ଷକଙ୍କ ଶିକ୍ଷାଦାନର ପ୍ରଭାବ ପଡ଼େ ଛାତ୍ରମାନଙ୍କ ଉପରେ । ଭଲ ଶିକ୍ଷକ ପଡ଼ିଗଲେ ପିଲାର ଆଗ୍ରହ ସେଇ ବିଷୟ ପାଇଁ ବଢ଼ିଯାଏ । ସେଇପରି ଖରାପ ଶିକ୍ଷକ ପଡ଼ିଗଲେ ସେ ବିଷୟ ପ୍ରତି ଅସୂୟା ଜନ୍ମ ହୁଏ, ଅସୂୟା ବଢ଼ିଯାଏ । ସେଇ ଦୁରବସ୍ଥା ମୋର ଘଟିଛି ଗଣିତ ଓ ବ୍ୟାକରଣ (ବିଶେଷତଃ ସଂସ୍କୃତ) ପାଇଁ । ଆଲଜେବ୍ରାଟା ମୋ ପାଇଁ ଏକ ମ୍ୟାଜିକ୍ । କେମିତି କରନ୍ତି ମୁଁ ବୁଝିପାରେ ନାହିଁ । ପରୀକ୍ଷାରେ ଗଣିତ ପେପର୍‌ରେ ଆଲଜେବ୍ରା ପୃଷ୍ଠାଟା ମୁଁ କେବେ ଓଲଟାଇନି । ବାପା, ଦାଦା, ଖେଦ କରିଛନ୍ତି । ହଇରେ, ଆମେ ଦୁହେଁ ଜୀବନରେ ଗଣିତରେ କେବେ ୧୦୦ରୁ ୯୯ ରଖି ନ ଥିଲୁ । ଆଉ ତୁ ? ଆଶ୍ୱାସନା ଖୋଜିଛି । ପୁଅ ଦୁହେଁ ଏବଂ ଝିଅ ଗଣିତରେ ବେଶ୍ ଧୁରନ୍ଧର ଦେଖି ଓରମାନ ମେଣ୍ଟିଯାଉଛି ।

ଥରେ ପଢୁ ପଢୁ ଦେଖିଲି, ଆଇନ୍‌ଷ୍ଟାଇନଙ୍କର ପ୍ରତିକୃତି କରିବା ପାଇଁ ଜଣେ ଚିତ୍ରକର ଆସିଥିଲେ । ଆଇନ୍‌ଷ୍ଟାଇନ୍ ତାଙ୍କୁ ସିଟିଙ୍ଗ ଦେଇଥିଲେ । ଚିତ୍ରକର ଦେଖନ୍ତି ଯେ ମଝିରେ ମଝିରେ

Digitized by srujan ka@gmail.com

ଜଣେ କିଏ ଲୋକ ଆସୁଛି । ଆଇନ୍‌ଷ୍ଟାଇନ ତାକୁ ଜର୍ମାନ ଭାଷାରେ ଅନର୍ଗଳ ବକ୍ତୃତା ଦେଇ ଚାଲିଛନ୍ତି । ମୁଖ ମଣ୍ଡଳର ଚିତ୍ର ବଦଳି ଯାଉଛି । ସେ ଲୋକ ତାକୁ ଟିପି ନେଉଛି ନୀରବରେ, ଆଉ ଫେରିଆସୁଛି ପୁଣି କେଇ ଘଣ୍ଟା ପରେ । ପୁଣି ସେଇ ପାଲା । ଆଇନ୍‌ଷ୍ଟାଇନ ପୁଣି ଦେଉଛନ୍ତି ବକ୍ତୃତା । ଚିତ୍ରକର ଜର୍ମାନ ନୁହଁନ୍ତି । ତେଣୁ ସେ ବିନ୍ଦୁ ବିସର୍ଗ ବୁଝି ପାରୁ ନାହାନ୍ତି ସେଥିରୁ । ବାଧ ହୋଇ ସେ ପଚାରିଲେ ବୈଜ୍ଞାନିକଙ୍କୁ ଉକ୍ତ ବ୍ୟକ୍ତିର ପରିଚୟ । ଆଇନ୍‌ଷ୍ଟାଇନ କହିଲେ ଯେ ସେ ହେଉଛନ୍ତି ମୋର ଗଣିତଜ୍ଞ । ମୁଁ ଗଣିତରେ ବହୁତ ଦୁର୍ବଳ, ପିଲାଦିନରୁ । ସେଇଯୋଗୁଁ ମୁଁ ତାକୁ ମୋର ଆଇଡିଆ ବା ଚିନ୍ତା କହିଯାଏ, ସେ ତାକୁ ଗଣିତରେ ରୂପାନ୍ତରିତ କରି ଆଣନ୍ତି । ମୋତେ ଏଇ କାହାଣୀ ଆଶ୍ୱସ୍ତି ଦେଇଛି । ଯାହାହେଉ କେବଳ ମୁଁ ଅଙ୍କରେ ଦୁର୍ବଳ ନୁହେଁ, ଅନ୍ୟମାନେ (ମାନେ ଆଇନ୍‌ଷ୍ଟାଇନ) ମଧ ଅଛନ୍ତି ।

କିନ୍ତୁ ଆଶ୍ୱସ୍ତି ଯେମିତି ମିଳେ ଅଶ୍ୱସ୍ତି ମଧ ସେମିତି ଲାଗେ । ଅଧ୍ୟାପକ ଡକ୍ଟର ତ୍ରିବିକ୍ରମ ପତି ଜଣେ ପ୍ରସିଦ୍ଧ ଗଣିତଜ୍ଞ । ସେ ଜଣେ ପ୍ରତିଭାଶାଳୀ ବ୍ୟକ୍ତି । ସାହିତ୍ୟ, ଦର୍ଶନ, କାବ୍ୟ, ବିଜ୍ଞାନ ସବୁ ବିଭାବକୁ ସେ ମଣ୍ଡିତ କରିଛନ୍ତି । ଓଡ଼ିଶାର ଜଣେ ପ୍ରଚଣ୍ଡ ପ୍ରତିଭାବାନ ବ୍ୟକ୍ତି ଭାବରେ ମୁଁ ତାଙ୍କୁ ଗଣନା କରେ । ସମାଜ ତାଙ୍କଠାରୁ କେତେ ଅବଦାନ ପାଇଲା ବା ସେ ପ୍ରତିଭାର ବ୍ୟବହାର କରିପାରିଲା କି ନାହିଁ ସେ ସ୍ୱତନ୍ତ୍ର କଥା । ଥରେ ଆହ୍ଲାବାଦର କଟ୍‌ରା (ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ବିଜ୍ଞାନ ଓ କଳା ବିଭାଗର ମଧ୍ୟସ୍ଥଳର ବଜାର) ଆମେ ଏକ ଚାହା ଦୋକାନରେ ବସିଥିଲୁ । ଗପ ଜମି ଥିଲା ଏବଂ ବିଷୟବସ୍ତୁ ହଠାତ୍ ହୋଇ ଉଠିଥିଲା ଭଂଜ ସାହିତ୍ୟ । ତ୍ରିବିକ୍ରମ ବାବୁ ଦେଇ ଚାଲିଥିଲେ ତାଙ୍କର ବୟାନ ଭଂଜ ସାହିତ୍ୟ ଉପରେ । ତା' ପରେ ମୁଁ ତାଙ୍କୁ ପଚାରିଲି, ତ୍ରିବିକ୍ରମ ବାବୁ, ଆପଣ ସାହିତ୍ୟ ନ ନେଇ ଗଣିତକୁ ମନଦେଲେ କାହିଁକି ? ସେ କହିଲେ ''ପିଲାଦିନେ ମୁଁ ଭାରି ଅମନଯୋଗୀ ଥିଲି । (ବର୍ତ୍ତମାନ କଣ କମ୍ ଅଛନ୍ତି କି ? ଜଣେ କେହି ମନ୍ତବ୍ୟ ଦେଲେ) ମୁଁ ଭାବିଥିଲି ଯେ ମୁଁ ଗୋଟାଏ ବୁଦ୍ଧିହୀନ ବ୍ୟକ୍ତି । ଏଭଳି ଏକ ବିଷୟ ପଢ଼ିବି ଯେଉଁଥିରେ ବୁଦ୍ଧି ବୃତ୍ତିର ବେଶୀ କାମ ନ ଥିବ । ତେଣୁ ଗଣିତକୁ ହିଁ ବାଛିଲି । ଗଣିତ ପ୍ରକୃତରେ ସାଧାରଣ ବିଷୟ । ଯେତେ ଉପରକୁ ଯାଅ, ଯାହା ପଢ଼ ସେଇ ହରଣ, ଗୁଣନ, ମିଶାଣ ଆଉ ଫେଡ଼ାଣ । ସେତିକି ଜାଣିଥିଲେ ହେଲା । ବୁଝିଲେ ।

ମୁଁ ଜାଣିଶୁଣି ଅନ୍ୟମନସ୍କ ହେବାକୁ ଆରମ୍ଭ କରିଥିଲି । କାରଣ ଏହାର ଉତ୍ତର ଦେବା ମୋ ପକ୍ଷେ ସମ୍ଭବ ନ ଥିଲା । ହଁ କଲେ ମଲି, ନାହିଁ କଲେ ମଲି । ଇମିତି ଅନେକ ପ୍ରଶ୍ନ ଅଛି ଯାହାର ଉତ୍ତର ହଁ ବା ନାହିଁ କିଛି କହିହେବ ନାହିଁ । ଓକିଲ ଜେରା କରୁଥିଲେ ସାକ୍ଷୀକୁ ମିଶଲ ଉପରେ । କହିଲେ ଯାହା କହିବ ହଁ ନ ହେଲେ ନାହିଁ, ସାକ୍ଷୀ ହଁ ଭରିଲେ ।

ପ୍ରଥମ ପ୍ରଶ୍ନ :

ମଦ ପିଇବା ଛାଡ଼ି ଦେଲଣି ?

Digitized by srujan ka@gmail.com

ହଁ ନା ନାହିଁ ?

ଦ୍ୱିତୀୟ ପ୍ରଶ୍ନ :

ସ୍ତ୍ରୀକୁ ବାଡ଼େଇବା ଛାଡ଼ି ଦେଲଣି ?

ହଁ ନା ନାହିଁ ?

ଠିକ୍ ସେଇପରି ତ୍ରିବିକ୍ରମ ବାବୁଙ୍କର ଉକ୍ତି । ଅଙ୍କ କୁଆଡ଼େ ବୁଦ୍ଧିହୀନମାନଙ୍କର ପାଠ । ଆଉ ସେଇ ବିଷୟରେ ମୁଁ ବହୁ କଷ୍ଟରେ ୩୨ ନମ୍ବର ରଖି ପାଶ୍ କରିଛି, ମାଟ୍ରିକୁଲେଶନ ପରୀକ୍ଷାରେ । କ'ଣ ଉତ୍ତର ଦେବି ?

ପ୍ରସିଦ୍ଧ ବୈଜ୍ଞାନିକ ଅବଦୁଲ କାଲାମ ଆସିଥିଲେ କଲିକତା, ନୋବେଲ ପ୍ରାଇଜ ପାଇବା ପରେ, ତାଙ୍କର ଗଣିତ ଶିକ୍ଷକଙ୍କୁ (ଲାହୋରରେ ତାଙ୍କୁ ପଢ଼ାଇଥିଲେ) ଭେଟିବା ପାଇଁ । ୯୪ ବର୍ଷ ବୟସ୍କ ଅଧ୍ୟାପକ ଶୋଇରହିଥିଲେ ବିଛଣାରେ, ଅସୁସ୍ଥ ଅବସ୍ଥାରେ । ତାଙ୍କର ଗୋଡ଼ ଛୁଇଁ ପ୍ରଣାମ କରି ବୈଜ୍ଞାନିକ କାଲାମ ତାଙ୍କ ଗୋଡ଼ତଳେ ଥୋଇଦେଲେ ନୋବେଲ ପୁରସ୍କାର ସାଇଟେସନ ଏବଂ ଗୋଡ଼ ଆଙ୍ଗୁଠିରେ ଝୁଲାଇଦେଲେ ନୋବେଲ ମେଡାଲକୁ । ଏବଂ କହିଲେ ଯେ, ସାର ବିଶ୍ୱାସ କରନ୍ତୁ, ଲାହୋର କଲେଜରେ ମୋତେ ଆପଣ ଯେତିକି ଅଙ୍କ ପଢ଼ାଇଥିଲେ ତାକୁଇ ସମ୍ବଳ କରି ମୁଁ ଗବେଷଣା କରିଛି, ନୋବେଲ ପ୍ରାଇଜ ପାଇଛି । ଅଧିକା କିଛି କରି ନାହିଁ ।

କାଲାମ୍ ସେତେବେଳେ ଥାଆନ୍ତି ଇଟାଲୀରେ । ଆମେ ତାଙ୍କୁ ଚିଠିଟିଏ ଦେଇଥିଲୁ ଏକ ଆନ୍ତର୍ଜାତିକ ସମ୍ମିଳନୀକୁ ଆସିବା ପାଇଁ । ସେ ଉତ୍ତରରେ ଲେଖିଥିଲେ, ମୁଁ ଆଶ୍ଚର୍ଯ୍ୟ ହେଉଛି ଆପଣମାନେ ମୋତେ ନିମନ୍ତ୍ରଣ କରିଛନ୍ତି ଅଥଚ ଏଇଠି ମୋ ସାଂଗରେ ଥିବା ବଡ଼ ବୈଜ୍ଞାନିକଙ୍କୁ ନିମନ୍ତ୍ରଣ କରି ନାହାନ୍ତି, ଅଥଚ ସେ ଓଡ଼ିଶାର ।

ତାଙ୍କ ନାମ ହେଉଛି ଡାକ୍ତର ଯୋଗେଶ ଚନ୍ଦ୍ର ପତି । ନୋବେଲ ପ୍ରାଇଜ ପାଇବା ପାଇଁ ତାଙ୍କ ନାମ ବହୁଥର ସୁପାରିଶ ହୋଇଛି କିନ୍ତୁ ସେ ପାଇ ନାହାନ୍ତି । ଏହାର ପ୍ରଥମ ପ୍ରତିବନ୍ଧକ ହେଉଛି ସେ ଆମେରିକାର ନାଗରିକ ହୋଇନାହାନ୍ତି (ହୋଇ ନ ଥିଲେ) । ତାଙ୍କୁ ମୁଁ ରେଭେନ୍ସା କଲେଜରେ ପଢ଼ିଲାବେଳୁ ଜାଣିଛି । ସେ ମୋର ସ୍ତ୍ରୀଙ୍କର ସହପାଠୀ । ସେ ଥରେ ଦୁଇଥର ଭୁବନେଶ୍ୱରରେ ରହି ଫେରିଛନ୍ତି ନୈରାଶ୍ୟର ସହିତ । ତାଙ୍କର ଖୋଜ ଖବର କେହି ରଖି ନାହାନ୍ତି । ନିମନ୍ତ୍ରଣ ତ ଦୂରର କଥା ।

ଏଥିରେ ଆଶ୍ଚର୍ଯ୍ୟ ହେବାର ବିଶେଷ କିଛି ନାହିଁ । ନୋବେଲ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବ୍ୟକ୍ତିର ମୂଲ୍ୟ ଓଡ଼ିଶାରେ କେତେ ? ବର୍ତ୍ତମାନ କ୍ଷମତାରେ ଥିବା ଲୋକ ହିଁ ଆମପାଇଁ ଯଥେଷ୍ଟ । ଆମର ନାଗରିକତ୍ୱ, ଶିକ୍ଷା, ସଭ୍ୟତା, ବୁଦ୍ଧିସବୁ କ୍ଷମତାର ଯୂପକାଠରେ ବନ୍ଧା ପଡ଼ିଛି । କଟକ ସହରରେ ଆପଣାର ନାଗରିକତ୍ୱର ଦୁନ୍ଦୁଭି ପିଟୁଥିବା ଜଣେ ନାଗରିକକୁ ପ୍ରସ୍ତାବ ଦିଆଗଲା

Digitized by srujan ka@gmail.com

ଯେ ଅମର୍ତ୍ତ୍ୟ ସେନ ଓଡ଼ିଶା ଆସିବାର ପ୍ରସ୍ତାବ ରହିଛି । ତାଙ୍କୁ ସମ୍ବର୍ଦ୍ଧନା ଦେଲେ କେମିତି ହୁଅନ୍ତା ? ସେ ଚକ୍ଷୁ ବିସ୍ଫୋରିତ କରି କହିଲେ, ସେ କିଏ ? ଅମର୍ତ୍ତ୍ୟ ସେନ ତ ନୋବେଲ ପୁରସ୍କାର ପାଇ ସାରିଛନ୍ତି, ଯେ ପାଇ ନାହାନ୍ତି ତାଙ୍କର ପ୍ରଶ୍ନ ଉଠୁଛି କେଉଁଠୁ ?

ଏଇତ ଆମର ଭାଗ୍ୟ ।

ଆଶ୍ୱସ୍ତି ଖୋଜିଛି, ସାହାରା ଖୋଜିଛି । ଜୀବନରେ ବହୁ ବିଭାବରେ । ଗଣିତ ଯେମିତି ହେଲାନାହିଁ, ସେମିତି ହେଲାନାହିଁ ବ୍ୟାକରଣ । ଅଧିରାଜ ମୋହନ ସେନାପତିଙ୍କ ଠାରୁ ଦିବ୍ୟସିଂହ ପଟ୍ଟନାୟକ, କ୍ଷୀତିଶ ଚନ୍ଦ୍ର ଦେବଙ୍କ ଠାରୁ ଦୟାନିଧି ପଟ୍ଟନାୟକ, କେତେ ଚେଷ୍ଟା କରି ନାହାନ୍ତି ! ସବୁ ବିଫଳ ହୋଇଛି । କ୍ଲଜ ଆନାଲିସିସ୍‌ର ନାଉନ କ୍ଲଜ କେଉଁଟା ଧରିପାରିଲି ନାହିଁ ଜୀବନଯାକ । ଆଜି ମଧ ଜୀବନର ନାଉନ୍ କ୍ଲଜ ଧରିପାରି ନାହିଁ ବୋଲି 'ଯୁନିଭର୍ସ' କରିଛି ବୋଲି ମନେହୁଏ । ନଚେତ୍ ସ୍ଥାନ ଆଉ କେଉଁଠି ଥାଆନ୍ତା କହି ହେବ ନାହିଁ । ଜୀବନର ଦୌଡ଼ରେ 'ନାଉନ କ୍ଲଜ' ଯେମିତି ଧରିପାରି ନାହିଁ, ବ୍ୟାକରଣରେ ମଧ ସେମିତି । ଆଜି ତ ଲେଖିବାକୁ ପଡ଼େ ସବୁବେଳେ ଇଂରାଜୀରେ ଆଉ ଓଡ଼ିଆରେ । ଲେଖିଲାବେଳେ ସେ ରୋଗ ଏବେ ବି ଧରେ । ଲେଖି ଚାଲିଛି ତ ଚାଲିଛି କିନ୍ତୁ ହଠାତ୍ ଯଦି ଅଟକି ଗଲି ସରିଲା କଥା । You & I ପରେ am ହେବ ନା are ହେବ ଏବଂ କାହିଁକି ହେବ ତା' ଆଜି ମଧ କହିପାରିବି ନାହିଁ । ଲେଖେ ଉତ୍ତର । ଯେଉଁଦିନ ଚିଠି ଆସେ ମୁଁ ସେଇଦିନ ଉତ୍ତର ଦେଲେ ବା ଦେଇପାରିଲେ ସୁଖୀ ହୁଏ । ଅନେକ ଆଶ୍ଚର୍ଯ୍ୟ ହୁଅନ୍ତି ଆଉ ଅନେକ କ୍ଳାନ୍ତି ଅନୁଭବ କରନ୍ତି । ଯେମିତି ଡାକ୍ତର ରତ୍ନାକର ପଣ୍ଡା । ମୁଁ ବି.ଏ. ପଢ଼ିଲାବେଳେ ତାଙ୍କ ଭାଇ ଅଧ୍ୟାପକ ହଳଧର ପଣ୍ଡା ମୋର ସହପାଠୀ ଥିଲେ । ସେଇ ଯୋଗୁଁ ପରିଚୟ ପରେ ଆତ୍ମୀୟତାରେ ପରିଣତ ହୋଇଛି । ସେ ଚିଠି ଲେଖନ୍ତି, ଲେଖନ୍ତି ବ୍ରହ୍ମପୁରରୁ । ଉତ୍ତର ତା ପରଦିନ ମିଳିଯାଏ । ସେ ବାଧହୋଇ ପୁଣି ଲେଖନ୍ତି । ସେଇକଥା । ବାଧ ହୋଇ ଥରେ ଲେଖିଲେ ଯେ ଆପଣ ଯେତେବେଳେ ସୁବିଧା ହେବ ଲେଖିବେ । ଅର୍ଥାତ ସବୁ ଚିଠିର ଉତ୍ତର ସେଇଦିନ ଲେଖିବାର କୌଣସି ଆବଶ୍ୟକତା ନାହିଁ ।

ଚିଠି ପାଇଁ ଖ୍ୟାତି ଅର୍ଜନ କରିଛି, ଅପଯଶ ବି ଅର୍ଜନ କରିଛି, ମୋ ଚିଠି ତ ଠିକ୍ ଚିଠି ନୁହେଁ ତାହା ହେଉଛି ସେଇ ଦିନର ଭାବନାର ଉଚ୍ଛ୍ୱାସ ବା ବିଭିନ୍ନ ବିଷୟରେ ମୋର ପ୍ରତିକ୍ରିୟା । ଅନେକ ସମୟରେ ତା' କୁଆଡ଼େ ବୟସ,ସମ୍ପର୍କର ସୀମା ମାନେ ନାହିଁ । ଯେହେତୁ ମୋ ଚିଠି ଏକ ଉଚ୍ଛ୍ୱାସ ତେଣୁ ମୁଁ ତଳେ କେବଳ ନାଁ ଲେଖିଦିଏ– ମାମୁଁ, ଭାଇ, ମଉସା କିଛି ଲେଖେ ନାହିଁ । ଏଇଟା ବୋଧହୁଏ ପିତୃଦତ୍ତ । ବାପା ମୋର ଚିଠି ଲେଖିଲାବେଳେ ମୋତେ (ବା ଯାହାକୁ ହେଲେବି) ତଳେ କେବଳ ତାଙ୍କର ନାଁ 'ଶଶି' ବୋଲି ଲେଖି ଦିଅନ୍ତି । ତାହାରି ପ୍ରଭାବ ବୋଧହୁଏ ପିଲାଦିନରୁ ପଡ଼ିଥିଲା ।

Digitized by srujan ka@gmail.com

ଥରେ ଝିଅଟିଏ ଆମଘରକୁ ଆସିଥିଲା । ମୋ ଝିଅଠାରୁ ଦି'ଚାରି ବରଷ ବଡ଼ ହେବ । ସେ କ'ଣ ଗୋଟାଏ କାମ ମୋତେ ଦେଇଥିଲା ? ମନେ ପଡୁନି । ସେତେବେଳେ ସେ ଏମ୍.ଏ. ପଢୁଥିଲା । ଭଲ ଆବୃତ୍ତି କରି ପାରୁଥିଲା । କବିତା ଆବୃତ୍ତି ମୋର ଆଉ ଗୋଟାଏ ସଉକ । ଓଡ଼ିଶାରେ କବିତା ଆବୃତ୍ତି ପ୍ରାୟ ନାହିଁ । ସମସ୍ତେ ପ୍ରାୟ କବିତା ପାଠ କରନ୍ତି, ଆବୃତ୍ତି କରନ୍ତି ନାହିଁ । ମନେ ପଡୁଛି ବାଲେଶ୍ୱରରେ ଛାତ୍ର ସଂଘର ସମ୍ମିଳନୀ ହେଉଥାଏ । ବନ୍ଧୁ ମନୋଜ ଦାସ ସେତେବେଳକୁ ତାଙ୍କର କାବ୍ୟିକ ପ୍ରତିଭାର ପରିଚୟ ଦେଇ ସାରିଲେଣି । ସେ ହେଉଛନ୍ତି ସମ୍ମିଳନୀର ସଂଗଠକ । ନିମନ୍ତ୍ରଣ କରିଥାଆନ୍ତି ପ୍ରସିଦ୍ଧ ନାଟ୍ୟକାର ଶମ୍ଭୁ ମିତ୍ରଙ୍କୁ । ଶୀତଦିନ । ବିରାଟ ଲୋକ ସମାଗମ । ଶମ୍ଭୁ ମିତ୍ର ଆବୃତ୍ତି କରୁଥିଲେ ''ଓରେ ବିହଙ୍ଗ ବିହଙ୍ଗମ, ଏଖୋନି ଅନ୍ଧ, ବନ୍ଦ କରୋନା ପାଁଖା'', ଆବୃତ୍ତି ସରିଲା । ସଭା ସରିଲା, ଲୋକେ ଯିବାର କଥା, କିନ୍ତୁ କେତେ ସମୟ ପାଇଁ କେହି ସ୍ଥାନ ଛାଡୁ ନାହାନ୍ତି । ଘଟଣା କଣ ? ଓ, ବାହାରେ ଝଡ଼, ଯିବେ କେମିତି ? କିନ୍ତୁ ବାହାରେ ଝଡ଼ କାହିଁ ? ଏ ଥିଲା ତାଙ୍କର ଆବୃତ୍ତିର ପ୍ରଭାବ ଶ୍ରୋତାମାନଙ୍କ ଉପରେ । ଆବୃତ୍ତି ସେ ଦିନ ରାତିରେ ଜମିଥିଲା । ସଚ୍ଚି ରାଉତରାୟ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈକୁଣ୍ଠନାଥ ପଟ୍ଟନାୟକ । ସେ ଝିଅଟିକୁ ମୁଁ କହିଲି ବୈକୁଣ୍ଠନାଥ ଓ ସୁନନ୍ଦାଙ୍କ ଜୀବନ କାହାଣୀ । ସେଦିନ ଦୈବାତ୍ ବୁବୁ (ସୁନନ୍ଦା) ଆସିଥିଲା ଆମ ଘରକୁ । ସେ ଝିଅଟି କହିଥିଲା ଯେ ''ମୋର ଯାହା ସନ୍ଦେହ ହେବ ମୁଁ ଲେଖିବି ଆପଣ ଉତ୍ତର ଦେବେ ।'' ମୁଁ ହଁ ଭରିଥିଲି । ସେ ଚିଠି ଦେଲା ମଝିରେ ମଝିରେ ଆଉ ମୁଁ ଉତ୍ତରରେ ଘରକଥା, ଦୁଆରକଥା ଲେଖିଲି ଏବଂ ଲେଖିଲି ବୈକୁଣ୍ଠନାଥଙ୍କ କଥା । ଚିଠି ତଳେ ପୁରୁଣା ଅଭ୍ୟାସ ଅନୁଯାୟୀ କେବଳ ମୋ ନାଁ ଲେଖିଲି । ଚିଠି ସେ ଦି'ଚାରିଟା ଦେଇସାରିଲା ପରେ, ଗୋଟିଏ ଚିଠିକୁ ତାର ପିତାମାତା ବା ଭାଇ ଦେଖିଥିଲେ ବୋଧହୁଏ । ହଠାତ୍ ଚିଠି ବନ୍ଦ ହୋଇଗଲା । ମୋର ଆଉ ସେ କଥା ମନେ ନାହିଁ । କିଛି ସମୟ ଅତିକ୍ରାନ୍ତ ହେଲାପରେ ଦିନେ ସେ ଝିଅର ଏକ ଗାର୍ଡ଼ିଅନ ମୋ ସ୍ତ୍ରୀକୁ ପଚାରିବାର ଶୁଣିଲି ଯେ ସେ କଣ ଚିଠିରେ ସମ୍ବୋଧନ କିଛି ଲେଖନ୍ତି ନାହିଁ, ଉପରେ ବା ତଳେ । ମୋ ସ୍ତ୍ରୀ ମନାକଲେ । କହିଲେ ସେ ତ ଝିଅପୁଅଙ୍କୁ ମଧ୍ୟ ସେଇପରି ଚିଠି ଲେଖନ୍ତି । କଣ ହେଲା କି ? କଣ ହୁଅନ୍ତା ଆଉ ?

ସେମିତି ଆଉ ଗୋଟିଏ ଝିଅ । ତା'ର ବାପାଙ୍କ ସହିତ ମୋର ପରିଚୟ । ସେ ବେଳେବେଳେ ଆସେ ବାପାଙ୍କ ସାଂଗରେ ସଭା ସମିତିକୁ । ପରିଚୟ ସେତିକି । ଆମ ପାଠ୍ୟ ସାହିତ୍ୟର ସୀମା ଖୁବ୍ କମ୍ । ଓଡ଼ିଆ ସାହିତ୍ୟରେ ସବୁଜ ଯୁଗର ସାହିତ୍ୟ ପଢ଼ା ହେଉଛି । କିନ୍ତୁ ସମସାମୟିକ ଭାରତୀୟ ସାହିତ୍ୟ ସହିତ ସେ ପାଠର କୌଣସି ସଂପର୍କ ନାହିଁ । ସମସାମୟିକ ଅନ୍ୟାନ୍ୟ ଭାରତୀୟ ପ୍ରାଦେଶିକ ସାହିତ୍ୟରେ ଯେ ଏଇଭଳି ଅନୁରୂପ ପ୍ରବାହ ଦେଖାଦେଇଥିଲା, ତାହା ପଢ଼ା ଯାଏନା । ଏବେ ଡକ୍ଟର ସ୍ନିଗ୍ଧା ବିଶ୍ୱାଳଙ୍କଠାରୁ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଉପରେ

Digitized by srujan ka@gmail.com

ତାଙ୍କର ଥିସିସ୍ ପଢ଼ିବାର ସୁଯୋଗ ମିଳିଥିଲା । ସୁଖୀ ହେଲି ସେ ତାଙ୍କ ଥିସିସ୍‌ର ଏକ ଅଧ୍ୟାୟକୁ ଏଇ ସମୟର ସମସାମୟିକ ଅନ୍ୟ ପ୍ରାଦେଶିକ ସାହିତ୍ୟ ପାଇଁ ନିବେଦିତ କରିଛନ୍ତି । ଭଲ ଲାଗିଲା । ତୁଳନାତ୍ମକ ବିଶ୍ଳେଷଣ ପଢ଼ି । ସେ ଥିସିସ୍ ଛପା ହେବା ଉଚିତ ବୋଲି ମନ୍ତବ୍ୟ ଦେଇ ତାଙ୍କୁ ଫେରାଇ ଦେଇଛି । ଦେଖାଯାଉ ଏହା ଛପା ହେବାର ଭାଗ୍ୟ ଅର୍ଜନ କରି ପାରିବ କି ନାହିଁ ? ସେ ଝିଅଟିକୁ ମୁଁ ପଚାରିଲି ଲୋର୍କା, ନେରୁଦା, ପୁଷ୍କିନ, ମାୟାକୋଉସ୍କିଙ୍କ କଥା । ଆବୃତ୍ତି ସେ କରିଥିଲା । ମିଶିକରି ମଧ ପଢ଼ିଥିଲୁ କେତେକ କବିତା । ତା'ପରେ ସେ ଚିଠି ଦେଇଥିଲା । ଏବଂ ମୋର ପୁରୁଣା ଅଭ୍ୟାସ, ଚିଠିର ଉତ୍ତର ସେଇଦିନ । ଚିଠିର ପରିମାଣ ଏବଂ ଆତ୍ମୀୟତା ବଢ଼ି ଯାଇଥିଲା । ସେ ବଢ଼ିବାର ଫଳ ଦିନେ ଯେ ବିସ୍ଫୋରଣରେ ପରିଣତ ହେବ ଏ କଥା କିଏ ଜାଣିଥିଲା ?

ଆଜି ବି ଚିଠି ଲେଖିଲାବେଳେ ବା କୌଣସି ଲେଖା ଲେଖିଲାବେଳେ ମୁଁ ଅଟକି ଯାଏ, ବ୍ୟାକରଣଗତ ଭୁଲ ଯୋଗୁଁ । କେଉଁଟା ଠିକ୍ ? ଆଶ୍ୱସ୍ତି ଖୋଜିଛି ଏବଂ ମିଳିଛି ।

ଜବାହରଲାଲ ନେହେରୁଙ୍କର କୌଣସି ଏକ ପାଣ୍ଡୁଲିପିର ସମ୍ପାଦନା କରୁଥିଲେ କ୍ରିଷ୍ଣ ମେନନ୍ । ଦିନେ କୌଣସି ଏକ ସଂଧ୍ୟାରେ କ୍ଳାନ୍ତ ମେନନ୍ ଆସି ଜବାହରଲାଲ ନେହେରୁଙ୍କୁ କହିଲେ କି ବ୍ୟାକରଣ ଆପଣ ଲେଖୁଛନ୍ତି ? ମୋତେ ଆଜି ଟନ୍ ଟନ୍ କମା, ସେମିକୋଲନ ସହିତ ପ୍ରିପୋଜିସନ୍, କଞ୍ଜକସନ୍ ଯୋଡ଼ିବାକୁ ପଡ଼ିଛି । ହସି ହସି ଜବାହରଲାଲ କହିଲେ ସେଇଟା ତ ତମର କାମ । ମୋ କାମ ହେଉଛି ଚିନ୍ତା ଏବଂ ଲେଖା । ବାକିତକ ତମର । ମୋତେ ଆଶ୍ୱାସନା ମିଳିଗଲା । ତା' ହେଲେ ଜବାହରଲାଲ ନେହେରୁଙ୍କର ମଧ ଏମିତି ବ୍ୟାକରଣଗତ ଭୁଲ ହୁଏ ଆଉ ମୋର ହେଲା ଯେ କଣ ଅଧିକା ହୋଇଗଲା ?

ଜନ୍ମଗତ ଦୋଷ ଏବଂ ପରିବେଶ ବା ଶିକ୍ଷା ଜନିତ ଦୋଷ ଅନେକ ରହିଯାଇଛି ଜୀବନରେ । ତା'ଛଡ଼ା ତ ଅନେକ ତ୍ରୁଟି ଘଟିଛି ଜୀବନରେ । ଅନେକ ଅଜାଣତରେ, ଅନେକ ଅଭିଜ୍ଞତାର ଅଭାବରୁ । ତେବେ ଜାଣିଶୁଣି କୌଣସି ବ୍ୟକ୍ତି ଏପରିକି ଶତ୍ରୁର ମଧ ଅନିଷ୍ଟ ବା କ୍ଷତି କାମନା କରି ନାହିଁ । ପିଲାଦିନର ସେଇ Yousuf କବିତାର ଧାଡ଼ି -

"As one lamp lights another, but does not grow less,
So nobleness enkindleth nobleness".

ଜୀବନର ମହାମନ୍ତ୍ର ହୋଇ ଆସିଛି । ଭୁଲ ହୋଇଛି ଅବଳନ୍ତି । କାମ କରିବାକୁ ଗଲେ ଭୁଲ ନିଶ୍ଚୟ ହେବ । କିଛି ନ କଲେ ଭୁଲ୍ ହେବ ନାହିଁ । ମୋ ଦାଦା ମୋତେ ଏଇକଥା ଲେଖିଥିଲେ ମୋର ରାଜନୈତିକ ଜୀବନର ଗନ୍ଧ ପାଇ । କିନ୍ତୁ ଜାଣିଶୁଣି ଭୁଲ କର ନାହିଁ । ଅନ୍ୟର ବ୍ୟକ୍ତିଗତ କ୍ଷତି କର ନାହିଁ ବା କ୍ଷତି କାମନା କରନାହିଁ ।

Digitized by srujan ka@gmail.com

ଜନ୍ମ ହେଲି ଅରଣ୍ୟ ଭିତରେ । ଶୀତ ଦିନ । ଶୀତ ମାଡ଼ି ଆସେ ବାଘପରି । ପିଲାଦିନର ସେଇ ସ୍ମୃତି ଥିଲା । ଥରେ ୟୁନିଭର୍ସ ଆନୁକୂଲ୍ୟରେ ଯାଇଥିଲୁ ଟିକରପଡ଼ା । ସମସ୍ତଙ୍କୁ ଚେତାବନୀ ଦେଇଥିଲି । ଶୀତଦିନ, ବେଶ୍ ଶୀତ ପଡ଼ିବ । ସାବଧାନ । କିନ୍ତୁ ପହଞ୍ଚିଲା ବେଳକୁ ଖାଲି ଗେଞ୍ଜି ପିନ୍ଧି ସମସ୍ତେ ବାହାରେ ତାସ ଖେଳୁଛନ୍ତି ସଂଧ୍ୟାବେଳେ । ସମୟ ଅତିକ୍ରାନ୍ତ ହୋଇଛି । ଗଛସବୁ କଟି ଗଲାଣି । ବନ୍ୟ ସମ୍ପଦକୁ ରକ୍ଷା କରିବାପାଇଁ ଏବେ ପଇସାଦିଆ ପରିବେଶ ସଂରକ୍ଷଣ ହେଉଛି । ସହରରୁ ବାବୁମାନେ ଯାଉଛନ୍ତି ଗ୍ରାମମାନଙ୍କୁ । ସଭା ହେଉଛି, ଶୋଭାଯାତ୍ରା ହେଉଛି, ପ୍ରଦର୍ଶନୀ ହେଉଛି । ବିନା ଗ୍ରାଣ୍ଟରେ କିନ୍ତୁ କିଛି ହୋଇପାରୁ ନାହିଁ । ଲୋକେ ଯେଉଁଠି ପ୍ରକୃତିକୁ ଜଗିଛନ୍ତି ତାଙ୍କ ମନକୁ ସେଇଠି ସରକାରୀ ସାହାଯ୍ୟ ଦୂରର କଥା, ଉତ୍ସାହ ପହଞ୍ଚିଲା ବେଳକୁ ଡେରି ହୋଇଯାଉଛି । ନୟାଗଡ଼ ଅଞ୍ଚଳର ପାଣିପୋଇଲା ଗ୍ରାମର ପ୍ରକୃତି ବନ୍ଧୁ ବୈକୁଣ୍ଠନାଥ ଦଳବେହେରା ଚାଲିଗଲେ ଦାରୁଣ ଦୁଃଖ ଭିତରେ । ନିଜେ, ସାଂଗରେ କିଛି ଲୋକ ଧରି ଜଗିଥିଲେ ଅରଣ୍ୟକୁ । ପ୍ରକୃତି ରୁନ୍ଧି କରି ଠିଆ ହୋଇଥିଲା । ସାଂଗରେ ତତ୍କାଳୀନ ଜଂଗଲମନ୍ତ୍ରୀ ବନ୍ଧୁ ଅଦୈତ ପ୍ରସାଦ ସିଂହଙ୍କୁ ନିମନ୍ତ୍ରଣ କରି ନେଇଥିଲି । ସେ ଖୁସି ହୋଇଥିଲେ । ସେଇଦିନ ନିର୍ଦ୍ଦେଶ ଦେଇଥିଲେ ସାହାଯ୍ୟ ଦେବାପାଇଁ । ସାହାଯ୍ୟ ପହଞ୍ଚିଲା ପୂର୍ବରୁ ଦଳବେହେରା ଚାଲିଗଲେ । ଆଗ ଗଛ ଲଗାଇବା ଏକ ଧର୍ମ ଥିଲା । ମୋ ମାମୁଁ ଘର ଆଠଗଡ଼ । ପତଣ୍ଡା ଗାଁ । ଦିନ ଦି'ପହରେ ଗହନ ଆମ୍ବ ତୋଟା ଭିତର ଦେଇ ଯିବାକୁ ମାଡ଼ିପଡ଼େ । କେତେ ପ୍ରକାର ଆମ୍ବଗଛ, କେତେ ପ୍ରକାର ନାମ । ଲଙ୍କା ସୁନ୍ଦରୀ, ଭେଲେଇ, ପଞ୍ଜିରି ପିଞ୍ଜା । ସମୟ ଆସିଲା ଗଛ ତ ଆଉ କେହି ଲଗାଇଲେ ନାହିଁ ଖାଲି କାଟିବା ସାର ହେଲା । ଆଉ ଆମ୍ବ ନାହିଁ, ତରୁ ଛାୟା ନାହିଁ, କି ''ଏଇ ସହକାର ତଳେ'' ମଧ ନାହିଁ । ସେଦିନ କବି ପ୍ରସନ୍ନ ପାଟଶାଣୀ ବକ୍ତୃତା ଦେଇ କହିଛନ୍ତି ଆଧୁନିକା ନାରୀ ଓ କବିତା ଉଭୟେ ଛନ୍ଦହୀନ । ଆଜିର ପ୍ରେମ ମଧ ସେମିତି । ରୋମାଞ୍ଚ କାଇଁ, କାଇଁ ଆଡ଼ଭେଞ୍ଚର । ଧର୍ଷଣ ବା କିଡ୍‌ନାପିଙ୍ଗ କଣ ଆଡଭେଞ୍ଚର । ଇଲପମେଣ୍ଟ ହେଉଛି ଆଡଭେଞ୍ଚର । ଅରଣ୍ୟ ନାହିଁ, ଅଛି ଖାଲି ଅରଣ୍ୟ ରୋଦନ !

ମନେପଡୁଚି ହାରୀନ୍ଦ୍ରନାଥ ଚଟ୍ଟୋପାଧାୟଙ୍କ ଜୀବନୀ "Life and Myself" । କଟକ ଜେଲରେ ଆମେସବୁ ବନ୍ଦୀ ଥାଉ । ୧୯୫୧ର ଛାତ୍ର ଆନ୍ଦୋଳନରେ ଜଡ଼ିତ ଶ୍ରୀ ଗୋବିନ୍ଦ ଦାସ, ଶ୍ରୀ ରାଜେନ୍ଦ୍ର ଦାସ, ଶ୍ରୀ ଅଖିଳ ମୋହନ ପଟ୍ଟନାୟକ, ଶ୍ରୀ ଅକ୍ଷୟ ମହାନ୍ତି, ଶ୍ରୀ ସହଦେବ ମିଶ୍ର ଯୋଗଦେଲେ ଆମ ସାଂଗରେ କିଛି ଦିନ ପାଇଁ । ଗୋବିନ୍ଦ ବାବୁ (ପରେ ବାରିଷ୍ଟର) ଆଣିଥିଲେ ଏହି ବହି ଖଣ୍ଡିକ । ସେଥିରେ Devil's Brew ନାମକ ଏକ ଅଧାୟରେ ସେ ଲେଖିଥିଲେ ତାଙ୍କର ଅପ୍ରାପ୍ତ ବା adolescent ବୟସ ସମୟରେ ଏକ ବିବାହିତା ନାରୀ ସହିତ ପ୍ରଣୟର କଥା । ତାକୁ ପଢ଼ି ମୋର ମନେ ପଡ଼ିଥିଲା ମାୟାଧର ମାନସିଂଙ୍କ କଥା ।

''ଏଇ ସହକାର ତଳେ,
ଯେଦିନ ପ୍ରିୟାର କରକଂକଣ ଭିଡ଼ିଥିଲା ମୋର ଗଳେ''

Digitized by srujan ka@gmail.com

ଅନେକ ଗଳ୍ପ ସୃଷ୍ଟି ହେଲା ହାରୀନ୍ଦ୍ର ଏବଂ ତାଙ୍କ ପରିବାର ନାମରେ । ଅପବାଦ ନାଗରା ବି ବାଜିଲା । ହାରୀନ୍ଦ୍ରଙ୍କୁ ତାଙ୍କ ବାପା ଡକାଇ ନେଇଗଲେ କଲିକତା । ସେଠାରେ ଦୁଇମାସ ରହି ସେ ଫେରିବାର କଥା ହାଇଦ୍ରାବାଦ । ବାପା ତାଙ୍କୁ ଡାକି କହିଲେ, ତୁ ଫେରିଯିବୁ ହାଇଦ୍ରାବାଦ । ତୋ ସାଂଗରେ ଆଉ ଦେଖାହେବ କି ନାହିଁ (ସତକୁ ସତ ଆଉ ଦେଖା ହୋଇ ପାରିଲା ନାହିଁ) କିନ୍ତୁ ମନେରଖ— Try to distinguish between love and infatuation. ବାପାଙ୍କ କୋଳ ଉପରେ ମୁହଁ ରଖି ହାରୀନ୍ କାନ୍ଦୁଥିଲେ । ବାପା ତାଙ୍କୁ ସାନ୍ତ୍ୱନା ଦେଇ କହିଲେ 'Do not worry. I had eloped with your mother at the age of eighteen.' ଆଜି ରୋମାନ୍ସ ନାହିଁ, ଅଛି ରେପ୍, କିଡ୍‌ନାପିଙ୍ଗ, ମୋଲେଷ୍ଟେସନ । ଏବଂ ଆଜି ବି ଜଣେ ତଥାକଥିତ ଉଚ୍ଚକୁଳ ସମ୍ଭୂତ ଯୁବକ ଯୁବତୀ ହରିଜନ-ଆଦିବାସୀ ବିବାହ କରୁଛି ତା'ହେଲେ ତାକୁ ଯେଉଁ ଦୁର୍ଦ୍ଦଶା ଭୋଗ କରିବାକୁ ପଡୁଛି ଛାଡ଼ ।

ମୋର କିନ୍ତୁ ଏଇଠି ଗୋଟିଏ କଥା ମନେପଡ଼େ । ପ୍ରସିଦ୍ଧ ସମାଜବାଦୀ ରସାୟନବିଦ୍ ଡକ୍ଟର ବଳଭଦ୍ର ପ୍ରସାଦ ଥିଲେ ଜଣେ ସୋସାଲିଷ୍ଟ । ଅନେକ ସୋସାଲିଷ୍ଟଙ୍କ ପରି (ଯେପରି ଆଚାର୍ଯ୍ୟ ନରେନ୍ଦ୍ର ଦେବ)ଙ୍କ ପରି ସେ କମ୍ୟୁନିଷ୍ଟ ବିରୋଧୀ ନ ଥିଲେ । ସେ ସବୁବେଳେ ଗଂଗାଧର ରଥ (ବର୍ତ୍ତମାନ ବିଶିଷ୍ଟ ଆଡ଼ଭୋକେଟ୍)ଙ୍କୁ ଜଣେ 'ସଚ୍ଚା କମ୍ୟୁନିଷ୍ଟ' ବୋଲି ବିଚାର କରନ୍ତି ଏବଂ କ୍ଲାସରେ ତାଙ୍କ ଉଦାହରଣ ଦିଅନ୍ତି । କାରଣ ସେ ବିବାହ କରିଛନ୍ତି ଅନ୍ୟ ଜାତିରେ । ଜନ୍ମରେ ବ୍ରାହ୍ମଣ କିନ୍ତୁ ବିବାହ କରିଛନ୍ତି ନିରୂପମା ଦାସ (ବର୍ତ୍ତମାନ ରଥ)ଙ୍କୁ । ସେ ଜନ୍ମ ହୋଇଥିଲେ କରଣ କୁଳରେ ।

ସେଦିନ କିନ୍ତୁ ଅରଣ୍ୟ ଥିଲା ଭୟାନକ ଅରଣ୍ୟ । ଦିନବେଳା ବାଘ ଦେଖିବା ରାସ୍ତା ଉପରେ ଏକ ସାଧାରଣ କଥା । ମୋ ପିଲାଦିନ ଆଜିର ରେଢ଼ାଖୋଲ ସହରର ଆଜି ଯେଉଁଠି ବସ୍‌ଷ୍ଟାଣ୍ଡ (ସେତେବେଳେ ବି ବସ୍ ସେଇଠି ରହୁଥିଲା) ସେଇଠି ଦିନ ଦି'ପହରରେ ବାଘ ଦେଖିଛି । ମଉସା ଲକ୍ଷ୍ମୀଧର ପଟ୍ଟନାୟକ ଥିଲେ ଫରେଷ୍ଟ ଅଫିସର, ଅବସରପ୍ରାପ୍ତ ହାଇକୋର୍ଟ ଜଜ୍ ୰ଶ୍ରୀ ଜୟକୃଷ୍ଣ ମିଶ୍ର ଥାଆନ୍ତି ଦେବାନ । ଫରେଷ୍ଟ ଅଫିସରଙ୍କ ଘରୁ ଦେବାନଙ୍କ ଘରକୁ ଗଲାବେଳେ ବାଟରେ ବସ୍‌ଷ୍ଟାଣ୍ଡ । ସେଇଠି ବ୍ୟାଘ୍ର ବାହାଦୂର୍‌ଙ୍କ ସହ ସାକ୍ଷାତ । କିନ୍ତୁ ବାଘକୁ Gentleman of the Forest କୁହାଯାଏ । ସେ ତା' ତରଫରୁ ଆକ୍ରମଣ କରେ ନା ।

ବାପା ମୋର ଜଙ୍ଗଲ ବିଭାଗ ଅଫିସର । କିନ୍ତୁ ବନ୍ଧୁକ ରଖି ନ ଥିଲେ ଏବଂ ନିର୍ଭୟରେ ନିବିଡ଼ ଅରଣ୍ୟ ଭିତରେ ଯିବା ଆସିବା କରୁଥିଲେ । ଥରେ ବାପାଙ୍କୁ ପଚାରିଥିଲି, ଜଙ୍ଗଲରେ ଯିବା ଆସିବା କରୁଚ । ବନ୍ଧୁକ ରଖୁନାହଁ । ସେ ହସିଲେ ଏବଂ କହିଲେ କାହିଁକି ? ଜନ୍ତୁମାନେ ମୋର କାହିଁକି ଅନିଷ୍ଟ କରିବେ ? ସେମାନେ କଣ ଜାଣନ୍ତି ନାହିଁ ଯେ ମୁଁ ତାଙ୍କରି ରକ୍ଷକ ? ଫରେଷ୍ଟ ଡିପାର୍ଟମେଣ୍ଟରେ କୌଣସି ଲୋକକୁ କେବେ ବାଘ ଖାଇବାର ଦେଖିଛୁ ନା ଶୁଣିଛୁ ?

Digitized by srujan ka@gmail.com

ସତରେ ସେ ପର୍ଯ୍ୟନ୍ତ ଏପରି କୌଣସି ଉଦାହରଣ ନ ଥିଲା । କିନ୍ତୁ ସେଇଟା ଜଂଗଲ ବିଭାଗୀୟ ଲୋକଙ୍କର Sixth Sense ବୋଲି ମୋର ଧାରଣା । କିନ୍ତୁ ସେତେବେଳେ ଓଡ଼ିଶାରେ କେବଳ ବାଲୁଗାଁ ରେଞ୍ଜରେ ବନ୍ଧୁକ ଦିଆଯାଉଥିଲା ଜଂଗଲ ବିଭାଗୀୟ କର୍ମଚାରୀମାନଙ୍କୁ । କାରଣ ସେଇ ଅଞ୍ଚଳରେ ଜନ୍ତୁ କମିଯିବା ହେତୁ ବାଘ ମଣିଷଖିଆ ପାଲଟୁଥିଲା । ଜଂଗଲରେ ଜନ୍ତୁ କମି ନ ଗଲେ ବା ବାଘ ବୁଢ଼ା ହୋଇ ଜନ୍ତୁ ଧରିବାକୁ ଅକ୍ଷମ ନ ହେଲେ ମଣିଷ ଖାଏନା । କିନ୍ତୁ ଥରେ ଖାଇଲେ ଆଉ ଅନ୍ୟ ଜନ୍ତୁ ଖାଇବାକୁ ଭଲ ପାଏନା । ବାଘର ସବୁଠାରୁ ପ୍ରିୟ ଖାଦ୍ୟ ମାଙ୍କଡ଼ । ତେଣୁ ବାଘ ଥିବାର ଇସାରା ମିଳେ ମାଙ୍କଡ଼ଙ୍କର ଗତିବିଧିରୁ ।

କିନ୍ତୁ ମୋର ମନେଥିବା ଦୁଇଟି ଘଟଣା ଆମ ପରିବାର ପାଇଁ ଉଦ୍‌ବେଗର କାରଣ ହୋଇଥିଲା । ଥରେ ବାପା କୁଲିମାନଙ୍କର ପେମେଣ୍ଟ ସାରି ଫେରୁଥିଲେ ଘରକୁ । ଟିକରପଡ଼ା ପାଖରେ । ଏକେ ତ ନିବିଡ଼ ଅରଣ୍ୟ, ସେଥିରେ ମଧ ଏକ ବୁଲାଣିଆ ରାସ୍ତାକୁ ଛାଡ଼ି ଏକ ସଳଖ ରାସ୍ତାରେ ସେ ଆସିବାକୁ ବସିଥିଲେ । ସାଂଗରେ ଥିଲା ତାଙ୍କର ଦୁର୍ଦ୍ଧାନ୍ତ ଦେଶୀକୁକୁର ପପି । ବେଳ ରତ ରତ ସମୟ ସଂଧ୍ୟା ହୋଇ ଆସିଥିଲା । ବାପାଙ୍କ ଗତିରୋଧ କରି ଠିଆ ହେଲା ଏକ ବିରାଟ ମହାବଳ ବାଘ । ବାପା ଓ ତାଙ୍କ କୁକୁର ମଧ ଠିଆ ହେଲେ । ବାଘ ଲାଙ୍ଗୁଳ ପିଟିଲା । ବାଘ ଲାଙ୍ଗୁଳ ପିଟିଲେ ମାଟିରେ ଟାଇଁ ଟାଇଁ ଶୁଭେ । ଗର୍ଜନ ମଧ କଲା । ପାଟିକୁ ମାଟି ପାଖରେ ରଖି । ସେ ଶବ୍ଦ ସର୍କସ ବାଘର ହୁଙ୍କାଳରୁ ଅନୁମାନ ମଧ କରିହେବ ନାହିଁ । ବାଘ ହୁଙ୍କାଳିଲେ ମାଇଲ ମାଇଲ ଧରି ଶୁଭେ । ଆଖ ପାଖର ମାଟି ଥରେ । ବାଘ ଓ ବାପା ଠିଆ ହୋଇଛନ୍ତି ମୁହାଁମୁହିଁ । କିନ୍ତୁ ବାଘ ତ ସମ୍ମୁଖରୁ ଆକ୍ରମଣ କରେ ନାହିଁ । ସେମାନେ ଠିଆ ହୋଇଛନ୍ତି ଘଣ୍ଟା ଘଣ୍ଟା ଧରି । ଏଣେ ବୋଉ ଉଦ୍‌ବିଗ୍ନ । ରାତି ହେଲାଣି । ବାଘ ହୁଙ୍କାଳ ଶୁଭୁଛି । ବାଧ ହୋଇ ଦଳେ ଲୋକ ଚାଲିଲେ ଖୋଜିବା ପାଇଁ । ସେମାନଙ୍କର ହଲ୍ଲା ଶୁଣି ବାଘ ଶେଷ ହୁଙ୍କାଳ ଦେଇ ଡେଇଁ ଚାଲିଗଲା ।

ଜଂଗଲରେ କୁକୁର ସାଥୀରେ ଥିଲେ ହାତୀ ହାବୁଡ଼ରେ ପ୍ରାଣ ଯିବା ସୁନିଶ୍ଚିତ । ହାତୀ ହାବୁଡ଼ରେ ପଡ଼ିଲେ ଲୋକେ ଦୌଡ଼ନ୍ତି ପାହାଡ଼ ଉପରେ ଥିଲେ ତଳକୁ କାରଣ ହାତୀ ଉପରକୁ ସିନା ଚଢ଼ିଯାଏ କିନ୍ତୁ ବିରାଟ ବପୁ ହେତୁ ତଳକୁ ଯାଇପାରେ ନାହିଁ । ଲୋକେ ଦୌଡ଼ନ୍ତି ଅଙ୍କା ବଙ୍କା ରାସ୍ତାରେ । କାରଣ ହାତୀ ତାର ବପୁ ହେତୁ ସିଧା ରାସ୍ତାରେ ଦୌଡ଼ିପାରେ କିନ୍ତୁ ଅଙ୍କା ବଙ୍କା ରାସ୍ତାରେ ଯାଇପାରେ ନାହିଁ । କିନ୍ତୁ କୁକୁର ତ ରହିବ ମାଲିକ ସାଥିରେ । ଆଉ ଭୁକିବ ମଧ । ତେଣୁ କୁକୁର ହାତୀ ପଲ ପାଇଁ ବିପଦ । ବାପାଙ୍କ ସାଥୀରେ ଥିଲା କୁକୁର । ଏକ ବାଙ୍କ ଜାଗାରେ ବାପା ବସିଲେ ପରିସ୍ରା କରିବା ପାଇଁ । କୁକୁର କିଛିବାଟ ଆଗକୁ ଯାଇ ଫେରି ଆସିଲା ଏବଂ ବାପା ଉଠିଯିବା ବେଳକୁ କାମୁଡ଼ି ଧରିଲା ପ୍ୟାଣ୍ଟକୁ । ଜମା ଛାଡ଼ିଲା ନାହିଁ । କିରେ ପପି କ'ଣ ହେଲା ? ବାପା ଶେଷକୁ କହିଲେ ଆଚ୍ଛା ଛାଡ଼, ମୁଁ ଦେଖେ । ଚୁପ୍‌ଚାପ୍ ଯାଇ ଦେଖିଲା ବେଳକୁ ଏକ ହାତୀପଲ ବାଉଁଶ ଖାଉଛନ୍ତି । ବଞ୍ଚିଗଲେ ଏକ ମୁହୂର୍ତ୍ତରେ କୁକୁର ପାଇଁ ।

Digitized by srujan ka@gmail.com

ମୋର ମନେ ପଡୁଚି । ସେଇଟା ବୋଧହୁଏ ୧୯୪୧ କି ୧୯୪୨ ମସିହା କଥା । ବାପା ଓ ତାଙ୍କ ସାଂଗରେ ନୂତନ କରି ଚାକିରିରେ ଯୋଗ ଦେଇଥାନ୍ତି ଗଣେଶ୍ୱର ମହାପାତ୍ର, ଫରେଷ୍ଟର । ବାପା ସାଂଗରେ ନେଇ ଯାଇଥିଲେ ମୋତେ । ବାପା ଓ ଗଣେଶ୍ୱର ବାବୁ ସାଇକେଲରେ । ମୁଁ ବସିଥାଏ ଗଣେଶ୍ୱର ବାବୁଙ୍କ ସାଇକେଲ ବାରରେ ଆଗରେ । ବାଟରେ ଗୋଟାଏ କାଠ ପୋଲ ପଡ଼ିଲା । ପୋଲଟାର ଅବସ୍ଥା ଭଲ ନ ଥିବା ଦେଖି ଦୁହେଁ ଓହ୍ଲାଇଲେ ସାଇକେଲରୁ । ଚାଲି ଚାଲି ପୋଲ ପାରି ହେଲୁ । ପୋଲ ଆର ପଟରୁ ରାସ୍ତା ସଂକୁଚିତ ହୋଇ ଉଠିଯାଇଛି ପର୍ବତ ଉପରକୁ । ଏ ପଟରେ ତୀଖ ପାହାଡ଼, ଆର ପଟରେ ପର୍ବତର ତଳ ।

ଆମେ ଚାଲିଛୁ, ବାଟ ଏକଦମ୍ ସଂକୀର୍ଣ୍ଣ । ହଠାତ୍ ବାପା କହିଲେ, ଗଣେଶ୍ୱର, ଦେଖିଲ ଆଗକୁ । ଗଣେଶ୍ୱର ବାବୁ ଜଂଗଲକୁ ନୂଆ । ରାସ୍ତା ଉଠି ଯାଇଛି ପାହାଡ଼ ଉପରକୁ । ସେ ନ ଅନେଇ ପଚାରିଲେ କଣ କି ଆଜ୍ଞା ! ଦେଖ, ଉପରକୁ ଅନାଅ । ଆରେ ବାପରେ ! ଏକ ବିରାଟ ମହାବଳ ଆସୁଛି ଆମ ଆଡ଼କୁ । ଗନ୍ଧରେ ନାକ ଫାଟି ପଡ଼ିଲା । ଆଉ ପର ମୁହୂର୍ତ୍ତରେ ବାଘ ଆଉ ଆମେ ମୁହାଁମୁହିଁ । ଦି' ପଟରେ ଯିବାକୁ ବାଟ ନାହିଁ । ଜଣକୁ ପଛକୁ ଫେରିବାକୁ ହେବ । ବାଘ ତ ଫେରିବ ନାହିଁ । ସେଇଟା ତାର ରାଜ୍ୟ ଆଉ ବାଘ ଆଗରେ ପଛକୁ ଫେରିବା ଅର୍ଥ ବିପଦକୁ ବରଣ କରିବା । ଗଣେଶ୍ୱର ବାବୁଙ୍କ ହାତରୁ ସାଇକେଲ ଖସିପଡ଼ିଲା । ବାଘ ସେ ପର୍ଯ୍ୟନ୍ତ ଆମ ଉପରେ ନିଘା କରି ନ ଥିଲା । ବର୍ତ୍ତମାନ ବାଘ ଆଉ ଆମେ । ବାପା ନିର୍ବିକାର ଚିତ୍ତରେ ଘଣ୍ଟି ଦେଲେ ସାଇକେଲରେ ଆଉ କଡ଼କୁ ଆଉଜି ଠିଆ ହେଲେ । ଉପାୟ କଣ ? ବାଘ ଅନେଇଲା ପୁଣି ଥରେ ତାର ସେଇ ଚାହାଣୀରେ । ଆଉ ତା'ପରେ ଧୀରେ ଧୀରେ ଚାଲିଲା ବୀର ଦର୍ପରେ ଆଗକୁ । ଆମେ ଚାଲିଲୁ ଆମ ବାଟରେ କିଛି କ୍ଷଣ ଅପେକ୍ଷା କରି ।

ଜଂଗଲରେ ସବୁଠାରୁ ବଡ଼ ଭୟ ହାତୀକୁ । ହାତୀପଲ ତ ଭୟାନକ । ଆଉ ଏକୁଟିଆ ହାତୀ ତା'ଠାରୁ ବେଶୀ ଭୟାନକ । ପଲ ହାତୀର ଅନେକ ସମୟରେ ଦୃଷ୍ଟି ଏଡ଼ାଇଦେଇ ଯାଇହୁଏ । କିନ୍ତୁ ଗୋଟିକିଆ ହାତୀର ! ରକ୍ଷା ନାହିଁ । ହାତୀ ପଛକୁ ଗୟଳ, ଦନ୍ତା ବାର୍ହା, ଭାଲୁ ଏବଂ ପରିଶେଷରେ ବ୍ୟାଘ୍ର ।

କିନ୍ତୁ ଏଇଟା କଲରା ପତରିଆ ବାଘ ପାଇଁ ପ୍ରଯୁଜ୍ୟ ନୁହେଁ । ଲିଓପାର୍ଡ଼ ବିଚକ୍ଷଣ ବୁଦ୍ଧିମାନ ଏବଂ କ୍ଷିପ୍ର । ଥରେ ମଣିଷ ମାରିଲେ ତା'ର ଉତ୍ପାତରେ ଏକ ବିରାଟ ଅଞ୍ଚଳରେ ଆତଙ୍କ ଖେଳିଯାଏ । କାରଣ ସେ ଆଜି ଏଠି ମଣିଷ ମାରିଲାଣି ତ କାଲି କୋଡ଼ିଏ ମାଇଲ ଦୂରରେ । ବାଘ ମଢ଼ ପାଖକୁ ପ୍ରାୟ ଫେରି ଆସେ । କିନ୍ତୁ ଲିଓପାର୍ଡ଼ ଫେରେ ନାହିଁ ପ୍ରାୟ । ତାକୁ ମାରିବା ଭାରି କଠିନ ।

ଏହିପରି ଏକ କଲରାପତରିଆ ବାଘ ମାତିଥିଲା ଅନୁଗୋଳ ଜଂଗଲରେ । ତାକୁ ମାରିବାକୁ ଯାଇଥିଲେ ଜିଲ୍ଲାପାଳ, ପୁଲିସ ସାହେବ ଏବଂ ଡି.ଏଫ.ଓ. । ବାଘ ଘାଉଲା ହୋଇ

Digitized by srujan ka@gmail.com

ପଶି ଯାଇଥିଲା ଏକ ଗୁମ୍ଫାରେ । ସାଂଗରେ ଥିବା ଦେଶୀ ପରିବାଣୁଆ ମନା କରିଥିଲା ଗୁମ୍ଫା ପାଖକୁ ନ ଯିବାପାଇଁ । ଏବଂ ତାହା ନ ମାନି ତିନି ଜଣଯାାକ ଯାଇଥିଲେ ଗୁମ୍ଫା ମୁହଁକୁ । ତିନିଜଣଙ୍କ ହାତରେ ବନ୍ଧୁକ । ତେଣୁ ସେମାନେ ନିଶ୍ଚିତ ଥିଲେ । ଗୁମ୍ଫା ଥିଲା ଉପରେ ଏବଂ ସେମାନେ ଥିଲେ ତଳେ ।

ହଠାତ୍ ଏକ ଲମ୍ଫ ଦେଲା ବାଘ । ଦୁଇଜଣ ସେଇଠି ଖତମ୍ । ଡି.ଏଫ.ଓ. ୱାରେନଙ୍କର ପିତାକୁ ବାଘ ଖାଇଗଲା । ସେ ବିଲାତ ଗଲେ ଚିକିତ୍ସା ପାଇଁ । ଆଉ ଫେରିଲେ ବହୁ ବର୍ଷ ପରେ ।

ଆଗରୁ କହିଛି ଯେ ଆମେ ସବୁ ଖରାଦିନେ ବାହାରେ ଶୋଉ । ଏଇଭଳି ଏକ ଲିଓପାର୍ଡ଼ ମାତିଥିଲା ସେତେବେଳେ ପୁରୁଣାଗଡ଼ ଅଞ୍ଚଳରେ । ମୋ ବାପାଙ୍କର ସିନା ବନ୍ଧୁକ ନ ଥିଲା । ଦାଦା କିନ୍ତୁ ବନ୍ଧୁକ ସାଥିରେ ସବୁବେଳେ । ବନ୍ଧୁକ ନେଇ ସେ ଯାଏ ଶିକାରକୁ । ମୋ ଭଉଣୀକୁ ସେ ସାଂଗରେ ନେଇଯାଏଁ ଶିକାରକୁ । ଭଉଣୀର ଅକାଳ ମୃତ୍ୟୁ ପରେ ସେ ଶିକାର ଛାଡ଼ିଦେଲା ପୂରାପୂରି । ଆମେ ଦି'ଭାଇ ଶୋଇଛୁ ଖଟ ଉପରେ । ବାରଣ୍ଡାରେ ବାପା, ବୋଉ, ଦାଦା ରାତ୍ରିଭୋଜନରେ ବ୍ୟସ୍ତ । ହଠାତ୍ ବୋଉର ଆଖି ପଡ଼ିଗଲା । ଆଗରେ ଠିଆ ହୋଇଛି ସେଇ ମଣିଷଖିଆ ଲିଓପାର୍ଡ଼ ଆଉ ଝାମ୍ପ ଦେବାକୁ ପ୍ରସ୍ତୁତ ହୋଇ ରହିଛି । ଗୋଟାଏ ମୁହୂର୍ତ୍ତ । ବୋଉ ଆଖି ଠାରି ଦେଲା ଦାଦାଙ୍କୁ, ନିର୍ଭୀକ ବିରଞ୍ଚି ନାରାୟଣ ଅଇଁଠା ହାତରେ ପାଖରେ ଥୁଆ ହୋଇଥିବା ଲୋଡ଼େଡ ବନ୍ଧୁକକୁ ଧରି ଠିକ୍ ଲିଓପାର୍ଡ ଝାମ୍ପଦେଲା ବେଳକୁ ଫାୟାର କଲେ । ଆଉ ଅବ୍ୟର୍ଥ ଥିଲା ସେଇ ଗୁଳି । ଆକାଶରେ ହିଁ ଓଲଟି ପଡ଼ିଲା ଲିଓପାର୍ଡ଼ । ପର ମୁହୂର୍ତ୍ତରେ ଆମର ବୋବାଳି ଆଉ ବାଘର ମୃତ୍ୟୁକାଳୀନ ଚିତ୍କାର ସହିତ ମାଟିକୁ ବିଦାରିବା ଦୃଶ୍ୟ । ଏ ପର୍ଯ୍ୟନ୍ତ ମନେ ପଡ଼ିଲେ ଦେହ ଶିହରି ଯାଏ ।

ଏଇପରି ଏକ ନିବିଡ଼ ଅରଣ୍ୟରେ ଜନ୍ମ ହୋଇଥିଲି ମୁଁ । ସେତେବେଳେ ଅନୁଗୋଳ ଆକାଶରେ ୰ଗିରିଜା ଭୂଷଣ ଦତ୍ତ ଜଣେ ଉଦୀୟମାନ ଜନନେତା ଭାବରେ ଉଦୟ ହୋଇ ଆସୁଛନ୍ତି । ମହାଦେବଙ୍କ ପ୍ରସାଦରୁ ପୁଅଟିଏ ପାଇଥିବା ହେତୁ ଏବଂ ଗିରିଜାଭୂଷଣ ଦତ୍ତଙ୍କର ନାମର ପ୍ରଭାବ ହେତୁ ମୋ ନାଁ ରହିଲା ଗିରିଜା ଭୂଷଣ ।

କିନ୍ତୁ ଜନ୍ମ ହେବାର ଉପକଣ୍ଠରେ ଏକ ଘଟଣା ଘଟିଗଲା- ଯାହା ଉଲ୍ଲେଖ କରିବା ଉଚିତ ହେବ ।

ସେତେବେଳେ ଅନୁଗୋଳ ଟାଉନ୍‌ରୁ ଟିକରପଡ଼ାକୁ ଏକ ପ୍ରାଇଭେଟ୍ ବସ୍ ସର୍ଭିସ ଥାଏ । ସକାଳେ ଯାଏ, ରାତିକୁ ଅନୁଗୋଳ ଫେରିଆସେ । ଓଡ଼ିଶାର ପ୍ରାଇଭେଟ୍ ବସ୍ ସର୍ଭିସ୍‌ର ପ୍ରତିଷ୍ଠାତା ହେଉଛନ୍ତି ୰ଚକ୍ରଧର ମିଶ୍ର । ଟୁରିଙ୍ଗ ସିନେମା, ପ୍ରାଇଭେଟ୍ ବସ୍ ସର୍ଭିସ୍, ଫଳ ବଗିଚା ହୋମିଓପାଥି ବହୁ ବିଭାଗରେ ସେ ହେଉଛନ୍ତି ଓଡ଼ିଶାର ଅଗ୍ରଗଣ୍ୟ ଏବଂ ସେଥିପାଇଁ ସେ ସ୍ମୃତ । ଅନୁଗୋଳ-ଟିକରପଡ଼ା ବସ୍ କିନ୍ତୁ ତାଙ୍କ ଦ୍ୱାରା ପରିଚାଳିତ ନୁହେଁ । ସେ ବସ୍ ଚଳାଉଥିଲେ

Digitized by srujan ka@gmail.com

ମୋର ଦାଦା ସଚ୍ଚିଦାନନ୍ଦ ପଟ୍ଟନାୟକ । ତାଙ୍କୁ ସାହାଯ୍ୟ କରୁଥିଲେ ସତ୍ୟବାଦୀ ବନ ବିଦ୍ୟାଳୟର ପୁରାତନ ଛାତ୍ର ତାଙ୍କର ସାନଭାଇ ନେତ୍ରାନନ୍ଦ ପଟ୍ଟନାୟକ । ସେମାନଙ୍କର ପୂର୍ବପୁରୁଷ ଅନୁଗୋଳ ରାଜାଙ୍କର ପାଞ୍ଜିଆ ଥିଲେ । କୁହାଯାଏ ପାଞ୍ଜିଆମାନଙ୍କର କାମଥିଲା ଟିକରପଡ଼ାରେ ସାତକୋଶିଆ ଘାଟୀ ଜଗିବା ଏବଂ ସମ୍ବଲପୁରରୁ କଟକକୁ ଆସୁଥିବା ବଣିଜ ନୌକାମାନଙ୍କ ଠାରୁ ମାହାସୁଲ ଆଦାୟ କରିବା । ଖାଲି ମାହାସୁଲ ଆଦାୟ କରୁଥିଲେ କି ତାହା ସାଙ୍ଗକୁ ଆଉକଣ ଆଦାୟ କରୁଥିଲେ ତାହା କହିହେବ ନାହିଁ । ଏକ ବିରାଟ ହତା ଭିତରେ ତାଙ୍କ ଘର ଥିଲା । ପୁରୁଣାଗଡ଼ରେ । ପୁରୁଣାଗଡ଼ ହେଉଛି ଅନୁଗୋଳଠାରୁ ଟିକରପଡ଼ା ଯିବା ବାଟରେ । ସେଇଟା ଥିଲା ଅନୁଗୋଳ ରାଜାଙ୍କର ରାଜଧାନୀ । ଦୂରରେ କୃଷ୍ଣଚକ୍ରଗଡ଼ । ଘେରା ଘେରା ପାହାଡ଼ର ଚକ୍ରବ୍ୟୂହ ଭିତରେ ରାଜାଙ୍କର ଅଭେଦ୍ୟ ଦୁର୍ଗ । ଇଂରେଜମାନେ ତାକୁ ଦଖଲ କରି ପାରିଲେ ନାହିଁ କୌଣସିମତେ । କିନ୍ତୁ ଇଂରେଜମାନେ ଭାରତବର୍ଷରେ ଅନ୍ୟତ୍ର ଯାହା କରିଥିଲେ ଏଠି ମଧ ସେଇଆ କଲେ । ରାଜାଙ୍କର ପୁଅକୁ ପ୍ରଲୋଭନ ଦେଖାଗଲା ଯେ ବାପାଙ୍କ ଅନ୍ତେ ତାଙ୍କୁ ରାଜା କରି ଦିଆଯିବ । ସେ ରାଜାଙ୍କୁ ଧରାଇ ଦେଲେ । କିନ୍ତୁ ରାଜା ହୋଇପାରିଲେ ନାହିଁ । ଯେଉଁ ସହଯୋଗୀମାନେ ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ ସେମାନଙ୍କୁ କେତେକ ଗାଁରେ ସରବରାକାରୀ ଦିଆଗଲା । ଏହାକୁ ନିମକହାରାମି ଜାଗିରଦାରୀ ବୋଲି କୁହାଯାଉଥିଲା । ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ମଧ ଏଇପରି ନିମକହାରାମି ଜାଗିରଦାରୀ ରହିଛି । ଇଂରେଜମାନଙ୍କର ବିଜୟ କେମିତି ହୋଇଥିଲା ଏସବୁ ତାହାର ପ୍ରତୀକ । ଏଇପରି "ନିମକହାରାମି ଜମିଦାରୀ" ରସେଲକୋଣ୍ଡା (ଅଧୁନା ଭଂଜନଗର) ଏବଂ ସମ୍ବଲପୁରରେ ମଧ ରହିଛି । ରାଜା ସିନା ଧରା ପଡ଼ିଲେ, କିନ୍ତୁ ପୁରୁଣା ଗଡ଼ରେ ଇଂରେଜ ଶାସନ ରହିପାରିଲା ନାହିଁ । ଅନୁ ନାମକ କଂଧର ନେତୃତ୍ୱରେ ପ୍ରବଳ ଗଣ୍ଡଗୋଳ ଦେଖାଗଲା । ବାଧହୋଇ ରାଜଧାନୀକୁ ଉଠାଇ ଅଣାଗଲା ବର୍ତ୍ତମାନର ଅନୁଗୋଳ ଟାଉନ୍‌କୁ । ଅନୁ କଂଧର ଗୋଳ ହେତୁ ଏହାର ନାମ ରହିଗଲା ଅନୁଗୋଳ ହୋଇ । ପୃଥିବୀରେ ସର୍ବତ୍ର ସହରର ନାମକରଣ ହୋଇଛି ବିଶିଷ୍ଟ ବ୍ୟକ୍ତିଙ୍କ ନାମରେ ବା ରାଜାମାନଙ୍କ ନାମରେ । କିନ୍ତୁ ଦିଓଟି ବୋଧହୁଏ ବ୍ୟତିକ୍ରମ । ଢେଙ୍କା ଶବର ନାମରେ ଢେଙ୍କାନାଳ, ଅନୁ କଂଧର ନାମରେ ଅନୁଗୋଳ ।

ରାଜା ଗଲେ, ରାଜ୍ୟ ଗଲା, ରାଜଧାନୀ ଉଠିଆସିଲା ପୁରୁଣାଗଡ଼ରୁ । ଶିରୀ ତୁଟିଗଲା । ପାଞ୍ଜିଆ ଘର ମୋ ବାପାଙ୍କର ମାଉସୀ ଘର । ସେମାନେ ଅନ୍ୟ କାର୍ଯ୍ୟରେ ହାତ ଦେଲେ । ସେମାନଙ୍କର ଘରର ହତା ଖୋଳିଲା ବେଳେ ସେଥିରୁ ମଣିଷ କଂକାଳ, ବିଭିନ୍ନ ପାଟ ଲୁଗାରେ ବନ୍ଧା ଜିନିଷ ମିଳୁଥିଲା । ମୂଲ୍ୟବାନ ଜିନିଷ ମିଳିଥିଲା କି ନାହିଁ ତାହା କହି ପାରିବି ନାହିଁ । ବୋଧହୁଏ ନୁହେଁ । ମିଳିଥିଲେ ସେମାନଙ୍କର ଭାଗ୍ୟ ପରିବର୍ତ୍ତନ ହୋଇ ଯାଇଥାନ୍ତା । ପାଞ୍ଜିଆଙ୍କର ଦୁଇ ପୁଅ । ସାନପୁଅ ନେତ୍ରାନନ୍ଦ ସ୍ୱାଧୀନତା ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ ଏବଂ

Digitized by srujan ka@gmail.com

ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ଥିଲେ । ବଡ଼ ସଚ୍ଚିଦାନନ୍ଦ ବସ୍ ବ୍ୟବସାୟ କରୁଥିଲେ ।

ଏଇ ବସ୍‌ରେ ଯାତ୍ରୀମାନଙ୍କ ପାଇଁ ଶୀତ ଦିନରେ କମ୍ବଳ ଯୋଗାଇ ଦିଆଯାଉ ଥିଲା । ପ୍ରବଳ ଶୀତ । ଯାତ୍ରୀମାନେ କମ୍ବଳ ଘୋଡ଼ାଇ ବସନ୍ତି । ଗାଡ଼ିରୁ ଓହ୍ଲାଇଲାବେଳେ କମ୍ବଳ ଫେରାଇ ଦେଇ ଯାଆନ୍ତି ।

ଫେବୃଆରୀ ୮, ୧୯୩୧ । ଏଇ ସକାଳ ବସରେ ଏକ ଅଭିନବ ଯାତ୍ରୀ ଥିଲେ । ତାଙ୍କର ପରିଧାନ ଥିଲାକେବଳ କଉପୁନୀଟିଏ । ସମଗ୍ର ଦେହ ଖୋଲା । ସେ ବସିଥିଲେ ନିର୍ବିକାର, ନିର୍ଲିପ୍ତ ଭାବରେ ବସ୍‌ରେ । କମ୍ବଳ ଘୋଡ଼ି ହୋଇ ମଧ ଯାତ୍ରୀମାନେ ଟିକିଏ ଟିକିଏ ଥରୁଥିଲେ । ସେ କିନ୍ତୁ ବସିଥିଲେ ନିର୍ବିକାର ଭାବରେ, ଆଖିବୁଜି । ଜଣେ କିଏ କହିଲା ଆରେ, ବାବାଜୀଙ୍କୁ କମ୍ବଳଟିଏ ଦିଅ । ବାବାଜୀ ଆଖି ଖୋଲିଲେ । କହିଲେ କାହିଁକି ବାବା ? ତମେ ସମସ୍ତେ ଗାଣ୍ଡିମୁଣା, ଦେହମୁଣା ପିନ୍ଧିଛ, କମ୍ବଳ ଘୋଡ଼ି ହୋଇଛ । ତଥାପି ଥରିଯାଉଛ । ଆଉ ବାବା ତ ବସିଛି ସେମିତି । ତା' ଦେହ ବି ଟିକିଏ ଥରିଯାଉଛି । ସେ ଯାହାହେଉ କଥାଟା ପ୍ରଘଟ ହୋଇଗଲା ଯେ ଜଣେ ବିଖ୍ୟାତ ବାବାଜୀ ଯାଉଛନ୍ତି ଗାଡ଼ିରେ । ଆଗରୁ ଲେଖିଛି ମାମୁଁ ଯାଇ ପହଞ୍ଚିଥିଲେ ଭଉଣୀର ବିପଦ ଖବର ପାଇ । ଗୋବିନ୍ଦ ମାମୁଁ । ଭୁଲିବାର ନୁହେଁ । ମଉସା ଥାଆନ୍ତି ରେଢ଼ାଖୋଲରେ ଫରେଷ୍ଟ ଅଫିସର । ହେଲା 'ବ୍ଲାକ ୱାଟର ଫିଭର' । ସେ ଜ୍ୱର ଆଉ ଆଜିକାଲି ନାହିଁ । ଲୋପପାଇ ଗଲାଣି । ଆଗେ ଫରେଷ୍ଟ ଡିପାର୍ଟମେଣ୍ଟରେ ଏଇ ଜ୍ୱରକୁ ପ୍ରାଣ ଭୟ । ଏଭଳି ଘଟଣା ଘଟିଛି ଯେ ସମଗ୍ର ବଂଶ ଦିନ କେଇଟାରେ ଶେଷ ହୋଇ ଯାଇଛନ୍ତି । ପରିସ୍ରା ରକ୍ତବର୍ଣ୍ଣ ହୋଇଯାଏ । ଜ୍ୱର ହୁଏ । ସେଇଯୋଗୁଁ ପ୍ରାୟ ପ୍ରତି ଫରେଷ୍ଟ ଅଫିସ୍‌ରେ ଚଢ଼େଇ ଗୁଡ଼ିଆ ନାମକ ଏକ ଗଛ ଲଗାଯାଇ ଥାଏ । ଏଇ ଗଛର ସବୁଜ ପତ୍ରକୁ ଶିଝେଇ ଦେଲେ ପାଣି ଗାଢ଼ ରକ୍ତବର୍ଣ୍ଣ ହୋଇଯାଏ । ସେଇ ସିଝା ପାଣି ହିଁ ଥିଲା ଏଇ ରୋଗର ଏକମାତ୍ର ଔଷଧ । ମଉସାଙ୍କୁ ହେଲା ବ୍ଲାକ୍ ୱାଟର ଫିଭର । ମଉସା, ଲକ୍ଷ୍ମୀଧର ପଟ୍ଟନାୟକଙ୍କୁ ଥରେ ନୁହେଁ ତିନିଥର ବ୍ଲାକ୍ ୱାଟର ଫିଭର ହୋଇଛି । କୁହାଯାଏ ଯେ ଏଇ ରୋଗର ଦ୍ୱିତୀୟ ଆକ୍ରମଣରୁ କେହି ରକ୍ଷା ପାଇ ନାହାନ୍ତି । କିନ୍ତୁ ମଉସା ଏକ ବ୍ୟତିକ୍ରମ । ଅଶୀରୁ ଊର୍ଦ୍ଧ୍ୱ ବୟସରେ ତାଙ୍କର ପରଲୋକ ହୋଇ ଯାଇଛି ଏଇ କିଛି ବର୍ଷ ତଳେ । ନୟାଗଡ଼ ଦକ୍ଷିଣ କାଳୀ ସାହିରେ ତାଙ୍କର ଘର । ମଉସାଙ୍କର ବେମାର ଖବର ପାଇ ଗୋବିନ୍ଦ ମାମୁଁ ବଜାରରୁ ଔଷଧ ଖୋଜିଲେ । ସେତେବେଳେ କି ଔଷଧ ମାର୍କେଟରେ ! ଆଜି ଭଳି ତ ପାଟେଣ୍ଟ ମେଡିସିନ୍ ନ ଥିଲା । ପୁଣି ଯୁଦ୍ଧ ବେଳ । କିଛି ଜର୍ମାନ ତିଆରି ଔଷଧ ମାର୍କେଟରେ ମିଳେ । ବିଭିନ୍ନ ପ୍ରକାରର ରୋଗ ପାଇଁ ସେଇ ଔଷଧ । ମାମୁଁ ସେ ଔଷଧ ଧରି ବାହାରିଲେ ରେଢ଼ାଖୋଲ ଯିବାପାଇଁ । ହଠାତ୍ ବସ୍ ବନ୍ଦ । ବଜାରରେ ପେଟ୍ରୋଲ ନାହିଁ । କୋଇଲାରେ ଚାଲୁଥିବା ଗାଡ଼ି ପଛକୁ ଆସିଲା । ବସ୍ ନାହିଁ । ଯିବେ କେମିତି ? ସେତେବେଳେ ସମ୍ବଲପୁର ଅନୁଗୋଳ ରାସ୍ତା ଆଜିଭଳି ନ ଥିଲା । ପିଚୁର ପ୍ରଶ୍ନ ଉଠୁ ନାହିଁ ।

Digitized by srujan ka@gmail.com

ତା'ଛଡ଼ା ଗହନ ଜଂଗଲ । ବାଘ, ଭାଲୁ ଛଡ଼ା ହାତୀ ଭୟ । ଆମେ ତ ସପରିବାର ଦୁଇ ଚାରିଥର ଫେରିଛୁ ବାଟରୁ ହାତୀ ପଲ ଯୋଗୁଁ । କିନ୍ତୁ ମାମୁଁ ଚାଲିଲେ ଏକାକୀ ସାଇକେଲରେ । ଦୀର୍ଘ ପଚାଶ ମାଇଲ ରାସ୍ତା ଅତିକ୍ରମି ସେ ଭଉଣୀଜୋଇଁକୁ ଔଷଧ ଦେଲେ ଏବଂ ରୋଗରୁ ରକ୍ଷାକଲେ ।

ତାଙ୍କର ପରଲୋକ ହୋଇଗଲା, ଷ୍ଟ୍ରାଙ୍ଗୁଲେଟେଡ୍ ହାର୍ଣ୍ଣିଆରେ ତାଙ୍କ ଗାଁରେ ଅତ୍ୟନ୍ତ ଅସହାୟ ଅବସ୍ଥାରେ । ଆମେ ଜାଣି ମଧ ପାରିଲୁନି । ମୁଁ ନିଜେ ତାଙ୍କ ଋଣର କାଣିଚାଏ ଶୁଝି ପାରିଲିନି । ଅବଶୋଷ ରହିଗଲା । ମୋ ବୋଉର ଦୁଃଖ ଲାଘବ କରିବା ପାଇଁ ଆସିଥିଲେ ଆଠ ଦିନ ପାଇଁ । ରହିଗଲେ ଆଠବର୍ଷ । ବିବାହ ତାଙ୍କର ବିଳମ୍ବିତ ହୋଇଗଲା । କିନ୍ତୁ ଭଉଣୀମାନଙ୍କର ଦୁଃଖରେ ସେ ଠିଆ ହୋଇଥିଲେ ଗର୍ବିତ ସାଆନ୍ତଙ୍କ ଭଳି । ସେଇ ଉଚା ପର୍ବତର ଟୀଖ ଭଳି ।

ମାମୁଁ ସେଦିନ ଖବର ପାଇଥିଲେ ସେ ବାବାଜୀଙ୍କ କଥା । ବସ୍ ଅଟକି ଥିଲା । ଏବଂ ମାମୁଁ ତାଙ୍କୁ ନିବେଦନ କରିଥିଲେ ଭଉଣୀକୁ ଦେଖିଯିବା ପାଇଁ । ଆଗରୁ କହିଛି ସେତେବେଳେ ଜଂଗଲ ଭିତରେ ହାକିମ ଦୁଇଜଣ, ବାଘ ଏବଂ ଜଂଗଲ ବିଭାଗର କର୍ମଚାରୀ । ତେଣୁ ବସ୍ ବି ଅଟକି ଥିଲା ଏବଂ ବାବାଜୀ ବି ଆସିଥିଲେ । ରାତି । ଏକମାତ୍ର ସାକ୍ଷୀ ଥିଲା ଆକାଶରେ ଚନ୍ଦ୍ର ଏବଂ ତଳେ ଲଣ୍ଠନ ଆଲୁଅ ଏବଂ ଜୁଳୁଜୁଳିଆ ପୋକ । ଖଦ୍ୟୋତ । ବାବା ଆସି ଆଶୀର୍ବାଦ କରିଥିଲେ ଏବଂ ଭବିଷ୍ୟବାଣୀ କହିଥିଲେ ଯେ ପୁଅଟିଏ ହେବ ଏବଂ ସେ ପୁଅ ''ବିଶ୍ୱପ୍ରସିଦ୍ଧ'' ହେବ । ତାଙ୍କର ବିଶ୍ୱଟାର ସୀମାରେଖା କେତେଥିବ କେଜାଣି ? ସମୁଦ୍ର ପାରି ହେଲେ ଜାତି ଯିବା ତ ସେ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ସେ କହିଥିଲେ ଯେ ଏଇ ନାରୀ ଏକ ପୁତ୍ର ଜନ୍ମ କରିବ ଏବଂ ଏଇ ଗାଈ ଏକ କଳା ଅଣ୍ଡିରା ବାଛୁରୀ ଜନ୍ମ କରିବ । ବାଟରେ ସେ ଏକ ଗର୍ଭଣୀ ଗାଈ ଭେଟିଥିଲେ ଆମ ଘରେ । ସେ ବାଛୁରୀକୁ ଶିବଙ୍କ ନାମରେ ଷଣ୍ଢ କରି ଦିଆଯିବ ।

ବାବା ଫେରିଲେ । ସେଇ ରାତିରେ ଗାଈ ଜନ୍ମ କଲା ଏକ ଅଣ୍ଡିରା ବାଛୁରୀ । ରଂଗ କୁଆଡ଼େ ଧଳା ଥିଲା କିନ୍ତୁ ସକାଳକୁ କଳା ପାଲଟି ଯାଇଥିଲା । ମୋର ମନେହୁଏ ବାଛୁରୀଟି କଳା ହିଁ ଥିଲା । ନାଳ ଲାଗି ଧଳା ଦେଖାଯାଉଥିଲା ଲଣ୍ଠନର କ୍ଷୀଣ ଆଲୋକରେ । ଆଉ ସକାଳକୁ ତା' ମାଆ ତାକୁ ଚାଟି ସଫା କରି ଦେଇଥିଲା । ଚିରାଚରିତ ଭାବରେ ବାଛୁରୀ କଳା ହୋଇଯାଇଥିଲା । ଏହା ମୋର ଅନୁମାନ । କିନ୍ତୁ ଦାଦା ଛଡ଼ା ଅନ୍ୟ କେହି ଏହି ମତାମତକୁ ପାସଙ୍ଗରେ ମଧ ପକାଉ ନ ଥିଲେ । ସେଇ ରାତିରେ ମୁଁ ଜନ୍ମ ହେଲି ।

ଫେବୃଆରୀ ୯, ୧୯୩୧ ମସିହା ।

Digitized by srujan ka@gmail.com

# କୁଳ ଦୈବର ଅଧୀନ କିନ୍ତୁ ପୌରୁଷ ମୋର ଅଧୀନ

ମୋର ବଂଶ ପରିଚୟ ବିଶେଷ ନାହିଁ । ଥିବ । କିନ୍ତୁ ସେ ସଂପର୍କରେ ମୋର ଜ୍ଞାନ ଖୁବ୍ କମ୍ । କାରଣ ମୁଁ ବଢ଼ିଛି ତଥାକଥିତ ଜନ୍ମମାଟିର ବାହାରେ । ତେଣୁ ମୋର ଅନ୍ୟମାନଙ୍କ ପରି ତଥାକଥିତ ଜନ୍ମମାଟି ପ୍ରତି ସ୍ୱତନ୍ତ୍ର ମମତା ନାହିଁ । କାରଣ ଏଇ ମାଟି, ତା'ର ଖରା, ତା'ର ବର୍ଷା, ତା'ର ସାଧବ ବୋହୂ ପୋକ, ତାର ଖରସ୍ରୋତା ନଦୀ, ନାରୀର ଉନ୍ନତ ବକ୍ଷ ପରି ତାହାର ପାହାଡ଼ ଚୂଡ଼ା, ପାଚିଲା ଧାନର ଗନ୍ଧ, ନଈରୁ ପାଣି ମାଠିଆରେ ବୋହି ଆଣୁଥିବା ସଦ୍ୟସ୍ନାତା ରମଣୀ, କାହାରି ସହିତ ମୋର ପରିଚୟ ନିବିଡ଼ ନୁହେଁ । ଦେଖିଚି କେବେ ଅକସ୍ମାତ, ଦୈବାତ୍ । କୌଣସି ଏକ ପୂଜା ଛୁଟିରେ ବା ଖରା ଛୁଟିରେ । ସମଗ୍ର ଭାରତବର୍ଷ ମୋର ଜନ୍ମମାଟି ପାଲଟିଛି ।

ମୋର ପରିବାରର ଅନେକ ଲୋକଙ୍କ ସହିତ ପରିଚିତି ନାହିଁ । ନାହିଁ ଏପରି ଭୟାନକ ଭାବରେ ଯେ କହିବାର କଥା ନୁହେଁ । ମୁଁ କଟକ ରେଲବାଇ ଷ୍ଟେସନକୁ ଯାଇଛି କୌଣସି ଏକ ସଂଧ୍ୟାରେ । ସେଠାରେ ରେଳବାଇ ପ୍ଲାଟଫର୍ମରେ ଦେଖାହେଲା ହଠାତ୍ ମୋର ବଡ଼ବାପା ପୁଅ ଭାଇଙ୍କ ସାଂଗରେ । ସେ କେଉଁଠି ଚାକିରି କରୁଥିଲେ ତା'ବି ମୋତେ ଜଣା ନ ଥିଲା । ପଚାରିଲି କୁଆଡ଼େ ଯାଉଛ ? ସେ କହିଲେ ବୋଉ ଚାଲିଗଲା । ଖବର ପାଇ ଘରକୁ ଯାଉଛି । ଶୈଶବର ଏକ ମ୍ଳାନ ସ୍ମୃତି ପହଁରି ଗଲା । ସେତିକି । ପାରମ୍ପରିକ୍ ଦୁଃଖ ପ୍ରକାଶ କରି ମୁଁ ଫେରିଲି ହଷ୍ଟେଲକୁ । ମୁଁ ଗାଁକୁ ଯିବାକଥା ଭାବିନାହିଁ କି ସେ ମୋତେ କହି ନାହାନ୍ତି । ବାଟରେ ଭାବୁ ଭାବୁ ମନେ ପଡ଼ିଲା ଆରେ, ଯେ ମରିଗଲା ସେ ତ ମୋର ମାମା । ମୋତେ ତ ଶୁଦ୍ଧି ହେବାକୁ ପଡ଼ିବ । କିନ୍ତୁ ମୋ ବୋଉର ପରଲୋକ ହେଲା ଅନୁଗୋଳ ଟାଉନ୍‌ରେ । ସେ ଖବର ଗାଁରେ ପହଞ୍ଚିଲା ବେଳକୁ ମୋର ଭାଇ ଖିଅର ହେଉଥିଲେ । ଅଧାରୁ ଖିଅର ଛାଡ଼ି ସେ ଦୌଡ଼ିଥିଲେ ଟାଉନ୍‌କୁ ।

'ସମ୍ପର୍କ ଢୋଲ ପରି, ବଜାଇଲେ ବାଜେ' । ଶ୍ରୀମତୀ ଶାନ୍ତି ଦାସ ବର୍ତ୍ତମାନ ନେତ୍ରୀ । ସେତେବେଳେ ସେ ରେଭେନ୍‌ସା କଲେଜରେ ପଢୁଥାନ୍ତି । ରହୁଥାନ୍ତି ମହିଳା ହଷ୍ଟେଲରେ । ସେ ମୋ ମାଉସୀ ପୁଅ ଭାଇର ଶାଳୀ । ଆତ୍ମୀୟ ହିସାବରେ ମୁଁ ତାଙ୍କ ପାଖକୁ ଯାଇ ମଝିରେ ମଝିରେ ବୁଝି ଆସିବାର କଥା ହାନିଲାଭ । କିନ୍ତୁ ଯାଇ ପାରି ନ ଥିଲି ବହୁଦିନ ଧରି । ହଠାତ୍ ଦେଖାହେଲା କଲେଜ ଛକରେ । ଶାନ୍ତି ପିଲାଦିନୁ କୁହାଳିଆ । ସେଇ ଗୁଣ ବଢ଼ି ଏବେ ସେ ବିଭିନ୍ନ ଭାଷାରେ ଅନର୍ଗଳ ମନମୁଗ୍ଧକର ବକ୍ତୃତା ଦେଇ ପାରୁଛି । ବକ୍ତୃତା ବେଶ ଚିତ୍ତାକର୍ଷକ ହେଉଛି । ହଠାତ୍ ରେଭେନ୍‌ସା କଲେଜ ଛକରେ ଦେଖା । ଲୋକ ଗହଳି । କିନ୍ତୁ ସେ କି ମାନେ ତାକୁ । କହିଲା

Digitized by srujan ka@gmail.com

ପାଙ୍କୁ ଭାଇ ବୁଝିଲ, ସମ୍ପର୍କ ଢୋଲପରି, ବଜାଇଲେ ବାଜେ । କେତେଦିନ ହେଲା ତମ ସାଂଗରେ ଦେଖାହୋଇ ପାରି ନାହିଁ । ସତରେ ତ । ସଂପର୍କକୁ ନ ମାଜିଲେ ତ ଘୋଷରା ହୋଇଯାଏ । ଘରେ ଯାଇ କହିଲି ଶାନ୍ତି କଥା । ଦାଦା, ମୋର କହିଲେ, ସେ ଠିକ୍ କହିଛି । ଆଉ ମରିବା ପର୍ଯ୍ୟନ୍ତ ସେ ସେଇକଥା କହୁଥିଲେ ବାରମ୍ବାର ।

ଏଇ ସଂପର୍କ ମୋର ବିଚିତ୍ର । ବାପା, ଦାଦା, ଯୁଆଡ଼େ ଚାକିରି କରିଛନ୍ତି ସେଇଆଡ଼େ ଯାଇଛି । ପଢ଼ିଛି ସେଇ ସ୍କୁଲମାନଙ୍କରେ । ଯେଉଁ ବନ୍ଧୁ ବାନ୍ଧବଙ୍କ ସହିତ ସେଇ ସ୍ଥାନମାନଙ୍କରେ ଦେଖା ହୋଇଛି ସେମାନଙ୍କୁ ଜାଣିଛି, ପରିଚିତ ହୋଇଛି । କିନ୍ତୁ ପରେ ସ୍ଥାନାନ୍ତର ହେତୁ ସେ ସଂପର୍କ ପୁଣି ମଳିନ ପଡ଼ି ଯାଇଛି । ଅନେକ ବାନ୍ଧବ, ବନ୍ଧୁ ଭାବରେ ରହିଯାଇଛନ୍ତି । ବାନ୍ଧବ ସଂପର୍କ ଗଢ଼ିଉଠିପାରି ନାହିଁ । ଏଇ କଟକରେ ଅନେକ ଅଛନ୍ତି ଯେଉଁମାନେ ମୋର ପାରିବାରିକ ସମ୍ପର୍କୀୟ, କିନ୍ତୁ ସେମାନଙ୍କ ସହିତ ସଂପର୍କ ନିବିଡ଼ ହୋଇପାରି ନାହିଁ । ବେଶୀ ବନ୍ଧୁ ଓରିଏଣ୍ଟେଡ ହୋଇଯାଇଛି । ଏଇଟା ଠିକ୍ ଅନ୍ୟମାନଙ୍କ କ୍ଷେତ୍ରରେ ଘଟିଛି କି ନା ମୁଁ ଜାଣେ ନାହିଁ ।

ଜେଜେବାପାଙ୍କ ନାମ ଥିଲା ସତ୍ୟବାଦୀ ପଟ୍ଟନାୟକ । କୁହାଯାଏ ଯେ, ତାଙ୍କ ବାପା, ଦାଦା ପ୍ରଭୃତି ଦଶପଲ୍ଲା, ବାଙ୍କୀ ଅଞ୍ଚଳରୁ ଚାଲିଆସିଥିଲେ କୌଣସି ଏକ ମେଳି କାରଣରୁ । ଠିକ୍ କହିପାରିବି ନାହିଁ । ଗୋଟିଏ ଶାଖା ପୁରୁଣାଗଡ଼ ଓ ଆଉ ଗୋଟିଏ ଶାଖା କାଙ୍ଗୁଲାରେ ବସତି ସ୍ଥାପନ କଲେ । ପୁରୁଣାଗଡ଼ ଶାଖାରେ ରହିଗଲେ ମାଗୁଣୀ ପଟ୍ଟନାୟକ । ତାଙ୍କର ତିନିପୁଅ । ସମସ୍ତେ ପ୍ରସିଦ୍ଧି ଲାଭ କଲେ । ଦିବାକର, ସୁଧାକର୍ର ଏବଂ ବିଶେଶ୍ୱର । ପ୍ରଚଣ୍ଡ ମେଧାବୀ ଛାତ୍ର ଥିଲେ ସେମାନେ । ଦିବାକର ହେଡମାଷ୍ଟର ହେଲେ । ପରେ ରାୟସାହେବ ଉପାଧି ପାଇଲେ ଏବଂ ଥରେ ୧୯୩୬ ମସିହା ନିର୍ବାଚନରେ ଠିଆ ହୋଇଥିଲେ । ଭିଣ୍ଟେଜ୍ ମୋଟର ଗାଡ଼ି ତାଙ୍କର ଏକ ସଉକ ଥିଲା । ତାଙ୍କର ବିରାଟ ହତା ଭିତରେ ଚାରି ଛଅଟା ପୁରୁଣା ମୋଟର ଗାଡ଼ି ପଡ଼ି ରହିଥାଏ ସବୁବେଳେ ଏବଂ ହୁଏତ କୌଣସିଟା ଚାଲିବା ଅବସ୍ଥାରେ ନ ଥିଲା । କାହା ଉପରେ ଧାନ ପୁଡୁଗ ରଖା ହୋଇଥିବ ତ କାହା ଉପରେ ଅଖା ଗଦା ହୋଇଥିବ । ତାଙ୍କୁ ଏକ ମୋଟର ଗାଡ଼ିରେ ଲୋକେ ଠେଲି ଠେଲି ବଜାରକୁ ବା ଡାକ୍ତରଖାନାକୁ ଆଣନ୍ତି । ସେ ଗାଡ଼ିରେ ବସି ଷ୍ଟିଓରିଂ ଧରି ଥାଆନ୍ତି । ପୁରୁଣା ଫୋର୍ଡ଼ ବା ଅଷ୍ଟିନ । ତେଣୁ ଦୁଇଜଣ ଠେଲିଲେ ଗଡ଼େ । ମଝିଆଁ ପୁଅ ସୁଧାକର ପଟ୍ଟନାୟକ ସରକାରୀ ଅଫିସର କିନ୍ତୁ ଐତିହାସିକ ଭାବରେ ସେ ଓଡ଼ିଶାରେ ସ୍ମୃତ ହୋଇ ରହିବେ । ସେ ମଧ ରାୟସାହେବ ଉପାଧି ପାଇଥିଲେ । ସାନପୁଅ ବିଶେଶ୍ୱର ପଟ୍ଟନାୟକ ଆଇ.ଏ.ଏସ୍ । ପ୍ରାୟ ୯୧/୯୨ ବୟସରେ ତାଙ୍କର ପରଲୋକ ହୋଇ ଯାଇଛି । କିନ୍ତୁ ସେ ଗଣିତଜ୍ଞ ଏବଂ ରାଷ୍ଟ୍ରୀୟ ପାଞ୍ଜିକାର ଭାବରେ ଖ୍ୟାତ । ଗଣିତ ଓ ଚାକିରି ଛଡ଼ା ସେ ଆଉ କିଛି ଜାଣନ୍ତି ନାହିଁ । କଥା ତ କୁହନ୍ତି ନାହିଁ । ଗଙ୍ଗା ମନ୍ଦିର କୋଠାର ତୃତୀୟ ମହଲାରେ ବସି ଆକାଶକୁ ଚାହିଁ ନକ୍ଷତ୍ର ଦେଖିବା ଏବଂ ଗଣିତ କଷିବା ତାଙ୍କର ଏକମାତ୍ର କାର୍ଯ୍ୟ ।

Digitized by srujan ka@gmail.com

ଆମ୍ଭମାନଙ୍କୁ ସେ ଚିହ୍ନି ମଧ ପାରନ୍ତିନି । ତାଙ୍କ ଭାଇ (ମୋ ବାପା ଓ ଦାଦା)ଙ୍କୁ ସେ ଚିହ୍ନି ପାରନ୍ତି କିନ୍ତୁ ଦି'ଘଣ୍ଟା ବସିଲେ ଦୁଇ ଚାରିପଦ କଥା ହୁଅନ୍ତି । ଦିବାକର ପଟ୍ଟନାୟକଙ୍କ ବଡ଼ପୁଅ ଡକ୍ଟର କ୍ଷୀରୋଦ ପଟ୍ଟନାୟକ ପବ୍ଲିକ ସର୍ଭିସ କମିଶନର ସଭ୍ୟଭାବରେ ଅବସର ଗ୍ରହଣ କରିଛନ୍ତି । ସେ ରେଭେନ୍‌ସା କଲେଜର ପ୍ରିନ୍‌ସପାଲ ଥିଲେ । ଥରେ ବନ୍ଧୁ ତ୍ରିଲୋଚନ କାନୁନ୍‌ଗୋ ଆସି ମୋତେ କହିଲେ ଯେ ଗିରିଜା ବାବୁ, ମୁଁ କଣ ଶୁଣିଲି ଯେ କମଳ ଅପା, (ମୋ ସ୍ତ୍ରୀ) କୁଆଡ଼େ ପ୍ରିନ୍‌ସପାଲଙ୍କୁ ଦେଖିଲେ ମୁଣ୍ଡରେ ଓଢ଼ଣା ଦେଉଛନ୍ତି ଆଉ ମୁଣ୍ଡିଆ ମାରୁଛନ୍ତି । ଏ କି କଥା ? ତାଙ୍କୁ କିଏ ଯାଇ କହିଛି ଯେ ପ୍ରିନ୍‌ସିପାଲଙ୍କୁ ଡକ୍ଟର କମଳ କୁମାରୀ ପଟ୍ଟନାୟକଙ୍କର ଇମିତି ଡର ମେ ସେଇ ଭୟରେ ଓଢ଼ଣା ଦେଇ ପକାନ୍ତି ଏବଂ ଅନ୍ୟମାନେ ନମସ୍କାର କଲାବେଳେ ସେ ମୁଣ୍ଡିଆ ମାରନ୍ତି । ମୁଁ ହସିଲି ଏଇ ଉକ୍ତି ଶୁଣି । ଉତ୍ତର ଦେଲି ଯେ ଆମର ଉପାୟ କଣ ? ଦେଢ଼ଶୁର ଯଦି ପ୍ରିନ୍‌ସିପାଲ ହେବେ ତେବେ ସେ କଣ ଦେଢ଼ଶୁର ହୋଇ ରହିବେ ନାହିଁ ? ମାନେ ? ହସ ଉଛୁଳି ପଡ଼ିଲା ସମସ୍ତଙ୍କର । ସେ ଆପଣଙ୍କର ଭାଇ ? ଆପଣ ତ କାହିଁ ......

ଏଇ ପ୍ରସଙ୍ଗଟାକୁ ଫେଣେଇ କରି ଲେଖିବାର ଏକ ନିର୍ଦ୍ଦିଷ୍ଟ କାରଣ ରହିଛି । ସାଧାରଣତଃ ଦରକାର ନ ପଡ଼ିଲେ ମୁଁ ତ କୁଆଡ଼େ ଯାଏନା । ଏବେ ସିନା 'ରେସପେକ୍ଟେଡ଼' ମଣିଷ 'ସିଭିଲାଇଜ୍‌ଡ ସିଟିଜେନ୍' ହୋଇ ଯାଇଛି, ଇମିତି ସବୁଦିନେ ନ ଥିଲା । ଥରେ ଆଚାର୍ଯ୍ୟ କ୍ରିପଲାନୀ ଗଭୀର ଦୁଃଖରେ ଆମଭଳି ଲୋକଙ୍କ ସଂପର୍କରେ ଏକ ଲେଖା ଲେଖିଥିଲେ । ସେ ଲେଖାର ନାମକରଣ ଥିଲା । "The revolutionaries of yesterday have become gentlemen of today" । ସେ ଖେଦ ପ୍ରକାଶ କରିଥିଲେ ମୋହନ କୁମାର ମଙ୍ଗଳମ୍ ପ୍ରଭୃତି ଏକଦା ବିପ୍ଳବୀମାନଙ୍କର କଥା ଉଲ୍ଲେଖ କରି । କିନ୍ତୁ ଏହା ଆମ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ । ଆଜି ଆମକୁ ତଥାକଥିତ ସମ୍ମାନ ମିଳୁଛି । ଆମକୁ ନିମନ୍ତ୍ରଣ ଆସୁଛି ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କରେ ଭାଷଣ ଦେବାପାଇଁ । ପଦ୍ମଶ୍ରୀ, ପଦ୍ମଭୂଷଣ ଉପାଧି ପାଇବାପାଇଁ ସୁପାରିଶ ହେଉଛି ନାଁ । ମୋର ମନେ ପଡୁଚି । ଶ୍ରୀ ସମର ବଲ୍ଲଭ ମହାପାତ୍ର ମୋର ପାରିବାରିକ ବଂଧୁ । ଶ୍ରୀ ଗଣନାଥ ଦାସଙ୍କ ଝିଅକୁ ବିବାହ କରିବା ଫଳରେ ଏହି ବଂଧୁତା ଆହୁରି ଗଭୀର ହୋଇଛି । ଥରେ ମୁଁ ଘରେ ନଥିବା ଜାଣି ସେ ଆସି ପହଞ୍ଚିଲେ ଘରେ ଏବଂ ଚାହିଁଲେ ମୋର ଜୀବନୀ ମୋ ସ୍ତ୍ରୀଙ୍କ ଠାରୁ । ମୋ ସ୍ତ୍ରୀ ମୋ ଜୀବନୀ କେତେ ଜାଣନ୍ତି ? ଏଇ ସମୟରେ ମୁଁ ଆସି ପହଞ୍ଚିଲି । କାହିଁକି ଜୀବନୀ ଆବଶ୍ୟକ ପଡ଼ିଲା ପଚାରିବାରୁ ସେ ପ୍ରଥମେ କଥାଟାକୁ ଏଡ଼ାଇ ଦେଲେ କିନ୍ତୁ ପରେ ଗୁଡ଼େଇ ତୁଡ଼େଇ ପଚାରିବାରୁ ସେ କହିଲେ ସାଂସ୍କୃତିକ ବିଭାଗର ସେକ୍ରେଟାରୀ ଉପରେ ସେ ପଦ୍ମଶ୍ରୀ, ପଦ୍ମଭୂଷଣ ପାଇଁ ନାମ ସୁପାରିଶ କରିବା ସକାଶେ ମୋର ଜୀବନୀ ଖୋଜୁଛନ୍ତି । ମୁଁ ନିଷ୍ପତ୍ତି କରିଛି ଯେ କୌଣସି ସରକାରୀ ସମ୍ମାନ ଗ୍ରହଣ କରିବି ନାହିଁ, ଯାହା ମୋର କାର୍ଯ୍ୟ ଉପରେ ପର୍ଯ୍ୟବେସିତ ନୁହେଁ । ଆଚ୍ଛା, ତମେ ଗୋଟାଏ କାମ କରିବ । ମୁଁ ଏବେ ଅନୁଗୋଳ

Digitized by srujan ka@gmail.com

ଯାଇଥିଲି । ତମେ ବି ତ ସେଇଠି କିଛି ଦିନ ଅବସ୍ଥାପିତ ଥିଲ । ଶୁଣ ଏ କାହାଣୀ । ସୁନ୍ଦରଗଡ଼ ଜିଲ୍ଲାର କୌଣସି ଏକ ଗାଁରେ ଥିଲା ଜଣେ ଆଦିବାସୀ । ତା'ର ଥିଲା ପୁଅଟିଏ ଝିଅଟିଏ । ଝିଅଟି ଦେଖିବାକୁ ଖୁବ୍ ସୁନ୍ଦର । ଲୋକଟିର ମୃତ୍ୟୁ ହୋଇଯାଏ ହଠାତ୍ । ଗାଁର ଶୁଣ୍ଢି ମହାଜନ କହିଲା ଯେ ଯେହେତୁ ସେ ବ୍ୟକ୍ତିଟି ତା'ଠାରୁ ଟଙ୍କା ଧାର୍ ନେଇଥିଲା କୋଡ଼ିଏ ଟଙ୍କା, ସେ ଟଙ୍କା ଶୁଝିବା ବାବଦରେ ସେ ଝିଅ ତାକୁ ବାହାହେବ । ମହାଜନର ବୟସ ଝିଅଟିର ବାପଠାରୁ ବି ବଡ଼, ଅନେକ ବଡ଼ । ଭାଇ ଭଉଣୀ ନିଷ୍ପତ୍ତି କଲେ ଘର ଛାଡ଼ିଦେବେ । କୁଆଡ଼େ ଯିବେ ? ଯୁଆଡ଼େ ଚାନ୍ଦ ଥିବ, ଯୁଆଡ଼େ ଆଲୁଅ ଜଳୁଥିବ ସେମାନେ ଚାଲିଯିବେ ସେଇ ଦିଗରେ । ସାହା କେବଳ ଭଗବାନ । ଗାଁ ଦେବତୀଙ୍କୁ ମୁଣ୍ଡିଆ ମାରି ସେମାନେ ରାତିରେ ଘର ଛାଡ଼ିଲେ । ରାସ୍ତାରେ ଯିବେ ନାହିଁ । ଯିବେ ଜଙ୍ଗଲ ବାଟରେ । ବାଘକୁ ଭୟ ନାହିଁ । କିନ୍ତୁ ମଣିଷବାଘକୁ ବେଶି ଭୟ । ସେମାନେ ଚାଲିଲେ । ସୂର୍ଯ୍ୟ ପୂର୍ବରେ ଉଇଁ ବୁଡ଼ିଲା ପଶ୍ଚିମରେ । ଏଇପରି ଚାଲି ଚାଲି ସେମାନେ ମାସେ କି ଦେଢ଼ ମାସେ ପରେ ଆସି ପହଞ୍ଚିଲେ ଅନୁଗୋଳରେ । ନାଲକୋ ଗଢ଼ି ଉଠୁଥାଏ । ସେଇଠି କୁଲି କାମ କଲେ । ସେଇଠି ଥିଲେ ଜଣେ ତରୁଣ ଇଂଜିନିୟର, ଅବିବାହିତ । ଘର କର୍ଣ୍ଣାଟକ । ଓଡ଼ିଆ ଟିକିଏ ଟିକିଏ ଜାଣନ୍ତି । ସେ ଏଇ ଝିଅଟିକୁ ଦେଖିଲେ । ତାର କାହାଣୀ ଶୁଣିଲେ । ତାକୁ ବିବାହ କରିବା ପାଇଁ ସ୍ଥିର କଲେ । ଅନେକ ବାଧା ଉପୁଜିଲା । ସେ କିନ୍ତୁ ରହିଲେ ଅଟଳ । ସେ ବିବାହ କଲେ ଏଇ ଝିଅଟିକୁ, ପାଠ ପଢ଼ାଇଲେ ସ୍କୁଲରେ । ଗୋଟିଏ ଟେଲରିଂ ଇନଷ୍ଟିଚ୍ୟୁଟରେ ମଧ ତାଲିମ ଦେଲେ ଝିଅଟିକୁ । ମୋର ପରଲୋକଗତ ଭାଇର ସ୍ତ୍ରୀ ବୀଣା ଏହି ଶିକ୍ଷାକେନ୍ଦ୍ରଟିକୁ ପରିଚାଳିତ କଲେ । ସେଇଠି ମୁଁ ଏଇ ଝିଅଟିକୁ ଦେଖିବାର ସୁଯୋଗ ପାଇଛି । ତମେ ଏଇ ଦମ୍ପତ୍ତିକୁ ପଦ୍ମଶ୍ରୀ ଉପାଧି ଦେବାପାଇଁ ସୁପାରିଶ କରୁନ ? ଆମେସବୁ ତ ପହଞ୍ଚି ସାରିଛୁ ଜୀବନର ଅପରାହ୍ନରେ । ମଲା ଘୋଡ଼ାର ଟାଙ୍କ ଗଣି ଲାଭ କଣ ? ବରଂ ସେଇ ଇଂଜିନିୟରକୁ ସମ୍ମାନିତ କର । ସେ ଗର୍ବିତ ହେବ ଏବଂ ଅନ୍ୟମାନେ ଅନୁପ୍ରାଣିତ, ଉତ୍ସାହିତ ହେବେ । ଏଇଭଳି ବହୁ ଯୁବକ ଆପଣାର ଆଦର୍ଶନୀୟ କାର୍ଯ୍ୟ ପାଇଁ ରାଷ୍ଟ୍ରଦ୍ୱାରା ପୁରସ୍କୃତ ହେଲେ ସମାଜ ବଦଳିବା ପାଇଁ ସେମାନେ ସାହାଯ୍ୟ କରିବେ । ଆମକୁ ଏ ପ୍ରାଇଜ ଦେଇ ଲାଭ କଣ ? ସେ ଫେରିଯାଇଥିଲେ ମୁହଁକୁ ଶୁଖାଇ । କିନ୍ତୁ ସବୁଦିନେ ସେମିତି ନ ଥିଲା । ଦିନ ଥିଲା ଆମ ନାଁ ପଡ଼ିଲେ ଆତଙ୍କ ଖେଳୁଥିଲା ସମାଜର ପ୍ରତିଷ୍ଠିତ କର୍ତ୍ତାମାନଙ୍କ ମଧରେ । ପଚମାନ ସମାଜର ପଦାଧିକାରୀମାନଙ୍କ ପାଖରେ ଆମେସବୁ ଥିଲୁ ଘୃଣ୍ୟ, ଆତଙ୍କ । ସମୟ ବଦଳି ଯାଇଛି । ବିପ୍ଳବ ତ ଆଉ କାର୍ଯ୍ୟକ୍ରମରେ ନାହିଁ । ସୋଭିଏଟ୍ ରୁଷ ଭାଜି ଯାଇଛି, ସମାଜବାଦ ଶବ୍ଦକୁ କାଟି ଦିଆଯାଉଛି । ବିପ୍ଳବର ଅଯୁତ ବିନ୍ଧାଣୀ ଲେନିନ୍‌ଙ୍କର ନାମରେ ନାମିତ ଲେନିନ୍‌ଗ୍ରାଡ଼ ସହରର ନାମକୁ ବଦଳାଇ ଦିଆଯାଉଛି । ଆଉ ତା'ର ପ୍ରତିବାଦ ଉଠୁନାହିଁ ସମଗ୍ର ପୃଥିବୀରୁ ।

Digitized by srujan ka@gmail.com

ଅଥଚ ଏଇ ବ୍ୟକ୍ତିର ନାମକୁ ଉଚ୍ଚାରଣ କରି କରି ବହୁ ଯୋଦ୍ଧା ମାନବର ମୁକ୍ତିପାଇଁ ଜୀବନ ଉତ୍ସର୍ଗ କରିଯାଇଛନ୍ତି । ଲେନିନ୍‌ଗ୍ରାଡ଼୍ କେବଳ ସୋଭିଏଟ୍ ରୁଷର ନୁହେଁ, ଏହା ସମଗ୍ର ମାନବ ସମାଜର ।

ମନେ ପଡୁଚି ଷ୍ଟାଲିନ୍‌ଙ୍କର ପରଲୋକ ହୋଇଯାଇଥାଏ । ଷ୍ଟାଲିନ୍ ସୋଭିଏଟ୍ ରୁଷର ପ୍ରଧାନମନ୍ତ୍ରୀ କି ରାଷ୍ଟ୍ରପତି ନ ଥିଲେ । ତେଣୁ ତାଙ୍କ ପାଇଁ ଭାରତର ପାର୍ଲ୍ୟାମେଣ୍ଟରେ ଶୋକ ପ୍ରସ୍ତାବ ହେବ କିମିତି ? କିନ୍ତୁ ପ୍ରଧାନମନ୍ତ୍ରୀ ଜବାହରଲାଲ ପ୍ରସ୍ତାବ ଆଗତ କରି କହିଲେ ଯେ ତାଙ୍କର ମତ ସହିତ ଏକମତ ହୁଅ ବା ନ ହୁଅ, ସେ ସ୍ୱତନ୍ତ୍ର କଥା କିନ୍ତୁ ବିଶ୍ୱର ଜନମତକୁ ଏଇ ଶତାବ୍ଦୀରେ ଯଦି କେଇ ସବୁଠାରୁ ବେଶୀ ପ୍ରଭାବିତ କରିଥାଏ ସେ ହେଉଛନ୍ତି ଷ୍ଟାଲିନ୍ ଏବଂ ତାଙ୍କର ନାମରେ କେବଳ ତାଙ୍କ ନିଜ ରାଜ୍ୟରେ ନୁହେଁ ସମଗ୍ର ବିଶ୍ୱର ବିଭିନ୍ନ କୋଣରେ ଲକ୍ଷ ଲକ୍ଷ ଲୋକ ମରିବାପାଇଁ ପ୍ରସ୍ତୁତ ଏଥିରେ ତ କୌଣସି ସନ୍ଦେହ ନାହିଁ । ଯୀଶୁ, ମହମ୍ମଦ, ବୁଦ୍ଧ, ଗାନ୍ଧୀ, ମାର୍କ୍ସ, ଲେନିନ୍ କୌଣସି ଏକ ଦେଶର ନୁହଁନ୍ତି । ସେମାନେ ଆନ୍ତର୍ଜାତିକ ଏଥିରେ କୌଣସି ସନ୍ଦେହ ନାହିଁ । ସୁତରାଂ ପରମ୍ପରାକୁ ଭଗ୍ନ କରିବା ପାଇଁ ନୁହେଁ, କିନ୍ତୁ ନୂତନ ପରମ୍ପରା ସୃଷ୍ଟିକରି ସେଦିନ ଆସିଥିଲା ଭାରତୀୟ ପାର୍ଲ୍ୟାମେଣ୍ଟରେ ଶୋକ ପ୍ରସ୍ତାବ । ଏହି ପରମ୍ପରାକୁ ଯାନ୍ତ୍ରିକ ଭାବରେ ପ୍ରୟୋଗକରି ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ସୁରେନ୍ଦ୍ର ମହାନ୍ତି ବା କାଳିନ୍ଦୀ ଚରଣଙ୍କ ପ୍ରତି ରାଷ୍ଟ୍ରୀୟ ସମ୍ମାନ ଦେଖା ହୋଇପାରିଲା ନାହିଁ । ପରମ୍ପରା ବା କନ୍‌ଭେନ୍‌ସନର ଧାରାରେ ସେମାନେ ପଡ଼ିଲେ ନାହିଁ । ଏଇଥିପାଇଁ ତ ! କିନ୍ତୁ ପରମ୍ପରା ଆମପାଇଁ ନା ଆମପାଇଁ ପରମ୍ପରା, ଏକଥା ତ କେହି ପଚାରିଲେ ନାହିଁ ? ଏପରିକି କାଳିନ୍ଦୀବାବୁଙ୍କ ମରଦେହକୁ ନେଇଯାଉଥିବା ପୁଲିସ ଗାଡ଼ିର ପେଟ୍ରୋଲ ସରିଗଲା ପିଠାପୁରରୁ ସତୀଚଉରା ଯିବା ବାଟରେ ଏବଂ ଆଉ ଗୋଟିଏ ଗାଡ଼ି ଆଣି ମରଦେହକୁ ନେବା ସକାଶେ ପ୍ରାୟ ଦୁଇଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା ଆମକୁ ରାସ୍ତାରେ । ନନ୍ଦିନୀ ଦେବୀ କ୍ଷମତାରେ ନ ଥିଲେ ସେତେବେଳକୁ । କ୍ଷମତାରେ ଥିଲେ କ'ଣ ହୋଇଥାନ୍ତା, ତା ନ କହିଲେ ଭଲ । ଜନକୀବାବୁଙ୍କ ମାଆଙ୍କର ପରଲୋକ ହେବା ରାତିରେ ଆମେ ଥିଲୁ ଦଶ ବାରଜଣ । ଜାନକୀବାବୁଙ୍କ ଶାଶୁଙ୍କର ପରଲୋକ ଦିନ ଅସୁମାରି ଭିଡ଼ ଜମିଥିଲା ଡାକ୍ତରଖାନାରେ । ଏପରିକି ଯେଉଁମାନେ ମାଆଙ୍କର ପରଲୋକ ଦିନ ତାଙ୍କ ଘରକୁ ଯିବାକୁ କୁଣ୍ଠିତ ହୋଇଛନ୍ତି, ସେମାନଙ୍କୁ ଶାଶୁଙ୍କର ପରଲୋକ ଦିନ ଭୋ ଭୋ କାନ୍ଦିବାର ଦେଖିଛି । ଆମ ଦେଶରେ ପ୍ରାୟ ପରମ୍ପରା ସୃଷ୍ଟି ହୁଏ କ୍ଷମତାରେ ଅଛ ନା ନାହିଁ ତାହାରି ଭିତରେ ।

ସୁଖର କଥା, ବିନୋଦ କାନୁନ୍‌ଗୋଙ୍କ ପାଇଁ ଏଇ ପରମ୍ପରାର ଶୃଙ୍ଖଳ ରହିଲା ନାହିଁ । ''ଏଇଭଳି ଏକ ସନ୍ତାନକୁ ଜନ୍ମଦେବା ପାଇଁ ମୋ ଜନ୍ମମାଟି ମାଆକୁ ବହୁ ଯୁଗ ଲାଗିଯିବ'', ଏଇ କଥା କହି ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ବିଧାନସଭାରେ ଶୋକ ପ୍ରସ୍ତାବ ଆଗତ କଲେ ଏବଂ ସବୁଦଳ ସବୁମତର ବିଧାୟକ ଏହାକୁ ଗ୍ରହଣ କରିନେଲେ ନୀରବରେ ଠିଆହୋଇ ।

Digitized by srujan ka@gmail.com

ନୂଆ ପରମ୍ପରାର ସୃଷ୍ଟି ହେଲା । ରମାଦେବୀଙ୍କ ପାଇଁ ମଧ୍ୟ ଏ ପରମ୍ପରା ଭାଙ୍ଗିଥିଲା ଭଳି ସ୍ମରଣ ହେଉଛି । ଆଜି ସିନା ଆମେସବୁ ସିଭିଲାଇଜ୍‌ଡ, ଡିଗନିଫାଏଡ଼ ନାଗରିକ । ସବୁବେଳେ ସେଇଆ ନ ଥିଲା । କିନ୍ତୁ ଆଜି ଦେଖିଲେ କଣ ସେ ଦିନର କଥା ମନେ ପଡ଼ିବ ସମସ୍ତଙ୍କର । ଆଜି ତ ୟୁନିଭର୍ସର ସମ୍ପାଦକ ଭାବରେ ଅନେକ ଜାଣନ୍ତି ମୋତେ, କିନ୍ତୁ ଅନେକ ତ ଜାଣନ୍ତି ଅନ୍ୟ ଭାବରେ । ରେଭେନ୍‌ସା କଲେଜର ଛାତ୍ର ବା ଆନ୍ଦୋଳନର ସଂଗ୍ରାମୀ ସୈନିକ ଭାବରେ । ଦୁଇଟା ସ୍ୱତନ୍ତ୍ର ପରିଚିତି । ପ୍ରଥମଟାରେ ସମ୍ମାନ ଓ ଶ୍ରଦ୍ଧା ହୁଏତ ଅଛି କିନ୍ତୁ ଦ୍ୱିତୀୟଟାର ନିବିଡ଼ତା, ଉଷ୍ମତା କାଇଁ ?

ମୋର ମନେ ପଡୁଚି ଅଧ୍ୟାପକ ଗୋପାଳ ଚନ୍ଦ୍ର ମିଶ୍ରଙ୍କର ପରଲୋକ ହୋଇଗଲା । ମରଦେହ ଶ୍ମଶାନକୁ ଯିବା ପୂର୍ବରୁ ସବୁ ଖବରକାଗଜର ପ୍ରତିନିଧିମାନେ ପଚାରିଲେ ଗୋପାଳ ବାବୁଙ୍କ ଜୀବନୀ । ପ୍ରଥମେ ପିଲାମାନଙ୍କୁ ପଚାରିଲେ । ସେମାନେ ଜାଣନ୍ତି ଅଧ୍ୟାପକ ଗୋପାଳ ମିଶ୍ରଙ୍କୁ । ଜୀବନୀ ପୂର୍ଣ୍ଣାଙ୍ଗ ହୋଇପାରିଲା ନାହିଁ । ସେମାନେ ପଚାରିଲେ ତାଙ୍କର ପତ୍ନୀ ଯଶୋଧାରା (ଲୁସି)ଙ୍କୁ । ସେ ମଧ୍ୟ କେତେ ବାଟ ଯିବେ ? କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଦ୍ୱିତୀୟା କନ୍ୟା ଲୁସି ବିବାହ କରିଛି ଅଧ୍ୟାପକ ଗୋପାଳ ମିଶ୍ରଙ୍କୁ । କିନ୍ତୁ ତା ପୂର୍ବରୁ ସେ କଣ ଥିଲେ ?

ଗୋପାଳ ବାବୁଙ୍କ ସହିତ ପରିଚୟ ଛାତ୍ର ଦିନରୁ । ସେ ବିପ୍ଳବୀ ଛାତ୍ରନେତା ଥିଲେ । ରଣପୁର ପ୍ରଜାମଣ୍ଡଳର ନେତା ଥିଲେ । ଏକ ସରକାର ଗଠନ ହୋଇଥିଲା ରଣପୁରରେ । ତାହାର ପ୍ରଧାନମନ୍ତ୍ରୀ ହୋଇଥିଲେ ଗୋପାଳ ମିଶ୍ର । ଯେଉଁମାନଙ୍କର ଜୀବନର ଧାରା ସମାନ ହୋଇ ଗଡ଼ିଯାଇଛି ସେମାନଙ୍କ ଜୀବନୀ କହିବା ସହଜ । କିନ୍ତୁ ଆମଭଳି ଯେଉଁମାନଙ୍କର ଜୀବନ ବହୁ ଉତ୍‌ଥାନ ପତନ ଦେଇ ଗଡ଼ି ଆସିଛି ସେମାନଙ୍କ କଥା କହିହେବ କିମିତି ?

ସେଇଠି ଥିଲେ ଲେଖିକା ପ୍ରତିଭା ରାୟ । ସେ ଏହି ଜୀବନ କାହାଣୀର ବର୍ଣ୍ଣନା ଶୁଣି କହିଲେ ଯେ ମୋର ଜୀବନୀଟାକୁ ଲେଖି ତକିଆତଳେ ରଖିଦେବି ଭାବୁଛି, ଏଇସବୁ ଶୁଣିଲା ପରେ !

ବାନ୍ଧବମାନଙ୍କ ସହିତ ବିଶେଷ ଯୋଗାଯୋଗ ନାହିଁ । ଅସୁବିଧା ତ ବହୁତ । କିନ୍ତୁ ସୁବିଧା ବି ହୁଏ ବେଳେ ବେଳେ ।

୧୯୮୨ ମସିହା । ବାତ୍ୟା ଓ ବନ୍ୟାରେ ବିଧ୍ୱସ୍ତ ଏକ ଭୂଖଣ୍ଡ । ଜାତୀୟ ବିପର୍ଯ୍ୟୟ । ଏଇ ସମୟରେ ସବୁ ଭେଦାଭେଦ ଭୁଲି ସମସ୍ତେ ଏକତ୍ରିତ ହୁଅନ୍ତି ଏହାକୁ ସାମ୍ନା କରିବାପାଇଁ । ଓଡ଼ିଶାରେ ବି ସେଇଆ ହେଲା । ଜାତୀୟ ଦୁର୍ବିପାକର ସମ୍ମୁଖୀନ ହେବାପାଇଁ ଜାତୀୟ ମିଳିତ ରିଲିଫ୍ ସଂଯୋଜକ କମିଟି ଗଠିତ ହେଲା । ପ୍ରଥମ ଦିନ ଜୀବନର ବିଭିନ୍ନ ବିଭାବର ପ୍ରାୟ ୧୨୫ ଜଣ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥିଲେ । ସବୁ ଦଳର ବ୍ୟକ୍ତି ମଧ୍ୟ ଥିଲେ । ସେମାନଙ୍କୁ ନେଇ ଗଢ଼ା ହେଲା କମିଟି । ଏଇ କମିଟିର ଅନ୍ୟୁନ ୨୫ ଜଣ ଜଣାଶୁଣା- କଂଗ୍ରେସ ନେତା ଅନ୍ତର୍ଭୁକ୍ତ

Digitized by srujan ka@gmail.com

ଥିଲେ । ବୈଠକକୁ ଯିଏ ଆସିଥିଲା ସମସ୍ତଙ୍କର ପ୍ରଗାଢ଼ ଉତ୍ସାହ ଦେଖି ସମସ୍ତଙ୍କୁ ସେଥିରେ ନିଆଯାଇଥିଲା । ରାଜନୈତିକ ଦଳର ନେତାମାନେ ବିଶେଷତଃ ବିଶ୍ୱନାଥ ପଣ୍ଡିତ, ଗୁରୁଚରଣ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି, ଲକ୍ଷ୍ମଣ ମଲ୍ଲିକ, ପ୍ରତାପ ମହାନ୍ତି, ମତ୍‌ଲୁବ ଅଲ୍ଲି, ବିନାୟକ ଆଚାର୍ଯ୍ୟ (ଅନ୍ୟମାନଙ୍କର ନାମ ମନେପଡୁ ନାହିଁ) ରିଲିଫ କାର୍ଯ୍ୟକୁ ଦଳମତର ଉର୍ଦ୍ଧ୍ୱରେ ରଖିବା ପାଇଁ ନିଜେ କର୍ମକର୍ତ୍ତା ହେବାପାଇଁ ମନାକଲେ ଏବଂ ଜଷ୍ଟିସ୍ ହରିହର ମହାପାତ୍ର, ଜଷ୍ଟିସ୍ ନବକୁମାର ଦାସ, ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ରାଧାନାଥ ରଥ, ଡାକ୍ତର ସୁକୁମାର ଦାସ, ଶ୍ରୀ ଜଗଦୀଶ ପ୍ରସାଦ ପ୍ରଭୃତିଙ୍କୁ ନେଇ କାର୍ଯ୍ୟକାରୀ କମିଟି ଗଢ଼ିଲେ । ସର୍ବ ସମ୍ମତିକ୍ରମେ 'ସମାଜ' ସମ୍ପାଦକ ରାଧାନାଥ ରଥ ଏହାର ସଭାପତି ହେଲେ । ଆକସ୍ମିକ ଭାବରେ ବା ଯେପରି ଭାବରେ ହେଉ ମୁଁ ସର୍ବସମ୍ମତି କ୍ରମେ ଏହାର ସମ୍ପାଦକ ହୋଇଗଲି ।

କାମ ଚାଲିଲା । କିନ୍ତୁ ଏହା ଯେ ମୋ ପାଇଁ କାଳ ହେବ ମୁଁ ଏହା ଜାଣିପାରି ନ ଥିଲି ଆଦୌ । ସ୍ୱପ୍ନରେ ମଧ ଭାବି ନ ଥିଲି । ସରକାରଙ୍କୁ କୁଆଡ଼େ ଖବର ଦିଆଗଲା ଯେ ଏହା ଫଳରେ ଏକ ସମାନ୍ତରାଳ ସରକାର ଗଢ଼ାହେଲା । ମୋ ଆଗରେ ଝଲକ ଥିଲା ଦୁଇଟି ଉଦାହରଣ । ପ୍ରସିଦ୍ଧ ବିହାର ଭୂମିକମ୍ପ ବେଳେ ରାଜେନ୍ଦ୍ର ପ୍ରସାଦ ଥିଲେ ଜେଲରେ । ବ୍ରିଟିଶ ସରକାର ତାଙ୍କୁ ଏହି ଭୂମିକମ୍ପ ରିଲିଫ ପରିଚାଳନା କରିବା ପାଇଁ ତୁରନ୍ତ ଖଲାସ କରି ଦେଇଥିଲେ ଏବଂ ଜାତୀୟ ରିଲିଫ କମିଟିର ସେ ହୋଇଥିଲେ ସଭାପତି । ୧୯୫୫ ମସିହା ଦଳେଇଘାଇ ଦୁର୍ବିପାକ ବେଳେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ରିଲିଫ୍ କମିଟିର ସଭାପତି ହେଲେ । ସଂପାଦକ ହେବାପାଇଁ ତାଙ୍କର ଏକଦା ସହକର୍ମୀ ଏବଂ ପରେ ତାଙ୍କର ପ୍ରବଳ ରାଜନୈତିକ ବିରୋଧୀ ନେତା ବୈଦ୍ୟନାଥ ରଥଙ୍କୁ ଗାଁରୁ ଡକାଇ ଆଣିଥିଲେ ।

କିନ୍ତୁ ସେଇ ଜାତୀୟ ରିଲିଫ୍ କମିଟିର ସମ୍ପାଦକ ହେବା ମୋ ପାଇଁ ବିପଦର ସୂଚନା ବହନ କରି ଆଣିଲା । ଏହାର ସୂଚନା ମୁଁ ପାଇବା ପୂର୍ବରୁ ଶିକ୍ଷା ବିଭାଗ ଏହାର ସୁରାକ ପାଇଥିଲେ । କାରଣ କୌଣସି ଏକ ପ୍ରତିଭାଶାଳୀ ମନ୍ତ୍ରୀ ଚାହିଁଲେ ମୋର ସ୍ତ୍ରୀଙ୍କୁ ରେଭେନ୍‌ସା କଲେଜରୁ ବଦଳି କରିଦେବା ପାଇଁ । ସେତେବେଳକୁ ସେ ପ୍ରଫେସର ହୋଇସାରିଲାଣି । ସମ୍ବଲପୁର ଓ ବ୍ରହ୍ମପୁରରେ ବଟାନୀର ଏମ୍.ଏସ୍‌ସି. କ୍ଲାସ ସିନା ଖୋଲିଛି କିନ୍ତୁ ସେତେବେଳକୁ ପ୍ରଫେସର ପଦବୀ ସୃଷ୍ଟି ହୋଇ ନାହିଁ । ସୁତରାଂ ସେ ଯିବେ କୁଆଡ଼େ ? କିନ୍ତୁ ବଦଳି ତ କରିବାକୁ ହେବ । ହୋଇପାରୁ ନାହିଁ କୌଣସି ମତେ । ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର ରାଜି ନୁହଁନ୍ତି । ପରିଚିତି ବନ୍ଧୁ ଦିନର । ଦୀର୍ଘ ଦିନର ସାମାଜିକ ଜୀବନରେ କାର୍ଯ୍ୟକରି ମୁଁ ପରିବାର ପାଇଁ ଲାଭ କରିଥିଲି ଗୋଟିଏ । ସେଇଟି ହେଉଛି ଯେ ମୋର ରାଜନୈତିକ ମତବାଦ ଏବଂ କାର୍ଯ୍ୟ ଜାଣିସୁଦ୍ଧା ମୋ ସ୍ତ୍ରୀଙ୍କର ବଦଳି ହୋଇନାହିଁ କଟକ ବାହାରକୁ । ସେଇ ଗୋଟିଏ ଲାଭ (ଯଦି ଏହାକୁ ଲାଭ କୁହାଯାଏ) ମିଳିଛି । ଦୁଇଥର ବଦଳି ହୋଇଥିଲା । ବଦଳି କରିଥିବା ବୁଦ୍ଧିମାନ

Digitized by srujan ka@gmail.com

କର୍ତ୍ତୃପକ୍ଷଙ୍କର ନିର୍ବୁଦ୍ଧିଆପଣିଆ ହେତୁ ହୋଇପାରିଲା ନାହିଁ । ଥରେ ହୋଇଥିଲା ବନମାଳୀ ପଟ୍ଟନାୟକ ମନ୍ତ୍ରୀ ଥିଲାବେଳେ । କିନ୍ତୁ କର୍ତ୍ତୃପକ୍ଷ ସାଡ଼ିଷ୍ଟିକ ପଦ୍ଧତିରେ ବଦଳି କରୁଥିଲେ, ଆବଶ୍ୟକତା ଦୃଷ୍ଟିରୁ ନୁହେଁ, ରେଭେନ୍‌ସା କଲେଜର ଉଦ୍ଭିଦ ବିଜ୍ଞାନ ବିଭାଗରେ ସେତେବେଳକୁ ପି.ଏଚଡି. ପାଇଥିବା ପ୍ରାୟ ସମସ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟ ଏବଂ କୃଷି ବିଶ୍ୱବିଦ୍ୟାଳୟକୁ ଚାଲିଯାଇଥାନ୍ତି । ଦୁଇଜଣ ମାତ୍ର ବାକି ଥାଆନ୍ତି ଏବଂ ସେ ଦୁଇଜଣଯାକ ବଦଳି ହୋଇଥାଆନ୍ତି । ତା'ହେଲେ ପୋଷ୍ଟଗ୍ରାଜୁଏସନ କ୍ଲାସ ନେବ କିଏ ? ଧରିଲେ ବନମାଳୀ ପଟ୍ଟନାୟକ । ସେ ଭାରି କୋପୀ ଲୋକ ଥିଲେ । ଥିଲେ ମଧ୍ୟ ନିଷ୍ପତ୍ତିମୂଳକ । ଭୁଲ ହେଉ, ଠିକ୍ ହେଉ ସେ ନିଷ୍ପତ୍ତି ନେଲେ ସେଥିରେ ଅଟଳ ରହୁଥିଲେ । ବଦଳି ହେଲା ନାହିଁ । ଆଉ ଥରେ ହୋଇଥିଲା ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ଥିଲାବେଳେ । ସିଙ୍ଗଲ୍ ଟ୍ରାନ୍ସଫର । ଅର୍ଥାତ ବଦଳି ହୋଇଛି ଗୋଟିଏ ଜାଗାକୁ । କିନ୍ତୁ ସେଠାରେ ଜାଗା ଖାଲି ନାହିଁ କି କେହି ରିଲିଭ୍ ହେଉନାହାନ୍ତି । କେବଳ ବଦଳି ହୋଇଛି । ମୋର ବନ୍ଧୁ ଚନ୍ଦ୍ରମଣି ନାୟକ ଯାଉଥିଲେ ଭୁବନେଶ୍ୱରକୁ । ସେଠାରେ ସେ ଦୈବାତ୍ ଭେଟିଲେ ଜଣେ କମନ ଫ୍ରେଣ୍ଡଙ୍କୁ । ସେ ଶିକ୍ଷା ବିଭାଗର ଜଣେ କର୍ମକର୍ତ୍ତା । ଜଣେ ପରାକ୍ରମୀ ଛାତ୍ରନେତା ମଧ୍ୟ ଥିଲେ । ମୁଁ ଦୀର୍ଘ ଦିନ କାରାଦଣ୍ଡ ଭୋଗ କରୁଥିଲାବେଳେ ସେ କିଛି ଦିନପାଇଁ ଜେଲ ବି ଯାଇଥିଲେ । ତାଙ୍କୁ ଖଟ ମିଳି ନ ଥିଲା । ସେ ମୋ ସାଂଗରେ ଏକାଠି ଶୋଉଥିଲେ । ଚନ୍ଦ୍ରମଣି ତାଙ୍କୁ ଭେଟିଲା ବେଳକୁ ସେ ଟ୍ରାନ୍ସଫର ତାଲିକା କରୁଥାନ୍ତି । ସମ୍ପର୍କର ଏଇ ପଟ୍ଟଭୂମିରେ ଚନ୍ଦ୍ରମଣି ତାଙ୍କୁ ପଚାରିଲେ, କ'ଣ କମଳର ବଦଳି ହେଉଛି କି ? ସେ ବନ୍ଧୁ ଧରିନେଲେ ଯେ ଚନ୍ଦ୍ରମଣିର ଯିବା ବା ପଚାରିବା କୌଣସିଟା ଆକସ୍ମିକ ନୁହେଁ । ମୁଁ ନିଶ୍ଚୟ ପଠାଇଛି । ସେ ଉତ୍‌କ୍ଷିପ୍ତ ହୋଇ ଉତ୍ତର ଦେଲେ କଣ ବଦଳି ହେବ ନାହିଁ କି ? ଚନ୍ଦ୍ରମଣି ଠିକ୍ ସେଇପରି ଉତ୍ତର ଦେଇ ଶିକ୍ଷା ବିଭାଗର ତଥା ତାଙ୍କ ଉପର କର୍ମକର୍ତ୍ତାଙ୍କର ଶାଳୀ କଥା ପଚାରି ଦେଲେ, ଯେ ତାଙ୍କର ବଦଳି ହେଉଛି ତ ! ଦେଖ ମଜା, କଥାଟା ଖୋଦ କର୍ତ୍ତାଙ୍କ ପାଖରେ ପହଞ୍ଚାଇ ଦେଲେ ସେ । କାରଣ ତାଙ୍କର ଖୁବ୍ ପ୍ରିୟ ଲୋକ ସେ । ବଦଳି ହେଲା କିନ୍ତୁ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ପରେ ସମୟର ଗତିପଥରେ ତାଙ୍କର ପ୍ରମୋଶନ ଓ ବଦଳି କଥା ମୋତେ ଦିନେ ବୁଝିବାକୁ ହେଲା । ତେଣୁ ବନ୍ଧୁତା ଅତୁଟ ରହିଛି । ମୋ ସ୍ତ୍ରୀ ଉଦ୍ଭିଦ ବିଜ୍ଞାନର ଅଧ୍ୟାପିକା । ତାଙ୍କଠାରୁ ଜୁନିୟର ବା ସମସାମୟିକମାନେ ପ୍ରିନ୍ସପାଲ, ଡି.ପି.ଆଇ ହେଲେଣି । ସେ ହୋଇ ନାହାନ୍ତି । ଚାହିଁ ନାହାନ୍ତି । ପରେ ଜଣେ ମହିଳା ସଭ୍ୟା ଶ୍ରୀମତୀ ନୀଳିମା ମିଶ୍ରଙ୍କର ଅବସର ହେଲା ପରେ ସେ ପବ୍ଲିକ ସର୍ଭିସ କମିଶନର ସଭ୍ୟା ହୋଇ ୧୯୯୮ ମସିହାରେ ଅବସର ଗ୍ରହଣ କରିଛନ୍ତି ।

ମୋ ସ୍ତ୍ରୀଙ୍କ ବଦଳି କରିବା ପାଇଁ ଗଙ୍ଗୁ ଭାଇନା ରାଜି ନୁହଁ । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମଧ୍ୟ ରାଜି ହେଉ ନାହାନ୍ତି । ମୋ ସ୍ତ୍ରୀଙ୍କର ବଡ଼ ଭଉଣୀ (୰ଇନ୍ଦୁଲତା)ଙ୍କର ନଣନ୍ଦଙ୍କର ପୁଅ ହେଉଛନ୍ତି ଜାନକୀ ବାବୁ । ଏବଂ ମାମୁଁ ହେଉଛନ୍ତି ବିଜୁବାବୁ । ମୋ ଦେଢ଼ଶାଶୁ

Digitized by srujan ka@gmail.com

ଯେତେବେଳେ ବ୍ୟାକୁଳ ହୋଇ ତାଙ୍କ ପୁଅର ଚାକିରି ଲାଗି ଆମ ଘରେ ପହଞ୍ଚନ୍ତି ମୁଁ ତାଙ୍କୁ ଥଟ୍ଟା କରେ । ଅପା, ତମର କ'ଣ ଚିନ୍ତା । ଭଣଜା ମୁଖ୍ୟମନ୍ତ୍ରୀ ନ ହେଲେ ମାମୁଁ ମୁଖ୍ୟମନ୍ତ୍ରୀ । କର୍ଣ୍ଣ ମଲେ ପାଞ୍ଚ ଅର୍ଜ୍ଜୁନ ମଲେ ପାଞ୍ଚ । ସେ କାନ୍ଦି କାନ୍ଦି କହେ, ହଁରେ ପୁଅ, ସେଇଟା ସତ ଯେ ଆଜି ସେମାନଙ୍କର ଦେଖା ପାଇବି କେମିତି ? ସେମାନଙ୍କୁ ପାଇବା ପାଇଁ ସାତ ଶାହାଣ ଦେଇ ଯିବାକୁ ପଡ଼ିବ । ସେ କାଳ କଣ ଆଉ ଅଛି ? ମୋ କଥା ତାଙ୍କ ପାଖରେ ପହଞ୍ଚିବ କେମିତି ?

ଜାନକୀ ବାବୁଙ୍କ ସହିତ ପାରିବାରିକ ସମ୍ପର୍କ ଛଡ଼ା ବ୍ୟକ୍ତିଗତ ସଂପର୍କ ଖୁବ୍ ଭଲ । ୟୁନିଅନ ଜ୍ୟାକ ଆନ୍ଦୋଳନରେ ଆମେ ଏକା ସଂଗରେ । ତା'ପରେ ସାମାଜିକ, ରାଜନୈତିକ ଜୀବନରେ ଭେଟ ହୋଇଛି ବହୁବାର । ମତ ପାର୍ଥକ୍ୟ ସତ୍ତ୍ୱେ ମନାନ୍ତରର ସମ୍ଭାବନା ଖୁବ୍ କମ୍ । ମୋର ମନେ ପଡୁଛି । ଦିଲ୍ଲୀରେ ଗପ କରୁଛି ତାଙ୍କ ସାଂଗରେ । ସେ ମୋତେ ପଚାରିଲେ, ମୋର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ପ୍ରସ୍ତାବରେ ଆପଣଙ୍କ ମତ କଣ ? ''ଆପଣ ମୁଖ୍ୟମନ୍ତ୍ରୀ ହେଲେ ଆମେ ସୁଖୀ ହେବୁ, କିନ୍ତୁ ଓଡ଼ିଶା ହୁଏତ କ୍ୟାବିନେଟ୍ ମନ୍ତ୍ରୀତ୍ୱ ହରାଇବ ।'' ସେ କହିଲେ ଯେ ବଂଗୋପ ସାଗରରେ ପହଁରିବା ପାଇଁ ମୋର ସାହସ ପାଉଛି, କିନ୍ତୁ ଏ ଭାରତ ମହାସାଗରରେ ପହଁରିବା ପାଇଁ ତ ସାହସ ପାଉନି କାରଣ କୂଳ କିନାରା କିଛି ମିଳୁନି । ଜାନକୀବାବୁ 'ପ୍ରଜାତନ୍ତ୍ର'ରୁ ସଦ୍ୟ ବିଦାୟ ନେଇଥାନ୍ତି । ତାଙ୍କ ଘରେ ମଧ୍ୟାହ୍ନ ଭୋଜନରେ ବସିଥିଲୁ । ସେ କାନ୍ଦି ଉଠିଲେ, କହିଲେ, ଜାଣନ୍ତି ମୁଁ 'ପ୍ରଜାତନ୍ତ୍ର'ରୁ ସୀସା ଚୋରି କରିଛି ବୋଲି ମୋ ନାଁରେ ଏଫ.ଆଇ.ଆର ହୋଇଛି । ଆଖିରୁ ଲୁହ ପୋଛୁ ପୋଛୁ କହିଲେ ମୋ ହାତରେ ଆଜି ରିଭଲଭର ଥିଲେ..... । ଜୟନ୍ତୀ ଦେବୀ କ୍ଳାନ୍ତ କଣ୍ଠରେ କହିଲେ ଯେ ଆପଣ ପରା ବହୁତ ଲୋକଙ୍କୁ ବିଦେଶ ପଠାଉଛନ୍ତି । ୟାଙ୍କୁ ଟିକେ ପଠାଇଦେଲେ । କିଛି ଦିନ ବୁଲି ଆସନ୍ତୁ । ନ ହେଲେ ଏଠି ମୁଣ୍ଡ ଖରାପ ହୋଇଯିବ । ସେ ସୋଭିଏଟ୍ ୟୁନିୟନ ଯାଇଥିଲେ । ସେଇ ପ୍ରତିନିଧି ଦଳରେ ଶରତ ପଟ୍ଟନାୟକ ମଧ୍ୟ ଅନ୍ତର୍ଭୁକ୍ତ ଥିଲେ । ତାଙ୍କର ଆଖି ଖରାପ ଥିଲା । ଚିକିତ୍ସାର ନିହାତି ଦରକାର ପଡୁଥିଲା । ତେଣୁ ସେ ଦୁଇଜଣଙ୍କୁ ଆମେ ବାଛିଥିଲୁ । ପ୍ରତିବାଦ ଉଠିଥିଲା ବିଭିନ୍ନ ମହଲରୁ । କିନ୍ତୁ ତାହା ସଫଳ ହୋଇପାରି ନ ଥିଲା । ଜାନକୀବାବୁ କେନ୍ଦ୍ରରେ ମନ୍ତ୍ରୀ ଥିଲେ । ପ୍ରତିରକ୍ଷା ବିଭାଗରେ । କିନ୍ତୁ ସେତେବେଳେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀ । ତାଙ୍କ ସହିତ ତାଙ୍କର କୁଆଡ଼େ ପଡୁ ନ ଥିଲା । ଜାନକୀ ବାବୁ ଓଡ଼ିଶା ଆସିଲେ ତାଙ୍କୁ ଦେଖା କରିବା ପାଇଁ ଲୋକେ ଡରୁଥିଲେ । ସତରେ ହେଉ ବା ମିଛରେ ହେଉ । ଜାନକୀ ବାବୁ ଓଡ଼ିଶା ପାଇଁ କଣସବୁ କରିଛନ୍ତି ତାହା ସେ କାହାକୁ କହି ପାରୁ ନ ଥିଲେ । ସେଥିପାଇଁ ଖେଦ ଥିଲା । ଭୟ ଯୋଗୁଁ ଏହା ହେଉଛି ବୋଲି କୁହାଯାଉଥିଲା । କିନ୍ତୁ ସେଇଟା ମିଥ୍ୟା । କାରଣ ତାଙ୍କ ପାଇଁ ଏକ ବନ୍ଧୁ ମିଳନର ଆୟୋଜନ କରିଥିଲି । ଠିକ୍ ସେଇପରି କରିଥିଲି ନନ୍ଦିନୀ ଦେବୀଙ୍କ ପାଇଁ, ଯେତେବେଳେ ସେ କେନ୍ଦ୍ରମନ୍ତ୍ରୀ ଥିଲେ । ରାଜନୈତିକ ମତଭେଦ ଅଲଗା କଥା । କିନ୍ତୁ ଜଣେ ଓଡ଼ିଆ ଲୋକ କେନ୍ଦ୍ରରେ ମନ୍ତ୍ରୀ

Digitized by srujan ka@gmail.com

ହୋଇଛି । ସେ ଓଡ଼ିଶା ପାଇଁ କଣ କରିଛନ୍ତି ତାହା ସେ କହିବେ ନାହିଁ ଏବଂ ଆମେ ତାଙ୍କୁ କହିବା ନାହିଁ ସେ କଣ କରିବା କଥା ? ମୁଁ ଉତ୍କଳୀୟ ଏବଂ ସେଇଯୋଗୁଁ ଆନ୍ତର୍ଜାତିକ । ମୋର ଆନ୍ତର୍ଜାତିକତା ମୋର ଜାତୀୟତାର ପରିପନ୍ଥୀ ନୁହଁ ।

ଏଇ ପୃଷ୍ଠଭୂମିରେ ମୋ ସ୍ତ୍ରୀଙ୍କ ବଦଳି ଫାଇଲ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଫେରି ଆସିଛି ଦି' ଚାରିଥର । ରେଭେନ୍ସା କଲେଜର ସଂପର୍କ ବା ତତ୍‌କାଳୀନ ସମୟର ଆନ୍ତରିକତା ମୋତେ ସାହାଯ୍ୟ କଲା । ଏଇ ଆନ୍ତରିକତା ରାଜନୈତିକ ମତବାଦ, ସାମାଜିକ ସୀମାରେଖା ଟପି ଯାଇଛି ନିଶ୍ଚୟ । କାରଣ ଅନେକ ଇମିତି ବ୍ୟକ୍ତିଗତ ନିବିଡ଼ ବନ୍ଧୁ ଅଛନ୍ତି ଯେଉଁମାନଙ୍କ ସହିତ ଛାତ୍ର ଆନ୍ଦୋଳନରେ ବା ରାଜନୈତିକ ଆନ୍ଦୋଳନରେ ମତ ପାର୍ଥକ୍ୟ ଥିଲା ତୀବ୍ର ।

ଦିନେ ଜଣେ ବନ୍ଧୁ ସୀତାକାନ୍ତ ମହାପାତ୍ର  କହିଲେ ଗିରିଜା ବାବୁ, ଆମ କମଳ ଅପା, ଷ୍ଟଡି ଲିଭରେ ଯାଉନାହାନ୍ତି । ଗୋଟାଏ ଦରଖାସ୍ତ ଦେଇ ସାଂକସନ କରି ରଖା ଯାଇଥାଉ । ଇଙ୍ଗିତ ସ୍ପଷ୍ଟ । ସେତେବେଳେ ମୋ ସ୍ତ୍ରୀ ରିଡ଼ର । ଦରଖାସ୍ତ ଦେଲେ । ଷ୍ଟଡି ଲିଭ ପାଇଁ ଅନୁମତି ମିଳିଗଲା ଏବଂ ସେଥିରେ ଉଲ୍ଲେଖ କରାଯାଇଥିଲା ଯେ ପ୍ରାର୍ଥୀ ତାଙ୍କର ସୁବିଧା ମୁତାବକ ଛୁଟିରେ ଯାଇ ପାରିବେ । ହଠାତ୍ ହୁକୁମ ହେଲା । ଡିସେମ୍ବର ୨୦ ତାରିଖ ସୁଦ୍ଧା ଖଲିକୋଟ କଲେଜ ବ୍ରହ୍ମପୁରରେ ଯୋଗଦେବେ । ଅଥଚ ସେଠାରେ ପ୍ରଫେସର ପଦବୀ ନାହିଁ । ଅର୍ଡର କିନ୍ତୁ ହେଲା । ''ଗଛକୁ କାଟିବାକୁ ହେଲେ, ଆଗେ ଡାଳକୁ କାଟିବାକୁ ହେବ । ତେଣୁ ଆପଣଙ୍କୁ ଏଥିରେ ଦସ୍ତଖତ କରିବାକୁ ହେବ'', ଏଇଆ କହି ସେତେବେଳେ ଜଣେ ପ୍ରଭାବଶାଳୀ ବ୍ୟକ୍ତି ମୁଖ୍ୟମନ୍ତ୍ରୀଙ୍କଠାରୁ ଜବରଦସ୍ତ ଦସ୍ତଖତ କରି ଆଣିଥିଲେ ବୋଲି ଶୁଣିଲି । ଗଛ ହେଉଛନ୍ତି, 'ସମାଜ' ସମ୍ପାଦକ ରାଧାନାଥ ରଥ । ଉପକାରର ପ୍ରତ୍ୟୁତ୍ତର ମିଳିଗଲା । ରିଲିଫ କାମପାଇଁ ବ୍ରିଟିଶ ଜେଲରୁ ରାଜେନ୍ଦ୍ର ପ୍ରସାଦଙ୍କୁ ଖଲାସ କରାଯାଏ, ଆଉ ସ୍ୱାଧୀନ ଭାରତର ଏକ କର୍ମୀକୁ ହଇରାଣ କରିବା ପାଇଁ ତାର ସ୍ତ୍ରୀକୁ ବଦଳି କରାଯାଏ  ସ୍ୱାଧୀନ ସରକାରଙ୍କ ଦ୍ୱାରା । ସମୟ ବଦଳି ଯାଇଛି । ମୋର ଏ ପର୍ଯ୍ୟନ୍ତ ଗୋଟାଏ କଥା ମନେ ପଡୁଛି । ଶ୍ରୀ ବଲ୍ଲଭ ପାଣିଗ୍ରାହୀ ଥାଆନ୍ତି ଶିକ୍ଷାମନ୍ତ୍ରୀ । ଆମେ ବସିଛୁ ତାଙ୍କ ବିଧାନ ସଭା ଦପ୍ତରରେ । ହଠାତ୍ ଝଡ଼ଭଳି ପହଞ୍ଚିଲେ ସେଠି ତାଙ୍କର ସ୍ତ୍ରୀ । ସେ ଅଧ୍ୟାପିକା । ସେ ଆସି କହିଲେ ଯେ ଶରତ କରଙ୍କର ସ୍ତ୍ରୀଙ୍କର ବଦଳି ହୋଇଛି ।  ସେ ତାଙ୍କର ସହକର୍ମୀ । ତାଙ୍କ ସ୍ୱାମୀଙ୍କର ରାଜନୈତିକ କାର୍ଯ୍ୟପାଇଁ ତାଙ୍କ ସ୍ତ୍ରୀଙ୍କୁ ବଦଳି କରାଯିବା ଅନୁଚିତ । ତା'ହେଲେ ମୁଁ ମୁହଁ ଦେଖାଇ ପାରିବି ନାହିଁ । ବଦଳି ବନ୍ଦ ହୋଇଥିଲା ।

ସମସ୍ତେ ଏହାର ଶିକାର ହୋଇଛନ୍ତି । ସ୍ୱାମୀଙ୍କର ରାଜନୈତିକ କାର୍ଯ୍ୟପାଇଁ ସ୍ତ୍ରୀମାନଙ୍କୁ ହଇରାଣ କରାଯାଇଛି । କିନ୍ତୁ ଦୁଃଖର କଥା, ଆଜି ଯେ ଏଥିରେ ସନ୍ତୁଳିତ କାଲି ସେଇ ଲୋକ କ୍ଷମତାକୁ ଆସିଲେ ପୁଣି ସେଇ କଥାର ପୁନରାବୃତ୍ତି ଘଟିଛି । ଶରତ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି, ନରସିଂହ ତ୍ରିପାଠୀ, ବାଙ୍କ ବିହାରୀ ଦାସ, ରବି ରାୟ, ଶରତ କର, ପଦ୍ମଚରଣ ନାୟକ ବହୁଲୋକ ଏହାର ସାକ୍ଷ୍ୟ ବହନ କରନ୍ତି ।

Digitized by srujan ka@gmail.com

ମନେ ପଡୁଛି, ଜବାହରଲାଲ ଥିଲେ କଂଗ୍ରେସ କମିଟିର ସଭାପତି । ତାଙ୍କର ତିନିଜଣ ସେକ୍ରେଟେରୀ ଥିଲେ । ଡକ୍ଟର ରାମ ମନୋହର ଲୋହିଆ, ଡକ୍ଟର ଜେଡ୍.ଏ. ଅହମ୍ମଦ ଏବଂ ଡକ୍ଟର ଏମ୍.ଏ. ଆସରଫ । କାଳକ୍ରମେ ଲୋହିଆ କଂଗ୍ରେସ ଛାଡ଼ି ସୋସାଲିଷ୍ଟ ପାର୍ଟିରେ ଏବଂ ଆର ଦୁଇଜଣ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ଆସରଫ୍‌ଙ୍କର ତାଙ୍କ ସ୍ତ୍ରୀଙ୍କ ସହିତ ପଟିଲା ନାହିଁ । ସେ ତାଙ୍କୁ ଛାଡ଼ି ଜର୍ମାନୀ ପଳାଇଲେ । ଏ ଖବର ପାଇ ଜବାହରଲାଲ ତାଙ୍କର ପତ୍ନୀଙ୍କୁ ଡକାଇ ଆଣି ଏକ ଚାକିରି ଦେଲେ ଏବଂ ତାଙ୍କର ଦୁଇ ପୁଅଙ୍କର ଉଚ୍ଚଶିକ୍ଷା ପାଇଁ ବନ୍ଦୋବସ୍ତ ମଧ କରିଦେଲେ । ଲୋହିଆ ଥିଲେ ଜଣେ ପ୍ରସିଦ୍ଧ ବାଗ୍ମୀ । ଜବାହରଲାଲଙ୍କର ନୀତିକୁ ଆକ୍ରମଣ କରିବା ତାଙ୍କର ଦୈନନ୍ଦିନ କାର୍ଯ୍ୟ । ଲୋହିଆ କିପରି ଶାଣିତ ଓ ବାଇଟିଙ୍ଗ ସମସ୍ତେ ଜାଣନ୍ତି । ଲୋହିଆ ଅଛନ୍ତି ଜେଲ୍‌ରେ । କୌଣସି ଆନ୍ଦୋଳନରେ । ଆମ୍ବ ସମୟ । ସେ ଆମ୍ବ ଖାଇବାକୁ ଭଲ ପାଆନ୍ତି । ଜବାହରଲାଲ ସେ କଥା ମନେରଖି ତାଙ୍କୁ ଆମ୍ବ ପଠାଉଥିଲେ ଜେଲକୁ ।

ରାଜନୈତିକ ମତଭେଦ ଏବଂ ବ୍ୟକ୍ତିଗତ ସଂପର୍କ ଯେ ଭିନ୍ନ କଥା, ଏ କଥା ଧୀରେ ଧୀରେ ଲୋପ ପାଇ ଯାଉଛି । କିନ୍ତୁ ଏହା ସବୁଦିନେ ନ ଥିଲା ।

ପଣ୍ଡିତ ନେହେରୁ ଥିଲେ ଷ୍ଟେଟ ପିପୁଲସ୍ କନଫରେନ୍ସର ସଭାପତି । ତାଙ୍କର ଅଫିସ ସେକ୍ରେଟେରୀ ଥିଲେ ଜଣେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ତାଙ୍କର ନାମ ମୋର ବର୍ତ୍ତମାନ ମନେ ପଡୁନାହିଁ । ସେ ପାର୍ଟିର ସଦାବେଳିଆ କର୍ମୀ ବା ହୋଲଟାଇମର୍ ଥିଲେ । ମୁସଲମାନ, ଲମ୍ବା ଚଉଡ଼ା ଚେହେରା । ତାଙ୍କର କାର୍ଯ୍ୟ ସମାପ୍ତି ପରେ ସେ ଫେରିଲେ ଆପଣା ରାଜ୍ୟ ହାଇଦ୍ରାବାଦକୁ । ପଣ୍ଡିତ ନେହେରୁ ତାଙ୍କୁ କହିଥିଲେ ଯେତେବେଳେ ସେ ଦିଲ୍ଲୀ ଆସିବେ, ସେ ରହିବେ ତାଙ୍କର ଅତିଥି ହୋଇ । କିନ୍ତୁ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ କି ଯାଏ ଭାରତର ପ୍ରଧାନମନ୍ତ୍ରୀଙ୍କ ଅତିଥି ହେବା ପାଇଁ, କାହିଁକି ବା ଯିବେ ?

୧୯୫୭ ମସିହାର କଥା । ସେ ଯକ୍ଷ୍ମା ରୋଗରେ ପୀଡ଼ିତ ହେଲେ ଏବଂ ଚିକିତ୍ସା ପାଇଁ ଚୀନ ଯିବାକୁ ପାସପୋର୍ଟ ପାଇଁ ଦରଖାସ୍ତ କଲେ ଏବଂ କମ୍ୟୁନିଷ୍ଟ ପାର୍ଟିର ସେଇ ଯୋଦ୍ଧା ସୈନିକଙ୍କର ସେ ଦରଖାସ୍ତ ନାକଚ ହୋଇଗଲା । ଆମେସବୁ ସେତିକିବେଳେ ଯାଉଥାଉଁ ଷଷ୍ଠ ବିଶ୍ୱ ଯୁବ ଓ ଛାତ୍ର ଉତ୍ସବରେ ଯୋଗ ଦେବା ପାଇଁ ମସ୍କୋ । ପ୍ରାୟ ପାଞ୍ଚଶହ ଯୁବକ ଯୁବତୀ ।

ଆମ ଭିତରୁ ଦଳେ ରହୁଥାଉଁ ସାଉଥ୍ ଆଭିନ୍ୟୁର ଜଣେ ବଂଧୁ ପାର୍ଲ୍ୟାମେଣ୍ଟ ସଭ୍ୟଙ୍କ ଘରେ । ସେଦିନ ଆମେ ସବୁ ଫେରୁଥାଉଁ । ସାଙ୍ଗରେ ସେଇ ବଂଧୁ । ସେ ଫେରିଯିବେ ହାଇଦ୍ରାବାଦ, ମୃତ୍ୟୁକୁ ଅପେକ୍ଷା କରିବେ ସେଇଠି । ଆମେସବୁ ଯିବୁ ମସ୍କୋ ଯୁବ ଓ ଛାତ୍ର ଉତ୍ସବରେ ଯୋଗ ଦେବାପାଇଁ । ସମସ୍ତଙ୍କ ମନ ଖରାପ ।

ସେଇ ରାସ୍ତାଟା ହେଉଛି ପଣ୍ଡିତ ନେହେରୁଙ୍କର ଯିବା ଆସିବା ବାଟ । ପାର୍ଲ୍ୟାମେଣ୍ଟରୁ ତିନିମୂର୍ତ୍ତି ଭବନକୁ । ନେହେରୁ ପୋଲିସ ବନ୍ଦୋବସ୍ତର ବିରୋଧୀ ଥିଲେ । ତେଣୁ ସେ ଯିବା

Digitized by srujan ka@gmail.com

ବାଟରେ ପୁଲିସ ମୁତୟନ ହେଉ ନ ଥିଲା । କିନ୍ତୁ ଗୁଇନ୍ଦା ପୁଲିସ ସବୁ ଚନାଚୁର, ବିସ୍କୁଟ ବିକାଳୀ, ଜୋତା ପାଲିସ କଲାବାଲା ବେଶରେ ଆସି ଗଛ ମୂଳମାନଙ୍କରେ ଠିଆ ହୋଇ ଯାଉଥିଲେ ପଣ୍ଡିତ ନେହେରୁଙ୍କର ଆସିବା ପୂର୍ବରୁ ।

ଏବେ ସେ ପ୍ରଥା ଉଠିଗଲାଣି । ବିଜ୍ଞାନ ଭବନରେ ସମ୍ମିଳନୀ ହେଲେ ରାସ୍ତାଘାଟ ବନ୍ଦ । ତା' ଆଗରେ ଥିବା ଘରମାନଙ୍କରୁ ବାହାରିବା ବି ନିଷିଦ୍ଧ । ଯଦିଓ ସେଥିରେ ଅନେକ ପାର୍ଲ୍ୟାମେଣ୍ଟ ସଭ୍ୟ ରହନ୍ତି । ବଂଧୁ ପ୍ରଭାତ ସାମନ୍ତରାୟ ପାର୍ଲ୍ୟାମେଣ୍ଟ ସଭ୍ୟ ଭାବରେ ସେଇଠି ରହୁଥିଲେ । ତାଙ୍କ ଘରେ ଅତିଥି ହୋଇଛୁ ଏବଂ ଏଇପରି ଏକ ସମ୍ମିଳନୀ ବିଜ୍ଞାନ ଭବନରେ ହେଉଥିବାରୁ ଘଣ୍ଟା ଘଣ୍ଟା ଧରି ଘରେ ଆବଦ୍ଧ ହୋଇ ରହିବାକୁ ପଡ଼ିଛି । ଜଣେ ବିଶିଷ୍ଟ ବ୍ୟକ୍ତି ଦିନେ ଏଇପରି ସମୟରେ ଏକ ଗଳିରୁ ଗାଡ଼ିରେ ବାହାରି ରାସ୍ତା ଉପରକୁ ଉଠିଗଲେ । ସେ ଜାଣନ୍ତି ନାହିଁ ସମ୍ମିଳନୀ କଥା, ସେ ଗଳିରାସ୍ତା ମଧ୍ୟ ବନ୍ଦ ହୋଇ ନ ଥିଲା । ରାସ୍ତା ଉପରକୁ ଉଠିଯିବା ମାତ୍ରେ ତାଙ୍କ ଉପରେ, ତାଙ୍କ ଗାଡ଼ି ଉପରେ ହେଲା ଯେଉଁ ମାଡ଼ !

ଆମେ ଫେରୁଚୁ ସାଉଥ ଆଭିନ୍ୟୁ ରାସ୍ତାରେ । ପଣ୍ଡିତ ନେହେରୁ ସେଇବାଟ ଦେଇ ଯିବେ । ଜଣେ କିଏ କହିଲା ଆମକୁ ସାଇଡ୍ ହୋଇଯିବା ପାଇଁ । ସେତିକି ମାତ୍ର । ଆମେ ଏକ ପାଖକୁ ଘୁଞ୍ଚିଗଲୁ । ହଠାତ୍ ପଣ୍ଡିତ ନେହେରୁଙ୍କର ଗାଡ଼ି ବ୍ରେକ୍ ଦେଇ ଅଟକି ଗଲା । ତାଙ୍କର ଆଖି ପଡ଼ି ଯାଇଛି ସେଇ ଯୁବକ ଉପରେ, ତାଙ୍କର ପୂର୍ବତନ ସେକ୍ରେଟେରୀଙ୍କ ଉପରେ । ସେ ଗାଡ଼ିରୁ ଡେଇଁ ପଡ଼ି ତାର କଲର ଧରି ପଚାରିଲେ, ସାଲା, ତୁ ଦିଲ୍ଲୀରେ । ଅଥଚ ମୋତେ ଖବର ଦେଇନୁ କି ଦେଖା କରିନୁ ! ତୋ' ଦେହ କାହିଁକି ଇମିତି ଦେଖା ଯାଉଛି ? କଣ ହେଲା ତୋର । ସେ ନିର୍ଲିପ୍ତ ଭାବରେ ଉତ୍ତର ଦେଲେ, ମୋର ଯକ୍ଷ୍ମା ହୋଇଛି । ଚାଲ୍ ମୋ ସାଂଗରେ । ନା, ପରେ କେବେ ଯିବି । କିନ୍ତୁ ପଣ୍ଡିତ ନେହେରୁ ତାକୁ ଟାଣି ଗାଡ଼ିରେ ନେଇଗଲେ ଏବଂ ଆମ ସମସ୍ତଙ୍କୁ କହିଗଲେ ଉପରବେଳା ତିନିମୂର୍ତ୍ତି ଭବନକୁ ଆସିବା ପାଇଁ ।

ଏତେବେଳକୁ ଚନାଚୁର ବିକାଳୀ, ଜୋତା ପାଲିସ ବାଲାଙ୍କ ସ୍ୱରୂପ ପ୍ରକାଶ ପାଇ ସାରିଲାଣି । କଣ ହେଲା ? ସେ କିଏ ? କଣ ଚୋର, ଡକାୟତ ? ପଣ୍ଡିତ ନେହେରୁ ତାକୁ ନେଇ ସିଧା ଚାଲିଲେ ଆପଣାର ବେଡ଼୍ରୁମ୍‌କୁ । ଖବର ବ୍ୟାପିଗଲା ସଂଗେ ସଂଗେ । ସେ ପଣ୍ଡିତଜୀଙ୍କ ସାଂଗରେ ମଧ୍ୟାହ୍ନ ଭୋଜନ କରିବେ । ପଣ୍ଡିତ ନେହେରୁ ଆପଣାର ଉପରବେଳାର ସବୁ କାର୍ଯ୍ୟକ୍ରମକୁ ବାତିଲ କରି ଦେଇଛନ୍ତି । କଣ ହେଲା ? କିଏ ସେ ଏଇ ଲୋକ, ଯିଏ ବିନା ଆପଏଣ୍ଟମେଣ୍ଟରେ ପଣ୍ଡିତଜୀଙ୍କ ସାଂଗରେ ମଧ୍ୟାହ୍ନ ଭୋଜନ କରିବେ ଏବଂ ଯାହାଙ୍କ ପାଇଁ ଉପରବେଳାର ସବୁ କାର୍ଯ୍ୟକ୍ରମ ବାତିଲ ହୋଇଛି । କିନ୍ତୁ ପଣ୍ଡିତଜୀଙ୍କୁ ପଚାରିବ କିଏ ? ତାଙ୍କର ସେକ୍ରେଟେରୀ ମନାକଲେ ସେ ଜାଣି ନାହାନ୍ତି ଏଇ ବ୍ୟକ୍ତିଙ୍କୁ । ଇନ୍ଦିରା ଗାନ୍ଧୀ ମନାକଲେ । କେବଳ ତାଙ୍କର ମାଳି ହରି କହିଲା ଯେ ସେ ତାଙ୍କର ପୁରୁଣା ବଂଧୁ । ଅନେକ ଦିନ ତଳେ ତାଙ୍କ ସାଂଗରେ କାମ କରିବାର ଦେଖିଚି ସେ ।

Digitized by srujan ka@gmail.com

ମଧ୍ୟାହ୍ନ ଭୋଜନ ପରେ ପଣ୍ଡିତ ନେହେରୁ ତାଙ୍କୁ ପଚାରିଲେ, ଚିକିତ୍ସା ପାଇଁ ବ୍ୟବସ୍ଥା କରୁନାହଁ କାହିଁକି ? ସେ କହିଲେ ଯେ ଚୀନ ଯିବା ପାଇଁ ପାସପୋର୍ଟ ସକାଶେ ଦରଖାସ୍ତ କରିଥିଲି । କିନ୍ତୁ ତାହା ନାକଚ ହୋଇଛି ।

କ୍ରୁଦ୍ଧ ଜବାହରଲାଲ ପ୍ରଶ୍ନ କଲେ, କିଏ ନାକଚ କରିଛି ? କଠୋର କଣ୍ଠରେ ଯୁବକ ଉତ୍ତର ଦେଲେ ଭାରତର ବୈଦେଶିକ ମନ୍ତ୍ରୀଙ୍କ ଦପ୍ତର । ମୋତେ କହିଲ ନାହିଁ ? ଭାରତବର୍ଷର ଯେତେ ଲୋକ ପାସପୋର୍ଟ ପାଇଁ ଦରଖାସ୍ତ କରୁଛନ୍ତି, ସେମାନଙ୍କର ସମସ୍ତଙ୍କର କ'ଣ ଭାରତର ବୈଦେଶିକ ମନ୍ତ୍ରୀଙ୍କ ସହିତ ପରିଚିତି ଅଛି ? ମୋର ଅଛି ବୋଲି ମୁଁ ସେଇ ସୁବିଧା ଉଠାଇବା ଉଚିତ କି ?

ପଣ୍ଡିତ ନେହେରୁ ବେଲ୍ ଟିପିଲେ ଏବଂ ତାଙ୍କର ପାସପୋର୍ଟ ସଂଗେ ସଂଗେ ଆଣିବା ପାଇଁ ନିର୍ଦ୍ଦେଶ ଦେଲେ । ପାସପୋର୍ଟ ଆସିଲା, ସେ ଭଦ୍ରଲୋକଙ୍କ ନାମ ବି ଜଣା ପଡ଼ିଗଲା । ସେଇ ରାତିରେ ସେ ପେକିଂ ଯିବାପାଇଁ ଟିକେଟର ବ୍ୟବସ୍ଥା ବି ହୋଇଗଲା । ପ୍ରଧାନମନ୍ତ୍ରୀ ନେହେରୁ ନିଜେ ଫୋନ କଲେ ଚୀନ ପ୍ରଧାନମନ୍ତ୍ରୀଙ୍କୁ ଏବଂ ତାଙ୍କର ବଂଧୁଙ୍କର ଯତ୍ନ ନେବା ପାଇଁ ଅନୁରୋଧ କଲେ ।

ତୋର ଡ୍ରେସ ନାହିଁ ? ଏଇ ପାଇଜାମା ପିନ୍ଧି ଯିବୁ ଚୀନକୁ ଲୋକେ କଣ କହିବେ ? ସେ ବଂଧୁ ଉତ୍ତର ଦେଲେ ଚୀନ ହେଉଛି ସମାଜବାଦୀ ଦେଶ । ତେଣୁ ଏଇ ଡ୍ରେସ ଚଳିବ । ଆବେ, ତୋତେ କିଏ ଚିହ୍ନିଛି ଚୀନରେ ? ସେମାନେ ତ ଭାରତବର୍ଷର କେବଳ ମୋତେ ହିଁ ଜାଣନ୍ତି । ଆଉ ତୁ ଇମିତି ଡ୍ରେସ ପିନ୍ଧି ଗଲେ ସେମାନେ କହିବେ ଯେ ନେହେରୁର ଭାରତବର୍ଷରୁ ଗୋଟାଏ କିଏ ଲଙ୍ଗା ଫକୀର ଆସିଛି । ଡକାଇ ପଠାଗଲା ତାଙ୍କର ନିଜ ଦରଜୀକୁ । ଡ୍ରେସ ତିଆରି ହେଲା ସଂଗେ ସଂଗେ ।

ବର୍ତ୍ତମାନ ଉଠିଲା ସବୁଠାରୁ ବଡ଼ ସମସ୍ୟା । ପଣ୍ଡିତ ନେହେରୁ ଜିଦ୍ ଧରି ବସିଲେ ଯେ ସେ ତାଙ୍କୁ ଛାଡ଼ିବାକୁ ଯିବେ ବିମାନବନ୍ଦରକୁ । ପ୍ରୋଟୋକଲବାଲା ପଡ଼ିଲେ ଅସୁବିଧାରେ । ତାଙ୍କୁ ଛାଡ଼ିବାକୁ ଗଲେ ଭାରତବର୍ଷର ବହୁ ବ୍ୟକ୍ତି ଦାବି କରିବେ ସେଇଭଳି । ସେ ତ ପ୍ରୋଟୋକଲର ଧାରାରେ ପଡ଼ୁ ନାହାନ୍ତି ।

ବାଧ ହୋଇ ସେ ବଂଧୁ ମନାକଲେ ପଣ୍ଡିତ ନେହେରୁଙ୍କୁ ଏୟାରପୋର୍ଟକୁ ଯିବା ପାଇଁ । କିନ୍ତୁ ଉତ୍ତର ଆସିଲା, କଣ ପ୍ରୋଟୋକଲବାଲା ତୋ' ପିଛାରେ ପଡ଼ିଯାଇଛନ୍ତି କି ? ତାଙ୍କୁ କହିଦେବୁ ଯେ ମୁଁ ଭାରତର ପ୍ରଧାନମନ୍ତ୍ରୀ ହୋଇପାରେ କିନ୍ତୁ ମୁଁ ତ ପୁଣି ଜଣେ ମଣିଷ । ମୋର କଣ ଅଧିକାର ନାହିଁ ମଣିଷର ?

ବହୁ କଷ୍ଟ କେବଳ ତାଙ୍କୁ କରିବାକୁ ହେଲା ନାହିଁ, ଆମକୁ ବି କରିବାକୁ ହେଲା । କାରଣ ଆମର ଅବାଧ ଅଧିକାର ମିଳିଯାଇଥିଲା ଆଗରୁ । ପରିଶେଷରେ ପଣ୍ଡିତ ନେହେରୁ ରାଜି ହେଲେ

Digitized by srujan ka@gmail.com

ବାଧ ହୋଇ । ଠିକ୍ ହେଲା, ଇନ୍ଦିରା ଗାନ୍ଧୀ ତାଙ୍କୁ ଛାଡ଼ିବାକୁ ଯିବେ ବିମାନବନ୍ଦରକୁ । ପଣ୍ଡିତ ନେହେରୁ ତାଙ୍କୁ ବଳାଇ ଦେଇଯିବେ ତିନିମୂର୍ତ୍ତି ଗେଟ୍ ପର୍ଯ୍ୟନ୍ତ ।

ସେ ସ୍ମୃତି ଭୁଲିବାର ନୁହେଁ । ଲମ୍ବାଚଉଡ଼ା ସେଇ କମ୍ରେଡ଼ଙ୍କର ଗୋଟାଏ ହାତ ପଡ଼ିଛି ପଣ୍ଡିତ ନେହେରୁଙ୍କ କାନ୍ଧରେ, ଆଉ ହାତ ପଡ଼ିଛି ଇନ୍ଦିରା ଗାନ୍ଧୀଙ୍କ କାନ୍ଧରେ । ପଣ୍ଡିତ ନେହେରୁ କହି ଚାଲିଛନ୍ତି ତାଙ୍କୁ, ନିଜର ଯତ୍ନ ନେବାପାଇଁ । ଆଉ ବିଦାୟ ଦେଲାବେଳେ ପଣ୍ଡିତ ନେହେରୁଙ୍କ ଆଖିରୁ ଝରୁଛି ଧାର ଧାର ଲୁହ ।

ଅଥଚ ସେ ଦୁଇଜଣ ଦୁଇ ବିରୋଧୀ ଦଳର ଏବଂ ସେତେବେଳେ କମ୍ୟୁନିଷ୍ଟ ପାର୍ଟି ସହିତ ସଂଘର୍ଷ ତୀବ୍ର କଂଗ୍ରେସ ଦଳର ।

ଠିକ୍ ସେଇପରି । ପଣ୍ଡିତ ନେହେରୁଙ୍କର ପରଲୋକ ହୋଇ ଯାଇଛି । ତାଙ୍କର ମର ଦେହ ଉପରେ ମୁଣ୍ଡକୁ ପାତି ପଡ଼ି ରହିଛନ୍ତି ଜଣେ ବ୍ୟକ୍ତି ବହୁ ସମୟ ଧରି । ସେ ଉଠୁ ନାହାନ୍ତି କି କେହି ତାଙ୍କୁ ଉଠାଇବାକୁ ସାହସ କରୁ ନାହାନ୍ତି । ସେ ହେଉଛନ୍ତି ପଣ୍ଡିତ ନେହେରୁଙ୍କର ଜେଲରେ ୧୬ ବର୍ଷ କାରାବାସ ପରେ ସଦ୍ୟ ମୁକ୍ତ ଶେର୍-ଇ-କାଶ୍ମୀର ଶେଖ୍ ଅବଦୁଲ୍ଲା, ଏକଦା କାଶ୍ମୀରର ମୁଖ୍ୟମନ୍ତ୍ରୀ ।

ଦୀର୍ଘଦିନ ଅସୁସ୍ଥ ଏବଂ ଅଚେତ ରହିବା ପରେ ଭାରତର ଘରୋଇ ମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ମୃତ୍ୟୁ ହୋଇଛି । ସବୁ ଖବରକାଗଜ ଲେଖିଲେ ଏହା ପରେ ଏହି ଘରେ ଏଇ କଲୋସସ୍‌କୁ ଦେଖିବାପାଇଁ ମିଳିବ ନାହିଁ । ଠିକ୍ ସେଇପରି ମିଳିବ ନାହିଁ ଦେଖିବାକୁ ଆଉ ଏକ ଗମ୍ଭୀର ମୁହଁକୁ । ସେ ହେଉଛନ୍ତି ତାଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ କମ୍ୟୁନିଷ୍ଟ ପାର୍ଟିର ନେତା ଭୂପେଶ ଗୁପ୍ତଙ୍କୁ । ଗଲା ବହୁମାସ ଧରି ସେ ପ୍ରତ୍ୟେକ ଦିନ ସକାଳେ ଏବଂ ସଂଧ୍ୟାରେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କୁ ଦେଖିବାକୁ ଆସିଛନ୍ତି । ତାଙ୍କ ମୁଣ୍ଡ ଓ ଗୋଡ଼ ପାଖରେ ବସି ମେଡିକାଲ ରିପୋର୍ଟକୁ ଦେଖିଛନ୍ତି । ଗୋଡ଼ ଓ ମୁଣ୍ଡକୁ ଆଉଁସି ସାରି ବାହାରିଛନ୍ତି କାମରେ । ଦିନେ ବି ତାର ବ୍ୟତିକ୍ରମ ହୋଇନାହିଁ । ଅଥଚ ଭୂପେଶ ଗୁପ୍ତ ପ୍ରତ୍ୟେକ ଦିନ ଆପଣାର ପ୍ରଶ୍ନ ବାଣରେ ଜର୍ଜରିତ କରିଛନ୍ତି ଘରୋଇ ମନ୍ତ୍ରୀଙ୍କୁ ।

ସେ ମୂଲ୍ୟବୋଧ ହଜି ଯାଉଛି ।

ମୋର ଏକ କ୍ଷୁଦ୍ର ଅଭିଜ୍ଞତା କଥା କହିବି । ମୁଁ ଥାଏ ରେଭେନ୍ସା କଲେଜ ୟୁନିୟନର ସଭାପତି । ପଣ୍ଡିତ ନେହେରୁ ଆସୁଥାନ୍ତି ଓଡ଼ିଶା । ତାଙ୍କୁ ରେଭେନ୍ସା କଲେଜକୁ ଯିବା ସକାଶେ ନିମନ୍ତ୍ରଣ କରିବା ପାଇଁ ମୁଁ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖରେ ପହଞ୍ଚିଲି ।

ପଟ୍ଟନାୟକ ମହାଶୟ (ମୋତେ ମହତାବ୍‌ବାବୁ ଏଇପରି ଡାକନ୍ତି) ଆପଣ ପରା ଆମର ବିରୋଧୀ ? ଆପଣ ପରା ଥିଲେ ଆମ ଜେଲ୍‌ରେ । ଆପଣଙ୍କୁ ଆମ ପୁଲିସ ଖୋଜୁଥିଲା ବର୍ଷ ବର୍ଷ ଧରି । ଆପଣ କିମିତି ଡାକିବାକୁ ଆସିଛନ୍ତି ପଣ୍ଡିତ ନେହେରୁଙ୍କୁ ?

Digitized by srujan ka@gmail.com

ଆପଣ ଯାହା କହିଲେ ସବୁ ଠିକ୍ । କିନ୍ତୁ ମୁଁ ଡାକିବାକୁ ଆସିଛି ପ୍ରଧାନମନ୍ତ୍ରୀଙ୍କୁ, କଂଗ୍ରେସ ଦଳର ନେତାଙ୍କୁ ନୁହେଁ । ଆଉ ମୁଁ ଡାକିବାକୁ ଆସିଛି ରେଭେନ୍ସା କଲେଜ ୟୁନିୟନର ସଭାପତି ଭାବରେ, ମୋର ଦଳର ପ୍ରତିନିଧି ଭାବରେ ନୁହେଁ ।

ମହତାବବାବୁ ସନ୍ତୁଷ୍ଟ ହେଲେ ଏବଂ ପ୍ରଧାନମନ୍ତ୍ରୀଙ୍କୁ ଫୋନ କଲେ । ସେତେବେଳେ ମୁଖ୍ୟମନ୍ତ୍ରୀମାନେ ସିଧା ସଳଖ ପ୍ରଧାନମନ୍ତ୍ରୀଙ୍କ ସହ କଥାବାର୍ତ୍ତା କରି ପାରୁଥିଲେ । ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକଙ୍କୁ ଏହିପରି କଥାବାର୍ତ୍ତା କରିବାର ମୁଁ ଦେଖିଛି । ନନ୍ଦିନୀ ଦେବୀଙ୍କର ମଧ ଥିଲା ବୋଲି ମୁଁ ଶୁଣିଚି, କିନ୍ତୁ ଦେଖି ନାହିଁ ।

ମହତାବ ବାବୁ ମୋତେ ଯାହା କହିଥିଲେ ପଣ୍ଡିତ ନେହେରୁଙ୍କୁ ତ ସେଇଆ କହିଲେ । ସେପଟରୁ ସେ କଣ କହିଲେ ଜାଣି ନାହିଁ । କିନ୍ତୁ ମହତାବ ବାବୁ ଏତିକି କହିବା ଶୁଣିଲି ଯେ It is very interesting. But do you like to talk with him ? ଏତିକି କହି ସେ ମୋତେ ଫୋନ ବଢ଼ାଇ ଦେଲେ ।

ପଣ୍ଡିତ ନେହେରୁ ବି ମୋତେ ସେଇପ୍ରକାର ପ୍ରଶ୍ନ ପଚାରିଲେ ଏବଂ ମୋର ବି ଉତ୍ତର ସେଇ ପ୍ରକାର ଥିଲା । ସେ ସନ୍ତୁଷ୍ଟ ହେଲେ କିନ୍ତୁ କହିଲେ ଯେ ମୁଁ ତ କେବଳ ବିଶ୍ୱବିଦ୍ୟାଳୟମାନଙ୍କୁ ଯାଏ, କଲେଜମାନଙ୍କୁ ଯାଏନା । ରେଭେନ୍ସା କଲେଜ ତ ବିଶ୍ୱବିଦ୍ୟାଳୟ ନୁହେଁ । ସୁତରାଂ.... ରେଭେନ୍ସା କଲେଜ ଏକ ସାଧାରଣ କଲେଜ ନୁହେଁ । ଏହା ଯଦି ଏ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ହୋଇ ନାହିଁ ତା'ହେଲେ ମୁଁ ତ ଆପଣଙ୍କୁ ହିଁ ଦାୟୀ କରିବି ? ମୋତେ .... କାହିଁକି ? ଆପଣ ପ୍ରଧାନମନ୍ତ୍ରୀ ଥାଉ ଥାଉ ଏହା ବିଶ୍ୱବିଦ୍ୟାଳୟ ହୋଇ ନାଇଁ କାହିଁକି ? ସେ ଖୁସି ହୋଇଗଲେ ଏବଂ ଆସିବା ପାଇଁ ସମ୍ମତି ଦେଲେ ।

ପ୍ରଧାନମନ୍ତ୍ରୀ ଆସିବାର ଦିନକ ପୂର୍ବରୁ, ହଠାତ୍ ପୋଷ୍ଟ ଗ୍ରାଜୁଏଟ୍ ହଷ୍ଟେଲ (ଷ୍ଟେସନ ଆରପାଖ ମୟୂରଭଂଜ କୋଠି) ରେ ତତ୍‌କାଳୀନ ଆଇ.ଜି. ପୁଲିସ ହାଜର । ସାଂଗରେ ରେଭେନ୍‌ସା କଲେଜରେ ପଢୁଥିବା ତାଙ୍କର ଝିଅ । କଣ ହେଲା ? ହଠାତ୍ ପୁଲିସ ବିଭାଗର ମୁଖ୍ୟ ଏଠି କାହିଁକି ? ଯେଉଁ ପୁଲିସ ମୋତେ ଆସିଲା ଡାକିବାକୁ ମୁଁ ରହୁଥିବା କୋଠରୀକୁ, ଦେଖିଲି ତା' ଆଖିରେ ଲୁହ ।

ସେ ଆଖିରୁ ଲୁହ ପୋଛି କହିଲା ଆଜ୍ଞା, ଆପଣଙ୍କୁ ଆଇ.ଜି ଡାକୁଛନ୍ତି । ମୋ ଘର ହେଉଛି ଅନୁଗୋଳ । ଆପଣଙ୍କୁ ଧରିବା ପାଇଁ ଆମେ କେତେ ନ ଖୋଜିଛୁ ଅନୁଗୋଳଯାକ । ଆଜି ଆପଣଙ୍କୁ ଭେଟିବା ପାଇଁ ନିଜେ ପୁଲିସ ଆଇ.ଜି. ଆସିଛନ୍ତି । ଗର୍ବରେ ମୋର ଛାତି କୁଣ୍ଢେ ମୋଟ ହୋଇଯାଉଛି ।

ଯାଇ ଦେଖାକଲି ତାଙ୍କୁ ଏବଂ ଆସିବାର କାରଣ ପଚାରିଲି । ସେ କହିଲେ ଯେ ପଣ୍ଡିତ ନେହେରୁ ଆସୁଛନ୍ତି । ତାଙ୍କର ସଭା ସମୟରେ ମାତ୍ର ଚାରିଜଣ ପୁଲିସ ଅଫିସର ସାଦା

Digitized by srujan ka@gmail.com

ପୋଷାକରେ ରେଭେନ୍ସା କଲେଜ ଭିତରକୁ ଯିବା ପାଇଁ ମୋର ଏକ ଲିଖିତ ଅନୁମତି ଦରକାର । ମୁଁ ହସିଲି, ଏତେ ଲୋକ ଯିବେ ଆପଣ ଆଠଜଣ ପଠାଉ ନାହାନ୍ତି । କିଏ ଅଟକାଉଛି କି ? ଏବଂ କିପରି ବି ଅଟକାଯାଇ ପାରିବ ?

ସେ ଜିଦ୍ ଧରି ବସିଲେ ଏବଂ ଝିଅଟି କହିଲା ଯେ ଦାଦା, ଦେଇ ଦିଅନା ଅନୁମତି । ବାପା ପରା ମୋତେ ସେଇଯୋଗୁଁ ଆଣିଛନ୍ତି ସାଂଗରେ । ମୁଁ ବି ଟିକିଏ ଜିଦ୍ ଧରି ବସିଲି, ଲିଖିତ ଅନୁମତିର କାରଣ ଜାଣିବା ପାଇଁ । କୌତୁହଳ ବଢ଼ିଥିଲା । ସେ ମୋ ଠାରୁ ପ୍ରତିଶ୍ରୁତି ନେଲେ, କାହାକୁ ନ କହିବା ପାଇଁ । ପ୍ରତିଶ୍ରୁତି ନେଇ ସାରିଲାପରେ ପକେଟରୁ ଏକ ଓ୍ୟାୟାର୍‌ଲେସ୍ ବାର୍ତ୍ତା କାଢ଼ି ଦେଖାଇଲେ । ସେଥିରେ ଲେଖାଅଛି ଯେ ଯେହେତୁ ରେଭେନ୍ସା କଲେଜ ୟୁନିୟନର ସଭାପତି ବିରୋଧୀ ଦଳର, ସେହିହେତୁ ତାଙ୍କର ଲିଖିତ ଅନୁମତି ବିନା କୌଣସି ପୋଲିସ ପୋଷାକରେ ବା ବିନା ପୋଷାକରେ ସଭା ସମୟରେ କଲେଜ ଭିତରକୁ ଯାଇ ପାରିବେ ନାହିଁ । (ଲିଖିତ ଅନୁମତି ବୋଲି ଆଉଥରେ କୁହାଯାଇଥିଲା ଉକ୍ତ ବାର୍ତ୍ତାରେ) । ରାଜନୈତିକ ମତଭେଦ ବ୍ୟକ୍ତିଗତ ସଂପର୍କକୁ ଯେପରି ଛୁଇଁ ପାରି ନ ଥିଲା ଠିକ୍ ସେଇପରି ବିରୋଧୀ ମତ ପ୍ରତି ସମ୍ମାନ ମଧ୍ୟ ଥିଲା ।

ସେଗୁଡ଼ା ପୁରୁଣା କଥା । ପୁରୁଣା ମୁଲ୍ୟବୋଧ । ବଦଳି ଆଦେଶ ହେଲା ମୋ ସ୍ତ୍ରୀଙ୍କର । ପଠାଇବା ପାଇଁ ତ ସମୟ ଲାଗିବ । ରେଭେନ୍‌ସା କଲେଜର ପୁରାତନ ବନ୍ଧୁମାନେ ଜାଣନ୍ତି ମୋର ସମସ୍ୟା, ଦୁଃଖ କଥା । ଅର୍ଡର ରେଭେନ୍‌ସା କଲେଜରେ ପହଞ୍ଚିଲା ପୂର୍ବରୁ ମୋ ସ୍ତ୍ରୀଙ୍କୁ ପ୍ରିନ୍‌ସିପାଲ ରିଲିଭ କରିଦେଇଛନ୍ତି, ତାଙ୍କର କ୍ଷତି ଲିଭ୍‌ରେ । କ୍ଷୀର ନନା (ଡକ୍ଟର କ୍ଷୀରୋଦ ପଟ୍ଟନାୟକ) ୰ଭୁବନାନନ୍ଦ ଦାସଙ୍କ ଜାମାତା । ସେ କଣ ସହଜରେ ରିଲିଭ କରିବେ ! ଏଇ ଥିଲା ପ୍ରବଳ ପ୍ରତାପୀ ମନ୍ତ୍ରୀଙ୍କର ଧାରଣା । ସେ ଯେ ମୋର ବଡ଼ ଭାଇ ଏକଥା ସେ ଜାଣି ନ ଥିଲେ, ଆଜି ମଧ୍ୟ ଜାଣନ୍ତି କି ନାହିଁ ମୁଁ ଜାଣେନା । ସଂପୃକ୍ତ ମନ୍ତ୍ରୀଙ୍କ ସହ ରାଜନୈତିକ ବା ବ୍ୟକ୍ତିଗତ ଶତ୍ରୁତା ବା ବୈରତା ନ ଥିଲା, ଆଜି ବି ନାହିଁ । କେବଳ ରାଧାନାଥ ବାବୁଙ୍କ ସହିତ ତାଙ୍କର ଶତ୍ରୁତା ଯୋଗୁଁ ମୋତେ ଶିକାର ହେବାକୁ ପଡ଼ିଲା । ପରେ ତାଙ୍କୁ ମୁଁ ରାଧାନାଥ ବାବୁଙ୍କ ପାଦ ଛୁଇଁ ମୁଣ୍ଡିଆ ମାରିବା ଦେଖି ଆଖି ଖୋସି ହୋଇଯାଇଛି । ଇମିତି ବି ହୁଏ ।

ଗୋଟାଏ ଭାଗ ଗଲେ ପୁରୁଣାଗଡ଼ ଏବଂ ସତ୍ୟବାଦୀ ପଟ୍ଟନାୟକଙ୍କର ବାପା ବା ସେ ଭାଗ ଆସିଲେ କାଙ୍କୁଲା । ଅନୁଗୋଳଠାରୁ ଚାରିମାଇଲ ବାଟ । ଲିଙ୍ଗରା ନଈ କୂଳରେ ଅବସ୍ଥିତ ଏଇ ଗାଁ । ଏହା ତିନି ଭାଗରେ ବିଭକ୍ତ ଥିଲା । କାଙ୍କୁଲା, କାଙ୍କୁଲା ବେନ୍ତପୁର, କାଙ୍କୁଲା-ନୂଆସାହି । ପରେ ଏଗୁଡ଼ିକ ତିନୋଟି ସ୍ୱତନ୍ତ୍ର ଗ୍ରାମରେ ପରିଣତ ହୋଇଛି । ଲିଙ୍ଗରା ନଈକୂଳ ଖାଇଯିବାରୁ ଏହି ଗ୍ରାମର ଅନେକ ନଈ ଆର ପଟକୁ ପୁରୁଣା କଟକ-ସମ୍ବଲପୁର ରାସ୍ତା ପାଖକୁ ଉଠିଗଲେଣି । କାଙ୍କୁଲା ଗାଁରେ ଜଣେ ଜଣାଶୁଣା କଂଗ୍ରେସ ନେତା ଥିଲେ, ଡାକ୍ତର କୃପାସିନ୍ଧୁ

Digitized by srujan ka@gmail.com

ଭୁକ୍ତା । କିନ୍ତୁ କାହିଁକି କେଜାଣି ସେ ୧୯୪୨ ମସିହା ଆନ୍ଦୋଳନରେ ଯୋଗ ଦେଇ ନ ଥିଲେ । ସେହି ସମୟରେ ତାଙ୍କର ପରଲୋକ ମଧ ହୋଇ ଯାଇଥିଲା । ହରେକୃଷ୍ଣ ମହତାବ ଜେଲ୍‌ରୁ ଫେରି ଯେଉଁମାନଙ୍କର ପରଲୋକରେ ଶ୍ରଦ୍ଧାଞ୍ଜଳି ନିବେଦନ କରିଥିଲେ ସେମାନଙ୍କ ମଧ୍ୟରେ ଡାକ୍ତର କୃପାସିନ୍ଧୁ ଭୁକ୍ତା ଅନ୍ୟତମ ବୋଲି ମନେ ପଡୁଚି । ବେନ୍ତପୁର ଗ୍ରାମର ବାସିନ୍ଦା ହୃଷିକେଶ ତ୍ରିପାଠୀ ବହୁଦିନ ଧରି ଓଡ଼ିଶା ବିଧାନସଭାର ସଭ୍ୟ ଥିଲେ । କିଛି ଦିନ ତଳେ ତାଙ୍କର ପରଲୋକ ହୋଇଯାଇଛି ।

ମୋର ଏକୋଇଶିଆ ହୋଇଥିଲା ଖୁବ୍ ଆଡ଼ମ୍ବରରେ କୁଆଡ଼େ । ନଗଦ ଟଂକା ଆକାରରେ ଅନେକ ଟଂକା ମିଳିଥିଲା । ବାପା ଓ ଦାଦା ନିଷ୍ପତ୍ତି କଲେ ଯେ ଏଇ ଟଂକାରେ ଗାଁରେ ଆମ ଘର ହତାରେ ଏକ କୂଅ ଖୋଳାଯିବ । ଆମ ଗାଁରେ କୂଅ ନ ଥିଲା । ଗୋଟାଏ କୂଅ ଖୋଳାହେଲାବେଳେ ଉକ୍ତ ମାଲିକଙ୍କର ଏକମାତ୍ର ପୁଅ ମରିଯିବାରୁ ସେଇଟା ଅଧାରେ ରହିଯାଇଥିଲା । କୂଅ କୁଆଡ଼େ ଆମ ଗାଁ ପାଇଁ ଅଶୁଭ । ତେଣୁ ଭୟଙ୍କର ପ୍ରତିବାଦ ଉଠିଲା ଏହା ଗ୍ରାମ ପାଇଁ, ପରିବାର ପାଇଁ ଏବଂ ସର୍ବୋପରି ମୋ ପାଇଁ ଅଶୁଭ ବୋଲି ସମସ୍ତେ ମତ ଦେଲେ । ଅସଲ କଥା ହେଉଛି ଗ୍ରାମଟା ଏକ ପଥୁରିଆ ବେଡ଼ ଉପରେ । କୂଅ ଖୋଳାଇବା ମହାକଷ୍ଟ । ଖାଲି ପଥର କାଟିବାକୁ ହେବ । ବାପା ଫରେଷ୍ଟ ବିଭାଗର । ଅସଂଖ୍ୟ ଡିନାମାଇଟ୍ ତାଙ୍କ ହାତରେ । ଡିନାମାଇଟରେ ପଥର ଫଟାଯାଇ ରାସ୍ତା ତିଆରି ହୁଏ । ସେଇ ଡିନାମାଇଟ ଲଗାଯାଇ ପଥର ଫୁଟାଗଲା ଏବଂ ଭଲ ପାଣି ପଡ଼ିଲା ।

ଡିନାମାଇଟ ଏକ ଭୟାନକ ଜିନିଷ । ସବୁକୁ ଗଣି କରି ଦିଆଯାଏ । ପାହାଡ଼ରେ ଗଣିକରି ଡିଟୋନେଟର ଲଗାଯାଏ ଏବଂ ଫୁଟିବାକୁ ମଧ ଗଣାଯାଏ । ଶେଷ ଫୁଟିଲା ପରେ ସେ ପାଖକୁ ଲୋକ ଯାଆନ୍ତି । ମୋର ପିଲାଦିନର କଥା । ଆମ ଘରର ଅଳ୍ପ ଦୂରରେ ଡିଟୋନେଟିଙ୍ଗ ହେଉଥାଏ । ଶେଷ ଡିଟୋନେଟର୍‌ଟା କାହିଁକି କେଜାଣି ଫୁଟିଲା ନାହିଁ । ମନା କରିବା ସତ୍ତ୍ୱେ ଜଣେ କର୍ମଚାରୀ ଦୁଃସାହସ କରି ଦେଖିବାକୁ ଯାଇଥିଲା ପାଖକୁ ଏବଂ ଏହି ସମୟରେ ହିଁ ଡିଟୋନେଟର୍ ଫୁଟିଥିଲା । ଏକ ବିରାଟ ପ୍ରସ୍ତର ଖଣ୍ଡ ଉକ୍ତ କର୍ମଚାରୀଙ୍କର ମୁଣ୍ଡକୁ ଆଣି ପକାଇ ଦେଇଥିଲା ଆମ ଘର ପାଖରେ । ସେ ଭୟାନକ ଦୃଶ୍ୟ ମୋର ମନେ ଅଛି । ଯେଉଁ ଡିଟୋନେଟରଗୁଡ଼ାକ ଫୁଟେ ନାହିଁ ସେଗୁଡ଼ାକ ବାପା ଗଣି ତା ପରଦିନ ପତ୍ରଜାଳି ନିଆଁରେ ପକାଇ ଦିଅନ୍ତି । ଫୁସ୍ କରି ଫାଟିଯାଏ କିନ୍ତୁ ବୋଉ ସବୁବେଳେ ପାଟିକରେ ସେ ପାଖରେ କାହାକୁ ରହିବା ପାଇଁ । କାଳେ ଫୁଟି ସେଇ ଫରେଷ୍ଟ କର୍ମଚାରୀର ଦଶା ହେବ କି ?

ସମସ୍ତ ସାବଧାନତା ସତ୍ତ୍ୱେ ଥରେ ଜଣେ ଫରେଷ୍ଟ ଗାର୍ଡ଼ ବାପାଙ୍କୁ କହିଲା ସେ ଗୋଟାଏ ଡିଟୋନେଟର ରଖିଛି । ବାପା ତାକୁ ସତର୍କ କରାଇ ଦେଇଥିଲେ ବିପଦ ସଂପର୍କରେ । ଫରେଷ୍ଟ ଗାର୍ଡ଼ର ଟକିଆ ଦିନେ ତାର ସ୍ତ୍ରୀ ଏଇ ଡିଟୋନେଟରକୁ ପାଆନ୍ତି । ଯେଉଁମାନେ ଡିଟୋନେଟର

Digitized by srujan ka@gmail.com

ଦେଖିଥିବେ ସେମାନେ ଦେଖିଥିବେ ଯେ ଏହା ଏକ ଡେଉଁରିଆ ଭଳି । ଗୋଟିଏ ପଟ ଖୋଲାଥାଏ, ସେଇ ପଟରେ ଫିଉଜ ଲଗାଇ ଦିଆଯାଏ । ଫରେଷ୍ଟ ଗାର୍ଡ଼ର ସ୍ତ୍ରୀ ଭାବିଲେ ଯେ ଏଇଟିରେ ଏକ ଉତ୍କୃଷ୍ଟ ଡେଉଁରିଆ ହୋଇପାରିବ । ସେ ସେଇଟିକୁ ସଂଗେ ସଂଗେ କମାରଶାଳକୁ ପଠାଇ ଦେଇଥିଲେ । ଆଉ ପଟଟିକୁ ବନ୍ଦ କରି ଆଣିବା ପାଇଁ । ଫରେଷ୍ଟ ଗାର୍ଡ଼ର ମୂଲ୍ୟ ସେତେବେଳେ ଗ୍ରାମ ପାଇଁ ଖୁବ୍ ବଡ଼ । ତାଙ୍କର ଦୟା ନ ହେଲେ କାଠ, କୋଇଲା କିଛି ମିଳିବ ନାହିଁ । ତେଣୁ କମାର ଅନ୍ୟ ସମସ୍ତଙ୍କ କାମ ବନ୍ଦ ରଖି ସେଇ କାମଟିକୁ ଆଗ ହାତକୁ ନେଇଥିଲେ । ଦାଆ, ଲଙ୍ଗଳ, ଲୁହା ଶାବଳ ପ୍ରଭୃତି ପଜାଇବା ପାଇଁ ଆଠ ନଅ ଜଣ ଲୋକ ସେଠାରେ ଉପସ୍ଥିତ ଥିଲେ । ଯଥା ସମୟରେ ସେ ସେଇଟିକୁ ଚିମୁଟାରେ ଚିପି ଧରି ନିଆଁରେ ଦେବା ମୁହୂର୍ତ୍ତରେ ଆଉ ସାକ୍ଷୀ ଦେଖିବାକୁ କେହି ନ ଥିଲେ ।

ସେଇ ଡିନାମାଇଟ୍ ଲଗାଯାଇ ପଥର ଫଟାହେଲା ଏବଂ ଏକ ବିରାଟ କୂଅ ଖୋଳା ହେଲା । ସେ କୂଅ ଏବେ ବି ଅଛି, ଅବଶ୍ୟ ଏବେକୁ ତାର ମୂଲ୍ୟ ବିଶେଷ ନାହିଁ; କାରଣ ଗାଁରେ ନଳକୂପ ବସିଗଲାଣି ଏବଂ କୂଅ ମଧ ହେଲାଣି । କିନ୍ତୁ ଏଇ କୂଅ ହେଉଛି ଗ୍ରାମର ପ୍ରଥମ କୂଅ । ବାପା ଟିକିଏ ଡରି ଯାଇଥିଲେ ପ୍ରତିବାଦରେ । କିନ୍ତୁ ଦାଦା ଅନମନୀୟ ଏବଂ ସମସ୍ତେ ତାଙ୍କୁ ଡରୁଥିଲେ । ଡରୁଥିଲେ ତାଙ୍କର ସ୍ପଷ୍ଟବାଦୀତା, ସାହସ ଏବଂ ଅନମନୀୟତା ଯୋଗୁଁ । ତାଙ୍କରି ଜିଦ୍ ଯୋଗୁଁ ଏହା ସମ୍ଭବ ହୋଇ ପାରିଲା । କୂଅ ସିନା ଖୋଳାହେଲା ଗ୍ରାମରେ । ବାପା, ବୋଉ, ଦାଦା ଆମେ ସମସ୍ତେ ରହିଲୁ ବିଦେଶରେ । ଗ୍ରାମରେ କାହାରି ଘର ସହିତ ବିବାଦ ହେଲେ ଆମ କୂଅରୁ ପାଣି ନେବାକୁ ବନ୍ଦ କରିଦେବାର ସମସ୍ୟା ସମାଧାନ କରିବାକୁ ପଡ଼େ ବାପା, ବୋଉ, ଦାଦାଙ୍କୁ ଛୁଟିରେ ଗଲାବେଳେ । ବୋଲିବା ବାହୁଲ୍ୟ ଯେ ଏହା ତୁଟିଯାଏ ସଂଗେ ସଂଗେ, କାରଣ କୂଅ ଯେଉଁମାନେ ଖୋଳାଇଛନ୍ତି ତାଙ୍କର ନିଷ୍ପତ୍ତି ଚୂଡ଼ାନ୍ତ ।

ସେମାନେ ଥିଲେ ପାଞ୍ଚ ଭାଇ । ଏଇ ଭାଇମାନଙ୍କ ମଧ୍ୟରୁ ଭୋଳାନାଥ ଶିକ୍ଷକ ଥିଲେ । ସେ ତରୁଣ ବୟସରେ ବିବାହ କରିବା ପୂର୍ବରୁ ଯାଇଥିଲେ ଯୋରନ୍ଦା ମହିମା ଗାଦିକୁ । ଏବଂ ସେଇଠାରୁ ସେ ଦୀକ୍ଷା ନେଇ ଆସିଲେ ବାବାଜୀ ହେବା ପାଇଁ । ପ୍ରଥାନୁଯାୟୀ ସେ ଆପଣା ଘରୁ ଭିକ୍ଷା ନେବେ ଏବଂ ସନ୍ୟାସୀ ହେବେ । କିନ୍ତୁ ତାଙ୍କୁ ସନ୍ୟାସୀ ହେବା ସକାଶେ ଭିକ୍ଷା ଦେବାପାଇଁ କେହି ରାଜି ହେଲେ ନାହିଁ । ସେ ଘର ଚୌପାଢ଼ୀରେ ଅନଶନରେ ବସିଲେ । ଅନଶନର କିଛିଦିନ ପରେ ବାଧ ହୋଇ ମୋ ଜେଜେମା ତାଙ୍କୁ ଭିକ୍ଷା ଦେଲେ ଏବଂ ସେ ଗଲେ ମହିମା ଧର୍ମର ସନ୍ୟାସୀ ହୋଇ । ଆଉ ତାଙ୍କୁ କେହି ଦେଖି ନାହାନ୍ତି । ପରେ ମୁଁ ଶୁଣିଛି ଯେ ସେ କୁଆଡ଼େ ୨୧ ସିଦ୍ଧ ପୁରୁଷଙ୍କ ମଧ୍ୟରୁ ଅନ୍ୟତମ ହୋଇଥିଲେ । ସତ କି ମିଛ କହି ପାରିବି ନାହିଁ । କାରଣ ସେ ତାଙ୍କର ନାମକୁ ବଦଳାଇ ଦେଇଥିଲେ ଏବଂ ମହିମା ଧର୍ମର ନିୟମାନୁଯାୟୀ ସନ୍ୟାସୀମାନେ ତାଙ୍କର ବଂଶର ପରିଚୟ ଦିଅନ୍ତି ନାହିଁ ।

Digitized by srujan ka@gmail.com

ପରେ ମୁଁ ଅନେକଥର ଯୋରନ୍ଦା ଯାଇଛି । ୰କୁମାରୀ ଏସମାନ ମହିମା ଧର୍ମ ଉପରେ ଗବେଷଣା କଲାବେଳେ ତାଙ୍କ ସହିତ ଏ ବିଷୟରେ ଆଲୋଚନା କରିଛି । ସେ ଅତ୍ୟନ୍ତ ଆଗ୍ରହର ସହିତ ଏହା ଶୁଣିଛନ୍ତି ଏବଂ ସଂଧାନ ନେଇ ବିଫଳ ହୋଇଛନ୍ତି । କିନ୍ତୁ ଯେତେବେଳେ ଯୋରନ୍ଦା ମଠକୁ ଯାଇଛୁ ସେତେବେଳେ ଏହି ପିତୃ ପୁରୁଷଙ୍କ ପ୍ରତି ମଥା ଅବନତ କରି ପ୍ରଣାମ କରିଛି । କାରଣ ସେଇ ତ ସାମ୍ୟର ମହାମନ୍ତ୍ର ଦେଇ ଯାଇଛନ୍ତି ମୋ ଜିନ୍‌ରେ (Gene), ମୋର ରକ୍ତରେ ।

ସାମ୍ୟବାଦର ମହାମନ୍ତ୍ରରେ ଦୀକ୍ଷିତ ହେବା ପୂର୍ବରୁ ମହିମା ଧର୍ମ ଏବଂ ଭୀମଭୋଇଙ୍କ ଭଜନ ମୋତେ ତ୍ୟାଗର ମନ୍ତ୍ର ଶିଖାଇ ଥିଲା ।

''ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।''

ନିଜର ଜୀବନକୁ ନର୍କକୁ ଭସାଇ ଜଗତ ଉଦ୍ଧାରର ଏଇ କନ୍‌ସେପ୍‌ସନକୁ ମୁଁ ଅନ୍ୟତ୍ର ଦେଖି ନାହିଁ । ଆପଣାର ପରିଚୟ ହରାଇବାର ପୂତ ଶପଥ ମୋତେ ଅଭିଭୂତ କରିଛି । କିନ୍ତୁ ଏଇ ଧର୍ମର ଉଷ୍ଣତା ଆଉ ସେତେ ନାହିଁ । ଦୁଇଟି ଭିନ୍ନ ସେକ୍ଟରରେ ଏମାନେ ବର୍ତ୍ତମାନ ଦ୍ୱିଧା ବିଭକ୍ତ । ମୋର ମନେ ଅଛି କିଛି ବର୍ଷ ତଳେ ଏକ ଯଜ୍ଞ ଅନୁଷ୍ଠିତ ହେଉଥିଲା ମହିମା ଧର୍ମୀମାନଙ୍କ ଆନୁକୂଲ୍ୟରେ ତିଗିରିଆ ନୂଆପାଟଣା ଗ୍ରାମରେ ଏବଂ ସେ ଯଜ୍ଞର ପୂର୍ଣ୍ଣାହୁତି ଯେପରି ନ ହୋଇ ପାରିବ ସେଥିପାଇଁ ଆର ସେକ୍ଟର ଅନୁଗାମୀମାନେ ଚେଷ୍ଟା କରିଥିଲେ । ଏପରିକି ସେଠାରେ ୧୪୪ ଧାରା ଜାରି କରିବା ପାଇଁ ଉଦ୍ୟମ ହୋଇଥିଲା । ଏବଂ ଏହି ୧୪୪ ଧାରା ଜାରିପାଇଁ ଆଖପାଖର ଜଣେ ବିଧାୟକ ତତ୍‌କାଳୀନ ମୁଖ୍ୟମନ୍ତ୍ରୀଙ୍କ ଉପରେ ଚାପା ପକାଇଥିଲେ । ସେ ଯାହାହେଉ ୧୪୪ ଧାରା ଜାରି ହୋଇପାରିଲା ନାହିଁ । କାରଣ ଏପରି ଏକ ଧର୍ମ ସଭାରେ ଶାନ୍ତି ଭଂଗ ହେବାର ଆଶଙ୍କା କୌଣସି ଲୋକ କଲେ ନାହିଁ । ଶ୍ରୀ ବିଘ୍ନରାଜ ପଟେଲ ଏବଂ ମୁଁ ଅନ୍ୟମାନଙ୍କ ସହିତ ନିମନ୍ତ୍ରିତ ହୋଇ ଯାଇଥିଲୁ । ୧୪୪ ଧାରା ଜାରି ନାଁ ଶୁଣି ଅନ୍ୟମାନଙ୍କର ଦର୍ଶନ ମିଳିଲା ନାହିଁ । ମୁଖ୍ୟମନ୍ତ୍ରୀ କାଳେ ଅସନ୍ତୁଷ୍ଟ ହେବେ ଏଇ ହେଲା ଭୟ । ଯୁଗେ ଯୁଗେ ବୁଦ୍ଧିଜୀବୀମାନଙ୍କ ଭିତରୁ ଅନେକ ଶାସକମାନଙ୍କର ସ୍ତାବକ ପାଲଟିଛନ୍ତି; ଦରବାରର ଭାଟ ସାଜିଛନ୍ତି । ରଜାମାନଙ୍କ ଅପେକ୍ଷା ସେମାନଙ୍କୁ ବେଶି ଭୟ । ସୂର୍ଯ୍ୟର ଉତ୍ତାପ ସହି ହୁଏ, କିନ୍ତୁ ସୂର୍ଯ୍ୟର ଉତ୍ତାପରେ ଉତ୍ତପ୍ତ ବାଲିର ଉତ୍ତାପ ସହିବା କଠିନ । ରଜା ଅପେକ୍ଷା ଦେବାନମାନଙ୍କର, ମନ୍ତ୍ରୀଙ୍କ ଅପେକ୍ଷା ତାଙ୍କ ପି.ଏ.ଙ୍କର ପ୍ରତାପ ବେଶୀ । ସମସ୍ତେ ଏହା ଅଙ୍ଗେ ନିଭେଇଛନ୍ତି । ଏକ୍‌ସେପସନ ବା ବ୍ୟତିକ୍ରମ ଅଛି । କିନ୍ତୁ ତାହା ହିଁ ତ ରୁଲ୍ ବା ନିୟମକୁ ପ୍ରମାଣିତ କରେ । ମହିମା ଧର୍ମର ତେଜ କମିଯିବା ସତ୍ତ୍ୱେ ଏହାର ମହନୀୟ ଚିନ୍ତା ଅକ୍ଷୁର୍ଣ୍ଣ ରହିଛି । ଅନୁଗତମାନଙ୍କର

Digitized by srujan ka@gmail.com

କାର୍ଯ୍ୟ ହୁଏତ ଦର୍ଶନର ପ୍ରଭାବକୁ କମାଇ ଦିଏ କିନ୍ତୁ ମହତ୍ତ୍ୱ ରହେ ସେହିପରି । ବୌଦ୍ଧଧର୍ମ ଭାରତବର୍ଷରୁ ଲୋପ ପାଇଯାଇଛି, କିନ୍ତୁ ମଣିଷ ଜାତି ଦୁଇ ହଜାର ବର୍ଷ ପରେ ମଧ୍ୟ ବୌଦ୍ଧ ଦର୍ଶନର ମହତ୍ତ୍ୱକୁ ଝୁରିଛି ଆପଣାର ଅସ୍ତିତ୍ୱ ପାଇଁ, ଶାନ୍ତି ପାଇଁ । ଠିକ୍ ସେଇପରି ମାର୍କ୍ସବାଦ । ସୋଭିଏଟ୍ ୟୁନିୟନ ନାମରୁ ସମାଜବାଦ ଶବ୍ଦ ଲୋପ କରାଯାଇ ପାରେ । ଲେନିନ୍‌ଗ୍ରାଡ୍ ସହରର ନାମ ବଦଳାଯାଇ ପାରେ କିନ୍ତୁ ମେହନତୀ ମଣିଷକୁ ଊର୍ଦ୍ଧ୍ୱକୁ ଆଣିବା ପାଇଁ ମାର୍କ୍ସବାଦର ଅବଦାନ ଲୋପ ପାଇଯିବ ନାହିଁ । ସୋଭିଏଟ୍ ୟୁନିୟନ୍ ଭାଙ୍ଗି ଯାଇପାରେ, କିନ୍ତୁ ସାମ୍ୟପାଇଁ ମଣିଷର ଉଦ୍ୟମ ତ ଅବ୍ୟାହତ ରହିବ ।

" ଯେ ନଦୀ ବନପଥେ, ଯେ ନଦୀ ମରୁପଥେ
ହାରାଲୋ ଧାରା
ଜାନି ଗୋ ଜାନି ତାହା ହବେ ନା ହାରା " ।

ସତ୍ୟବାଦୀ, ଭୋଳାନାଥ, ସନାତନ, କାଶୀନାଥ ଏବଂ ନୀଳକଣ୍ଠ । ସେମାନେ ଥିଲେ ପାଞ୍ଚ ଭାଇ । ତୃତୀୟ ଭ୍ରାତା ସନାତନ ଇଂଜିନିଅରିଂ ପଢ଼ିବାକୁ ଯାଇଥିଲେ କଲିକତା । ବାଲେଶ୍ୱରଠାରୁ ଜଳପଥରେ ଯାଇଥିଲେ ଏବଂ ଚାରି ପାଞ୍ଚବର୍ଷ ପରେ ସେଠାରୁ ଫେରିଥିଲେ ସ୍ଥଳପଥରେ । ବାଟରେ ବର୍ଗୀ ହାବୁଡ଼ରେ ପଡ଼ିଥିଲେ । କି ଇଂଜିନିୟରିଂ ପଢ଼ିବାକୁ ଯାଇଥିଲେ ମୁଁ କହିପାରିବି ନାହିଁ । ଫେରି ଗୋଟିଏ ନୂଆ ଘର ସେ ତୋଳିଥିଲେ । କଂଚା ଇଟା, ମାଟିରେ ଘର କିନ୍ତୁ ରହି ତ ଗଲା ପ୍ରାୟ ଶହେ ବର୍ଷ । ଯାହା ଭାଙ୍ଗିଗଲା ତାହା ହେଲା ମରାମତି ଏବଂ ରକ୍ଷଣାବେକ୍ଷଣର ଅଭାବ ଯୋଗୁଁ । ସେ ଦଶପଲ୍ଲାରେ ବିବାହ କରିଥିଲେ ଏକ ପରମାସୁନ୍ଦରୀ ମହିଳାଙ୍କୁ । ଉକ୍ତ ବଂଶର ଗୋପାଳ ଚନ୍ଦ୍ର ପଟ୍ଟନାୟକ ମୋର ସହପାଠୀ ଏବଂ ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ ସେ ଭୁବନେଶ୍ୱରରେ ରହୁଛନ୍ତି । ଇଂଜିନିୟର ଜୋଇଁ ପାଇଁ ଯୌତୁକ ଆସିଥିଲା ପ୍ରଭୂତ । ସେ ଗଲେ ସୋନପୁର ରାଜଦରବାରର ଇଂଜିନିଅର ହୋଇ । ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ ସେ । ଘରେ ରହିଲେ ସ୍ତ୍ରୀ । କାଳେ ସ୍ତ୍ରୀ ତାଙ୍କ ପାଖକୁ ଚାଲିଗଲେ ଘରକୁ ପଇସା ଆସିବା ବନ୍ଦ ହୋଇଯିବ ଏଇ ଯୋଗୁଁ ନାନା ଆଳରେ ତାଙ୍କ ସ୍ତ୍ରୀଙ୍କୁ ସୋନପୁର ପଠାଗଲା ନାହିଁ । ସେ ଲୁହ ଢାଳି ଢାଳି ଅପେକ୍ଷା କରି ରହିଲେ ତାଙ୍କର ସ୍ୱାମୀଙ୍କୁ । ମୋ ବାପା ଓ ଦାଦା ଥିଲେ ତାଙ୍କର ଖୁବ୍ ପ୍ରିୟ । ମାଆ ଭଳି ସେ ବଢ଼ାଇଥିଲେ ସେ ଏଇ ଦୁଇ ଜଣଙ୍କୁ । କାଳକ୍ରମେ ସନାତନଙ୍କର ଘରକୁ ଆସିବା ବନ୍ଦ ହୋଇଗଲା । ସୋନପୁରର ମହିଳାମାନେ ଓଡ଼ିଶାରେ ସବୁଠାରୁ ସୁନ୍ଦରୀ । ସେମାନଙ୍କ ନାମରେ ସେଇ ଯୋଗୁଁ କାହାଣୀ ଅଛି ଯେ ଏଇ ସୁନ୍ଦରୀ ନାରୀମାନଙ୍କ ଭିତରୁ ଅନେକ ଡଣ୍ଡେଇ (ଡାହାଣୀ) ଏବଂ ସେମାନେ ରୂପବାନ ମଣିଷକୁ ଦେଖିଲେ ରକ୍ତଶୋଷି ନିଅନ୍ତି ବା ସେମାନଙ୍କୁ କାବୁ କରି ଘରେ ରଖନ୍ତି । ଏହା ଏକ କାହାଣୀ ମାତ୍ର । ସୁନ୍ଦରୀ ଝିଅମାନଙ୍କୁ ଦେଖି ହୁଏତ ପୁରୁଷମାନେ ସେମାନଙ୍କୁ ବିବାହ କରି ସେଇଆଡ଼େ

Digitized by srujan ka@gmail.com

ରହିଯାଆନ୍ତି । ସେତେବେଳେ ସୋନପୁରକୁ ଯିବାର ବାଟ ନ ଥିଲା । ଯିବା ଆସିବା ଭାରି କଠିନ କଥା । ଘନ ଜଂଗଲ, ନଦୀସବୁ ଟପିଯିବାକୁ ପଡୁଥିଲା । ଘରେ ରହିଗଲେ ପ୍ରୋଷିତଭର୍ତ୍ତୃକା ନାରୀ ଏବଂ ସେ ପଟରେ ସ୍ତ୍ରୀଙ୍କୁ ନ ପାଇ ସ୍ୱାଭାବିକ ଭାବରେ ସନାତନ ସେଆଡ଼େ ରହିଗଲେ । ଏଇ ନାରୀ ଘରେ ଲୁହ ଢାଳି ଢାଳି ପ୍ରାଣତ୍ୟାଗ କଲେ । ମୋ ବାପା ଓ ଦାଦା ସେମାନଙ୍କର ଦାଦା ଖୁଡ଼ୀଙ୍କର ଅନେକ ବ୍ୟବହାର୍ଯ୍ୟ ସାମଗ୍ରୀକୁ ସାଇତି ରଖିଥିଲେ । ବୟସ ଏତେ କମ୍ ଥିଲା ଯେ ପାରିବାରିକ ଅନ୍ୟାୟକୁ ସେମାନେ ବଦଳାଇ ପାରି ନ ଥିଲେ ବୋଲି ଅବଶୋଷ ରହିଗଲା । ସନାତନଙ୍କ ବିବାହର (କିଛିକାଳ ପରେ) ତାଙ୍କର ସବା ସାନ ଭାଇ ନୀଳକଣ୍ଠ ଯାଇଥିଲେ ଭାଇଙ୍କ ଶ୍ୱଶୁର ଘରକୁ । ବାଟରେ ଆସିଲାବେଳେ ହଇଜାରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଚତୁର୍ଥ ଭାଇ କାଶୀନାଥ ପୁରୁଣାଗଡ଼ରେ ସ୍କୁଲ ଶିକ୍ଷକ ଥିଲେ । ତାଙ୍କର ମାମୁଁ ଝିଅ ଭଉଣୀଙ୍କର ପ୍ରେମପାଶରେ ଆବଦ୍ଧ ହେଲେ ଏବଂ ତାଙ୍କୁ ବିବାହ କରି ସେଇଆଡ଼େ ରହିଗଲେ । ଆଉ ଫେରି ନାହାନ୍ତି । କେବଳ ବିବାହ ପୂର୍ବରୁ ସେ ଭାଇଙ୍କ ଠାରୁ ତିନିହଜାର ଟଙ୍କା ନେଇଥିଲେ ବୋଲି ଶୁଣିଛି । ଭାଇ ସତ୍ୟବାଦୀ ଆପଣାର ସୂର୍ଯ୍ୟବାନ୍ଧବ ୰ମୁକୁନ୍ଦ ତ୍ରିପାଠୀ, ମହାଜନଙ୍କଠାରୁ ସେ ଟଙ୍କା ଧାର ଆଣି ତାଙ୍କୁ ଦେଇଥିଲେ ଏବଂ ଏହି ଧାର କରିବା କଥା ଗୁପ୍ତ ରଖିଥିଲେ । ଏପରିକି ଆପଣାର ମୃତ୍ୟୁର ପୂର୍ବଦିନ ସେ ସୁଧମୂଳ ସହିତ ଟଙ୍କାର ଏକ ନୂଆ ଦଲିଲ ମଧ୍ୟ ମୁକୁନ୍ଦ ତ୍ରିପାଠୀଙ୍କୁ ଦେଇଥିଲେ । ତାଙ୍କର ପୁଅମାନେ କେହି ଏହାର ବିନ୍ଦୁବିସର୍ଗ ମଧ୍ୟ ଜାଣି ନ ଥିଲେ । ଥରେ ବାପା ଗ୍ରାମକୁ ଯାଇ ଆପଣାର ନୂଆ ରାଲେ ସାଇକେଲଟିକୁ ବାରଣ୍ଡାରେ ରଖି ଘରେ ଥିଲାବେଳେ ଘର 'କ୍ରୋକ୍' ହୋଇଗଲା ସାଇକେଲ ସମେତ । ବାପାଙ୍କୁ ସମ୍ମତି ଦେବାକୁ ପଡ଼ିଲା ସେ ଟଙ୍କା ଶୁଝିବା ପାଇଁ । ଚାକିରିରୁ ପ୍ରାୟ ଅବସର ନେବା ପର୍ଯ୍ୟନ୍ତ ବାପା ଓ ଦାଦା ସେ କରଜ ଶୁଝି ଚାଲିଲେ । କାରଣ ସେତେବେଳେ ତିନି ହଜାର ଟଙ୍କା କିଛି କମ୍ ଟଙ୍କା ନୁହେଁ । ପୁଣି ସୁଧ ଅଛି । ସେଇ ଯୋଗୁଁ ପିଲାଦିନରୁ ମୋର କିପରି ଧାରଣା ରହି ଆସିଛି ଯେ ସେ ମାଟି ହେଉଛି ଅଭିଶପ୍ତ ମାଟି । ଏଇ ଗାଁକୁ ଲିଙ୍ଗରା ନଦୀ ଖାଇ ଯାଉଛି, ଯେପରି ଖାଇ ସାରିଲାଣି କବି ରାଧାମୋହନ ଗଡ଼ନାୟକଙ୍କ ଗାଁ କରଣ୍ଡାପାଳକୁ ।

ସୋନପୁରରେ ରହିଯାଇଥିବା ସନାତନଙ୍କ ବିଷୟରେ ମୁଁ ପରେ ସଂଧାନ କରିବାକୁ ଚେଷ୍ଟା କରିଛି କିନ୍ତୁ ସଫଳ ହୋଇପାରି ନାହିଁ ।

କିନ୍ତୁ ସେତିକିବେଳେ ଡେକାନ ସ୍କୁଲ ଅଫ୍ ଆର୍କିଓଲଜିର ଡାଇରେକ୍ଟର ପ୍ରସିଦ୍ଧ ଆର୍କିଓଲଜିଷ୍ଟ ଡକ୍ଟର ଏଚ.ଡି. ସାଙ୍କାଲିଆଙ୍କ ଏକ ଆବିଷ୍କାର ଚମକ ସୃଷ୍ଟି କରିଥିଲା । ତାଙ୍କ ମତରେ ରାମଚନ୍ଦ୍ର ବିନ୍ଧ୍ୟାଞ୍ଚଳ ଟପି ଆଗକୁ ଯିବାର କୌଣସି ବିବରଣୀ ମୂଳ ରାମାୟଣରେ ମିଳେ ନାହିଁ । ସିଂହଳର ଲଙ୍କା ନାମ ମଧ୍ୟ ବହୁ ପରବର୍ତ୍ତୀ କାଳର କଥା । ସେ କହିଛନ୍ତି ଯେ ପର୍ବତ ଦେଖି ହିମାଳୟର କଳ୍ପନା କରିବା କଠିନ । କିଛି କିଛି କରାଯାଇପାରେ । କିନ୍ତୁ ସେ

Digitized by srujan ka@gmail.com

ଯେତେ ବଡ଼ ନଦୀ ହେଉନା କାହିଁକି ତାକୁ ଦେଖି ସମୁଦ୍ରର କଳ୍ପନା କରିବା ଅସମ୍ଭବ । ସରଜୁ ନଦୀତଟ ନିବାସୀ ରାମଚନ୍ଦ୍ର, ସମୁଦ୍ର ଦେଖି ନ ଥିଲେ । ତେଣୁ ତେଲ ଏବଂ ମହାନଦୀର ସଙ୍ଗମ ସ୍ଥଳୀରେ ପହଞ୍ଚି ସେ ଭାବି ନେଇଥିଲେ ଯେ ଏହା ହିଁ ହେଉଛି ସମୁଦ୍ର । ପ୍ରକୃତରେ ଲଙ୍କା ହେଉଛି ସ୍ୱର୍ଣ୍ଣପୁର ବା ଅଧୁନାତନ ସୋନପୁର । ରାବଣର ଦୁର୍ଗ ଏଇଠି ହିଁ ଥିଲା । ସୋନପୁରରେ ମଧ ଏହିପରି କାହାଣୀ ପ୍ରଚଳିତ ଏବଂ ଅନେକ ବସ୍ତୁକୁ ଏଠାକାର ଅଧିବାସୀମାନେ ''ରାବଣର ଦୁର୍ଗ ଲଙ୍କା''ର ଅବଶିଷ୍ଟାଂଶ ବୋଲି ମତ ଦିଅନ୍ତି ।

ଏହା ହୁଏତ 'ଆଇଡେଣ୍ଟିଫିକେଶନ' ଜନିତ ତ୍ରୁଟି ହୋଇପାରିଥାଏ । ଏହିପରି ଏକ ଘଟଣା ମୁଁ ନିଜେ ଅନୁଭବ କରିଛି । ପ୍ରସିଦ୍ଧ ଚଳଚିତ୍ର ନିର୍ଦ୍ଦେଶକ ମୃଣାଳ ସେନ ଆସିଥାନ୍ତି ମାଟିର ମଣିଷ ଛବିର ସୁଟିଙ୍ଗ ପାଇଁ । ୰ ବାବୁଲାଲ୍ ଯୋଶୀ ତାଙ୍କୁ ନେଇ ଯାଇଥାନ୍ତି ବିରୂପା ନଦୀ କୂଳର ପଧାନପଡ଼ା ଗ୍ରାମକୁ ଏବଂ ଆମ ସମସ୍ତଙ୍କୁ ଚକିତ କରି ଗାଁ ଲୋକମାନେ ଗୋଟାଏ ମାଟି କୁଦକୁ ବରଜୁ ପଧାନ ଘର, ଆଉ ଗୋଟାଏକୁ ଧରମା ବାଉରୀର ଘର ଇତ୍ୟାଦି କହି ଚିହ୍ନଟ କରିବାକୁ ଆରମ୍ଭ କଲେ । ଅଥଚ ସମସ୍ତେ ଜାଣନ୍ତି ଯେ ପଧାନପଡ଼ା, ବରଜୁ ପଧାନ, ସବୁ କାଳ୍ପନିକ । ସମବାୟ ବିଭାଗରେ ସେତେବେଳେ ଚାକିରି କରୁଥିବା କାଳିନ୍ଦୀ ଚରଣ ପାଣିଗ୍ରାହୀ ଯାଇଥିଲେ ଗସ୍ତରେ  ବେରବୋଇ ଗ୍ରାମକୁ । ସେଇଠି ରାତିରେ ଡାକବଂଗଳାରେ ସେ ଥିଲେ ଏକୁଟିଆ । ସାକ୍ଷୀ କେବଳ ଥିଲା ସେ ଡାକବଂଗଳାର ଚଉକିଆ ବା ରକ୍ଷକ । ବର୍ଷା ରାତି । ଲଣ୍ଠନ ବି ଲିଭି ଯାଇଥିଲା । କାଳିନ୍ଦୀବାବୁ ପଚାରିଥିଲେ ଚଉକିଆର ଜୀବନ କାହାଣୀ । ସେ କହିଥିଲା ଯେ ସେ ଭାଇକୁ ସବୁ ଜମି ଘର ଛାଡ଼ିଦେଇ ଚାଲି ଆସିଛି । କାରଣ ବାପା କହିଥିଲେ, ଘର ମଝିରେ ପାଚିରୀ ଉଠିବ ନାହିଁ କି ବିଲ ମଝିରେ ହିଡ଼ ଉଠିବ ନାହିଁ । ଗାନ୍ଧିବାଦ ଏବଂ ମାର୍କ୍ସବାଦର ମିଶ୍ରଣର ଭାବଧାରାର ସେତେବେଳେ କାଳିନ୍ଦୀ ବାବୁ । ତାଙ୍କୁ ଚମକ ଲାଗିଲା ଏଇ କାହାଣୀ ଶୁଣି । ସେ ଲେଖିଲେ ''ମାଟିର ମଣିଷ'' । ଏହା ସହିତ ପଧାନପଡ଼ାର ସଂପର୍କ ସଂପୂର୍ଣ୍ଣ କାଳ୍ପନିକ । ବିଂଶ ଶତାବ୍ଦୀର ତୃତୀୟ ଦଶକର ଶେଷ ଭାଗରେ ଲିଖିତ ଏଇ ଉପନ୍ୟାସ କିଭଳି ଶକ୍ତିଶାଳୀ ଏବଂ ଲୋକଙ୍କର ଜନଜୀବନକୁ ଛୁଇଁ ଯାଇଛି ତାହା ଦେଖି ମୃଣାଳ ସେନ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

କାଳିନ୍ଦୀବାବୁ 'ମାଟିର ମଣିଷ'ର ଲେଖକ ନୁହନ୍ତି, ଏହାର ପ୍ରକୃତ ଲେଖକ କୁଆଡ଼େ ତାଙ୍କର ସାନଭାଇ ଭଗବତୀ ଚରଣ ପାଣିଗ୍ରାହୀ ବୋଲି କେତେକଙ୍କର ଅଭିଯୋଗ । ଏ ସଂପର୍କରେ ଏକ କବିତା ବି ମୋର ମନେ ପଡୁଛି—

'' ଭାଇନା ତକିଆ ତଳୁ ପାଣ୍ଡୁଲିପି ଚୋରି
ମାଟିର ମଣିଷ ନାମେ ପଡୁଅଛି ହୁରି । ''

ସେମାନଙ୍କ ମତରେ ମାଟିର ମଣିଷର ଭାଷା ଓ ଭାବନା ଏବଂ ଲୁହାର ମଣିଷର ଭାଷା ଓ ଭାବନା ଭିତରେ କିଛି ସାମଞ୍ଜସ୍ୟ ନାହିଁ । ଏହା ସତ୍ୟ କିନ୍ତୁ କେତେ ପାଣି ବୋହିଗଲା ଏଇ

Digitized by srujan ka@gmail.com

ଦୁଇ ବହିର ଲେଖା ଭିତରେ । କାଳିନ୍ଦୀବାବୁଙ୍କ ଉପରେ କେତେ ଭାବନାର ଝଡ଼ ବୋହିଗଲା ଏଇ ସମୟକାଳ ଭିତରେ ।

ଭଗବତୀବାବୁଙ୍କ ପରିବାର, କମ୍ୟୁନିଷ୍ଟ ପାର୍ଟିରେ ଭଗବତୀବାବୁଙ୍କ ସହକର୍ମୀ, ଭଗବତୀବାବୁଙ୍କ ବଂଧୁଗୋଷ୍ଠୀ କେହି ଏଭଳି ଅଭିଯୋଗ ସହିତ ଏକମତ ହୋଇନାହାନ୍ତି । ପରେ ଏହା ମରିଯାଇଛି ଆପେ ଆପେ ।

ଭଗବତୀବାବୁଙ୍କ ବନ୍ଧୁଗୋଷ୍ଠୀ ଭିତରେ ସାମ୍ବାଦିକ-ଲେଖକ ଉଦୟନାଥ ଷଡ଼ଙ୍ଗୀ, ପ୍ରଶାସକ ରତ୍ନାକର ଷଡ଼ଙ୍ଗୀ, କବି ମାୟାଧର ମାନସିଂ, ଆଡଭୋକେଟ ଏବଂ କଂଗ୍ରେସ ଦଳର ନେତା ଦୀନବନ୍ଧୁ ସାହୁ, ସମାଜସେବୀ ଶ୍ୟାମସୁନ୍ଦର ମିଶ୍ର, ଡକ୍ଟର ସଦାଶିବ ମିଶ୍ର ପ୍ରମୁଖ ଅନ୍ତର୍ଭୁକ୍ତ । ଜୀବନର ବିଭିନ୍ନ ଗତିପଥ, ମାନସିକ ଚିନ୍ତାଧାରାରେ ତାରତମ୍ୟ ସତ୍ତ୍ୱେ ସେମାନଙ୍କର ବ୍ୟକ୍ତିଗତ ବନ୍ଧୁତା ଥିଲା ଅତୁଟ ଏବଂ ଅନ୍ୟମାନଙ୍କର ଅନୁସରଣ ଯୋଗ୍ୟ ।

ଏଭଳି ଆଇଡିଣ୍ଟିଫିକେଶନ ଭାରତବର୍ଷର ସର୍ବତ୍ର ଦେଖିବାକୁ ମିଳେ । ଭୀମଖୋଜ, ଦ୍ରୌପଦୀଙ୍କର ଏକୁଡ଼ିଶାଳ ପ୍ରଭୃତି ଓଡ଼ିଶାରେ ବହୁତ । କିନ୍ତୁ ମହାଭାରତର ପଞ୍ଚୁପାଣ୍ଡବ ବନବାସ କାଳରେ ସେମାନେ ଓଡ଼ିଶା/କଳିଙ୍ଗ/ଉତ୍କଳକୁ ଆସିଥିବାର କୌଣସି ପ୍ରମାଣ ନାହିଁ ।

ମୋ ପିଲାଦିନେ ସମ୍ବଲପୁରରେ ଏକ କାହାଣୀ ଶୁଣିଥିଲି । ପଞ୍ଚୁପାଣ୍ଡବ କୁଆଡ଼େ ବନବାସ ସମୟରେ ଯାଉଥିଲେ ସମ୍ବଲପୁର ବାଟଦେଇ । ସମ୍ବଲପୁର ସୀମାନ୍ତରେ ପହଞ୍ଚିବା ପରେ ହଠାତ୍ ରାତିରେ କୁନ୍ତୀ ଉଠିପଡ଼ିଲେ ନିଦରୁ । ଉଠି ପୁଅମାନଙ୍କୁ କହିଲେ ଯେ ମୁଁ ବିବାହ କରିବି । ସବୁ ପୁଅମାନେ ଆଶ୍ଚର୍ଯ୍ୟ ମାଆଙ୍କର ଏଇ ଉକ୍ତି ଶୁଣି । କେବଳ ଜ୍ୟୋତିଷପୁତ୍ର ସହଦେବ ଅଶ୍ଚର୍ଯ୍ୟ ନ ହେବା ଦେଖି ଅନ୍ୟ ଭାଇମାନେ ବିସ୍ମୟାଭିଭୂତ । ସହଦେବ ସମ୍ବଲପୁର ମାଟିରୁ କିଛି ନେଇ ପାଖରେ ରଖିଲେ ଏବଂ ଭାଇମାନଙ୍କୁ କହିଲେ ଯେ ଚାଲନ୍ତୁ କିଛି ବ୍ୟସ୍ତ ହେବାର ନାହିଁ । ସେମାନେ ଚାଲିଲେ ଆଗକୁ । ସବୁ ରାତିରେ ସେଇ ଅବସ୍ଥା । ସମ୍ବଲପୁର ସୀମା ସେମାନେ ଟପିଗଲେ । ସହଦେବ ତା'ପରେ ଭାଇ ଯୁଧିଷ୍ଠିରଙ୍କୁ କହିଲେ, ଆପଣ ମାଆଙ୍କୁ ତାଙ୍କ ଇଚ୍ଛା କଥା ପଚାରୁ ନାହାନ୍ତି ଆଜି । ଯୁଧିଷ୍ଠିର ପଚାରିଲେ କୁନ୍ତୀଙ୍କୁ । ସେ ଆଶ୍ଚର୍ଯ୍ୟ ହୋଇ କହିଲେ ତୁ କଣ ପଚାରୁଛୁ ମୋତେ ? ତୁ ପାଗଳ, ନା ମୁଁ ପାଗଳ । ଯୁଧିଷ୍ଠିର ବିସ୍ମୟାଭିଭୂତ । ପରଦିନ ରାତିରେ ସହଦେବ ସମ୍ବଲପୁରରୁ ଆଣିଥିବା କିଛି ମାଟି କୁନ୍ତୀଙ୍କ ମୁଣ୍ଡତଳେ ଥୋଇଦେଲେ । କୁନ୍ତୀ ନିଦରୁ ଉଠି ପୁଣି ଇଚ୍ଛା ପ୍ରକାଶ କଲେ ବିବାହ କରିବା ପାଇଁ । ସହଦେବଙ୍କୁ ଛାଡ଼ି ବାକି ସମସ୍ତେ ଆଶ୍ଚର୍ଯ୍ୟ । ସହଦେବ ସମସ୍ତଙ୍କ ବିସ୍ମୟକୁ ଦୂର କରି କହିଲେ— ଏ ହେଉଛି ମାଟିର ଗୁମାନ ।

ତେବେ ଏହା ଏକ ମନଗଢ଼ା ଗଳ୍ପ । ସମ୍ବଲପୁର ଅଞ୍ଚଳରେ ଥିବା କିଞ୍ଚିତ ମାତୃସତ୍ତା ସମାଜର ଲକ୍ଷଣକୁ ଦେଖି ଏହି ଗଳ୍ପ ଅନ୍ୟମାନଙ୍କ ଦ୍ୱାରା ସୃଷ୍ଟି ହୋଇଛି ବୋଲି ମୋର ଅନୁମାନ ।

Digitized by srujan ka@gmail.com

ତେବେ ପ୍ରସିଦ୍ଧ ଆର୍କିଓଲଜିଷ୍ଟ ଏଚ.ଡି. ସାଙ୍କାଲିଆଙ୍କ କଳ୍ପନାର ଐତିହାସିକ ସତ୍ୟତା ଅନୁଧାନ ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଡକ୍ଟର ନବୀନଚନ୍ଦ୍ର ସାହୁ ସୋନପୁରରେ ଖନନ କାର୍ଯ୍ୟ ଆରମ୍ଭ କରିଥିଲେ । ସେ ଜଣେ ପ୍ରଖ୍ୟାତ ଐତିହାସିକ । ତାଙ୍କ ଦ୍ୱାରା ପ୍ରଣୀତ Buddhism in Orissa ଓଡ଼ିଶାରେ ବୌଦ୍ଧ ଧର୍ମର ଇତିହାସ ଉପରେ ବହୁ ଆଲୋକପାତ କରିଛି । ମୋ ମତରେ ଏହି ଖନନ କାର୍ଯ୍ୟ ପାଇଁ ସାଙ୍କାଲିଆଙ୍କ ସାହାଯ୍ୟ ନେଇଥିଲେ ବେଶୀ ଲାଭ ହୋଇ ପାରିଥାନ୍ତା । ସେତେବେଳେ ସାଙ୍କାଲିଆ ଜୀବିତ ଥିଲେ । ଏହାର ଅନ୍ୟତମ କାରଣ ହେଲା ଐତିହାସିକମାନେ ଆର୍କିଓଲଜିଷ୍ଟ ନୁହନ୍ତି । ଆର୍କିଓଲଜି ଏକ ସଂପୂର୍ଣ୍ଣ ଭିନ୍ନ ବିଜ୍ଞାନ । ସେ ଯାହାହେଉ, ଖନନ କାର୍ଯ୍ୟ କିଛିଦିନ ଚାଲିଲା ପରେ ବନ୍ଦ ହୋଇଗଲା ଏବଂ ସାଙ୍କାଲିଆଙ୍କ ପରଲୋକ ପରେ ଏହି ତଥ୍ୟ ଆଉ ପ୍ରଚଳିତ ହୋଇରହିଲା ନାହିଁ କି ଏହା ଉପରେ ଅଧିକ ଗବେଷଣା ହେଲା ନାହିଁ ।

ଏ ସଂପର୍କରେ ମୋର ଏକ ବ୍ୟକ୍ତିଗତ ଅଭିଜ୍ଞତା କଥା କହିବି । କୁମାରୀ ସାଗରିକା ମହାପାତ୍ର ଯାଇଥିଲେ ଇତିହାସ ଉପରେ ପଢ଼ିବା ପାଇଁ ଜର୍ମାନୀର ପ୍ରସିଦ୍ଧ ହାଲେ ବିଶ୍ୱବିଦ୍ୟାଳୟରେ । ଡକ୍ଟର ହେନ୍‌ଜ ମୋଦେ (Heinz Mode)ଙ୍କ ଅଧିନରେ ସେ ଅଧ୍ୟୟନ ରତ ଥିଲେ । କୌଣସି କାରଣରୁ ସେ ସେଠାରେ ଏମ. ଏ. ପାଶ କରିବା ପରେ ଆଉ ଅଧ୍ୟୟନ କରିବାକୁ ରାଜି ହେଲେ ନାହିଁ ଏବଂ ଭାରତ ଫେରି ଆସିଲେ । ସେ ଆପଣାର ପିଏଚ.ଡି. ଉପାଧି ପାଇଁ ଭାରତବର୍ଷରେ ଗବେଷଣା କରିବାକୁ ଚାହିଁଲେ । କିନ୍ତୁ ଉକ୍ତ ବିଶ୍ୱବିଦ୍ୟାଳୟର ଡିଗ୍ରୀ ଭାରତବର୍ଷରେ ସେପର୍ଯ୍ୟନ୍ତ ସ୍ୱୀକୃତି ପାଇ ନ ଥାଏ । ତାଙ୍କୁ ଏବଂ ମୋତେ ନେଇ ମୋର ବଂଧୁ ଶ୍ୟାମସୁନ୍ଦର ମହାପାତ୍ର (ପୂର୍ବତନ ଏମ.ପି) ଗଲେ ଦେଖାକରିବା ପାଇଁ ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଡକ୍ଟର ନୁରୁଲ ହାସାନଙ୍କୁ । ନୁରୁଲ ହାସାନ ଜଣେ ପ୍ରଖ୍ୟାତ ଐତିହାସିକ ଏବଂ ବାମପନ୍ଥୀ ମନୋଭାବାପନ୍ନ ଥିଲେ । ସେ ମୁସଲମାନ କିନ୍ତୁ ନମାଜ ପଢ଼ନ୍ତି ନାହିଁ କି ମସ୍‌ଜିଦ୍ ଯାଆନ୍ତି ନାହିଁ । ସେ ଥିଲେ ସଂପୂର୍ଣ୍ଣ ଆଗ୍ନୋଷ୍ଟିକ ବା ଆଥେଇଷ୍ଟ । ସାକ୍ଷାତ ସମୟରେ ମୁଁ ଓ ସାଗରିକା ଥିଲୁ ସାଥିରେ । ମୋ ହାତରେ ଥିଲା ପ୍ରାୟ ୬୦୦ରୁ ଉର୍ଦ୍ଧ୍ୱ ଓଡ଼ିଶାରେ ବୌଦ୍ଧଧର୍ମର ସଂକେତ ବହନକାରୀ ଫଟୋ । ଅଧ୍ୟାପକ ହାସାନ ଦେଖି ମୁଗ୍ଧ ହେଲେ ଏବଂ ପଚାରିଲେ ଯେ ଓଡ଼ିଶାରେ ଖନନ କାର୍ଯ୍ୟ କାହିଁକି ହେଉନାହିଁ । ଶୁଣି ଆଶ୍ଚର୍ଯ୍ୟ ହେଲେ ମନ୍ଦିରମାଳିନୀ ଭୁବନେଶ୍ୱରରେ ଅବସ୍ଥିତ ଉତ୍କଳ ବିଶ୍ୱବିଦ୍ୟାଳୟରେ ଆର୍କିଓଲଜି ଏକ ସ୍ୱତନ୍ତ୍ର ବିଷୟ ଭାବରେ ପଢ଼ା ଯାଏନା । ଏହାର କାରଣ ସେ ମୋତେ ପଚାରିବାରୁ ମୁଁ ତାଙ୍କୁ କହିଲି ଯେ ଆପଣଙ୍କୁ ତ ଏହାର କାରଣ ମୁଁ ପଚାରିବାର କଥା, ଭାରତର ଶିକ୍ଷାମନ୍ତ୍ରୀ ଏବଂ ଜଣେ ପ୍ରଖ୍ୟାତ ଐତିହାସିକ ଭାବରେ ।

ଏଇଠି ଗୋଟିଏ ଛୋଟିଆ ଅଭିଜ୍ଞତା କଥା କହିବି । ଅଧ୍ୟାପକ ନୁରୁଲ ହାସାନଙ୍କୁ ଭେଟି ଆମେ ଫେରୁଥାଉଁ । ସେତେବେଳେ ଜରୋରୀକାଳୀନ ପରିସ୍ଥିତି ସମୟ । ଚାରିଆଡ଼େ ଅବିଶ୍ୱାସ

Digitized by srujan ka@gmail.com

ଏବଂ ଆତଙ୍କ ଯେପରି ଘେରି ରହିଛି । କେହି କାହା ସହିତ ଖୋଲାଖୋଲି କଥାବାର୍ତ୍ତା କରୁନାହାନ୍ତି । ସମସ୍ତେ ଚୁପଚାପ ରହୁଛନ୍ତି । ନଚେତ୍ ଫୁସଫୁସ କଥାବାର୍ତ୍ତା କରୁଛନ୍ତି । କାଳେ କିଏ ଶୁଣିବ କି ? କିମ୍ବା କଥା ଯେପରି (Bugging) ହୋଇ ନ ପାରିବ !

ଗାଡ଼ିରେ ଆମ ସାଙ୍ଗରେ ଶ୍ରୀ ଶ୍ୟାମ ସୁନ୍ଦର ମହାପାତ୍ର । ବାଟରେ ଇନ୍ଦିରା ଗାନ୍ଧୀଙ୍କ ବାସଗୃହ । ବାଟ ବଂଦ । ସାମରିକ ବାହିନୀ ଅଟକାଇଲେ ଗାଡ଼ିକୁ । ସେତେବେଳେ ଶ୍ରୀ ଶ୍ୟାମ ସୁନ୍ଦର ମହାପାତ୍ର ନିଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସଂପାଦକ ଏବଂ ଇନ୍ଦିରା ଗାନ୍ଧୀ ତଥା ସଂଜୟ ଗାନ୍ଧୀଙ୍କର ଖୁବ୍ ନିକଟତର ଲୋକ । ସେ ଗାଡ଼ି ଅଟକାଇବା ଦେଖି, ପ୍ରଥମେ ଆପଣାର ପରିଚୟ ଦେଲେ ସାମରିକ ବାହିନୀକୁ । ମୁଁ ଶ୍ୟାମ ସୁନ୍ଦର ମହାପାତ୍ର, ପାର୍ଲ୍ୟାମେଣ୍ଟ ସଭ୍ୟ । ବର୍ତ୍ତମାନ ଗୋଟିଏ ହୁଇସିଲ ବାଜିଲା ଏବଂ ଇଙ୍ଗିତ ଦିଆଗଲା ପଛକୁ ଫେରି ଗଳି ବାଟରେ ଯିବା ପାଇଁ । ଶ୍ୟାମବାବୁ ତଥାପି ଜିଦ୍ ଧରିଲେ । ମୁଁ ଶ୍ୟାମ ସୁନ୍ଦର ମହାପାତ୍ର, ନିଖିଳ ଭାରତ କଂଗ୍ରେସ କମିଟିର ସାଧାରଣ ସଂପାଦକ । ବର୍ତ୍ତମାନ ଦୁଇଥର ହୁଇସିଲ ବାଜି, ସେଇ ନିର୍ଦ୍ଦେଶ ଦିଆଗଲା । ଶ୍ୟାମବାବୁ କବାଟ ଖୋଲି ବାହାରକୁ ବାହାରି ବୋଧହୁଏ ସେ ଅଫିସରଙ୍କ ଉଚ୍ଚ ଅଫିସରଙ୍କୁ କହିବାକୁ ଚାହିଁଲେ । ହଠାତ୍ ସେ ଅଫିସର କବାଟକୁ ବନ୍ଦ କରିଦେଇ ତିନିଥର ହୁଇସିଲ ଦେଲେ ଫେରିବା ପାଇଁ । ଖାଲି ଆଖିରେ ଦେଖା ଯାଉଛି ନିରାପତ୍ତା ରକ୍ଷୀମାନଙ୍କର ଚାରୋଟି ବଳୟ, ଆଉ ଉପାୟ ନ ଥିଲା କିଛି । ଚୁପ୍‌ଚାପ୍ ଫେରିଲୁ । ବାଟରେ ମୁଁ ଶ୍ୟାମବାବୁଙ୍କୁ ପଚାରିଲି ଯେ ଆପଣଙ୍କର ଅବସ୍ଥା ଦେଖିଲି । ତା'ହେଲେ ସାଧାରଣ ମଣିଷର କ'ଣ ଅବସ୍ଥା ହେଉ ନ ଥିବ ? ଶ୍ୟାମବାବୁ ଆଙ୍ଗୁଠିକୁ ପାଟି ଆଗରେ ଦେଇ ଚୁପ୍ ରହିବାକୁ କହିଲେ ମୋତେ ।

ଗାଡ଼ିରୁ ଓହ୍ଲାଇଲା ପରେ ମୁଁ ତାଙ୍କୁ ପଚାରିଲି ଯେ ଶ୍ୟାମବାବୁ, ମୁଁ ଖାଲି ଆଖିରେ ଦେଖିଲି ଚାରୋଟି ନିରାପତ୍ତା ବଳୟ । ଏହା ସତ୍ତ୍ୱେ ଆପଣଙ୍କ ଭଳି ଲୋକଙ୍କୁ ମଧ୍ୟ ସର୍ଟ ସାଧାରଣ ରାସ୍ତାରେ ଛଡ଼ା ଯାଉ ନାହିଁ । ଏହାର ସରଳ ଅର୍ଥ ହେଉଛି ଯେ ସେ ଭିତରର ମଣିଷର ବାହ୍ୟଜଗତ ସହିତ କୌଣସି ସଂପର୍କ ନାହିଁ । ଏଇ ସବୁ ନିରାପତ୍ତାରକ୍ଷୀ ହେଉଛନ୍ତି ଦରମାଖିଆ ସୈନ୍ୟ । ଏମାନେ ସମସ୍ତେ ଆମ ଆଡ଼କୁ ବନ୍ଧୁକ ମୁହଁ କରି ଠିଆ ହୋଇଛନ୍ତି । ଏମାନଙ୍କ ଭିତରୁ କେହି ଯଦି ବନ୍ଧୁକକୁ ଆମ ପଟକୁ ବୁଲାଇ ଦେବେ ତା'ହେଲେ କ'ଣ ହେବ ଏବଂ ସେ ସଂବାଦ ବର୍ତ୍ତମାନ ପରିସ୍ଥିତିରେ ତ ଦେଶର ବିଭିନ୍ନ ଅଂଚଳରେ ପହଞ୍ଚିବା ପାଇଁ ବହୁ ସମୟ ଲାଗିଯିବ । କ'ଣ ହେବ ଦେଶର ଅବସ୍ଥା !

ଶ୍ୟାମବାବୁଙ୍କୁ କେବଳ ମୁଁ ଏହା କହିଲି ନାହିଁ । ତାଙ୍କ ଘରକୁ ଯିଏ ଆସିଲା ମୁଁ ତାଙ୍କୁ ଏହା ଜଣାଇଲି । ଏପରିକି ପରେ ଭାରତର ପ୍ରଧାନମନ୍ତ୍ରୀ ହୋଇଥିବା ନରସିଂହ ରାଓଙ୍କୁ ମଧ୍ୟ ମୁଁ ଏହା କହିଛି । ସେତେବେଳେ ସେ ଆସି ଶ୍ୟାମବାବୁଙ୍କ ଘରେ ରହୁଥାନ୍ତି ।

ସେଇଠି ପଶ୍ଚିମବଂଗର ଜଣେ ଯୁବ କଂଗ୍ରେସ ନେତାଙ୍କ ସହ ସାକ୍ଷାତ ହେଲା । ସେ

Digitized by srujan ka@gmail.com

କେବଳ ଜାଣିନ୍ତି ଯେ ମୁଁ ଶ୍ୟାମବାବୁଙ୍କ ବଂଧୁ । ସେ ଖେଦ ପ୍ରକାଶ କରି ଶ୍ୟାମବାବୁଙ୍କୁ କହୁଥିଲେ, ଦେଖନ୍ତୁ ଦାଦା ଏଇ ସ୍ତ୍ରୀ ଲୋକଙ୍କ ପାଇଁ ମୁଁ କ'ଣ ନ କରିଛି ? ଏଇ ହାତରେ ମୁଁ କେତେ ସି.ପି.ଏମ୍. କର୍ମୀଙ୍କୁ ନ ମାରିଛି ? ଆଉ କେତେ ବିରୋଧୀମାନଙ୍କୁ ହତ୍ୟା କରିବା ନାଇଁ ନିର୍ଦ୍ଦେଶ ନ ଦେଇଛି ? କିନ୍ତୁ ମୁଁ ପାଇଲି କଣ ? ଶ୍ୟାମବାବୁଙ୍କ ମୁଖମଣ୍ଡଳ କୁଞ୍ଚିତ ହୋଇଛି, ଦେଖା ଦେଇଛି ସ୍ୱେଦ । ସେ ଗଲାପରେ ଶ୍ୟାମବାବୁ ଏଇ ବ୍ୟକ୍ତି ସହିତ ହୋଇଥିବା କଥା ଯେପରି ପ୍ରଘଟ ନ ହୁଏ ବୋଲି କହିଥିବାର ମନେ ପଡୁଛି ।

ସେଇ ସମୟରେ ପଶ୍ଚିମବଂଗରେ ନିର୍ବାଚନ ହେଉଥାଏ । ମୁଁ ରହୁଥାଏ ହାଓଡ଼ା ମଇଦାନ ପାଖରେ ବଂଧୁ କୁମୁଦ ବିଶ୍ୱାସଙ୍କ ଘରେ । କାଲି ନିର୍ବାଚନ । ଆଜି କିଛି ଯୁବକ ଆସି କହି ଚାଲିଲେ ଘରକୁ ଘର । ଆପଣମାନେ କାଲି ଭୋଟ ଦେବାକୁ ଯିବେ ନାହିଁ । ଭୋଟ ଦିଆ ସରିଚି । ଭୋଟ ଦେବାକୁ ଯାଇ ପ୍ରାଣ ହରାଇବେ କାହିଁକି ? କୁମୁଦ ବିଶ୍ୱାସ ଏକଦା ବଂଗ ସି.ପି.ଆଇ.ର ଜଣେ ପ୍ରମୁଖ ନେତା ଥିଲେ ଏବଂ ଶୃଙ୍ଖଳା ପ୍ରତି ଅଙ୍ଗୀକାର ଯୋଗୁଁ 'ହେଡ ମାଷ୍ଟର' ବୋଲି ଡାକୁଥିଲେ ସହକର୍ମୀମାନେ ଥଟ୍ଟାରେ । ତାଙ୍କ ଫ୍ଲାଟକୁ ଆସିଥିବା ଯୁବକ ତ କହି ଚାଲିଗଲା । ମୁଁ କୁମୁଦବାବୁଙ୍କୁ ଅନେଇଲି । ସେ ତଳକୁ ମୁହଁ ପୋତି କହିଲେ ଯେ ଏଇ ତ୍ରୁଟି ଯୋଗୁଁ ସି.ପି.ଆଇ.କୁ ବହୁ ମୂଲ୍ୟ ଦେବାକୁ ପଡ଼ିବ । ବି.ଟି. ରଣଦିଭେଙ୍କ ନେତୃତ୍ୱରେ ସାହସୀ ରାଜନୈତିକ ପନ୍ଥା, ଆନ୍ଧ୍ର ନିର୍ବାଚନରେ ତ୍ରୁଟିରେ ହୋଇଥିବା କ୍ଷତି, ଏହା ତୁଳନାରେ କିଛି ନୁହେଁ ବୋଲି ସେ ମତ ଦେଲେ ।

ମୋର ଏଇ ଘଟଣା ମନେ ପଡୁଛି ଏଇ ଯୋଗୁଁ ଯେ ସେ ଭଦ୍ରଲୋକ ଅଦ୍ୟାପି ଏକ ବିରାଟ ନେତା ଅଛନ୍ତି ଏବଂ ପଶ୍ଚିମବଂଗରେ ଗଣତନ୍ତ୍ର ବିପଦାପନ୍ନ ବୋଲି ତାଙ୍କର ଚିତ୍କାର ଶୁଭୁଛି ।

''ଶାଶୁ ପାଳି ଗଲେ ବୋହୂ ପାଳି ଆସେ,
ଶଳା ବି ଭିଣୋଇ ହୁଏ ।''

କାଳିନ୍ଦୀବାବୁଙ୍କର 'ଆମେ ଶଳା ସଇତାନ' କବିତା ମନେ ପଡ଼ିଲା ସେଦିନ ।

ସେଇଠି ଶ୍ୟାମବାବୁଙ୍କ ଘରେ ଥିଲାବେଳେ ହଠାତ୍ ଦେଖାହୁଏ ଶ୍ରୀ ଭି.ଏସ୍. ମାଥୁସ୍‌ଙ୍କ ସହିତ । ତାଙ୍କ ସହିତ ମୋର ପରିଚିତି ବିଶେଷ ନ ଥିଲା । ମୁଁ ତାଙ୍କୁ ଜାଣିଛି, ସେ ମୋତେ ଜାଣିଛନ୍ତି କିଛି କିଛି । ତାଙ୍କୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀ ହଠାତ୍ ବିଦା କରି ଦେଇଥାନ୍ତି । ସେ ଆପତ୍ତି ଜଣାଇଥିଲେ ଶ୍ୟାମବାବୁଙ୍କ ପାଖରେ ମୁଁ ସାଧୁ ଏବଂ ସରଳ ଯୋଗୁଁ ମୁଖ୍ୟମନ୍ତ୍ରୀ ମୋତେ ଚାକିରିରୁ ବାହାର କରି ଦେଇଛନ୍ତି । ଏଇ ହେଉଛି ମୋର ସାଧୁତା ଏବଂ ନିଷ୍ଠାର ଫଳ । ଶ୍ୟାମବାବୁ କଥାବାର୍ତ୍ତାରେ ଖୁବ୍ ପାରଙ୍ଗମ । ମୁରୁକି ମୁରୁକି ହସି ସେ ସବୁ ଉଦରସ୍ଥ କରି ଦିଅନ୍ତି । କିନ୍ତୁ ମାଥୁସ୍‌ଙ୍କର ଏଇ ଉକ୍ତିରେ ଶ୍ୟାମବାବୁଙ୍କ ସମେତ ଯେତେ ଲୋକ ସେଠାରେ ଉପସ୍ଥିତ ଥିଲେ ସମସ୍ତ ହସି ଉଠିଲେ ।

Digitized by srujan ka@gmail.com

ଦୁଇଟି ଏକ୍ସପେରିମେଣ୍ଟ ।

ଭାରତ ବିଭାଜନର ସମୟ । ସାମ୍ପ୍ରଦାୟିକ ଦଙ୍ଗାରେ ସାରା ଭାରତ ଜର୍ଜରିତ । ପରସ୍ପର ପ୍ରତି ଅବିଶ୍ୱାସ, ସନ୍ଦେହର କୁହେଳି ଭୟାନକ, ତିକ୍ତ । ଅପପ୍ରଚାରର ପରିଣାମ ବହୁତ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ଖାନସମା, ଦର୍ଜି, ବ୍ୟକ୍ତିଗତ ସହକାରୀ ସମସ୍ତେ ମୁସଲମାନ । ନିରାପତ୍ତା ଦୃଷ୍ଟିରୁ ସେମାନଙ୍କୁ ବଦଳାଇଦେବା ପାଇଁ ସବୁ ପ୍ରଚେଷ୍ଟା ପଣ୍ଡ ହେଲା । ପଣ୍ଡିତ ନେହେରୁ ସେମାନଙ୍କୁ ବଦଳାଇବାକୁ ନାରାଜ । ଏପରିକି ଖାଇବା ପୂର୍ବରୁ ଖାଦ୍ୟ ରଖିବା ପାଇଁ ଏକ ଫୁଡ୍-ଟେଷ୍ଟର (Food-Tester) ମଧ୍ୟ ନିଯୁକ୍ତ କରିବା ପାଇଁ ସେ ଅନୁମତି ଦେଲେ ନାହିଁ । ଏବଂ ସେ ପ୍ରମାଣିତ କରିଦେଲେ ସେ ଅବିଶ୍ୱାସ ଅମୂଳକ ।

ଠିକ୍ ସେଇ ପ୍ରକାର ଏକ୍ସପେରିମେଣ୍ଟ ଇନ୍ଦିରା ଗାନ୍ଧୀ ମଧ୍ୟ କଲେ । ଅମୃତସର ଘଟଣା ପରେ ତାଙ୍କର ନିରାପତ୍ତା ବାହିନୀରୁ ଶିଖ୍‌ମାନଙ୍କୁ ଅପସାରଣ କରିନେବା ପାଇଁ ପ୍ରସ୍ତାବକୁ ସେ ଗ୍ରହଣ କଲେ ନାହିଁ; ବାପାଙ୍କ ଭଳି ।

କିନ୍ତୁ ବାପାଙ୍କ କ୍ଷେତ୍ରରେ ଯାହା ସଫଳ ହୋଇଥିଲା ଝିଅଙ୍କ କ୍ଷେତ୍ରରେ ତାହା ସଫଳ ହେଲା ନାହିଁ । ରାଜନୈତିକ ପ୍ରଭାବ, ଜାତୀୟ ସଂହତିର ପ୍ରଭାବ କମିଗଲେ କ'ଣ ହୁଏ ତାହାର ଫଳ କେତେ ଭୟାନକ ହୋଇପାରେ ତାହା ପ୍ରମାଣିତ ହେଲା ।

ଜୈଲ ସିଂ ଏବଂ ଦରବାରା ସିଂ ଏଥିପାଇଁ ସବୁଠାରୁ ବେଶି ଦାୟୀ । ସେମାନଙ୍କ ମଧ୍ୟରେ ବ୍ୟକ୍ତିଗତ ବୈରତା ଯୋଗୁଁ ଏ ଦେଶକୁ ବହୁ ମୂଲ୍ୟ ଦେବାକୁ ହେଲା କେବଳ ଏକ ପ୍ରଧାନ ମନ୍ତ୍ରୀଙ୍କର ନିଧନରେ ନୁହେଁ, ରକ୍ତସ୍ନାତ ପଂଜାବର ବହୁ ଯୁବକ ଯୁବତୀଙ୍କର ନିଧନରେ ମଧ୍ୟ ।

ମୁଁ ଡକ୍ଟର ନୁରୁଲ ହାସାନଙ୍କୁ ଲଳିତଗିରିରେ ଖନନ କାର୍ଯ୍ୟ ହେବା ଉଚିତ ବୋଲି କହିବାରୁ, ସେ ମୋତେ କହିଲେ ଯେ ତମେ ପରା କହୁଚ ଉତ୍କଳ ବିଶ୍ୱବିଦ୍ୟାଳୟରେ ଆର୍କିଓଲଜି ବିଭାଗ ନାହିଁ, ତେବେ ଖନନ କାର୍ଯ୍ୟ କିପରି ହେବ ? ଏହା ଉତ୍କଳ ବିଶ୍ୱବିଦ୍ୟାଳୟ ଏବଂ ଅନ୍ୟ କୌଣସି ବିଶ୍ୱବିଦ୍ୟାଳୟର ମିଳିତ ଉଦ୍ୟମରେ ହୋଇପାରିବ ବୋଲି କହିବାରୁ ସେ ମୋତେ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନର ଅଧ୍ୟକ୍ଷଙ୍କ ପାଖକୁ ସୁପାରିଶ କରି ପଠାଇଲେ । ତମେ ଯଦି ଏହା କରି ପାରିବ ତା'ହେଲେ ସାଗରିକାର ଜର୍ମାନ ଡିଗ୍ରୀର ସ୍ୱୀକୃତି ସହିତ ଖନନ ପାଇଁ ମଂଜୁରୀ କମିଶନର ଅନୁଦାନ ମିଳିବ ବୋଲି ପ୍ରତିଶ୍ରୁତି ଦେଲେ । ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନର ଚେୟାରମ୍ୟାନ ସାଙ୍ଗେ ସାଙ୍ଗେ ମୋ ପ୍ରସ୍ତାବ ସହିତ ଏକମତ ହେଲେ । ମୁଁ ବିଶ୍ୱଭାରତୀରେ ଅଧ୍ୟାପନା କରୁଥିବା ଡକ୍ଟର ଏସ.ଆର. ଦାସଙ୍କ ନାମ ପ୍ରସ୍ତାବ କରିବାରୁ ସେ ସମ୍ମତି ଦେଲେ କିନ୍ତୁ ବିଶ୍ୱଭାରତୀ କର୍ତ୍ତୃପକ୍ଷଙ୍କ ସମ୍ମତି ଆଣିବାର ଦାୟିତ୍ୱ ମୋ ଉପରେ ଅର୍ପଣ କଲେ । ମୁଁ ଆସି ଏସ.ଆର. ଦାସଙ୍କୁ କଲିକତାରେ ତାଙ୍କ ଘରେ ସାକ୍ଷାତ କଲି ଏବଂ ସେ ମୋତେ ବିଶ୍ୱଭାରତୀର ତତ୍‌କାଳୀନ କୁଳପତି ଡକ୍ଟର ସୁରଜିତ୍ ସିହ୍ନାଙ୍କୁ ଦେଖା କରିବାକୁ ଉପଦେଶ ଦେଲେ । ସାଗରିକା ଏବଂ ମୁଁ ଗଲୁ

Digitized by srujan ka@gmail.com

ଶାନ୍ତିନିକେତନକୁ କାରଣ ତାର ଗବେଷଣା ମଧ୍ୟ ଅଧ୍ୟାପକ ଏସ.ଆର. ଦାସଙ୍କ ଅଧୀନରେ କରିବାକୁ ସ୍ଥିର ହୋଇଥାଏ । ଡକ୍ଟର ସୁରଜିତ୍ ସିହ୍ନାଙ୍କ ସହିତ ସାକ୍ଷାତ ହେଲା । ସେତେବେଳେ ବିଶ୍ୱଭାରତୀର ନୂଆ ନୂଆ ପ୍ରାସାଦ ଗଢ଼ି ଉଠୁଥାଏ । 'ପୂରବି'ରେ ଅବସ୍ଥାନ କାଳରେ ମୁଁ ତାଙ୍କୁ ଦିନେ ପଚାରିଲି ଏଠାରେ ପରା ନକ୍ସଲବାଦୀମାନେ ଖୁବ୍ ସକ୍ରିୟ । ସେମାନଙ୍କ ସାଙ୍ଗରେ ଦେଖା ହୋଇ ପାରନ୍ତା ନାହିଁ ? ସେ ଆଶ୍ଚର୍ଯ୍ୟ ହୋଇ ମୁଁ କାହିଁକି ସେମାନଙ୍କୁ ଭେଟିବାକୁ ଚାହୁଁଛି ବୋଲି ପଚାରିଲେ । ଏହି ବହୁତଳ ପ୍ରାସାଦଟି ସେମାନେ ଉଡ଼ାଇ ଦେଇ ପାରନ୍ତେ ନାହିଁ ? ବିଶ୍ୱଭାରତୀର ମାହାତ୍ମ୍ୟ ଏବଂ ଗୁରୁତ୍ୱ ଏଇ ପ୍ରାସାଦ ତିଆରିରେ ନଷ୍ଟ ହୋଇଯାଉ ନାହିଁ କି ? ପ୍ରାସାଦ ତିଆରି କଲେ ବିଶ୍ୱଭାରତୀର ସ୍ୱାତନ୍ତ୍ର୍ୟ ରହିଲା କେଉଁଠି, ବିଶେଷତ୍ୱ ରହିଲା କେଉଁଠି ବୋଲି ପଚାରିବାରୁ ସେ କହିଲେ ଯେ ଖାଲି ମୁଁ ନୁହେଁ ଅନେକ ଏହାର ପ୍ରତିବାଦ କରି ସାରିଛନ୍ତି । କିନ୍ତୁ ଯୁଗ ବଦଳି ଯାଉଛି । ରବୀନ୍ଦ୍ରନାଥଙ୍କ ସ୍ୱପ୍ନ ବା କଳ୍ପନା କଣ ବର୍ତ୍ତମାନ ଅତୁଟ ରହିଛି ?

ଶାନ୍ତିନିକେତନ ମୁଁ ଏହା ପୂର୍ବରୁ ଦୁଇଥର ଯାଇଥିଲି । ପ୍ରଥମ ଥର ଦେଖିଥିଲି ଯେ ପ୍ରାତଃ ସମାବେଶରେ ପ୍ରାୟ ସବୁ ଛାତ୍ରଛାତ୍ରୀମାନେ ଏବଂ ଅଧ୍ୟାପକ, କର୍ମଚାରୀ ଯୋଗ ଦେଉଥିଲେ । ରବୀନ୍ଦ୍ର ସଂଗୀତର ମୂର୍ଚ୍ଛନା ଝରିପଡୁଥିଲା ବୃକ୍ଷଲତାମାନଙ୍କରୁ । ସେମାନଙ୍କର ପତ୍ରର ମର୍ମର ଧ୍ୱନି ସତେ ଯେପରି ତାଳଦେଇ ଚାଲିଛି ସେଇ ସଂଗୀତ ସହିତ । ସମସ୍ତଙ୍କର ପରିଧାନ ସମାନ– ପୁରୁଷଙ୍କର ଧୋତି ପଂଜାବୀ, ସ୍ତ୍ରୀମାନଙ୍କର ଧଳା ଶାଢ଼ୀ ଏବଂ ବ୍ଲାଉଜ, ମୁଣ୍ଡରେ ''ଏଲୋଖୁଁପୋ ଖୁଲେ ପଡ଼େ ପଡ଼େ ଅଥଚ ପଡ଼େନା'' (ବେଣୀ ସତେ ଯେପରି ଝୁଲି ଖସି ପଡ଼ିବ କିନ୍ତୁ ପଡୁନାହିଁ) । ଦ୍ୱିତୀୟ ଥର ଯାଇଥିଲି ୧୯୫୪-୫୫ ମସିହାରେ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସର ଏକ ଛାତ୍ର ଦଳ ସହିତ । ଏଥରକ କିନ୍ତୁ ଟ୍ରାଉଜର ପଂଜାବୀ ପରିହିତ ବ୍ୟକ୍ତି ଏବଂ କାଁ ଭାଁ ସାଲଓ୍ୱାର କୁର୍ତ୍ତା ପିନ୍ଧା ନାରୀଙ୍କୁ ଦେଖିଥିଲି । ରଙ୍ଗ କିନ୍ତୁ ସେମିତି ଧଳା । ଅଧ୍ୟାପକ କୁଂଜ ବିହାରୀ ଦାସ ଆମକୁ ଲତାୟିତ କରାଯାଇଥିବା ଏକ ଆମ୍ବ ଏବଂ ପିଜୁଳିଗଛକୁ ଦେଖାଇ କହିଥିଲେ ଯେ ଏଠାରେ ପୁରୁଷମାନେ ମଧ୍ୟ ନାରୀ ଭଳି ଲତାୟିତ ଏବଂ କୋମଳ ତାହା ଏଇ ଦୁଇ 'ବୃକ୍ଷ'ରୁ ଜାଣିହୁଏ ।

କିନ୍ତୁ ୧୯୭୫ ମସିହା ଶେଷ ଭାଗରେ ଦେଖିଲାବେଳକୁ ନଳିପେଣ୍ଟ ଆରମ୍ଭ ହୋଇଯାଇଛି ଏବଂ ପୋଷାକ ବିଭିନ୍ନ ରଂଗର ହୋଇଗଲାଣି ।

ମନେ ପଡ଼ିଲା ରବୀନ୍ଦ୍ରନାଥଙ୍କ କାହାଣୀ । ସେ ଥିଲେ କଳାପ୍ରେମୀ, ରୋମାଣ୍ଟିକ ଏବଂ ସ୍ୱପ୍ନାଳୁ । ପାଟ୍ରିଅଟିଜିମ୍ ଏବଂ ହ୍ୟୁମାନିଜମ୍ ତାଙ୍କ ପାଇଁ ଥିଲା ଦୁଇଟା ସ୍ୱତନ୍ତ୍ର ଜିନିଷ । ସେ ହ୍ୟୁମାନିଷ୍ଟ ତେଣୁ ସେ ପାଟ୍ରିଅଟିକ ନୁହନ୍ତି ବୋଲି କହିଥିଲେ ସତ୍ୟଜିତ୍ ରାୟଙ୍କୁ । ହ୍ୟୁମାନିଜମ୍ ସାର୍ବଜନୀନ ଏବଂ ସମସ୍ତଙ୍କୁ ଆବୋରି ନିଏ । କିନ୍ତୁ ପାଟ୍ରିଅଟିଜିମ୍‌ରେ ଶତ୍ରୁ ମିତ୍ରର ଭେଦଭାବ ରହିଛି । ସେଇଯୋଗୁଁ ସେ ରକ୍ତାକ୍ତ ସଂଗ୍ରାମର ପକ୍ଷପାତୀ ନ ଥିଲେ, ନା ଏ ପଟରେ, ନା ସେ

Digitized by srujan ka@gmail.com

ପଟରେ । ଜାଲିଆନାୱାଲାବାଗ ହତ୍ୟାକାଣ୍ଡରେ ବ୍ୟଥିତ ହୋଇ ସେ ଯେପରି ଆପଣାର ନାଇଟହୁଡ୍ ବା ସାର୍ ଉପାଧି ବ୍ରିଟିଶ ସରକାରକୁ ଫେରାଇ ଦେଇଥିଲେ ଠିକ୍ ସେଇପରି ଟେରରିଷ୍ଟ ବା ସଂତ୍ରାସବାଦୀ ଆନ୍ଦୋଳନର ମଧ୍ୟ ସେ ବିରୋଧୀ ଥିଲେ । ସତ୍ୟଜିତ୍ ରାୟ ରବୀନ୍ଦ୍ରନାଥଙ୍କ ଉପରେ ଆକାଶବାଣୀ ପାଇଁ ଏକ ରୂପକ ପ୍ରସ୍ତୁତ କରିଥିଲେ । ଚଳିତ ବର୍ଷ ୧୯୯୯ ମସିହାରେ ତାର ଏକ ସଂଶୋଧିତ ସଂକ୍ଷିପ୍ତ ଏବଂ କ୍ଲୃପ୍ତ ସଂସ୍କରଣ ପ୍ରସାରିତ ହୋଇ ତୀବ୍ର ସମାଲୋଚନାର ସମ୍ମୁଖୀନ ହୋଇଛି ।

ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନକୁ ସେଦିନ ଆସିଥିଲେ ଗାନ୍ଧିଜୀ । ତାଙ୍କର ଆଗମନ ପାଇଁ ରବୀନ୍ଦ୍ରନାଥ ସବୁ ଟିକିନିଖି ଆୟୋଜନ କରିଥିଲେ । ଏପରିକି 'ଉତ୍ତରାୟଣ'ରେ ଯେଉଁ ଘରେ ଶୋଇବେ ତା'ର ପର୍ଯ୍ୟାପ୍ତ ଆୟୋଜନ କରିଥିଲେ ନିଜେ ରବୀନ୍ଦ୍ରନାଥ, ଆପଣାର କଳ୍ପନାକୁ ରୂପ ଦେଇଥିଲେ ଚିତ୍ରକରର ଆଖିରେ । କିନ୍ତୁ ଗାନ୍ଧିଜୀ ଆସି ବାରଣ୍ଡାର ଏକ ଦଉଡ଼ିଆ ଖଟରେ ଶୋଇବାର ଦେଖି ରବୀନ୍ଦ୍ରନାଥ ଦୁଃଖରେ ଭାଙ୍ଗି ପଡ଼ିଥିଲେ ।

ରବୀନ୍ଦ୍ରନାଥ ଓ ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ଭିତରେ ପାର୍ଥକ୍ୟ ଥିଲା ବହୁତ, ଜୀବନର ଦୃଷ୍ଟିକୋଣ ଓ ଜୀବନ ଦର୍ଶନରେ, କିନ୍ତୁ ବୋଧହୁଏ ଏଇ ସବୁ ମତ ପାର୍ଥକ୍ୟ ସତ୍ତ୍ୱେ ମାନବିକତାର ଉଦ୍‌ବେଳନ ଦୁହିଁଙ୍କ ଭିତରେ ସମାନ ଭାବରେ ଢେଉ ପିଟୁଥିଲା ।

ରବୀନ୍ଦ୍ରନାଥ ହିଁ ଗାନ୍ଧିଜୀଙ୍କୁ ''ମହାତ୍ମା'' ଉପାଧିରେ ଭୂଷିତ କଲେ ପ୍ରଥମେ ଏବଂ ଗାନ୍ଧିଜୀ ରବୀନ୍ଦ୍ରନାଥଙ୍କୁ ''ଗୁରୁଦେବ'' ଉପାଧିରେ ଭୂଷିତ କଲେ । ମୋହନଦାସ କରମଚାନ୍ଦ ଗାନ୍ଧୀ ଏହାପରଠାରୁ ମହାତ୍ମା ଗାନ୍ଧୀ ନାମରେ ପରିଚିତ ହେଲେ ଠିକ୍ ସେଇପରି ପରିଚିତ ହେଲେ ରବୀନ୍ଦ୍ରନାଥ ଗୁରୁଦେବ ରବୀନ୍ଦ୍ରନାଥ ନାମରେ ।

ଗାନ୍ଧିଜୀ ଓ ରବୀନ୍ଦ୍ରନାଥ ଭାରତୀୟ ଜନଜୀବନକୁ ଯେପରି ଉଦ୍‌ବେଳିତ କରିଛନ୍ତି ସେପରି କେହି କରିନାହାନ୍ତି । ମୋର ମନେପଡୁଛି କବି ରାଧାମୋହନ ଗଡ଼ନାୟକଙ୍କ କବିତା– ''ଜଣେ ଭାରତର ପୂର୍ବସାଗର ତଟେ, ଜୀବନ ଲେଖଇ ବିଶ୍ୱ ଜୀବନ ପଟେ'' ।

ରବୀନ୍ଦ୍ରନାଥଙ୍କ କବିତା, ନାଟିକା ପଢ଼ିଛି । ବୋଧହୁଏ ସମଗ୍ର ରବୀନ୍ଦ୍ର ରଚନାବଳୀ ମନଦେଇ ପଢ଼ିଛି । ପରିମାଣ, ବ୍ୟାପ୍ତି ଏବଂ ଲଳିତ ସ୍ୱର ମୋତେ ମୁଗ୍ଧ କରିଛି ତାଙ୍କର ଲକ୍ଷ ଲକ୍ଷ ପାଠକଙ୍କ ଭଳି । ତାଙ୍କର ଗଭୀର ମାନବିକତା ମୋତେ ମୁଗ୍ଧ କରିଛି ।

ମୃତ୍ୟୁ ପୂର୍ବରୁ ସେ ଆଖି ଖୋଲିଛନ୍ତି ଏବଂ ପଚାରିଛନ୍ତି ପାଖରେ ବସିଥିବା ରାଣୀ ମହାଲନବିସ୍ (ପ୍ରସିଦ୍ଧ ପରିସଂଖ୍ୟାନବିଦ୍ ପ୍ରଶାନ୍ତ ମହାଲନବିସଙ୍କର ସ୍ତ୍ରୀ) ଙ୍କୁ ।

ରାନୀ, ଯୁଦ୍ଧର ଖବର କଣ ?

ଦ୍ୱିତୀୟ ମହାଯୁଦ୍ଧର ସମୟ, ଷ୍ଟାଲିନଗ୍ରାଡ୍ ସହର ଅବରୁଦ୍ଧ ନାଜୀ ସୈନ୍ୟବାହିନୀ ଦ୍ୱାରା । ଲାଲ ସେନା ପଣ କରିଛି, ନାଜୀ ସୈନ୍ୟବାହିନୀକୁ ଏଇଠାରୁ ଫେରିବାକୁ ହେବ, ମାନବ ଜାତିର

Digitized by srujan ka@gmail.com

ମୁକ୍ତି ପାଇଁ । ସେଥିପାଇଁ ଯାହା ବଳିଦାନ ଆବଶ୍ୟକ ତା' ଦେବାକୁ ହେବ । ହିଟଲର ଘୋଷଣା କରିଛି ମଇ ପହିଲା ଦିନ ମସ୍କୋର ଲାଲ ଚୌକିରେ ଷ୍ଟାଲିନ ନୁହେଁ, ସେ ଭାଷଣ ଦେବ, ମଇ ପହିଲାର ଭାଷଣ । ଇତିହାସର ପୃଷ୍ଠାରେ ସେଭଳି ଯୁଦ୍ଧର ପଟାନ୍ତର ନାହିଁ । ବହୁ ଦେଶର କବି, ଲେଖକ ଗୀତ ଭଣିଛନ୍ତି ଏହି ମହାଯୁଦ୍ଧ ଉପରେ । ଷ୍ଟାଲିନଗ୍ରାଡ୍ ପାଲଟି ଯାଇଛି ଏକ ବିଶେଷଣ– ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ପ୍ରତିରୋଧର ସନ୍ତକ ।

ରାନୀ ଆଶ୍ୱାସନା ଦେଇ କହୁଛନ୍ତି– ''ଭୟ ନାହିଁ ସୋଭିଏଟ୍ ସେନାବାହିନୀ ଜିତ୍ଛେ'' । ''ଜିତ୍‌ବେ, ଆମି ଦେଖେ ଏସେଛି । ଓରା ମରତେ ପାରେନା । ଆମି ଶାନ୍ତିତେ ମରତେ ପାରବୋ ।''

ରବୀନ୍ଦ୍ରନାଥ ଆଖି ବୁଜି ଦେଇଥିଲେ । ମଣିଷ ପ୍ରତି ଗଭୀର ଅନୁକଂପା ହିଁ ମୃତ୍ୟୁର ସମୟରେ ଆପଣାର ପୁତ୍ର, କନ୍ୟା, ପତ୍ନୀ କଥା ମନେ ନ ପଡ଼ି ମାଟି ଏବଂ ପୃଥ୍ୱୀ କଥା ମନେ ପକାଇଦିଏ । ରବୀନ୍ଦ୍ରନାଥ ତାହାରି ପ୍ରତୀକ ।

ରବୀନ୍ଦ୍ରନାଥ ଆସିଥିଲେ ପୁରୀ । ତାଙ୍କର ''ପାଥେର ପୁରୀ'' (ବର୍ତ୍ତମାନ ସାମନ୍ତ ଚନ୍ଦ୍ରଶେଖର କଲେଜର ହଷ୍ଟେଲ) ଘରେ ରହୁଥିଲେ । ସେତେବେଳେ ଓଡ଼ିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ । ବିଶ୍ୱନାଥ ଦାସ ଓଡ଼ିଶାର ପ୍ରାଧାନମନ୍ତ୍ରୀ । ତାଙ୍କ ସରକାର ରବୀନ୍ଦ୍ରନାଥଙ୍କୁ ''ରାଷ୍ଟ୍ର ଅତିଥି'' (State Guest) କରିଥିଲେ ଏବଂ ତାଙ୍କର ସମ୍ମାନାର୍ଥେ ଏକ ସଭାର ଆୟୋଜନ କରିଥିଲେ ପୁରୀରେ ।

ସମ୍ବର୍ଦ୍ଧନାର ଉତ୍ତର ଦେଇ ରବୀନ୍ଦ୍ରନାଥ କହିଲେ ଯେ ''ଓଡ଼ିଶା ମୋତେ ରାଷ୍ଟ୍ର ଅତିଥି କରି ଆପଣାକୁ ଧନ୍ୟ କରିଛି ।'' ଏପରି ଏକ ଉକ୍ତି ମହାମାନବିକତାରେ ଉଦ୍‌ବୁଦ୍ଧ ଲେଖକର କଣ୍ଠରେ ଶୋଭାପାଏନା । କିନ୍ତୁ ଏହା ଆକସ୍ମିକ ନା ବଙ୍ଗଳା ସଉଭିନିଜମ୍ (Chauvinisim)ର ଲକ୍ଷଣ ? ଠିକ୍ ବୁଝି ହୁଏନା । ଏବଂ ଯାହା ମୂଲ୍ୟ ଦେବାକୁ ପଡୁ ପଛକେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଆମର ଦରକାର ପଛରେ ଥିବା ଓଡ଼ିଆ ଜାତିର ଆଇଡିଣ୍ଟିଟି (Identity) ରକ୍ଷା କରିବା ପାଇଁ ଉତ୍କଣ୍ଠା ବୁଝିହୁଏ ।

ଶାନ୍ତିନିକେତନରୁ ଫେରି ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ଅଧ୍ୟାପକ କରୁଣା ସାଗର ବେହେରାଙ୍କ ସହିତ ଆଲୋଚନା ହେଲା । ତାଙ୍କ ସହିତ ଆତ୍ମୀୟତା ବହୁଦିନରୁ ଏବଂ ସେ ମଧ ବେଶ୍ ପ୍ରତିଭାଶାଳୀ ଗବେଷକ । କିନ୍ତୁ ସେ ନରମା ଲୋକ, ଭଦ୍ର, ବିନୟୀ ମଣିଷଟିଏ । ତାଙ୍କୁ ମାରପେଞ୍ଚ, ନିଆ ଅଣା କାର୍ଯ୍ୟ ମାଲୁମ ନାହିଁ । ତାଙ୍କ ସହିତ ଆଲୋଚନା ବି ହୋଇଥିଲା ଆଗରୁ । ଉତ୍କଳ ବିଶ୍ୱବିଦ୍ୟାଳୟରେ କିଛି ଆପତ୍ତି ଉଠିଥିଲା (ବିନା କାରଣରେ ଆପତ୍ତି) ବିଶେଷତଃ ସମଗୋତ୍ରୀମାନଙ୍କଠାରୁ । କିନ୍ତୁ ସେ ବିରୋଧ ବେଶୀ ସମୟ ତିଷ୍ଠିପାରି ନ ଥିଲା । ଓଡ଼ିଶାର ତତ୍‌କାଳୀନ ସଂସ୍କୃତି ମନ୍ତ୍ରୀ ଥିଲେ ଶେଖ୍ ମତଲୁବ୍ ଅଲ୍ଲୀ । ମତ୍‌ଲୁବ୍‌ଙ୍କୁ ପ୍ରଥମେ ସ୍କୁଲ ଜୀବନରେ

Digitized by srujan ka@gmail.com

ଠାବ କରିଥିଲେ ବଂଧୁ ମନୋଜ ଦାସ, ଛାତ୍ର ସଂଘର ସଂପାଦକ ଭାବରେ । ମତଲୁବ୍ ବେଶ୍ କିଛି ସମୟ ଛାତ୍ର ସଂଘର ସକ୍ରିୟ କର୍ମୀ ଥିଲେ । ସାହିତ୍ୟ ସଂସ୍କୃତି ପ୍ରତି ଅନୁରାଗ ତାଙ୍କୁ ମନୋଜ ଦାସ୍‌ଙ୍କର ଖୁବ୍ ନିକଟତର କରିଥିଲା । ଅଦ୍ୟାପି ତାହା ଅତୁଟ ରହିଛି । ମତଲୁବ୍ ପରବର୍ତ୍ତୀ କାଳରେ ଅଧୟନ ସାରି କଲେଜରେ ଅଧାପନା କରୁଥିଲେ, ପତ୍ରିକା ପ୍ରକାଶନ କରୁଥିଲେ । ସାହିତ୍ୟ ଚର୍ଚ୍ଚାରେ ବେଶ୍ ସମୟ ଦେଉଥିଲେ ।

ଏଇ ସମୟରେ ସେ ଏକ ମେଗାଜିନ୍ ପ୍ରକାଶ କରୁଥିଲେ । ସେଇ ସଂଖ୍ୟା ମେଗାଜିନ୍ ପାଇଁ ଲେଖା ମାଗିଛନ୍ତି ସେ ଅନେକଙ୍କୁ, ଯିଏ ଲେଖା ଆଗ ଦେଇଛି ତାର ଲେଖା ପ୍ରଥମରୁ ସ୍ଥାନ ପାଇଛି, ଯିଏ ପରେ ଦେଇଛନ୍ତି ତା'ର ପରେ ସ୍ଥାନ ପାଇଛି । ଦୈବାତ୍ ପ୍ରଥମ ଲେଖାଟି ହେଉଛି ନନ୍ଦିନୀ ଦେବୀଙ୍କର ଏବଂ ସବା ଶେଷଟି ହେଉଛି କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର । ଏହା ନନ୍ଦିନୀ ଦେବୀଙ୍କର ମନ୍ତ୍ରୀତ୍ୱର ବହୁ ପୂର୍ବରୁ । ମେଗାଜିନ୍‌ର ସଂଖ୍ୟାଟିଏ ନେଇ ମତଲୁବ୍ ପହଞ୍ଚିଲେ ୰ଅଧ୍ୟାପକ କୁଞ୍ଜବିହାରୀ ଦାସଙ୍କ ପାଖରେ । ରାଧାମୋହନ ଗଡ଼ନାୟକ ସେଦିନ କୁଂଜବାବୁଙ୍କ ଘରେ ଅତିଥି । ମେଗାଜିନ୍ ଦେଖି କ୍ରୁଦ୍ଧ ରାଧାମୋହନ ଗଡ଼ନାୟକ ଘରୁ ବାହାରି ଆସିଲେ ଏବଂ କହିଲେ ''କିଏ ସେ ଅର୍ବାଚୀନ ବାଳକ ଯେ କାଳିନ୍ଦୀବାବୁଙ୍କ ଲେଖାକୁ ଶେଷରେ ଛାପି ନନ୍ଦିନୀର ଲେଖାକୁ ପ୍ରଥମେ ଛାପିଛି ?'' ଦେଖ ରାଧାମୋହନ ବାବୁଙ୍କ କ୍ରୋଧ ଏବଂ ତରୁଣ ମତଲୁବ୍ ଅଲ୍ଲୀଙ୍କ ଅବସ୍ଥା ସେତେବେଳେ ! ସେ ତା'ର କିଛିଦିନ ପରେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦେଲେ ଏବଂ ମାହାଙ୍ଗା ନିର୍ବାଚନ ମଣ୍ଡଳୀରୁ ଜିତି ଏମ୍.ଏଲ୍.ଏ ଏବଂ ପରେ ମନ୍ତ୍ରୀ ହେଲେ । ସଂସ୍କୃତ, ସାହିତ୍ୟ, କଳା ପ୍ରତି ତାଙ୍କର ଅନୁରାଗ ପ୍ରଭୂତ । ମନେହୁଏ ମନ୍ତ୍ରୀତ୍ୱ ସିନା ପେଷା, କିନ୍ତୁ ସାହିତ୍ୟ, ସଂସ୍କୃତି ହେଉଛି ନିଶା । ମାହାଙ୍ଗା ଅଂଚଳ ଏକ ପ୍ରତିଭା ପ୍ରସବିନୀ ଅଂଚଳ । କଳା, ସାହିତ୍ୟ, ସଂସ୍କୃତି ପ୍ରତି ଏଇ ଅଂଚଳର ବହୁ ସନ୍ତାନମାନଙ୍କର ଅବଦାନ ପ୍ରଭୂତ ।

ଏଇଠି ମନେପଡ଼େ ଅନେକ ସ୍ମୃତି । 'ସମାଜ' ସଂପାଦକ ୰ ରାଧାନାଥ ରଥ ଏବଂ 'ପ୍ରଜାତନ୍ତ୍ର'ର ପ୍ରତିଷ୍ଠାତା ହରେକୃଷ୍ଣ ମହତାବଙ୍କ ମଧ୍ୟରେ ପଡ଼େ ନାହିଁ ବୋଲି ସାରା ଓଡ଼ିଶାରେ ବହୁଳ ପ୍ରଚାରିତ । ଯଦିଓ ଦୁହେଁ ଗୋଟିଏ ମନ୍ତ୍ରିମଣ୍ଡଳରେ ବହୁଦିନ ଧରି ଏକାଠି କାମ କରିଛନ୍ତି । ଭାରତୀୟ ଜାତୀୟ କଂଗ୍ରେସ ଓ ପ୍ରଜାମଣ୍ଡଳରେ ମଧ୍ୟ କାମ କରିଛନ୍ତି ବହୁ ବର୍ଷ ଧରି ।

ଥରେ ଆମେ ଦୁଇଜଣଙ୍କୁ ଗୋଟିଏ ସଭାରେ କହିବା ପାଇଁ ନିମନ୍ତ୍ରଣ କଲୁ । ଦୁହେଁ ସମ୍ମତି ଦେଲେ । କାର୍ଡ଼ ଛପା ହେଲା । ବହୁ ବିଶିଷ୍ଟ ବଂଧୁ କାର୍ଡ଼ ଦେଖି ନାସିକା, ଚକ୍ଷୁ କୁଞ୍ଚନ କଲେ । କେତେକ ମୁରବୀପଣିଆ ଦେଖାଇ ଏଭଳି ଏକ ସଭାର ଆୟୋଜନ କରିବା ଉଚିତ ନ ଥିଲା ବୋଲି କହିଲେ । ଆହୁରି ଦଳେ ଆଉ ଗୋଟିଏ ପାଦ ଆଗକୁ ଯାଇ ଆମେ ନିଜ ପାଇଁ ବିପଦ ଡାକି ଆଣୁଛୁ ବୋଲି ମତ ଦେଲେ ।

Digitized by srujan ka@gmail.com

ନାରୀ ସଂଘ ସଦନରେ ସଭାର ଆୟୋଜନ ହୋଇଥାଏ । ଲୋକେ ଭରପୁର । ଦୁହେଁ କେବଳ ଆସିଲେ ନାହିଁ, ଚମତ୍କାର ବକ୍ତୃତା ଦେଇ ଶ୍ରୋତା ମଣ୍ଡଳୀକୁ ମୁଗ୍ଧ କରିଥିଲେ । କିଛି ବ୍ୟକ୍ତିଙ୍କର ମୁହଁ ଆମ୍ବିଳା ହୋଇଗଲା । ପରବର୍ତ୍ତୀ କାଳରେ ବହୁ କାର୍ଯ୍ୟକ୍ରମରେ ଆମେ ମହତାବବାବୁ-ରାଧାନାଥବାବୁଙ୍କୁ ଡାକିଛୁ ଏବଂ ଦୁହେଁ ଖୁବ୍ ଭଲ କହିଛନ୍ତି । ରାଜନୈତିକ ମତଭେଦ ସ୍ୱତନ୍ତ୍ର କଥା କିନ୍ତୁ ତାହା ଯେ ବ୍ୟକ୍ତିଗତ ସ୍ତରକୁ ଛୁଇଁ ନାହିଁ ଏହା ପ୍ରମାଣିତ ହୋଇଛି । ଆମର ମତ ଯେ ଏହା ଦୁଇ ଶିବିରର କିଛି ତୋଷାମୋଦିଆଙ୍କ କାରସାଦୀ ମାତ୍ର । ଯେଉଁମାନେ ପରସ୍ପରଙ୍କୁ ପରସ୍ପର ବିରୁଦ୍ଧରେ କିଛି କିଛି କହି, ସେଥିରୁ କିଛି ବ୍ୟକ୍ତଗତ ଫାଇଦା ଉଠାନ୍ତି ମାତ୍ର ।

ଠିକ୍ ସେଇପରି ମାହାଙ୍ଗା କଥା । ଶ୍ରୀ ଶରତ କର ଏବଂ ଶେଖ୍ ମତଲୁବ୍ ଅଲ୍ଲି ଦୁଇ ପରସ୍ପର ରାଜନୈତିକ ବିରୋଧୀ ଶିବିରର ନେତା । ମାହାଙ୍ଗାର ଚତୁର ଭୋଟରମାନେ ଥରେ ଶରତ କରଙ୍କୁ ଜିତାଇଲେ ଥରେ ମତଲୁବ ଅଲ୍ଲିଙ୍କୁ ଜିତାଇ ଆସିଛନ୍ତି । ଥରେ ବୋଧହୁଏ ମତଲୁବ ଅଲ୍ଲୀଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଘଟିଛି । ପ୍ରଖ୍ୟାତ ଲେଖକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର ପରଲୋକ ହୋଇଯାଇଥାଏ । ଆମେ ତାଙ୍କର ମରଦେହକୁ ନେଇ ଯାଉଥାଉ ସତୀଚଉରାକୁ । ମତଲୁବ ଅଲ୍ଲି ଓ ମୁଁ ଗୋଟିଏ ଗାଡ଼ିରେ ଯାଉଥାଉ । ଶରତ କରଙ୍କ ଗୋଡ଼ ଖରାପ ଥାଏ । ତେଣୁ ମୁଁ ଡ୍ରାଇଭରଙ୍କୁ କହିଲି ଯେ ବାଟରେ ତାଙ୍କୁ ନେଇଯିବା । ମତଲୁବ ସେପର୍ଯ୍ୟନ୍ତ ଗାଡ଼ିକୁ ଆସିନାହାନ୍ତି । ହଠାତ୍ ଆରମ୍ଭ ହେଲା ପ୍ରତିକ୍ରିୟା । ସେଇଟା କିପରି ସମ୍ଭବ ? ସେ ଓ ଶରତ କର କ'ଣ ଏକା ଗାଡ଼ିରେ ଯିବା ସମ୍ଭବ ? ଯିଏ କହିଲେ ତାକୁ ଉତ୍ତର ଦେଇ କହିଲି ଆପଣ ମୋ ପାଖରେ ବସନ୍ତୁ । କିମିତି ସମ୍ଭବ ତାହା ଦେଖିଯିବେ । ଶରତ, ମତଲୁବ ଏବଂ ମୁଁ ଗୋଟିଏ ଗାଡ଼ିରେ ଗଲୁ, ବାଟରେ ଚାହା ପିଇଲୁ । ତା'ପରେ ଶ୍ମଶାନରେ ଶବଦାହ ସରିଲା ପର୍ଯ୍ୟନ୍ତ ଦୁହେଁ ଏକାଠି ଗୋଟିଏ ଯାଗାରେ ଠିଆ ହୋଇ ଗଳ୍ପ କଲେ ବିଭିନ୍ନ କଥା । ଆପତ୍ତି କରିଥିବା ବ୍ୟକ୍ତିଙ୍କର ଅକଲ ଗୁଡୁମ୍ । ତାଙ୍କୁ ମୁଁ ଅନେଇଲି । ସେ ଅବଶ୍ୟ ମୋତେ ଗୋଟିଏ ଛୋଟିଆ ସାର୍ଟିଫିକେଟ ଦେଲେ, ''ଆପଣ ବାଘ ବକିରୀକୁ ଗୋଟିଏ ଘାଟରେ ପାଣି ପିଆଇ ପାରନ୍ତି'' । ମୁଁ ହସି ହସି ଉତ୍ତର ଦେଲି, ସେ ଦୁଇଜଣଙ୍କ ପିଠିରେ ହାତ ଦେଇ । ଏମାନଙ୍କ ମଧ୍ୟରୁ ବାଘ କିଏ, ବକିରୀ କିଏ ? ନା ଏସବୁ ଆପଣମାନଙ୍କ ଦ୍ୱାରା ସୃଷ୍ଟ !

ମୋର ବି ମନେପଡୁଛି ଏ ସଂକ୍ରାନ୍ତରେ ଆଉ ଗୋଟିଏ କଥା । ସୁରେନ୍ଦ୍ର ମହାନ୍ତି ଜଣେ ରାଜନୀତିଜ୍ଞ ଏବଂ ଲେଖକ । ତାଙ୍କ ସହିତ ଆମର ରାଜନୈତିକ ମତଭେଦ ତୀବ୍ର, ଶାଣିତ । ଜେଲଖାନା ଭିତରେ ଯେପରି ବାହାରେ ବି ସେଇପରି । ୰ ରାଜେନ୍ଦ୍ର ନାରାୟଣ ସିଂହଦେଓ ପ୍ରଭୃତି ରାଜାମାନଙ୍କ ପ୍ରତି ତାଙ୍କର ସାମନ୍ତବାଦୀ ସମ୍ମାନ ଥିଲା ପ୍ରଚୁର । ଥରେ ସୁରେନ୍ଦ୍ର ବାବୁଙ୍କୁ ଆମେ ଡାକିଥାଉ ୟୁନିଭର୍ସକୁ 'ମୋ ଜୀବନ, ମୋ କଲମ' ଉପରେ କହିବା ପାଇଁ । କିନ୍ତୁ ଗର୍ବିତ

Digitized by srujan ka@gmail.com

ସୁରେନ୍ଦ୍ରବାବୁ ନିଜର ଜୀବନୀ ଉପରେ କହିବା ପାଇଁ ମନା କରିଦେଲେ । ତା' ଅପେକ୍ଷା ନୂତନ ଓଡ଼ିଶାର ଜନ୍ମ ବିଷୟରେ କହି ଚାଲିଲେ । ଏବଂ ପରିଶେଷରେ ସେ କହିଲେ ମୋର ବ୍ୟକ୍ତିଗତ ଜୀବନର କାହାଣୀ ଶୁଣି ଲାଭ ନାହିଁ । କଣ ମୋର ଅବଦାନ ଏ ଦେଶ ପାଇଁ, ଏ ଜାତି ପାଇଁ । ବରଂ ଶୁଣ ଏ ଜାତିର ଜନ୍ମ କାହାଣୀ, କିଭଳି ପରିସ୍ଥିତି ଥିଲା ଏବଂ କିପରି ଜନ୍ମ ଲାଭ କଲା ସ୍ୱତନ୍ତ୍ର ଓଡ଼ିଶା, କେଉଁଥିପାଇଁ ଆଜି ଆମେ ଆପଣାକୁ ଓଡ଼ିଆ ବୋଲି କହି ପାରୁଛୁ, ଓଡ଼ିଆ ଭାଷା କହି ପାରୁଛୁ ?

ମୋର ବକ୍ତବ୍ୟରେ ମୁଁ କହିଥିଲି ଏଇ ହେଉଛନ୍ତି ସାହିତ୍ୟିକ, ସ୍ୱାଭିମାନୀ ସୁରେନ୍ଦ୍ର ମହାନ୍ତି । ରାଜନୈତିକ ସୁରେନ୍ଦ୍ର ମହାନ୍ତି ନୁହନ୍ତି । ରାଜନୈତିକ ସୁରେନ୍ଦ୍ର ମହାନ୍ତି ଆମ ଚର୍ଚ୍ଚାର ବସ୍ତୁ ନୁହନ୍ତି କାରଣ ସେ ସୁରେନ୍ଦ୍ର ମହାନ୍ତି ଓଡ଼ିଶାର ଜନସ୍ମୃତିରେ ରହିବେ ନାହିଁ । କିନ୍ତୁ ରହିବେ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି । ମୁଁ କହି ଚାଲିଛି ତାଙ୍କର ଗଳ୍ପ ପରେ ଗଳ୍ପ, କୁଳଛନ୍ଦ ପ୍ରଭୃତି ବହି । ତା'ପରଦିନ ମୋତେ ଖଣ୍ଡିଏ ଚିଠି ଲେଖିଥିଲେ ସେ, ଯେଉଁଥିରେ ଲେଖାଥିଲା ''ତମ ଉପରେ ମୋର ଅଲଗା ଧାରଣା ଥିଲା, ତମେ ଯେ ମୋର ଜଣେ ଏପରି ବିଦଗ୍ଧ ପାଠକ ଏହା ମୁଁ ଜାଣି ନ ଥିଲି । ତମ ଭଳି ଚାରୋଟି ପାଠକ ପାଇଥିଲେ ମୋର ଲେଖକ ଜୀବନକୁ ସାର୍ଥକ ମଣିଥାନ୍ତି ।''

ସେ ଅସୁସ୍ଥ ଥିଲେ । କିନ୍ତୁ ନିଜ ଅସୁସ୍ଥତା ସଂପର୍କରେ ସେ କେବଳ ଏତିକି କହିଲେ ଯେ ''ମୋର ଯେଉଁ ରୋଗ ହୋଇଛି, ସେ ରୋଗ କେବଳ ନାରୀମାନଙ୍କୁ ହୁଏ, କିନ୍ତୁ ମୁଁ ଓ ମୋର ଭାଇ ଦୁହେଁ ଏଇ ରୋଗରେ ପୀଡ଼ିତ ।'' ତା'ପରେ ଆରମ୍ଭ କଲେ ଲାଲାମଠ ଓ କେନ୍ଦ୍ରାପଡ଼ାର ଲାଲାବାବୁଙ୍କ ପରିବାର ବିଷୟରେ । ସତେ ଯେପରି ତାଙ୍କର କିଛି ରୋଗ ହୋଇନାହିଁ । ମନରେ ଭାବିଲି ଏ କ'ଣ ସ୍ଥିତପ୍ରଜ୍ଞତା ନା ବାଚାଳତା ? ମୃତ୍ୟୁର ପଦଧ୍ୱନି ସେ ଶୁଣିପାରୁଛନ୍ତି କିନ୍ତୁ ବଂଚିଥିବା ପର୍ଯ୍ୟନ୍ତ ତାଙ୍କ ପାଇଁ ଜୀବନ ହିଁ ସତ୍ୟ । ସତେ ଯେପରି ସେ ନିଜ କଥା କହୁଛନ୍ତି, ନିଜର ଗଳ୍ପର ସାରୀପୁତ୍ତଙ୍କ ମାଆଙ୍କ କଣ୍ଠରେ । ମୁଁ ଜୀବନ ଚାହେଁ, ମୁଁ ନିର୍ବାଣ ଚାହେଁନା ।

ଏଇପରି ଏକ ମନୋଭାବ ମୁଁ ଦେଖିଥିଲି ଜଷ୍ଟିସ ହରିହର ମହାପାତ୍ରଙ୍କ ପାଖରେ । ତାଙ୍କର ପେଟରେ ପେରିଟୋନିୟାନ୍ ଜୋନ୍‌ରେ ଏକ ଟ୍ୟୁମର ଦେଖାଗଲା । ସେ ଏହା ଜାଣିଲେ କିନ୍ତୁ ଅସ୍ତ୍ରୋପଚାର ପାଇଁ ସମ୍ମତି ଦେଲେ ନାହିଁ । ତାଙ୍କର ବୟସ ହୋଇଗଲାଣି ୯୪ ବର୍ଷ । ଏ ବୟସରେ ଆଉ ଅସ୍ତ୍ରୋପଚାର କରିବା ଠିକ୍ ହେବ ନାହିଁ । ତେଣୁ ସେ ନିଜକୁ ନିସ୍ତ୍ରାନ୍ତ କରିନେଲେ ଅନେକ କ୍ରମାଗତ କାମ ଥିବା ଦାୟିତ୍ୱରୁ । ମୋର ଠିକ୍ ମନେ ପଡୁଚି । ତାଙ୍କୁ ଦେଖା କରିବା ପାଇଁ ମୁଁ ପ୍ରତିଦିନେ ଦୁଇଦିନରେ ଯାଏ । ମୃତ୍ୟୁର ଦୁଇ ତିନିଦିନ ପୂର୍ବରୁ ତାଙ୍କ ସହିତ ଶେଷ ସାକ୍ଷାତ । ନିଜର ଅସୁସ୍ଥତା ସଂପର୍କରେ କେବଳ ଏତିକି କହିଲେ, ମୋର ଜୀବନ ସରି ସରି ଆସୁଛି । ମୁଁ ଏକ ପୂର୍ଣ୍ଣ ଜୀବନ ଉପଭୋଗ କରିଛି । ତେଣୁ ଆଜି ମୃତ୍ୟୁକୁ ଭୟ କରିବି କାହିଁକି ?

Digitized by srujan ka@gmail.com

ତା'ପରେ ଆରମ୍ଭ କଲେ ତାଙ୍କର ଅଭିଳାଷ କଥା । କହିଲେ, ''ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ଦ୍ୱିତୀୟ ସଂସ୍କରଣ ହୋଇ ପାରନ୍ତା ନାହିଁ ?'' ଏତକ କହି ସେ ଖଣ୍ଡିଏ କାଗଜ ବାହାର କଲେ ଡ୍ର'ରୁ । ସେଥିରେ ଏଇ ବହି ଛପାହେଲେ କେତେ ଖର୍ଚ୍ଚ ହେବ ତାହାର ଏକ ଏଷ୍ଟିମେଟ ରହିଛି । ''ଦେଢ଼ କୋଟି ଟଙ୍କା ଖର୍ଚ୍ଚ ହେବ । ମୁଁ ପଞ୍ଚସ୍ତରୀ ଲକ୍ଷ ଟଙ୍କା ବନ୍ଦୋବସ୍ତ କରିଦେବି । କିନ୍ତୁ ବାକି ଟଙ୍କା କେଉଁଠୁ ଆସିବ ?'' ମୁଁ ତାଙ୍କୁ କହିଲି ଯେ ଏତିକି ଟଙ୍କା ମିଳିଲେ ହୋଇଯିବ । କାରଣ ଆମେ ତ ସବୁ ଭଲ୍ୟୁମ ଏକା ସାଙ୍ଗରେ ଛାପୁ ନାହାନ୍ତି ! ତେଣୁ ଗୋଟାଏ ଭଲ୍ୟୁମ ବାହାରି ପଡିଆରା ହୋଇଗଲେ ବାକି ଭଲ୍ୟୁମମାନଙ୍କ ପାଇଁ ଗ୍ରାହକମାନେ ଟଙ୍କା ଦେବେ ଆଗତୁରା ।

ହଠାତ୍ ଦେଖିଲି ତାଙ୍କର ପାଣ୍ଡୁର ମୁଖମଣ୍ଡଳ ଉପରେ ଏକ ଗୋଲାପି ଆଭା । ସତେ ଯେପରି ନୂତନ ରକ୍ତ ସଂଚାରଣ ହୋଇଛି । ହସର ଏକ ସାନ ରେଖା ଉକୁଟି ଲିଭିଗଲା ତାଙ୍କ ମୁଖମଣ୍ଡଳରେ । ତା'ପରେ ସେ କହି ଚାଲିଲେ ତାଙ୍କର ପରିକଳ୍ପନା କଥା । ଏକ ବୋର୍ଡ଼ ତିଆରି ହେବ, ସବ୍ କମିଟି ରହିବ ଇତ୍ୟାଦି ଇତ୍ୟାଦି । ମୋର ପାଟିରୁ କଥା ବାହାରୁ ନ ଥିଲା । ଏ କ'ଣ ସ୍ଥିତପ୍ରଜ୍ଞତା ନା ମୃତ୍ୟୁର ପ୍ରଳାପ ? ସେ ଉଠି ଠିଆ ହେଲେ ମୋତେ ବିଦାୟ ଦେବା ପାଇଁ । ମୁଣ୍ଡ ଆଉଁସି ଦେଇ କହିଲେ ଯେ ତା'ହେଲେ ଆମେ ଏହାକୁ ଛାପି ପାରିବା ବୋଲି ତମେ ଭରସା ଦେଉଚ ଏଥିରେ ମୁଁ ଅତ୍ୟନ୍ତ ଆନନ୍ଦିତ ।

ସୁଖର କଥା, ତାଙ୍କର ପରଲୋକ ପରେ ବଂଧୁ ଶ୍ରୀ ଗିରିଶ ମିଶ୍ର ତାଙ୍କର ସେଇ ସ୍ୱପ୍ନକୁ ରୂପ ଦେବା ସକାଶେ ସକ୍ଷମ ହୋଇ ପାରିଛନ୍ତି ଏବଂ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ପ୍ରକାଶନ ପ୍ରାୟ ସମାପ୍ତ । ଶ୍ରୀ ଗିରିଶଚନ୍ଦ୍ର ମିଶ୍ରଙ୍କର ଏହା ହେଉଛି ଏକ ବିରାଟ ଅବଦାନ ଏ ଜାତି ପାଇଁ ।

୧୯୭୬ ମସିହା ଜାନୁଆରୀ ମାସରେ କଟକରେ ଆମ୍ଭେମାନେ ପ୍ରଥମ ବୌଦ୍ଧ-ଜୈନ ଦର୍ଶନ ଉପରେ ଆନ୍ତର୍ଜାତିକ ସେମିନାର ଆୟୋଜନ କରିଥିଲୁ । ସେତିକିବେଳେ ବହୁ ଜାତୀୟ, ଆନ୍ତର୍ଜାତୀୟ ଗବେଷକ ଯାଇଥିଲେ ଲଳିତଗିରି-ରତ୍ନଗିରି ଦେଖିବା ପାଇଁ । ସେଠାରେ ଏକ ପାହାଡ଼ ଥିଲା ବୋଧହୁଏ ଶୁଖୁଆପଡ଼ା ପାହାଡ଼ ନାମରେ ତାହା ଖ୍ୟାତ ଥିଲା । ସେଠାରେ କିଛି ଗୁମ୍ଫାର ସନ୍ଧାନ ମିଳିଥିଲା ଏବଂ ମିଳିଥିଲା କିଛି ପ୍ରାଚୀନ ମୁଦ୍ରା । ଏଇ ପାହାଡ଼କୁ ଭାଙ୍ଗି ସେଠାରୁ ଚିପ୍‌ସ ସଂଗ୍ରହ ପାଇଁ କିଛି କଣ୍ଟ୍ରାକ୍ଟର ଉଦ୍ୟମ କରୁଥିଲେ । ସେତେବେଳର କଟକ କଲେକ୍ଟର ଥିଲେ ଶ୍ରୀ ସତ୍ୟରଂଜନ ପାଲ । ଇତିହାସ, ବ୍ରିଜଖେଳ ଏବଂ କିଛି ପରିମାଣରେ ହସ୍ତରେଖା ପ୍ରତି ତାଙ୍କର ଆଗ୍ରହ ପ୍ରଚୁର । ଶେଖ୍ ମତଲୁବ୍ ଅଲ୍ଲୀଙ୍କ ଉଦ୍ୟମ ଫଳରେ ପାଲ୍ ସେଠାରେ ୧୪୪ ଧାରା ଜାରି କରିଥିଲେ । ଚିପ୍‌ସ ସଂଗ୍ରହ ବନ୍ଦ ହୋଇଥିଲା । ପରେ କଣ ହେଲା ମୁଁ କହିପାରିବି ନାହିଁ ।

Digitized by srujan ka@gmail.com

ପରିଶେଷରେ ଆମର ଉଦ୍ୟମ ସଫଳ ହେଲା । ଲଳିତଗିରିର ଖନନ କାର୍ଯ୍ୟ ଆରମ୍ଭ ହେଲା । ବୌଦ୍ଧ ସଭ୍ୟତାର ନୂତନ ଦିଗନ୍ତ ଉନ୍ମୋଚିତ ହେବାକୁ ଆରମ୍ଭ କଲା । କିନ୍ତୁ ଛଅମାସ ପରେ ହଠାତ୍ ଖନନ କାର୍ଯ୍ୟ ବନ୍ଦ ହୋଇଗଲା । ସରକାରୀ ଅନୁଦାନ ମିଳିଲା ନାହିଁ । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ଅନୁଦାନକୁ ଅପେକ୍ଷା ବି କଲେନାହିଁ । ''ସାକ୍ରିଲେଜ'' (Sacrilage) ବୋଲି ଚିତ୍କାର ଆରମ୍ଭ ହେଲା ସେଇମାନଙ୍କଠାରୁ ଯେଉଁମାନେ ଦିନେ କୁର୍ଣ୍ଣିସ କରୁଥିଲେ କ୍ଷମତା ପାଖରେ । ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । ମତଲୁବ୍ ଅଲ୍ଲୀ ଆଉ ମନ୍ତ୍ରୀ ରହିଲେ ନାହିଁ । ତେଣୁ କ୍ଷମତାଧୀଶ ବ୍ୟୁରୋକ୍ରାଟମାନେ ହଠାତ୍ ଆବିଷ୍କାର କଲେ ଯେ ମତଲୁବ୍ ଅଲ୍ଲୀ ହେଉଛନ୍ତି ମୁସଲିମ୍ ।

ବହୁବର୍ଷ ପରେ ପୁଣି ଖନନ ଆରମ୍ଭ ହୋଇ ଖନନ କାର୍ଯ୍ୟ ସମାପ୍ତ ହୋଇଛି ଏବଂ ବୌଦ୍ଧ ଧର୍ମର ଏକ ନୂତନ ଅଧ୍ୟାୟ ଉନ୍ମୋଚିତ ହୋଇଛି ।

ଉଦୟଗିରିର ଖନନ କାର୍ଯ୍ୟ ମଧ୍ୟ ସମାପ୍ତ ହୋଇ ଏହି ''ହୀରକ-ତ୍ରିଭୁଜ'' ରତ୍ନଗିରି-ଉଦୟଗିରି-ଲଳିତଗିରିର ଖନନ କାର୍ଯ୍ୟ ସମାପ୍ତ ହୋଇଛି ଏବଂ ପୁଷ୍ପଗିରି ପରିବର୍ତ୍ତେ ''ମାଧବ-ବିହାର''ର ସନ୍ଧାନ ମିଳିଛି ।

କିନ୍ତୁ ହୁଏନ୍‌ସାଂଙ୍କ ବର୍ଣ୍ଣିତ ପୁଷ୍ପଗିରି କାହିଁ ? ଏବେ ପୁଷ୍ପଗିରି ଆବିଷ୍କୃତ ହୋଇଛି ବୋଲି ଗବେଷକ ଡକ୍ଟର ଦେବରାଜ ପ୍ରଧାନ ଦାବୀ କରୁଛନ୍ତି ଏବଂ ତାହା ସ୍ୱୀକୃତ ହେବାକୁ ଆରମ୍ଭ କରିଛି ।

ଲଳିତଗିରି ଖନନ କାର୍ଯ୍ୟ ରାଜ୍ୟ ସରକାରୀ କଳର ଅନାଗ୍ରହ ଯୋଗୁଁ ସିନା ବନ୍ଦ ହୋଇଗଲା, କିନ୍ତୁ ତାହା ଥିଲା ସାମୟିକ । କାରଣ ଆନ୍ତର୍ଜାତିକ ବୌଦ୍ଧ ଓ ଜୈନ ଦର୍ଶନ ସେମିନାର ଏହି ''ହୀରକ ତ୍ରିଭୁଜ'' ପ୍ରତି ଜାତୀୟ ଓ ଆନ୍ତର୍ଜାତୀୟ ଦୃଷ୍ଟି ଆକର୍ଷଣ କଲା ପୁଣି ଥରେ । ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ଦେବଲା ମିତ୍ର ରତ୍ନଗିରିର ଖନନ କାର୍ଯ୍ୟ ସଂପୂର୍ଣ୍ଣ କରିଥିଲେ କିନ୍ତୁ ଲଳିତଗିରି, ଉଦୟଗିରିର ଖନନ କାର୍ଯ୍ୟ ସେ କରିପାରିଲେ ନାହିଁ । ସେ ଅସୁସ୍ଥ ହୋଇ ଉଠିଲେ କ୍ୟାନସର ରୋଗରେ । ଲଳିତଗିରିର ଖନନରେ ବୁଦ୍ଧଙ୍କର ଅସ୍ଥିଥିବା ଏକ କ୍ୟାସେଟ ମିଳିଛି । ଭାରତବର୍ଷରେ ବୋଧହୁଏ ଦୁଇଟି ସ୍ଥାନରେ ହିଁ ବୁଦ୍ଧଙ୍କର ଅସ୍ଥିଥିବା କ୍ୟାସେଟ୍ ମିଳିଛି । ଏହାଛଡ଼ା ଏହି ଖନନରୁ ମିଳିଥିବା ଅନେକ ଦୁର୍ଲ୍ଲଭ ପଦାର୍ଥ ''ସଂରକ୍ଷିତ'' ହୋଇ ରହିନାହିଁ । ଆର୍କୋଲଜିକାଲ ସର୍ଭେ ଅଫ ଇଣ୍ଡିଆ ଓଡ଼ିଶା ପ୍ରତି ଯେତିକି ଦୃଷ୍ଟି ଦେବାକଥା ତା' ଦେଇନାହିଁ । ସେଥିପାଇଁ ଆମ୍ଭେମାନେ ମଧ୍ୟ ବେଶ୍ ପରିମାଣରେ ଦାୟୀ, କାରଣ କଥାରେ ଅଛି– Eternal vigilance is the price of liberty. ଏହା କେବଳ ଲିବର୍ଟି ପାଇଁ ପ୍ରଯୁଜ୍ୟ ନୁହେଁ, ପ୍ରଯୁଜ୍ୟ ସବୁ ବିଷୟବସ୍ତୁ ପ୍ରତି । ପୃଥିବୀର ଅନ୍ୟ କେଉଁଠି ଏହା ଘଟିଥିଲେ, ଏତେବେଳକୁ ତାହା ଆନ୍ତର୍ଜାତିକ କ୍ଷେତ୍ର ପାଲଟି ସାରନ୍ତାଣି ।

Digitized by srujan ka@gmail.com

ମୋର ପ୍ରତ୍ୟକ୍ଷ ଅଭିଜ୍ଞତାରୁ ହିଁ କହିବି । ୧୯୮୯ରେ କଟକ ସହରର ସହସ୍ର ବାର୍ଷିକୀ ପାଳନ ହେବାପାଇଁ ସ୍ଥିର ହେଲା । ଏହି ଅବସରରେ ବାରବାଟୀ ଦୁର୍ଗ ଖନନ ପାଇଁ ଉଦ୍ୟମ ହେବା ଉଚିତ ବୋଲି ଆମର ମତ ପ୍ରକାଶ ପାଇଲା । ବନ୍ଧୁ ଚନ୍ଦ୍ରମଣି ନାୟକ ସବୁ କାଗଜପତ୍ର ସଂଗ୍ରହ କଲେ । ୧୯୧୪ ମସିହାରେ ସମଗ୍ର ବାରବାଟୀ ଦୁର୍ଗ ଅଞ୍ଚଳକୁ ଆର୍କୋଲଜିକାଲ ସର୍ଭେ ଅଫ୍ ଇଣ୍ଡିଆକୁ ହସ୍ତାନ୍ତରିତ କରାଯାଉଛି । ଅର୍ଥାତ ୧୯୧୪ ମସିହା ପରେ ବାରବାଟୀ ଦୁର୍ଗ ଭିତରେ ହୋଇଥିବା ସବୁ ନିର୍ମାଣ ବେଆଇନ । ଏହି ଜମିକୁ ଲିଜ୍ ଦେବା ମଧ ବେଆଇନ୍ । କିନ୍ତୁ ତାହାପରେ ଓଡ଼ିଶା ସରକାରଙ୍କର ରାଜସ୍ୱ ବିଭାଗ କେଉଁ ଅଧିକାର ବଳରେ ଜମିସବୁ ଲିଜ୍ ଦେଇଛନ୍ତି, କେବଳ ନୁହେଁ ବହୁଘର ନିର୍ମାଣ କରିଛନ୍ତି ? ଏଇ ପ୍ରଶ୍ନ ଉଠାଇଲେ ଏହା ଯେ ଏକ ଜାତୀୟ ପ୍ରଶ୍ନ ସେ କଥା ଭୁଲିଯିବା ଉଚିତ ନୁହେଁ ? କୌଣସି ବ୍ୟକ୍ତି ବା ସଂଗଠନର ପ୍ରଶ୍ନ ଏହା ନୁହେଁ । ଜଷ୍ଟିସ ହରିହର ମହାପାତ୍ର ପ୍ରଶ୍ନ କରିଥିଲେ ଯେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଭଳି ଐତିହାସିକ, ନବକୃଷ୍ଣ ଚୌଧୁରୀଙ୍କ ଭଳି ସଂସ୍କୃତିପ୍ରେମୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିବା ସତ୍ତ୍ୱେ ଏହା କିପରି ଖନନ ହୋଇନାହିଁ ? ସତକୁ ସତ ଜଣାପଡ଼ିଲା ଯେ ଆର୍କୋଲଜିକାଲ୍ ସର୍ଭେ ଅଫ୍ ଇଣ୍ଡିଆର ଡାଇରେକ୍ଟର ଜେନେରାଲ ବାରବାଟୀ ଦୁର୍ଗ ଦେଖିନାହାନ୍ତି କି ଶୁଣିନାହାନ୍ତି । ତେଣୁ ସେମାନେ ମଧ ଆଖି ବୁଜି ଦେଇଛନ୍ତି ବେଆଇନ ଲିଜ୍ ବା ଗଠନକୁ । ସେମାନଙ୍କର ଏକ ଅଫିସ ଅଛି ଭୁବନେଶ୍ୱରରେ ।

ବାରବାଟୀ ଦୁର୍ଗ ଖନନ ହେଲା । ଦୁଇବର୍ଷ କାମ ଚାଲିଲା । କିନ୍ତୁ ତୃତୀୟବର୍ଷ ଶିଶୁପାଳ ଗଡ଼ ଭଳି କାମ ଅଟକି ଗଲା । କାରଣ ସାତୋଟି ଅସ୍ଥାୟୀ ଗୃହକୁ ଖାଲି କରାଯାଇ ପାରିଲା ନାହିଁ । ସାତୋଟି ଘରକୁ ଖନନର ବହୁ ପୂର୍ବରୁ ସରକାର ବିପଜ୍ଜନକ ବୋଲି ଘୋଷଣା କରିଥିଲେ ଏବଂ ସେଗୁଡ଼ିକୁ ଖାଲି କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ଖୋଦ୍ ଚିଫ୍ ସେକ୍ରେଟେରୀ । ଏହା ସତ୍ତ୍ୱେ ଏହି ଅସ୍ଥାୟୀ ଗୃହଗୁଡ଼ିକୁ ଖାଲି କରାଯାଇ ପାରିଲା ନାହିଁ ପୂର୍ତ୍ତ ବିଭାଗ ସହିତ ବିବାଦ ଯୋଗୁଁ । ଫଳ ହେଲା ଖନନ କାର୍ଯ୍ୟ ତ ବନ୍ଦ ହୋଇଗଲା, ରହୁଥିବା ବ୍ୟକ୍ତିମାନେ ଆଉ ଭଡ଼ା ବି ଦେଲେ ନାହିଁ । ଏହା ଏପର୍ଯ୍ୟନ୍ତ ବଳବତ୍ତର ରହିଛି । ଓଡ଼ିଶାର ଇତିହାସର ଏକ ଗୌରବୋଜ୍ଜ୍ୱଳ ଅଧାୟର ଉନ୍ମୋଚନ ସମ୍ଭବ ହୋଇ ନାହିଁ । ବହୁତ ମନ୍ତ୍ରୀ ସେଠାକୁ ଯାଇଛନ୍ତି, ସଭାରେ ଗର୍ଜନ କରିଛନ୍ତି, ପ୍ରତିଶ୍ରୁତି ଦେଇଛନ୍ତି । ବରଂ ଗଲା ଦଶବର୍ଷ ଭିତରେ ''ହେରିଟେଜ୍ ଜୋନ୍'' ରେ ପୌରସଂସ୍ଥା ଘର ତିଆରି କରି ଭଡ଼ା ଲଗାଇଛି, ବିଭିନ୍ନ ସରକାରୀ, ବେସରକାରୀ ସଂସ୍ଥା ଘର ତିଆରି କରି ଚାଲିଛନ୍ତି । ଯାହା ବ୍ରିଟିଶ୍ ସରକାର ସମୟରେ ସମ୍ଭବ ହୋଇନାହିଁ, ଯାହା ସ୍ୱାଧୀନତାର ୪୦ ବର୍ଷ ଭିତରେ ସମ୍ଭବ ହୋଇ ନ ଥିଲା, ତାହା ହୋଇଛି । ବିଜୁ ପଟ୍ଟନାୟକଙ୍କ ଘର ସାମନାରେ ଥିବା ରାସ୍ତା ଏବଂ ବାରବାଟୀ ଦୁର୍ଗ ଭିତରେ ଥିବା ଜମିକୁ ହେରିଟେଜ୍ ଜୋନ୍ (Heritage Zone) ବୋଲି କୁହାଯାଏ ଏବଂ ଏହାକୁ ଲିଜ୍ ଦେବା ବେଆଇନ୍ । ବହୁବର୍ଷ ତଳେ

Digitized by srujan ka@gmail.com

କିଛି ମନ୍ତ୍ରୀ ଏବଂ ସରକାରୀ ଉଚ୍ଚପଦସ୍ଥ ଅଫିସର ଏହି ଜମିକୁ ନେବା ଉଦ୍ୟମ କରିଥିଲେ କିନ୍ତୁ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀଙ୍କ ହସ୍ତକ୍ଷେପ ଫଳରେ ଏହା ସମ୍ଭବ ହୋଇପାରି ନ ଥିଲା । ଶ୍ରୀ ବିନୋଦ ଝା କଲେକ୍ଟର ଥିଲାବେଳେ ସରକାର ଏକ ନିର୍ଦ୍ଦେଶନାମା ଜାରି କରି ଆର୍କୋଲଜିକାଲ ସର୍ଭେ ଅଫ ଇଣ୍ଡିଆକୁ ଏହି ଜମି ଚିହ୍ନଟ କରିବା ପାଇଁ ଏବଂ କେଉଁ କେଉଁ ଜମି ଦଖଲ ହୋଇଛି, କିଏ କରିଛି ତାହା ଜଣାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ତାହା ସେତିକିରେ ହିଁ ରହିଲା । ସେଇଦିନ ଠାରୁ ଶ୍ରୀ ରବି ରଥ, ଶ୍ରୀ ତୀର୍ଥବାସୀ ସାହୁଙ୍କ କଲେକ୍ଟର ହେବା ପର୍ଯ୍ୟନ୍ତ, ପ୍ରତି ବର୍ଷ କିଛି କିଛି ତନାଘନା ହୁଏ ଏବଂ ତା'ପରେ ଚୁପ୍‌ଚାପ୍ ।

ପରବର୍ତ୍ତୀ କାଳରେ ବାରବାଟୀ ଦୁର୍ଗର ଐତିହାସିକ ଗଡ଼ଖାଇକୁ ପୋତି ଖେଳ ପଡ଼ିଆ କରିବା ପାଇଁ ଉଦ୍ୟମ ହୋଇଛି ଅଥଚ ତାର ଅଦୂରରେ ବିରାଟ ହାଡ଼ିଆ ପଠା ପଡ଼ିରହିଛି, ଦୁଇଶହ ପଡ଼ିଆ ହୋଇ ପାରିବା ଭଳି ଜାଗା ରହିଛି । ଓଡ଼ିଶା ହାଇକୋର୍ଟଙ୍କ ହସ୍ତକ୍ଷେପ ଫଳରେ ତାହା ଅଧାରେ ବନ୍ଦ ରହିଛି ।

ଶ୍ରୀ ଶ୍ରୀକାନ୍ତ ଜେନା କେନ୍ଦ୍ରରେ ମନ୍ତ୍ରୀ ଥିଲାବେଳେ ବାରବାଟୀ ଖାଇ ଖନନ ଓ ସଂରକ୍ଷଣ ପାଇଁ ଅର୍ଥ ମଞ୍ଜୁର କରିଥିଲେ । କିନ୍ତୁ କଟକ ପୌରସଂସ୍ଥା, ପୂର୍ତ୍ତବିଭାଗ, ଆର୍କୋଲଜିକାଲ ସର୍ଭେ ଅଫ ଇଣ୍ଡିଆ ଭିତରୁ କିଏ ଏହି କାମ କରିବ ସେଥିପାଇଁ ବିବାଦ ଉପୁଜିବା ହେତୁ ସେ ଅର୍ଥ ବିନିଯୋଗ ହୋଇପାରିଲା ନାହିଁ । ଖନନ କାର୍ଯ୍ୟ ଚାଲିଥିବା ସମୟରେ ଦେଖାଗଲା ଯେ ଠିକ୍ ତା'ପାଖକୁ ଲାଗି ପାଞ୍ଚ ଏକର ଜାଗା ରାଜ୍ୟ ସରକାର ଦେଇଛନ୍ତି କେନ୍ଦ୍ରୀୟ ସ୍କୁଲ ହେବା ପାଇଁ ଏବଂ ପ୍ରାଚୀର ମଧ୍ୟ ବୁଲା ସରିଛି । ଭାଗ୍ୟକୁ, କେନ୍ଦ୍ରୀୟ ସ୍କୁଲ କର୍ତ୍ତୃପକ୍ଷ ତାଙ୍କ ତରଫରୁ ସେଠାକୁ ଆସିବା ପାଇଁ ମନା କରି ଦେବାରୁ ସ୍ଥାନ ଖାଲି ପଡ଼ିଛି । ସେଇଠି ସୌଭାଗ୍ୟକୁ ଖନନ କାର୍ଯ୍ୟରୁ ବାହାରିଥିବା ସାମଗ୍ରୀକୁ ନେଇ ଏକ ସଂଗ୍ରହାଳୟ ସ୍ଥାପିତ ହୋଇଛି । କିନ୍ତୁ ଏହାର ପ୍ରଚାର ଅଦ୍ୟାପି ହୋଇନାହିଁ । ସଂରକ୍ଷଣର ବ୍ୟବସ୍ଥା ହୋଇନାହିଁ କି ସେଥିପାଇଁ ଉପଯୁକ୍ତ ଷ୍ଟାଫ ରଖାଯାଇ ନାହିଁ । ଫଳରେ ସଂଗୃହୀତ ସାମଗ୍ରୀମାନଙ୍କ ମଧ୍ୟରୁ ମୂଲ୍ୟାୟନ ସାମଗ୍ରୀଗୁଡ଼ିକ 'ଅନ୍ୟତ୍ର' ଯାଉଛି ସଂରକ୍ଷିତ ରହିବା ପାଇଁ । ଏଥିପାଇଁ ଆବେଦନ, ନିବେଦନ ସବୁ ପରାସ୍ତ ହୋଇଛି ।

ଆମ ଜାତିର ଆଲର୍ଟନେସ ନାହିଁ । ଗଲାପରେ ପସ୍ତାଇବା ବା ବାହୁନିବା ପ୍ରଚୁର ।

କଟକ ସହର ଭିତରେ ଓଡ଼ିଶାର ସଂସ୍କୃତି ପ୍ରତି ସରକାର, କର୍ତ୍ତୃପକ୍ଷ, ଜନସାଧାରଣଙ୍କର ଏଇ ଉଦାସୀନତା । ତା'ହେଲେ କଣ ହେଉ ନ ଥିବା ଅନ୍ୟତ୍ର ?

ଶ୍ରୀ ଶ୍ରୀକାନ୍ତ ଜେନାଙ୍କ ଦ୍ୱାରା ଦତ୍ତ ଅର୍ଥକୁ ଖର୍ଚ୍ଚ ନୁହେଁ, ବାଟମାରଣା କିମିତି ହେବ ସେଥିପାଇଁ ଯେଉଁ ପରିସ୍ଥିତି ସୃଷ୍ଟିହେଲା ତାହା ବର୍ଣ୍ଣନା କରିବା କଷ୍ଟକର । ପରିଶେଷରେ ଫଳ ହେଲା ଯେ ସେ କାର୍ଯ୍ୟ ଆଦୌ ହୋଇପାରିଲା ନାହିଁ ।

Digitized by srujan ka@gmail.com

ସେତିକିବେଳେ ଆନ୍ତର୍ଜାତିକ ବୌଦ୍ଧ ଜୈନ ଦର୍ଶନର ସେମିନାର । ସଂପୂର୍ଣ୍ଣ ବେସରକାରୀ ଉଦ୍ୟମରେ ଏହା ସଂଗଠିତ ହେଲା । ଏଥିପାଇଁ ଜିଲ୍ଲା କଲେକ୍ଟର ଶ୍ରୀ ସତ୍ୟରଂଜନ ପାଲ ଏବଂ ତତ୍‌କାଳୀନ ସଦର ଏସ୍.ଡି.ଓ. ୰ଶ୍ରୀ ରବୀନ୍ଦ୍ରନାଥ ମହାନ୍ତିଙ୍କ ଉଦ୍ୟମ ସ୍ମରଣୀୟ । ଶ୍ରୀ ଗୋପବଂଧୁ ଦାସ, ୰ଶ୍ରୀ ବିନି ମିଶ୍ର, ୰ଶ୍ରୀ ଅଜୟ ଭୂୟାଁ, ଶ୍ରୀ ରବୀନ୍ଦ୍ରନାଥ ପାଣିଗ୍ରାହୀ, ଶ୍ରୀ ପ୍ରଫୁଲ୍ଲ ସ୍ୱାଇଁ ପ୍ରଭୃତିଙ୍କ ଅବଦାନ ମଧ୍ୟ ସ୍ମରଣୀୟ । ଏତିକିବେଳେ ମୋର ଜଣେ ବଂଧୁ ମୋତେ ଗୋଟିଏ ଦାମୀ ବିଦେଶୀ ଘଣ୍ଟା ଦେଇଥିଲେ । ସେଇଟିକୁ ମୁଁ ପାଲଙ୍କୁ ଦେଇଥିଲି । ତାକୁ ଦେଖି ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଦିନେ ତାଙ୍କୁ କହିଲେ ବାଃ ! ବଢ଼ିଆ ବିଦେଶୀ ଘଣ୍ଟାଟିଏ ତ ! ଆପଣ ତ ସେମିନାର ପାଇଁ ଅନେକ ବିଦେଶୀ ଅର୍ଥ ପାଉଛନ୍ତି । ପଇସାର ଅଭାବ କଣ ଆପଣଙ୍କ ପାଇଁ ? ହଠାତ୍ ସେମିନାର ଆୟୋଜନରେ ଭଟ୍ଟା ପଡ଼ିଗଲା । ଅନେକ ବନ୍ଧୁ ନନ୍ଦିନୀ ଦେବୀଙ୍କର ଏଇ ଖୁରଦିଆ ଚିମୁଟାକୁ ଘୋଷିହେଲେ । ମୋତେ ବାଧ୍ୟ ହୋଇ ତାଙ୍କୁ ସାକ୍ଷାତ କରିବା ପାଇଁ ଯିବାକୁ ପଡ଼ିଲା । ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ବହୁ ଲୋକଙ୍କର ଭିଡ଼ ଭିତରେ ମୋତେ ବସିବାକୁ ପଡ଼ିଲା ତାଙ୍କର ବାସସ୍ଥାନର ପାଖରେ ଥିବା ବିରାଟ ହଲ୍‌ରେ । ସ୍ଲିପ୍ ଦିଆ ହୋଇଛି । ହଠାତ୍ ଜଣେ ଚପରାଶି ଆସି ଘୋଷଣା କରିବା ଢଂଗରେ ପାଟି କରି ପଚାରିଲେ– ଗିରିଜା ଭୂଷଣ ପଟ୍ଟନାୟକ...... । କୋର୍ଟରେ ଯେପରି ପିଅନ ମିସଲକୁ ଡାକେ । ମୁଁ ସୂଚନା ଦେଲି ଯେ ମୁଁ ସେଇ ଲୋକ । ମୋତେ ଆଶ୍ଚର୍ଯ୍ୟ କରି ସେ ଏକ ସାଲ୍ୟୁଟ ମାରିଲା । ଆପଣଙ୍କୁ ମୁଖ୍ୟମନ୍ତ୍ରୀ ମଧ୍ୟାହ୍ନ ଭୋଜନକୁ ଡାକିଛନ୍ତି । ଆପଣ ଅସୁସ୍ଥ । ଆସନ୍ତୁ ଭିତରକୁ, ଆପଣଙ୍କ ବିଶ୍ରାମ ପାଇଁ କୋଠରୀ ବନ୍ଦୋବସ୍ତ ହୋଇଛି । ନାଇଁ ଯଦି କୁଆଡ଼େ ଯିବେ ଗାଡ଼ି ଅଛି ନେଇ ଯାଆନ୍ତୁ । ବିଶ୍ରାମ ଦରକାର ନାହିଁ, ଗାଡ଼ି ବି ଦରକାର ନାହିଁ, ପଡ଼ୋଶୀ ବଂଧୁ ଶ୍ରୀ ପ୍ରଫୁଲ୍ଲ ଘଡ଼େଇଙ୍କ ଘରକୁ ଯାଇ ଫେରି ଆସିବି ଠିକ୍ ସମୟରେ କହି ମୁଁ ସେ ପିଅନକୁ ବିଦାକଲି ।

କିନ୍ତୁ ମୁଁ ଯାଏ କୁଆଡ଼େ ? ଏକୁଟିଆ ବସିଥିଲି । କେହି ପଚାରୁ ନ ଥିଲେ ବା ଟିକିଏ ହସିଦେଇ ଚାଲି ଯାଉଥିଲେ । ପିଅନ ତ ଘୋଷଣା କଲା ପରି କହି ସାରିଛି ସବୁ । ମୁଁ ଯିବା ପାଇଁ ବାହାରିବା ବି ସମ୍ଭବ ହେଲା ନାହିଁ । ଚାରିପଟେ ଭିଡ଼ ଜମିଲାଣି । ହଠାତ୍ ଯେପରି ମୁଁ ସମସ୍ତଙ୍କର କେନ୍ଦ୍ରବିନ୍ଦୁ । କିଏ ଦେହ କଥା ପଚାରିଲାଣି ତ, କେଉଁ ଅଫିସର ବାରବାଟୀ ଡେଭଲପମେଣ୍ଟ କମିଟିର ସଭ୍ୟ କରିଦେଇ ସାରିଲେଣି ଇତ୍ୟାଦି । ଭି.ଓ.ପି. (Very Ordinary Person)ରୁ ହଠାତ୍ ମୋର ଡବଲ ପ୍ରମୋଶନ ହୋଇ ଭି.ଭି.ଆଇ.ପି. (Very Very Important Person) ହୋଇଯାଇଛି କି ଆଉ !

କୁଆଡ଼େ ଆଉ ଯିବି ? ଅସଂଖ୍ୟ ପ୍ରଶ୍ନରେ ମୁଁ ଅତିଷ୍ଠ ହୋଇ ସାରିଲିଣି । ନନ୍ଦିନୀ ଦେବୀଙ୍କୁ ସମସ୍ତେ ଭୟ କରନ୍ତି । କାରଣ ସେ ଜଣେ ଦକ୍ଷ ପ୍ରଶାସକ ବୋଲି ଆପଣାକୁ ପ୍ରମାଣିତ କରି ସାରିଥିଲେ ।

Digitized by srujan ka@gmail.com

ଖାଇବା ଟେବୁଲ୍‌ରେ ନନ୍ଦିନୀ ଦେବୀ ହଠାତ୍ ମୋତେ ପଚାରିଲେ– ଜୟପ୍ରକାଶ ଏବଂ ତାଙ୍କ ଆନ୍ଦୋଳନ ସଂପର୍କରେ ତମ ମତ କଣ ? ଜୟପ୍ରକାଶ ନାରାୟଣ ଜଣେ ବିଚିତ୍ର ମଣିଷ । ଆଦ୍ୟ ଜୀବନରେ ସେ ଆମେରିକାରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ । ପରବର୍ତ୍ତୀ କାଳରେ ସେ ସୋସାଲିଷ୍ଟ ହେଲେ । ବୋଧହୁଏ ଇଉରୋପରେ ଘଟିଥିବା ଘଟଣାର ପ୍ରଭାବରେ ସେ କମ୍ୟୁନିଷ୍ଟ-ବିରୋଧୀ ହୋଇଗଲେ । ସେ ସୋସାଲିଷ୍ଟ ହେଲେ ସତ୍ୟ କିନ୍ତୁ ଗାନ୍ଧିଜୀଙ୍କ ଆଶ୍ରମକୁ ଗଲେ ରହିବା ପାଇଁ । ଗାନ୍ଧିଜୀ ତାଙ୍କୁ ଅନୁମତି ଦେଲେ କିନ୍ତୁ ଜୟପ୍ରକାଶ କହିଲେ ମୁଁ ଆମିଷ ଖାଦ୍ୟ ନ ହେଲେ ଖାଇ ପାରିବି ନାହିଁ । ମୋତେ ଆମିଷ ଖାଇବାକୁ ଦେଲେ ମୁଁ ରହିବି । ଚତୁରତାରେ ମଣିଷ ଚିହ୍ନିବାରେ ତ ଗାନ୍ଧିଜୀଙ୍କୁ ଟପିବା ଭଳି ଲୋକ କ୍ୱଚିତ୍ । ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ ଯେ 'ତଥାସ୍ତୁ' । ଜୟପ୍ରକାଶ ସେଇଠି ରହିଲେ ଦୁଇବର୍ଷ ।

ଜୟପ୍ରକାଶଙ୍କ ଦେହ ଅସୁସ୍ଥ ହେଲା । ତାଙ୍କର ଚାକିରିଟିଏ ଦରକାର । ଗାନ୍ଧିଜୀ ତାଙ୍କୁ ଶେଠ ଘନଶ୍ୟାମ ଦାସ ବିରଳାଙ୍କର ପ୍ରାଇଭେଟ୍ ସେକ୍ରେଟେରୀ କରିଦେଲେ । ଘନଶ୍ୟାମ ଦାସ ବିରଳା ଭାରତବର୍ଷର ପ୍ରଥମ ଦୁଇ ପୁଞ୍ଜିପତିମାନଙ୍କ ଭିତରେ ଜଣେ– ଟାଟା ଓ ବିରଳା । କିନ୍ତୁ ବିରଳା ମଧ ଥିଲେ ''ଗାନ୍ଧିଜୀଙ୍କ କୁଲି'' । ବିରଳାଙ୍କ ଆତ୍ମଜୀବନୀର ନାମ ହେଉଛି ''ଗାନ୍ଧିଜୀଙ୍କ କୁଲି'' । ଘନଶ୍ୟାମ ଦାସ ବିରଳାଙ୍କ ସହିତ ଗାନ୍ଧିଜୀଙ୍କ ସଂପର୍କ ନିବିଡ଼ ।

ଗାନ୍ଧିଜୀଙ୍କଠାରୁ ଏକ ଚିଠି ନେଇ ଘନଶ୍ୟାମ ଦାସ ବିରଳା ଆସିଥିଲେ ଓଡ଼ିଶା । ଚିଠିଟି ନିଜେ ଗାନ୍ଧିଜୀ ଲେଖିଥିଲେ ବିଶ୍ୱନାଥ ଦାସଙ୍କୁ ଯେ ଘନଶ୍ୟାମ ଯାଉଛନ୍ତି, ତାଙ୍କୁ ସାହାଯ୍ୟ କରିବ । ପ୍ରତିଷ୍ଠା ହେଲା ବ୍ରଜରାଜନଗରରେ କାଗଜ କଳ 'ଓରିଏଣ୍ଟ ପେପର ମିଲ୍ସ' । ଶହେ ବାଉଁଶକୁ ଗୋଟିଏ ପଇସା ରୟାଲିଟିରେ ଘନଶ୍ୟାମ ପାଇଲେ ବାଉଁଶ ଲିଜ୍ ।

ଏଇ କାଗଜକଳରୁ ଇବ୍ ନଦୀରେ ନିର୍ଗତ ହେଉଥିବା ଦୂଷିତ ପାଣି ଯୋଗୁଁ ସମ୍ବଲପୁରରେ ପ୍ରବଳ ଜନଆନ୍ଦୋଳନ ମୁଣ୍ଡ ଟେକିଲା । କାରଣ ଏଇ ଇବ୍ ନଦୀ କୂଳରେ ଗଢ଼ି ଉଠିଥିଲା ସମ୍ବଲପୁର ଜିଲ୍ଲାର ସମୃଦ୍ଧିଶାଳୀ ଗ୍ରାମ ସବୁ । ରମ୍ପେଲା, କୁର୍ଲା, ମୁରା ପ୍ରଭୃତି ଗ୍ରାମ ।

ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ପ୍ରଖର ରୂପ ଧାରଣ କରିଥିଲା ଏବଂ ବୁଡ଼ିଯାଉଥିବା ସମୃଦ୍ଧିଶାଳୀ ଗ୍ରାମମାନଙ୍କର ନେତୃବୃନ୍ଦ ଏହାର କେବଳ ନେତୃତ୍ୱ ନେଇ ନ ଥିଲେ ଏବଂ ଏହାକୁ କଟକିଆମାନଙ୍କର ବିରୋଧରେ ମଧ ପରିଚାଳିତ କରିଥିଲେ । କାରଣ ଏହା ପୂର୍ବରୁ ସମ୍ବଲପୁର ଅଂଚଳରେ କଟକିଆମାନଙ୍କ ବିରୁଦ୍ଧରେ କୌଣସି ସଂଗଠିତ ଆନ୍ଦୋଳନ ମୁଣ୍ଡଟେକିଥିବା ଭଳି ମୋର ମନେ ପଡୁ ନାହିଁ । ଯଦିଓ ସମ୍ବଲପୁର ସହର ତଥା ଗ୍ରାମାଞ୍ଚଳରେ ମୋର ବହୁ ବର୍ଷ କଟିଛି ଏବଂ ଆଜି ବି ଅସଂଖ୍ୟ ବନ୍ଧୁ ଅଛନ୍ତି ମୋର ଏଇ ଅଂଚଳରେ ।

ହୀରାକୁଦ ବନ୍ଧ ହେବାର ପଚାଶ ବର୍ଷ ଅତିକ୍ରାନ୍ତ ହେଲାଣି । କିନ୍ତୁ ଏପର୍ଯ୍ୟନ୍ତ କୁଆଡ଼େ କ୍ଷତିପୂରଣ ପାଇବାର ସମସ୍ୟା ତୁଟି ନାହିଁ । ଏଥିପାଇଁ ଅମଲାତନ୍ତ୍ର ଏବଂ ରାଜନୈତିକ ନେତା ଉଭୟେ ଦାୟୀ । ଏହା ଫଳରେ ଆନ୍ତଃଭୋଷ ବୃଦ୍ଧି ପାଇବା ସ୍ୱାଭାବିକ ।

Digitized by srujan ka@gmail.com

ହୀରାକୁଦ ବନ୍ଧ ହେଲା ଏକ ବହୁମୁଖୀ ବନ୍ଧ (Multipurpose Dam) ଜଳସେଚନ, ବିଦ୍ୟୁତ ଉତ୍ପାଦନ, ମତ୍ସ୍ୟ ଉତ୍ପାଦନ ଏବଂ ଜଳରେ ପରିବହନ (internal irrigation) ଥିଲା ଏହାର କାମ । ୫୯୦ ଫୁଟ ସର୍ବନିମ୍ନ ବନ୍ଧ ନ ରହିଲେ ବିଦ୍ୟୁତ ଉତ୍ପାଦନ ବ୍ୟାହତ ହେବ । ଅବବାହିକା ଅଂଚଳରେ ମୃତ୍ତିକା କ୍ଷୟକୁ ରୋକା ନ ଯାଇ ପାରିବା ହେତୁ ପଟୁରେ ପୋତି ହୋଇ ପଡୁଛି ମାଟି । ଏହା ଫଳରେ ପାଣିର ସର୍ବନିମ୍ନତା ବଢ଼ି ଚାଲିଛି । ତେଣୁ ୫୯୦-୬୨୦, ପାଣିର ଏଇ ପରିମାଣ କମିଯିବାକୁ ବାଧ । ଅବବାହିକା ଅଂଚଳରେ ମୃତ୍ତିକା କ୍ଷୟ ପାଇଁ ସରକାର, ଶାସନକଳ ଏବଂ ଜନସାଧାରଣ ସମସ୍ତେ ଦାୟୀ । ଗାଁ ସବୁ ବୁଡ଼ିଗଲା, କିନ୍ତୁ ସେଠାରେ ଥିବା ଘର, ମନ୍ଦିର, ଗଛ ସବୁ ସେମିତି ରହିଗଲା । ଫଳରେ ଜଳ ପରିବହନ ବ୍ୟାହତ ହେଲା, ଏପରିକି ଚିତ୍ତବିନୋଦନ ପାଇଁ ମଧ ଜଳ-ପରିବହନ ହୋଇ ପାରିଲା ନାହିଁ । ଅନୁରୂପ କାରଣରୁ ମଧ ମାଛଚାଷ ବା ମାଛଧରା ବ୍ୟାହତ ହେଲା ବିପୁଳ ଭାବରେ । ବିଜୁ ପଟ୍ଟନାୟକଙ୍କ ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ କାଳରେ କଟକ ଭୁବନେଶ୍ୱରର ଲୋକଙ୍କ ପାଇଁ ସୁଲଭ ଦରରେ ମାଛ ଯୋଗାଇବା ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । କିନ୍ତୁ ଦେଖାଗଲା ଯେ ହାଇଦ୍ରାବାଦର ନାଗାର୍ଜୁନ ସାଗର ଡ୍ୟାମରୁ ମାଛ ହୀରାକୁଦ ଡ୍ୟାମ ଅପେକ୍ଷା ଢେର ଶସ୍ତାରେ ମିଳିବ । କାରଣ ମାଛ ଯେଉଁ ପରିମାଣରେ ଚାଷ ବା ଧରା ହୋଇ ପାରିଥାନ୍ତା ତା ହେଲା ନାହିଁ । ତଥାପି ନାଗାର୍ଜୁନ ସାଗରରୁ ମାଛ ଆଣି କିଛି କାଳ ଭୁବନେଶ୍ୱରରେ ସୁଲଭ ମୂଲ୍ୟରେ ମାଛ ଯୋଗାହେଲା ।

କିନ୍ତୁ ସବୁ ପବ୍ଲିକ ସେକ୍ଟରମାନଙ୍କରେ ଯାହା ଅବସ୍ଥା ହୁଏ ତାହା ହିଁ ହେଲା । ଡକ୍ଟର ମହାନ୍ତିଙ୍କ ପରଲୋକ ପରେ ମାଛ କର୍ପୋରେସନର ବାରଟା ବାଜିଗଲା ଏବଂ ତାହା ଅନ୍ୟତମ ରୁଗ୍ଣ ଶିଳ୍ପରେ ସହଜରେ ପରିଣତ ହୋଇଗଲା ।

ହୀରାକୁଦ ବଂଧରୁ ଜନସାଧାରଣ ଯେତିକି ଲାଭ ପାଇ ପାରିଥାନ୍ତେ ତାହା ପାଇଲେ ନାହିଁ । ତେଣୁ ଅସନ୍ତୋଷ ହେବା ସ୍ୱାଭାବିକ ଏବଂ ଯେଉଁମାନେ ଦିନେ କଟକ-ପୁରୀ-ବାଲେଶ୍ୱର ଅଂଚଳରୁ ବା ଅନ୍ୟ ରାଜ୍ୟରୁ ଆସି ସମ୍ବଲପୁରରେ ବସତି ସ୍ଥାପନ କରିଥିଲେ ଏବଂ ସମୃଦ୍ଧିଶାଳୀ ମଧ ହୋଇଥିଲେ ସେଇମାନଙ୍କ ମଧରୁ ଅଧିକାଂଶ ଏହି ଅସନ୍ତୋଷର ନେତୃତ୍ୱ ନେଲେ । କାରଣ ସେମାନେ ଥିଲେ ସମୃଦ୍ଧ, ଶିକ୍ଷିତ ଏବଂ ସଚେତନ ।

କିନ୍ତୁ ସମ୍ବଲପୁରର ଦୁର୍ବିନୀତ ଜନସାଧାରଣ ଅତୀତରେ ଆପଣାର ଜନ୍ମମାଟିର ସାମୂହିକ କଲ୍ୟାଣ ପାଇଁ ଅନେକ ଲୋଭନୀୟ ପ୍ରସ୍ତାବନାକୁ ପ୍ରତ୍ୟାଖ୍ୟାନ କରି ଆସିଛି । ବ୍ରଜରାଜନଗର କାଗଜକଳରୁ ନିର୍ଗତ ମଇଳା ପାଣି ଇବ ନଦୀରେ ଛଡ଼ାଯିବା ହେତୁ ଯେଉଁ ସମସ୍ୟା ଉପୁଜିଲା ତାହା ବିରୁଦ୍ଧରେ ପ୍ରବଳ ଜନମତ ଗଢ଼ି ଉଠିଲା । ଏଇ ଆନ୍ଦୋଳନର ଅନ୍ୟତମ ମହାରଥୀ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କର ହତ୍ୟା ଏଇ ଷଡ଼ଯନ୍ତ୍ରର ଅଂଶବିଶେଷ ବୋଲି ଅଭିଯୋଗ ହେଲା । ଏଇ ସମୟରେ ସମ୍ବଲପୁରରେ (ଗଙ୍ଗାଧର ମେହେର କଲେଜ) ସରକାରୀ କଲେଜ ପ୍ରତିଷ୍ଠା

Digitized by srujan ka@gmail.com

ହୁଏ ଏବଂ ଏହାକୁ ଏକ ବିଶ୍ୱବିଦ୍ୟାଳୟରେ ପରିଣତ କରିବା ପାଇଁ ବିପୁଳ ଅର୍ଥ ସାହାଯ୍ୟ (ଦଶ କୋଟି ବୋଲି କୁହାଯାଉଥିଲା) ମିଳିବାର ଏକ ପ୍ରସ୍ତାବନାକୁ ସମ୍ବଲପୁରବାସୀ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । କାରଣ ଏଇ ପ୍ରସ୍ତାବ ସହିତ ଏକ ସର୍ତ୍ତ ଜଡ଼ିତ ଥିଲା ଯେ ଇବ୍ ନଦୀରେ ଆସୁଥିବା ମଇଳା ପାଣି ବିରୁଦ୍ଧରେ ଆନ୍ଦୋଳନକୁ ଦଶବର୍ଷ ପାଇଁ ବନ୍ଦ କରି ଦିଆଯିବ । ସମ୍ବଲପୁରର ଗର୍ବିତ ଜନସାଧାରଣ ଦଳଗତ ଗୋଷ୍ଠୀ ନିର୍ବିଶେଷରେ ଏହାକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

ଏଇଭଳି ଫ୍ଲେକ୍ସିବିଲିଟି ମୁଁ ଶୁଣିଛି ଶ୍ରୀମାଙ୍କ ସଂପର୍କରେ । ପ୍ରସିଦ୍ଧ କବି, ଲେଖକ, ନାଟ୍ୟକାର ହାରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ଶ୍ରୀ ଅରବିନ୍ଦ ଆଶ୍ରମରେ ରହିବାକୁ ଶ୍ରୀମାଙ୍କର ଅନୁମତି ଲୋଡ଼ିଲେ କିନ୍ତୁ ତାଙ୍କର ସର୍ତ୍ତ ଥିଲା ଯେ ସେ ମଦ୍ୟପାନ କରନ୍ତି ଏବଂ ଆଶ୍ରମରେ ମଧ୍ୟ ତାଙ୍କୁ ମଦ୍ୟପାନ କରିବାପାଇଁ ଅନୁମତି ମିଳିବା ଆବଶ୍ୟକ । ଶ୍ରୀମା ସେଥିରେ ସମ୍ମତି ଦେଇ କୁଆଡ଼େ କହିଲେ-ଯେ ଯଦି ମଦ୍ୟପାନ କରିବା ପାଇଁ ତାଙ୍କର ପ୍ରବୃତ୍ତି ଅଛି ତା' ହେଲେ ସେଥିରେ ତାଙ୍କର ଆପତ୍ତି ନାହିଁ ।

ଜୟପ୍ରକାଶ ଜଣେ ପ୍ରତିଭାଶାଳୀ ବ୍ୟକ୍ତି । ଏକଦା ତାଙ୍କୁ ଜବାହରଲାଲଙ୍କ ଉତ୍ତରାଧିକାରୀ ଭାବରେ ଗଣନା କରାଯାଉଥିଲା । କିନ୍ତୁ ତାଙ୍କୁ ହିଁ ସେ ଉଦ୍ଧାର କରି କହନ୍ତି ''ମାର୍କ୍ସବାଦରୁ ଗାନ୍ଧୀବାଦ, ଗାନ୍ଧୀବାଦରୁ ଗଣତାନ୍ତ୍ରିକ ସାମ୍ୟବାଦ, ଗଣତାନ୍ତ୍ରିକ ସାମ୍ୟବାଦରୁ ଭୂଦାନ, ଭୂଦାନରୁ ଜୀବନ ଦାନ..... ବହୁତ ଲମ୍ବା ବାଟ । ଲୋକେ ମୋତେ ଅବ୍ୟବସ୍ଥିତ, ଦୋଦୁଲ୍ୟମାନ (vacilator) ସୁବିଧାବାଦୀ ବୋଲି ଅଭିହିତ କରିଛନ୍ତି । କିନ୍ତୁ ମୁଁ ସତ୍ୟର ସଂଧାନରେ ଚାଲିଛି '' (ରେଭେନ୍ସା କଲେଜରେ ବକ୍ତୃତା, ୧୯୫୭) ସେ କୌଣସି କଥାରେ ପରିସମାପ୍ତି ପର୍ଯ୍ୟନ୍ତ ଯାଇ ପାରନ୍ତି ନାହିଁ । ଅଧାବାଟରେ ତାଙ୍କର କଣ ଗୋଟାଏ କନ୍‌ଫ୍ୟୁଜନ୍ (confusion) ହୋଇଯାଏ ଏବଂ ସେ ଚାଲିଥିବା ବାଟରୁ ଓହରି ଯାଆନ୍ତି । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ଭିତରେ ମୁଁ ଏଇପରି ଏକ ଅବସ୍ଥା ଦେଖିଛି । ନବବାବୁ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନିର୍ମାତା କିନ୍ତୁ ରହିଗଲେ କଂଗ୍ରେସରେ, ସେ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଯୋଗଦେଲେ ନାହିଁ । ୧୯୫୬ ମସିହା ଜାନୁଆରୀ ଦ୍ୱିତୀୟ ସପ୍ତାହରେ ମୋତେ କହିଲେ ''ଯାହା ପାରୁଛ କର । ଭାଙ୍ଗ, ପୋଡ଼, ଯାହା ପାରୁଛ କର । କଂଗ୍ରେସ ନେତୃତ୍ୱ କେବଳ ସେଇକଥା ହିଁ ଶୁଣିବ । ମୁଁ ଆମ ସମସ୍ତଙ୍କ ଇସ୍ତଫା ପତ୍ର ଧରି ଯାଉଛି ।''

ତା' ପରେ ମୋତେ ଟିକିଏ ଚିମୁଟି ଦେଲା ଭଳି କହିଲେ ''ବିପ୍ଳବୀ ! ବିପ୍ଳବ କଣ ଅନୁମତିର ଅପେକ୍ଷା କରେ । କେଉଁ ବିପ୍ଳବରୁ ତମେ ଏହି ଶିକ୍ଷାଲାଭ କଲ ? ରୁଷ, ଫରାସୀ..... କେଉଁ ବିପ୍ଳବରୁ ? ଆମେ ଅଛୁ ତମ ସାଂଗରେ'' (ରେଭେନ୍ସା କଲେଜ ପୂର୍ବଛାତ୍ରାବାସରେ ମୋ ସହିତ ସାକ୍ଷାତକାରରେ) ଏହା ହେଉଛି ସେଇ ସଂଧାରେ, ଯେଉଁ ସଂଧାରେ ପ୍ରକାଶିତ

Digitized by srujan ka@gmail.com

ହେଲା କଂଗ୍ରେସ ଦଳର ନିଷ୍ପତ୍ତି ଯେ ଷଢ଼େଇକଳା ଖରସୁଆଁ ସହିତ ସିଂହଭୂମି ରହିବ ବିହାରରେ, ଓଡ଼ିଶାକୁ ଆସିବ ନାହିଁ ।'' ନବବାବୁ ଦିଲ୍ଲୀ ଗଲେ, ଫେରିଲେ ସାମରିକବାହିନୀ ନେଇ । କାରଣ ତାଙ୍କୁ କାଳେ ଉଚ୍ଚ କର୍ତ୍ତୃପକ୍ଷ ବା ପଣ୍ଡିତ ନେହେରୁ ବୁଝେଇଦେଲେ ଯେ ଓଡ଼ିଶାରେ ସୀମା ଆନ୍ଦୋଳନ ସୀମା ପାଇଁ ନୁହେଁ, ଭାରତବର୍ଷରୁ ସ୍ୱାତନ୍ତ୍ର୍ୟ ପାଇଁ । ଠିକ୍ ସେଇପରି ସଂଖ୍ୟାଗରିଷ୍ଠ ବିଧାୟକ, କଂଗ୍ରେସ କର୍ମୀ, ଉଚ୍ଚ କର୍ତ୍ତୃପକ୍ଷ ତାଙ୍କ ସପକ୍ଷରେ ଥିଲେ ବି ସେ ଇସ୍ତଫା ଦେଇଦେଲେ ମୁଖ୍ୟମନ୍ତ୍ରୀ ପଦରୁ ଏବଂ ଇସ୍ତଫା ଦେବି, ଇସ୍ତଫା ଦେବି ଘୋଷି ଘୋଷି ସେ ଶାସନକଳକୁ ଅଚଳ କରିଦେବାରେ ସାହାଯ୍ୟକାରୀ ହେଲେ । କିନ୍ତୁ ତାଙ୍କ ଭଳି ପଣ୍ଡିତ, ରେସନାଲ ଏବଂ ଜ୍ଞାନୀ କେତେଜଣ ଅଛନ୍ତି ? ଅନେକ ସମୟରେ ମନେ ହୋଇଛି ଯେ ବେଶି ପାଣ୍ଡିତ୍ୟ ହେଲେ ଏପରି କନ୍‌ଫ୍ୟୁଜନ ଦେଖାଯାଏ କି ?

ନବବାବୁ ସୀମା ଆନ୍ଦୋଳନରେ ଯେଉଁ ଭୂମିକା ଗ୍ରହଣ କଲେ ତାହା ତାଙ୍କ ପାଇଁ ଏକ ବିରାଟ କଳଙ୍କ ଭାବରେ ରହିଗଲା । ସେ ଏଭଳି ଏକ ବ୍ୟକ୍ତି ଥିଲେ ଯିଏ କେବଳ ଶସ୍ତା ଜନପ୍ରିୟତାକୁ ଭୟ କରନ୍ତି ନାହିଁ । ଯାହା ସତ୍ୟ ବୋଲି ଭାବନ୍ତି ତାହା ପ୍ରକାଶ କରନ୍ତି । ଚୀନ-ଭାରତ ସଂଘର୍ଷ ସମୟରେ ନବବାବୁ ଏକ ସଭା ଡାକିଲେ କଟକରେ ଏବଂ ତିବ୍ବତ ତଥା ସୀମା ସଂଘର୍ଷ ଉପରେ ଆପଣାର ମତ ଉପସ୍ଥାପନା କଲେ । ଏହି ମତ ସେତେବେଳେ ଉଦ୍‌ବେଳିତ ଭାରତବର୍ଷର ମତର ବିପରୀତ ଥିଲା କିନ୍ତୁ ନବବାବୁ ତାକୁ ଭୟ କରି ନ ଥିଲେ । ଭୌଗୋଳିକ ମାନଚିତ୍ର, ଐତିହାସିକ ସତ୍ୟତା ଏବଂ ଦଲିଲ ଉପରେ ତାଙ୍କର ବକ୍ତବ୍ୟ ପର୍ଯ୍ୟବେସିତ ଥିଲା ।

ଏହି ପରିପ୍ରେକ୍ଷୀରେ ସୀମା ଆନ୍ଦୋଳନ ସଂପର୍କରେ ତାଙ୍କର ମତ ପରିବର୍ତ୍ତନର କାରଣ ବୁଝି ହୁଏନା । ତାଙ୍କ ଉପରେ ପଣ୍ଡିତ ନେହେରୁଙ୍କର ପ୍ରଭାବ ନା ଏଇ ଆନ୍ଦୋଳନ ସଂକ୍ରାନ୍ତରେ ତାଙ୍କର ଭୁଲ୍ ବୁଝାମଣା ଯୋଗୁଁ ଏହା ଘଟିଲା ମୁଁ ଜାଣି ପାରିନାହିଁ ।

ସୀମା ଆନ୍ଦୋଳନ ପୂର୍ବରୁ ଏବଂ ପରେ ନବବାବୁଙ୍କ ସହିତ ମୋର ସଂପର୍କ ଥିଲା ବେଶ ଘନିଷ୍ଠ । କିନ୍ତୁ ସେଇ ସନ୍ଦେହ ମୋର ତୁଟିଲା ନାହିଁ କାରଣ ନବବାବୁ ସେ ପ୍ରଶ୍ନକୁ ଏଡ଼ାଇ ଦେଇ ଯାଇଛନ୍ତି ସବୁବେଳେ ଏବଂ ତାଙ୍କୁ ମଧ ଏ ପ୍ରଶ୍ନକୁ ବାରମ୍ବାର ପଚାରି ଅପ୍ରତିଭ କରିବାକୁ ଚାହିଁ ନାହିଁ ।

ପଣ୍ଡିତ ନେହେରୁଙ୍କ ସଂପର୍କରେ ମଧ ମୋର ସେଇ ସଂଦେହ ରହି ଯାଇଛି । ଭାଷା ଭିତ୍ତିରେ ପ୍ରଦେଶ ପୁନର୍ଗଠନକୁ ଭାରତୀୟ ଜାତୀୟ କଂଗ୍ରେସ ଗ୍ରହଣ କରିଥିଲା । ପଣ୍ଡିତ ନେହେରୁ ତାର ପୁରୋଧା ଥିଲେ । କିନ୍ତୁ ଆନ୍ଧ୍ରପ୍ରଦେଶ ଗଠନ ବିରୁଦ୍ଧରେ ତାଙ୍କର ଜିଦ୍‌ର କାରଣ ବୁଝି ହେଲା ନାହିଁ । ଅବଶ୍ୟ ଆନ୍ଧ୍ରପ୍ରଦେଶର ମିଳିତ ଶକ୍ତି ପଣ୍ଡିତ ନେହେରୁଙ୍କୁ ବାଧ କଲା ପରବର୍ତ୍ତୀ ସମୟରେ । ଓଡ଼ିଶାରେ ସେଇ ସମ୍ମିଳିତ ଶକ୍ତିର ଅଭାବ ଘଟିଲା ଏବେ ବି ଘଟି ଚାଲିଛି ମଧ । ଦଳେ ଏହାକୁ ନବବାବୁଙ୍କୁ ଗାଦିରୁ ତଡ଼ିବା ବା ହରେକୃଷ୍ଣ ମହତାବଙ୍କୁ ପୁଣି ଓଡ଼ିଶା ଫେରି

Digitized by srujan ka@gmail.com

ମୁଖ୍ୟମନ୍ତ୍ରୀତ୍ୱ ଗ୍ରହଣ କରିବାର ବାଟ ପରିଷ୍କାର କରିବାକୁ ଚାହିଁଥିଲେ । ଏହା ମଧ୍ୟ ସଫଳ ହୋଇ ପାରି ନ ଥିଲା । ନବବାବୁଙ୍କ ଗାଦି ଛାଡ଼ିବା ପାଇଁ ଜିଦ୍ ହିଁ ଏହା ସମ୍ଭବ କରାଇ ପାରିଲା ।

ଏଇ ପରିଚ୍ଛେଦ ଲେଖିଲା ବେଳକୁ ନବବାବୁ ଆପଣାର ସଚ୍ଚୋଟ ପଣିଆ ବା ସାଧୁତା ଯୋଗୁଁ ଜୀବନର ଅପରାହ୍ନରେ ଅନୁଗୋଳରେ ଗାଈ ଚରାଇଥିଲେ ବୋଲି ଉପହାସ 'କଂଗ୍ରେସ ବାର୍ତ୍ତା' ନାମକ କାଗଜରେ ପ୍ରକାଶିତ ହୋଇଛି । ଏହାକୁ ବର୍ତ୍ତମାନର କୌଣସି କଂଗ୍ରେସ ନେତା ବା ବିରୋଧୀ ଦଳର ନେତା ନିନ୍ଦା କରିନାହାନ୍ତି । ତାହା ହିଁ ବେଶି କ୍ଷୋଭର ବିଷୟ ।

ନବବାବୁ ଅନୁଗୋଳରେ ଥିଲାବେଳେ ଥରେ ରାଷ୍ଟ୍ରପତି ସଂଜୀବ ରେଡ଼ି ଓଡ଼ିଶା ଗସ୍ତରେ ଆସିଥିଲେ । ସେ ନବବାବୁଙ୍କୁ ଭେଟିବାକୁ ଚାହିଁଲେ । ନବବାବୁଙ୍କୁ ନେଇ ଆସିବା ପାଇଁ ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କଲେ ଏପରିକି ଅନୁଗୋଳ ସର୍କିଟ ହାଉସକୁ ନବବାବୁଙ୍କୁ ନେଇ ଆସିବାର ପ୍ରତ୍ୟାଖ୍ୟାନ କରିଦେଇ ସେ ନିଜେ ଗଲେ ଦେଖା କରିବାକୁ ତାଙ୍କୁ । ନିର୍ଦ୍ଦେଶ ଦେଲେ ଯେ ଗାଡ଼ି ରାସ୍ତା ଉପରେ ରହିବ । ସେ ଚାଲିକରି ଯିବେ ଏବଂ ତାଙ୍କ ସାଙ୍ଗରେ କେହି ଯିବେ ନାହିଁ । ସେ ଏକାକୀ ଯିବେ । ସମୟ ମଧ୍ୟ ନିର୍ଭର କରିବ ନବବାବୁଙ୍କ ଉପରେ । ସେ ଯେତେବେଳେ ଛାଡ଼ିବେ ତାହା ତାଙ୍କ ଉପରେ ନିର୍ଭର କରିବ । ଫେରି ସେ କହିଲେ ନବବାବୁ କଂଗ୍ରେସ ଦଳର ନେତା ଥିଲାବେଳେ ମୁଁ ଥିଲି ସାଧାରଣ କର୍ମୀ । ଆଉ ଆଜି ତାଙ୍କୁ ମୁଁ ଡକାଇ ଆଣିବାର ସାହସ କରିବି ?

ଏହା କେବଳ ସଂଜୀବ ରେଡ୍ଡିଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ । କମ୍ୟୁନିଷ୍ଟି ପାର୍ଟିର ପ୍ରବାଦ ପୁରୁଷ ପି.ସି. ଯୋଶୀଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ । ସେ ଆସିଥିଲେ ଓଡ଼ିଶା, ଦେଖାକରିବାକୁ ଚାହିଁଥିଲେ ନବବାବୁଙ୍କୁ । ବୀରେନ ମିତ୍ର ଏହା ଶୁଣି ଗାଡ଼ି ପଠାଇବାକୁ ଚାହିଁଲେ ନବବାବୁଙ୍କୁ ଆଣିବା ପାଇଁ । ପି.ସି. ଯୋଶୀ ତାହା ପ୍ରତ୍ୟାଖ୍ୟାନ କରି ନବବାବୁଙ୍କୁ ଦେଖା କରିବାକୁ ଅନୁଗୋଳ ଗଲେ । ମୁଁ ତାଙ୍କ ସାଙ୍ଗରେ ଥିଲି । ନବବାବୁଙ୍କୁ ବିଦାୟ ଦେଇ ଆସିଲାବେଳେ ଦୁହିଁଙ୍କ ଆଖି ଲୋତକପୂର୍ଣ୍ଣ ହୋଇ ଯାଇଥିଲା ।

ତେଣୁ ନବବାବୁ ଅନୁଗୋଳରେ ଗାଈ ନା ମଣିଷ କ'ଣ ଚରାଉଥିଲେ ତାହାର ବିଚାର କିଏ କରିବ ?

ଜୟପ୍ରକାଶ ନାରାୟଣଙ୍କର ସେଇ ଅବସ୍ଥା । ୧୯୪୯ ମସିହାରେ ରେଳବାଇ ଧର୍ମଘଟକୁ ସେ ଶେଷମୁହୂର୍ତ୍ତରେ ବାତିଲ କରିଦେଲେ, ଅନ୍ୟ ୟୁନିୟନମାନଙ୍କୁ ନ ପଚାରି । କିନ୍ତୁ ତାଙ୍କର ରେସନାଲିଟି ବା ଜ୍ଞାନ ସଂପର୍କରେ କେହି ଦ୍ୱିମତ ନୁହନ୍ତି ।

ଜୟପ୍ରକାଶ ନାରାୟଣଙ୍କ ପ୍ରତି ସବୁ ସମ୍ମାନ ସତ୍ତ୍ୱେ ତାଙ୍କର ଏଇ କନ୍‌ଫ୍ୟୁଜନ୍ ଏବଂ ଅଧାପନ୍ତରିଆ କାମ ମୋତେ ଭଲ ଲାଗି ନାହିଁ ।

ତାଙ୍କର ଦୁଇଟି ଦୁର୍ବଳତା ମୁଁ ଲକ୍ଷ୍ୟ କରିଛି । ଗୋଟିଏ ହେଉଛି ବିଲାତି ବ୍ଲେଡ୍‌ରେ ଖିଅର ହେବା ଏବଂ ତା' ନ ହେଲେ ନ ହୁଏ । ଦ୍ୱିତୀୟ ହେଉଛି ମିଟିଂକୁ ସ୍ଥିରୀକୃତ ସମୟର ବିଳମ୍ବରେ ଯିବା ।

Digitized by srujan ka@gmail.com

ମୋର ନିଜର ଅଭିଜ୍ଞତା କଥା କହିବି । ୧୯୫୭ ମସିହାରେ ସେ ଓଡ଼ିଶା ଗସ୍ତରେ ଆସିଥିଲେ ଏବଂ ସବୁଦିନପରି ସେ ତାଙ୍କର ବଂଧୁ ଡକ୍ଟର ବଳଭଦ୍ର ପ୍ରସାଦଙ୍କ ଘରେ ଅତିଥି ହୋଇଥିଲେ । ଡକ୍ଟର ବଳଭଦ୍ର ପ୍ରସାଦ ରେଭେନ୍ସା କଲେଜ ରସାୟନ ବିଭାଗର ଅଧ୍ୟାପକ, ପରେ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟର କୁଳପତି ଏବଂ ଅବସରପରେ ଜୟପ୍ରକାଶଙ୍କ ନେତୃତ୍ୱରେ ପରିଚାଳିତ ଆନ୍ଦୋଳନର କୋଷାଧ୍ୟକ୍ଷ । ରେଭେନ୍ସା କଲେଜ ୟୁନିଅନର ସଭାପତି ଭାବରେ ମୁଁ ତାଙ୍କୁ ଦେଖା କରି ରେଭେନ୍ସା କଲେଜରେ ଭାଷଣ ଦେବାପାଇଁ ନିବେଦନ କଲି । ନାନାପ୍ରକାର ଯୁକ୍ତିତର୍କ ପରେ ସେ ମୋତେ ବିଷୟବସ୍ତୁ ଉପରେ ପଚାରିଲେ । ମୁଁ ତ ତାଙ୍କ ଚରିତ୍ର ଜାଣେ । ତେଣୁ ପ୍ରସ୍ତାବନା ଦେଲି ଯେ 'ଗଣତନ୍ତ୍ର ଏବଂ କମ୍ୟୁନିଜମ୍' ଉପରେ ସେ କୁହନ୍ତୁ । ସେ ମୋ ଉପରେ ପ୍ରଚଣ୍ଡ ବିରକ୍ତ ହୋଇ କହିଲେ ଯେ ତମେ ଜାଣ ମୁଁ ରାଜନୀତି ଛାଡ଼ି ଦେଇଛି । ବାଧ ହୋଇ ମୁଁ କହିଲି ଯେ ତା' ହେଲେ ବିଷୟବସ୍ତୁ ଆପଣ ସ୍ଥିର କରନ୍ତୁ । ସେ କହିଲେ ଯେ 'ସର୍ବୋଦୟ ଓ ଭୂଦାନ' ଉପରେ କହିବେ କିନ୍ତୁ କହିବେ ଅପରାହ୍ନ ସାଢ଼େ ଚାରିଟାରେ, ନଚେତ୍ ନୁହେଁ । ଅପରାହ୍ନ ସାଢ଼େ ଚାରିଟା କଲେଜ ପାଇଁ ଗୋଟାଏ ଅଖାଡୁଆ ସମୟ । ଛୁଟି ହେଉଥିବା ସମୟ । କିନ୍ତୁ ସେ ଜିଦ୍ ଧରିଲେ ଯେ ସେଇ ସମୟରେ ହିଁ କହିବେ । ପାଖରେ ଡକ୍ଟର ସଦାଶିବ ମିଶ୍ର ଥିଲେ । ସାର୍ ଜୟପ୍ରକାଶଙ୍କ ଜଣେ ପ୍ରଶଂସକ । ସେ ମୋତେ ରାଜି ହେବା ପାଇଁ ଇଂଗିତ ଦେଲେ ବାଧବାଧକତାରେ । ଆମର ସାଂଗଠନିକ ଶକ୍ତି ପ୍ରୟୋଗ କରି ସାଢ଼େ ଚାରିଟାରେ ସଭା ଆୟୋଜିତ ହେଲା ପଶ୍ଚିମ ଛାତ୍ରାବାସ ପାଖ କଲେଜ ଲନ୍‌ରେ । ବହୁ ଛାତ୍ର ଓ ଅଧ୍ୟାପକ ଆସିଥିଲେ ଠିକ୍ ସମୟରେ କିନ୍ତୁ ଜେ.ପି. ଆସିଲେ ମାତ୍ର ଏକଘଣ୍ଟା ବିଳମ୍ବରେ । ଏଇଟା ତାଙ୍କର ଅଭ୍ୟାସ । ସେ ଠିକ୍ ସାତ ମିନିଟ୍ କହିବାପରେ ଆରମ୍ଭ କଲେ ''ମୁଁ ଆପଣମାନଙ୍କୁ Peter Friar ଙ୍କ Hungarian Tragedy ବହି ପ୍ରତି ଦୃଷ୍ଟି ଆକର୍ଷଣ କରିବି ।'' ସର୍ବୋଦୟ ଏବଂ ଭୂଦାନ ଉପରେ ତାଙ୍କର ବକ୍ତବ୍ୟ ସାତ ମିନିଟ୍‌ରେ ସରିଗଲା ଏବଂ ସେ ଚାଲିଲେ ତାଙ୍କର ପ୍ରକୃତିଗତ ବିଷୟବସ୍ତୁକୁ । ମୁଁ ପାଖରେ ବସିଥିବା ଡକ୍ଟର ସଦାଶିବ ମିଶ୍ରଙ୍କୁ ଘଡ଼ି ଦେଖାଇ କହିଲି ଯେ ସାର୍, ସାତମିନିଟ୍‌ରେ ସର୍ବୋଦୟ ଶେଷ ! ସେଦିନ ତାଙ୍କର ଆଉ ଏକ ସଭା ଥିଲା ଏବଂ ସେଠାକୁ ଯିବାପାଇଁ ସମୟ ଅତିକ୍ରାନ୍ତ ହୋଇ ସାରିଥିଲା । ଡକ୍ଟର ସଦାଶିବ ମିଶ୍ର ତାଙ୍କ ପି.ଏ.ଙ୍କୁ କହିଲେ ତମେ ପରା ପି.ଏ., ତମର କାମ କଣ; ତମେ ତାଙ୍କୁ ମନେ ପକାଉ ନାହଁ କାହିଁକି ? ପି.ଏ. ବିନୀତ ଭାବରେ କହିଲେ ସଭାକୁ ବିଳମ୍ବରେ ଯିବା ତାଙ୍କର ଏକ ଦୁରାଭ୍ୟାସ !

କିନ୍ତୁ ଜୟପ୍ରକାଶଙ୍କ ବିହାର ଆନ୍ଦୋଳନ ମୋ ରକ୍ତରେ ଚମକ ଖେଳାଇ ଥିଲା । ସେଇଯୋଗୁଁ ତଥାକଥିତ ଫାସିଷ୍ଟ ବିରୋଧୀ ସମ୍ମିଳନୀରେ ମୁଁ ଯୋଗଦେଇ ନ ଥିଲି । ଏଇ ସମ୍ମିଳନୀର ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ଭୂପେଶ ଗୁପ୍ତ ଗର୍ଜନ କରି କହିଥିଲେ– ଏକ ପଟରେ ମହାରାଣୀ ଗାୟତ୍ରୀ ଦେବୀ, ଆର ପଟରେ ଶିଳ୍ପପତି

Digitized by srujan ka@gmail.com

ଗୋଏଙ୍କା ଆଉ ମଝିରେ ଚାଲିଛନ୍ତି ସଂପୂର୍ଣ୍ଣ ବିପ୍ଳବୀ (Total Revolutionary) ଜୟପ୍ରକାଶ । ଏହା ସଂପୂର୍ଣ୍ଣ କ୍ରାନ୍ତିବିପ୍ଳବର ଏକ ଦୁର୍ବଳତା ହୋଇପାରେ କିନ୍ତୁ ଏହା ସଂପୂର୍ଣ୍ଣ ବିପ୍ଳବର ଅସଲ ତତ୍ତ୍ୱ ଏବଂ ପ୍ରଚଳିତ ଧାରାପ୍ରତି ସାଧାରଣ ମଣିଷର ଅସନ୍ତୋଷକୁ ନ୍ୟୁନ କରାଯାଇ ପାରିବ ନାହିଁ ବୋଲି ମୋର ମତ ।

ସେଦିନ ମଧ୍ୟାହ୍ନ ଭୋଜନରେ ମୁଁ ସେଇକଥା କହିଥିଲି ନନ୍ଦିନୀ ଦେବୀଙ୍କୁ । ଜୟପ୍ରକାଶ ଜଣେ ଓ୍ୱେଭରର୍ (waiverer) ସେ ବିପ୍ଳବକୁ ପୂର୍ଣ୍ଣାଙ୍ଗ କରିପାରିବେ ନାହିଁ ବୋଲି ମୋର ଭୟ । କିନ୍ତୁ ପ୍ରଥମଥର ପାଇଁ ତାଙ୍କର ସ୍ଲୋଗାନରେ ମୋର ଶିହରଣ ହେଉଛି । ୧୯୪୭ ମସିହାଠାରୁ ଆମେ ଯୁବ ସଂପ୍ରଦାୟକୁ ଲାଇସେନ୍ସ, କୋଟା, ପରିମିଟ୍‌ର ବିଷରେ ଜର୍ଜରିତ କରି ଆସିଛୁ । ତ୍ୟାଗ, ଆଦର୍ଶ, ନୀତିକଥା ଦିନେ ବି କହିନାହୁଁ । କିନ୍ତୁ ସେ ପୁଣିଥରେ କହୁଛନ୍ତି ଅସବର୍ଣ୍ଣ ବିବାହ କର, ପଇତା ଛିଣ୍ଡାଇ ପକାଇ ଦିଅ, ସ୍କୁଲ, କଲେଜ ବନ୍ଦକରି ସଂପୂର୍ଣ୍ଣ କ୍ରାନ୍ତିର ବାଣୀ ପ୍ରଚାର କର । ଭାରତୀୟ ମୁକ୍ତିଆନ୍ଦୋଳନରେ ଆମେ ଏଇ ସ୍ଲୋଗାନ ଶୁଣିଥିଲେ । ବର୍ତ୍ତମାନ ତାହା ଧ୍ୱନିତ ହେଉଛି । ଏହା ତ ହେଉଛି ସମସ୍ତଙ୍କ ଈପ୍‌ସିତ ଲକ୍ଷ୍ୟ । ତମେମାନେ ହିଁ ଚାହିଁଲେ ତମମାନଙ୍କର ନେତୃତ୍ୱରେ ଏହା କାର୍ଯ୍ୟକାରୀ ହୋଇପାରିବ । ଜୟପ୍ରକାଶ କୁଆଡ଼େ ଲିଭିଯିବେ ।

ଲଞ୍ଚ ସଂକ୍ଷିପ୍ତ ହୋଇ ଆସୁଥିଲା । ଦେବବାବୁ କଥାଟାକୁ ବେଶୀ ଗ୍ରହଣ କରିଥିଲେ ବୋଲି ମନେହୁଏ, କାରଣ ଯଦିଓ ସେ ପାର୍ଲ୍ୟାମେଣ୍ଟ ସଭ୍ୟ ହୋଇଥିଲେ କିନ୍ତୁ କ୍ଷମତାର ବିଷ ତାଙ୍କ ମୁଣ୍ଡରେ ଚହଟି ନ ଥିଲା । ନନ୍ଦିନୀ ଦେବୀ କିନ୍ତୁ ସେତେବେଳକୁ କ୍ଷମତାର ତୁଙ୍ଗ ଶିଖରରେ । ତଳକୁ ଚାହିଁବାକୁ ବେଳ ନାହିଁ, ଇଚ୍ଛା ନାହିଁ ? ସେ ପୁଣି ତଳକୁ ଚାହିଁଥିଲେ ଯେତେବେଳେ ସଂଜୟ ଗାନ୍ଧୀଙ୍କ ପ୍ରଭାବରେ ଇନ୍ଦିରା ଗାନ୍ଧୀ ତାଙ୍କୁ ଇସ୍ତଫା ଦେବାପାଇଁ କହିଥିଲେ ଏବଂ ଇସ୍ତଫା ଦେବା ପୂର୍ବରୁ ସେ ଢ଼େଙ୍କାନାଳରେ ଆୟୋଜିତ ସଭାରେ ମନେ ପକାଇଥିଲେ ମାଟି ଓ ମଣିଷର କଥା । କିନ୍ତୁ ସେତେବେଳକୁ ତାଙ୍କର କ୍ଷମତାର ଅପସାରଣକୁ ନିଶ୍ଚିତ କରିବା ପାଇଁ ଭାରତୀୟ ସାମରିକ ବାହିନୀ ପହଞ୍ଚି ସାରିଥିଲେ ଭୁବନେଶ୍ୱରରେ ।

ସେମିନାରର ଆୟୋଜନରେ ବାଧା ଉପୁଜି ନ ଥିଲା କିନ୍ତୁ ସାହାଯ୍ୟ ମିଳି ନ ଥିଲା । ଆନ୍ତର୍ଜାତିକ ସେମିନାରକୁ ଉଦ୍‌ଘାଟନ କରିବା ପାଇଁ ମୁଖ୍ୟମନ୍ତ୍ରୀ ସମ୍ମତି ଦେଇଥିଲେ ହେଁ ଉଦ୍‌ଘାଟନ ସମୟରେ ସେ ନିଦ୍ରିତ ବୋଲି ତାଙ୍କର ସେକ୍ରେଟେରୀ ରାଧାନାଥ ବାବୁଙ୍କୁ କହିଥିଲେ । ପରେ ସେ ବିଳମ୍ବରେ ଆସି ସେମିନାର ଉନ୍ମୋଚନ କରିଥିଲେ ଅବଶ୍ୟ । ଏହି ଆନ୍ତର୍ଜାତିକ ସେମିନାରକୁ ଆସିଥିଲେ ଦେଶବିଦେଶର ବହୁ ଗବେଷକ । ସେମାନଙ୍କ ମଧ୍ୟରେ ଥିଲେ ପ୍ରସିଦ୍ଧ ଐତିହାସିକ ଏ ଏ.ଏଲ. ବାସମ୍ । ତାଙ୍କ ସହିତ ମୋର ପରିଚିତ ହୋଇଥିଲା ତାଙ୍କର ପୂର୍ବ ଓଡ଼ିଶା ଗସ୍ତ ସମୟରେ । ସେମିନାର ବେଳକୁ ସେ ଥିଲେ ଅଷ୍ଟ୍ରେଲିଆରେ । ନିଜ ହାତରୁ ଖର୍ଚ୍ଚ କରି ସେ ଆସିଥିଲେ ଓଡ଼ିଶା, ଏଇ ସେମିନାରକୁ ।

Digitized by srujan ka@gmail.com

ଅଧ୍ୟାପକ ବାସମ୍ ମୋତେ ହଠାତ୍ କହିଲେ ସେମିନାରର ଉଦ୍‌ଘାଟନ ଦିବସ ଦିନ । 'ମୁଁ ନିଜ ହାତରୁ ଖର୍ଚ୍ଚ କରି ଆସିଛି । ତମେ ମୋର ଯିବା ଖର୍ଚ୍ଚ ଦେବ' । ମହା ମୁସ୍କିଲରେ ପଡ଼ିଲୁ ଆମେ, ଏତେ ନଗଦ ଟଙ୍କା ଆମ ହାତରେ ନ ଥିଲା । ବାଧ ହୋଇ ଆଠ ହଜାର ଟଙ୍କା ଧାର କରିଥିଲୁ ତାଙ୍କ ପାଇଁ ।

ସେ ରତ୍ନଗିରି ଲଳିତଗିରି ବୁଲିବାକୁ ଯାଇ ନ ଥିଲେ । ଆଗରୁ ଦେଖିଥିଲେ ଏସବୁ । ସେଇ ଦିନଟି ସେ କଟାଇଥିଲେ କଟକ-ଭୁବନେଶ୍ୱରରେ ବିଭିନ୍ନ ପୂର୍ବ ପରିଚିତ ବ୍ୟକ୍ତିଙ୍କୁ ଭେଟି । ମୁଁ ଶୁଣିଥିଲି ଯେ ସେଦିନ ଅଧ୍ୟାପକ ପ୍ରଭାତ ମୁଖାର୍ଜୀ, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ମନ୍ମଥନାଥ ଦାସ, ଡକ୍ଟର ହରେକୃଷ୍ଣ ମହତାବ ପ୍ରଭୃତି ତାଙ୍କର ପୁରାତନ ବନ୍ଧୁମାନଙ୍କୁ ଭେଟିଛନ୍ତି । ସନ୍ଧ୍ୟାରେ ମୋର ତାଙ୍କ ସାଙ୍ଗରେ ଦେଖାହୁଏ ।

ତା' ପରଦିନ ସବୁ ବୈଦେଶିକ ଗବେଷକ, କିଛି ଭାରତୀୟ ଗବେଷକ ଏବଂ କିଛି ବିଶିଷ୍ଟ ନିମନ୍ତ୍ରିତ ଅତିଥିଙ୍କର ଫେରିବାର କଥା ଉଡ଼ାଜାହାଜରେ । ଦିଲ୍ଲୀକୁ ସିଧାସଳଖ ବିମାନ ଯାତ୍ରାର ସୁବିଧା ସେ ପର୍ଯ୍ୟନ୍ତ ହୋଇ ନ ଥିଲା ବୋଲି ମନେପଡୁଛି । ସମସ୍ତେ କଲିକତା ବାଟ ଦେଇ ଯିବେ । ଅଧ୍ୟାପକ ବାସମ୍ ମୋତେ କହିଲେ ଯେ ସମସ୍ତଙ୍କୁ ଘଣ୍ଟାଏ ପୂର୍ବରୁ ବିମାନବନ୍ଦରକୁ ନେଇଯିବ । ମୋର ସମସ୍ତଙ୍କୁ କିଛି କହିବାର ଅଛି । ସେହି ଅନୁଯାୟୀ ଆମେ ଘଣ୍ଟାଏ ପୂର୍ବରୁ ପହଞ୍ଚିଲୁ ବିମାନବନ୍ଦରରେ ।

ବାସମ୍ ସମସ୍ତଙ୍କୁ ଆସନ ଗ୍ରହଣ କରିବାପାଇଁ ଅନୁରୋଧ କଲେ ଏବଂ ଆରମ୍ଭ କଲେ ତାଙ୍କର ଭାଷଣ । ସେ କହିଲେ ଯେ ମୁଁ ନିଜ ହାତରୁ ଖର୍ଚ୍ଚ କରି ଆସିଛି ଅଷ୍ଟ୍ରେଲିଆରୁ । ମୁଁ ସଂପାଦକଙ୍କୁ କହିଥିଲି ମୋର ଫେରିବା ଖର୍ଚ୍ଚ ଦେବାପାଇଁ । ସେ ଉକ୍ତ ଖର୍ଚ୍ଚ ଆଣିଛନ୍ତି କି ନାହିଁ ଜାଣି ନାହିଁ । (ମୁଁ ମୁଣ୍ଡ ହଲାଇ ହଁ କଲି) କିନ୍ତୁ ମୁଁ ତାଙ୍କୁ କ୍ଷମା ମାଗୁଛି ଏଇ ସମସ୍ତ ଗବେଷକ, ଅଧ୍ୟାପକମାନଙ୍କ ସମ୍ମୁଖରେ । ମୁଁ ଗଲାକାଲି ବହୁ ବ୍ୟକ୍ତିଙ୍କୁ ଭେଟି ଏଇ ସେମିନାର ସଂପର୍କରେ ଶୁଣିଛି । ବିନା ଗ୍ରାଣ୍ଟ ବା ଅନୁଦାନ, ବିନା ସରକାରୀ ପୃଷ୍ଠପୋଷକତାରେ ବୋଧହୁଏ ଏଇ ହେଉଛି ପ୍ରଥମ ଆନ୍ତର୍ଜାତିକ ସେମିନାର । ଆପଣମାନଙ୍କ ଭିତରୁ ବୋଧହୁଏ କେହି ମଧ୍ୟ ଶୁଣି ନ ଥିବେ ଯେ ବିନା ପୃଷ୍ଠପୋଷକତାରେ କୌଣସି ଆନ୍ତର୍ଜାତିକ ସମ୍ମିଳନୀ ହୋଇପାରେ ବୋଲି । ମୁଁ ଓଡ଼ିଶାର ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ସମସ୍ତଙ୍କୁ କହିବାକୁ ଚାହେଁ ଯେ ଏପରି ସମ୍ମିଳନୀ ସଫଳ ହେଲେ ତାହା ସେମାନଙ୍କ ପାଇଁ ହିଁ ଗୌରବ ଆଣିବ ।

ମୁଁ ମୋର କ୍ଷୁଦ୍ର ଦାନ ସହ ପୁଣି କ୍ଷମା ମାଗୁଛି ସଂଗଠକମାନଙ୍କ ପାଖରେ କାରଣ ସେମାନେ ବୋଧହୁଏ ପ୍ରଥମ ଆନ୍ତର୍ଜାତିକ ସେମିନାର ସଙ୍ଗଠକ, ଯେଉଁଠି ସେମିନାର ପୂର୍ବରୁ ନିବନ୍ଧାବଳୀ ଛାପାହୋଇ ବଣ୍ଟାଯାଇଛି ପ୍ରତିନିଧିମାନଙ୍କ ଭିତରେ । ଏହା କହି ସେ ମୋତେ କିଛି ଡଲାର ବଢ଼େଇ ଦେଇଥିଲେ । ଆମେସବୁ ଅଭିଭୂତ ହୋଇ ଠିଆ ହୋଇଥିଲୁ । ଏଇ ବିମାନ ବନ୍ଦର ସ୍ମୃତି ମୋର ଅନେକ ସ୍ମୃତିକୁ ଉଖାରି ଦିଏ ।

Digitized by srujan ka@gmail.com

ସୁଇଡିସ ଏକାଡେମୀ ଅଫ ସାଇନ୍‌ସର ଚେୟାର ପର୍ସନ ଡକ୍ଟର ଆନ୍ଦ୍ରେ ଆନ୍ଦ୍ରିନ ଓଡ଼ିଶା ଆସିଥାନ୍ତି ବିଶ୍ୱଶାନ୍ତି ପାଇଁ ଜନମତକୁ ଅଧିକ ସୁଦୃଢ଼ କରିବା ପାଇଁ । ତାଙ୍କୁ ଛାଡ଼ିବା ପାଇଁ ଯାଇଚି ଭୁବନେଶ୍ୱର ବିମାନ ବନ୍ଦରକୁ । ମୋର ବଂଧୁ ସୁଧାଂଶୁ ଭୂଷଣ ମିଶ୍ର ସେତେବେଳେ ବୋଧହୁଏ ଡାଇରେକ୍ଟର ଅଫ୍ କନସୋଲିଡେଶନ ଅଫ୍ ହୋଲଡିଙ୍ଗ (ମୋର ଠିକ୍ ମନେପଡୁ ନାହିଁ) । ସେଇଠି ଦୈବାତ୍ ଦେଖାହେଲା ଏବଂ ତାଙ୍କୁ ମୁଁ ପରିଚୟ କରାଇଦେଲି ବୈଜ୍ଞାନିକ ଆନ୍ଦ୍ରେ ଆନ୍ଦ୍ରିନଙ୍କ ସହ ଏବଂ କହିଲି ଯେ ସୁଧାଂଶୁ ହେଉଛନ୍ତି ଜଣେ ପଦାର୍ଥ ବିଜ୍ଞାନୀ କିନ୍ତୁ ସେ ବର୍ତ୍ତମାନ ଭାରତୀୟ ଶାସନ ସେବା (IAS)ର ଅନ୍ତର୍ଭୁକ୍ତ । ଦୁହିଁଙ୍କ ଭିତରେ ଆଳାପ ଓ ଆଲୋଚନା ହେଲା । ସୁଧାଂଶୁ ତାଙ୍କୁ ନିଜର କ୍ୟାରିଅର କଥା କହିଲେ । ଅଧ୍ୟାପିକା ଆନ୍ଦ୍ରିନ ପଚାରିଲେ– ଆପଣ ବର୍ତ୍ତମାନ ବିଜ୍ଞାନର କେଉଁ ବିଭାଗର ଅନ୍ତର୍ଭୁକ୍ତ । ସୁଧାଂଶୁ ତାଙ୍କୁ ବୁଝାଇବାକୁ ଚେଷ୍ଟାକଲେ ଯେ ସେ ବର୍ତ୍ତମାନ ଆଇ.ଏ.ଏସ୍. ଏବଂ ତେଣୁ ଜେନେରାଲିଷ୍ଟ । ବର୍ତ୍ତମାନ ସେ ଜମିଜମା କଥା ବୁଝୁଛନ୍ତି । ଆନ୍ଦ୍ରିନ ବୁଝିବାକୁ ନାରାଜ । ଆପଣ କାହିଁକି ଆପଣାର ପ୍ରତିଭାକୁ ନଷ୍ଟ କରୁଛନ୍ତି ? କଣ ଦରକାର ଏ ସବୁ କାମରେ ? ଏବଂ ତା'ପରେ ସେ ବୁଝାଇ ଚାଲିଲେ ଭାରତରେ ପଦାର୍ଥ ବିଜ୍ଞାନୀମାନଙ୍କର ଦାୟିତ୍ୱ । ସୁଧାଂଶୁ ଅପ୍ରତିଭ ହୋଇ ଉଠିଲେ ଏବଂ ତାଙ୍କୁ ଆନ୍ଦ୍ରିନ ଉପଦେଶ ଦେଇ କହିଲେ ଯେ ସେ ତୁରନ୍ତ ଏସବୁ ଜମିଜମା କଥା ଛାଡ଼ି ପଦାର୍ଥ ବିଜ୍ଞାନ ଉପରେ ମନୋନିବେଶ କରନ୍ତୁ ।

ଆନ୍ତର୍ଜାତିକ ବୌଦ୍ଧ ଓ ଜୈନ ଦର୍ଶନ ସେମିନାରକୁ ଆସିଥିଲେ ପୃଥିବୀର ପ୍ରାୟ ୨୫ଟି ଦେଶରୁ ପ୍ରତିନିଧି । ସେମାନଙ୍କ ମଧ୍ୟରେ ଅନେକ ଲବ୍ଧପ୍ରତିଷ୍ଠ ଏବଂ ଖ୍ୟାତିସଂପନ୍ନ ଗବେଷକ ଥିଲେ ।

ଆନ୍ତର୍ଜାତିକ ସେମିନାରକୁ ଆସିଥିବା ପ୍ରବନ୍ଧ ସବୁକୁ ସେମିନାର ପୂର୍ବରୁ ଛାପାହୋଇ ପ୍ରତିନିଧିମାନଙ୍କୁ ବଣ୍ଟାଯିବା ପାଇଁ ସ୍ଥିର କରିଥିଲୁ । ଏହା ସଂପୂର୍ଣ୍ଣ ଅଭିନବ ଥିଲା । ସବୁ ସେମିନାର ବା ସମ୍ମିଳନୀରେ ନିବନ୍ଧ ସବୁର ଆଲୋଚନା ହୋଇଥାଏ ସନ୍ଦର୍ଭ ଲେଖକର ଉପସ୍ଥାପନା ଭିତ୍ତିରେ । କିଛି ସମ୍ମିଳନୀରେ ସିନୋପ୍‌ସିସ୍ (synopsis) ବା ସାରାଂଶ ପ୍ରକାଶିତ ହୋଇଥାଏ ଆଗରୁ । ଖୁବ୍ କମ୍ ସମ୍ମିଳନୀ ବା ସେମିନାରର ନିବନ୍ଧ ପ୍ରକାଶିତ ହୋଇଥାଏ ଏବଂ ଯଦି ହୁଏ ତା' ସମ୍ମିଳନୀ ବା ସେମିନାରର ବହୁ ପରେ । କିନ୍ତୁ ଏଇ ସେମିନାରରେ ନିବନ୍ଧସବୁ ଆଗରୁ ପ୍ରକାଶିତ କରିବା ପାଇଁ ଆମେ ସ୍ଥିର କରିଥିଲୁ । ନିବନ୍ଧଗୁଡ଼ିକ ଛାପାଯାଉଥିଲା ମଧୁପାଟଣାରେ ଅବସ୍ଥିତ ରାଜ୍ୟସରକାରଙ୍କ ପ୍ରେସରେ । ହଠାତ୍ ପ୍ରେସର ସୁପରିଟେଣ୍ଡେଣ୍ଟ ମୋତେ ଫୋନ କଲେ ଯେ ବହି ପ୍ରକାଶିତ ହୋଇପାରିବ ନାହିଁ କାରଣ ହୀରାକୁଦଠାରୁ ଆସିଥିବା ବିଦ୍ୟୁତ ଲାଇନ୍ ମରାମତି ହେବ ସାତଦିନ ପାଇଁ । ଗଲାବର୍ଷ ଠିକ୍ ଏଇ ସମସ୍ୟା ଉପୁଜିଥିଲା । ବ୍ୟାଲଟ୍ ପେପର ଛପାହେଲା ବେଳେ । ତଥାପି ବିଦ୍ୟୁତ ବିଭାଗ ରାଜି ହୋଇ ନଥିଲେ, ସବୁ ହସ୍ତକ୍ଷେପ ସତ୍ତ୍ୱେ ।

Digitized by srujan ka@gmail.com

ବାଧହୋଇ ଯାଇ ପହଞ୍ଚିଲି ବିଦ୍ୟୁତ ବୋର୍ଡ଼ର ଚେୟାରମ୍ୟାନ ଶ୍ରୀ ଏସ.ପି. ଗନ୍ତାୟତଙ୍କ ପାଖରେ । ସେ ଆଉ ନାହାନ୍ତି । ତେଣୁ ତାଙ୍କର ଜୀବନର କେତେକ ଅପ୍ରକାଶିତ କାହାଣୀ କହିବା ସମୀଚୀନ ହେବ । ୧୯୩୦-୩୧ ମସିହାରେ ମାନ୍ଦ୍ରାଜରେ ଇଂଜିନିଅରିଂ କଲେଜରେ ପଢୁଥିବା ବେଳେ ସେଠାରେ ଅନୁଷ୍ଠିତ ନିଖିଳ ଭାରତ ଛାତ୍ର ସମ୍ମିଳନୀରେ ଯୋଗ ଦେଇଥିଲେ କବି ୰ଅନନ୍ତ ପଟ୍ଟନାୟକଙ୍କ ସହିତ । କ୍ରମେ ସେ କମ୍ୟୁନିଷ୍ଟ ପାର୍ଟି ପ୍ରତି ଆକୃଷ୍ଟ ହେଲେ ଏବଂ ସାରା ଜୀବନ ସାମ୍ୟବାଦ ପ୍ରତି ଅନୁରକ୍ତ ରହିଗଲେ । ୧୯୪୮ରୁ ୧୯୫୧ ମସିହା ହେଉଛି କମ୍ୟୁନିଷ୍ଟ ପାର୍ଟିର ଦୁଃସାହସବାଦୀ ନୀତିର ସମୟ । ଭୟାନକ ସମୟ । ପ୍ରଚଣ୍ଡ ସରକାରୀ ଆକ୍ରମଣ ଆଗରେ ତିଷ୍ଠିବା ଭାରି କଠିନ । ତେଣୁ ବାଧହୋଇ ନିର୍ଦ୍ଦିଷ୍ଟ ବଂଧୁମାନଙ୍କର ସହଯୋଗର ଆବଶ୍ୟକତା ଥିଲା ପ୍ରଭୂତ । ସେତିକିବେଳେ ଶ୍ରୀ ଗନ୍ତାୟତଙ୍କର ସାହାଯ୍ୟ ଅମାପ । ସ୍ତ୍ରୀର ଗହଣା ବିକି ବା ବଂଧକ ରଖି, ଏକମାତ୍ର ମୋଟର ଗାଡ଼ିକୁ ବିକି ସେ କମ୍ୟୁନିଷ୍ଟ ପାର୍ଟିକୁ ସାହାଯ୍ୟ କରିଛନ୍ତି । ଜଣେ ସଚ୍ଚୋଟ ଏବଂ ଦକ୍ଷ ଅଫିସର ଭାବରେ ସେ ଥିଲେ ପ୍ରବାଦ ପୁରୁଷ । ତାଙ୍କୁ ରୀତିମତ ବାଘ ପରି ଭୟ କରୁଥିଲେ ଅଧସ୍ତନ କର୍ମଚାରୀମାନେ ଏବଂ ଉପରିସ୍ଥମାନଙ୍କୁ ମଧ ସେଇପରି ନିର୍ଭୀକ ଉତ୍ତର ଦେଉଥିଲେ ଶ୍ରୀ ଗନ୍ତାୟତ । କିନ୍ତୁ କମ୍ୟୁନିଷ୍ଟ ପାର୍ଟିର ଖୁବ୍ କମ ଲୋକ ତାଙ୍କର ଏ ପ୍ରକାର ଅନୁରକ୍ତି ବିଷୟ ଜାଣିଥିଲେ । ଶ୍ରୀ ଅନନ୍ତ ପଟ୍ଟନାୟକ, ଶ୍ରୀ ଗୁରୁଚରଣ ପଟ୍ଟନାୟକ, ଶ୍ରୀ ବୈଦ୍ୟନାଥ ରଥ ଓ ଶ୍ରୀ ରାମକୃଷ୍ଣ ପତି ଇମିତି ଦି'ଚାରିଜଣଙ୍କ ଭିତରେ ତାହା ସୀମିତ ଥିଲା । ଶ୍ରୀ ଗନ୍ତାୟତ ଯାଇଥିଲେ ଆପଣାର 'ସ୍ୱପ୍ନର ଦେଶ' ସୋଭିଏତ୍ ରୁଷ୍ ପରିଭ୍ରମଣରେ ସରକାରୀ କାର୍ଯ୍ୟରେ । ସେଠାରେ ତାଙ୍କର ସ୍ୱପ୍ନ ଭଂଗ ହେଲା । ଫେରି ସେ କହିଲେ ଯେ ସେଠାରେ ରୋବଟ (Robot) ତିଆରି ହେଉଛି, କିନ୍ତୁ ମଣିଷ କାହିଁ ? ସେ ଅତ୍ୟନ୍ତ ନିରୁତ୍ସାହିତ ଏବଂ ଅସନ୍ତୁଷ୍ଟ ହୋଇଥିଲେ ଏବଂ ତାହା ପ୍ରକାଶ କରୁଥିଲେ ଯେଉଁମାନଙ୍କୁ ସେ ଜାଣିଥିଲେ ସେଇମାନଙ୍କ ଆଗରେ । ମୋ ସାଂଗରେ ଦେଖାହେଲେ ସେ କହୁଥିଲେ ''ତମେ ଯାହା କହୁଥିଲ ସତ୍ୟ, ଏ ଦେଶ ତ ରହି ପାରିବ ନାହିଁ ?'' ତାଙ୍କଠାରୁ ହିଁ ମୁଁ ଶୁଣିଥିଲି ପ୍ରଥମ ଚେତାବନୀ ଯେ ସୋଭିଏତ୍ ରୁଷ ରହିପାରିବ ନାହିଁ । ମୋର ନିଜର ଅଭିଜ୍ଞତା ଥିଲା ଅତ୍ୟନ୍ତ ନୈରାଶ୍ୟଜନକ କିନ୍ତୁ ଏହା ଭାଜି ଖଣ୍ଡ ଖଣ୍ଡ ହୋଇଯିବ ବୋଲି ମୋର କଳ୍ପନା ନ ଥିଲା ।

ଏଇ ସଂପର୍କରେ ମନେପଡ଼େ ଲେନିନ୍‌ଙ୍କର ମତଭେଦ ଏମ.ଏନ୍. ରାୟଙ୍କ ସହିତ । Problems of Nationalities ର ଯେଉଁ ବୟାନ ଏବଂ ସମାଧାନ ଲେନିନ୍ ଦେଇଥିଲେ ସେ ସହିତ ଏମ୍.ଏନ୍. ରାୟ ଏକମତ ହୋଇ ନ ଥିଲେ । ଏ ଦୁଇ ମହାରଥୀଙ୍କ ସଂଘର୍ଷ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ଉପରେ ପଡ଼ିଥିଲା କିନ୍ତୁ ଇଂରାଜୀରେ କଥା ଅଛି Nothing succeeds like success. ଲେନିନ୍‌ଙ୍କ ନେତୃତ୍ୱରେ ଏକ ପଶ୍ଚାତପଦ ଦେଶରେ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠା ହୋଇଛି ଏହା ହିଁ ସାଫଲ୍ୟର ଚୂଡ଼ାନ୍ତ ପ୍ରମାଣ । ତେଣିକି ଅନ୍ୟାନ୍ୟ ତତ୍ତ୍ୱ ନିରୁତା, ବନ୍ଧ୍ୟା ବୋଲି

Digitized by srujan ka@gmail.com

ବିବେଚିତ ହେବା ସ୍ୱାଭାବିକ । ଜାତି ଜାତି ଭିତରେ ବିଦ୍ୱେଷ, ଆପଣାର ସ୍ୱତନ୍ତ୍ର ପରିଚିତି (Identity) ପ୍ରତିଷ୍ଠା ପାଇଁ ଜାତିମାନଙ୍କ ଭିତରେ କାମନା, ଜାତି ଜାତି ଭିତରେ ପରସ୍ପର ବିରୋଧୀ ସ୍ୱାଭିମାନକୁ କେବଳ ଏକ ସମାଜବାଦ ପ୍ରତିଷ୍ଠା ପାଇଁ ଲକ୍ଷ୍ୟ ରଖିଥିବା ରାଷ୍ଟ୍ର ସମାଧାନ କରିପାରିବ ନାହିଁ ବୋଲି ଏମ୍.ଏନ୍. ରାୟ ମତ ଦେଇଥିଲେ । ଏହି ବିରୋଧର ଫଳ ସ୍ୱରୂପ ତାଙ୍କୁ ସୋଭିଏଟ୍ ରୁଷ ଛାଡ଼ିବାକୁ ପଡ଼ିଥିଲା ଏବଂ ସେ କମ୍ୟୁନିଷ୍ଟ ପାର୍ଟିରୁ ବହିଷ୍କୃତ ହୋଇଥିଲେ । ଏହି ମତଭେଦର ପ୍ରଭାବ ଥିଲା ଯୁଗାନ୍ତକାରୀ । ସୋଭିଏଟ୍ ୟୁନିଅନ୍ କେବଳ ଭାଙ୍ଗିଗଲା ନୁହେଁ, ସମାଜବାଦ ପ୍ରତିଷ୍ଠାର ଷାଠିଏ ବର୍ଷ ପରେ ବିଭିନ୍ନ ରିପବ୍ଲିକ ଭିତରେ ସଶସ୍ତ୍ର ସଂଘର୍ଷ ଦେଖାଗଲା । ଠିକ୍ ସେଇପରି ମାର୍ଶାଲ ଯୋଶେଫ ବ୍ରୋଞ୍ଜ ଟିଟୋଙ୍କର ଯୁଗୋସ୍ଲୋଭିଆ ଭାଙ୍ଗିଯିବା ପରେ ମୁସଲମାନ ଏବଂ ଖ୍ରୀଷ୍ଟିଆନମାନଙ୍କ ଭିତରେ ତିକ୍ତ ସଂଘର୍ଷ ଦେଖା ଦେଇଛି ଏବଂ ଯେଉଁ ଦେଶର ''ସମାଜବାଦୀ''ମାନେ ମାର୍ଶାଲ ଟିଟୋଙ୍କ ନେତୃତ୍ୱରେ ହିଟଲରର ଅତ୍ୟାଚାର, ତା'ର କନସେନଟ୍ରେସନ କ୍ୟାମ୍ପ (concentration camp) ଏବଂ ସେଥିରେ ଚାଲିଥିବା ଲୋମହର୍ଷଣ ଅତ୍ୟାଚାର ବିରୁଦ୍ଧରେ ଐତିହାସିକ ସଂଗ୍ରାମ କରିଥିଲେ, ସେଇମାନେ ଜାତିଗତ, ଧର୍ମଗତ ସଂଘର୍ଷରେ ଲିପ୍ତ ହେଲେ ଏବଂ ପରସ୍ପର ବିରୁଦ୍ଧରେ ଯେଉଁସବୁ କନସେନଟ୍ରେସନ କ୍ୟାମ୍ପ ଗଠନ କଲେ ତାହାର ଅତ୍ୟାଚାରର କାହାଣୀ ହିଟଲର ଜର୍ମାନୀକୁ ବି ଟପିଗଲା ।

ଏମ୍.ଏନ୍. ରାୟଙ୍କ ସହିତ ଲେନିନ୍‌ଙ୍କର ମତଭେଦ ଭାରତବର୍ଷର ସମାଜବାଦୀ ଆନ୍ଦୋଳନର ବିପୁଳ କ୍ଷତି ଘଟାଇଥିଲା । ଏ କ୍ଷତି ନ ହୋଇଥିଲେ କଣ ହୋଇଥାନ୍ତା ତାହାର ପୋଷ୍ଟମର୍ଟମ କରି କିଛି ଲାଭ ନାହିଁ ।

ମୁଁ ଯାଇ ଶ୍ରୀ ଗନ୍ତାୟତଙ୍କ ପାଖରେ ପହଞ୍ଚିଲି । ସେ କିନ୍ତୁ ସମସ୍ୟାକୁ ଖୁବ୍ କ୍ୟାଜୁଆଲି ନେଲେ ଏବଂ ଜଳଖିଆ ଖୁଆଇ ବିଦା କରିଦେଲେ । 'କହିଲ ତ' ଯ, ହେ । ଏଇ ଭଳି କଥା ଶୁଣି ଫେରିଲି । କିନ୍ତୁ ମଧୁପାଟଣାରେ ବସ୍‌ରୁ ଓହ୍ଲାଇ ଗଭର୍ଣ୍ଣମେଣ୍ଟ ପ୍ରେସରେ ପହଞ୍ଚିଲା ବେଳକୁ ସେଠାରେ ପରିସ୍ଥିତି ସଂପୂର୍ଣ୍ଣ ପରିବର୍ତ୍ତିତ ! ବିଜୁଳି ବିଭାଗର ଜଣେ ସୁପରିଟେଣ୍ଡିଙ୍ଗ ଇଂଜିନିଅରଙ୍କୁ ଦାୟିତ୍ୱ ଦିଆଯାଇଛି ଯେପରି ବିଦ୍ୟୁତ ଯୋଗାଣ ଅବ୍ୟାହତ ରହେ । ଆମ ବହି ଛାପା ହୋଇ ଆମକୁ ଦେଇସାରିଲା ପରେ ସେ ସେଠାରୁ ରିଲିଭ ହେବେ । ପ୍ରେସର ସୁପରିଟେଣ୍ଡେଣ୍ଟ ଭାବିଲେ ଯେ ମୁଁ ନିଶ୍ଚୟ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ କହିଛି । ଅନ୍ତତଃ ବଂଧୁ ଶ୍ରୀ ଶକ୍ତିପ୍ରସାଦ ମିଶ୍ର ସେଇଆ ଭାବିଲେ । କାରଣ ଯେଉଁମାନେ କଲେଜ ଜୀବନରେ ଫାଷ୍ଟ ଇଅର, ସେକେଣ୍ଡ ଇଅରରେ ସମସାମୟିକ ସେମାନେ ଧରି ଦେଇଛନ୍ତି ସେଇ ପୁରୁଣା କାହାଣୀ— ନନ୍ଦିନୀ ଦେବୀଙ୍କ ସହିତ ମୋର ଆତ୍ମୀୟତା କଥା । କିନ୍ତୁ ଏହା ଭିତରେ ଯେ ମହାନଦୀରେ ଅନେକ ପାଣି ବୋହିଯାଇଛି ସେ କଥା ସେମାନେ ହୁଏତ ଜାଣିବାର ଅବକାଶ ପାଇନାହାନ୍ତି ।

Digitized by srujan ka@gmail.com

ଆଗରୁ କହିଛି ସେତେବେଳେ ଅଧ୍ୟାପକ ବାସମ୍ ତାଙ୍କର ପ୍ରଥମ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେଇ ଇଂଲଣ୍ଡ ପରିତ୍ୟାଗ କରି ଅଷ୍ଟ୍ରେଲିଆ ଜାତୀୟ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲେ । ନାଗାଲ୍ୟାଣ୍ଡର ଏକ୍ ଖୁବ୍ କମ୍ ବୟସ୍କା ନାରୀ ତାଙ୍କର ଦ୍ୱିତୀୟ ପତ୍ନୀ । ପରବର୍ତ୍ତୀ କାଳରେ ଅଧ୍ୟାପକ ବାସମ୍ ଭାରତବର୍ଷକୁ ଆସିଥିଲେ । ସେତେବେଳକୁ ସେ କ୍ୟାନସର ରୋଗରେ ପୀଡ଼ିତ ଥିଲେ । କଲିକତା ରାମକୃଷ୍ଣ ମିଶନ ଗେଷ୍ଟ ହାଉସରେ ତାଙ୍କ ସହିତ ଆମର ଶେଷ ସାକ୍ଷାତ । ଆମେ ନେଇ ଯାଇଥିଲୁ ଗୋଟିଏ କ୍ଷୁଦ୍ର ଉପହାର କାଠ କାମର । ମୋ ସାଙ୍ଗରେ ଥିଲେ ଉମେଶ ଚନ୍ଦ୍ର ନାୟକ । ଅଧ୍ୟାପକ ବାସମଙ୍କ ଆଖି ଲୁହରେ ଭରି ଯାଇଥିଲା ଏବଂ ସେ ବାଷ୍ପରୁଦ୍ଧ କଣ୍ଠରେ ତାଙ୍କ ସ୍ତ୍ରୀଙ୍କୁ କହିଲେ ଯେ ଏମାନେ ମୋତେ ଏତେ ଭଲ ପାଆନ୍ତି ଯେ ମୋର ଆଉଥରେ ଭାରତବର୍ଷରେ ଜନ୍ମଲାଭ କରିବା ପାଇଁ ଇଚ୍ଛା । ଓଡ଼ିଶାରେ ଡକ୍ଟର ମନ୍ମଥନାଥ ଦାସ ଏବଂ 'ସମାଜ' ସଂପାଦକ ରାଧାନାଥ ରଥ, ଡକ୍ଟର ହରେକୃଷ୍ଣ ମହତାବ, ଅଧ୍ୟାପକ ପ୍ରଭାତ କୁମାର ମୁଖାର୍ଜୀ, ଅଧ୍ୟାପକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଭୃତିଙ୍କ ସହିତ ତାଙ୍କର ଆନ୍ତରିକତା ଥିଲା ପ୍ରଚୁର ।

ଡ଼କ୍ଟର ଏ.ଏଲ. ବାସମ୍ ପ୍ରସିଦ୍ଧ ଭାରତବିଦ୍ ଥିଲେ । ତାଙ୍କର ପରଲୋକ ସଂବାଦ ମୋ ଠାରୁ ପାଇ ଜର୍ମାନୀର ଅନ୍ୟତମ ପ୍ରସିଦ୍ଧ ଭାରତବିଦ୍ ଅଧ୍ୟାପକ ଡକ୍ଟର ହରମାନ୍ କୁଲକେ ମୋତେ ଲେଖିଥିଲେ ଯେ ଅଧ୍ୟାପକ ବାସମ୍‌ଙ୍କର ପରଲୋକରେ ପୃଥିବୀର ସବୁ ଭାରତବିଦ୍ ଏବଂ ଐତିହାସିକ ସେମାନଙ୍କର 'ଗୁରୁ'ଙ୍କୁ ହରାଇଛନ୍ତି ।

ଏଇ ଗୁରୁ ଶବ୍ଦ ମନେପଡ଼ିଲେ ମୋର ଏକ କାହାଣୀ ମନେପଡ଼େ । ଗୁରୁ ଶବ୍ଦର ଇଂରାଜୀ ପ୍ରତିଶବ୍ଦ କଣ ? ଟିଚର୍ କହିଲେ ତ ଗୁରୁଙ୍କୁ ବୁଝାଏନା । ଇଂରାଜୀ ଅଭିଧାନ ଗୁରୁକୁ ଏକ ଶବ୍ଦ ଭାବରେ ଗ୍ରହଣ କରିନେଇଛି । ଥରେ ରେଭେନ୍ସା କଲେଜରେ ଆମର ଏକ ଇଂରାଜୀ ଟିଉଟରିଆଲ କ୍ଲାସରେ (ଆଜିକାଲି କୁଆଡ଼େ କଲେଜମାନଙ୍କରେ ଟିଉଟରିଆଲ କ୍ଲାସ ଉଠିଗଲାଣି । ଆମ ବେଳକୁ ଅଧ୍ୟାପକମାନେ କ୍ଲାସରେ ଲେକ୍‌ଚର ଦିଅନ୍ତି ଏବଂ ଟିଉଟରିଆଲ କ୍ଲାସରେ ଯାହାର ଯାହା ବୁଝିବାକୁ ଥାଏ ବୁଝନ୍ତି । ବର୍ତ୍ତମାନ କଣ ହେଉଛି କହିପାରିବି ନାହିଁ) ଜଣେ ଅଧ୍ୟାପକ କହୁ କହୁ କହିଲେ ଯେ ଇଂରାଜୀ ଭାଷା ଖୁବ୍ ଉନ୍ନତ ଏବଂ ଯେକୌଣସି ଭାଷାର ଶବ୍ଦକୁ ଇଂରାଜୀରେ ଅନୁବାଦ କରାଯାଇ ପାରିବ । ଉକ୍ତ ଇଂରାଜୀ ଅଧ୍ୟାପକଙ୍କ ଇଂରାଜୀ ଭାଷାରେ ଜ୍ଞାନ ସଂପର୍କରେ ମୋର ବା ଆମ କ୍ଲାସର କାହାରି ଉଚ୍ଚ ଧାରଣା ନ ଥିଲା । ତାଙ୍କର ଏପରି ଏକ ବକ୍ତବ୍ୟର ମୁଁ ପ୍ରତିବାଦ କଲି । ମୋର ବକ୍ତବ୍ୟ ଥିଲା ଯେ ଏହା ସାଧାରଣ ଭାବରେ ସତ୍ୟ କିନ୍ତୁ ବିଭିନ୍ନ ଭାଷାରେ ଏଭଳି ଶବ୍ଦ ଅଛି ଯାହାର ଇଂରାଜୀ ପ୍ରତିଶବ୍ଦ ନାହିଁ । ସେ ମୋତେ ଏକ ପ୍ରକାର ଆହ୍ୱାନ ଦେଇ ମୋତେ ଦୁଇ ଚାରିଟା ଓଡ଼ିଆ ଶବ୍ଦ କହିବା ପାଇଁ କହିଲେ ଏବଂ ତା'ର ଇଂରାଜୀ ପ୍ରତିଶବ୍ଦ ଗୋଟାଏ ମିନିଟ୍ ମଧ୍ୟରେ କହିପାରିବେ ବୋଲି କହିଲେ । ଟିକିଏ ଚଗଲାମି କରି ମୁଁ ଦୁଇଟି ଶବ୍ଦ ତାଙ୍କୁ ପଚାରିଲି । ପ୍ରଥମଟି ହେଉଛି 'ଅଭିମାନ' ଏବଂ ଦ୍ୱିତୀୟଟି

Digitized by srujan ka@gmail.com

ହେଉଛି 'ଗୁରୁ' । ସେ ଉତ୍ତର ଦେଇଦେବେ ଭାବି ହଡ଼ବଡ଼େଇ ଗଲେ ଏବଂ ଉତ୍ତର ଦେଇ ପାରିଲେ ନାହିଁ । ପର ସପ୍ତାହ କ୍ଲାସରେ ସେଇ ଅବସ୍ଥା । ସେ ବିରକ୍ତ ହେବାକୁ ଆରମ୍ଭ କଲେ ଏବଂ ଇଆଡୁ ସିଆଡୁ ଶବ୍ଦ କହିବାରୁ ହାସ୍ୟର ଉଦ୍ରେକ ହେଲା । ବାଧହୋଇ ମୋତେ ପ୍ରସିଦ୍ଧ ଲେଖକ ଅନ୍ନଦା ଶଙ୍କର ରାୟଙ୍କର ଏକ ବହି ଆଣି ଦେଖାଇବାକୁ ହେଲା । ଉକ୍ତ ବହିରେ ସେ ଏକ ଚିଠି ଲେଖିଛନ୍ତି ତାଙ୍କର ଆମେରିକାନ ସ୍ତ୍ରୀଙ୍କୁ । ସେଥିରେ ଲେଖିଛନ୍ତି ତୁମକୁ ମୁଁ ଅଭିମାନ ଶବ୍ଦର ଅର୍ଥ ବୁଝାଇବାକୁ ଚେଷ୍ଟା କରିବି ନାହିଁ । ତାହା ସଂପୂର୍ଣ୍ଣ ଓରିଏଣ୍ଟାଲ ଫିଲିଙ୍ଗ । ଯାହାର କୌଣସି ଇଂରାଜୀ ପ୍ରତିଶବ୍ଦ ନାହିଁ । ପାଶ୍ଚାତ୍ୟ ନାରୀମାନେ ଅଭିମାନ କଣ ଜାଣନ୍ତି ନାହିଁ । ସେଇଯୋଗୁଁ ରାଧାଙ୍କର କୃଷ୍ଣଙ୍କ ଉପରେ ଅଭିମାନ କଥା କିମିତି ବୁଝାଯାଇ ପାରିବ ପାଶ୍ଚାତ୍ୟ ରମଣୀମାନଙ୍କୁ ?

ଭାରତବିଦ୍ ମାନଙ୍କର ଗୁରୁ ଅଧାପକ ବାସମ୍ ଖାଲି ଐତିହାସିକ ନୁହନ୍ତି, ସେ ଇତିହାସକୁ ବର୍ଣ୍ଣନ ବା ଇଣ୍ଟରପ୍ରିଟ (interpret) ମଧ କରି ଯାଇଛନ୍ତି । ଖାଲି ରେକର୍ଡ଼ କରିବା ଐତିହାସିକର କାମ ନୁହେଁ, ଇତିହାସକୁ ଇଣ୍ଟରପ୍ରିଟ୍ ବା ବିଶ୍ଳେଷଣ କରିବା ହେଉଛି ମୁଖ୍ୟ ।

ଅଧାପକ ବାସମ୍‌ଙ୍କ ମତରେ ଯଦିଓ ତ୍ରେତୟା ଯୁଗ ପରେ ଦ୍ୱାପର ଯୁଗ ବୋଲି ପୁରାଣ କୁହେ, ତାଙ୍କ ମତରେ ମହାଭାରତ ହେଉଛି ଆଗ ରାମାୟଣ ପରବର୍ତ୍ତୀ କାଳର । ତାଙ୍କ ମତରେ ମଣିଷ ଜାତିର ସଭ୍ୟତାକୁ ଲକ୍ଷେ ବର୍ଷ ବୋଲି କଳ୍ପନା କଲେ ସେଥିରୁ ଅଶୀ ହଜାର ବର୍ଷ ହେଉଛି ମାତୃସତ୍ତା ସମାଜ ଏବଂ ମାତ୍ର କୋଡ଼ିଏ ହଜାର ବର୍ଷ ହେଉଛି ପିତୃସତ୍ତା ସମାଜ । ମହାଭାରତ ହେଉଛି ମାତୃସତ୍ତା ସମାଜର ପ୍ରତୀକ । ମାତାର ପ୍ରାଧାନ୍ୟ ରହିଛି ଏଇ ଯୁଗରେ । ନାରୀ ସେ ପର୍ଯ୍ୟନ୍ତ ପୁରୁଷର ଦାସ ହୋଇ ନାହିଁ । ସତୀତ୍ୱର ସଂଜ୍ଞା ମଧ ମହାଭାରତ ଓ ରାମାୟଣରେ ଭିନ୍ନ ଭିନ୍ନ । ପଞ୍ଚୁପାଣ୍ଡବଙ୍କର ପତ୍ନୀ ଦ୍ରୌପଦୀ ସତୀ, ବିଭିନ୍ନ ବ୍ୟକ୍ତିଙ୍କ ଔରସରୁ ଜନ୍ମ ହୋଇଥିବା ପଞ୍ଚୁପାଣ୍ଡବଙ୍କ ମାତା କୁନ୍ତୀ ହେଉଛନ୍ତି ସତୀ, ଶହେ ପତିଙ୍କର ପତ୍ନୀ ଗାନ୍ଧାରୀ ହେଉଛନ୍ତି ସତୀ । କିନ୍ତୁ ରାମାୟଣ ବେଳକୁ ତାହା ହୋଇଯାଇଛି ଭିନ୍ନ । ରାବଣ ଘରେ ରହିବା ହେତୁ, ସୀତାଙ୍କୁ ଅଗ୍ନିପରୀକ୍ଷା ଦେବାକୁ ପଡ଼ିଛି । ଆକାଶ ପଥରେ ଯାଉଥିବା ଦେବତାଙ୍କୁ ଚାହିଁଦେବା ଅବସରରେ ଅନ୍ୟମନସ୍କ ହେବାରୁ ଅହଲ୍ୟାଙ୍କୁ ଶାପଗ୍ରସ୍ତ ହେବାକୁ ପଡ଼ିଛି । ମହାଭାରତ ଯୁଦ୍ଧରେ କୌଣସି ରେଗୁଲାର ସୈନ୍ୟବାହିନୀ ନାହିଁ, ବୀର ସାଙ୍ଗରେ ବୀରର ଲଢ଼ାଇ ହୋଇଛି ଏବଂ ସେତେବେଳେ ଅନ୍ୟମାନେ ତାକୁ ଠିଆହୋଇ ଲକ୍ଷ୍ୟ କରୁଥିବା ଦେଖାଦେଇଛି । ଏକ ସାଂଗରେ ଏକର ଲଢ଼େଇ କେବଳ ଅଭିମନ୍ୟୁ ବଧରେ ଲଂଘନ ହୋଇଛି । ଅନ୍ୟତ୍ର ନୁହେଁ । କିନ୍ତୁ ରାମାୟଣ ବେଳକୁ ରାମଚନ୍ଦ୍ର ଏବଂ ରାବଣ ଉଭୟଙ୍କର ସେନାବାହିନୀ ମଧରେ ଯୁଦ୍ଧ ହୋଇଛି । ଏହା ପରବର୍ତ୍ତୀ ଯୁଗର ସୂଚନା ବହନ କରେ ।

ମହାଭାରତରେ ବିଭିନ୍ନ ସଭ୍ୟତାର ପ୍ରତୀକ ଦେଖିବାକୁ ମିଳେ । ପ୍ରିମିଟିଭ (ଆଦିମ) ସମାଜର ପ୍ରତୀକ ଜରା ଶବର, ଚାରଣ ସଭ୍ୟତାର ପ୍ରତୀକ ଶ୍ରୀକୃଷ୍ଣ ଏବଂ କୃଷି ସଭ୍ୟତାର

Digitized by srujan ka@gmail.com

ପ୍ରତୀକ ବଳରାମ । ମହାଭାରତ ଆଦ୍ୟ କୃଷି ସମାଜର ସନ୍ତକ ବହନ କରେ । ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥକୁ ଯିବା ହେତୁ ସେଠାରେ ବର୍ଷା ହେଲା ଏବଂ କୃଷକମାନେ ଜମି ଚାଷ କଲେ । ପାଞ୍ଚଖଣ୍ଡ ପଡ଼ା ମାଗିଥିଲେ ପାଣ୍ଡବମାନେ । ଏହା Serfdom ଏବଂ Slavery ର ମଝାମଝି ସଭ୍ୟତା ।

ଏଇ ବୟାନ ଶୁଣି ମୋର ପିଲାଦିନର ଏକ ପଂକ୍ତି ମନେ ପଡ଼ିଥିଲା –

''ଅହଲ୍ୟା, ଦ୍ରୌପଦୀ, କୁନ୍ତି, ତାରା
ମନ୍ଦୋଦରୀ ଯଥା,
ପଞ୍ଚକନ୍ୟା ସ୍ମରେ ନିତ୍ୟଂ ମହାପାତକ
ନାଶମ୍ ।''

ଆଶ୍ଚର୍ଯ୍ୟର କଥା ଏଥିରେ ସୀତା, ସାବିତ୍ରୀ, ଦମୟନ୍ତୀ ପ୍ରଭୃତିଙ୍କ ନାମ ନାହିଁ । ଯେଉଁମାନଙ୍କ ନାମ ରହିଛି ସେମାନେ ସମସ୍ତେ ବ୍ୟତିକ୍ରମର (Irregular) ନାରୀ । ବୋଧହୁଏ ଏହା ହୋଇପାରେ ଯେ ରେଗୁଲାର ନାରୀମାନଙ୍କର ବିଶେଷତ୍ୱ ଅପେକ୍ଷା ଯେଉଁ ନାରୀମାନେ ବ୍ୟତିକ୍ରମ (irregular) ହୋଇ ମଧ୍ୟ ଆପଣାର ବୈଶିଷ୍ଟ୍ୟ ପ୍ରମାଣ କରିପାରିଛନ୍ତି ସେମାନେ ବେଶୀ ମହାନ ।

ଏ ସଂପର୍କରେ ଆଧୁନିକ ଭାରତର ମାଡାମ କାମାଙ୍କ ନାମ ଉଲ୍ଲେଖଯୋଗ୍ୟ । ପଣ୍ଡିତ ନେହେରୁ କହିଥିଲେ ଯେଉଁ ଭାରତୀୟ ମାଡାମ କାମାଙ୍କ ନାମ ଜାଣିନାହିଁ, ସେ ଭାରତୀୟ ନୁହେଁ । ମାଡ଼ାମ କାମାଙ୍କର ତ୍ୟାଗ, ସାହସର କୌଣସି ତୁଳନା ନାହିଁ । ସେ ହିଁ ତ୍ରିରଙ୍ଗା ପତାକାର ଜନ୍ମଦାତ୍ରୀ । ବ୍ରସେଲସ ସହରରେ ଆନ୍ତର୍ଜାତିକ ଉପନିବେଶବାଦ ବିରୋଧୀ ସମ୍ମିଳନୀରେ ଭାଷଣ ଦେଇ ସେ ହିଁ ତ୍ରିରଙ୍ଗା ପତାକାକୁ ଭାରତର ଜାତୀୟ ପତାକା ବୋଲି ଆଖ୍ୟା ଦେଇଥିଲେ । ଭାରତର ବହୁ ସଂତ୍ରାସବାଦୀମାନଙ୍କୁ ସେ ଆଶ୍ରୟ ଦେଇଥିଲେ ଇଉରୋପରେ । ପ୍ରସିଦ୍ଧ ବିପ୍ଲବୀ ବୀର ସଭରକରଙ୍କୁ ସୁରକ୍ଷା ଦେଇପାରିଲେ ନାହିଁ କାରଣ ତାଙ୍କର ପହଞ୍ଚିବାରେ ଦୁଇ ମିନିଟ୍ ଡେରିହୋଇ ଯାଇଥିଲା । ବେ ଅଫ ବିସ୍କେ (Bay of Biscay)ର ଉତ୍ତାଳ ତରଙ୍ଗମାଳା ଭେଦକରି ଜାହାଜରୁ ପଳାୟିତ ବୀର ସଭରଙ୍କର ଯାଇ ପହଞ୍ଚିଲେ ଫରାସୀ ଉପକୂଳରେ କିନ୍ତୁ ସେ ଫରାସୀ ଭାଷା ଜାଣି ନ ଥିବାରୁ ତାଙ୍କୁ ଫେରାର ଡକାୟତ ଭାବି ଲୋକେ ଧରି ଅନୁଧାବନ କରୁଥିବା ପୁଲିସ ବାହିନୀ ହାତରେ ତାଙ୍କୁ ଦେଇ ସାରିଥିଲେ, ମାଡାମ୍ କାମା ପହଞ୍ଚିଲା ବେଳକୁ । ଭାରତର ଏଇ ବୀରାଙ୍ଗନାଙ୍କ ନାମରେ ବମ୍ବେ (ବର୍ତ୍ତମାନ ମୁମ୍ବାଇ) ସହରର ଏକ ମୁଖ୍ୟ ରାସ୍ତାର ନାମ 'ମାଡ଼ାମ କାମା ରୋଡ଼' ନାମରେ ନାମିତ ହୋଇଛି ।

କିନ୍ତୁ ତାଙ୍କର ବ୍ୟକ୍ତିଗତ ଜୀବନ ଥିଲା ଭୟାବହ । ଏହା ସତ୍ତ୍ୱେ ମାଡାମ କାମା ଏ ଜାତିର ବନ୍ଦନୀୟା ହୋଇ ରହିବେ ଚିରକାଳ ।

Digitized by srujan ka@gmail.com

ଅଧ୍ୟାପକ ବାସମ୍ ଅଶୋକଙ୍କର ଶିଳାଲେଖସବୁ ଅନୁଧ୍ୟାନ କରି ଏକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ଅଶୋକଙ୍କର ଶିଳାଲେଖ ଦୁଇ ଭାଗରେ ବିଭକ୍ତ । ଯେଉଁଗୁଡ଼ିକ ଅଶୋକ ସାମ୍ରାଜ୍ୟ ଭିତରେ ରହିଛି ସେଗୁଡ଼ିକରେ ଥିବା ଅନୁଶାସନ ସାମ୍ରାଜ୍ୟର ସୀମାନ୍ତରେ ଥିବା ଅନୁଶାସନରୁ ଭିନ୍ନ । ଏ ଦୁଇ ପ୍ରକାରର ଅନୁଶାସନକୁ ଅନୁଧ୍ୟାନ କରି ଐତିହାସିକ ବାସମ୍ କହନ୍ତି ଯେ ଏଥିରୁ ଅନୁମିତ ହୁଏ ଯେ କଳିଙ୍ଗ ଯୁଦ୍ଧ ପରେ ଅଶୋକ ବୌଦ୍ଧଧର୍ମାବଲମ୍ବୀ ହୋଇଥିଲେ ସତ କିନ୍ତୁ ସାମ୍ରାଜ୍ୟ ବିସ୍ତାରର ଲିପ୍‌ସା ପରିହାର କରି ନ ଥିଲେ । ହୁଏତ ବୌଦ୍ଧ ଧର୍ମ ତାଙ୍କର ସାମ୍ରାଜ୍ୟ ବିସ୍ତାରର ନୂତନ ଆୟୁଧ ହୋଇଥିଲା ।

ଇତିହାସର ବୟାନ ମୋତେ ଖୁବ୍ ଆକର୍ଷଣ କରିଛି । ଯଦିଓ ତାରିଖ ବା ବର୍ଷ ମୋର ଆଦୌ ମନେ ରହେ ନାହିଁ । ସେଇ ତାରିଖ ଓ ବର୍ଷ ମନେ ନ ରହିବା ଭୟରେ ହିଁ ସ୍କୁଲ ବା କଲେଜ କାରିଅରରେ ଇତିହାସକୁ ପାଠ୍ୟ ବିଷୟ ଭାବରେ ଗ୍ରହଣ କରି ପାରି ନ ଥିଲି ।

ଅଧ୍ୟାପକ ବାସମ୍‌ଙ୍କର ପରଲୋକ ପରେ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥ ଦି' ୟୁନିଭର୍ସ ଆନୁକୂଲ୍ୟରେ ଓଡ଼ିଶାର ଜଣେ କୃତୀ ଗବେଷକଙ୍କ ପାଇଁ ଏକ ଆଓ୍ୱାର୍ଡ଼ର ବନ୍ଦୋବସ୍ତ କରିଥିଲେ ଏବଂ ପ୍ରଥମବର୍ଷ ପ୍ରସିଦ୍ଧ ଚିତ୍ର ଶିଳ୍ପୀ ଡକ୍ଟର ଦୀନନାଥ ପାଠୀ ଏହା ଲାଭ କରିଥିଲେ । କିନ୍ତୁ ପରବର୍ତ୍ତୀ କାଳରେ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥ ଅସୁସ୍ଥ ହୋଇପଡ଼ିବାରୁ ଲୋକ ସେବକ ମଣ୍ଡଳ ଏଥିପାଇଁ ଆବଶ୍ୟକୀୟ ଅର୍ଥ ଦେଲେ ନାହିଁ ।

ଇତିହାସର ବୟାନ ଅନୁଧ୍ୟାନ କରିବାକୁ ଯାଇ ମୁଁ ଡକ୍ଟର ନବୀନ ଚନ୍ଦ୍ର ସାହୁଙ୍କର Buddhism in Orissa ପଢ଼ିଲି । ପଢ଼ିଲି ଭୌମକର ବଂଶର ରାଜୁତି । ସେଇ ସମୟରେ ବୌଦ୍ଧଧର୍ମ ଓଡ଼ିଶାରେ ଶୀର୍ଷସ୍ଥାନରେ ପହଞ୍ଚିଥିଲା । ଏବଂ ଏହି ଭୌମକର ବଂଶରେ ଅନ୍ତତଃ ଛଅଜଣ ନାରୀ ରାଜୁତି କରୁଥିଲେ । ଏହା ମୋତେ ବିସ୍ମିତ କରିଥିଲା, କିନ୍ତୁ ମନରେ ଗୋଟାଏ ପ୍ରଶ୍ନ ଉଠିଥିଲା । ସେଇ ନାରୀ ରାଜୁତି କଣ ଇଂଗିତ ଦିଏ ଯେ ଓଡ଼ିଶାରେ ମାତୃସତ୍ତା ସମାଜ ପ୍ରଚଳିତ ଥିଲା ସେ ପର୍ଯ୍ୟନ୍ତ ? ବୌଦ୍ଧଧର୍ମ ଏକଦା ସମଗ୍ର ଓଡ଼ିଶାରେ ଆପଣାର ପ୍ରଭାବ ବିସ୍ତାର କରିଥିଲା । ପ୍ରଚଳିତ ବ୍ରାହ୍ମଣବାଦ ପୁରୋହିତବାଦ ବିରୁଦ୍ଧରେ ବିଦ୍ରୋହ ହେଉଛି ବୌଦ୍ଧଧର୍ମ । ମୋର ମନେ ପଡୁଛି । ଥରେ ଓଡ଼ିଶା ରାଜଭବନରେ ସବା ଉପର ମହଲାରେ, ରାଜ୍ୟପାଳଙ୍କ ପାଇଁ ନିର୍ଦ୍ଦିଷ୍ଟିକୃତ ବାରଣ୍ଡାରେ ଓଡ଼ିଶାର ତତ୍‌କାଳୀନ ରାଜ୍ୟପାଳ ଶ୍ରୀ ଜଟ୍ଟି, 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥ ଏବଂ ମୁଁ ବସିଥିଲୁ । ସଂଧ୍ୟା ହୋଇଯାଇଥିଲା ଏବଂ ସମଗ୍ର ଭୁବନେଶ୍ୱର ସହର ଆଲୋକମାଳାରେ ଉଦ୍‌ଭାସିତ ହୋଇ ଉଠିଥିଲା । ଏହା ସାଧାରଣ ଆଲୋକ ନୁହେଁ । ସେଇଟା ଥିଲା ପାଂଜି ଅନୁଯାୟୀ ବିବାହ, ବ୍ରତର ସମୟ । ଶହଶହ ବିବାହ ବ୍ରତ ପାଇଁ ଆଲୋକ ସଜ୍ଜା ହୋଇଥିଲା ଭୁବନେଶ୍ୱରରେ ସର୍ବତ୍ର । ସେଇ ସମୟରେ ରାଜ୍ୟପାଳଙ୍କ ଶାସନ ଏବଂ ବିଦ୍ୟୁତ ସଂକଟର ସମୟ । ରାଜ୍ୟପାଳ ହୁକୁମନାମା ଜାରି କରିଛନ୍ତି– ବିଦ୍ୟୁତ ବ୍ୟବହାରକୁ

Digitized by srujan ka@gmail.com

କମାଇବା ପାଇଁ । ସେଇକଥା ଉପରେ ଆଲୋଚନା ସହିତ, ମୁଁ ତାଙ୍କୁ ହଠାତ୍ ପଚାରିଦେଲି ଯେ ବର୍ତ୍ତମାନ ତ ଆପଣଙ୍କର ଶାସନ । ବିଦ୍ୟୁତ ସଂକଟ ଲାଗି ରହିଛି । ଆପଣ ଦେଖୁଛନ୍ତି ବିଦ୍ୟୁତ ଶକ୍ତିର ଅପବ୍ୟବହାର । ଗୋଟାଏ କିଛି ଆଖିଦୃଶିଆ ପଦକ୍ଷେପ ନେଉନାହାନ୍ତି କେମିତି ? ସେ ପ୍ରଶ୍ନର ଉତ୍ତର ଦେବେ କଣ, ମୋର ସାଧାରଣ ଜ୍ଞାନ ପରୀକ୍ଷା କଲାଭଳି ପ୍ରଶ୍ନ କଲେ– ଆଚ୍ଛା, ଗିରିଜା ଭୂଷଣଜୀ, ଆପଣ କହିପାରିବେ– What is the difference between Hinduism, Buddhism and Christianity ? ହିନ୍ଦୁଧର୍ମ, ବୌଦ୍ଧଧର୍ମ ଓ ଖ୍ରୀଷ୍ଟିଆନ ଧର୍ମ ଭିତରେ ପାର୍ଥକ୍ୟ କଣ ? ଏ ସଂପର୍କରେ ବିବେକାନନ୍ଦଙ୍କ ଏକ ଆପ୍ତବାଣୀ ରହିଛି । Buddhism is the rebel child of Hinduism and Christianity is its distant thunder. ମୋ ପାଟିରୁ ଏତକ ବାକ୍ୟ ଶୁଣି ସେ ଖାଲି ତୃପ୍ତ ନୁହନ୍ତି, କିଛି ପରିମାଣରେ ଦ୍ରବୀଭୂତ । କଥାକୁ ବୁଲାଇ ସେ କହିଲେ ଯେ ମୁଁ ଏଇ ବିଦ୍ୟୁତର ଅପବ୍ୟବହାରକୁ ଦେଖୁଛି ଜଜ୍ ଭାବରେ, ଓଡ଼ିଶାର ରାଜ୍ୟପାଳ ଭାବରେ ନୁହେଁ । ମୋର ଉତ୍ତର ଥିଲା– ସେଇଟା ଦେଶର ଦୁର୍ଭାଗ୍ୟ ! ଆମର କଥା ସେତିକିରେ ଶେଷ ହୋଇଥିଲା ଏବଂ କଫି ସରିଯାଇଥିଲା କପ୍‌ରୁ ।

ରାଜ୍ୟପାଳ ଜଜ୍ ବେଶ୍ ବୁଦ୍ଧିମାନ କିନ୍ତୁ ତାଙ୍କର ବୁଦ୍ଧି ଗ୍ରାମ୍ୟ ଟାଉଟରମାନଙ୍କ ବୁଦ୍ଧିପଣ । ଉଚ୍ଚ ସ୍ତରର ବୁଦ୍ଧି ତାଙ୍କର ଥିଲା ଭଳି ମନେ ହୋଇନାହିଁ । ଓଡ଼ିଶାର ରାଜ୍ୟପାଳ ଭାବରେ ଦୁଇ ବିପରୀତ ଧରଣର ବ୍ୟକ୍ତି ରାଜ୍ୟପାଳ ହୋଇ ଆସିଛନ୍ତି ।

ସ୍ୱାଧୀନ ଭାରତର ପ୍ରଥମ ରାଜ୍ୟପାଳ ଚନ୍ଦୁଲାଲ୍ ମାଧବଲାଲ୍ ତ୍ରିବେଦୀ । ସେ ରାଜ୍ୟପାଳ ହେବା ପୂର୍ବରୁ ଦିଲ୍ଲୀ ଲାଲ୍‌କିଲ୍ଲାର ଗଭର୍ଣ୍ଣର ଥିଲେ ଏବଂ ବନ୍ଦୀ ସ୍ୱାଧୀନତା ସଂଗ୍ରାମୀ ବିଜୁ ପଟ୍ଟନାୟକଙ୍କୁ ତୃଷାର୍ତ୍ତ ରଖିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ଭିଜିଟ୍ କାଳରେ ବିଜୁ ପଟ୍ଟନାୟକ ତାଙ୍କୁ ପିଇବା ପାଣି ମାଗିବାରୁ ସେ ନିଜେ ପରିସ୍ରାକରି ତାଙ୍କୁ ପିଇବା ପାଇଁ ଦେଲେ । ''ସାଲେ କୋ ପିଛାପ କରକେ ପିନେକୋ ଦୋ ।''

ଏଭଳି ଜଣେ ବ୍ୟକ୍ତି ହେଲେ ସ୍ୱାଧୀନ ଭାରତରେ ଓଡ଼ିଶାର ରାଜ୍ୟପାଳ ଏବଂ ସେଇ ସମୟରେ ବିଜୁ ପଟ୍ଟନାୟକ ରାଜ୍ୟ ବିଧାନସଭାର ସଦସ୍ୟ ବି ଥିଲେ । କିମିତି ଏମାନଙ୍କୁ ସହ୍ୟ କରାଗଲା ? ଏ ପ୍ରଶ୍ନର ଉତ୍ତର ଖୋଜିବାକୁ ହେଲେ ବ୍ୟୁରୋକ୍ରାସି ବିରୁଦ୍ଧରେ ବିଷ ଉଦ୍‌ଗୀରଣ କରିଥିବା ଜବାହରଲାଲଙ୍କ ବ୍ରିଟିଶ ବ୍ୟୁରୋକ୍ରାସିର ଦକ୍ଷତା ଏବଂ ନିରପେକ୍ଷତା ପ୍ରତି ଦରଦରଂ ଇତିହାସ ଖୋଜିବାକୁ ପଡ଼େ ।

ଜବାହରଲାଲ ନେହେରୁଙ୍କର ସବୁଠାରୁ ପ୍ରିୟ ବ୍ୟୁରୋକ୍ରାଟ ଥିଲେ ଶ୍ରୀ ଏନ୍. ଆର୍. ପିଲାଇ, ଆଇ.ସି.ଏସ୍. । ସେ ଉକ୍ତ ପରୀକ୍ଷାରେ ପ୍ରଥମ ହୋଇଥିଲେ ଏବଂ ଦ୍ୱିତୀୟ ହୋଇଥିଲେ ଶ୍ରୀ କେ.ପି.ଏସ୍. ମେନନ୍ । ମେନନ୍ ପରବର୍ତ୍ତୀ କାଳରେ ରୁଷରେ ଭାରତର ରାଷ୍ଟ୍ରଦୂତ ହୋଇଥିଲେ ଏବଂ ଚାକିରିରୁ ଅବସର ନେଲାପରେ ଭାରତ-ସୋଭିଏଟ୍ ମୈତ୍ରୀ ସଂସଦର

Digitized by srujan ka@gmail.com

ସଭାପତି ହୋଇଥିଲେ । ତାଙ୍କର ସଭାପତିତ୍ୱ ସମୟରେ ଭାରତ-ସୋଭିଏଟ୍ ମୈତ୍ରୀ ଦୃଢ଼ୀଭୂତ ହୋଇଥିଲା ଏବଂ ଏହି ସୁଦୃଢ଼ତାର ରୂପାୟନ ହୋଇଥିଲା ଏକ ଐତିହାସିକ ଚୁକ୍ତିରେ ଯାହା 'କଟକ ଚୁକ୍ତି' ନାମରେ ଖ୍ୟାତ ଥିଲା । କାରଣ କଟକରେ ଭାରତ-ସୋଭିଏଟ୍ ମୈତ୍ରୀ ସଂସଦର ଜାତୀୟ ସମ୍ମିଳନୀରେ ଏହି ଚୁକ୍ତିରେ ଦସ୍ତଖତ କରିଥିଲେ ଉଭୟ ପକ୍ଷ ।

ଏହି ସମ୍ମିଳନୀରେ ଘଟିଥିବା କେତୋଟି ଘଟଣାର ସ୍ମୃତି ଆଜି ବି ହାବୁକା ମାରେ ମନରେ । ଏହି ସମ୍ମିଳନୀର ସାଂସ୍କୃତିକ କାର୍ଯ୍ୟକ୍ରମରେ ପ୍ରସିଦ୍ଧ ନର୍ତ୍ତକୀ ୰ ସଂଯୁକ୍ତା ପାଣିଗ୍ରାହୀ ଏବଂ କୁମ୍‌କୁମ ଦାସ (ବର୍ତ୍ତମାନ ଓଡ଼ିଶୀ ଗବେଷଣା କେନ୍ଦ୍ରର ଡାଇରେକ୍ଟର) ନୃତ୍ୟ ପରିବେଷଣ କଲେ ଗୁରୁ କେଳୁ ଚରଣ ମହାପାତ୍ରଙ୍କ ନେତୃତ୍ୱରେ । ସଂଯୁକ୍ତାର ନୃତ୍ୟ ଦେଖି କେ.ପି.ଏସ୍. ମେନନ୍ କହିଲେ "The dancer who danced tonight danced in my heart. She disturbed my thought and I confess that had I been twenty years younger she would have disturbed my sleep." ପାଖରେ ବସିଛନ୍ତି ତାଙ୍କର ଝିଅ ଶ୍ରୀମତୀ ନାୟାର । ସମସ୍ତେ ହସି ହସି ବେଦମ୍ । ଶ୍ରୀମତୀ ନାୟାରଙ୍କ ସମେତ ।

ସେଇବର୍ଷ ମେନନ୍ ଥାଆନ୍ତି ଭାରତୀୟ ସଂଗୀତ ନାଟକ ଏକାଡେମୀର ସଭାପତି । ଏକ ସାଂସ୍କୃତିକ ପ୍ରତିନିଧି ଦଳ ଯିବାର କଥା ସୋଭିଏଟ୍ ୟୁନିଅନ୍ । ସେ ମତଦେଲେ ସଂଯୁକ୍ତାଙ୍କର ଓଡ଼ିଶୀ ନାଚ ବିନା ଭାରତୀୟ ସଂସ୍କୃତିର ପ୍ରତିନିଧିତ୍ୱ ପୂର୍ଣ୍ଣାଙ୍ଗ ହୋଇ ପାରିବ ନାହିଁ । କିନ୍ତୁ ସମସ୍ୟା ଉପୁଜିଲା ସଂଖ୍ୟା ନେଇ । ଗୁରୁ କେଳୁଚରଣ ମତ ଦେଲେ ଯେ ସେ ନୃତ୍ୟର ନିର୍ଦ୍ଦେଶନା ସହିତ ପଖୋଜ ବଜାଇବେ ଏବଂ ଗୀତ ଗାଇବେ ରଘୁନାଥ ପାଣିଗ୍ରାହୀ । ଅନ୍ୟୂନ ତିନିଜଣ ନ ହେଲେ ତ ଠିକ୍ ଓଡ଼ିଶୀ ନାଚ ଜମିବ ନାଇଁ । ଭାରତବର୍ଷରୁ ସର୍ବମୋଟ ଯିବେ ସାତଜଣ । ସେଥିରେ ଓଡ଼ିଶାରୁ ତିନିଜଣ ?

ଆପତ୍ତି ଉଠିଥିଲା, କିନ୍ତୁ ମେନନ୍ ମତଦେଲେ ଯେ ଓଡ଼ିଶାରୁ ତିନିଜଣ ନିଶ୍ଚୟ ଯିବେ । ସଂଯୁକ୍ତା, ରଘୁନାଥ, ଗୁରୁ କେଳୁଚରଣ ମହାପାତ୍ରଙ୍କ ନେତୃତ୍ୱରେ ଗଲେ ସୋଭିଏଟ୍ ୟୁନିଅନ ଏବଂ ଫେରିଲେ ବିପୁଳ ଯଶ ନେଇ । ସଂଯୁକ୍ତା ଆଉ ପଛକୁ ଫେରି ଅନାଇ ନାହାନ୍ତି ତା'ପରେ ।

ସେ ପାଲଟିଗଲେ ଏକ ଇନଷ୍ଟିଚ୍ୟୁସନରେ, ଏକ ପରମ୍ପରାରେ । ତାଙ୍କର ପରଲୋକ ହୋଇଯାଇଛି କିଛି ବର୍ଷ ତଳେ । ମୋର ମନେ ପଡୁଚି, ସେ ଇଟାଲୀ ପରିଭ୍ରମଣରେ ଯାଉଥାନ୍ତି । ହଠାତ୍ ଦେଖାହେଲା ଓଡ଼ିଶା ନିବାସରେ । ସେଇଟା ଯେ ତାଙ୍କର ଶେଷ ବିଦେଶ ଯାତ୍ରା ତା' ମୋର ସ୍ୱପ୍ନରେ ମଧ ନ ଥିଲା । ସେ କିନ୍ତୁ ଭୁଲି ନ ଥିଲେ ତାଙ୍କର ପ୍ରଥମ ବିଦେଶ ଯାତ୍ରା କଥା । ମୋତେ କହିଲେ ଯେ "ଭାଇ, ମୁଁ ବହୁତ ଦେଶ ବୁଲିଛି । କିନ୍ତୁ ସେଦିନ ସୋଭିଏଟ୍ ୟୁନିଅନରେ ଯେଉଁ ଜନସମ୍ବର୍ଦ୍ଧନା ଆମେ ପାଇଥିଲୁ ସବୁଠାରେ ତା' ଆଉ କେଉଁଠି ମିଳିନାହିଁ ।" ଏଇ ଦୁରନ୍ତ ପ୍ରତିଭାର ବିଦାୟରେ ଆମର କଳାସଂସ୍କୃତିର ଯେଉଁ କ୍ଷତି ହୋଇଛି ତାହା ପୂରଣ ହେବା ପାଇଁ

Digitized by srujan ka@gmail.com

ବହୁ ସମୟ ଲାଗିବ । କେଳୁବାବୁ ଏବଂ ରଘୁନାଥଙ୍କ ସହିତ ପରିଚୟ ସେଇ ଦିନରୁ ନିବିଡ଼ ଏବଂ ଉଷ୍ଣ ରହିଛି । ପରେ କେଳୁବାବୁଙ୍କ ପୁଅ ମୋର ଏକ ଆତ୍ମୀୟାକୁ ବିବାହ କରିଛି ।

ଏନ୍.ଆର୍.ପିଲାଇ ଟିପିକାଲ ବ୍ୟୁରୋକ୍ରାଟ । ଜବାହରଲାଲଙ୍କ ଉଇଲରେ ଦୁଇଜଣ ସାକ୍ଷୀ ଥିଲେ । ଜଣେ କୈଳାଶନାଥ କାଟ୍‌ଜୁ ଏବଂ ଆଉଜଣେ ଏନ୍.ଆର୍. ପିଲାଇ । କୁହାଯାଏ ଯେ ଏନ୍.ଆର. ପିଲାଇଙ୍କ ସହିତ ତାଙ୍କ ସ୍ତ୍ରୀଙ୍କର ଆଦୌ ପଡ଼ୁ ନ ଥିଲା । ଏହା ସତ୍ତ୍ୱେ ସେମାନେ ଡାଇଭର୍ସ କରି ନ ଥିଲେ । ରହୁଥିଲେ ଗୋଟାଏ ଘରେ, ଭିନ୍ନ କୋଠରୀରେ । ସବୁ ସ୍ଥାନକୁ ଯାଇଛନ୍ତି ଦୁଇଜଣ ଯାକ, ଭୋଜୀ, ସମ୍ବର୍ଦ୍ଧନା ପ୍ରଭୃତିକୁ । କିନ୍ତୁ ଦୁଇଜଣଯାକ ପରସ୍ପର ସହିତ କଥାବାର୍ତ୍ତା କରି ନାହାନ୍ତି । ଦୁଇଜଣଙ୍କର ଜୀବନ ସ୍ୱତନ୍ତ୍ର ଭାବରେ କଟିଛି ।

ଏନ୍.ଆର୍. ପିଲାଇଙ୍କର ଥରେ ଜବାହରଲାଲଙ୍କ ସହିତ କ'ଣ ଗୋଟାଏ କଥାରେ ଭୀଷଣ ଯୁକ୍ତି ହେଲା । ରାଗରେ ଜବାହରଲାଲ ଟେବୁଲ ଉପରେ ବିଧାମାରି ତାଙ୍କର କଥାର ଯଥାର୍ଥତା ଉପରେ ଜିଦ୍ ଧରିଲେ । ଟେବୁଲଟା ଥରିଗଲା । ଏନ୍.ଆର. ଉତ୍ତର ଦେଲେ ଯେ ଏକ ଜବାହରଲାଲଙ୍କର ଏଇ କାର୍ଯ୍ୟ ଫଳରେ ଟେବୁଲଟା ଥରିଗଲା କିନ୍ତୁ ଭାରତର ପ୍ରଧାନମନ୍ତ୍ରୀ ଏଇପରି କାର୍ଯ୍ୟକଲେ ସମଗ୍ର ଦେଶ ଥରିଯିବ ।

ଏଇଥିରୁ ଜବାହରଲାଲଙ୍କ ଏଇ ତଥାକଥିତ ବ୍ୟୁରୋକ୍ରାଟମାନଙ୍କ ପ୍ରତି ଦରଦର କିଛି ପରିଚୟ ମିଳିପାରିବ ।

ଓଡ଼ିଶାର ଆଉଜଣେ ରାଜ୍ୟପାଳ ହେଲେ ଶ୍ରୀ ଆସଫ୍ ଅଲ୍ଲୀ । ବାଦ୍‌ଶାହା, ଆରିଷ୍ଟୋକ୍ରାଟ ଆସଫ୍ ଅଲ୍ଲୀଙ୍କ ସ୍ତ୍ରୀହେଉଛନ୍ତି ଭାରତଛାଡ଼ ଆନ୍ଦୋଳନର ମହାରଥୀ ସୋସାଲିଷ୍ଟ ପାର୍ଟିର ତ୍ରିମୂର୍ତ୍ତି ମଧ୍ୟରେ ଅନ୍ୟତମ ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲୀ । ଆସଫ୍ ଅଲ୍ଲୀ ଓ ଅରୁଣାଙ୍କ ମଧ୍ୟରେ ବୟସର ତାରତମ୍ୟ ବହୁତ ଥିଲା ଏବଂ ଆସଫ୍ ଅଲ୍ଲୀ ଥିଲେ ଟିପିକାଲ ବାଦଶାହ । ଆସଫ୍ ଅଲ୍ଲୀ ଏକ ଦିଗରେ ଯେପରି ରୋମାଣ୍ଟିକ ଅନ୍ୟ ଦିଗରେ ଠିକ୍ ସେଇପରି କଳାପ୍ରେମୀ ଏବଂ ଆରିଷ୍ଟୋକ୍ରାଟ୍ । ସବୁପ୍ରକାର ଡାଇଭର୍ସନ (diversion) ସତ୍ତ୍ୱେ ତାଙ୍କର ଅରୁଣାଙ୍କ ପ୍ରତି ଦରଦକୁ ଊଣା କରି ନ ଥିଲା । ଶୀତ ଦିନ । ମଧ୍ୟରାତ୍ରି ଅତିକ୍ରାନ୍ତ ହୋଇଛି । କଟକ ରେଳବାଇ ଷ୍ଟେସନ ସଂପୂର୍ଣ୍ଣ ଜନଶୂନ୍ୟ । କେବଳ ଦକ୍ଷିଣଗାମୀ କିଛି ଯାତ୍ରୀ ଷ୍ଟେସନରେ ଗାଡ଼ିକୁ ଅପେକ୍ଷା କରିଛନ୍ତି । ନିକାଞ୍ଚନ ରେଳବାଇ ପ୍ଲାଟଫର୍ମରେ ଜଣେ ବ୍ୟକ୍ତିଙ୍କୁ ପଦଚାରଣ କରି ଏପଟ ସେପଟ ବୁଲୁଥିବାର ଦେଖାଯାଉଥିଲା । ଦେହରେ ଖଦଡ଼ ସିଲ୍‌କର ଶେରୱାନୀ ପୋଷାକ । ବଟରଫ୍ଲାଇ ନିଶ । ହାତରେ ପାଇପ୍ । କିଏ ଯାଇ ଷ୍ଟେସନ ମାଷ୍ଟରଙ୍କୁ ଖବର ଦେଲା ଯେ ଗଭର୍ଣ୍ଣର ଆସଫ୍ ଅଲ୍ଲୀ ଷ୍ଟେସନରେ ବୁଲୁଛନ୍ତି । ଷ୍ଟେସନ ମାଷ୍ଟରଙ୍କ ଶୀତ ଛାଡ଼ିଗଲା । ସେ କଳାକୋଟ ପିନ୍ଧି ହାଜର ଷ୍ଟେସନରେ । Your Excellency, How can I help you ? ଉତ୍ତର ଆସିଲା—By minding your work or by going to sleep, if you have no work. ଷ୍ଟେସନ ମାଷ୍ଟର କିନ୍ତୁ

Digitized by srujan ka@gmail.com

ନଛୋଡ଼ବନ୍ଧା । ପରିଶେଷରେ ଉତ୍ତର ଆସିଲା– I am Asaf, not your Governor, waiting for my wife Aruna.

ଆସଫ୍ ଅଲ୍ଲୀ କଳାପ୍ରେମୀ । ସେତିକିବେଳେ ସ୍କୁଲରେ ପାଠ ପଢୁଥିବା ସୁନନ୍ଦା ପଟ୍ଟନାୟକ (ବୁଲୁ) ର ଗୀତ ତାଙ୍କୁ ମୁଗ୍ଧ କରିଥିଲା ଏବଂ ସେ ନିଜେ ହସ୍ତକ୍ଷେପ କରି ତା'ପାଇଁ ବୃତ୍ତିର ବ୍ୟବସ୍ଥା କରିଥିଲେ ପୁଣେରେ ପଢ଼ିବା ପାଇଁ । ଓଡ଼ିଶା ପାଇଁ ଏକ ପ୍ରତିଭାର ବିକାଶ ଦେଖିବା ସମ୍ଭବପର ହୋଇପାରି ଥିଲା । ଏହା ପୂର୍ବରୁ ସୁନନ୍ଦା କଲିକତାରେ ଦକ୍ଷିଣପୂର୍ବ ଏସିଆ ଯୁବ ସମ୍ମିଳନୀରେ ଉଦ୍‌ଯାପନ ଦିବସରେ ବିଶାଳ ଜନ ସମାବେଶରେ "ଏଇ ଅଂଧାରେ, ଆଗାମୀ କାଲିର ନୂତନ ସକାଳ ଶିଥିଳ ଫାଶରେ ବନ୍ଧାରେ" ଗୀତ ଗାଇ ଜନତାକୁ ସ୍ତବ୍ଧ କରି ଦେଇଥିଲେ ।

ଦକ୍ଷିଣ-ପୂର୍ବ ଏସିଆ ଯୁବ ସମ୍ମିଳନୀ ବସିଥିଲା କଲିକତାରେ । ପ୍ରଥମ ଦିନ ସହୀଦମାନଙ୍କ ପ୍ରତି ସମ୍ମାନ ଜଣାଇ ଆସିଥିବା ପ୍ରସ୍ତାବରେ ସୁଭାଷ ଚନ୍ଦ୍ର ବୋଷଙ୍କ ନାମ ଯୋଡ଼ିବାକୁ ଫରଓ୍ୱାର୍ଡ଼ ବ୍ଲକର ପ୍ରତିନିଧିମାନେ ଦାବୀ କରିଥିଲେ କିନ୍ତୁ ଦକ୍ଷିଣ-ପୂର୍ବ ଏସିଆର ବହୁ ଦେଶର ପ୍ରତିନିଧି ଏହାର ବିରୋଧ କରିଥିଲେ । ସେମାନଙ୍କର ଯୁକ୍ତି ଥିଲା ଯେ ସୁଭାଷ ଚନ୍ଦ୍ର ବୋଷ ଭାରତବର୍ଷ ପାଇଁ ଦେଶପ୍ରେମୀ ହୋଇପାରନ୍ତି କିନ୍ତୁ ଦକ୍ଷିଣ-ପୂର୍ବ ଏସିଆ ଦେଶମାନଙ୍କ ପାଇଁ ତାଙ୍କର କାର୍ଯ୍ୟ ଜାପାନୀ ଫାସିଷ୍ଟ ସୈନ୍ୟବାହିନୀର ଆଗଛାମୁଆ ବାହିନୀ (Pioneer Force) ଭଳି କାର୍ଯ୍ୟ ହୋଇଛି । ଏହାର ପ୍ରତିବାଦ କରି ସେମାନେ ସଭା ଛାଡ଼ି ଚାଲିଯାଇ ଥିଲେ ଏବଂ ସମ୍ମିଳନୀକୁ ଭଣ୍ଡୁର କରିବା ପାଇଁ ଧମକ ଦେଲେ । ସମ୍ମିଳନୀ ଚାଲିଲା ଅନ୍ୟ ସ୍ଥାନରେ ଏବଂ ସମ୍ମିଳନୀ ଶେଷରେ ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମ ହେବାର ଥିଲା ସେଇ ସାଂସ୍କୃତିକ କାର୍ଯ୍ୟକ୍ରମର ପ୍ରାରମ୍ଭରେ ବୈଦେଶିକ ପ୍ରତିନିଧିମାନଙ୍କୁ ମାରିବା ପାଇଁ ଷ୍ଟେନଗନରୁ ସେମାନେ ଗୁଳି ଚାଳନା କରିଥିଲେ ଏବଂ ବୈଦେଶିକ ପ୍ରତିନିଧିମାନଙ୍କୁ ରକ୍ଷାକରିବାକୁ ଯାଇ ତିନିଜଣ ଭାରତୀୟ ଯୁବକ ପ୍ରାଣବଳି ଦେଲେ । ତାହାରି ପ୍ରତିବାଦରେ ତା' ପରଦିନ ଆଜିର ସହୀଦମିନାର ଆଗରେ ବିଶାଳ ଜନସମାବେଶର ଆୟୋଜନ ହେଲା । ଲକ୍ଷ ଲକ୍ଷ ଲୋକ ସେ ସମାବେଶରେ ଯୋଗ ଦେଇଥିଲେ । ଏହା ଥିଲା ଆତତାୟୀମାନଙ୍କ ପାଇଁ ଏକ ଆହ୍ୱାନ । ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମ ପୂର୍ବରୁ ଗୁଳିଚାଳନା ହେଲା ସେଦିନର କାର୍ଯ୍ୟକ୍ରମକୁ ସଂକ୍ଷିପ୍ତ କରାଯାଇ ଥିଲା ଏବଂ ଓଡ଼ିଶାର କାର୍ଯ୍ୟକ୍ରମକୁ ବାଦ୍ ଦିଆଯାଇଥିଲା । ଓଡ଼ିଶା ପ୍ରତିନିଧି ଦଳର ନେତା ଶ୍ରୀ ମନମୋହନ ମିଶ୍ର ପ୍ରତିବାଦ କରିବାରୁ ସୁନନ୍ଦାଙ୍କୁ ସେଇ ଆହ୍ୱାନ ସମାବେଶରେ ଗାଇବାପାଇଁ ସୁଯୋଗ ଦିଆଯାଇ ଥିଲା । ସୁନନ୍ଦା ଓଡ଼ିଶାର ବିଶିଷ୍ଟ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କର କନ୍ୟା ଏବଂ ମୋର ଆତ୍ମୀୟା । ସଲ୍ଟ ଲେକରେ ଥିବା ତାଙ୍କ ଘରକୁ ମୁଁ ତାଙ୍କୁ ଭେଟିବାକୁ ଯାଇଥିଲି ଥରେ । ବାଟରେ ଜଣେ ବ୍ୟକ୍ତିଙ୍କୁ ପଚାରିବାରୁ ସେ କହିଲେ ଯେ "ଗାୟିକା ଆଛେନ୍ । ଗାନ୍

Digitized by srujan ka@gmail.com

ଶୋନାଯାଛିଲୋ ।'' ସୁନନ୍ଦା ପଟ୍ଟନାୟକ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଗାୟିକା ଏବଂ ତାଙ୍କର ଗୀତ ଶୁଣିବା ପାଇଁ ହଜାର ହଜାର ବ୍ୟକ୍ତିଙ୍କର ଭିଡ଼ ହୁଏ ।

ମୋର ମନେପଡ଼େ । ଆମ ଦ୍ୱାରା ଆୟୋଜିତ ଏକ ଆନ୍ତର୍ଜାତିକ ସେମିନାରରେ ଗୀତ ଗାଇବାକୁ ଆସିଥାଏ ସୁନନ୍ଦା । ସମ୍ମିଳନୀ ମଣ୍ଡପ ପାଖରେ ଠିଆ ହୋଇଥିଲେ କଟକର ତତ୍‌କାଳୀନ ଜିଲ୍ଲାପାଳ ଶ୍ରୀ ବିନୋଦ ଝା ଏବଂ ସେତେବେଳେ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗର ସେକ୍ରେଟେରୀ ଶ୍ରୀ ସୀତାକାନ୍ତ ମହାପାତ୍ର । ମୁଁ ସୁନନ୍ଦାକୁ ପରିଚୟ କରାଇଦେବା ପୂର୍ବରୁ ଶ୍ରୀ ବିନୋଦ ଝା କହିଲେ ମୁଁ ବିନୋଦ ଝା, ଆପଣଙ୍କର ଜଣେ ପ୍ରଶଂସକ । ଆପଣ ଆମ ଜିଲ୍ଲାକୁ ବହୁବାର ଆସିଛନ୍ତି, ଆପଣଙ୍କ ଗୀତ ଶୁଣିବା ପାଇଁ ହଜାର ହଜାର ଦର୍ଶକଙ୍କ ଭିତରେ ମୁଁ ଶୁଣିଛି ଆପଣଙ୍କର ଗୀତ । ସୀତାକାନ୍ତ ମୋ ଠାରୁ ବୟସରେ ସାନ ଏବଂ ମୋର ଜଣେ ଘନିଷ୍ଠ ବଂଧୁ । ତାଙ୍କୁ ମୁଁ ପରିଚୟ କରାଇଦେଲି ସୀତାକାନ୍ତଙ୍କ ସହିତ । ସୀତାକାନ୍ତଙ୍କୁ ସେ ଚିହ୍ନି ନ ଥିଲେ । ତମେ ଜଣେ ଶିଳ୍ପୀ, ତମେ ଏ ରାଜ୍ୟର ସଂସ୍କୃତି ସଚିବଙ୍କୁ ଚିହ୍ନି ନାହଁ । ଏହା ମୋ ପାଇଁ ଗର୍ବର ବିଷୟ । ସୀତାକାନ୍ତ ମଧ ହସି ହସି କହିଲେ ଯେ ଆପଣ ଏତେ ଉର୍ଦ୍ଧ୍ୱରେ ଯେ ଏକ ରାଜ୍ୟର ସଂସ୍କୃତି ବିଭାଗର ସଚିବଙ୍କୁ ଚିହ୍ନିବାର ଆବଶ୍ୟକତା ପଡ଼ିନାହିଁ ।

ଏ ସଂପର୍କରେ ମୋର ଆଉ ଏକ କାହାଣୀ ମନେପଡ଼େ । ଡକ୍ଟର କପିଳା ବାତ୍ସାୟନ ଆସିଥାନ୍ତି କୁମାରୀ ଆନାକ୍‌ଲଟ୍ ଏସ୍‌ମାନ୍‌ଙ୍କର ପ୍ରଥମ ସ୍ମାରକୀ ବକ୍ତୃତାମାଳା ପ୍ରଦାନ କରିବା ପାଇଁ । ସେ ଜଣେ ପ୍ରତିଭାଶାଳୀ ମହିଳା ଏବଂ ଐତିହାସିକ । କିନ୍ତୁ ତାଙ୍କର କ୍ଷମତା କେତେ ମୁଁ ଜାଣି ନ ଥିଲି । କେବଳ ଜାଣିଥିଲି ଯେ ସେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଖୁବ୍ ଘନିଷ୍ଠ । 'ସୂଚନା ଭବନ' ଭୁବନେଶ୍ୱରରେ ସଭା । ସଭା ଆରମ୍ଭ ହେବା ପୂର୍ବରୁ ଓଡ଼ିଶାର ଜଣେ ଶିଳ୍ପୀ ଚାହିଁଲେ ଯେ ସେ ଟିକିଏ ପରିଚିତା ହେବାକୁ ଚାହାନ୍ତି କପିଳାଙ୍କ ସହିତ । ମୋର ଏଥିରେ ଆପତ୍ତି କରିବାର କିଛି ନ ଥିଲା । ମୁଁ ଆଗ୍ରହରେ ତାଙ୍କୁ କପିଳାଙ୍କ ସହିତ ପରିଚିତ କରାଇଦେଲି । ତା'ପରେ ମୁଁ ଯାଏ କୁଆଡ଼େ ? ଜଣକ ପରେ ଜଣେ ଶିଳ୍ପୀ (ଉଭୟ ପୁରୁଷ ଓ ମହିଳା) ମୋ ଉପରେ ଅଭିମାନ ଏବଂ କ୍ରୋଧ ପ୍ରକାଶ କରିବାକୁ ଲାଗିଲେ । ଆପଣ ତାଙ୍କୁ ପରିଚିତ କରାଇଦେଲେ, ଅଥଚ ଆମେ ବାଦ ପଡ଼ିଗଲୁ । ଆମେ କଣ ଆପଣଙ୍କର ଆପଣାର ନୋହୁଁ ? କିଏ ମନା କରୁଚି ? ଜଣେ ଓଡ଼ିଆ ଶିଳ୍ପୀ ଚାହିଁଲେ ପରିଚିତ ହେବା ପାଇଁ, ମୁଁ ପରିଚିତ କରାଇଦେଲି । ତମେ ତ ଚାହିଁ ନାହଁ ! ଚାଲ ସମସ୍ତଙ୍କୁ ପରିଚୟ କରାଇଦେବି । ଉପସ୍ଥିତ ସମସ୍ତଙ୍କୁ ପରିଚୟ କରାଇଦେଲି । କପିଳା ଖୁସି, ଶିଳ୍ପୀମାନେ ବି । ଏତେ ବ୍ୟସ୍ତତାର କାରଣ ବୁଝୁ ବୁଝୁ ଜାଣିବାକୁ ପାଇଲି ଯେ କପିଳା ଖୁବ୍ ଶକ୍ତିଶାଳୀ ବ୍ୟକ୍ତି ଏବଂ ସେ ଚାହିଁଲେ ଯେକୌଣସି ଶିଳ୍ପୀକୁ ଆୱାର୍ଡ଼ ଦେଇ ପାରିବେ, ବିଦେଶ ଯିବାର ସୁଯୋଗ ବି ଦେଇପାରିବେ ।

Digitized by srujan ka@gmail.com

କପିଳାଙ୍କ ସହିତ ପୁଣି ସାକ୍ଷାତ ହୁଏ ଥରେ ଇନ୍ଦିରା ଗାନ୍ଧୀଙ୍କ ସହିତ ଭୁବନେଶ୍ୱର ରାଜଭବନରେ । 'ସମାଜ' ସଂପାଦକ ରାଧାନାଥ ରଥ, ଡକ୍ଟର ସଦାଶିବ ମିଶ୍ର, ସୀତାକାନ୍ତ ମହାପାତ୍ର ଏବଂ ମୁଁ ଭେଟୁଥାଉଁ ଇନ୍ଦିରା ଗାନ୍ଧୀଙ୍କୁ । ଆଗାମୀ ସମୟରେ ଏକ ଆନ୍ତର୍ଜାତିକ ସେମିନାର ଉଦ୍‌ଘାଟନ କରିବା ପାଇଁ ଆମେ ତାଙ୍କୁ ଅନୁରୋଧ ଜଣାଇବାକୁ ଯାଇଥିଲୁ । ସାଂଗରେ ନେଇଥିଲୁ 'ବୋଦ୍ଧଧର୍ମ ଓ ଜୈନଧର୍ମ' ଉପରେ ଆମଦ୍ୱାରା ପ୍ରକାଶିତ ବହି । ଇନ୍ଦିରା ଗାନ୍ଧୀ ସେ ବହିଟିକୁ ଦେଖି ଖୁସି ହେଲେ ଏବଂ ସେଥିରେ ଥିବା ଫଟୋଗୁଡ଼ିକୁ ତନ୍ନ ତନ୍ନ କରି ଦେଖିବାକୁ ଲାଗିଲେ । ମୋତେ ତାଙ୍କ ପାଖକୁ ଯାଇ ଫଟୋଗୁଡ଼ିକୁ ବୁଝାଇବାକୁ କହିଲେ । ତେଣୁ ସ୍ୱାଭାବିକ ଭାବରେ ମୁଁ ବସିଥିବା ଚଉକୀ ଟାଣିନେଇ ତାଙ୍କ ଆଗରେ ବସି ବୁଝାଇବାକୁ ଲାଗିଲି । ମୋତେ କି ମାଲୁମ ଯେ ଚଉକୀଗୁଡ଼ିକୁ ଏକ 'ନିରାପଦ ଦୂରତା'ରେ ରଖାଯାଇଛି ଏବଂ ତାକୁ ଲଂଘନ କରିବା 'ନିରାପତ୍ତା' ଦୃଷ୍ଟିରୁ ବେଆଇନ କାମ । ବର୍ତ୍ତମାନ ନିରାପତ୍ତା ବାହିନୀ ପାଇଁ ଏକ ସଂକଟ ଦେଖାଗଲା । ସେମାନେ କଣ କରିବେ ? ଏଣେ ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶ ଏବଂ ତେଣେ ତଥାକଥିତ ନିରାପତ୍ତାବଳୟ । ତେଣେ ଆଉ ଏକ ସମସ୍ୟା ଉପୁଜିଲାଣି । ସାକ୍ଷାତର ସମୟ ଅତିକ୍ରାନ୍ତ ହୋଇ ସାରିଲାଣି । ଆମ ପରେ ପରେ ସାକ୍ଷାତ କରିବା ପାଇଁ ଲମ୍ବା ତାଲିକା ରହିଛି । କିନ୍ତୁ ଇନ୍ଦିରା ଗାନ୍ଧୀ ଏତେ ନିବିଷ୍ଟ ଯେ ତାଙ୍କୁ ତାଙ୍କର ସହକାରୀମାନେ ମନା କରିପାରୁ ନାହାନ୍ତି । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବସିଛନ୍ତି ମଝିରେ । ସେ ବି କିଛି କହିପାରୁ ନାହାନ୍ତି, କଣ କହିବେ ଅବା ? ପରିଶେଷରେ ଇନ୍ଦିରା ଗାନ୍ଧୀ ବହିଟି ପାଇଁ ଧନ୍ୟବାଦ ଜଣାଇ କହିଲେ ଆଗାମୀ ସେମିନାର କେବେ ହେବ ? ଆରବର୍ଷ ବୋଲି କହିବାରୁ ଜାନକୀବାବୁ ବୋଧହୁଏ କଥାକୁ ସଂକ୍ଷିପ୍ତ କରିଦେବା ପାଇଁ କହିଲେ ଯେ ଓ ! ଗୋଟାଏ ବର୍ଷ ଅଛି ତ ! ସାଙ୍ଗେ ସାଙ୍ଗେ ଇନ୍ଦିରା ଗାନ୍ଧୀ ଉତ୍ତର ଦେଲେ ନା, ନା, ବର୍ଷକ ପୂର୍ବରୁ କରିବାରେ କିଛି କ୍ଷତି ନାହିଁ । ମୋ ପାଖରେ ଏକ ଜରୋରୀ ଗୁରୁତ୍ୱପୂର୍ଣ୍ଣ ନିମନ୍ତ୍ରଣ ରହିଛି ଦଶବର୍ଷ ଆଗକୁ ! କିନ୍ତୁ ଇନ୍ଦିରା ଗାନ୍ଧୀ ସେ ନିମନ୍ତ୍ରଣ ରକ୍ଷା କରିବା ପାଇଁ ରହିଲେ ନାହିଁ !

ସେତିକିବେଳେ କପିଳା ବାତ୍ସାୟନ ହଠାତ୍ ସେଠାରେ ପହଞ୍ଚିଲେ ଏବଂ ଓଡ଼ିଶାର ସାଂସ୍କୃତିକ ବିକାଶ ଲାଗି ସମ୍ଭାବ୍ୟ ପଦକ୍ଷେପ ସଂପର୍କରେ ଆଲୋଚନା କଲେ । ହଠାତ୍ ସେ କହିଲେ ଯେ ତାଙ୍କୁ ଏକ ପୁରୁଣା, ପ୍ରତ୍ୟାଖ୍ୟାତ ପ୍ରସ୍ତାବ ଦିଆଯାଇଛି, ଖଣ୍ଡଗିରି-ଉଦୟଗିରି, କୋଣାର୍କରେ ଲାଇଟ୍ ଆଣ୍ଡ ସାଉଣ୍ଡ (Light and Sound) ବା ସନ୍‌ଏଟ୍‌ଲୁମିୟେର୍ (Sun et lumiere)ର ଆୟୋଜନ କରିବା ପାଇଁ । ସେ କହିଲେ ଯେଉଁଠି ମନୁମେଣ୍ଟ ବା ସ୍ଥାପତ୍ୟକଳା ଅଛି ସେଠାରେ ଏ ପ୍ରକାର ଆୟୋଜନ ସେ ସ୍ଥାପତ୍ୟକଳାକୁ କ୍ଷତିଗ୍ରସ୍ତ କରୁଛି । ଲାଲକିଲ୍ଲା, ବାରବାଟୀ ଦୁର୍ଗ ପ୍ରଭୃତି ଯେଉଁ ସ୍ଥାନରେ କୌଣସି ସ୍ଥାପତ୍ୟକଳା ନାହିଁ ସେଠାରେ ଏହାର ବନ୍ଦୋବସ୍ତ କରାଯାଇ ପାରେ କିନ୍ତୁ କୋଣାର୍କ, ଖଣ୍ଡଗିରି-ଉଦୟଗିରିରେ ଏହା କରାଯିବା ଉଚିତ୍ ନୁହେଁ ।

Digitized by srujan ka@gmail.com

ଏହିଭଳି ଜଣେ ଗଭର୍ଣ୍ଣର ଥିଲେ ଐତିହାସିକ ଫଜଲ୍ ଅଲ୍ଲୀ । ଐତିହାସିକ ଅଧ୍ୟାପକ ଘନଶ୍ୟାମ ଦାସଙ୍କର ସେ ପାଲଟି ଯାଇଥିଲେ ନିବିଡ଼ ବନ୍ଧୁ । ଅଧ୍ୟାପକ ଘନଶ୍ୟାମ ଦାସ ଥିଲେ ଜଣେ ବାଦଶାହା ମନୋଭାବର ବ୍ୟକ୍ତି ।

ଅଧ୍ୟାପକ ଘନଶ୍ୟାମ ଦାସ ଥରେ ଏକ ସମ୍ମିଳନୀ ପାଇଁ ଆସିଥିବା ବୈଦେଶିକ ପ୍ରତିନିଧିମାନଙ୍କୁ ଡାକିଥିଲେ ତାଙ୍କ ଘରକୁ ଖାଇବାପାଇଁ ଏବଂ ସଂପୂର୍ଣ୍ଣ ଓଡ଼ିଶୀ ଖାଦ୍ୟ ସେମାନଙ୍କ ପାଇଁ ବଢ଼ାଯାଇଥିଲା । ଅନେକ ଲୋକଙ୍କର ଧାରଣା ଯେ ବୈଦେଶିକମାନେ ଅନ୍ୟଦେଶର ଖାଦ୍ୟ ଖାଇବାକୁ ପସନ୍ଦ କରନ୍ତି ନାହିଁ । କିନ୍ତୁ ତାହା ସଂପୂର୍ଣ୍ଣ ମିଛ । ରାଗ ଓ ଆଦୌ ଲଙ୍କା ନ ଦେଲେ ଏବଂ କିଛି ମସଲା ଦେଲେ ସେମାନେ ଖାଆନ୍ତି ବେଶ୍ ତୃପ୍ତିର ସହିତ ।

ମୋର ମନେ ପଡୁଛି ଅଧ୍ୟାପକ ଏକଷ୍ଟ୍ରାଣ୍ଡଙ୍କ କଥା । ସେ ଏବଂ ତାଙ୍କ ସ୍ତ୍ରୀ ଆସିଥିଲେ ଓଡ଼ିଶାକୁ– ଭାରତୀୟ-ଯୁଗ୍ମ ପରିବାର ସଂପର୍କରେ ଗବେଷଣା କରିବାପାଇଁ । ଭାରତୀୟ ଯୁଗ୍ମ ପରିବାର ସେମାନଙ୍କୁ ମୁଗ୍ଧ କରିଥିଲା । ତିନି, ଚାରି ପୁରୁଷ ଧରି  ଲୋକେ କିପରି ଏକାଠି, ଏକାନ୍ନବର୍ତ୍ତୀ ହୋଇ ରହିପାରନ୍ତି ତାହା ସେମାନେ ବିଶ୍ୱାସ କରିବା ସମ୍ଭବ ହେଉ ନ ଥିଲା ।

ମନସ୍ତତ୍ତ୍ୱବିଦ୍ ଅଧ୍ୟାପକ ରାଧାନାଥ ରଥ ସେମାନଙ୍କୁ ମୋ ସହିତ ଏବଂ ୟୁନିଭର୍ସ ସହିତ ପରିଚିତ କରାଇ ଦିଅନ୍ତି । ଅଧ୍ୟାପକ ଏକ୍‌ଷ୍ଟ୍ରାଣ୍ଡ ଏବଂ ତାଙ୍କ ସ୍ତ୍ରୀ ଗୁଡ୍ରୁମ୍ ୟୁନିଭର୍ସର ଗେଷ୍ଟ ହାଉସରେ ରହି ଗବେଷଣା କରନ୍ତି ଏବଂ ସମାଜର ବିଭିନ୍ନ ଶ୍ରେଣୀର ବ୍ୟକ୍ତିମାନଙ୍କୁ ଇଣ୍ଟରଭିଉ କରନ୍ତି । ପ୍ରତିବର୍ଷ ସେ ନିଶ୍ଚୟ ଥରେ ଆସନ୍ତି ଏବଂ ଦୁଇମାସ ରହନ୍ତି ।

ଥରେ ସେମାନେ ହଠାତ୍ ପଚାରିଲେ " Is.......still married to her husband........" । ମୁଁ ଆଶ୍ଚର୍ଯ୍ୟ ହୋଇ ଅନେଇଲି । କଣ ହେଲାକି ତାଙ୍କର, କିଛି ତ ଘଟିନାହିଁ ସେମାନଙ୍କର ! ଆଉ ସ୍ତ୍ରୀ ଏବଂ ସ୍ୱାମୀ କଣ ପ୍ରତିବର୍ଷ ବଦଳାଯାଏ ନା କଣ ?

ସେ କହିଲେ ଯେ ତାଙ୍କର ଝିଅ ବା ଝିଆରୀ (ମନେପଡୁନି) ଯାହାର ବୟସ ମାତ୍ର ଅଠର କୋଡ଼ିଏ ବର୍ଷ, ସେ ଏଇ ଭିତରେ ଦୁଇ ତିନି ଜଣ ସ୍ୱାମୀ ବଦଳାଇ ସାରିଲାଣି । ଆମ ଦେଶରେ ଅର୍ଥାତ ସୁଇଡେନରେ ତ ପ୍ରାୟ କେହି ବିବାହ କରନ୍ତି ନାହିଁ । ବିବାହ କଲେ ଟିକସ ପଡ଼ିବ । ଆଉ ତା' ଛଡ଼ା ପିଲାଛୁଆ ତ ପ୍ରାୟ ଦରକାର ପଡ଼େନି, ତେଣୁ Boy friend ବା Best friend ସବୁ ଚଳିଯାଏ ।

ଅଧ୍ୟାପକ ଏକ୍‌ଷ୍ଟ୍ରାଣ୍ଡ ଦୁଇଚାରି ବର୍ଷ ଆସିଲେ ନିୟମିତ ଭାବରେ । ସାଙ୍ଗରେ ପତ୍ନୀ ଗୁଡ୍ରୁମ । ଓଡ଼ିଶାର ବିଭିନ୍ନ ବ୍ୟକ୍ତିଙ୍କୁ ସେ ଇଣ୍ଟରଭିଉ କରନ୍ତି କିନ୍ତୁ ଓଡ଼ିଶୀ ଖାଦ୍ୟ ଖାଇ ନ ଥିଲେ । ତାଙ୍କୁ ଥରେ ଆମେ ଡାକିଥିଲୁ ଆମଘରେ ଖାଇବା ପାଇଁ । ବିଜୁଳି ଆଲୁଅ ଲିଭାଇ ଦିଆଯାଇଥିଲା । ଜଳୁଥିଲା ଦୀପ,ତାଙ୍କର ଗୋଡ଼ ଧୋଇଦିଆଗଲା ପିଢ଼ା ଉପରେ । କଦଳୀ ପତ୍ରରେ ଖେଚେଡ଼ି, ଆମ୍ବଖଟା, ସନ୍ତୁଳା, ମାଛ ବେସର ପ୍ରଭୃତି ଖାଇବାକୁ ଦିଆଯାଇଥିଲା ।

Digitized by srujan ka@gmail.com

ସେମାନେ ଖାଲି ଏହି ଭୋଜନରେ ତୃପ୍ତ ହେଲେନାହିଁ, ଏହା ତାଙ୍କ ଦେଶରେ ମଧ୍ୟ ପ୍ରକାଶିତ କଲେ ବିଭିନ୍ନ ଖବର କାଗଜରେ ଏବଂ ଗବେଷଣା ନିବନ୍ଧରେ ।

ଓଡ଼ିଶା ରାଜ୍ୟ ପର୍ଯ୍ୟଟନ କର୍ପୋରେଶନରେ ମୁଁ ଡାଇରେକ୍ଟର ଥିଲାବେଳେ ଆମେ ଏଇପରି ଖାଦ୍ୟ କରିବାର ଆୟୋଜନ ଆରମ୍ଭ କରିଥିଲୁ । ଏହା ବେଶ୍ ଆଦୃତ ହେବାକୁ ଆରମ୍ଭ କରିଥିଲା । ସାମସୁଦ୍ଦିନ ମହମ୍ମଦ ଘନି ଏହାର ଦାୟିତ୍ୱରେ ଥିଲେ । ଏଭଳି ଖାଦ୍ୟ ଆୟୋଜନ କରିବା ପାଇଁ ପରିଶ୍ରମ, ବୁଦ୍ଧି ଏବଂ ସୃଜନଶୀଳତା ଆବଶ୍ୟକ । ଜନପ୍ରିୟତା ସତ୍ତ୍ୱେ ଏହା ବନ୍ଦ ହୋଇଗଲା ସରକାରୀ କଳ ଯୋଗୁଁ ।

ଯୁଗ୍ମ ପରିବାର ପ୍ରତି ଆଗ୍ରହୀ ଏକ୍‌ଷ୍ଟ୍ରାଣ୍ଡ ଆଉ ପରବର୍ତ୍ତୀ କାଳରେ ଓଡ଼ିଶା ଆସିଲେ ବି ଆମ ସହିତ ସଂଯୋଗ ସ୍ଥାପନ କରିବାକୁ ଆଗ୍ରହୀ ହେଲେ ନାହିଁ । ସେ ତାଙ୍କର ନିଜସ୍ୱ ଗବେଷଣା ଛାଡ଼ି ହଠାତ୍ ସିଡ଼ା (SIDA)ରେ ଯୋଗଦେଇ ଭୁବନେଶ୍ୱରରେ ଅବସ୍ଥାପିତ ହେଲେ । କିନ୍ତୁ ତାଙ୍କର କାର୍ଯ୍ୟକାଳ ହଠାତ୍ ପୂରିଗଲା ଏବଂ ତାଙ୍କୁ ସୁଇଡେନ ଫେରି ଯିବାକୁ କୁହାଗଲା । ସେ ତାଙ୍କର ସ୍ତ୍ରୀ ଗୁଡ୍ରୁମଙ୍କୁ ଛାଡ଼ପତ୍ର ଦେଇ ମୋର ବଂଧୁ ୰ଅବନୀ ରାୟଙ୍କ ଭଗ୍ନୀ ଅଧ୍ୟାପିକା ରୀତା ରାୟଙ୍କୁ ବିବାହ କରି ଭୁବନେଶ୍ୱରରେ ଅବସ୍ଥାପିତ । ତାଙ୍କର ସ୍ତ୍ରୀଙ୍କଠାରୁ ଏକ କରୁଣ ଚିଠି ପାଇଥିଲି । 'ସୋଡା' ସ୍ୱେଚ୍ଛାସେବୀ ଅନୁଷ୍ଠାନର ପ୍ରତିଷ୍ଠାତା ଶ୍ରୀ ଶାନ୍ତିରଂଜନ ବେହେରା ସୁଇଡେନ ଯାଇ ଉକ୍ତ ଦଂପତିଙ୍କର ଅତିଥି ହୋଇଥିଲେ ଏବଂ ଆମ ସହିତ ସଂପର୍କ ତୁଟିଯିବା ପରେ ଅଧ୍ୟାପକ ଏକ୍‌ଷ୍ଟ୍ରାଣ୍ଡ ଶାନ୍ତିରଂଜନଙ୍କ ସହ ସଂପର୍କ ରଖିଥିଲେ । ହଠାତ୍ ଦିନେ ଶାନ୍ତିରଂଜନ ହିଁ ମୋତେ ଏସବୁ ଖବର ଦେଲେ ଏବଂ ମୁଁ ଅଧ୍ୟାପକ ଏକ୍‌ଷ୍ଟ୍ରାଣ୍ଡ ଭୁବନେଶ୍ୱରରେ ଅଛନ୍ତି ବୋଲି ଜାଣି ତାଙ୍କୁ ଫୋନ କଲି । ସେ ବ୍ୟସ୍ତ ଅଛନ୍ତି, ପରେ ଫୋନ କରିବେ ବୋଲି ତାଙ୍କ ସେକ୍ରେଟେରୀ କହିଲେ । ସିଡ଼ାରୁ ବିଦାହେବା ପର୍ଯ୍ୟନ୍ତ ସେ ମୋତେ ଆଉ ଫୋନ କରିନାହାନ୍ତି କି ତାଙ୍କ ସଂପର୍କରେ କିଛି କଥା ମୁଁ ଜାଣି ନ ଥିଲି । କିନ୍ତୁ ସେ ଅନ୍ୟମାନଙ୍କୁ କହିବାର ଶୁଣିଲି ଯେ ମୁଁ କୁଆଡ଼େ ଖୁବ୍ ଅଳସୁଆ ଲୋକ । କିଛି କାମ କରେ ନାହିଁ । ତେଣୁ ଆର୍ଥିକ ସାହାଯ୍ୟ ପାଇଁ ତାଙ୍କୁ ବାରମ୍ବାର ନିବେଦନ କରିଥିଲି । ବିଚରା ଅଧ୍ୟାପକ, ଗବେଷଣାର କୂଳ କିନାରା ନ ପାଇ ବୁଲୁଥିଲା, ତାଙ୍କୁ ଧରି ମୁଁ ରିକ୍ସାବାଲାଠାରୁ ଆରମ୍ଭ କରି ମନ୍ତ୍ରୀ ପର୍ଯ୍ୟନ୍ତ ଭେଟିଛି । ସେ ସୁଇଡେନ ଫେରିଲାବେଳକୁ ତାଙ୍କ ପୁରୁଣା ଟାଇପ ରାଇଟର ମୁଁ କିଣିଛି, ସେ ମାଗିଥିବା ଦାମରେ । ସେ ମୋତେ ଦାନ ଦେଇ ନାହାନ୍ତି । ନିଜଘର ସମେତ ବିଭିନ୍ନ ବ୍ୟକ୍ତିଙ୍କ ଘରେ ତାଙ୍କପାଇଁ ଅଭ୍ୟର୍ଥନାର ଆୟୋଜନ କରିଛି ।

ତାଙ୍କର ଉକ୍ତି ଶୁଣି ମୋର ମନେପଡ଼ିଲା ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ କଥା । ଥରେ ଜଣେ କିଏ ଯାଇ ତାଙ୍କୁ କହିଲା ଯେ ଜଣେ ବ୍ୟକ୍ତି ତାଙ୍କୁ ବହୁତ ଗାଳି ଦେଉଛନ୍ତି । ବିଦ୍ୟାସାଗର ମନେପକାଇବାକୁ ଚେଷ୍ଟାକଲେ ଏବଂ କହିଲେ ଯେ ମୁଁ ତାଙ୍କର କେବେ ଉପକାର କରିନାହିଁ । ସେ ମୋତେ ଗାଳି ଦେବାର କୌଣସି କାରଣ ନାହିଁ ।

Digitized by srujan ka@gmail.com

ଭାରତୀୟ ଯୁଗ୍ମ ପରିବାର ସଂପର୍କରେ ଗବେଷଣା କରିଥିବା ଏବଂ ଏକପତ୍ନୀତ୍ୱ ତଥା ପୁରୁଷ ପୁରୁଷ ଧରି ଏକାନ୍ନବର୍ତ୍ତୀ ହୋଇ ରହିଥିବା ପରିବାର ସଂପର୍କରେ ମୁଗ୍ଧ ଅଧ୍ୟାପକ ଏକ୍‌ଷ୍ଟ୍ରାଣ୍ଡ ବା ତାଙ୍କର ପ୍ରଥମ ପତ୍ନୀ ଗୁଡ୍‌ରୁମଙ୍କ ସହିତ ଆମର ଆଉ ପରେ କୌଣସି ସଂପର୍କ ନାହିଁ ।

ଇମିତି ବି ହୁଏ । ରାଞ୍ଚିରେ ଏକ ଲୁନାଟିକ ଆସାଇଲାମ୍ ବା ପାଗଳମାନଙ୍କ ପାଇଁ ଡାକ୍ତରଖାନା ଅଛି । ଏକଦା ଏହା ଭାରତବର୍ଷର ଏକମାତ୍ର ପାଗଳା ଗାରଦ ଥିଲା । ଏଠାରେ ଜଣେ ମୁଖ୍ୟ ଚିକିତ୍ସକ ଥିଲେ । ପାଗଳମାନଙ୍କ ଚିକିତ୍ସା କ୍ଷେତ୍ରରେ ତାଙ୍କର ବ୍ୟୁତ୍ପତ୍ତି ଥିଲା ବହୁତ । ବହୁବର୍ଷ ଧରି ସେ ପାଗଳମାନଙ୍କ ଗହଣରେ ରହି ଆସିଥିଲେ ଏବଂ ସେମାନଙ୍କର ଚିକିତ୍ସା କରୁଥିଲେ । ହଠାତ୍ ସେ ଦିନେ ନିଜେ ପାଗଳ ହୋଇଗଲେ ଏବଂ ଡାକ୍ତର ରୋଗୀ ପାଲଟି ଗଲେ ।

ଅଧ୍ୟାପକ ଏକ୍‌ଷ୍ଟ୍ରାଣ୍ଡଙ୍କର ସେଇ ଅବସ୍ଥା ହେଲା କି ? ମିଳିତ ବା ଯୁଗ୍ମ ପରିବାର ଏକ ବିରାଟ ସାମାଜିକ ଇନସୁରାନ୍ସ । ଜଣେ ଲୋକର ବେମାର ବା ମୃତ୍ୟୁ ପରିବାରର ଖୁବବେଶି କ୍ଷତି କରିପାରେ ନାହିଁ । ଅନ୍ୟମାନେ ତାକୁ ସମ୍ଭାଳି ନିଅନ୍ତି । ସେଥିରେ ଅନେକ ତୃପ୍ତି ଅଛି ତ୍ୟାଗ ମଧ୍ୟ ଅଛି । ବିଶେଷତଃ ବାପା ମା' ବିହୀନ ମିଳିତ ପରିବାରରେ ବଡ଼ଭାଇ ଏବଂ ବଡ଼ବୋହୂର ଦାୟିତ୍ୱ ଅସୀମ । ଏବଂ ସେମାନଙ୍କ ଉପରେ ମିଳିତ ପରିବାରର ଦୃଢ଼ତା ନିର୍ଭର କରେ । ଅନେକ ଯୁଗ୍ମ ପରିବାରରେ ବଡ଼ଭାଇ ଓ ବଡ଼ବୋହୂ ଉପରେ ସବୁ ଭାଇମାନଙ୍କର, ପିଲାମାନଙ୍କର ଅର୍ଦ୍ଧଳି, ଜିଗର ସବୁ । ଗୋଟିକିଆ ପରିବାରରେ ଅନେକ ମୁକ୍ତ ବାୟୁମଣ୍ଡଳ ରହିଛି । ଉପଭୋଗ ସୀମା ବ୍ୟାପକ, 'ଅହଂ' ବା 'ମୋର'ର ମଉଜ କିଛି କମ ନୁହେଁ, ବିଶେଷତଃ ବଡ଼ ଲୋକ ହୋଇଥିଲେ ।

ଏକଷ୍ଟ୍ରାଣ୍ଡ କଣ ସେହି ଅନୁସନ୍ଧାନ ଭିତରେ ଏଇଭଳି ଆକ୍ରାନ୍ତ ହୋଇ ପଡ଼ିଲେ କି ? କିନ୍ତୁ ସୁଇଡେନରେ ତାଙ୍କର ପରିବାର ତ ଏକକ ପରିବାର । କିଏ କହିବ ମଣିଷର କେଉଁ ସୂକ୍ଷ୍ମତନ୍ତ୍ରୀରେ କଣ ଆଘାତ ହେଲା ?

କେଉଁ ସୂକ୍ଷ୍ମ ତନ୍ତ୍ରୀରେ ଆଘାତ ଯୋଗୁଁ ରତ୍ନାକର ବାଲ୍ମୀକି ପାଲଟିଲେ, ରାଜକୁମାର ଗୌତମ ବୁଦ୍ଧ ପାଲଟିଲେ ? ସ୍ତ୍ରୈଣ, କାମୁକ ତୁଳସୀ ଦାସ ସନ୍ଥ ଓ କବି ପାଲଟିଲେ କିଏ କହିବ ? ଏପଟ ଯେପରି ଆରପଟ ବି ସେଇପରି, ଭଲ ପିଲା ଦଣ୍ଡା ବାଳୁଙ୍ଗା ପାଲଟିବା, ଖେଚଡ଼ ପିଲା ସୁଧାର ପାଲଟିବାର ଉଦାହରଣ କିଛି କମ ନୁହେଁ ।

ଓଡ଼ିଶାର ରାଜ୍ୟପାଳମାନଙ୍କ ମଧ୍ୟରେ ଜଣେ ହେଉଛନ୍ତି ଆକବର ଅଲ୍ଲୀ ଖାଁ । ଜାତୀୟବାଦୀ ମୁସଲିମ୍ ନେତା, ଏକ ସ୍ୱଚ୍ଛଳ ନବାବ ପରିବାରର । ଭାରତବର୍ଷକୁ ବିଭକ୍ତ କରିବାର ପ୍ରଚଣ୍ଡ ବିରୋଧୀ ଆକବର ଅଲ୍ଲୀ ଅନୁରୂପ କାରଣରୁ ପ୍ରଚଣ୍ଡ ମହମ୍ମଦ ଅଲ୍ଲୀ ଜିନ୍ନା ବିରୋଧୀ, ମୁସଲିମ୍ ଲିଗ୍ ବିରୋଧୀ ।

Digitized by srujan ka@gmail.com

ସେତେବେଳେ ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ରାଜ୍ୟପାଳ ପ୍ରତିଦିନ ପ୍ରାତଃ ଭ୍ରମଣରେ ଯାଆନ୍ତି ରାଜଭବନରୁ ବାହାରି ଏକାକୀ ରାଜରାସ୍ତା ଉପରେ । ସେତେବେଳେ ଭୁବନେଶ୍ୱରରେ ଏତେ ଭିଡ଼ ବି ନ ଥିଲା ରାଜରାସ୍ତା ଉପରେ, ବିଶେଷତଃ ବଡ଼ି ସକାଳୁ । ମୁଁ ସେତେବେଳେ କିଛି ସମୟ ଭୁବନେଶ୍ୱରରେ ରହୁଥିଲି । ତାଙ୍କୁ ରାଜପଥ ଉପରେ ଏକୁଟିଆ ଦେଖି ଆଶ୍ଚର୍ଯ୍ୟ ହେଲି ଏବଂ ନମସ୍କାର କଲି । ସେ ମୋତେ ଜାଣିଥିଲେ ଏବଂ ଆମେ ଗପି ଗପି ଚାଲିଲୁ ରାସ୍ତାରେ । ହଠାତ୍ ସେ ପଛକୁଅନାଇ ଦେଖନ୍ତି ଯେ ଜଣେ କିଏ ତାଙ୍କୁ ଅନୁସରଣ କରୁଛି । ସେ ଇଂଗିତ ଦେଇ ତାଙ୍କୁ ଡାକିଲେ ଏବଂ ପଚାରିଲେ ପରିଚୟ । କାକୁସ୍ଥ ବିଚାରା ପୋଲିସ ଅଫିସର ବାଧ ହୋଇ ନିଜର ପରିଚୟ ଦେଲେ ଏବଂ କହିଲେ ସେ ରାଜ୍ୟପାଳଙ୍କ ନିରାପତ୍ତା ପାଇଁ ଉଦ୍ଦିଷ୍ଟ । ହସି ଦେଇ, ଆକ୍‌ବର ଅଲ୍ଲୀ ଖାଁ କହିଲେ ଯେ ଆରେ, ଏଇ ବୁଢ଼ାକୁ କିଏ ମାରିବ ? ଯା' ସେଇଠି ଅଛି ଯେଉଁ 'ଖତରନାକ୍ ଲଡ଼କି' ନନ୍ଦିନୀ ଶତପଥୀ ହମାରା ମୁଖ୍ୟମନ୍ତ୍ରୀ, ତାକୁ ଜଗିବୁ ।

ଆକବର ଅଲ୍ଲୀ ଖାଁଙ୍କ ସହିତ ନନ୍ଦିନୀ ଦେବୀଙ୍କ ପଡ଼ିଲା ନାହିଁ ଏବଂ ତାଙ୍କୁ ରାଜ୍ୟପାଳ ପଦରୁ ବିଦାୟ ନେବାକୁ ପଡ଼ିଲା । କିନ୍ତୁ ସେ କହିଲେ ଯେ ଚାନ୍‌ସେଲର ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟର ନବନିର୍ମିତ ଲାଇବ୍ରେରୀର ଗୃହର ଉନ୍ମୋଚନ ଚାବିକୁ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ନ ଦେଲା ପର୍ଯ୍ୟନ୍ତ ସେ ଯାଉ ନାହାନ୍ତି । ସତକୁ ସତ ସେଇଆ ହେଲା । ଲାଇବ୍ରେରୀ ଉନ୍ମୋଚନ ତାଙ୍କର ଥିଲା ଶେଷ ଅଫିସିଆଲ କାର୍ଯ୍ୟ । ଅଧ୍ୟାପକ ପ୍ରାଣକୃଷ୍ଣ ପରିଜାଙ୍କ ପ୍ରତି ତାଙ୍କର ଥିଲା ଅସୀମ ଭକ୍ତି ଏବଂ ଶ୍ରଦ୍ଧା ।

ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଓଡ଼ିଶାର ଏକ ପ୍ରବାଦ ପୁରୁଷ । ଜଣେ ଫରେଷ୍ଟଗାର୍ଡ଼ର ପୁଅ । ଅସୀମ କଷ୍ଟରେ ସେ ପାଠ ପଢ଼ିଛନ୍ତି । ଏବଂ ପରିଶ୍ରମ ତଥା ମେଧା ତାଙ୍କୁ ଆଣି ଦେଇଥିଲା ଅସୀମ କୃତିତ୍ୱ ଏବଂ ସାଫଲ୍ୟ । ସେ ବିଲାତ ଯାଇଥିଲେ ଗବେଷଣା ପାଇଁ ଏବଂ ପ୍ରସିଦ୍ଧ ଉଦ୍ଭିଦବିଦ୍ ଅଧ୍ୟାପକ ବ୍ଲାକମାନଙ୍କ ସହିତ ଗବେଷଣା କରିଥିଲେ ଇଂଲଣ୍ଡରେ । ତାଙ୍କର ଗବେଷଣାର ଫଳ ବ୍ଲାକମାନ ଏଣ୍ଡ ପରିଜା ତତ୍ତ୍ୱ ନାମରେ ସାରା ପୃଥିବୀରେ ଖ୍ୟାତ । ଫଳର ସଂରକ୍ଷଣ ପାଇଁ ତାଙ୍କର ଥିସିସ୍ ପରବର୍ତ୍ତୀ କାଳରେ ରେଫ୍ରିଜେରେଟରର ଉଦ୍‌ଭାବନ ପାଇଁ ବିପୁଳ ଅବଦାନ ଦେଇଛି । କିନ୍ତୁ ବ୍ଲାକମାନଙ୍କ ସହିତ ପରିଜାଙ୍କର ଗବେଷଣାତ୍ମକ ମତେଭେଦ ଯୋଗୁଁ ଅଧ୍ୟାପକ ପରିଜା ପି.ଏଚ.ଡି. ଉପାଧି ପାଇଁ ଗବେଷଣା ସଂପୂର୍ଣ୍ଣ ନ କରି ଫେରି ଆସିଲେ ଭାରତବର୍ଷ । ପରେ ପାଟଣା ବିଶ୍ୱବିଦ୍ୟାଳୟ ତାଙ୍କୁ ଅନରାରୀ ପି.ଏଚ.ଡି. ଉପାଧି ପ୍ରଦାନ କଲେ । ଅଧ୍ୟାପକ ପରିଜା ଜଣେ ଭୟାନକ ଶୃଙ୍ଖଳା ଜ୍ଞାନର ମଣିଷ ଥିଲେ । ବ୍ରିଟିଶ ଶାସନ ଭାଙ୍ଗିବା ଅସମ୍ଭବ, ତା' ବିରୁଦ୍ଧରେ ଯାଇ ପିଲାମାନେ ଖାଲି ନିଜର କ୍ୟାରିଅର ନଷ୍ଟ କରିବେ, ଏଇଥିଲା ତାଙ୍କର ଦୃଢ଼ ଧାରଣା । ସେ ଛାତ୍ର ବିଶୃଙ୍ଖଳା ଆଦୌ ସହ୍ୟ କରୁ ନ ଥିଲେ । ତାଙ୍କ

Digitized by srujan ka@gmail.com

ବିରୁଦ୍ଧରେ 'ପରିଜା - ମରି ଯା'' ସ୍ଲୋଗାନ ଥିଲା ଛାତ୍ରମାନଙ୍କର । କିନ୍ତୁ ଏହା ସତ୍ତ୍ୱେ ତାଙ୍କର ଜ୍ଞାନ ଓ ମେଧା ପ୍ରତି ସମ୍ମାନ ଥିଲା ସଭିଙ୍କର । ବିଜୁ ପଟ୍ଟନାୟକ ସିଗାରେଟ ଟାଣୁଥିଲେ ସମସ୍ତଙ୍କ ଆଗରେ । କେବଳ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା, ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଏବଂ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ଦେଖିଲେ ସେ ସିଗାରେଟ ଫିଙ୍ଗିଦେବା ମୁଁ ଦେଖିଛି । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ''ପୌରୁଷ'' ନାମକ ପତ୍ରିକା ପ୍ରକାଶ କଲେ ଆପଣାର ସଂପାଦନାରେ ଏବଂ ସେଥିରେ ଅଧ୍ୟାପକ ପରିଜାଙ୍କର ''ଜୀବନସ୍ମୃତି'' ସ୍ଥାନ ପାଇଥିଲା ଧାରାବାହିକ ଭାବରେ । ଏଥିରୁ ଜଣାଗଲା ଯେ ଏକ ପଟରେ ଅଧ୍ୟାପକ ପରିଜା ଯେପରି ବ୍ରିଟିଶ ଶାସନର ପକ୍ଷପାତୀ ଥିଲେ, ଠିକ୍ ଅପର ପଟରେ ତାଙ୍କର ସଂପର୍କ ଥିଲା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ସହିତ ।

ଅଧ୍ୟାପକ ପରିଜାଙ୍କ ସମୟଜ୍ଞାନ ପ୍ରଭୂତ । ଛଅଟା ମାନେ ଛଅଟା । ଛଅଟା ପାଞ୍ଚ ମିନିଟ୍ ହେଲେ ସେ ଅତିଷ୍ଠ ଏବଂ ଅସହିଷ୍ଣୁ ହୋଇ ଉଠନ୍ତି । ସେଇଯୋଗୁଁ ସେ ଉତ୍କଳ ସାହିତ୍ୟ ସମାଜର ସଭାପତି ପଦରୁ ସମୟ ନ ହେଉଣୁ ଇସ୍ତଫା ଦେଇଦେଲେ । ପରିଜା ଉଦ୍ଭିଦବିଦ୍ କିନ୍ତୁ ଭାଷା ସାହିତ୍ୟ ଜ୍ଞାନ ବେଶ ଗଭୀର ଓ ସୁନ୍ଦର । ଭାରତ ଫେରି ଆସିବା ପରେ ତାଙ୍କର ବିଦ୍ୟାଧରପୁରରେ ଆନ୍ତର୍ଜାତିକ ଧାନ ଗବେଷଣା କେନ୍ଦ୍ର (CRRI) ପ୍ରଭୃତିର ପ୍ରତିଷ୍ଠା ତାଙ୍କର ଅବଦାନ । ସେଥିଯୋଗୁଁ ସେ ସ୍ମୃତ ହୋଇ ରହିବେ ଚିରକାଳ । ତାଙ୍କର ପ୍ରିନ୍ସିପାଲ ହେବା ସମୟରେ ଦୁଇଜଣ ଛାତ୍ରନେତା ଦୁର୍ଗାଚରଣ ମହାନ୍ତି ଏବଂ ରାମଚନ୍ଦ୍ର ମିଶ୍ରଙ୍କୁ କଲେଜରୁ ବହିଷ୍କାର କରାଯାଇଥିଲା ଛାତ୍ର ଆନ୍ଦୋଳନରେ ଅଂଶଗ୍ରହଣ କରିଥିବା ଯୋଗୁଁ । ପରେ କେବଳ ଦୁର୍ଗାଚରଣ ମହାନ୍ତିଙ୍କୁ କଲେଜରେ ନାମ ଲେଖାଇବାକୁ ଅନୁମତି ଦିଆଯାଇଥିଲା । ମୁଁ କଲେଜରେ ପଢ଼ିଲା ବେଳକୁ ଅଧ୍ୟାପକ ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି । ସେଇ ସମୟରେ କାମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ତାଙ୍କର ସହପାଠୀ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନର ଚେୟାରମ୍ୟାନ୍ ଡକ୍ଟର ଚିନ୍ତାମନ୍ ଦ୍ୱାରକାନାଥ ଦେଶମୁଖ ଆସିଥାନ୍ତି ଓଡ଼ିଶା । ସେ ଜଣେ ଶକ୍ତିଶାଳୀ ନେତା ଏବଂ ପଣ୍ଡିତ ଥିଲେ । ସଂସ୍କୃତ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା, ଠିକ ଯେପରି ଥିଲା ଅର୍ଥନୀତି ଉପରେ । ମୋର ମନେପଡୁଛି ତାଙ୍କୁ ନେଇ ମୁଁ ଯାଇଥିଲି ପୁରୀ । ସେଠାରେ ସେ ମୁକ୍ତିମଣ୍ଡପ ସଭାର ପଣ୍ଡିତମାନଙ୍କୁ ସଂସ୍କୃତ ଭାଷାରେ ଓଜସ୍ୱିନୀ ଭାଷଣ ଦେଇ ମୁଗ୍ଧକରି ଦେଇଥିଲେ ସମସ୍ତଙ୍କୁ । ସେ ଓଡ଼ିଶା ଆସୁଥିବାର ଖବର ପାଇ କଲେଜ ୟୁନିୟନର ସଭାପତି ଭାବରେ ମୁଁ ତାଙ୍କୁ ରେଭେନ୍ସା କଲେଜ ପରିଦର୍ଶନ କରିବା ପାଇଁ ଏବଂ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବା ପାଇଁ ନିମନ୍ତ୍ରଣ କରିବାକୁ ଯାଇ ପହଞ୍ଚିଲି ଅଧ୍ୟାପକ ପରିଜାଙ୍କ ପାଖରେ । ରେଭେନ୍ସା କଲେଜର ସମସ୍ୟାବଳୀ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରିବା ଥିଲା ମୋର ଉଦ୍ଦେଶ୍ୟ । ମୋର ଆଶଙ୍କା ଥିଲା ଯେ ଅଧ୍ୟାପକ ପରିଜା କାଳେ ରାଜି ହେବେ ନାହିଁ । କିନ୍ତୁ ମୋତେ ଆଶ୍ଚର୍ଯ୍ୟ କରି ଅଧ୍ୟାପକ ପରିଜା ଆଗ୍ରହର ସହିତ ରାଜି ହେଲେ ଏବଂ ସଭା ପାଇଁ ନିର୍ଦ୍ଦିଷ୍ଟ ସମୟର ଏକ ଘଣ୍ଟା ପୂର୍ବରୁ ଦେଶମୁଖ କଲେଜରେ

Digitized by srujan ka@gmail.com

ପହଞ୍ଚିବାର ବନ୍ଦୋବସ୍ତ କରିଦେଲେ । ଏହା ଫଳରେ ସେ ସମଗ୍ର କଲେଜ ଓ ଛାତ୍ରାବାସ ବୁଲିପାରିବେ ଏବଂ ସମସ୍ୟାବଳୀ ସଂପର୍କରେ ତାଙ୍କର ପ୍ରତ୍ୟକ୍ଷ ଧାରଣା ହୋଇପାରିବ । ବୋଧହୁଏ ତତ୍କାଳୀନ ପ୍ରିନ୍ସିପାଲ ଏଥିପାଇଁ ଟିକିଏ ଦୋଦୋପାଞ୍ଚ ହେଉଥିଲେ । କାରଣ କଲେଜର ସବୁ ଅଭାବ ଅସୁବିଧା କଥା ଉଚ୍ଚ କର୍ତ୍ତୃପକ୍ଷ ଜାଣିବା ଉଚିତ୍ ନୁହେଁ ବୋଲି ତାଙ୍କର ମତ । ଏହା ଛଡ଼ା ରାଜ୍ୟ ଶିକ୍ଷା ବିଭାଗକୁ ଏଡ଼ାଇ ଦେଇ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନକୁ ସିଧା ଜଣାଇବା ହୁଏତ ରାଜ୍ୟ ସରକାର ଠିକ୍ ଭାବରେ ଗ୍ରହଣ କରି ନ ପାରନ୍ତି ବୋଲି ତାଙ୍କର ଭୟ ଥିଲା । କିନ୍ତୁ ଦେଶମୁଖ ଆସିଲେ ସଭା ସମୟର ଏକଘଣ୍ଟା ପୂର୍ବରୁ । ହଷ୍ଟେଲସବୁ ବୁଲି ଦେଖିଲେ, ଦେଖିଲେ ପାଇଖାନା ସମସ୍ୟା, ମହିଳା ହଷ୍ଟେଲର ସମସ୍ୟା, ଛାତ୍ରଙ୍କ ପାଇଁ ନୂତନ ହଷ୍ଟେଲ, ଛାତ୍ରୀମାନଙ୍କ ପାଇଁ ହଷ୍ଟେଲ, ପୂର୍ବ ଓ ପଶ୍ଚିମ ଛାତ୍ରାବାସରେ ନୂତନ ପାଇଖାନା ଇତ୍ୟାଦି ସମସ୍ୟା ଉପରେ ସେଇଠି ନିଷ୍ପତ୍ତି ହୋଇଗଲା । ଦେଶମୁଖ ମନରୁ କିଛି କହନ୍ତି ନାହିଁ, ତାଙ୍କ ହାତରେ ଥାଏ ଗୋଟିଏ ଛୋଟିଆ ନୋଟ ବହି । ସେଇଥିରେ ଯାହା ଟିପାଥାଏ ସେଇଥିରୁ ଦେଖି ଦେଖି ସେ କହନ୍ତି । କଥା ଏପଟ ସେପଟ ହୋଇଯିବାର କୌଣସି ଆଶା ବା ଆଶଙ୍କା ନ ଥାଏ ।

ଅଧ୍ୟାପକ ପରିଜା ପରୀକ୍ଷା ଇତ୍ୟାଦି ଘୁଞ୍ଚାଇବାର ଖୁବ୍ ବିରୋଧୀ । କିନ୍ତୁ ଥରେ ତାହାର ବ୍ୟତିକ୍ରମ ହେଲା, ଅନ୍ତତଃ ମୋ ଜୀବନରେ । ସୀମା ଆନ୍ଦୋଳନ ସମୟରେ ପରିଜା ଥିଲେ ଦିଲ୍ଲୀରେ । ସେତେବେଳେ ସୀମା ଆନ୍ଦୋଳନର ସ୍ପନ୍ଦନ ଦିଲ୍ଲୀରେ ବେଶ୍ ଉଦ୍‌ବେଳନ ସୃଷ୍ଟି କରିଥିଲା । ପରିଜା ଫେରିଥାନ୍ତି ଦିଲ୍ଲୀରୁ ଏବଂ ଆମେ ଏକ ପ୍ରତିନିଧି ଦଳରେ ତାଙ୍କୁ ସାକ୍ଷାତ କଲୁ ପରୀକ୍ଷା ଘୁଞ୍ଚାଇବାର ନିବେଦନ ନେଇ । କାରଣ ସମଗ୍ର ଜାନୁଆରୀ ମାସଟା ନଷ୍ଟ ହୋଇଯାଇଥିଲା ଏବଂ ଅନେକ ଛାତ୍ର ଛାତ୍ରୀ ଆହତ ଅବସ୍ଥାରେ ଥିଲେ, ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇପାରି ନ ଥିଲେ । ମୋ ଉପରୁ ତ ଓ୍ୱାରେଣ୍ଟ ଉଠି ନ ଥାଏ ।

ଆମ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ପରିଜା ଆମ ସମସ୍ତଙ୍କୁ କୁଣ୍ଢାଇ ପକାଇଲେ ଏବଂ ଆଶୀର୍ବାଦ କଲେ । ''ଯାହାହେଉ, ପରିଶେଷରେ ଓଡ଼ିଆ ପିଲାଏ ଓଡ଼ିଶାର ନାମ ରଖିଲ'' କହି ପ୍ରତିଶ୍ରୁତି ଦେଲେ ପରୀକ୍ଷା ଘୁଞ୍ଚାଇବା ପାଇଁ । କିନ୍ତୁ ସିଣ୍ଡିକେଟ୍‌ରେ ଏହାର ପ୍ରତିବାଦ ଉଠିଲା ମୁଖ୍ୟତଃ ରେଭେନ୍ସା କଲେଜ ପ୍ରିନ୍ସିପାଲଙ୍କ ପାଖରୁ । ପ୍ରିନ୍ସିପାଲ ଶ୍ରୀ ବାମାଚରଣ ଦାସ । ତାଙ୍କର ମୁଖ୍ୟ ରାଗ ମୋ ଉପରେ । ସେ ମୋତେ ଖୁବ୍ ଭଲ ପାଉଥିଲେ ଏବଂ ସେଇଯୋଗୁଁ ହିଁ ରାଗଟା ବେଶି । ସିଣ୍ଡିକେଟ୍ ବୈଠକରେ ମୋତେ ବି.ଏ. ପରୀକ୍ଷା ଦେବା ସକାଶେ ଆଡ଼ମିଟ୍ କାର୍ଡ଼ ନ ଦେବାପାଇଁ ପ୍ରିନ୍ସିପାଲ ପ୍ରସ୍ତାବ ଦେଲେ । କିନ୍ତୁ ତାହା ଗୃହୀତ ହେଲା ନାହିଁ । କୁଳପତି ଏବଂ ସିଣ୍ଡିକେଟ୍‌ର ଦୁଇ ଟାଣୁଆ ସଦସ୍ୟ ଶ୍ରୀ ସୁରଜମଲ୍ ଶାହା ଏବଂ ଶ୍ରୀ ବିବୁଧେନ୍ଦୁ ମିଶ୍ର ଏହାର ତୀବ୍ର ବିରୋଧ କଲେ । କୁଳପତି କହିଲେ ଯେ ବିଶ୍ୱବିଦ୍ୟାଳୟ ଆଡ଼ମିଟ୍ କାର୍ଡ଼ ସିଧା ପରୀକ୍ଷାର୍ଥୀଙ୍କୁ ଦେଇପାରେ । ସେ ଓଲଟି ପ୍ରିନ୍ସିପାଲଙ୍କୁ କହିଲେ ଯେ ପ୍ରିନ୍ସିପାଲ ଭାବରେ ସେ ଗଣ୍ଡଗୋଳକାରୀ

Digitized by srujan ka@gmail.com

ଛାତ୍ର ଗିରିଜା ଭୂଷଣ ପଟ୍ଟନାୟକଙ୍କୁ ବହିଷ୍କାର କରି ଦେଉନାହାନ୍ତି କାହିଁକି ? ଉତ୍ତରରେ ପ୍ରିନ୍ସିପାଲ କହିଲେ ସେ ତାହା କରିପାରିବେ ନାହିଁ । ଏହା କଲେ ଘରେ ଗଣ୍ଡଗୋଳ ହେବାର ଆଶଙ୍କା ରହିଛି । କାରଣ ସେ ମୋ ସ୍ତ୍ରୀଙ୍କୁ ମାଉସୀ ବୋଲି ଡାକେ ଏବଂ ମୋ ପୁଅଝିଅମାନେ ତାକୁ ଭାଇ ବୋଲି ଡାକନ୍ତି । ମୋ ସାଙ୍ଗରେ ଝଗଡ଼ା ହୁଏ ସତ୍ୟ କିନ୍ତୁ ମୋତେ କେବେ ସେ ଖରାପ ବ୍ୟବହାର କରିନାହିଁ । କୁଳପତି ପରିଜା କହିଲେ ଯେ ତା' ହେଲେ ଆମେ କଣ କରିପାରିବା ?

ମତାନ୍ତର ହୋଇଛି କିନ୍ତୁ ମନାନ୍ତର କାହାରି ସହିତ ହୋଇନାହିଁ । ଯେଇଯୋଗୁଁ ମତଭେଦ, ମତାନ୍ତରସବୁ ସୀମିତ ରହିଛି, ବ୍ୟକ୍ତିଗତ ସ୍ତରକୁ ସଂପ୍ରସାରିତ ହୋଇନାହିଁ ବା ବ୍ୟକ୍ତିଗତ ସଂପର୍କ ତିକ୍ତ ହୋଇ ନାହିଁ ।

ଶ୍ରୀ ସମରେନ୍ଦ୍ର କୁଣ୍ଡୁ ଆସୁଥିଲେ ଟ୍ରେନରେ ଦିଲ୍ଲୀରୁ, ତାଙ୍କର ସହଯାତ୍ରୀ ଥିଲେ ମୋର ପଡ଼ୋଶୀ ଅରଣ୍ୟ ବିଭାଗର ଅଫିସର ଶ୍ରୀ ନରେନ୍ଦ୍ର ସେଠୀ । ଶ୍ରୀ ସମରେନ୍ଦ୍ର କୁଣ୍ଡୁ ଜଣେ ଦରଦୀ ମଣିଷ ଏବଂ ଅତିଥିବତ୍ସଳ । ବାଟରେ ନରେନ୍ଦ୍ରଙ୍କ ସାଙ୍ଗରେ ବନ୍ଧୁତା ହେଲା ଏବଂ ସେ କହିଲେ ଆମ ଗିରିଜା ପରା ସେଇଠି ରହେ । ସ୍ୱାଭାବିକ ଭାବରେ ନରେନ୍ଦ୍ର ତାଙ୍କୁ ପଚାରିଲେ ମୋ ସଂପର୍କରେ । ସେ କହିଲେ ଆମେ ଦୁହେଁ ପରସ୍ପର ବିରୋଧୀ ଦଳର, ଆମ ଭିତରେ ମତଭେଦ ତୀବ୍ର କିନ୍ତୁ ବ୍ୟକ୍ତିଗତ ସଂପର୍କ ନିବିଡ଼ । ମନେ ପଡ଼ିଗଲେ ଆଖିରେ ଲୁହ ଜକେଇ ଆସେ । କୁଣ୍ଡୁଦା ସହିତ କେତେ ଲଢ଼େଇ, କେତେ ବିବାଦ, କିନ୍ତୁ ସେ ଆସି ପହଞ୍ଚିଯିବ ଦିନେ ଦିନେ ଅଧ ରାତିରେ । କହିବ, ଖାଇବାକୁ କଣ ଅଛି ଦେ ! ମୋ ସ୍ତ୍ରୀଙ୍କୁ ମଧ ଠିକ୍ ସେଇପରି ତାଗିଦା କରିବ । ତାଙ୍କର ପରଲୋକ ହୋଇଗଲା ଅକାଳରେ ଏବଂ ମୁଁ ଜଣେ ମୋର ଅନ୍ତରଙ୍ଗ ବନ୍ଧୁଙ୍କୁ ହରାଇଲି ।

ମନେପଡ଼ୁଛି ଏକ ସ୍ମୃତି । ମୁଁ ଯାଉଥାଏ ଦିଲ୍ଲୀ, ଉଡ଼ାଜାହାଜରେ ଗୋଟିଏ ଧାଡ଼ିରେ ଆମେ ତିନିଜଣ ବନ୍ଧୁ ବସିଥିଲୁ । ମୋର ବନ୍ଧୁ ବିପିନ ବିହାରୀ ଖମାରୀ, (ବର୍ତ୍ତମାନ ସମବାୟ ବିଭାଗର ଅବସରପ୍ରାପ୍ତ ଅଫିସର), ଜଣେ ଆଇ.ଏ.ଏସ. ଅଫିସର (ତାଙ୍କ ନାମ ଲେଖି ଲାଭ ନାହିଁ ଏବଂ ସେ ମଧ ବର୍ତ୍ତମାନ ଅବସରପ୍ରାପ୍ତ) । ବିପିନ ବିହାରୀ ଯାଉଥାନ୍ତି ବିଦେଶ (ବୋଧହୁଏ ଅଷ୍ଟ୍ରେଲିଆ) ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହୋଇ । ସେ ଏବଂ ବନ୍ଧୁ ଆଇ.ଏ.ଏସ. ଅଫିସର ରହିବେ ଓଡ଼ିଶା ଭବନରେ ଏବଂ ମୁଁ ରହିବି ବନ୍ଧୁ ୰ବ୍ରହ୍ମାନନ୍ଦ ପଣ୍ଡା ପାର୍ଲାମେଣ୍ଟ ସଭ୍ୟଙ୍କ ଘରେ । ମୁଁ ବ୍ରହ୍ମାନନ୍ଦ ବାବୁଙ୍କ ଘରେ ଜିନିଷପତ୍ର ରଖିଦେଇ ସାଉଥ୍ ଆଭିନ୍ୟୁର ପାର୍ଲିଆମେଣ୍ଟ କ୍ୟାଣ୍ଟିନକୁ ଖାଇବାକୁ ଗଲାବେଳକୁ ସେଇଠି ବସିଛନ୍ତି ବିପିନ ବିହାରୀ ଖମାରୀ ବିଷାଦଗ୍ରସ୍ତ ମନରେ । କାରଣ ପଚାରିବାରୁ ସେ କହିଲେ ଯେ ତାଙ୍କ ପାଇଁ ଓଡ଼ିଶା ଭବନରେ ରିଜର୍ଭେସନ ହୋଇଥିଲା କିନ୍ତୁ ଆମ ସାଙ୍ଗରେ ଆସିଥିବା ଆଇ.ଏ.ଏସ. ଅଫିସରଙ୍କର କୌଣସି ରିଜର୍ଭେସନ ନ ଥିଲା । ଅଥଚ ବିପିନ ବାବୁଙ୍କ ରିଜର୍ଭେସନକୁ ବାତିଲ କରି ଉକ୍ତ ଆଇ.ଏ.ଏସ. ଅଫିସରଙ୍କୁ ସେ କୋଠରୀଟି ଦେଇ ଦିଆଗଲା ଏବଂ ଏହା ଜାଣି ମଧ ସେ କିଛି କହିଲେ ନାହିଁ । ତେଣୁ

Digitized by srujan ka@gmail.com

ବାଧହୋଇ ସେ ଆସିଛନ୍ତି ସାଉଥ୍ ଆଭିନ୍ୟୁର କ୍ୟାଣ୍ଟିନକୁ ଏବଂ ଭାବୁଛନ୍ତି ଏତେ ରାତିରେ ଯିବେ କୁଆଡ଼େ ? ଏଣେ ମୁଁ ରହିଥିବା ବନ୍ଧୁଙ୍କ ଘରେ ଆଉ ଜାଗା ନାହିଁ । ଆମେ ଖାଇସାରି ଉଠିଲୁ ଏବଂ ପାଖରେ ଥିବା ପାର୍ଲିଆମେଣ୍ଟ ସଭ୍ୟ ସମରେନ୍ଦ୍ର କୁଣ୍ଡୁଙ୍କ ଘରକୁ ଗଲୁ । ଏତେ ରାତିରେ ସେ ଆମକୁ ଦେଖି ଆଶ୍ଚର୍ଯ୍ୟ ହେଲେ । ଆମେ ସମସ୍ୟା କଥା କହିଲୁ ଏବଂ ସେ ଆନନ୍ଦରେ କେବଳ ବିପିନ ବିହାରୀଙ୍କୁ ରହିବା ପାଇଁ ଜାଗାଦେଲେ ନାହିଁ, ତା' ପରଦିନ ଓଡ଼ିଶା ସରକାରଙ୍କୁ ଏକ କଡ଼ା ଚିଠି ଲେଖିଲେ । ଏଭଳି ଘଟଣାର ଆଉ ପୁନରାବୃତ୍ତି ହେବ ନାହିଁ ବୋଲି ଓଡ଼ିଶା ସରକାରଙ୍କର ଘରୋଇ ବିଭାଗ ତାଙ୍କୁ ଲେଖିଲେ । ଏଇପରି ଘଟିଥିଲା ଅଧ୍ୟାପକ ଜଗନ୍ନାଥ ସାହୁ (ବର୍ତ୍ତମାନ ଅବସରପ୍ରାପ୍ତ)ଙ୍କ କ୍ଷେତ୍ରରେ । ସେ ମସ୍କୋରେ ଉଚ୍ଚଶିକ୍ଷା ପାଇବା ପାଇଁ ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ, ସାରା ଭାରତବର୍ଷରେ ପ୍ରଥମ ହୋଇ । ସେ ଓଡ଼ିଶା ଭବନରେ ରହୁଥିଲେ, ବିଦେଶ ଯିବା ବାଟରେ । ନିଜର କାଗଜପତ୍ର ଟିକଟ ସଂଗ୍ରହ କରି ସେ ଓଡ଼ିଶା ଭବନକୁ ଆସି ଦେଖନ୍ତି ଯେ ତାଙ୍କର ଜିନିଷସବୁ ବାହାରେ ରଖାଯାଇଛି ଏବଂ ତାଙ୍କ ରିଜର୍ଭେଶନ ବାତିଲ ହୋଇଯାଇଛି ଏବଂ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ତାହା ଦିଆଯାଇ ସାରିଛି । ଉକ୍ତ ବିଶିଷ୍ଟ ବ୍ୟକ୍ତି ଏହା ଜାଣି ସୁଦ୍ଧା ସେ ଘରକୁ ଦଖଲ କରି ବସିଛନ୍ତି । ତେବେ ସମରେନ୍ଦ୍ର କୁଣ୍ଡୁଙ୍କ ହସ୍ତକ୍ଷେପ ପରେ ଏଭଳି ଆଉ ଘଟିଛି କି ନାଇଁ ଜାଣେ ନାହିଁ ।

ସେଦିନ ସିଣ୍ଡିକେଟ୍ ମିଟିଙ୍ଗ ପରେ ମୋର ଅଡ଼ମିଟ୍ କାର୍ଡ଼ ମିଳିବାର ଆଉ କିଛି ଅସୁବିଧା ହୋଇନାଇଁ । ଏବଂ ପ୍ରିନ୍ସିପାଲ ମୋତେ ଏକ ଭଲ ସୁପାରିଶ ବି ଦେଇଛନ୍ତି । ସେ ଉକ୍ତ ସୁପାରିଶରେ ଉଲ୍ଲେଖ କରିଥିଲେ ଯେ ''ସେ ଅନ୍ୟମାନଙ୍କୁ ଖୁବ୍ ପ୍ରଭାବିତ କରି ପାରନ୍ତି ଏବଂ ନିଜ ମତକୁ ଗ୍ରହଣ କରାଇଦେଇ ପାରନ୍ତି'' ।

ମୁଁ କଲେଜରେ ପଢ଼ିବା ବେଳେ ମୋ ଠାରୁ କିଛି ବର୍ଷ ତଳେ ପାଠ ପଢୁଥିଲେ ଶ୍ରୀ ନରେଶ ଚନ୍ଦ୍ର ରାଉତ । ଢେଙ୍କାନାଳ ପ୍ରଜାମଣ୍ଡଳ ଅନ୍ଦୋଳନର ଅନ୍ୟତମ ମହାରଥୀ ଶ୍ରୀକାନ୍ତ ରାଉତଙ୍କର ପୁଅ ।

ସେ ଖୁବ୍ ଭଲ ଛାତ୍ର ଥିଲେ ଏବଂ ଆଇ.ଏସସି. ପାଶ କଲା ପରେ ମାରାଇନ ଇଂଜିନିଅରିଙ୍ଗ ପଢ଼ିବାକୁ ଯାଇଥିଲେ । ହଠାତ୍ ଦିନେ ମୁଁ ତାଙ୍କୁ ଦେଖିଲି ମଙ୍ଗଳାବାଗ ରାସ୍ତାରେ । ଅବିନ୍ୟସ୍ତ କେଶ, ଦାଢ଼ି ଖିଅର ହୋଇ ନାହାନ୍ତି ଅନେକ ଦିନ ଧରି ବୋଲି ମନେହେଲା । ମୁଁ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । କ'ଣ ହୋଇଛି ତୁମର ? ସେ କହିଲେ ଯେ ସାମୁଦ୍ରିକ ଜଳବାୟୁ ସୁହାଇଲା ନାହିଁ । ସେ ଫେରି ଆସିଛନ୍ତି କିନ୍ତୁ ଆଉ କୌଣସି କଲେଜରେ ପଢ଼ିବା ସମ୍ଭବ ହେଲା ନାହିଁ କାରଣ ଆଡ଼ମିଶନ ନେବାର ସମୟ ଅତିକ୍ରାନ୍ତ ହୋଇ ସାରିଛି ।

ସେ ଓ ମୁଁ ଯାଉଥିଲୁ ରାଣୀହାଟ ଆଡ଼କୁ । ମୁଁ ତାଙ୍କୁ ଡାକି ସାଇକେଲ ପଛରେ ବସାଇ ନେଇ ଚାଲିଲି ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସକୁ । ଆଜି ଯେଉଁଠି ଆଚାର୍ଯ୍ୟ ହରିହର କ୍ୟାନସର

Digitized by srujan ka@gmail.com

ଇନଷ୍ଟିଚ୍ୟୁଟ ଅଛି ସେଇଠି ଥିଲା ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ । ପ୍ରଥମେ ଦେଖାକଲି ଗୋରାଚାନ୍ଦ ରଥ, ରେଜିଷ୍ଟ୍ରାରଙ୍କୁ । ତାଙ୍କ ସହିତ ପରିଚିତି ଥିଲା, ସେ ମଧ ଭଲ ପାଉଥିଲେ ମୋତେ । କେହି ଖରାପ ପାଇ ନାହାନ୍ତି, କାରଣ କାହାରି ସହିତ ବ୍ୟକ୍ତିଗତ ବୈରତା ନ ଥିଲା, ଆଜି ବି କାହାରି ସହିତ ନାହିଁ । ଆଉ ସାମୂହିକ ସ୍ୱାର୍ଥ ପାଇଁ ସଂଗ୍ରାମ କଣ ବ୍ୟକ୍ତିଗତ ସଂପର୍କକୁ ମଳିନ କରି ପାରେ ? ସେ ଗମ୍ଭୀର ହୋଇ ଶୁଣିଲେ ଏବଂ କହିଲେ ପରିଜା ସାହେବଙ୍କୁ ଦେଖାକର । ଆଡ୍‌ମିଶନ ନେବାର ସମୟ ତ କେତେ ଦିନରୁ ସରିଗଲାଣି । ତଥାପି ସେ ଯଦି ଚାହାନ୍ତି ହୁଏତ ହୋଇପାରେ । କାରଣ ତାଙ୍କ କଥା କେହି ଅମାନ୍ୟ କରିବେ ନାହିଁ । ପ୍ରାଣକୃଷ୍ଣ ପରିଜା ଏବଂ ଶ୍ୟାମା ଚରଣ ତ୍ରିପାଠୀ ରେଭେନ୍ସା କଲେଜରେ ''ସାହେବ'' ନାମରେ ପରିଚିତ । କାରଣ ସେ ଦୁଇ ପଦବୀ ଥିଲା ଆଇ.ଇ.ଏସ୍ ପଦବୀ । ସେଇ ଯୋଗୁଁ ମୋ ସ୍ତ୍ରୀ କମଳ କୁମାରୀ ଯେତେବେଳେ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ହେଲେ ସେତେବେଳେ ମୋର ଗୁରୁ ଶ୍ରୀ ରାମଚନ୍ଦ୍ର ଦାଶ ତାଙ୍କୁ ବଧାଇ ଜଣାଇ ଏଇ ଇତିହାସ ବଖାଣି ଥିଲେ । ପରିଜା ସାହେବ ନିୟମ ଏବଂ ଶୃଙ୍ଖଳାର ପ୍ରତୀକ । ତଥାପି ସାହସ କରି ଯାଇ ପହଞ୍ଚିଲି । ସେ ତ ପ୍ରାୟ ହସନ୍ତି ନାହିଁ । ଗମ୍ଭୀର କଣ୍ଠରେ ସେ ସବୁ ଶୁଣିଲେ । ମୁଁ ଟିକିଏ ଭାବାକୁଳ ହୋଇ ଉଠିଥିଲି । ଏଇ ପ୍ରତିଭାଶାଳୀ ଯୁବକ କଣ ନଷ୍ଟ ହୋଇଯିବ ଏଇ ଆକସ୍ମିକ ଦୁର୍ଘଟଣା ଯୋଗୁଁ । ''ସେ କେବେ ଯାଇ ପାରିବ ? ଆଜି ଯାଇ ପାରିବ ?'' ପରିଜାଙ୍କର ପ୍ରଶ୍ନ । ନିଶ୍ଚୟ ଯିବ– ମୋର ଉତ୍ତର ।

ନରେଶଙ୍କର ଭାଗ୍ୟ ରବି ବୁଡ଼ି ଯାଉଥିଲା ଅନ୍ଧକାର ଭିତରେ । ପୁଣି ଉଦିତ ହେଲା ଏବଂ ଓଡ଼ିଶା ପାଇଲା ଏକ ଦକ୍ଷ ଏବଂ ସଚ୍ଚୋଟ ଇଂଜିନିଅର । ନରେଶ ଚାକିରିରୁ ଅବସର ନେଲେଣି । କିଛି ବର୍ଷ ତଳେ ତାଙ୍କ ସ୍ତ୍ରୀ ଚାଲିଯାଇଛନ୍ତି ଧରାପୃଷ୍ଠରୁ । କିନ୍ତୁ ତାଙ୍କ ବିଭାଗରେ ସେ ଜଣେ ଦକ୍ଷ ଏବଂ ସଚ୍ଚୋଟ ଇଂଜିନିଅର ଭାବରେ ସ୍ମୃତ ହୋଇ ରହିଛନ୍ତି । ଏହା ସମ୍ଭବ ହେଲା ପରିଜା ସାହେବଙ୍କ ଯୋଗୁଁ ।

କମଳ କୁମାରୀ ଓ ମୁଁ ବିବାହ କରିବା ପାଇଁ ସ୍ଥିର କରିଥିଲୁ । କିନ୍ତୁ ବିବାହ ହୋଇ ନ ଥାଏ । କମଳ କୁମାରୀ ପ୍ରଥମ ଶ୍ରେଣୀରେ ଏମ.ଏସସି. ପାଶ୍ କଲେ । ଚାକିରି ନାହିଁ । ତାଙ୍କର ମଧ ଗବେଷଣା କରିବାକୁ ଇଚ୍ଛା । ମାମୁଁ ଡାକ୍ତର ଜର୍ଜ ପଟ୍ଟନାୟକ ତାଙ୍କୁ ସାଙ୍ଗରେ ନେଇ ପରିଜା ସାହେବଙ୍କୁ ଦେଖାକଲେ । ସେ ଏକ ଚିଠି ଦେଲେ ଆଲାହାବାଦ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ରଞ୍ଜନଙ୍କୁ । ସେ ପଟରୁ ଉତ୍ତର ଆସିଲା ଗବେଷଣାର ଟପିକ୍, ସ୍କଲରସିପ୍ ବା ବୃତ୍ତି ମାସକୁ ୨୫୦ ଟଙ୍କା, ସରୋଜିନୀ ନାଇଡୁ ହଷ୍ଟେଲରେ ସିଟ୍ ସବୁ ଏକା ସାଙ୍ଗରେ, ଗୋଟିଏ ଚିଠିରେ । ଶେଷରେ ଧାଡ଼ିଏ ଲେଖାଥିଲା– ''ଆପଣଙ୍କର ଅନୁରୋଧ ମୋ ପାଇଁ ଆଦେଶ, କିନ୍ତୁ ମୁଁ ବି ବୁଢ଼ା ହୋଇଗଲିଣି । ଆଉ ପିଲା ପଠାଇବେ ନାହିଁ ।''

Digitized by srujan ka@gmail.com

ପରିଜା ସାହେବଙ୍କ ପ୍ରତି ସମ୍ମାନର ଏହା ଏକ ପ୍ରତୀକ । କମଳ କୁମାରୀ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ''ପରିଜା ଲାବରେଟୋରୀରୁ ଆସିଥିବା ଛାତ୍ରୀ'' ନାମରେ ପରିଚିତ । ସେ ଗୋଟାଏ କଣ ଏନ୍‌ଜାଇମ୍ (Enzime) ଆବିଷ୍କାର କଲେ ଏବଂ ସେଇ ବସ୍ତୁକୁ ପୁନଃ ପରୀକ୍ଷା ପାଇଁ ଯେତେବେଳେ ଭିଜିଟିଂ ପ୍ରଫେସର ଆଧାପକ ବେନେଟ୍ କ୍ଲାର୍କଙ୍କୁ ଡକ୍ଟର ଶ୍ରୀ ରଂଜନ ଅନୁରୋଧ କଲେ ସେତେବେଳେ କମଳ କୁମାରୀ ''ପରିଜା ଲାବରେଟୋରୀରୁ ଆସିଥିବା ଛାତ୍ରୀ'' ବୋଲି ଶୁଣି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଉଦ୍ଭିଦବିଦ୍ ବେନେଟ୍ କ୍ଲାର୍କ ନିଜର ରହଣୀ ଦୁଇଦିନ ବଢ଼ାଇ ଉକ୍ତ ବସ୍ତୁର ପୁନଃ ପରୀକ୍ଷା କରିଥିଲେ ଏବଂ ଏହା ତାଙ୍କର ଡକ୍ଟରେଟ ଉପାଧି ପାଇବାର ପଥକୁ ସୁଗମ କରିଥିଲା । ଅବଶ୍ୟ ଏକଥା ଜଣାଶୁଣା ଯେ ପରିଜା ସାହେବ ବିଲାତରୁ ଫେରିବା ପରେ ଗବେଷଣା ଅପେକ୍ଷା ଶିକ୍ଷା ଶାସନରେ ଅଧିକ ସମୟ ବିନିଯୋଗ କରିଥିଲେ । କିନ୍ତୁ ତାଙ୍କର ମେଧାଶକ୍ତି ଅସାଧାରଣ ଥିଲା । ଜୀବନର ଅପରାହ୍ନରେ ସେ ଯାଉଥିଲେ ଧନୁଗୋଳ । ବାଟରେ ଦେଖିଲେ ଅମରି ବା ଆଇପୋମିଆ ଗଛ । ଏହା ଉପରେ କୌଣସି ଛାତ୍ର ଗବେଷଣା କଲେ ହୁଅନ୍ତାନି ? ସେ ଆସି ଡକ୍ଟର ବଂଶୀଧର ସାମନ୍ତରାୟ (ତତ୍‌କାଳୀନ ଉଦ୍‌ଭିଦ ବିଜ୍ଞାନ ଅଧାପକ)ଙ୍କୁ କହିଲେ ମୋତେ ଜଣେ ଛାତ୍ର ଦିଅନ୍ତ ନାହିଁ ? ସେ ବାଞ୍ଛାନିଧି ମିଶ୍ରଙ୍କୁ ବାଛିଲେ ପରିଜା ସାହେବଙ୍କ ଅଧୀନରେ ଗବେଷଣା କରିବା ପାଇଁ । ପରିଜା ସାହେବ ଆସିବେ ଘଣ୍ଟାକ ପାଇଁ ଦିନ ନଅଟାରୁ ଦଶଟା ଭିତରେ । ଠିକ୍ ନଅଟା ବେଳେ ତାଙ୍କ ଗାଡ଼ି ପହଞ୍ଚିବ ଉଦ୍ଭିଦ ବିଜ୍ଞାନ ଗେଟ୍ ଆଗରେ, ଦିନ ଦିନ ମାସ ମାସ ଧରି ଦିନେ ବି ଏହାର ବ୍ୟତିକ୍ରମ ହୋଇନାହିଁ ।

ପରିଜା ଯାଇଥିଲେ (କମନ୍‌ୱେଲଥ କି ଆନ୍ତର୍ଜାତିକ ମନେ ପଡୁନାହିଁ) କୁଳପତି ସମ୍ମିଳନୀକୁ ଦ୍ୱିତୀୟ ଥର ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ହେଲାବେଳେ । ତାଙ୍କର ନାମ ଶୁଣି ଜଣେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ତାଙ୍କୁ ପଚାରିଲେ ଆମେ ଏଇପରି ଏକ ନାମ ଶୁଣିଥିଲୁ ବ୍ଲାକମାନଙ୍କର ସହଯୋଗୀ ଭାବରେ । ସେ ପ୍ରତିଭାବାନ ଗବେଷକଙ୍କ ସଂପର୍କରେ ଆଉ ପରେ ଆମେସବୁ କିଛି ଶୁଣି ନାହୁଁ । ଆପଣ ତାଙ୍କୁ ଜାଣନ୍ତି କି ? ପରିଜା ଉତ୍ତର ଦେଇଥିଲେ ହଁ ମୁଁ ସେଇ ପରିଜା କିନ୍ତୁ ଫସିଲାଇଜ୍‌ଡ (Fossilised) ।

ପରିଜା ଥରେ ନିମନ୍ତ୍ରଣ କରିଥିଲେ ଅଧାପକ ବୀରବଲ୍ ସାହାନୀଙ୍କୁ ରେଭେନ୍ସା କଲେଜରେ ବକ୍ତୃତା ଦେବାପାଇଁ । ବୀରବଲ୍ ସାହାନୀ ଖାଲି ଜଣେ ପ୍ରଖ୍ୟାତ ଉଦ୍ଭିଦବିଦ୍ ନ ଥିଲେ, ତାଙ୍କ କଥା ମଧ ଥିଲା ଖୁବ୍ ରସାଣିଆ, ତାଙ୍କ ଭାଷଣ ପରେ ପରିଜା ଆପଣାର ସଭାପତି ଅଭିଭାଷଣରେ କହିଲେ ଯେ–

କାହୁଁ ସେ ଅଇଲା କେଉଁ ବିଜ୍ଞାଣୀ,
ଶୁଖିଲା କାଠରୁ ବୁହାଇଲା ପାଣି ।

Digitized by srujan ka@gmail.com

ପରିଜା ବେଶ୍ ମଜାଳିଆ କଥା କହନ୍ତି ବେଳେବେଳେ । ସାହାନୀ ଗବେଷଣା କରୁଥିଲେ ଫସିଲ ଉପରେ । ତାଙ୍କୁ ଲକ୍ଷ୍ୟ କରି ପରିଜାଙ୍କର ଏହି ଉକ୍ତି ।

କଟକରେ ସାମ୍ପ୍ରଦାୟିକ ଦଙ୍ଗାର ସମୟ । ବୀରେନ ମିତ୍ର ସରକାରରେ ନାହାନ୍ତି କିନ୍ତୁ ତାଙ୍କୁ ବାଦ୍‌ଦେଇ କଟକ ସହର କଥା ଚିନ୍ତା କରାଯାଇ ପାରେନା । ଠିକ୍ ସେଇପରି ହରେକୃଷ୍ଣ ମହତାବଙ୍କୁ ବାଦ୍ ଦେଇ କଟକ ସଂପର୍କରେ ଚିନ୍ତା କରିବା କଷ୍ଟକର । କଟକ ସହର ଅବସ୍ଥା ଗୁରୁତର ହେବାକୁ ଲାଗିଛି । ମହତାବ ବାବୁଙ୍କୁ ଖୋଜିଲା ବେଳକୁ ଖବର ମିଳିଲା ଯେ ସେ ବିହାରିବାଗ ଛାଡ଼ି କୁଆଡ଼କୁ ଗଲେଣି । କୁଆଡ଼େ ଗଲେ ? ଖବର ନେଉ ନେଉ କିଏ କହିଲା ଯେ ମହତାବ ବାବୁଙ୍କର ନାଲି ଗାଡ଼ିକୁ କନ୍‌ଭେଣ୍ଟ ସ୍କୁଲ ପାଖରେ କ୍ୟାଣ୍ଟନମେଣ୍ଟ ଆଡ଼କୁ ଯିବାର । ମୋର କିମିତି ମନେହେଲା, ମହତାବ ବାବୁ ଏ ସମୟରେ କାହା ଘରକୁ ଯାଇ ପାରନ୍ତି ? ଡକ୍ଟର ପରିଜାଙ୍କ ଘରକୁ ନୁହେଁ ତ ! ପରିଜାଙ୍କ ଘରକୁ ଫୋନ କଲି । କିଏ ଜଣେ କହିଲା ହଁ, ମହତାବ ବାବୁ ଆସିବେ ବୋଲି ଫୋନ କରିଛନ୍ତି । ଲୋକନାଥ ଚୌଧୁରୀ ଓ ମୁଁ ଏକ ବୁଦ୍ଧି ପାଞ୍ଚିଲୁ । ଗୁରୁଚରଣ ପଟ୍ଟନାୟକ ମଧ ସମ୍ମତି ଦେଲେ, ମୋର ମନେ ପଡୁଛି ୰ଦୁର୍ଗାଚରଣ ମହାନ୍ତି ମଧ ।

କଟକ ସହରର ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ଫୋନ କରି କୁହାଗଲା ଯେ ମହତାବବାବୁ ଡକ୍ଟର ପରିଜାଙ୍କ ଘରେ ବସିଛନ୍ତି ଏବଂ ଆପଣଙ୍କୁ ଅନୁରୋଧ କରୁଛନ୍ତି ତୁରନ୍ତ ଆସିବା ପାଇଁ । ଏ ଭଳି ଦୁଇଜଣ ବିଶିଷ୍ଟ ବ୍ୟକ୍ତି ଡାକୁଛନ୍ତି, ପୁଣି ସାମ୍ପ୍ରଦାୟିକ ଗଣ୍ଡଗୋଳ ସଂପର୍କରେ ଆଲୋଚନା କରିବା ପାଇଁ । ସମସ୍ତେ ଧାଇଁଲେ । ମହତାବ ବାବୁ ବା ପରିଜା ସାହେବ କିଛି ବୁଝିପାରୁ ନାହାନ୍ତି । କାରଣ ସମସ୍ତେ ଏତେ ଉତ୍କଣ୍ଠିତ ଯେ ପହଞ୍ଚିଲା ମାତ୍ରେ ଗୁରୁତର ସମସ୍ୟା ଆଲୋଚନା ଆରମ୍ଭ ହୋଇ ଯାଉଛି । ବୀରେନ ମିତ୍ର ବି ସେଇପରି ପହଞ୍ଚିଲେ । ଦଳ, ମତ, ଗୋଷ୍ଠୀ ନିର୍ବିଶେଷରେ ସମସ୍ତେ ହାଜର,ପ୍ରାୟ ପଚାଶ ଜଣ ସରିକି ଲୋକ । ସୁରେନ୍ଦ୍ର ନାଥ ପଟ୍ଟନାୟକ, ରାଜସ୍ୱ ମନ୍ତ୍ରୀ, ତାଙ୍କୁ ଡକାଇ ପଠାଗଲା । ସେ ଆସି ପହଞ୍ଚିଲେ । ସେ ଜଣେ ନିଷ୍ପତ୍ତିମୂଳକ (discisive) ଲୋକ । ଆସି କଲେକ୍ଟର ଓ ଏସ.ପି. ଙ୍କୁ ନିର୍ଦ୍ଦେଶ ଦେଲେ ସାଂଧ ଆଇନ ଏବଂ ୧୪୪ ଧାରା ଜାରି କରିବା ପାଇଁ । ସମସ୍ତେ ଆଶ୍ୱସ୍ତ ହେଲେ ।

ଏବଂ ବର୍ତ୍ତମାନ କଥା ପଡ଼ିଲା ଯେ କିଏ ଏଇ ସମସ୍ତଙ୍କୁ ଡାକିଲା ଏଠିକି ? କିଏ ସେ ? ସମସ୍ତେ କହିଲେ ଯେ ଆମେ ଖବର ପାଇ, ଡାକରା ପାଇ ଆସିଛୁ । ମୋର ତ କିଛି ହେଲେ କହିବାର ନ ଥିଲା, ମୁଁ ଚୁପ୍ ହୋଇ ବସିଥିଲି । ହଠାତ୍ ମହତାବବାବୁ ମୋ ଉପରେ ଆଖି ପକାଇ କହିଲେ ଯେ ପଟ୍ଟନାୟକ ମହାଶୟ (ଜେଲରେ ଡାକିଲାବେଳେ ସେ ମୋତେ ଏଇପରି ସମ୍ବୋଧନ କରନ୍ତି) ଏସବୁ କାହିଁକି ମନେ ହେଉଛି ଆପଣଙ୍କର ବୁଦ୍ଧି ବୋଲି । କାରଣ ସମସ୍ତେ କହୁଚନ୍ତି ଡାକରା ପାଇ ଆସିଛନ୍ତି । ଏତିକି ଲୋକଙ୍କର ଫୋନ ନମ୍ବର ଜାଣିଲା କିଏ, ଫୋନ୍ କଲା କିଏ ? ସେ ଯାହାହେଉ ଆପଣଙ୍କୁ ଆମ ସମସ୍ତଙ୍କର ଧନ୍ୟବାଦ । ସେଦିନ ଉପସ୍ଥିତ ଥିବା

Digitized by srujan ka@gmail.com

ଅନେକ ଲୋକ ଆଉ ନାହାନ୍ତି । ସେମାନଙ୍କର ସ୍ମୃତି ଏବଂ ଆଶୀର୍ବାଦ ମୋର ପାଥେୟ ହୋଇ ରହିଛି । ଲୋକନାଥ ଚୌଧୁରୀ ମୋର ଛାତ୍ର ଜୀବନର ନେତା । ସେ ମୋତେ ଗଭୀର ଭାବେ ଭଲ ପାଆନ୍ତି । ଆଜି ମଧ । ଯଦିଓ ତାଙ୍କ ପାର୍ଟି ଭାଷାରେ ମୁଁ ଏକ ''ରେନିଗେଡ଼'' ଅର୍ଥାତ ଦଳତ୍ୟାଗୀ, ଗୋଷ୍ଠୀତ୍ୟାଗୀ । ସେ ମୋତେ କୁଣ୍ଢାଇ ପକାଇ ଆଶୀର୍ବାଦ କଲେ । ତାଙ୍କ ଆଖି ଲୁହରେ ଭରି ଯାଇଥିଲା । ତାଙ୍କ 'କ୍ୟାଡରର' ଦକ୍ଷତାରେ ସେ ବୋଧହୁଏ ଅଭିଭୂତ ହୋଇ ଯାଇଥିଲେ ।

କଟକରେ ସାମ୍ପ୍ରଦାୟିକ ଦଙ୍ଗା । ଏହା 'ମନ୍ଦିର ମାର୍କା' ଏବଂ 'ତାରା ମାର୍କା' ଭିତରେ ସଂଘର୍ଷ ବୋଲି ଆଖ୍ୟା ଦିଅନ୍ତି । ଖ୍ରୀଷ୍ଟ କଲେଜର ଛାତ୍ରମାନେ ଏକ ପ୍ରତିଯୋଗିତାରେ ସିଲ୍ଡ ପାଆନ୍ତି ଏବଂ ବିଜୟ ଶୋଭାଯାତ୍ରା ସୂତାହାଟ ଦେଇ ଗଲାବେଳେ ବାଟରେ ଏକ ମସଜିଦ୍ ପଡ଼େ । ଶୋଭାଯାତ୍ରାରେ ବାଜା ବଜାଇବା ଘଟଣା ନେଇ ମସ୍‌ଜିଦ୍ ପାଖରେ କଣ ଗୋଟାଏ ଗଣ୍ଡଗୋଳ ହୁଏ । ସେଇ ରାତିରେ, ସେଇ ସୂତାହାଟ ପାଖରେ ଗୋଟାଏ ବତୀଖୁଣ୍ଟ ପାଖରେ ସକାଳୁ ପ୍ରସିଦ୍ଧ ଅମୁର ମୃତଦେହ ପଡ଼ିଥିବାର ଦେଖାଯାଏ । ଅମୁ ପିଇଥିଲା ଖୁବ୍ ଜୋରରେ ଏବଂ ତାହା ହିଁ ତାହାର ମୃତ୍ୟୁର କାରଣ । କିନ୍ତୁ ସବୁ ଗଣ୍ଡଗୋଳ ସ୍ରଷ୍ଟାମାନେ ଗୋଟାଏ ଆଳ ଖୋଜନ୍ତି । ସେଇ ଆଳ ଜରିଆରେ ଆରମ୍ଭ ହୁଏ ଗଣ୍ଡଗୋଳ ।

ଅଷ୍ଟ୍ରିଆର ଯୁବରାଜ ଯାଇଥିଲେ ସର୍ବିଆ ବୁଲି । ସେଇଠି ସେ କୌଣସି ଆତତାୟୀ ହାତରେ ନିହତ ହୁଅନ୍ତି ଏବଂ ଆରମ୍ଭ ହୋଇଯାଏ ଦୁଇ ଦେଶ ମଧ୍ୟରେ ଯୁଦ୍ଧ ଏବଂ କ୍ରମେ ଏହା ବିଶ୍ୱଯୁଦ୍ଧରେ ପରିଣତ ହୁଏ । ସମାଜବିଜ୍ଞାନୀମାନେ କୁହନ୍ତି ଯେ ଯୁଦ୍ଧ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇ ସାରିଥିଲା, ଖୋଜା ଯାଉଥିଲା ଗୋଟାଏ କିଛି ଆଳ ।

ଏହି ସାଂପ୍ରଦାୟିକ ଗଣ୍ଡଗୋଳ ମଧ ଠିକ୍ ସେଇପରି ଘଟଣା । ବିହାରୀ ନାୟକ ପରେ ଅମୁ ହେଉଛି ଚୋରମାନଙ୍କର ଭିତରେ ପ୍ରବାଦ ପୁରୁଷ । ଆମେ ସବୁ ଜେଲରେ ରାଜନୈତିକ ବନ୍ଦୀ ଥିଲାବେଳେ ସେ କାରାଦଣ୍ଡ ଭୋଗ କରୁଥିଲା । ତାକୁ ଖାଇବାକୁ ଅଣ୍ଟେ ନାହିଁ ବୋଲି ଆମେ ତାକୁ ଖାଇବାରୁ କିଛି କିଛି ଦେଉ । ଲମ୍ବା, ଚଉଡ଼ା ମଣିଷ, ଦେଖିବା ପାଇଁ କଳା । ଆମମାନଙ୍କ ଉପରେ ସେ ଖୁସି । ତେବେ ସେଥରକ ଜେଲରୁ ଖଲାସ ହେଲା ପରେ ଆଉ ଚୋରି କରୁ ନ ଥିଲା । ମ୍ୟୁନିସପାଲିଟିରେ କଣ ଗୋଟାଏ ଚାକିରି କରୁଥିଲା । ବୋଧହୁଏ ଲାଇସେନ୍ସ କରିବା ପାଇଁ ସାଇକେଲ ଧରିବା କାମ । ଅମୁ ପରେ ଖଇରାତିକୁ ଏ ଚାକିରି ମିଳିଥିଲା । ଖଇରାତି ଗୁଣ୍ଡାଗିରି- ଦାଦାଗିରି ଛାଡ଼ି ଏଇ କାମ କରୁଥିଲା, ଅମୁ ପରି ।

କଟକ ସହରର ରାଣୀହାଟ ଛକଠାରୁ ଦୋଳମୁଣ୍ଡାଇ ପର୍ଯ୍ୟନ୍ତ ରାସ୍ତା ଆଜି କଟକ ସହରର ସବୁଠାରୁ ଜନଗହଳି ରାସ୍ତାମାନଙ୍କ ମଧ୍ୟରେ ଅନ୍ୟତମ । ସେତେବେଳେ ରାଣୀହାଟ ଛକଠାରୁ ଗଡଡ଼ ସାହି ଗଳି ପର୍ଯ୍ୟନ୍ତ ଘର ଥିଲା । ହାରାଧନ ବାବୁଙ୍କ ଘର ବୋଧହୁଏ ଶେଷ ଘର । ତା'

Digitized by srujan ka@gmail.com

ପରେ ଏ ପଟରେ ଶଗଡ଼ିଆ ସାହି ହେଉଛି ରାସ୍ତାଠାରୁ ବେଶ୍ ଦୂରରେ ଥିବା କିଛି ଚାଳଘର । ଆଜିର ସାଆନ୍ତ ସାହି, ଫ୍ରେଣ୍ଡସ୍ କଲୋନୀ କିଛି ନ ଥିଲା । ଖାଲି ଥିଲା ବ୍ରଜକବାଟି (ବଜ୍ରକବାଟି ନୁହେଁ) ଏବଂ ସେଇଠି ଏକ ଦେଶୀ ମଦ ଦୋକାନ । ସେଇଠି ରାସ୍ତାରେ ଦିନ ଦିପ୍ରହରରେ ତିନିପତି ତାସ ଖେଳ ହୁଏ ଏବଂ ନାଲି ଗାମୁଛାଟିଏ ପକାଇ ଦେଇ ତାରି ଉପରେ ଖେଳ ହୁଏ, ଯେପରି ପୁଲିସ ଆସିବାର ସୁରାକ ପାଇଲା ମାତ୍ରେ ଗାମୁଛାଟିକୁ କାନ୍ଧରେ ପକାଇ ଭଦ୍ରଲୋକଙ୍କ ପରି ଚାଲିଯାଇ ହେବ । ଖଇରାତି ବି ସେଇ ରାସ୍ତାରେ ଠିଆ ହୁଏ । କଲେଜ ପିଲାମାନେ ସେଇ ବାଟରେ ଗଲାବେଳେ ଖଇରାତି ସେମାନଙ୍କୁ ଧମକାଇ ପଇସା ଆଦାୟ କରେ । ଏଇପରି କରୁ କରୁ ଦିନେ ସେ ହାବୁଡ଼ିଲା ଏକ ଫାଷ୍ଟ ଇଅରର ଛାତ୍ର ସହିତ । ଏବଂ ଖଇରାତିର ଧମକାନିକୁ ସେ ମାନିଲା ନାହିଁ । ଆବେ, ତୁ ଜାଣିଚୁ ମୁଁ ଖଇରାତି । ଦେଖିବୁ କଣ କରିବି ? ସେଇ ପିଲାଟି ବି ଉତ୍ତର ଦେଲା, ଚୁପ୍ ବେ ! ତୁ ମୋ ଏଇଆ କରିବୁ (କହି ସେ ଖରାପ ଅଙ୍ଗଭଙ୍ଗି ଦେଖାଇଲା) । ଖଇରାତିକୁ ସମ୍ଭାଳେ କିଏ ? ଦୁହେଁ ଧରାଧରି ହୋଇଗଲେ ଏବଂ ସେଇ ମାଡ଼ରେ ଉକ୍ତ ବାଳକ ଖଇରାତିର ଦୁଇହାତକୁ ଭାଙ୍ଗିଦେଲା । କଟକ ସହରର ପ୍ରସିଦ୍ଧ ଗୁଣ୍ଡାର ଏଇ ଦୁର୍ଦ୍ଦଶା ! ବହୁକାଳ ବିତିଯାଇଛି, ଖଇରାତି ମ୍ୟୁନିସପାଲଟିରେ କାମ କରୁଛି, ସେଦିନର ସେଇ ବାଳକ ବର୍ତ୍ତମାନ ମ୍ୟୁନିସପାଲଟିର ଏକ୍‌ଜିକ୍ୟୁଟିଭ ଅଫିସର ! ଖଇରାତି ସାଲ୍ୟୁଟ କରି ଠିଆହେଲା । ଦୈବାତ୍ ମୁଁ ସେଦିନ ସେଠାରେ ବସିଥିଲି । କଲ୍ଲୋଳ ଘୋଷ ପଚାରିଲେ କଣ ଖଇରାତି, କିମିତି ଅଛ ? ମୋତେ ଚିହ୍ନି ପାରିଲଟି ? ଖଇରାତି ମୁଣ୍ଡ କୁଣ୍ଡାଇ କୁଣ୍ଡାଇ କହିଲା, ସାର୍, ମୁଁ କଣ ଭୁଲିପାରିବି ସେଦିନ କଥା ?

ଖଇରାତି କଟକ ମ୍ୟୁନିସପାଲଟିର କର୍ମଚାରୀ । କଟକରେ ଚାଉଳ ମିଳୁନାହିଁ । ପ୍ରତିବାଦ ସଭା ହେଉଛି । ମ୍ୟୁନିସପାଲଟିର ଚେୟାରମ୍ୟାନ ହୁକୁମ ଦେଉଛନ୍ତି ମିଟିଂ ଭାଙ୍ଗି ପକାଅ । ଖଇରାତି ଆସି କହିଲା ଆଜ୍ଞା, ମୋତେ ଆଉ ସବୁ ସଭା ଭାଙ୍ଗିବାକୁ କୁହନ୍ତୁ । କେବଳ କମ୍ୟୁନିଷ୍ଟ ପାର୍ଟିର ସଭା ଭାଙ୍ଗିବାକୁ କହନ୍ତୁ ନାଇଁ । ସେମାନଙ୍କୁ ଆପଣ ଚିହ୍ନନ୍ତି ନାହିଁ । ସେମାନେ ମାରି ପକାଇବେ ।

ଗୁଣ୍ଡାର ବି ମୃତ୍ୟୁ ଭୟ ଅଛି ଏବଂ ସେଇ ଭୟ ସଂପର୍କରେ ସେ ସଚେତନ ହୋଇଗଲେ ଦାଦାଗିରି ଛାଡ଼ିଯାଏ । ଗଲାବର୍ଷ ଏକ ନିର୍ବାଚନରେ ଆସିକା ଏବଂ କବିସୂର୍ଯ୍ୟ ନଗରରେ କମ୍ୟୁନିଷ୍ଟ ପାର୍ଟିର ପ୍ରାର୍ଥୀମାନେ ନିରାପତ୍ତା ମିଳିଲା ନାହିଁ ବା ନିରାପତ୍ତାର ଭୟରେ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଲେ ଏବଂ କଂଗ୍ରେସ ଦଳର ପ୍ରାର୍ଥୀମାନେ ନିରାପଦରେ ବିଜୟଲାଭ କଲେ । କେତେ ''ଭଦ୍ରଲୋକ'' ହୋଇଗଲେଣି ଏଇ ''ବିପଜ୍ଜନକ'' ବ୍ୟକ୍ତିମାନେ ? ସମୟ ବଦଳି ଯାଉଛି । ସେ ଦିନର ''ବିପଜ୍ଜନକ'' ବ୍ୟକ୍ତିମାନେ ଆଜି ''ଭଦ୍ରଲୋକ'' ଏବଂ ତା'ର ଫଳ ସୁସ୍ପଷ୍ଟ । ସେ ଦିନ ପଶ୍ଚିମବଂଗର ଅର୍ଥମନ୍ତ୍ରୀ ପ୍ରସିଦ୍ଧ ଅର୍ଥନୀତିଜ୍ଞ ଶ୍ରୀ ଅଶୋକ ମିତ୍ର କହିଲେ ଯେ

Digitized by srujan ka@gmail.com

''ମୁଁ କମ୍ୟୁନିଷ୍ଟ, ଭଦ୍ରଲୋକ ନୁହେଁ (I am a Communist, not a gentleman) ଅର୍ଥାତ ଭଦ୍ରଲୋକ କହିଲେ ଯେଉଁ ତଥାକଥିତ ନମ୍ରତା, କମ୍ପ୍ରମାଇଜିଙ୍ଗ ମନୋଭାବ, ଚିପା ଚିପା କଥା, ମଲ୍ଲୀଫୁଲିଆ ହସ, କୁଞ୍ଚା କୁଞ୍ଚା ଗିଲଦିଆ କାମିଜ, ବଟରଫ୍ଲାଇ ନିଶ, ମାପଚୁପ କଥା ବୁଝାଯାଏ, ମୁଁ ତାହା ନୁହେଁ । ବିପ୍ଲବୀମାନେ ଭଦ୍ରଲୋକ ପାଲଟିଲେ ବିପ୍ଳବକୁ ଭୁଲିଯିବାକୁ ପଡ଼ିବ । ସମାଜର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ, ଭ୍ରଷ୍ଟାଚାରୀ ଗୋଷ୍ଠୀ, ଯଦି ତମର ନାମ ଶୁଣିଲେ ଆତଙ୍କିତ ନ ହେବେ, ତା'ହେଲେ ସମାଜ ବଦଳିବ କିମିତି ?

ସେଇ ସାମ୍ପ୍ରଦାୟିକ ଗଣ୍ଡଗୋଳବେଳେ ଓଡ଼ିଶାର ରାଜ୍ୟପାଳ ଥିଲେ ଡକ୍ଟର ଏସ.ଏସ. ଆନସାରୀ (ପ୍ରସିଦ୍ଧ ଜାତୀୟତାବାଦୀ ସ୍ୱାଧୀନତା ସଂଗ୍ରାମୀ ଡକ୍ଟର ଏମ.ଏ. ଆନସାରୀଙ୍କ ଆତ୍ମୀୟ) ତାଙ୍କର ଡାକ ନାମ ହେଉଛି ସୌକତ । ସେଇ ନାମରେ ତାଙ୍କୁ ସମସ୍ତେ ଡାକନ୍ତି, ଦଳ, ମତ, ଗୋଷ୍ଠୀ ନିର୍ବିଶେଷରେ । ମୋର ମନେ ପଡୁଛି । ଆମେ ସବୁ ଜର୍ମାନୀରେ ଥାଉ । ଚେକୋସ୍ଲୋଭାକିଆ ଗସ୍ତରୁ ଫେରି ଆମ ଦଳର ନେତ୍ରୀ ସୁଭଦ୍ରା ଯୋଶୀ ଏବଂ ତାଙ୍କର ସ୍ୱାମୀ ଯାଉଥାଆନ୍ତି ଇଂଲଣ୍ଡ । ଆପଣ କେଉଁଠି ରହିବେ ? ଦିଲ୍ଲୀର ଯିଏ ଥିବ ଆମେ ସେଇଠି ରହିବୁ । ଦିଲ୍ଲୀ ଲୋକ ଦିଲ୍ଲୀବାଲା, ସେ ଯେଉଁ ଦଳ, ମତର ଲୋକ ହେଉନ୍ତୁ ନା କାହିଁକି ? ଓଡ଼ିଶାରେ ସେପରି ଖୁବ୍ କ୍ୱଚିତ ଦେଖାଯାଏ । ପୂରା ଯେ ଦେଖାଯାଏ ନାହିଁ ତା ନୁହେଁ କିନ୍ତୁ କ୍ୱଚିତ୍ । ସମରେନ୍ଦ୍ର କୁଣ୍ଡୁ, ଶ୍ରୀବଲ୍ଲଭ ପାଣିଗ୍ରାହୀ,ଭବାନୀ ପଟ୍ଟନାୟକ, ଲକ୍ଷ୍ମଣ ମଲ୍ଲିକ, ବ୍ରହ୍ମାନନ୍ଦ ପଣ୍ଡା, ସୁଭାଷ ମହାନ୍ତି ପ୍ରଭୃତିଙ୍କ ନାମ ମନେପଡ଼େ, ପାର୍ଲ୍ୟାମେଣ୍ଟ ସଭ୍ୟ ଭାବରେ । ଅନ୍ୟମାନେ ଥାଇ ପାରନ୍ତି ।

ସୌକତ ପାଗଳା ଲୋକ, ସବୁ ଭୁଲିଯାଆନ୍ତି । ଇମିତି ଅନେକ ଅଭିଯୋଗ ମୁଁ ଶୁଣିଛି । କିନ୍ତୁ ମୁଁ ଯାହା ଜାଣିଛି ସେ ଯେଉଁଥିରେ ଇଣ୍ଟରେଷ୍ଟ (Interest) ନିଅନ୍ତି ବା ଆଗ୍ରହ ପ୍ରକାଶ କରନ୍ତି ସେତକ ଠିକ୍ କରନ୍ତି । ସାମ୍ପ୍ରଦାୟିକ ଗଣ୍ଡଗୋଳ ପରେ ଦଳେ ଉଗ୍ରପନ୍ଥୀ ତାଙ୍କୁ ଦେଖାକଲେ । ସେ ଦିନ ମୁଁ ତାଙ୍କ ପାଖରେ ବସିଥିଲି । ସେମାନେ ଭାବିଥିଲେ ଯେ ସୌକତ ମୁସଲମାନ ତେଣୁ ତାଙ୍କୁ ନିଶ୍ଚିତ ଭାବରେ ସମର୍ଥନ ମିଳିବ । ସୌକତ ସବୁ ଶୁଣିଲେ ଏବଂ ପଚାରିଲେ ଯେ କଣ ହେଲା ଘଟଣା ? ଘଟଣା ଶୁଣି ସେ କହିଲେ ଖ୍ରୀଷ୍ଟ କଲେଜ ପିଲାମାନଙ୍କ ଭିତରେ ତ ସବୁ ଧର୍ମର ପିଲାଥିବେ । ସେମାନେ ହଁ ଭରିଲେ । ପିଲାମାନେ ବାଜା ବଜାଇଲେ, ସେଇଟା ଭାରି ଖରାପ କଥା ! ସେ ବାଟ ଦେଇ ତ ଟ୍ରକ, ଟ୍ରାକ୍ଟର, ମୋଟର ସବୁ ଯାଉଥିବ, ଗାଡ଼ିର ଶବ୍ଦ, ହର୍ଣ୍ଣ ଶବ୍ଦ ସବୁ ଶୁଭୁଥିବ । ସେ ସବୁ ତ ବନ୍ଦ ହେବା ଉଚିତ, ନା ନାହିଁ । ଆମ ମସଜିଦ୍ ସବୁ ସେଇଯୋଗୁଁ ଥିଲା ଲୋକ ବସତିରୁ ଦୂରରେ । 'ଆଜାନ' ସେଇଯୋଗୁଁ ଏକ ଉଚ୍ଚ ସ୍ଥାନରେ ରହି ଡକାଯାଏ, ଯାହା ଶୁଭିବ ଦୂରକୁ । ବର୍ତ୍ତମାନ ତମେମାନେ 'ଆଜାନ' ଡାକୁଛ ମାଇକ୍ରୋଫୋନରେ । ଯଦି ପଚରାଯାଏ କାହିଁକି ? ତା'ହେଲେ କଣ ଉତ୍ତର ଦେବ ।

Digitized by srujan ka@gmail.com

ସେ ଗପିବାକୁ ଆରମ୍ଭ କଲେ ।

ଦିଲ୍ଲୀରେ ସେ ବର୍ଷ ମହରମ୍ ପାଳିତ ହେଉଥାଏ । ତାଜିଆ ବାହାରିଥାଏ । ଚିରାଚରିତ ଭାବରେ ପଛରେ କିଛି ଲୋକ ଛାତିରେ ହାତ ପିଟି, 'ହାୟ, ହୁସେନ୍, ହାୟ ହୁସେନ' କହି ଚାଲିଥାନ୍ତି । ସେ ବର୍ଷ ମକ୍କା ଓ ମଦିନାରୁ ଦୁଇଜଣ ମୌଲବୀ ଆସିଥାନ୍ତି । ସେମାନେ ଦେଖୁଥାନ୍ତି ଏଇ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରାକୁ । ହଠାତ୍, ସେ ଦୁଇଜଣ ଯାକ ପ୍ରଶ୍ନ କଲେ— ଯେ କଣ ? କଣ ପାଇଁ ଏ ଲୋକମାନେ ଛାତିରେ ହାତ ପିଟି ପିଟି ଚାଲିଛନ୍ତି ? ହୁସେନ୍‌ଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ଏଇ ଛାତିରେ ହାତ ପିଟି ଚାଲିବା ଶୁଣି ସେମାନେ ପଚାରିଲେ, କେଉଁ ହୁସେନ ? ମହମ୍ମଦଙ୍କ ପୁଅ ବୋଲି ଶୁଣି ସେମାନେ ପଚାରିଲେ ହୁସେନ୍‌ଙ୍କ ମୃତ୍ୟୁ ସମ୍ବାଦ କଣ ଆପଣମାନେ ଆଜି ପାଇଲେ ନା କଣ ?

ସେତେବେଳକୁ 'ପ୍ରତିନିଧି' ଦଳର ଅବସ୍ଥା ଖରାପ । ମକ୍କା, ମଦିନାରେ ଏଇ ଛାତିରେ ହାତ ପିଟି ଚାଲିବା ବନ୍ଦ ହୋଇଗଲାଣି କେଉଁ କାଳରୁ । ଆଉ ଆପଣମାନେ ସେଇପରି ବ୍ୟସ୍ତ ମସ୍‌ଜିଦ୍ ଆଗରେ ବାଜା ବାଜିବା ଯୋଗୁଁ । ଯଦି ବଡ଼ ମଣିଷମାନେ ଏହା କରି ଥାଆନ୍ତେ, ତା'ହେଲେ କଥାବାର୍ତ୍ତା କରି ଏହାର ସମାଧାନ ହୋଇ ପାରିଥାନ୍ତା । ଆଉ ପିଲା ସମସ୍ତଙ୍କର ସମାନ । ସେମାନେ କଣ ଟିକିଏ କରିଦେଲେ ବୋଲି ଆପଣମାନେ ଏତେ ବ୍ୟସ୍ତ !

ସୌକତଙ୍କ ପରି ମୁସଲିମ ନେତାମାନେ ଥିଲେ ଜିନ୍ନାଙ୍କ ଖୁବ୍ ବିରୋଧୀ । ସୌକତ କହୁଥିଲେ ଯେ ଜିନ୍ନା ଫେଜ ଟୋପି ପିନ୍ଧୁ ନ ଥିଲେ, ଉର୍ଦ୍ଦୁ ଜାଣି ନ ଥିଲେ, କୋରାନ ପଢ଼ି ନ ଥିଲେ, ବିଲାତି ସୁଟ ପିନ୍ଧୁଥିଲେ, ଗାଈ, ଘୁଷୁରି ଉଭୟ ମାଂସ ଖାଉଥିଲେ । ଏଇଭଳି ନେତା ଏକ ଆଧୁନିକ ରାଷ୍ଟ୍ର ଗଢ଼ିବା ପାଇଁ ଉଦ୍ୟମ କରିବ ଏହା ଆଶା କରିବାର କଥା । କିନ୍ତୁ ତାହା ହେଲା ନାହିଁ । ନିଜର ସ୍ମୃତିଚାରଣ କରି ସେ କହିଲେ ଯେ ଥରେ ଭାରତୀୟ ଜାତୀୟ କଂଗ୍ରେସର ଏକ ସାଧାରଣ ଅଧିବେଶନରେ (ସେତେବେଳକୁ ମୁସଲିମ୍ ଲିଗ୍ କଂଗ୍ରେସରେ ଥାଏ) ମୁଁ ଏକ ଚୌକି ଉପରେ ବସି ଟେବୁଲ ଉପରେ କାଗଜ ପକାଇ ଚିଠା କରୁଥିଲି ଏକ ପ୍ରସ୍ତାବ— ସାମ୍ପ୍ରଦାୟିକତାବାଦ ବିରୁଦ୍ଧରେ । ହଠାତ୍ ମୋ ପିଠିରେ କିଏ ଥାପୁଡ଼ାଇଲା ପରି ମନେହେଲା । ମୁଁ ଅନାଇ ଦେଖିଲି ଯେ ନିଜେ ମହମ୍ମଦ ଅଲ୍ଲୀ ଜିନ୍ନା ଠିଆ ହୋଇଛନ୍ତି । ମୁଁ ତ ତାଙ୍କୁ ନମସ୍କାର କରେ ନାହିଁ କି ସମ୍ମାନ ମଧ ଦେଖାଏ ନାହିଁ ତାଙ୍କର ସାମ୍ପ୍ରଦାୟିକ ନୀତି ଯୋଗୁଁ । ସେ ପଚାରିଲେ କଣ ଲେଖୁଛ ? ମୁଁ କହିଲି ଯେ ମୁଁ ଆପଣ ଓ ଆପଣଙ୍କ ସାମ୍ପ୍ରଦାୟିକତାବାଦ ବିରୁଦ୍ଧରେ ପ୍ରସ୍ତାବ ଚିଠା କରୁଛି । ସେ ମୋତେ ତତ୍‌କ୍ଷଣାତ୍ ପଚାରିଲେ, ସୌକତ, ତମେ ମୁସଲିମ ଲିଗରେ ଯୋଗ ଦେଉନ ? ମୁଁ ତାଙ୍କୁ ଉତ୍ତର ଦେଲି, ଆପଣଙ୍କର କାର୍ଯ୍ୟକ୍ରମ କଣ ? ସେ ମୋ ହାତରୁ ଖଣ୍ଡିଏ କାଗଜ ଟାଣି ନେଇ ଗୋଟିଏ ଶବ୍ଦ **ଲେଖି** ଫେରେଇ ଦେଲେ ଏବଂ କହିଲେ ଏଇ ହେଉଛି ଏକମାତ୍ର କାର୍ଯ୍ୟକ୍ରମ । ତମେ ରାଜି ତ ? ସେଥିରେ ଲେଖାଥିଲା କେବଳ ଗୋଟିଏ ଶବ୍ଦ—

Digitized by srujan ka@gmail.com

(POWER ) କ୍ଷମତା । ହସି ହସି ସେ କହିଲେ କେବଳ ଏଇ ଗୋଟିଏ କାମପାଇଁ ମୋର ସବୁ ନୀତି । ତମେ ଚିନ୍ତା କରି ମତେ କହିବ ।

ଅଧ୍ୟାପକ ବିପନ୍ ଚନ୍ଦ୍ର ମହାତ୍ମା ଗାନ୍ଧୀ ଓ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ସହ ଏକ ତୁଳନା କରି କହିଥିଲେ ଯେ ମହାତ୍ମା ଗାନ୍ଧୀ ରକ୍ଷଣଶୀଳ । ସାଧାରଣତଃ ସେ ରାତି ଚାରିଟାରେ ଉଠନ୍ତି । ଦଶଟାରେ ଶୋଇ ପଡ଼ନ୍ତି । ଦିନେ ରାତିରେ ସେ ରାତି ତିନିଟାରେ ଉଠି ପଡ଼ିଲେ । ତାଙ୍କ ଦିହଯାକ ଝାଳରେ ବୁଡ଼ି ଯାଇଛି ଏବଂ ସେ ଥରୁଛନ୍ତି ଦେଖି ସମସ୍ତେ ଭବିଲେ ଯେ ତାଙ୍କର ବୋଧହୁଏ ହୃଦଯନ୍ତ୍ରରେ ଯନ୍ତ୍ରଣା ଦେଖାଦେଇଛି । ଡାକ୍ତର ଡାକିବାକୁ ବରାଦ ହେଲା । କିନ୍ତୁ ସେ କହିଲେ ଯେ, ସେ ସବୁ କିଛି ନୁହେଁ । ମୋର ଗୋଟିଏ ଭୁଲ ହୋଇଯାଇଛି ଏବଂ ତାହାରି ଦଣ୍ଡ ମୋତେ ଭୋଗ କରିବାକୁ ପଡୁଛି । ମୁଁ ଆଜି ଶୋଇବା ପୂର୍ବରୁ ପ୍ରାର୍ଥନା କରିନାହିଁ । ଏଇଭଳି ଏକ ମଣିଷ ଧର୍ମ ନିରପେକ୍ଷ (Secular) ରାଷ୍ଟ୍ର ଗଢ଼ିବା ପାଇଁ ପ୍ରାଣପାତ କରିଗଲେ ଅଥଚ ଜିନ୍ନା ଥିଲେ ଏକ ଆଧୁନିକ (Modern) ମଣିଷ । ସେ ଦିନେ ହେଲେ ଫେଜ୍ ଟୋପି ପିନ୍ଧି ନାହାନ୍ତି, ଉର୍ଦ୍ଦୁ ପଢ଼ି ନାହାନ୍ତି, ମସ୍‌ଜିଦ୍ ଯାଇ ନାହାନ୍ତି । ଗାଈ, ଘୁଷୁରି ଉଭୟ ମାଂସ ଖାଆନ୍ତି । କେବଳ ସେତିକି ନୁହେଁ ମୁଲ୍ଲା ଓ ମୌଲବୀମାନଙ୍କୁ ଡାକି ଖାଇବାକୁ ଦିଅନ୍ତି ସେଇ ମାଂସ । ଏହା ଭାରତର ଶିକ୍ଷାମନ୍ତ୍ରୀ ଏମ୍. ସି. ଚଗଲା ତାଙ୍କର ରୋଜେସ୍ ଇନ ଡିସେମ୍ବର (Roses in December) ଶୀର୍ଷକ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ସେ ସଂଗ୍ରାମ କଲେ ଏକ Theocratic ବା ଧର୍ମଭିତ୍ତିକ ରାଷ୍ଟ୍ର ପାଇଁ । ଏହା ହେଉଛି ଇତିହାସର କ୍ରୁର ପରିହାସ ।

ପାକିସ୍ତାନ ଗଢ଼ାହେଲା ପରେ କେତେକ ଶକ୍ତି ଭାରତୀୟ ମୁସଲମାନମାନଙ୍କର ଭାରତ ପ୍ରତି ଆନୁଗତ୍ୟ ବିଷୟରେ ପ୍ରଶ୍ନ ଉଠାଇଛନ୍ତି । ସତେ ଯେପରି ଭାରତୀୟ ମୁସଲମାନମାନେ ହିନ୍ଦୁ, ଶିଖ୍, ଖ୍ରୀଷ୍ଟିଆନମାନଙ୍କ ପରି ଏଇଠି ଜନ୍ମ ହୋଇ ନାହାନ୍ତି ବା ପାକିସ୍ତାନର ଜନ୍ମବେଳେ ସେମାନଙ୍କର ରାୟ ମଗାଯାଇଛି ଯେ ସେମାନେ କେଉଁଠି ରହିବେ ସେ ସଂପର୍କରେ ଆପଣାର ରାୟ ଦିଅନ୍ତୁ । ଏଭଳି ରାୟ ଭାରତର କୌଣସି ନାଗରିକ ଦେବାର ପ୍ରଶ୍ନ ଉଠି ନ ଥିଲା । ତେଣୁ ପାକିସ୍ତାନ ଗଢ଼ା ହୋଇଗଲା ବୋଲି ସେମାନଙ୍କର ଆନୁଗତ୍ୟ ଉପରେ ଆହ୍ୱାନ ଆସିବ ଏହା ସଂପୂର୍ଣ୍ଣ ଅଯୌକ୍ତିକ । ଆଉ ଯଦି ଭାରତବର୍ଷର ମୁକ୍ତି ଆନ୍ଦୋଳନ କଥା ବିଚାର କରାଯାଏ ତା'ହେଲେ ଦେଖାଯିବ ଯେ ହଜାର ହଜାର ମୁସଲିମ ଏହି ସଂଗ୍ରାମରେ ପ୍ରାଣପାତ କରିଛନ୍ତି । ତ୍ୟାଗ ଦୃଷ୍ଟିରୁ ଖାଁ ଅବଦୁଲ୍ ଗଫୁର ଖାଁ, ମୌଲାନା ଆବୁଲ କାଲାମ ଆଜାଦ୍, ଆସଫ୍ ଅଲ୍ଲି, ଡକ୍ଟର ଆନସାରୀ ପ୍ରଭୃତିଙ୍କ ତ୍ୟାଗ କେଉଁ ଗୁଣରେ ଅନ୍ୟମାନଙ୍କଠାରୁ କମ୍ ।

ମୁଁ ଫେରୁଥାଏ ଇଉରୋପ ଗସ୍ତ ସାରି ରୁଷକୁ । ମୋ ପାଖ ସିଟ୍‌ରେ ଜଣେ ବୟସ୍କା ମହିଳା ବସିଥାନ୍ତି । ବୁଝିଲି ଯେ ସେ ହେଉଛନ୍ତି ରୁଷର ସ୍ୱାସ୍ଥ୍ୟ ମନ୍ତ୍ରୀ । ଗପ ଜମିଲା । ସେ କିଛି କିଛି ଇଂରାଜୀ ଜାଣନ୍ତି । ଦିଲ୍ଲୀର କଳାବତୀ ଶରଣ ଶିଶୁ ଚିକିତ୍ସାଳୟକୁ ରୁଷର ସାହାଯ୍ୟ କଥା

Digitized by srujan ka@gmail.com

ସେ ଉଲ୍ଲେଖ କଲେ । ସେଠାରେ ଅନେକ ଡାକ୍ତର ସୋଭିଏତ୍ ରୁଷର ଏବଂ ସେଠାରେ ମଧ ପୋଲିଓ ରୋଗର ପ୍ରତିଷେଧକ (Preventive) ଔଷଧ ଦିଆଯାଏ ପିଲାମାନଙ୍କୁ ପାଟିରେ (ଇଂଜେକ୍ସନ୍‌ରେ ନୁହେଁ) । ମୋର ବକ୍ତବ୍ୟ– ‘‘ଆମପାଇଁ ମସ୍କୋ ଯେପରି ଦୂର, ଦିଲ୍ଲୀ ବି ସେଇପରି ଦୂର । ଦିଲ୍ଲୀର ଡାକ୍ତରଖାନାକୁ ସାହାଯ୍ୟ ଓଡ଼ିଶା ପାଇଁ କୌଣସି ମୂଲ୍ୟ ନାହିଁ କାରଣ ଆମ ପିଲାଏ ତ ଦିଲ୍ଲୀ ଆସିବା ସମ୍ଭବ ନୁହେଁ ।’’ କିନ୍ତୁ କଣ କରାଯାଇ ପାରିବ ବୋଲି ସେ ମୋତେ ପ୍ରଶ୍ନ କଲେ । ଆପଣ ନିର୍ଦ୍ଦେଶ ଦେଲେ ମୁଁ ଦିଲ୍ଲୀରୁ ନେଇଯିବି ଔଷଧ ଥରକୁ ଥର । ‘‘କିନ୍ତୁ ତାକୁ ତ ରେଫ୍ରିଜରେଟର ଭିତରେ ନେବାକୁ ହେବ, ତାହା ଆପଣ ପାରିବେ ?’’ ମୁଁ ଛାଡ଼ିବା ଲୋକ ନୁହେଁ । ଉତ୍ତର ଦେଲି ଚେଷ୍ଟା କରିବି । ସେ ସମ୍ମତି ଦେଲାକ୍ଷଣି ମୁଁ ତାଙ୍କ ହାତକୁ ଉଡ଼ାଜାହାଜ କଂପାନୀ ଦେଇଥିବା ରାଇଟିଙ୍ଗ ପ୍ୟାଡ୍‌ଟି ବଢ଼ାଇ ଦେଇ କହିଲି, ଏଇଥିରେ ଖଣ୍ଡେ ଚିଠି ଲେଖି ଦିଅନ୍ତୁ । ସେ ହସି ହସି କହିଲେ ଯେ ଆପଣ ତ ଖୁବ୍ ଡଗେଡ (dogged) ଏବଂ ଚାଲାକ ଦେଖୁଚି । ସାଙ୍ଗେ ସାଙ୍ଗେ କାମ । ମୋର କହିବାର କିଛି ନ ଥିଲା । ସେତେବେଳେ ପୋଲିଓ ପ୍ରତିଷେଧକ କୌଣସି ଔଷଧ ନ ଥିଲା । କେବଳ ସୋଭିଏତ୍ ୟୁନିୟନ୍‌ରେ ହିଁ ଏଇ ଓରାଲ (ଖାଇବା ଔଷଧ) ପ୍ରିଭେଣ୍ଟିଭ ଔଷଧ ମିଳୁଥିଲା ।

ଆଜି ତ ପଲ୍‌ସ ପୋଲିଓର ଯୁଗ । ରୋଟାରୀ ଇଣ୍ଟରନେସନାଲ, ଭାରତ ସରକାର ସମସ୍ତଙ୍କର ସାହାଯ୍ୟ, ସମର୍ଥନ ମିଳୁଛି । ଏବଂ ଦେଶକୁ ପୋଲିଓମୁକ୍ତ କରିବା ପାଇଁ ଜାତୀୟ ଅଭିଯାନ ଚାଲିଛି ।

କିନ୍ତୁ ସପ୍ତଦଶ ଶତକରେ ଏ ସବୁର ପ୍ରଶ୍ନ ନ ଥିଲା । କଳାବତୀ ଶରଣ ଡାକ୍ତରଖାନାରେ ଏଭଳି ଔଷଧ ମିଳୁଛି ବି ଅନେକ ଜାଣି ନ ଥିଲେ । ଜାଣିଲେ ବି ସେମାନେ ଦେଉ ନ ଥିଲେ, ବିନା ନିର୍ଦ୍ଦେଶରେ । ନେବା ବି ଥିଲା ଭାରି କଠିନ ଏବଂ ଏକ୍ସପେନସିଭ (Expensive) ମୁଁ ସେ ଔଷଧ ପାଇଁ ଚିଠି ନେଇ ଯେତେବେଳେ କଳାବତୀ ଶରଣ ଡାକ୍ତରଖାନାରେ ପହଁଞ୍ଚି ସେଠାରେ ଥିବା ରୁଷୀୟ ଡାକ୍ତରମାନଙ୍କର ମୁଖ୍ୟକୁ ଦେଖାକଲି ସେ ମୋ ମୁହଁକୁ ତଟସ୍ଥ ହୋଇ ଅନାଇଲେ ଏବଂ ପଚାରିଲେ ଯେ ଆପଣ ଏହାକୁ କିମିତି ପାଇଲେ ? ମୁଁ ତାଙ୍କୁ କହିଲି ଇତିହାସ । ସେ ବଧେଇ ଜଣେଇ କହିଲେ ଏହାକୁ ହିଁ କୁହାଯାଏ ସଚ୍ଚୋଟ ସାମାଜିକ କାର୍ଯ୍ୟ । ମୁଁ ଔଷଧ ନେଇ ପହଞ୍ଚିଲି କଟକରେ ।

ଦିଲ୍ଲୀରେ ଦେଖାହେଲା ସାଥୀ ୰ରାମଚନ୍ଦ୍ର ମିଶ୍ର ଏବଂ ୰ସଦାନନ୍ଦ ମହାନ୍ତିଙ୍କ ସହ । ମୋ ପାଖରେ ଥିଲା ଅନେକ ସାମଗ୍ରୀ । ଦୁଇଟି 35 mm ପ୍ରୋଜେକ୍ଟର, ଦୁଇଟି 16 mm ପ୍ରୋଜେକ୍ଟର, ଗୋଟିଏ ଷ୍ଟୁଡିଓ ଟେପ୍‌ରେକର୍ଡ଼ର, ଗୋଟିଏ ସ୍ଲାଇଡ ପ୍ରୋଜେକ୍ଟର, ଗୋଟିଏ ବଡ଼ ଏବଂ ଗୋଟିଏ ଛୋଟ ଟାଇପ ମେସିନ ଏବଂ ଅନ୍ୟାନ୍ୟ ସାମଗ୍ରୀ । ସେସବୁକୁ ମୁଁ ସେମାନଙ୍କୁ ଦେଇ ଔଷଧ ନେଇ ଆସିଲି ଉଡ଼ାଜାହାଜରେ । ସବୁ ସାମଗ୍ରୀ ସେମାନେ ମୋର ଅନୁରୋଧରେ

Digitized by srujan ka@gmail.com

ଦେଇଦେଇଥିଲେ ମୁଁ ସମ୍ପାଦକ ଥିବା ଅଫିସରେ । ତାହାପରେ ବର୍ଷାଧିକ କାଳ ବିତିଗଲା । ନାନା କାରଣରୁ ମୋତେ ସେଠାରୁ ବିଦା ହେବାକୁ ପଡ଼ିଲା । ମୁଁ ଆସିଲା ପରେ କିନ୍ତୁ ଅଭିଯୋଗ ହେଲା ଯେ ମୁଁ କୁଆଡ଼େ ବହୁ ସାମଗ୍ରୀ ଆଣି ରଖି ଦେଇଛି ଘରେ । ଏଣେ ଘରେ ଅଭିଯୋଗ ଯେ ଯୁଆଡ଼େ ଗଲେ ମଧ କିଛି ଜିନିଷ ଘରକୁ ଆଣୁ ନାହିଁ ସବୁ ଦେଇଦଉଛି କାମ କରୁଥିବା ଅଫିସରେ ।

ମୋର ଏ ବିଷୟରେ ଏକ ନିର୍ଦ୍ଦିଷ୍ଟ ମତ ରହିଛି । ତାହା ହେଉଛି ଏକ ସଂଗଠନର ପ୍ରତିନିଧି ଭାବରେ ଗଲାବେଳେ ଯାହା ସାମଗ୍ରୀ ଉପହାର ମିଳେ ତାହା କେହି ତୁମ ମୁହଁକୁ ଚାହିଁ ଦିଅନ୍ତି ନାହିଁ । ଦିଅନ୍ତି ସଂଗଠନର ପ୍ରତିନିଧି ଭାବରେ । ତେଣୁ ସେସବୁ ସଂଗଠନର ପ୍ରାପ୍ୟ ଏବଂ ତାହା ହିଁ ମୋର ନୀତି ହୋଇ ଆସିଛି । ଆଜି ମଧ ସେଇ ନୀତି ଅନୁସରଣ କରିଛି ଏବଂ ଭବିଷ୍ୟତରେ କରିବି ମଧ । ସେଇ ଯୋଗୁଁ ବର୍ତ୍ତମାନ ମୁଁ କାମ କରୁଥିବା ୟୁନିଭର୍ସରେ ସବୁ ଉପହାର ରହିଛି ୟୁନିଭର୍ସର ସଂପତ୍ତି ଭାବରେ, ଏପରିକି ମୋତେ ଘରେ ଦେଇ ଆସିଥିବା ଉପହାର ମଧ ସବୁ ୟୁନିଭର୍ସର ।

ଯେଉଁ ବନ୍ଧୁମାନେ ଏଇ ଅଭିଯୋଗ କଲେ ସେମାନଙ୍କ ଭିତରେ ଯିଏ ସବୁଠାରୁ ମୁଖର ଥିଲେ, ତାଙ୍କ ଘରେ ବହୁବର୍ଷ ଧରି ବିଭିନ୍ନ ଦେଶାଗତ ବନ୍ଧୁମାନଙ୍କ ଦ୍ୱାରା ଉପହାର ରହି ଆସିଛି ଏବଂ ତାହା ତାଙ୍କର ବ୍ୟକ୍ତିଗତ ସଂପତ୍ତି ଭାବରେ ପରିଗଣିତ ହୋଇଛି ।

ଏ ବିଷୟରେ ମୋର ଆଉ ଏକ ଅଭିଜ୍ଞତା ଆହୁରି ଜୀବନ୍ତ । ଏକ ସାଧାରଣ ନିର୍ବାଚନ ହେଉଥାଏ । ବୀରେନ ମିତ୍ର ଏବଂଭୈରବ ଚନ୍ଦ୍ର ମହାନ୍ତିଙ୍କ ମଧରେ ପ୍ରତିଦ୍ୱନ୍ଦିତା ହେବାର ସମ୍ଭାବନା । ଆମ କିଛିଙ୍କର ମତ ଥିଲା ଯେ ଆମେ ନିଜେ ପ୍ରାର୍ଥୀ ଦେବା, ନଚେତ ଯାହାକୁ ସମର୍ଥନ ଦେବା ଖୋଲାଖୋଲି ସମର୍ଥନ ଦେବା, ନୀତି ଦୃଷ୍ଟିରୁ । ରାଜନୀତିରେ ଭିତିରି କାରବାର ସହିତ ଆମେ ସଂପୃକ୍ତ ରହିବା ଉଚିତ ନୁହେଁ, ଏବଂ ଯେଉଁ ସମୟରୁ ଏଇ ଭିତିରି କାରବାର ଆରମ୍ଭ ହୋଇଛି ଆମକୁ ଦୁର୍ଦ୍ଦଶା ବରଣ କରିବାକୁ ପଡ଼ିଛି । କିଛି ବ୍ୟକ୍ତି ଏହା ଚାହୁଁ ନ ଥିଲେ । ସେମାନଙ୍କର ଭିତିରି କାରବାର ଉଦ୍ୟମକୁ ପ୍ରତିହତ କରି ପ୍ରବୀର ପାଲିତ ପ୍ରାର୍ଥୀ ହେଲେ । ନରେନ୍ଦ୍ର ସ୍ୱାଇଁ ଏବଂ ମୁଁ ରହିଲୁ ଅଫିସ ଦାୟିତ୍ୱରେ । ଖର୍ଚ୍ଚ କରିବାରେ ରାମକୃଷ୍ଣ ପତି ଏବଂ ପ୍ରବୀର ପାଲିତ ଧୁରନ୍ଧର । ପରେ ଯାହା ହେଉ ପଛକେ ଆଗ ଖର୍ଚ୍ଚ ଚାଲୁ । ନରେନ୍ଦ୍ର ସ୍ୱାଇଁ ଏବଂ ମୁଁ ମହା ସମସ୍ୟାରେ ପଡ଼ିଲୁ । ଖର୍ଚ୍ଚ ତ ଚାଲିବ, ନିର୍ବାଚନ ସରିବ, ଧାର ସୁଝିଲା ବେଳକୁ ସମସ୍ତେ ଗୋଡ଼େଇବେ ଆମ ପଛରେ । କାରଣ ଆମେ ଅଫିସରେ । ପେନସନ ଲେନ୍‌ରେ ଅଫିସ ଖୋଲିଲା । ଶରତ ପଟ୍ଟନାୟକ ଥାଆନ୍ତି ନିର୍ବାଚନର ମୁଖ୍ୟ ପରିଚାଳକ । ତାଙ୍କ ସାଙ୍ଗରେ ଆଲୋଚନା କରି ନରେନ୍ଦ୍ର ଓ ମୁଁ ସ୍ଥିର କଲୁ ଯେ ଆମେ ଯାହା ଚାନ୍ଦା ଆଣିବା ତାହା ଏପରି ଭାବରେ ଖର୍ଚ୍ଚ କରିବା ଯେପରି ନିର୍ବାଚନ ପରେ ଅଫିସ ଉପରେ ବା ଆମ ଉପରେ କୌଣସି

Digitized by srujan ka@gmail.com

ବ୍ୟକ୍ତିଗତ ଦାୟିତ୍ୱ ରହିବ ନାହିଁ । ଅଫିସ ଜରିଆରେ ବା ଅଫିସକୁ ଯାହା ବରାଦ ଦିଆଗଲା ସେସବୁ ଆପେ ଆମ ଦ୍ୱାରା ସଂଗୃହୀତ ପାଣ୍ଠିରୁ ଖର୍ଚ୍ଚ କରି ଚାଲିଲୁ । ଇଂଜିନିଅର ବୈଦ୍ୟନାଥ ସାହୁ ଜଣେ କମିଟେଡ (ଅଙ୍ଗୀକାରବଦ୍ଧ) ବାମପନ୍ଥୀ ଏବଂ କମ୍ୟୁନିଷ୍ଟ ଛାତ୍ରାବସ୍ଥାରୁ । ତାଙ୍କ ଚାକିରିର ସାୟଂ କାଳ । ସେ ଚାକିରିରେ ଥିବା ସତ୍ତ୍ୱେ କମ୍ୟୁନିଷ୍ଟ ପାର୍ଟି ତଥା ଏଇ ନିର୍ବାଚନ ପାଇଁ ପାଣ୍ଠି ସଂଗ୍ରହ କଲେ । ମୁଁ ତାଙ୍କ ସାଙ୍ଗରେ । ଯାହା ଆଦାୟ ହୁଏ ମୁଁ ଆଣି ନରେନ୍ଦ୍ରଙ୍କୁ ଦେଇଦିଏ । ନରେନ୍ଦ୍ର ହିସାବ କିତାବରେ ଖୁବ୍ ସଚ୍ଚୋଟ । ସେ ସବୁ ହିସାବ ରଖନ୍ତି କିନ୍ତୁ ଆଦାୟର ସୂତ୍ର କାହାକୁ କହନ୍ତି ନାହିଁ । ନିର୍ବାଚନ ସରିଲା । ଏକ ପଟରେ ବୀରେନ ମିତ୍ର ଏବଂ ଅନ୍ୟ ପଟରେ ଭୈରବବାବୁ ଆମକୁ ଭୁଲ୍ ବୁଝିଲେ । ଭୈରବବାବୁ ତ ଧରିନେଲେ ଯେ ସେ ଭାରତ-ସୋଭିଏଟ୍ ମୈତ୍ରୀ ସମିତିର ସଭାପତି ଥିବା ସତ୍ତ୍ୱେ ଆମେ ତାଙ୍କୁ ''ଠକିଦେଲୁ'' । ଭୈରବବାବୁ ନିର୍ବାଚନରେ ଜିତିଲେ କିନ୍ତୁ ସେ ଭୁଲ୍ ବୁଝାମଣା ଦୂର ହେବାପାଇଁ ସମୟ ଲାଗିଲା । ମୋର ମନେ ପଡୁଛି ସେଇ ବର୍ଷ ଜାନୁଆରୀ ପହିଲା ଦିନ ହଠାତ୍ ଭୈରବବାବୁ ପହଞ୍ଚିଲେ ଆମ ଘରେ ଏବଂ କହିଲେ–''ମୁଁ ସବୁ ଶୁଣିଲି କାଲି । ବର୍ତ୍ତମାନଠାରୁ Let us forgive and forget'' । ତାଙ୍କୁ ବୋଧହୁଏ କିଏ କହି ଦେଇଛି ଆମର ନୀତିଗତ ନିଷ୍ପତ୍ତି କଥା ଏବଂ ସେ ତାକୁ ଠିକ୍ ବୁଝିପାରିଛନ୍ତି ।

ଇତିହାସର କ୍ରୁର ପରିହାସର ଶିକାର କେବଳ ବଡ଼ଲୋକମାନେ ହୋଇନାହାନ୍ତି, ମୋ ଭଳି କ୍ଷୁଦ୍ର ବ୍ୟକ୍ତିମାନେ ମଧ ହୋଇଛନ୍ତି । ସମୟ ଅତିକ୍ରାନ୍ତ ହୋଇଛି । ବୟସ ସତୁରୀ ଟପିଲାଣି । ଯେଉଁ ଇସୁ (ସମସ୍ୟା) ବା ବ୍ୟକ୍ତିକୁ ନେଇ ଇତିହାସର କ୍ରୁର ପରିହାସ ସେ ସମସ୍ୟା ବା ବ୍ୟକ୍ତି ସବୁ ସମୟର କାଳ ସ୍ରୋତରେ ହଜି ହଜି ଗଲେଣି । ତେଣୁ ଆଜି ସତ୍ୟ ଲେଖିବା ହିଁ ଉଚିତ ହେବ । କାରଣ ଏହା କାହାରିକୁ ବାଧିବ ନାହିଁ, ନିଜକୁ ମଧ ଗ୍ଲାନି ଲାଗିବ ନାହିଁ ।

ନିର୍ବାଚନ ସରିଲା । ହିସାବପତ୍ର ସବୁ ନରେନ୍ଦ୍ର ଦେଇଦେଲେ କମିଟି ଆଗରେ ଏବଂ ଯାହା ଅର୍ଥ ବଳିଲା ସେଥିରେ ଅଫିସଘର ପାଇଁ ଆଗତୁରା ତିନି ମାସର ଭଡ଼ା ଡିପୋଜିଟ କରି ଦେଇ ସବୁ କାଗଜପତ୍ର ଏବଂ ବଳିଥିବା ଟଙ୍କା ଦେଇ ସେ ବିଦାୟ ନେଲେ ତାଙ୍କର ଅନ୍ୟକାମ ପାଇଁ । ମୁଁ ଆଗରୁ ବିଦାୟ ନେଇଥିଲି କମ୍ୟୁନିଷ୍ଟ ପାର୍ଟିରୁ କିନ୍ତୁ ସଂପର୍କ ତଥାପି ଥିଲା । ଗଙ୍ଗାଧର ରଥ ଗୋଟିଏ କଥା କହନ୍ତି । ସେ କହନ୍ତି ଯେ ''ମୁଁ କମ୍ୟୁନିଷ୍ଟ ପାର୍ଟିରେ ଯେତିକି ଦିନ ଥିଲି ତା'ଠାରୁ ବହୁତ ବେଶିଦିନ ହେଲା ସେମାନଙ୍କୁ ଛାଡ଼ିଲିଣି । ସେମାନଙ୍କ ସହିତ ମତଭେଦ ବହୁତ ଏବଂ ସେଇଯୋଗୁଁ ସେମାନଙ୍କ ଉପରେ ଅନେକ ବିରକ୍ତ ମଧ ମୁଁ । କିନ୍ତୁ ଆଜି ବି କମ୍ୟୁନିଷ୍ଟ ପାର୍ଟିର ବିପର୍ଯ୍ୟୟ ଶୁଣିଲେ ବା ସେମାନେ ଅସୁବିଧାରେ ପଡ଼ିଛନ୍ତି ବୋଲି ଶୁଣିଲେ ବା ସୋଭିଏଟ ୟୁନିୟନର ଭୁଲ୍ ତ୍ରୁଟି ଦେଖିଲେ ମନଟା ଖରାପ ହୋଇଯାଏ ।'' ମୋର ବି ଠିକ୍ ସେଇ ଅବସ୍ଥା । ''ଭିତିରି କାରବାର''କୁ ବନ୍ଦ କରିବା ପାଇଁ ଆମର ଉଦ୍ୟମର ପ୍ରତୀକ ହେଉଛି ପ୍ରବୀର ପାଲିତଙ୍କ ପ୍ରାର୍ଥୀତ୍ୱ । କାରଣ ଆମ ମତରେ ଭିତିରି କାରବାର ଯୋଗୁଁ ହିଁ ସବୁ ରାଜନୈତିକ ଦଳମାନଙ୍କର

Digitized by srujan ka@gmail.com

ବିପର୍ଯ୍ୟୟ ଘଟିଛି, ନୀତି ପ୍ରତି ତତ୍ତ୍ୱ (ideology) ପ୍ରତି କାହାର ଅନୁରକ୍ତି ନାହିଁ । ନେତାଙ୍କର ତ ନାହିଁ ଆଉ କର୍ମୀଙ୍କର ଆସିବ କୁଆଡୁ ?

ନିର୍ବାଚନ ସରିବାର କିଛି ମାସ ବିତିଗଲା ପରେ ହଠାତ୍ ଶୁଣିବାକୁ ପାଇଲି ଯେ ମୁଁ କୁଆଡ଼େ ବହୁ ଅର୍ଥ ଆଦାୟକରି ଆତ୍ମସାତ୍ କରିଛି । ନରେନ୍ଦ୍ରଙ୍କୁ ମୁଁ ଏହା ପଚାରିଲି । ସେ କ୍ଷୁବ୍ଧ ତଥା କ୍ରୁଦ୍ଧ ହେଲେ ଏବଂ ସବୁ ହିସାବ ସେ ଦେଇଛନ୍ତି ଓ ମୁଁ (ଅନ୍ୟମାନଙ୍କ ସହ) ଆଦାୟ କରିଥିବା ଅର୍ଥ ସେ ପାଇଛନ୍ତି ଏବଂ ହିସାବ ଦେଇଛନ୍ତି ବୋଲି କହିଲେ । କିନ୍ତୁ ପ୍ରଥମତଃ ଏଇଭଳି ସମ୍ବାଦ ବେଶ୍ ମିଠାଳିଆ (Juicy) ଏବଂ ପ୍ରଚାର ପାଇଁ ମଧ୍ୟ ବେଶ୍ ରୋଚକ । ଅନ୍ୟ ପକ୍ଷରେ ନିର୍ବାଚନ ପରେ ବହୁ ଲୋକଙ୍କ ଉପରେ ବାକିଥିବା ଟଙ୍କା ପାଇଁ ଜୁଲୁମ କିନ୍ତୁ ଅଫିସ ବା ଅଫିସ୍‌ର କର୍ମକର୍ତ୍ତାଙ୍କ ଉପରେ ଜୁଲୁମ ନାହିଁ । ଆଶ୍ଚର୍ଯ୍ୟର କଥା ଯେ ଯେଉଁମାନେ ନେତୃତ୍ୱରେ ଥିଲେ ଏବଂ ଜାଣିଥିଲେ ସବୁକଥା ସେମାନେ ଚୁପ୍ ରହିଲେ କାରଣ ପାର୍ଟି ଭିତରେ ଗୋଷ୍ଠୀଗତ ବିବାଦ ତୀବ୍ର ହେବା ଆରମ୍ଭ ହୋଇଥିଲା ।

ମୁଁ ଆଣିଥିବା ପୋଲିଓ ଟୀକାକୁ ଦେବାପାଇଁ ଆମେ ଆରମ୍ଭ କଲୁ । ଉନ୍ମୋଚନ କରିବାପାଇଁ ଭୈରବବାବୁ, ନନ୍ଦକିଶୋର ପଟ୍ଟନାୟକ ଏବଂ ମୁଁ ଭେଟିଲୁ ରାଜ୍ୟପାଳ ସୌକତ ଆନସାରୀଙ୍କୁ । ସେ ଆନନ୍ଦରେ ସମ୍ମତି ପ୍ରଦାନ କଲେ ଏବଂ ତାହା ବିପୁଳ ଜନସମର୍ଥନ ଲାଭ କଲା । ଭାରତ-ସୋଭିଏଟ୍ ମୈତ୍ରୀ ସମିତିର ନୂତନ ଦିଗନ୍ତ ଉନ୍ମୋଚିତ ହେଲା ।

ଏହାର ଗୁରୁତ୍ୱ ଆମ ସମସ୍ତଙ୍କ ପାଇଁ ଆଣିଦେଲା ବେଶ୍ ଲୋକପ୍ରିୟତା ଏବଂ ଭାରତ-ସୋଭିଏଟ୍ ମୈତ୍ରୀ ଶାଖା ଖୋଲିବା ପାଇଁ ବିଭିନ୍ନ ସ୍ଥାନରେ ଉଦ୍ୟମ ହେଲା । ଏହା ସେମାନଙ୍କର ଜନପ୍ରିୟତାକୁ ବୃଦ୍ଧି କରିବ ଏହି କାରଣରୁ କେତେକ ସ୍ଥାନରେ ଔଷଧ ଦୋକାନୀ ଏବଂ ଔଷଧ ବ୍ୟବସାୟୀମାନେ ଏହାର ନେତୃତ୍ୱ ନେଲେ ସ୍ୱାଭାବିକ କାରଣରୁ । ଏହା ଜାଣି ମଧ୍ୟ ଆମେ ଏହାକୁ ପ୍ରତିହତ କଲୁନାହିଁ । କାରଣ ମୂଳ ଲକ୍ଷ୍ୟ ସାଧିତ ହେଲେ ଆଉ ସବୁ ଉପସର୍ଗ କଥା ବିଚାର କଲେ କଣ ଚଳିବ ?

ଏହି ଜନକଲ୍ୟାଣ କାର୍ଯ୍ୟକ୍ରମର ଉଦ୍ୟୋକ୍ତା ଭାବରେ ମୋର ଖ୍ୟାତି ବୃଦ୍ଧି ପାଇଲା କିନ୍ତୁ ଏହା ଯେ ମୋ ପାଇଁ ଭୟାନକ ତିକ୍ତତାର କାରଣ ହେବ ଏହା କଣ ମୁଁ ଜାଣିଥିଲି ? ଜାଣିବାର ଉପାୟ ନ ଥିଲା କିନ୍ତୁ ଆଜି ଜୀବନର ଅପରାହ୍ନରେ ଠିଆହୋଇ ସେ ସ୍ମୃତିକୁ ଉଖାରିଲେ ମନେହୁଏ ଯେ ମୋର ତିନିପାଦ ଆଗକୁ ଏବଂ ଚାରିପାଦ ପଛକୁ ଅନାଇବା ଉଚିତ ଥିଲା । ଲେନିନ୍‌ଙ୍କର One step forward and two steps back ଏଥିପାଇଁ କୁଳାନ ନୁହେଁ । କାରଣ ଏହା ରାଜନୈତିକ ମତଭେଦ, ସାମାଜିକ, ମନସ୍ତାତ୍ତ୍ୱିକ, ମାନସିକ ବିକାରର ବିସ୍ଫୋରଣ ।

କିନ୍ତୁ ଏଇ ସମୟରେ ଆଉ ଏକ ଘଟଣା ମଧ୍ୟ ଘଟିଥିଲା । ମୁଁ ଭାରତ-ଜର୍ମାନୀ ମୈତ୍ରୀ ସଂସଦର ମଧ୍ୟ ସେକ୍ରେଟେରୀ ଥିଲି । ଦ୍ୱିତୀୟ ମହାଯୁଦ୍ଧ ପରେ ଜର୍ମାନୀ ଦୁଇଭାଗରେ ବିଭକ୍ତ

Digitized by srujan ka@gmail.com

ହୋଇଗଲା- ପୂର୍ବ ଜର୍ମାନୀ ଏବଂ ପଶ୍ଚିମ ଜର୍ମାନୀ । ପୂର୍ବ ଜର୍ମାନୀକୁ ଭାରତ ସମେତ ବହୁ ରାଷ୍ଟ୍ର ରାଜନୈତିକ ସ୍ୱୀକୃତି ଦେଉ ନ ଥିଲେ ଏବଂ ସେଥିପାଇଁ ବିଧିବଦ୍ଧ ପ୍ରଚେଷ୍ଟା କରାଯାଉଥିଲା ।

ଓଡ଼ିଶା ବିଧାନସଭାରେ ଏଥିପାଇଁ ଏକ କମିଟି ଗଠନ ହେଲା । ତାହାର ସଭାପତି ହେଲେ ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ ଏବଂ ସ୍ୱତନ୍ତ୍ର ପାର୍ଟି ସମେତ ସବୁ ରାଜନୈତିକ ଦଳର ପ୍ରତିନିଧିମାନେ ଏଥିରେ ସଭ୍ୟ ହେଲେ ଏବଂ ପୂର୍ବ ଜର୍ମାନୀକୁ ରାଷ୍ଟ୍ରୀୟ ସ୍ୱୀକୃତି ଦେବା ସକାଶେ ସର୍ବ ସମ୍ମତି କ୍ରମେ ଏକ ପ୍ରସ୍ତାବ ଗୃହୀତ ହେଲା । ସ୍ୱତନ୍ତ୍ର ପାର୍ଟି ଅନ୍ୟ କୌଣସି ରାଜ୍ୟରେ ଏ ପ୍ରକାର ଉଦ୍ୟମ ସହ ସାମିଲ ହୋଇ ନ ଥିଲା । ୰ସଦାନନ୍ଦ ମହାନ୍ତି, ୰ଲକ୍ଷ୍ମଣ ମହାପାତ୍ର, ୰ପ୍ରସନ୍ନ କୁମାର ପଣ୍ଡା ଏବଂ ୰ଗଙ୍ଗାଧର ପାଇକରାୟଙ୍କର ଉଦ୍ୟମ ଯୋଗଁ ଏହା ସମ୍ଭବ ହୋଇପାରିଥିଲା । ଏହା ସମଗ୍ର ଭାରତବ୍ୟାପୀ ଆଲୋଡ଼ନ ସୃଷ୍ଟି କଲା କାରଣ ଏହା ପୂର୍ବରୁ କୌଣସି ରାଜ୍ୟ ତରଫରୁ ଏଭଳି ପ୍ରସ୍ତାବ ହୋଇ ନ ଥିଲା ।

ମୁଁ ଜର୍ମାନୀ ପରିଭ୍ରମଣରେ ଯିବା ସମୟରେ ସେଇଯୋଗୁଁ ଆମ ଅନୁଷ୍ଠାନର ସମ୍ମାନ ଯଥେଷ୍ଟ ବଢ଼ିଯାଇଥିଲା । ଆମ ଦଳର ଥିଲେ ୧୧ ଜଣ ସଦସ୍ୟ । କିନ୍ତୁ ଦୁଇ ତିନି ଦିନ ପରେ ଆମ ଦଳର ନେତ୍ରୀ ସୁଭଦ୍ରା ଯୋଶୀ ଏବଂ ତାଙ୍କର ସ୍ୱାମୀ ବି.ଡ଼ି. ଯୋଶୀ (ସ୍ତ୍ରୀ କଂଗ୍ରେସ ଦଳର ଏବଂ ସ୍ୱାମୀ କମ୍ୟୁନିଷ୍ଟ ଦଳର ସଭ୍ୟ ଓ ନେତା) ସୁଭଦ୍ରା ଯୋଶୀଙ୍କର ଚିକିତ୍ସା ପାଇଁ ବର୍ଲିନରେ ରହିଯିବା ହେତୁ ଦଳର ନେତା କିଏ ହେବ ସେଥିପାଇଁ ବିଚାର ଆଲୋଚନା ହେଲା । ଦଳରେ କଂଗ୍ରେସ, ସି.ପି.ଆଇ. ସୋସଲିଷ୍ଟ, ସି.ପି.ଏମ. ସବୁ ଦଳର ବ୍ୟକ୍ତି ଥିଲେ । ସମସ୍ତେ ମିଳିତ ଭାବରେ ମୋତେ ନିର୍ବାଚିତ କଲେ । କାରଣ ବୋଧହୁଏ କୌଣସି ଦଳଭୁକ୍ତ ବ୍ୟକ୍ତିଙ୍କୁ ନେତା ନିର୍ବାଚନ କରିବା ପାଇଁ ଅନ୍ୟଦଳର ନେତାମାନେ ରାଜି ହେଲେ ନାହିଁ । ତେଣୁ ମୋତେ ବର୍ତ୍ତମାନ ଦଳର ନେତୃତ୍ୱ ନେବାକୁ ପଡ଼ିଲା ।

ସେ ଭିତରେ ମୋର ଅନ୍ୟ କାର୍ଯ୍ୟ ଭିତରେ କେତୋଟି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ମୁଁ ହାତକୁ ନେବାପାଇଁ ସ୍ଥିର କଲି । ଜର୍ମାନୀକୁ ପ୍ରତିବର୍ଷ ପଢ଼ିବା ପାଇଁ ବହୁଛାତ୍ର ଯିବାର ଲକ୍ଷ୍ୟ କରିଥିଲି ଆଗରୁ । କିନ୍ତୁ ଓଡ଼ିଶାର କୌଣସି ଛାତ୍ର ବା ଛାତ୍ରୀ ଏଥିରେ ସାମିଲ ନ ଥିଲେ । ତେଣୁ ଆଲୋଚନା ପରେ ସ୍ଥିର ହେଲା ଯେ ପ୍ରତିବର୍ଷ ଚାରିଜଣ ଛାତ୍ର/ଛାତ୍ରୀ ପଢ଼ିବାକୁ ଯିବେ, ଏଥିପାଇଁ ସାରା ଭାରତରେ ଭାରତ-ଜର୍ମାନୀ ମୈତ୍ରୀ ସଂସଦ ଦରଖାସ୍ତ ଆମନ୍ତ୍ରଣ କରିବେ ଏଥିପାଇଁ ଏକ କମିଟି ଗଠିତ ହେବ । ସେମାନେ ଦରଖାସ୍ତସବୁ ପଠାଇବେ ଜର୍ମାନୀକୁ, ପ୍ରାରମ୍ଭିକ ମନୋନୟନ ଭିତ୍ତିରେ । ଯୋଗ୍ୟତା ଏବଂ କାର୍ଯ୍ୟ ଏଥିପାଇଁ ନିୟାମକ ହେବ ।

ମୁଁ ଜର୍ମାନୀରୁ ଫେରିଲି ଏବଂ ସ୍ୱାଭାବିକ ଭାବରେ ଏଥିପାଇଁ ଦରଖାସ୍ତ ଆହ୍ୱାନ ହେଲା । ଓଡ଼ିଶାରୁ ଜଣେ ଛାତ୍ରୀଙ୍କୁ ମୁଁ ଦରଖାସ୍ତ କରିବାକୁ କହିଲି । ସେ ଆମ ସାଙ୍ଗରେ ଅନେକ ଦିନ ଧରି କାର୍ଯ୍ୟ କରୁଥିଲେ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଖୁବ୍ ଉଚ୍ଚଶ୍ରେଣୀର ନ ଥିଲେ ହେଁ ତାଙ୍କର

Digitized by srujan ka@gmail.com

କାର୍ଯ୍ୟ ପାଇଁ ମୁଁ ତାଙ୍କୁ ହିଁ ଦରଖାସ୍ତ କରିବାକୁ କହିଲି । ସେ ମନାକଲେ, କାରଣ ତାଙ୍କର ବିବାହ ସେ ସ୍ଥିର କରିଥିଲେ । ଭିନ୍ନ ଜାତିରେ ବିବାହ ଯୋଗୁଁ ପ୍ରତବାଦ ଉଠୁଥିଲା । କିଛି ତଥାକଥିତ ସାମ୍ୟବାଦୀମାନେ ମଧ ନାନା କାରଣରୁ ଏହାର ବିରୋଧ କରୁଥିଲେ । ସେ ପାଠ ପଢ଼ିବା ପାଇଁ ଦୁଇବର୍ଷ ଦେଶ ବାହାରକୁ ଚାଲିଗଲେ ଏହା ବିରୋଧୀମାନଙ୍କୁ ସହାୟକ ହେବ ଭାବି, ସେ ମନା କଲେ । ତାଙ୍କ କଥାରେ ଯୌକ୍ତିକତା ମୁଁ ଉପଲବ୍ଧି କଲି । ତେଣୁ ଆଉ ଜଣେ ଝିଅକୁ ମୁଁ ଦରଖାସ୍ତ ଦେବାପାଇଁ କହିଲି ।

ଆଗରୁ କହିଛି ଯେ ପୋଲିଓ ଟୀକାସବୁ ଆମ ଘରେ ରହୁଥିଲା । କାରଣ ଅଫିସରେ ରେଫ୍ରିଜେରେଟର ନ ଥିଲା । ରବିବାର ଦିନ ପୋଲିଓ ଟୀକା ଦିଆଯାଏ । ଆମ କଲୋନୀରେ ୧୬ଟି ଅଫିସର୍ସ କ୍ୱାଟର୍ସ ଅଛି । ସେମାନଙ୍କ ମଧ୍ୟରୁ ତିନିଜଣଙ୍କର ଝିଅ ଆମ ପୋଲିଓ ଟୀକା କାର୍ଯ୍ୟକ୍ରମରେ ସାହାଯ୍ୟ କରନ୍ତି । ସେମାନଙ୍କୁ ମୁଁ ସାଙ୍ଗରେ ନେଇଯାଏ ପଦବ୍ରଜରେ । ରିକ୍ସାରେ ଜଣେ ଯିଏ ହେଲେ ଯାଏ ଟୀକାସବୁ ସାଙ୍ଗରେ ନେଇ । ସେ ତିନିଜଣଙ୍କୁ ପଚାରିଲି ଏହି ବୃତ୍ତି ସଂପର୍କରେ । ଦୁଇଜଣ ରାଜି ହେଲେ ନାହିଁ । ଜଣେ ରାଜି ହେଲା । ପ୍ରଥମରୁ ପ୍ରସ୍ତାବ କରିଥିବା ଝିଅଟି ରାଜି ନ ହେବାରୁ ମୁଁ ତା ବଦଳରେ ଏଇ ଝିଅଟିର ଦରଖାସ୍ତ ପଠାଇଦେଲି ।

କିନ୍ତୁ ଦରଖାସ୍ତ କରିବା ଦିନ ହିଁ ପ୍ରଥମ ଝିଅଟି ଏକ ଦରଖାସ୍ତ କଲା ଏବଂ ଅଭିଯୋଗ ପତ୍ରରେ ଲେଖିଥିଲା ଯେ ମୁଁ ତାର ଦରଖାସ୍ତ ନ ପଠାଇବାରୁ ସେ ଦରଖାସ୍ତ କରୁଛି । ଏହା ମୋତେ ସ୍ତମ୍ଭୀଭୂତ କରିଦେଲା ଏବଂ ମୁଁ ତାକୁ ଏହାର କାରଣ ପଚାରିବାରୁ ସେ ପ୍ରଥମେ ଚୁପ୍‌ହୋଇ ରହି କହିଲା ଯେ ଦରଖାସ୍ତ ଫେରାଇ ଆଣିବି ।

ଏଇ ପରିପ୍ରେକ୍ଷୀରେ ମୁଁ ସବୁକଥା ଲେଖି କେନ୍ଦ୍ର ଅଫିସକୁ ପଠାଇଦେଲି ଏବଂ ମୁଁ ନିଜେ ମନୋନୟନ କମିଟିରେ ରହିବି ନାହିଁ ବୋଲି ମନା କରିଦେଲି । ସବୁ ଦରଖାସ୍ତକୁ ଯୋଗ୍ୟତା ଭିତ୍ତିରେ ବିଚାର କରାଯାଇ, ଜର୍ମାନୀକୁ ପଠାଯାଉ ବୋଲି ପ୍ରସ୍ତାବ ମଧ ଦେଲି । ମୋ ଚିଠିର ନକଲ ପ୍ରାଦେଶିକ ଦପ୍ତରକୁ ମଧ ଦେଲି ।

ଓଡ଼ିଶାରୁ ଦୁଇଜଣଙ୍କ ଦରଖାସ୍ତ ସହିତ, ସମଗ୍ର ଭାରତବର୍ଷରୁ ପ୍ରାୟ ୫୦ ଜଣ ଛାତ୍ରଛାତ୍ରୀ ଦରଖାସ୍ତ କରିଥିଲେ । ଭାରତ-ଜର୍ମାନ ମୈତ୍ରୀ ସଂଘର ସାଧାରଣ ସଂପାଦକ ବନ୍ଧୁ ନନ୍ଦଲାଲ ଗୁପ୍ତ ସବୁ ଦରଖାସ୍ତକୁ ପଠାଇଦେଲେ ଜର୍ମାନୀ ଏବଂ ପ୍ରାର୍ଥୀମାନଙ୍କର ଯୋଗ୍ୟତାନୁଯାୟୀ ମନୋନୟନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ସେ କଥା ମଧ ମୋତେ ଲେଖି ଜଣାଇ ଦେଲେ । ମୁଁ ସବୁକଥା ଭୁଲିଯାଇଥିଲି । ସ୍ୱାସ୍ଥ୍ୟଗତ ଏବଂ ମାନସିକ କାରଣରୁ ମୁଁ ସକ୍ରିୟ ମଧ ନ ଥିଲି । ସଂଗଠନର ଦାୟିତ୍ୱ ଅନ୍ୟମାନେ ନେଇ ସାରିଥିଲେ । ଘଟିଥିବା ଘଟଣାଟା ମୋତେ ବାଧୁଥିଲା ନିଶ୍ଚୟ । ସହଯୋଦ୍ଧା ମଣିଷର ବ୍ୟବହାର ମୋତେ କ୍ଷୁବ୍ଧ କରିଥିଲା । ପରେ ଜାଣିଲି ଯେ ଏହା ଏକ ରୀତିମତ ଷଡ଼ଯନ୍ତ୍ରର ଅଂଶ ଏବଂ ଈର୍ଷା ହେଉଛି ପ୍ରଥମ ଫାକ୍ଟର । ସେଇଯୋଗୁଁ ପରସ୍ପର ବିରୋଧୀମାନେ ମଧ ଏକାଠି ହୋଇଗଲେ ଏକ ପ୍ଲାଟଫର୍ମ ଉପରେ ।

Digitized by srujan ka@gmail.com

ଏଇଠି ମୋର ଏକ କାହାଣୀ ମନେପଡ଼େ । ପ୍ରସିଦ୍ଧ କଂଗ୍ରେସ ନେତା, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ପ୍ରକାଶ ଆସିଥିଲେ ଏକ ବିଶାଳ ଧନାଢ଼୍ୟ ପରିବାରରୁ । ତାଙ୍କର ବଡ଼ଭାଇ ବ୍ରହ୍ମ ପ୍ରକାଶ ଥିଲେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଅଧ୍ୟାପକ । ସେ ଶ୍ରୀ ପ୍ରକାଶଙ୍କୁ ଖୁବ୍ ଭଲ ପାଉଥିଲେ । ହଠାତ୍ ଦିନେ ସେ ପାଗଳ ହୋଇଗଲେ । ତାଙ୍କୁ ଚିକିତ୍ସା ପାଇଁ ନିଆଗଲା ଇଂଲଣ୍ଡ । ଏକ ସାଇକ୍ରିଆଟିଷ୍ଟ ମନସ୍ତତ୍ତ୍ୱବିଦ୍‌ଙ୍କ ଘରେ ସେ ରହିଲେ ଚିକିତ୍ସା ପାଇଁ । ଦିନେ ସେ ଏବଂ ମନସ୍ତତ୍ତ୍ୱବିଦ୍ ବସିଛନ୍ତି, ବ୍ରେକ୍‌ଫାଷ୍ଟ ଟେବୁଲ ଉପରେ ।

ନାଇଫ୍ ଜରିଆରେ ବ୍ରେଡ ଉପରେ ଲହୁଣୀ ଲଗାଉ ଲଗାଉ ମନସ୍ତତ୍ତ୍ୱବିଦ୍ କହିଲେ ଯେ ଅଧ୍ୟାପକ ବ୍ରହ୍ମ ପ୍ରକାଶ, ତମେ ଯଦି ଶ୍ରୀ ପ୍ରକାଶର ହତ୍ୟା ଚାହଁ, ତା'ହେଲେ ତ ଏଇ ନାଇଫ୍ ହିଁ ସେଥିପାଇଁ ଯଥେଷ୍ଟ ।

ବ୍ରହ୍ମ ପ୍ରକାଶ କାନ୍ଦିବାକୁ ଆରମ୍ଭ କଲେ ଏବଂ ତାଙ୍କର ପାଗଳାମି ବନ୍ଦ ହୋଇଗଲା । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ହେଲା ଯେ ବ୍ରହ୍ମ ପ୍ରକାଶ ଖୁବ୍ ଭଲପାଉଥିଲେ ଶ୍ରୀ ପ୍ରକାଶଙ୍କୁ । କିନ୍ତୁ ଶ୍ରୀ ପ୍ରକାଶଙ୍କର ରାଜନୈତିକ ଖ୍ୟାତି ତାଙ୍କ ଭିତରେ ହଠାତ୍ ଈର୍ଷା ସୃଷ୍ଟି କରିଛି ଏବଂ ଏକ ଦୁର୍ବଳ ମୁହୂର୍ତ୍ତରେ ସେ ତାଙ୍କର ମୃତ୍ୟୁ ବା ହତ୍ୟା କାମନା କରିଛନ୍ତି । କିନ୍ତୁ ପର ମୁହୂର୍ତ୍ତରେ ଏଇ ପ୍ରକାର ଭାବନା ତାଙ୍କୁ ପାଗଳ କରିଦେଇଛି ।

ରାଜନୈତିକି କ୍ଷେତ୍ରରେ ଏହା ପ୍ରାୟ ଘଟିଥାଏ । ମୋ କ୍ଷେତ୍ରରେ ବି ସେଇଆ ଘଟିଲା । କାରଣ କିଛି ବନ୍ଧୁଙ୍କ ସହିତ ମୋର ଆତ୍ମୀୟତା ଥିଲା ପ୍ରଗାଢ଼ । ସେମାନେ ଇମିତି କଲେ କେମିତି ?

ସେ କଥା ଆଜି ବି ମନେପଡ଼େ । ମୁଣ୍ଡରେ କିମିତି ଗୋଟାଏ ଜିଦ୍ ପଶିଯାଇଥିଲା । ତା' ଛଡ଼ା ଆଉ କୌଣସି କାରଣ ନାହିଁ । ଇମିତି ବ୍ୟବହାର ସେମାନେ କାହିଁକି ଦେଖାଇଲେ ? ତେଣୁ ସେଇ କାମଟା ହିଁ କରିବି ।

ସେ ଝିଅଟିକୁ ବିଦେଶଯିବା ବାଟରେ ବଳାଇଦେବାକୁ ଆମେ ସବୁ ଗଲୁ ଦିଲ୍ଲୀ ପର୍ଯ୍ୟନ୍ତ । ସେ ଝିଅର ମା', ଭାଇ, ମୋ ସ୍ତ୍ରୀ, କନ୍ୟା, ପୁତ୍ର ଏବଂ ମୁଁ । କାଲି ରାତିରେ ସେ ଯିବ । ଆଜି ସନ୍ଧ୍ୟାରେ ଆମେ ବସିଥାଉଁ କନଟ୍‌ପ୍ଲେସରେ ଥିବା ଆମ ସଂଗଠନର ଅଫିସରେ । ଶାନ୍ତି ଆନ୍ଦୋଳନର ସଂପାଦକ ଶ୍ରୀ ଚିତ୍ତ ବିଶ୍ୱାସ ଭାରତ-ଜର୍ମାନ ମୈତ୍ରୀ ସଂସଦର ସଂପାଦକ ଶ୍ରୀ ନନ୍ଦଲାଲ ଗୁପ୍ତ ଥାଆନ୍ତି । ଏକ ଚିଠି ଓଡ଼ିଶାରୁ ଯାଇ ପାହଞ୍ଚିଲା ସେଠାରେ । ସେଥିରେ ଲେଖାଥିଲା ଯେ "Girija Patnaik has gone with his ............... His wife has also gone with them. He will try to go Germany with her." ଏ ଚିଠି ମୁଁ ଭୁଲିପାରି ନାହିଁ, ଯଦିଓ ଏହା ଭିତରେ ବହୁ ଦଶନ୍ଧି ଅତିକ୍ରାନ୍ତ ହୋଇ ସାରିଛି । ନନ୍ଦଲାଲ ଓ ଚିତ୍ତ ବିଶ୍ୱାସ ସେ ଚିଠିଟାକୁ ପଢ଼ି ମୋ ହାତକୁ ବଢ଼ାଇଦେଲେ । ମୁଁ ପଢ଼ି ମୋ ସ୍ତ୍ରୀଙ୍କୁ ପଢ଼ିବାକୁ ଦେଲି ଏବଂ ସେ ପଢ଼ି ଚିଠିଟିକୁ ଉକ୍ତ ଝିଅକୁ ବଢ଼ାଇଦେଲେ । ତା'ପରେ ଦେଖ ସେ ଝିଅର ବୁକୁଫଟା କାନ୍ଦ !

Digitized by srujan ka@gmail.com

ଚିତ୍ତ ବିଶ୍ୱାସ ଅବିବାହିତ । ସେ ହସିଲେ ଏବଂ କହିଲେ ଯେ ମୁଁ ସିନା ବିବାହ କରିନାହିଁ କିନ୍ତୁ ଏ ଚିଠିର ଲେଖକ ତ ବିବାହିତ । ସ୍ତ୍ରୀ ଆସିଛନ୍ତି ରକ୍ଷିତା ସହିତ– ଏହା କ'ଣ କେବେ ସମ୍ଭବପର ହୋଇପାରେ ? ଏକଥା କ'ଣ ଲେଖକ ଭାବି ପାରିଲେ ନାହିଁ ? ସେ ଝିଅଟି ଚିଠିଟି ପଢ଼ି ଆଉ ଜର୍ମାନୀ ଯିବ ନାହିଁ ବୋଲି କହିଲା କିନ୍ତୁ ଉଭୟ ଚିତ୍ତ ବିଶ୍ୱାସ ଏବଂ ନନ୍ଦଲାଲ ଗୁପ୍ତ ତାକୁ ବୁଝାଇ କହିଲେ ଯେ ତମର ମନୋନୟନ ହୋଇଛି ଜର୍ମାନୀରେ, ଯୋଗ୍ୟତା ଭିତ୍ତିରେ । ଜୀବନରେ ଇମିତି ଅନେକ ଝଡ଼ ଆସିବ ତମେ ତାକୁ ସାମନା କରିବ, ନା ଭାଙ୍ଗି ପଡ଼ିବ ? ସେ ଝିଅ ଜର୍ମାନୀ ଯାଇଥିଲା ।

ତା'ର ପ୍ରେମିକ ନୁହେଁ, ଭ୍ରାତୃତ୍ୱର ଅହମିକା ମୋତେ ବାଧ୍ୟ କରିଥିଲା ତାକୁ ପଠାଇବା ପାଇଁ ।

ପରବର୍ତ୍ତୀ କାଳରେ ସେଇ ଅହମିକା ମଧ୍ୟ ମୋତେ ବାଧ୍ୟ କରିଥିଲା, ସେ ଝିଅଟି ସହିତ ସଂପର୍କ ଛିନ୍ନ କରିବା ପାଇଁ । ମୁଁ ଛିନ୍ନ କରିନାହିଁ, ସେ ଛିଣ୍ଡାଇ ଚାଲିଗଲା ।

ଏହାକୁ ଟିକିଏ ଖେଳାଇ କହିବାର ଦୁଇଟି କାରଣ ଅଛି । ପ୍ରଥମ କାରଣ ହେଲା ଯେ ଏଇ ଘଟଣା ମୋ ଜୀବନରେ ଏକ ପରିବର୍ତ୍ତନ ଆଣିଲା । ମୁଁ ସଂପୂର୍ଣ୍ଣ ମୁକ୍ତ ହୋଇଗଲି ମୋର ପୂର୍ବ କାମଠାରୁ । ସେମାନେ ମୋତେ ଅଲଗା ନ କରି ଦେଇଥିଲେ ମୁଁ ହୁଏତ ସେଇପରି ରହିଥାନ୍ତି । କିନ୍ତୁ ଯେହେତୁ ଅଲଗା ହୋଇଗଲି ସେଇ କାରଣରୁ ଆଉ କୌଣସି ଓବ୍ଲିଗେସନ (obligation) ନାହିଁ । ପ୍ରାୟ ୪୫ ବର୍ଷ ବୟସରେ ନୂଆ କରି ଯାହା ହେଲେ ଆରମ୍ଭ କରିବାକୁ ପଡ଼ିବ । କ'ଣ କରିବି ?

ୟୁନିଭର୍ସର ଜନ୍ମ ହେଲା । ବର୍ତ୍ତମାନ ଭାବୁଛି ଯେ ଆଉ ଦି,ଚାରିବର୍ଷ ପୂର୍ବରୁ ବାହାର କରି ଦେଇଥିଲେ ଭଲ ହୋଇଥାନ୍ତା । କାରଣ ମୁଁ ଯାହା ଗଢ଼ିଛି ତାହା ପରେ ସବୁ ମୋର ପୂରାତନ ସହକର୍ମୀ, ରେଭେନ୍ସା କଲେଜର ବନ୍ଧୁମାନଙ୍କ ଜରିଆରେ କରିଛି । ଛାତ୍ର ଆନ୍ଦୋଳନ, ବାମପନ୍ଥୀ ଆନ୍ଦୋଳନ ମୋତେ ସାହାଯ୍ୟ କରିଛି । କିନ୍ତୁ ଏତେବେଳକୁ ସେ ସମ୍ପର୍କ ତ କମିଗଲାଣି, ତେଣୁ ଆଗରୁ ବିଦା ହୋଇଥିଲେ ଭଲ ହୋଇଥାନ୍ତା ।

ପ୍ରତିନିଧି ବିଚାର କଲାବେଳେ ଅନେକ ସମୟରେ ଇମିତି ପ୍ରତିବାଦର ସ୍ୱର ଉଠିବାର ଅଭିଜ୍ଞତା ମୋର ଥାଏ । ସୋଭିଏଟ୍ ରୁଷ ଏବଂ ଜର୍ମାନୀ ଯିବା ପାଇଁ ଏକ ଦୁଇ ଜଣିଆ ପ୍ରିତିନିଧି ଦଳ ଯିବାର ଥାଏ । କମ୍ୟୁନିଷ୍ଟ ପାର୍ଟିର ନେତା ଶରତ ପଟ୍ଟନାୟକଙ୍କର ସେତେବେଳେ ଆଖି ଖରାପ । ଆଖିର ଚିକିତ୍ସା କରିବା ଦରକାର । ତାଙ୍କୁ ଆମେ ମନୋନୟନ କଲୁ । କିନ୍ତୁ କମ୍ୟୁନିଷ୍ଟ ପାର୍ଟିର ଆଉ ଏକ ମହଲରୁ ଏହାର ବିରୋଧ ହେଲା । ଶରତ ବାବୁ ଜଣେ ପ୍ରତିଭାଶାଳୀ ସଂଗଠକ । କ୍ୟାଡ଼ର ଠାବ କରିବା ଏବଂ ତାଙ୍କର ଯତ୍ନ ନେବା, ତାଲିମ ଦେବାରେ ସେ ଖୁବ୍ ପାରଙ୍ଗମ । କିନ୍ତୁ ତାଙ୍କର ସାଙ୍ଗଠନିକ ଶକ୍ତି ତୁଳନାରେ ତାଙ୍କର ଥିଓରିଟିକାଲ ବା ତାତ୍ତ୍ୱିକ ଶକ୍ତି

Digitized by srujan ka@gmail.com

କମ । ସେଥିଯୋଗୁଁ ପରବର୍ତ୍ତୀ କାଳରେ ସେ ମାର୍କ୍ସବାଦୀ ଚିନ୍ତା ପରିତ୍ୟାଗ କରି ସତ୍ୟସାଇଙ୍କର ''ଆଶ୍ରିତ'' ହୋଇଥିଲେ । ତାଙ୍କର ମଧ ଏକ ବିଧିବଦ୍ଧ ପରିବାର ନ ଥିଲା ଏବଂ ପାରିବାରିକ ବନ୍ଧନ ତାଙ୍କୁ ବାନ୍ଧି ପାରି ନ ଥିଲା । ନିଜ ଦଳର କର୍ମୀମାନଙ୍କ ଅପେକ୍ଷା ଅନ୍ୟ ଦଳର କର୍ମୀ ବା ଦଳର ସୀମାନ୍ତରେ ଥିବା ବ୍ୟକ୍ତିମାନଙ୍କୁ ବେଶି ଆକୃଷ୍ଟ କରି ପାରୁଥିଲେ । ତାଙ୍କର ମରଦେହକୁ ବୈଦ୍ୟୁତିକ ଚୁଲ୍ଲୀରେ ଦାହ କରି ଫେରିଲାବେଳେ ତାଙ୍କର ଘନିଷ୍ଠ ବନ୍ଧୁ ଓଡ଼ିଶା ଚାର୍ଟାର୍ଡ଼ ଆକାଉଣ୍ଟାଣ୍ଟମାନଙ୍କର ଗୁରୁ ୰ହୃଦୟାନନ୍ଦ ନାୟକ ଯଥାର୍ଥରେ କହିଲେ ''ଏକ ନଷ୍ଟ ହୋଇଯାଇଥିବା ପ୍ରତିଭା'' । କମ୍ୟୁନିଷ୍ଟ ପାର୍ଟି ଭିତରେ ଥିବା ''ଫାକ୍ସନାଲିଜମ'' ବା ଗୋଷ୍ଠୀମତ ବିବାଦରୁ ସେ ମୁକ୍ତ ରହି ପାରି ନ ଥିଲେ ।

କିନ୍ତୁ ପୋଲିଓ ଟୀକା ଦେବାପାଇଁ ତିନୋଟି ଝିଅଙ୍କୁ ନେଲାବେଳେ ସେ ମୋତେ ତାଗିଦ କରିଥିଲେ ଯେ ସେମାନେ ତମ ସାଙ୍ଗରେ ଆସିବେ ଓ ଯିବେ । କାରଣ ସେମାନଙ୍କୁ ନେଇ କୌଣସି ବିବାଦ ଉପୁଜିଲେ ତାହା ତୁମକୁ ଏବଂ ଆମ ସମସ୍ତଙ୍କୁ କ୍ଷତି କରିବ ।

ଶରତବାବୁଙ୍କ ବିଦେଶ ଗସ୍ତ ସଂପର୍କରେ ପ୍ରତିବାଦକୁ ଗ୍ରହଣ ନ କରିବା ଯୋଗୁଁ ଅନ୍ୟମାନେ ସିନା କିଛି କହିପାରିଲେ ନାହିଁ କିନ୍ତୁ ପରବର୍ତ୍ତୀ କାଳରେ ସେମାନଙ୍କର ସେଇ ରାଗ ଯୋଗୁଁ ମୋ ସପକ୍ଷରେ ଗଲେ ନାହିଁ ।

କାମରେ ପ୍ରତିଯୋଗିତା ସ୍ୱତନ୍ତ୍ର କଥା । କିନ୍ତୁ ସେଥିରେ ପ୍ରତିଯୋଗିତା ହୁଏ ନାହିଁ । ହୁଏ ଈର୍ଷାରେ । ସେ କରି ପାରିଲା, ମୁଁ ପାରିଲି ନାହିଁ ଏଇ ବିବାଦ ଏ ଦେଶକୁ ଖାଇଛି । ନଚେତ ପ୍ରାକୃତିକ ସଂପଦରେ ଭରା ଏ ମାଟିର ମଣିଷ ଭାରତବର୍ଷରେ ଦରିଦ୍ରତମ କହିଁକି ? ସାମୂହିକ ସ୍ୱାର୍ଥ ପାଇଁ ଆମର କାହିଁକି ଜାତୀୟ ପ୍ରଚେଷ୍ଟା ନାହିଁ ? ତାହାର କାରଣ ଆମେ କେବଳ ଅର୍ଥନୈତିକ ଦୃଷ୍ଟିରୁ ଦରିଦ୍ର ନୁହନ୍ତି, ମାନସିକ ଦୃଷ୍ଟିରୁ ମଧ ଦରିଦ୍ର ।

ମୋର ମନେ ପଡୁଛି । ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦେବା ପାଇଁ ଆମେ ପି.ଏନ୍. ହକ୍ସରଙ୍କୁ ନିମନ୍ତ୍ରଣ କରିଥିଲୁ । ସେ ମୋତେ ଏକ ଚିଠି ଲେଖିଥିଲେ ମୋ ଚିଠିର ଉତ୍ତରରେ ।

''ତମେ କହିପାରିବ, ପ୍ରାକୃତିକ ସଂପଦରେ ଭରା ଓଡ଼ିଶା ଦରିଦ୍ରତମ ସାରା ଭାରତରେ କାହିଁକି ? ମୁଁ ନିଜେ ବିଶ୍ଳେଷଣ କରିପାରି ନାହିଁ'' । ହକ୍ସର ଜଣେ ବାମପନ୍ଥୀ ଚିନ୍ତାଧାରା ମଣିଷ ଏବଂ ପଣ୍ଡିତ ନେହେରୁଙ୍କର ଖୁବ୍ ଘନିଷ୍ଟ । ତାଙ୍କୁ ମୁଁ ଉତ୍ତର ଦେଇଥିଲି ଯେ ଏକ ଦିଗରେ ଆମର ହୀନମନ୍ୟତା ଏବଂ ନିଜର ଦାବୀକୁ ଜାହିର୍ କରିବାର ଇଚ୍ଛାଶକ୍ତି ତଥା ଐକ୍ୟର ଅଭାବ ଏବଂ ଅନ୍ୟ ଦିଗରେ ଜାତୀୟ ନେତୃତ୍ୱର ସେଇ କାରଣରୁ ଆମ ପ୍ରତି ଅବହେଳା । ସେ ଖୁସି ହୋଇ ଉତ୍ତର ଦେଇଥିଲେ ଗୋଟିଏ ଶବ୍ଦରେ 'assort' (ଆସର୍ଟ) ।

Digitized by srujan ka@gmail.com

ଜାନକୀବାବୁଙ୍କୁ ଡକ୍ଟର ହରେକୃଷ୍ଣ ମହତାବ ବାହାର କରି ଦେଇଥାନ୍ତି ପ୍ରଜାତନ୍ତ୍ର ପରିସରରୁ । 'ପ୍ରଜାତନ୍ତ୍ର'ରୁ ଅକ୍ଷର ଚୋରି କରିଛନ୍ତି ବୋଲି ଲାଲବାଗ ଥାନାରେ ଅଭିଯୋଗ ହୋଇଥାଏ । ଜାନକୀବାବୁ ଜଣେ ସଂସ୍କୃତିଶାଳୀ ବ୍ୟକ୍ତି । ତାଙ୍କ ସହ ପରିଚିତ ରେଭେନ୍ସା କଲେଜରୁ । ରାଜନୈତିକ ସକ୍ରିୟତା ତାଙ୍କର ପଠନରେ ବାଧା ସୃଷ୍ଟି କରି ନ ଥିଲା । ଡକ୍ଟର ବୈଦ୍ୟନାଥ ମିଶ୍ର, ଡକ୍ଟର ସତ୍ୟବାଦୀ ମିଶ୍ର, ଶ୍ରୀ ମନମୋହନ ମିଶ୍ର, ଶ୍ରୀ ଗଙ୍ଗାଧର ରଥ ପ୍ରଭୃତି ଏଇ ଗୋଷ୍ଠୀର ଅନ୍ତର୍ଭୁକ୍ତ । ରାଜନୈତିକ କାର୍ଯ୍ୟ ଯେପରି, ପଠନ ବି ସେଇପରି । ଜାନକୀବାବୁ ଯାଇଥାନ୍ତି ଶାନ୍ତିନିକେତନ, ପ୍ରଥମ ଥର ମୁଖ୍ୟମନ୍ତ୍ରୀ ଥିଲାବେଳେ । ସେଠାରେ ସେ ସଂସ୍କୃତ ଭାଷାରେ ଓଜସ୍ୱିନୀ ଭାଷଣ ଦେଲେ ପ୍ରାୟ ଦେଢ଼ ଘଣ୍ଟା । ତା'ପରେ ସଭାପତିତ୍ୱ କରୁଥିବା ତତ୍‌କାଳୀନ କୁଳପତି ତାଙ୍କୁ ସମ୍ବୋଧନ କରି କହିଲେ ଯେ ''ମହାଶୟ, ଆପଣ ଏଆଡ଼େ କୁଆଡ଼େ ପଶି ଆସିଛନ୍ତି ? ଆପଣଙ୍କ ଇଲାକା ତ ଏହି କ୍ଷମତାର ଅଳିନ୍ଦ ନୁହେଁ । ଫେରି ଯାଆନ୍ତୁ, ଫେରି ଯାଆନ୍ତୁ ସଂସ୍କୃତିର ସାଗରକୁ । ସେଇଠି ଆପଣଙ୍କର ସ୍ଥାନ ।'' ମନ ଭରି ଯାଇଥିଲା ଗର୍ବରେ । କିନ୍ତୁ କ୍ଷମତାର ନିଶା ଥରେ ଲାଗିଲେ କଣ ତାହା ସହଜରେ ଛାଡ଼େ ? ଏହାଛଡ଼ା କ୍ଷମତା ମଧ୍ୟ ଏକ ବିରାଟ ଆୟୁଧ । ଏହାକୁ ବ୍ୟବହାର କରି ଜୀବନରେ ସବୁ ବିଭାବକୁ ପ୍ରଭାବିତ କରାଯାଇପାରେ । ସେ ମୁଖ୍ୟମନ୍ତ୍ରୀ ହେଲେ ଏବଂ ଉତ୍‌ଥାନ ପତନ ଭିତରେ ମୁଖ୍ୟମନ୍ତ୍ରୀ ପଦବୀକୁ ବହୁକାଳ ରଖିପାରିଲେ । ମନେ ପଡ଼ିଲା ବିଶ୍ୱଭାରତୀ କୁଳପତିଙ୍କ ବାଣୀ । ସଂସ୍କୃତିର ସାଗର ଆହୁରି ବିଶାଳ । ବିନା କ୍ଷମତାରେ ତହିଁରେ ପହଁରିବା ଆହୁରି କଠିନ । ଜାନକୀବାବୁ କେନ୍ଦ୍ରରେ ମନ୍ତ୍ରୀ ହୋଇଥିଲେ ଇନ୍ଦିରାଗାନ୍ଧୀଙ୍କ ସମୟରେ । ସେତେବେଳେ ମୁଖ୍ୟମନ୍ତ୍ରୀ ହେଉଛନ୍ତି ନନ୍ଦିନୀ ଶତପଥୀ । ଦୁହିଁଙ୍କ ଭିତରେ ଭଲ ପଡୁ ନ ଥିଲା । ବୋଧହୁଏ ଇନ୍ଦିରା ଗାନ୍ଧୀଙ୍କ ନିକଟତର କିଏ ବେଶି ହେବ ସେଇଥିପାଇଁ ଏଇ ବିବାଦ । ଆଉ ତ କିଛି ସ୍ୱାର୍ଥଜନିତ ସଂଘର୍ଷର କାରଣ ନ ଥିଲା । ଜଣେ ରାଜ୍ୟର ମୁଖ୍ୟମନ୍ତ୍ରୀ, ଜଣେ କେନ୍ଦ୍ରରେ ମନ୍ତ୍ରୀ । ଜାନକୀବାବୁ ଓଡ଼ିଶା ଆସିଲେ କେହି ତାଙ୍କୁ ଦେଖାକରିବାକୁ ଯାଆନ୍ତି ନାହିଁ ଡରରେ । ରାଜନୈତିକ, ସାମାଜିକ କର୍ମୀ ଓ ଅଫିସର ଏଥିରେ ଅନ୍ତର୍ଭୁକ୍ତ । ମୋର ଦେଖାହୁଏ (ପୁଲିସ ବନ୍ଧୁମାନଙ୍କର ତାଗିଦା ସତ୍ତ୍ୱେ) । ଦିନେ ସେ ମୋତେ କହିଲେ ଦୁଃଖର ସହିତ ''ମୁଁ ଏତେ କଥା କରୁଛି ଓଡ଼ିଶା ପାଇଁ । ଅଥଚ ମୋର ସେତକ ଲୋକଙ୍କୁ ଜଣାଇବା ପାଇଁ ମଧ୍ୟ ସମ୍ଭବ ହୋଇପାରି ନାହିଁ ।'' ଓଡ଼ିଆ ମନ୍ତ୍ରୀ, ଓଡ଼ିଶା ପାଇଁ କାମ କରୁଛନ୍ତି, ସେ କହିବେ ନାହିଁ, ଜଣାଇ ପାରିବେ ନାହିଁ ସେକଥା ? ମୋର ଓଡ଼ିଆ ସ୍ୱାଭିମାନ ଉପରେ ସତେ ଯେପରି କିଏ ଆଘାତ ହାଣିଲା । ମୁଁ ଆମଘରେ ଏକ ବନ୍ଧୁ ମିଳନର ଆୟୋଜନ କଲି । ପରେ ପରେ ଆଉ ସାତ ଆଠଟି ବନ୍ଧୁମିଳନର ବି ଆୟୋଜନ କଲି । ସମସ୍ତେ ଡରାଇଲେ, ମୁଖ୍ୟମନ୍ତ୍ରୀ ବିରକ୍ତ ହେବେ । କିନ୍ତୁ ଆଜି ମଧ୍ୟ କହିବା ପାଇଁ ମୋର କୌଣସି କ୍ଷୋଭ ନାହିଁ । ମୁଖ୍ୟମନ୍ତ୍ରୀ ଏ ସଂପର୍କରେ ମୋତେ କେବେହେଲେ କିଛି କହିନାହାନ୍ତି ବା ବିରକ୍ତ ହେବାର ଲକ୍ଷଣ

Digitized by srujan ka@gmail.com

ବି ଦେଖିନାହିଁ । ଅବଶ୍ୟ ତାର ଗୋଟିଏ କାରଣ ହୋଇପାରେ ଯେ ନଳିନୀଦେବୀଙ୍କ ସହିତ ମୋର ଆତ୍ମୀୟତା ଥିଲା ଏକଦା ଖୁବ୍ ଗଭୀର । ସମୟ ଓ ଘଟଣାର ପ୍ରବାହରେ ତାହା ମଳିନ ହୋଇ ଯାଇଛି ବା ତା' ଉପରେ ସମୟ ଓ ଘଟଣା ପ୍ରବାହ ଆସ୍ତରଣ ପକାଇ ପାରିଛି କିନ୍ତୁ ତାହା ତ ମରିଯାଇ ନାହିଁ ।

ଦିନେ ଜାନକୀବାବୁଙ୍କ ପାଖକୁ ଗଲାବେଳକୁ ଜନରବ ରଟି ଯାଇଥିଲା ଯେ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଏବଂ ଶ୍ରୀ ବିରେନ୍ ମିତ୍ର ଆଉ ନାହାନ୍ତି । ଏହା ମିଥ୍ୟା ବୋଲି ଜଣାପଡ଼ିଗଲା ପରେ ପରେ । ମୋତେ ନେଇ ଜାନକୀବାବୁ ବାହାରିଲେ ଅଧ୍ୟାପକ ପରିଜାଙ୍କ ପାଖକୁ । ପୂର୍ବଦିନ ରାତିରେ ତାଙ୍କ ଅବସ୍ଥା ଗୁରୁତର ଥିଲା । କିନ୍ତୁ ସେ ହାଡୁଆ ମଣିଷ ଏବଂ ବେଶ ମାନସିକ ଶକ୍ତିର ମଣିଷ । କୌଣସି ଆଡ଼େ ଗଲେ ସେ ସାଙ୍ଗରେ ନେଇଥାନ୍ତି ଟିଣରେ ପ୍ୟାକ୍ ହୋଇଥିବା ଖାଦ୍ୟ । ସେଥିରେ ରୋଗ ସଂକ୍ରମଣ ହେବାର ଆଶଙ୍କା ନାହିଁ । କିନ୍ତୁ ''ସ୍ୱଦେଶୀ'' ଟିଣ ଖାଦ୍ୟ ପାଇଁ rust virus (କଳଙ୍କିରୁ ଜନ୍ମ ଭାଇରସ୍) ଆକ୍ରମଣ କଲା । ଏବଂ ତାଙ୍କର ଯିବା ଆସିବା ବେଳ ହୋଇଗଲା ବୋଲି ହୁରି ହେଲା । କାରଣ rust virus ସହଜରେ ମରେ ନାହିଁ । କିନ୍ତୁ ପରିଜା ବଞ୍ଚିଯାଇଥିଲେ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି । ପରିଜାଙ୍କୁ ପ୍ରଣାମ କରି ଆମେ ଗଲୁ ବୀରେନ ମିତ୍ରଙ୍କ ପାଖକୁ । କେହି କୁଆଡ଼େ ନାହାନ୍ତି । କେବଳ ଦୂରରେ କେହି କେହି ପରସ୍ପର କଥା ହେଉଛନ୍ତି ଏବଂ ଚାଲିଯାଉଛନ୍ତି । ଆମେ ଗଲାବେଳକୁ ପାହାଚରେ କେବଳ ଜଣେ ଲୋକ ଓହ୍ଲାଉଚନ୍ତି । ସେ ହେଲେ ମଙ୍ଗଳାବାଗର ପ୍ରସିଦ୍ଧ ମଦ ବେପାରୀ ହାଡ଼ିବନ୍ଧୁ ଦାସ । ଯାହାହେଉ ଶେଷକୁ ଏହି ବୀରେନ ମିତ୍ରଙ୍କର ଏକମାତ୍ର ବନ୍ଧୁ ହୋଇ ରହିଛନ୍ତି ଆଉ ସମସ୍ତେ ଯେ ଯାହା ସ୍ୱାର୍ଥ ହାସଲ କରି ଚାଲି ଯାଇଛନ୍ତି । ବୀରେନ ମିତ୍ରଙ୍କ ଜୀବନ ଜିରୋରୁ ହୀରୋ ଏବଂ ପୁଣି ଜିରୋ । ଅବିଭକ୍ତ ଛାତ୍ର ସଂଘର ନେତା ଥିଲେ । ପରବର୍ତ୍ତୀ କାଳରେ କୁସଙ୍ଗରେ ପଡ଼ି ଗୋଡ଼ ଅଚଳ ହୋଇଗଲା ଅନେକ ପରିମାଣରେ । ଆପଣାର ନର୍ସ ଈଶ୍ୱରାମ୍ମାଙ୍କୁ ବିବାହ କଲେ । ପରବର୍ତ୍ତୀ କାଳରେ ବିଜୁ ବୀରେନ, ନୀଳମଣିଙ୍କ ''ପାଓ୍ୱାର ଗ୍ରୁପ'' ଗଢ଼ିଉଠିଲା ମହତାବବାବୁଙ୍କ ଛତ୍ରଛାୟା ତଳେ । ଦକ୍ଷିଣପନ୍ଥୀ କାମ କରିବା ସତ୍ତ୍ୱେ ବୀରେନ ମିତ୍ରଙ୍କ ବାମପନ୍ଥୀ ଦରଦ ପ୍ରଭୂତ । କାରଣ ଆପଣାର ଅତୀତ ଏବଂ ଜନ ସାଧାରଣଙ୍କ ଦାରିଦ୍ର୍ୟ ପ୍ରତି ଏକ ଅସମ୍ଭବ ଦରଦ ମନୋଭାବ ଥିଲା ତାଙ୍କର । ଦାନ କରିବାରେ ତାଙ୍କର ତୃପ୍ତି ଥିଲା ବହୁତ । ମୋର ମନେ ପଡୁଛି, ଥରେ ମୁଁ ବସିଥିଲି ତାଙ୍କ ପାଖରେ । କେଉଁଝରର ବିଖ୍ୟାତ ଖଣି ମାଲିକ ସିରାଜୁଦ୍ଦିନ ନୋଟ ଭର୍ତ୍ତି ହୋଇଥିବା ତିନୋଟି ବସ୍ତା ନେଇ ପହଞ୍ଚିଲେ ତାଙ୍କ ପାଖରେ । ବୀରେନ ଦା ସାଙ୍ଗେ ସାଙ୍ଗେ ଡକାଇ ପଠାଇଲେ ତାଙ୍କର ଗୁରୁ ମହତାବ ବାବୁଙ୍କୁ । ମହତାବ ବାବୁ ପହଞ୍ଚି ଗୋଟିଏ ବସ୍ତା ତତ୍କାଳୀନ କଂଗ୍ରେସର କୋଷାଧ୍ୟକ୍ଷ ଦୀନବନ୍ଧୁ ସାହୁଙ୍କ ପାଖକୁ ପଠାଇବାକୁ କହିଲେ । ଗୋଟିଏ ବସ୍ତା ବୀରେନ ଦାକୁ ରଖିବାକୁ କହିଲେ ତାଙ୍କର ଦୈନନ୍ଦିନ ଦାନ ପାଇଁ । ଗୋଟିଏ ବସ୍ତା Let us keep for the

Digitized by srujan ka@gmail.com

rainy days ବୋଲି କହି ସାଙ୍ଗରେ ନେଇଗଲେ । ସଂଧ୍ୟାବେଳକୁ ବୀରେନ୍ ଦା ବସ୍ତାଯାକର ନୋଟ ବାଣ୍ଟି ଦେଇଥିଲେ ।

ସିରାଜୁଦ୍ଦିନ ପ୍ରଚୁର ଅର୍ଥ ଉପାର୍ଜନ କରିଥିଲେ ଏବଂ ପଶ୍ଚିମବଙ୍ଗ, ବିହାର ଓ ଓଡ଼ିଶାର ବହୁ ରାଜନୈତିକ ନେତାମାନଙ୍କୁ ଅର୍ଥଦାନ କରି ଆପଣାର ଅଖଣ୍ଡ ପ୍ରଭାବ ବିସ୍ତାର କରିଥିଲେ । ତାଙ୍କର ବି ଦୁର୍ଦ୍ଦିନ ଆସିଥିଲା । ତାଙ୍କ ପିଛା ଲାଗିଥିଲା ସି.ବି.ଆଇ. । ତାଙ୍କୁ ଭେଟିବା ପାଇଁ ଲୋକମାନଙ୍କର ଭୟ ହେଲା, ତାଙ୍କ ପାଖ କେହି ମାଡ଼ିଲେ ନାହିଁ । ଥରେ କଲିକତାରେ ଉତ୍କଳ ଭବନରେ ଇମିତି ଗୋଟାଏ ଘଟଣା ଘଟିଲା । ହଠାତ୍ ସେଠାରେ ସିରାଜୁଦ୍ଦିନ ଆସି ପହଞ୍ଚିଲେ । ତାଙ୍କ ଆସିବା ଖବର ପାଇ ସେଠାରେ ଥିବା ଅନେକ ନେତା ଓ ଅଫିସର ଯିଏ ଯୁଆଡ଼େ ଲୁଚିଗଲେ । ମୁଁ ସେଦିନ ଦୈବାତ୍ ସେଇଠି ରହୁଥାଏ ।

ସମସ୍ତେ ପଳାଇଲେ କିନ୍ତୁ ଗଲେ ନାହିଁ ଶ୍ରୀ ପଞ୍ଚାନନ ତ୍ରିପାଠୀ । ସେତିକିବେଳେ ସେ ଖଣି ବିଭାଗର ଡେପୁଟି ସେକ୍ରେଟେରୀ । ପଞ୍ଚାନନ ବାବୁଙ୍କ ସହିତ ମୋର ପରିଚିତି ପିଲାଦିନରୁ । ତାଙ୍କ ବାପା ମୋର ଶିକ୍ଷକ ଥିଲେ । ପଞ୍ଚାନନ ବାବୁ ଯେ ତାଙ୍କର ପାଳିତ ପୁତ୍ର ଏହା ଆମେ କେହି ଜାଣି ନ ଥିଲୁ ଅନେକ ଦିନ ପର୍ଯ୍ୟନ୍ତ । ପଞ୍ଚାନନ ବାବୁ ବିବାହ ମଧ କଲେ ଶ୍ରୀ ସୋମନାଥ ମହାପାତ୍ର ଆଇ.ଏ.ଏସ.ଙ୍କ ପାଳିତା କନ୍ୟାଙ୍କୁ । ପଞ୍ଚାନନ ବାବୁ ଅବିଚଳିତ ରହିବା ଦେଖି ମୁଁ ତାଙ୍କୁ ପଚାରିଲି ଯେ ଆପଣ ନ ଯାଇ ରହିଛନ୍ତି କିପରି ? ସେ କହିଲେ ମୁଁ ପବ୍ଲିକ ସରଭାଣ୍ଟ (Public Servant) ଭାରତର ପ୍ରତ୍ୟେକ ନାଗରିକ ମୋତେ ଦେଖା କରିବାର ଅଧିକାର ରହିଛି ଏବଂ ମୁଁ ତାଙ୍କୁ ଶୁଣିବାକୁ ମଧ ବାଧ । କାରଣ ସେମାନେ ହେଉଛନ୍ତି ମୋର 'ପେ' ମାଷ୍ଟର (Pay master) ସେମାନେ କହିବେ ଏବଂ ମୁଁ ଶୁଣିବି । କିନ୍ତୁ ମୁଁ କଣ ନିଷ୍ପତ୍ତି ନେବି ତାହା ମୋର ଦାୟିତ୍ୱ ।

ସିରାଜୁଦ୍ଦିନ ତାଙ୍କୁ ଦେଖାକଲେ । କହିଲେ ତାଙ୍କର ଅଭିଯୋଗ ଏବଂ ଦାବି । ସେ କଣ ସବୁ କହିଲେ ମୋତେ ଜଣାନାହିଁ । କିନ୍ତୁ ପଞ୍ଚାନନ ବାବୁ ତା' ଉପରେ ଏକ ରିପୋର୍ଟ ପ୍ରସ୍ତୁତ କରି ଖଣିମନ୍ତ୍ରୀ ତଥା ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଲେ । ଏହା ଜାଣିବା ପାଇଁ ମୋର କୌତୁହଳ ହୋଇଥିଲା ।

ମୋର ଜାଣିବାର ଇଚ୍ଛାଥିଲା ଯେ ସେ ସିରାଜୁଦ୍ଦିନଙ୍କ ସହ ସାକ୍ଷାତକୁ ଲିପିବଦ୍ଧ କରିବେ କି ନାହିଁ । କାରଣ ସେତେବେଳେ ସିରାଜୁଦ୍ଦିନଙ୍କୁ ସାକ୍ଷାତ କରିବା ଘୋର ବିପଜ୍ଜନକ ମନେହେଉଥିଲା । ସେ କିନ୍ତୁ ସବୁକଥା ଲିପିବଦ୍ଧ କରିଥିଲେ, ସିରାଜୁଦ୍ଦିନଙ୍କ ଦାବି କଥା ଲେଖିଥିଲେ ଏବଂ ସେ କ'ଣ ନିଷ୍ପତ୍ତି ନେଇଛନ୍ତି ତାହା ମଧ ଉଲ୍ଲେଖ କରିଥିଲେ । କିନ୍ତୁ କେହି କିଛି କହିଲେ ନାହିଁ । ଦୃଢତା, ସାଧୁତା ଆଗରେ କୌଣସି ପ୍ରତିବନ୍ଧକ ତିଷ୍ଠି ପାରେ ନାହିଁ ।

Digitized by srujan ka@gmail.com

ସେଦିନ ବୀରେନ ମିତ୍ରଙ୍କ ଘରେ ହାଡ଼ିବନ୍ଧୁ ଦାସଙ୍କୁ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । କାରଣ ବୀରେନ୍ ମିତ୍ର ସେତେବେଳକୁ କ୍ଷମତାରେ ନ ଥିଲେ । ଶାସକ ଗୋଷ୍ଠୀର ବିରାଗଭାଜନ ହୋଇଥିଲେ । ସବୁ ଅର୍ଥ ତାଙ୍କର ସରି ଯାଇଥିଲା ।

ପରବର୍ତ୍ତୀ କାଳରେ ଇନ୍ଦିରା ଗାନ୍ଧୀ କୁଆଡ଼େ ତାଙ୍କର ପୁଅ ସଂଜୟକୁ ପଚାରିଲେ ଯେ ''ତୋର ସାଙ୍ଗସବୁ କୁଆଡ଼େ ଦୁଷ୍ଟ ଏବଂ ଖରାପ'' । ପୁଅ ଉତ୍ତର ଦେଇଥିଲା ଯେ ଏହା ସତ୍ୟ । କିନ୍ତୁ ସେଇମାନେ ମୋତେ ଆମର ଦୁର୍ଦ୍ଦିନରେ ଛାଡ଼ି ଯାଇନାହାନ୍ତି କିନ୍ତୁ ତୁମର ପଣ୍ଡିତ, ବିଜ୍ଞ ବନ୍ଧୁମାନେ ସମସ୍ତେ ତୁମେ କ୍ଷମତାଚ୍ୟୁତ ହେବା ସହିତ ତୁମକୁ ଛାଡ଼ି ଚାଲିଯାଇଛନ୍ତି, ଏହା କଣ ସତ୍ୟ ନୁହେଁ ? ମାଆ କଣ ଉତ୍ତର ଦେଲେ ମୁଁ ଜାଣିନାହିଁ ।

ହାଡ଼ିବନ୍ଧୁ ଦାସ ଜଣେ ମଦ, ଗଂଜେଇ ବେପାରୀ ଏବଂ ବୀରେନ୍ ମିତ୍ରଙ୍କ ସହିତ ତାଙ୍କର ସଂପର୍କ ନିବିଡ଼ ଥିଲା । କିନ୍ତୁ କେବଳ ସେ. କଣ ଏକମାତ୍ର ନିବିଡ଼ ବ୍ୟକ୍ତି ଥିଲେ ? ଅନ୍ୟମାନେ ସବୁ ଆଜି କାହାନ୍ତି ? ମୋର ମନେ ପଡୁଛି ଯେଉଁଦିନ ବୀରେନ୍ ମିତ୍ର ନିର୍ବାଚନରେ ହାରିଗଲେ ସେଇଦିନ ବିଶ୍ୱନାଥ ପଣ୍ଡିତଙ୍କ ଆଖିରୁ ଠକ୍ ଠକ୍ ଲୁହ ଗଡ଼ିପଡ଼ିଲା । ସେ କହିଲେ ଯେ କଟକ ସହରଟା ନିମକହାରାମ ହୋଇଗଲା । ଯେତିକି ଲୋକ ତା' ଠାରୁ ବ୍ୟକ୍ତିଗତ ଭାବରେ ସାହାଯ୍ୟ ପାଇଛନ୍ତି ସେମାନେ ଯଦି ଭୋଟ ଦେଇଥାନ୍ତେ ତା' ହେଲେ ବୀରେନ୍ ହାରି ନ ଥାନ୍ତେ । ଏହା କହୁଥିଲେ ସେଇ ବ୍ୟକ୍ତି ଯେ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ବହୁବାର ପ୍ରତିଦ୍ୱନ୍ଦିତା କରିଛନ୍ତି । ବିଶ୍ୱନାଥ ପଣ୍ଡିତ ଜଣେ ଭିନ୍ନ ଧରଣର ମଣିଷ । ରାଜନୈତିକ ପ୍ରତିଦ୍ୱନ୍ଦିତା, ବିରୋଧ ତାଙ୍କୁ ଗ୍ରାସ କରିନାହିଁ । ମୋର ମନେପଡୁଛି । ଶ୍ରୀ ନୀଳମଣି ରାଉତରାୟଙ୍କ ସ୍ତ୍ରୀ ନଳିନୀ ଦେବୀଙ୍କୁ ମୁଁ ଡାକ୍ତରଖାନାରେ ଭର୍ତ୍ତି କରି ଦେଇଥିଲି ନୀଳମଣିବାବୁ ଓଡ଼ିଶାରେ ନ ଥିଲାବେଳେ, ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀ ଏବଂ ଡାକ୍ତର ସୁକୁମାର ମିତ୍ରଙ୍କ ଉପଦେଶାନୁଯାୟୀ । ତାଙ୍କୁ କ୍ୟାନସର ହୋଇଥିଲା । ନୀଳମଣିବାବୁ ଦିଲ୍ଲୀରୁ ଫେରି ତାଙ୍କୁ ଡାକ୍ତରଖାନାରେ ଭେଟିବାକୁ ଗଲେ । ଦୈବାତ୍ ଖବର ପାଇ ବିଶ୍ୱନାଥ ପଣ୍ଡିତ ବି ସେଇଠି ହାଜର । ହେଲା ମୋ ଉପରେ ଗାଳି । ''ତୁ ମୋତେ କିପରି ଖବର ଦେଲୁ ନାହିଁ । ନୀଳମଣି ମୋର ସହପାଠୀ । ନଳିନୀ ଏତେ ବଡ଼ ଲେଖିକା । ମୁଁ ଖବର ପାଇଲି ନାହିଁ ।'' ବିଶ୍ୱନାଥ ପଣ୍ଡିତଙ୍କ ଏଇଭଳି ଗାଳିର କୌଣସି ଉତ୍ତର ମୋ ପାଖରେ ନ ଥିଲା । ଏଇ ହେଉଛନ୍ତି ବିଶ୍ୱନାଥ ପଣ୍ଡିତ ନୀଳମଣି ରାଉତରାୟଙ୍କ ବିରୋଧୀ ଦଳର ନେତା ।

ସେ ମୂଲ୍ୟବୋଧ ହଜିଯାଉଛି । ତଥାକଥିତ ସଭ୍ୟ-ଶିକ୍ଷିତମାନଙ୍କ ପାଖରୁ ଏହା ଦ୍ରୁତ ଗତିରେ ହଜିଯାଉଛି । ଗରିବ, ଅଶିକ୍ଷିତ ଲୋକମାନଙ୍କ ପାଖରେ ଏହା ତଥାପି ବଞ୍ଚି ରହିଛି । ରାତି ଅଧ, ଟୁପୁ ଟୁପୁ ବର୍ଷା ହେଉଛି । ରମାକାନ୍ତ ମିଶ୍ର ହଠାତ୍ ଫୋନ କଲେ ଯେ ଜାନକୀ ବାବୁଙ୍କ ମାଆ ଚାଲିଗଲେ । ମୁଁ ଯିବାକୁ ବାହାରିଲି ସାଇକେଲରେ । ଖବର ପାଇ ମୋ ସ୍ତ୍ରୀଙ୍କ ବଡ଼ ଭଉଣୀର ଝିଅ ଭୋ ଭୋ କାନ୍ଦିଲା ଏବଂ ମୋତେ କହିଲା ଯେ ମୁଁ ସାଙ୍ଗରେ ଯିବି । ଜାନକୀ

Digitized by srujan ka@gmail.com

ବାବୁଙ୍କ ମାଆ ତାର ଆଈ । ମହା ମୁସ୍କିଲ । ତିରିଶ ବର୍ଷ ତଳର କଥା । ରାତି ଅଧ । କିମିତି ନେଇକରି ଯିବି ଏଇ ଝିଅକୁ ତାଙ୍କ ସେଲ୍‌ଟର ଛକ ଘରକୁ । ରିକ୍ସା ମିଳିଲା ନାହିଁ । ବାଧହୋଇ ଜଣେ ବନ୍ଧୁକୁ ଫୋନ କଲି । ସେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଏବଂ ଜାନକୀବାବୁ ତଥା ପ୍ରଜାତନ୍ତ୍ର ପରିବାରର ବନ୍ଧୁ ଭାବରେ ପରିଚିତ । ''ଦେଖନ୍ତୁ, ଜାନକୀବାବୁ କ୍ଷମତାରେ ଏଇନା ନାହାନ୍ତି । ମୃତ୍ୟୁ ବା ରୋଗରେ ଦଳ, ମତ, ଗୋଷ୍ଠୀର ବିଚାର ରହିବା ଉଚିତ ନୁହେଁ । କିନ୍ତୁ ଏଇନା ତ କେହି ଯିବେ ନାହିଁ । ଆମର ଯିବା ଉଚିତ ।'' ସେ ଖୁବ ଦୁଃଖ ପ୍ରକାଶ କଲେ କିନ୍ତୁ କହିଲେ– ଏଇନା ଖରାପ ସମୟ, ଗଲେ ବିପଦର ସମ୍ଭାବନା ଅଛି । ତେଣୁ...... । ସେ ଫୋନ ରଖିଦେଲେ । ଆରପଟ ଫୋନ୍‌ରେ ତାଙ୍କ ପୁଅ କିନ୍ତୁ ଫୋନରେ ସବୁ ଶୁଣିଥିଲା । ତରୁଣ, ରକ୍ତରେ ତଥାପି ଅଗ୍ନି ଅଛି । ସଂସାରର ହିସାବ କିତାବର କଦର ମାଲୁମ ନାହିଁ । ବାପା କିନ୍ତୁ ପୋଖତ ମଣିଷ । ବହୁତ ତଳୁ ଉଠି ବହୁତ ଉପରକୁ ଯାଇଛନ୍ତି । ସମସ୍ତଙ୍କୁ ଚାନ୍ଦା ଦେଇଛନ୍ତି । କାହାକୁ କମ, କାହାକୁ ବେଶି ସେ ଅଲଗା କଥା । କିନ୍ତୁ ଯେତେ ଘୋଡ଼ା ଦୌଡୁଛନ୍ତି ସମସ୍ତଙ୍କ ଉପରେ ବାଜି ଲଗାଯାଇଛି । ଯିଏ ଜିତୁ ! କିନ୍ତୁ ଚାନ୍ଦା ଦେବା ଆଉ ମୃତ୍ୟୁରେ ପାଖରେ ଠିଆ ହେବା ଏକା କଥା ନୁହେଁ । କିନ୍ତୁ ସେଇ ରାତିରେ ସେଠାରେ ପହଞ୍ଚିଲାବେଳକୁ ଜଣେ ବ୍ୟକ୍ତି ସେଠାରେ ପହଞ୍ଚି ସାରିଥିଲା । ସେ ହେଉଛନ୍ତି 'ସମାଜ' ସମ୍ପାଦକ ରାଧାନାଥ ରଥ । କେବଳ ଜାନକୀବାବୁଙ୍କ କ୍ଷେତ୍ରରେ ଏହା ପ୍ରଯୁଜ୍ୟ ନୁହେଁ । ସମସ୍ତଙ୍କ ପ୍ରତି ରାଧାନାଥବାବୁଙ୍କ ଏଇ ଦରଦ ଥିଲା । ବିନୋଦ କାନୁନ୍‌ଗୋ, ଶୈଳେନ୍ଦ୍ର ନାରାୟଣ ସିଂହଦେଓ, ଡାକ୍ତର ଜର୍ଜ ପଟ୍ଟନାୟକ ପ୍ରଭୃତି ବହୁ ବ୍ୟକ୍ତିଙ୍କର ମୃତ ଦେହ ପାଖରେ ରାଧାନାଥବାବୁ ପହଞ୍ଚିଛନ୍ତି ବହୁ ବ୍ୟକ୍ତିଙ୍କ ଆଗରୁ ।

ମୋର ମନେ ପଡୁଛି । ନଳିନୀ ଦେବୀ ରାଉତରାୟଙ୍କ ପରଲୋକ ହୋଇଗଲା ଡାକ୍ତରଖାନାରେ । ସେ କ୍ୟାନସର ରୋଗରେ ପୀଡ଼ିତ ଥିଲେ । ଗୋଲାପ ଫୁଲ, କ୍ୟାକଟସ୍, ବିଲେଇ ଏବଂ କବିତା ଥିଲା ତାଙ୍କର ପ୍ରାଣ । ଏଭଳି ଦରଦୀ ମଣିଷ ମିଳିବା କଠିନ । ସ୍ୱାମୀଙ୍କ ରାଜନୀତି ସହିତ ତାଙ୍କର ସଂପର୍କ ଖୁବ୍ କମ ଥିଲା । ମନେ ପଡୁଛି, 'ଡଗର' ପତ୍ରିକାର କଣ ଗୋଟାଏ କାର୍ଯ୍ୟକ୍ରମ ହେଉଥିଲା । ଡଗର ସଂପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ନିବେଦନ କରିଥିଲେ ସାହାଯ୍ୟ ପାଇଁ । ସଂପାଦକ ନିତ୍ୟାନନ୍ଦ ମହାପାତ୍ର ଥିଲେ ନୀଳମଣି ରାଉତରାୟଙ୍କ ପ୍ରବଳ ବିରୋଧୀ । ନଳିନୀ ଦେବୀ ଦିନେ ଯାଇ ନିତ୍ୟାନନ୍ଦ ବାବୁଙ୍କ ପାଖରେ ହାଜର । ନିତ୍ୟାନନ୍ଦବାବୁଙ୍କ ଆଖି ଉପରକୁ ଖୋସି ହୋଇଗଲା । ''ନିତୁ ଭାଇ, ଡଗରର କାର୍ଯ୍ୟକ୍ରମ ହେଉଛି, ତମେ ନିବେଦନ କରିଛ ସାହାଯ୍ୟ ପାଇଁ । ମୋର..... ସାମାନ୍ୟ ଦାନ ଏଇ ତିନି ଶହ ଟଙ୍କା ମୁଁ ଦେବାକୁ ଆଣିଛି ସେଥିପାଇଁ ।'' ନିତ୍ୟାନନ୍ଦବାବୁ କେବଳ ଚାହିଁ ରହିଥିଲେ ତାଙ୍କୁ । କହିବାର କିଛି ନ ଥିଲା । ନଳିନୀ ଦେବୀ ଆମ ପରିବାରର ଜଣେ ଥିଲେ । ତାଙ୍କର ପରଲୋକରେ ଯେପରି ମୋର ଭଉଣୀଟିଏକୁ ମୁଁ ହରାଇ ବସିଲି । ମୋର ନିଜର ଭଉଣୀ ନାହିଁ । କିନ୍ତୁ ଅନେକ

Digitized by srujan ka@gmail.com

ମୋର ଭଉଣୀ ଭଳି ମୋତେ ସ୍ନେହ, ଶ୍ରଦ୍ଧା ଏବଂ ବୟସରେ ସାନ ହୋଇଥିଲେ ଭକ୍ତି ଦେଇଆସିଛନ୍ତି । ଯେପରି କଂଗ୍ରେସ ଦଳର ବର୍ତ୍ତମାନ ସଂପାଦିକା ସାହନାଜ ବାନୁ (ମୁନି) ।

ପିଲାଦିନେ ବ୍ୟାକରଣ ଦୁର୍ବଳ ଥିଲା । ସଂସ୍କୃତ ଶିକ୍ଷକଙ୍କ ଭୟ ଯୋଗୁଁ ସଂସ୍କୃତ ହେଲା ନାହିଁ । ଜୀବନରେ ସେଇ ଅବଶୋଷ ରହିଗଲା । ପରେ ସଂସ୍କୃତ ପଢ଼ିବାକୁ ଚେଷ୍ଟା କରିଛି । କିନ୍ତୁ ଭଲ ଭାବରେ ପଢ଼ିପାରି ନାହିଁ ।

ସଂସ୍କୃତ ନ ଜାଣିଲେ ଭାରତର ପରମ୍ପରା ଓ ଐତିହକୁ ଜାଣିହେବ ନାହିଁ । ପରେ ଜେଲଖାନା ଭିତରେ ସଂସ୍କୃତ ପଢ଼ିବାକୁ ଚେଷ୍ଟା କରିଛି । କିନ୍ତୁ ତାହା ସଫଳ ହୋଇ ନାହିଁ । ସଂସ୍କୃତର ଇଂରାଜୀ ଅନୁବାଦ ପଢ଼ି ତୃପ୍ତ ହୋଇ ନାହିଁ । କାରଣ ସବୁ ଶବ୍ଦର ବା ସବୁ ଭାବର ଅନୁବାଦ ସଂଭବ ନୁହେଁ । ଯେପରି ଅଭିମାନ ଶବ୍ଦର ଇଂରାଜୀ ଅନୁବାଦ ବିଷୟରେ ପ୍ରସିଦ୍ଧ ଔପନ୍ୟାସିକ ଅନ୍ନଦା ଶଙ୍କର ରାୟଙ୍କର ପୁସ୍ତକ ବିଷୟ ବର୍ଣ୍ଣନା କରିଛି । ଗୁରୁ କହିଲେ ଯାହା ବୁଝାଏ, ଟିଚର କହିଲେ କଣ ତହା ବୁଝାଏ ? ସେଇଯୋଗୁଁ ଇଂରାଜୀ ଭାଷାବିଦ୍‌ମାନେ ଅନ୍ୟ ଭାଷାରୁ ବା ଅନ୍ୟ ଦେଶରୁ ଶବ୍ଦକୁ ଆପଣାର ଭାଷାରେ ଗ୍ରହଣ କରି ତାକୁ ସମୃଦ୍ଧ କରିଛନ୍ତି । ହରତାଳ, ନକ୍ସଲବାଦୀ ପ୍ରଭୃତି ଶବ୍ଦ ତାହାର ଉଦାହରଣ । କିନ୍ତୁ କଥିତ ଓଡ଼ିଆ ଭାଷାରେ ଲୋକେ ଯେପରି ଏହି ନିୟମକୁ ପ୍ରୟୋଗ କରିଛନ୍ତି, ସେତିକି ମଧ୍ୟ ପରେ କର୍ତ୍ତାମାନେ କରିବାକୁ ରାଜି ହୋଇ ନାହାନ୍ତି । 'ପୁଲିସ' ଶବ୍ଦର ବ୍ୟବହାର ଓଡ଼ିଶାରେ ଏତେ ବେଶି, ପୁଲିସର ଓଡ଼ିଆ ପ୍ରତିଶବ୍ଦ 'ଆରକ୍ଷୀ' କରିବାର କୌଣସି ଆବଶ୍ୟକତା ନାହିଁ । ବକ୍ସିବଜାର ଛକରୁ ଦିନେ ଆସିଲାବେଳେ ଦେଖିଲି ବାଁ ପଟରେ ଏକ ସାଇନବୋର୍ଡ଼ ଲଗାଯାଇଛି । ଲେଖା ଯାଇଛି– ଆରକ୍ଷୀ ଚଳିତ୍ର ଯାନ ସଂରକ୍ଷାମ କାର୍ଯ୍ୟାଳୟ '' । ଠିଆ ହେଲି । କ'ଣ ଏହାର ଅର୍ଥ ? କିଛି ବୁଝି ପାରିଲି ନାହିଁ । ପାଖରେ ଯାଉଥିବା ଲୋକକୁ ପଚାରିଲି । ସେମାନେ ବି କିଛି କହି ପାରିଲେ ନାହିଁ । ସେଇ ଗେଟ୍ ଦେଇ କିଏ ଜଣେ ପୁଲିସ୍ ଅଫିସର ଆସୁଥିଲେ । ତାଙ୍କୁ ପଚାରିଲି । ଆଜ୍ଞା, ଏଇ ଅଫିସ୍‌ଟା କଣ ? ସେ କହିଲେ ଯେ ଏଇଟା ପୋଲିସ ମୋଟର ଟ୍ରାନ୍ସପୋର୍ଟ ଓ୍ୱାର୍କସପ । ତା'ର କଣ ଓଡ଼ିଆ ଅନୁବାଦ ହେଉଛି ଆରକ୍ଷୀ ଚଳିତ୍ର ଯାନ ସଂରକ୍ଷାମ କାର୍ଯ୍ୟାଳୟ, କିଏ ବୁଝିବ ଏହାକୁ ? ସେ କିଛି ନ କହି ଚାଲିଗଲେ । ପରେ ଖବରକାଗଜକୁ ଲେଖିଲା ପରେ ସେ ସାଇନବୋର୍ଡ଼ ଉଠିଗଲା । ଏହିଭଳି ବହୁ ଉଦାହରଣ ରହିଛି । ଆଡ଼ଭୋକେଟ୍ ଜେନେରାଲ ଶବ୍ଦକୁ ମହାଭାଣ୍ଡ ବା ଫରେଷ୍ଟ ଗାର୍ଡ଼କୁ ବନ ସଂରକ୍ଷକରେ ପରିଣତ କରିବାର ଆବଶ୍ୟକତା କେଉଁଠି ?

ସଂସ୍କୃତ କେବଳ ଦୁର୍ବଳ ନ ଥିଲା, ଦୁର୍ବଳ ଥିଲା ଅଙ୍କ ଏବଂ ବ୍ୟାକରଣ । ଅଙ୍କର ତିନୋଟି ଭାଗ– ବୀଜଗଣିତ, ଅଙ୍କ, ଜ୍ୟାମିତି । ବୀଜଗଣିତ ପୃଷ୍ଠା ମୁଁ କେବେ ଓଲଟାଇ ପାରି ନାହିଁ । $(a+b)^2$ ରେ ହିଁ ମୋର ବୀଜଗଣିତ ଜ୍ଞାନ 'ସଂପୂର୍ଣ୍ଣ' ହୋଇଛି । ମୋ ବାପା ଏବଂ ଦାଦା ଅଙ୍କରେ ମୋର ଏଇ 'ପ୍ରଭୂତ ଜ୍ଞାନ' ଦେଖି ଆଶ୍ଚର୍ଯ୍ୟ ହୋଇଛନ୍ତି । କାରଣ ସେମାନେ କେବେହେଲେ

Digitized by srujan ka@gmail.com

ଅଙ୍କରେ ଶହେରୁ ଅନେଶୋତ ମଧ ରଖି ନାହାନ୍ତି । ସବୁବେଳେ ଶହେରୁ ଶହେ । କିନ୍ତୁ ଆମେ ଦୁଇଭାଇ ଯାକ ଅଙ୍କରେ ଭୂଷି ପଣ୍ଡିତ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ପରପୁରୁଷକୁ ଏହା ପୁଣି ଫେରି ଆସିଛି । ମୋର ଦୁଇ ପୁଅ ଓ ଝିଅ ତିନିହେଁ ଅଙ୍କ ବିଦ୍ୟାରେ ବେଶ୍ ପାରଙ୍ଗମ । ବିଶେଷତଃ ଦୁଇ ପୁଅ ଅଙ୍କରେ ବେଶ୍ ମୌଳିକତା ପ୍ରଦର୍ଶନ କରିବା ପାଇଁ ସକ୍ଷମ ହୋଇଛନ୍ତି ।

ଏହା କିମିତି ଘଟିଲା ତାହା ମୁଁ କହିପାରିବି ନାହିଁ । ଈଶ୍ୱର ବିଶ୍ୱାସୀମାନେ ଏହାକୁ ଈଶ୍ୱର ଦତ୍ତ ବା ବିଭୁକୃପା ବୋଲି କହିଥାଆନ୍ତି । କିନ୍ତୁ ବିଭୁଙ୍କର କୃପା କଣ ଗୋଟିଏ ବଂଶରେ ଝରି, ଆଉ ବଂଶକୁ ଶୁଖି, ପୁଣି ଆଉ ବଂଶକୁ ଝରିଥାଏ ? କିନ୍ତୁ ବିଜ୍ଞାନରେ କୌଣସି ଧାରାରେ ତ ଏହା ପଡୁନାହିଁ ବା ବୈଜ୍ଞାନିକମାନେ ଏହାର କୌଣସି ବୟାନ ଦେଇପାରୁ ନାହାନ୍ତି । ପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍ ଆପଣାର ମୁଣ୍ଡକୁ ଦେଇଯାଇଥିଲେ ଗବେଷଣା ପାଇଁ । ପ୍ରିନ୍ସଟନ ଗବେଷଣାଗାରରେ ତାଙ୍କର ମସ୍ତିଷ୍କକୁ ଖୋଲା ଯାଇଥିଲା । ବୈଜ୍ଞାନିକମାନେ ଭାବିଥିଲେ ଯେ ନିଶ୍ଚୟ କିଛି ସ୍ୱାତନ୍ତ୍ର୍ୟ ସେଥିରେ ଥିବ । କିନ୍ତୁ ଦେଖାଗଲା ଯେ ଏକ ସାଧାରଣ ମଣିଷର ମସ୍ତିଷ୍କ ଛଡ଼ା ସେଥିରେ କୌଣସି ସ୍ୱାତନ୍ତ୍ର୍ୟ ନ ଥିଲା । ତା' ହେଲେ ?

ମୋର ଜଣେ ନିବିଡ଼ ପାରିବାରିକ ବନ୍ଧୁ ଡାକ୍ତର ଗୋବିନ୍ଦ ଚନ୍ଦ୍ର ସେନାପତିଙ୍କର ହଠାତ୍ ପରଲୋକ ହୋଇଗଲା । କିଛି ନ ଥିଲା ରୋଗ । ସକାଳେ ସେ ନିଜର ନିତ୍ୟ ନୈମିତ୍ତିକ କାର୍ଯ୍ୟସବୁ ସାରିଛନ୍ତି । ଆପଣାର ଅନ୍ୟତମ ବନ୍ଧୁ ପ୍ରସିଦ୍ଧ ଅସ୍ଥି ଶଲ୍ୟ ବିଶେଷଜ୍ଞ ଡାକ୍ତର ପି. ତେଜେଶ୍ୱର ରାଓଙ୍କ ସହିତ ଆଳାପ ଆଲୋଚନା କରିଛନ୍ତି । ପୁଅକୁ ପଠାଇଛନ୍ତି ଏକ ବହି ଆଣିବା ପାଇଁ । ପାଖରେ ଥିବା ପିଲାଟି ଯାଇଛି ପାନ ପାଇଁ । ସ୍ତ୍ରୀ ଡାକ୍ତର ସ୍ନେହାଞ୍ଜଳି ସେନାପତି ଯାଇଛନ୍ତି ଡାକ୍ତରଖାନାକୁ । ହଠାତ୍ ସବୁ ଶେଷ ହୋଇଗଲା । କଣ ହେଲା ? ଶୋକାକୁଳ ଡାକ୍ତରମାନଙ୍କର ଏବଂ ବଂଧୁମାନଙ୍କର ଭିଡ଼ ଜମିଛି । ହଠାତ୍ ଡାକ୍ତର ଭକ୍ତିଲତା ରାୟ ପ୍ରଶ୍ନ କଲେ ପାଖରେ ଥିବା ହୃଦରୋଗ ବିଶେଷଜ୍ଞ ଡାକ୍ତର ଯଦୁନାଥ ପ୍ରସାଦ ଦାସଙ୍କୁ । ସତ କହିଲ, ଆମେ କେତେ ଜାଣିଥାଉଁ ମଣିଷର ଏଇ ହୃଦୟ ସଂପର୍କରେ ? ତା' ଠାରୁ କେତେ କମ ଜାଣିଥାଉଁ ଏଇ ମଣିଷର ମସ୍ତିଷ୍କ ସଂପର୍କରେ ?

ସତେ ତ ! ବାପା ମାଆଙ୍କଠାରୁ ଚାପୁଡ଼ାଏ ଖାଇଲେ, ସ୍ୱାମୀ ବା ସ୍ତ୍ରୀଠାରୁ ଚାପୁଡ଼ାଏ ଖାଇଲେ ପୁଅ ଝିଅଠାରୁ ଚାପୁଡ଼ାଏ ଖାଇଲେ କଣ ମଣିଷର ସମାନ ପ୍ରତିକ୍ରିୟା ହୁଏ ? ସେଇ ଚାପୁଡ଼ାଟା ମଧ କଣ ସବୁ ସମୟରେ ସମାନ ପ୍ରତିକ୍ରିୟା ସୃଷ୍ଟିକରେ ? ମଣିଷର ମସ୍ତିଷ୍କ ଏବଂ ହୃଦୟ ଏ ପର୍ଯ୍ୟନ୍ତ ମଣିଷ ପାଇଁ ବିସ୍ମୟ ହୋଇ ରହିଯାଇଛି । ମଣିଷର ଅଫୁରନ୍ତ ଉଦ୍ୟମ ଏବଂ ଜିଜ୍ଞାସା ସତ୍ତ୍ୱେ ସେ ତାହାର ରହସ୍ୟ ଭେଦକରି ପାରି ନାହିଁ । ଏହାର ଫିଜିକାଲ ଅଂଶର ବହୁଳାଂଶ ହୁଏତ ମଣିଷର କର୍ତ୍ତୃତ୍ୱକୁ ଆସିଛି ବା ଆସିବାର ଧାରାକୁ ଆସିଛି । ଏହା ସତ୍ତ୍ୱେ ଅଜ୍ଞାତ ରହିଯାଇଛି ଅନେକ ବେଶୀ । ଗବେଷଣା ଚାଲିଛି । ମଣିଷର ଜିଜ୍ଞାସା ଅନନ୍ତ, ସୀମାହୀନ । ସେ ଯେତିକି ଜାଣିଛି ସେତିକି ସେତିକି ଅଜଣାର ପରିସୀମା ବଢ଼ିଯାଇଛି । କିନ୍ତୁ ମଣିଷ ଅଟକି ରହିଯାଇ

Digitized by srujan ka@gmail.com

ନାହିଁ । ଚରୈବତି, ଚରୈବତି, ଚରୈବତି । ଆଗେଇ ଚାଲ, ଆଗେଇ ଚାଲ, ଆଗେଇ ଚାଲ । ତାହା ହିଁ ମଣିଷର ଗତିପଥକୁ ନିୟନ୍ତ୍ରିତ ଓ ପ୍ରଭାବିତ କରିଛି ।

ଏବେ କିନ୍ତୁ ଏକ ଚମକପ୍ରଦ କଥା ବାହାରିଛି । ସେଥିରେ କୁହାଯାଇଛି ଯେ କ୍ଷମତା ଏବଂ ପ୍ରତିଷ୍ଠା ସହିତ ମସ୍ତିଷ୍କରୁ ଏକ ରସ କ୍ଷରଣ ହୁଏ ଏବଂ କୌଣସି ଏକ ହର୍ମୋନ ଅଧିକ ସତେଜ ହୋଇଉଠେ । ତାହା ଫଳରେ ବୃଦ୍ଧ ଭିତରେ ଯୌବନର ସଂଚାର ହୁଏ, ରୋଗ କମିଯାଏ । ସେଥିରେ ଉଦାହରଣ ଦିଆଯାଇଛି ଏକଦା ଭାରତର ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ କଥା । ସେ ବହୁମୂତ୍ର ରୋଗୀ ଏବଂ ଅନ୍ୟାନ୍ୟ ଅନେକ ଆନୁସଙ୍ଗିକ ରୋଗ ତାଙ୍କର ଅଛି । ସେ ଅତ୍ୟନ୍ତ ଅସୁସ୍ଥ ଥିଲେ କିନ୍ତୁ ପ୍ରଧାନମନ୍ତ୍ରୀ ପଦବୀ ସହିତ ତାଙ୍କର ସେ ରୋଗ ସଂପୂର୍ଣ୍ଣ ଭଲ ହୋଇଗଲା । ଭାରତର ପ୍ରଧାନମନ୍ତ୍ରୀ ପଦବୀ ମଣ୍ଡନ କରିଥିବା ବେଳେ ସତେ ଯେପରି ତାଙ୍କର ସବୁ ରୋଗ ଭଲ ହୋଇ ଯାଇଛି ଏଇପରି ମନେହେଲା କିନ୍ତୁ ପ୍ରଧାନମନ୍ତ୍ରୀ ପଦବୀ ଯିବା ସହିତ ପୁଣି ତାଙ୍କୁ ରୋଗ ଗ୍ରାସ କଲା ଏବଂ ସେ ଆମେରିକା ଗଲେ ଚିକିତ୍ସା ପାଇଁ । ସେ ହୋମିଓପାଥିକ ଔଷଧର ଜଣେ ଭକ୍ତ ଏବଂ ତାଙ୍କର ଚିକିତ୍ସକ ହେଉଛନ୍ତି କେରଳର ମାର୍କ୍ସବାଦୀ ମୁଖ୍ୟମନ୍ତ୍ରୀ ଶ୍ରୀ ଇ.କେ. ନ୍ୟାୟନାର ।

ଏ ସଂପର୍କରେ ଏକ କାହାଣୀ ମନେପଡ଼େ । ବଙ୍ଗଳାର ମୁଖ୍ୟମନ୍ତ୍ରୀ ପ୍ରସିଦ୍ଧ ଡାକ୍ତର ବିଧାନ ଚନ୍ଦ୍ର ରାୟ ଏବଂ ବିରୋଧୀଦଳର ନେତା ହେଉଛନ୍ତି ଜ୍ୟୋତିବସୁ । ବିଧାନଚନ୍ଦ୍ର ରାୟ ଷୋହଳ ବର୍ଷ ମୁଖ୍ୟମନ୍ତ୍ରୀ ହୋଇ ଏକ ରେକର୍ଡ଼ ପ୍ରତିଷ୍ଠା କରିଗଲେ ଏବଂ ସମସ୍ତେ ଭାବିଥିଲେ ଯେ ଏ ରେକର୍ଡ଼ କେହି ଭଙ୍ଗ କରିପାରିବେ ନାହିଁ । କିନ୍ତୁ ଜ୍ୟୋତି ବସୁ ସେ ରେକର୍ଡ଼ ଭାଙ୍ଗି ବର୍ତ୍ତମାନ (୨୦୦୦ ମସିହା) ୨୩ ବର୍ଷ ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ବୟସ ହେଲାଣି ୮୭ ବର୍ଷ ତଥାପି ମେଧାଶକ୍ତି ଅତୁଟ ରହିଛି । ବୋଧହୁଏ କ୍ଷମତା, ଶାସନ, ଅଙ୍ଗୀକାରର ସାଫଲ୍ୟ ତାଙ୍କ ଭିତରେ ବାର୍ଦ୍ଧକ୍ୟ ଆଣିପାରି ନାହିଁ ।

ଥରେ ବିଧାନବାବୁ ବିଧାନସଭାକୁ ଡେରିରେ ଆସିଲେ । ସ୍ୱାଭାବିକ ଭାବରେ ବିରୋଧୀ ଦଳର ନେତା ଜ୍ୟୋତି ବସୁ ଏହି ବିଳମ୍ବ ପାଇଁ ସ୍ୱର ଉଠାଇଲେ । ଏହି ବିତର୍କ ଭିତରେ ବିଧାନ ବାବୁ ପହଞ୍ଚିଲେ ବିଧାନସଭା ଭିତରେ ଏବଂ କିଛି ଯେପରି ଘଟିନାହିଁ ସେଇପରି ମନୋଭାବ ପ୍ରଦର୍ଶନ କରି କହିଲେ– '' ଜ୍ୟୋତି, ତୁରନ୍ତ ଫେରିଯାଅ ଘରକୁ, ତମର ସ୍ତ୍ରୀଙ୍କ ଦେହ ଖରାପ ହୋଇଛି । ମୁଁ ଯାଇ ତାଙ୍କୁ ଔଷଧ ଦେଇ ଆସିଛି । ସେଇ ଯୋଗୁଁ ଡେରି ହୋଇଗଲା ଆସିବା ପାଇଁ ।'' ବିଧାନସଭାରେ ନିସ୍ତବ୍ଧତା ଖେଳିଗଲା ।

ଡାକ୍ତର ବିଧାନ ଚନ୍ଦ୍ର ରାୟଙ୍କୁ ଦେଖାଇବା ପାଇଁ ଥରେ ଜ୍ୟୋତି ବସୁ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ନେତା ଗୁରୁଚରଣ ପଟ୍ଟନାୟକଙ୍କୁ ନେଇ ଯାଇଥିଲେ । ରୋଗୀ ଦେଖା ସରିଲା । ଜ୍ୟୋତି ବସୁ କିଛି ଗୋଟାଏ କହିବା ପାଇଁ ବିଧାନ ବାବୁଙ୍କୁ କହିଲେ ''ଆପଣଙ୍କର ସାଥିରେ

Digitized by srujan ka@gmail.com

ପୁଣି ଗୋଟାଏ ଲଢ଼େଇ ହେବ ।'' ସତେ ଯେପରି ଏହାର ଉତ୍ତର ଦେଇ ବିଧାନବାବୁ କହିଲେ ''ଜ୍ୟୋତି, ଦେଖିଲ ତୁମ ଘଡ଼ିରେ କେତେଟା ବାଜିଛି ?'' ଜ୍ୟୋତିବସୁ ଉତ୍ତର ଦେଲେ ଯେ ''ସାତଟା'' । ବିଧାନ ବାବୁ କହିଲେ ଯେ, ''ଶୁଣ ଜ୍ୟୋତି, ଆଠଟା ପୂର୍ବରୁ ମୁଁ ବିଧାନ ଚନ୍ଦ୍ର ରାୟ ଡାକ୍ତର ଏବଂ ତୁମେ ଜ୍ୟୋତି ବସୁ ରୋଗୀ । ଆଠଟା ପୂର୍ବରୁ ତାହା ହିଁ ମୋର ଏକମାତ୍ର ସଂପର୍କ । ଆଠଟା ପରେ ମୁଁ ବିଧାନ ଚନ୍ଦ୍ର ରାୟ ବଙ୍ଗଦେଶର ମୁଖ୍ୟମନ୍ତ୍ରୀ ଏବଂ ତୁମେ ଜ୍ୟୋତିବସୁ ବିରୋଧୀ ଦଳର ନେତା । ଆଠଟା ପୂର୍ବରୁ ତୁମେ କେଉଁ ଦଳର, କେଉଁ ମତର ସେ ସବୁ ମୁଁ ବିଚାର କରେ ନାହିଁ ବା ମୋର ମନେ ପଡ଼େ ନାହିଁ ।''

ବିଧାନ ଚନ୍ଦ୍ର ରାୟ ଜଣେ ବିଚିତ୍ର ମଣିଷ ଥିଲେ । ହରି ଚରଣ ସାହୁ (ବର୍ତ୍ତମାନ ଅବସରପ୍ରାପ୍ତ ଜିଓଲଜିଷ୍ଟ) ଛାତ୍ର ସଂଘର ଜଣେ ସକ୍ରିୟ କର୍ମୀ ଥିଲେ (ବର୍ତ୍ତମାନ ସେ ସାଇକୃପାର ଆଶ୍ରିତ, ସେତେବେଳେ ସେ ମାର୍କ୍ସବାଦୀ ଯୋଦ୍ଧା) । ସେ ରେଭେନ୍ସା କଲେଜର ପଶ୍ଚିମ ଛାତ୍ରାବାସରେ ରହୁଥିଲେ । ସେ ବୁଲଗେରିଆ ସରକାରଙ୍କ ଦ୍ୱାରା ପ୍ରଦତ୍ତ ଏକ ବୃତ୍ତି ପାଇଲେ, ଉଚ୍ଚ ଶିକ୍ଷା ସକାଶେ । ସେ ସିଧାସଳଖ ଦରଖାସ୍ତ କରି ସେ ବୃତ୍ତି ପାଇଥିଲେ ଏବଂ ବୃତ୍ତି ପାଇବାରେ ସେ ଥିଲେ ଓଡ଼ିଶାର ଏକମାତ୍ର ଛାତ୍ର । କିନ୍ତୁ ତାଙ୍କୁ ପାସପୋର୍ଟ ମିଳିଲା ନାହିଁ । ଡକ୍ଟର ହରେକୃଷ୍ଣ ମହତାବ ତତ୍କାଳୀନ ବୈଦେଶିକ ରାଷ୍ଟ୍ରମନ୍ତ୍ରୀ (ବୋଧହୁଏ ଲକ୍ଷ୍ମୀ ମେନନ୍ ବୋଲି ମନେ ପଡୁଛି)ଙ୍କ ପାଖକୁ ଏକ ଚିଠି ଲେଖିଲେ କିନ୍ତୁ ଫଳ କିଛି ହେଲା ନାହିଁ । ସର୍ବଭାରତୀୟ ସ୍ତରରେ ଆଠଜଣ ଛାତ୍ରଛାତ୍ରୀ ଏହି ପ୍ରକାର ବୃତ୍ତି ପାଇଥିଲେ । ପାସପୋର୍ଟ କାହାରିକୁ ମିଳି ନ ଥାଏ । ସେମାନଙ୍କ ଭିତରେ ଦୁଇଜଣ ବଙ୍ଗଳାର ଛାତ୍ର ଥିଲେ । ସେଇଯୋଗୁଁ ଏକ ଛାତ୍ର ପ୍ରତିନିଧି ଦଳ ବିଧାନବାବୁଙ୍କୁ ଭେଟିଲେ । ସେ ପ୍ରତିନିଧି ଦଳରେ ମୁଁ ଥିଲି । ବିଧାନବାବୁ ସବୁ ଶୁଣିଲେ ଏବଂ ତାଙ୍କ ଚିଫ୍ ସେକ୍ରେଟେରୀ (ରଣଜିତ ଗୁପ୍ତ ବୋଲି ମନେ ପଡୁଚି)ଙ୍କୁ ଡକାଇଲେ ଏବଂ ପଚାରିଲେ ବୃତ୍ତିପାଇଥିବା ପିଲାମାନଙ୍କୁ କାହିଁକି ପାସ୍‌ପୋର୍ଟ ଦିଆଯାଇ ପାରିବ ନାହିଁ । ଚିଫ୍ ସେକ୍ରେଟେରୀଙ୍କର ଲମ୍ୱା କୈଫିୟତ ଶୁଣିବା ପରେ ବିଧାନ ବାବୁ କହିଲେ– '' କିନ୍ତୁ ପାସପୋର୍ଟ ତ ଦିଆହେବ । କିମିତି ଦିଆହେବ କୁହ ? ଚିଫ୍ ସେକ୍ରେଟେରୀ କହିଲେ ଯେ ପ୍ରଧାନମନ୍ତ୍ରୀ ଚାହିଁଲେ ହିଁ ଏହା ହୋଇପାରିବ ।'' ଓ ! ତା'ହେଲେ ଏଇ ସାମାନ୍ୟ ଦୁଇଟି ପାସପୋର୍ଟ ପାଇଁ ପ୍ରଧାନମନ୍ତ୍ରୀଙ୍କୁ କହିବାକୁ ହେବ ନା କଣ ? ତା' ହେଲେ ପ୍ରଧାନମନ୍ତ୍ରୀଙ୍କୁ ଫୋନ ଲଗାଅ ! ଫୋନ ଲାଗିଲା, ବିଧାନ୍‌ବାବୁଙ୍କ ସହିତ ପଣ୍ଡିତ ନେହେରୁଙ୍କର ପ୍ରତ୍ୟକ୍ଷ (Direct) ଫୋନ ସମ୍ପର୍କ ଥିଲା । ସେ ଅନେକ ସମୟ ଧରି ନେହେରୁଙ୍କ ସାଙ୍ଗରେ କଥାବାର୍ତ୍ତା କଲେ । ତାଙ୍କର ଦେହ, ଇନ୍ଦୁ (ଇନ୍ଦିରା ଗାନ୍ଧୀ)ଙ୍କ ଦେହ, ଦେଶ ଏବଂ ଆନ୍ତର୍ଜାତିକ ରାଜନୀତି....... ସବୁ ସରିଲା ପରେ ସେ କହିଲେ ''ଶୁଣ ଜବାହର, କିଛି ପିଲା ବାହାରକୁ ପଢ଼ିବାକୁ ଯିବେ, ଫେରି ଇଂଜିନିଅର ହେବେ, ଡାକ୍ତର ହେବେ । ସେମାନେ କେଉଁ ଦଳ, କେଉଁ ମତର ସେଥିରେ ତମର ମୋର କଣ

Digitized by srujan ka@gmail.com

ଗଲା ?'' ସେ ଫୋନ ଥୋଇଦେଲେ । ବଙ୍ଗଳାର ସେଇ ଦୁଇଟି ପିଲାଙ୍କୁ ପାସ୍‌ପୋର୍ଟ ମିଳିଗଲା, ଅନ୍ୟମାନଙ୍କର ମିଳିଲା ନାହିଁ ।

ଏହି ପ୍ରସଙ୍ଗରେ ମୋର ଗୋଟିଏ ଘଟଣା ମନେ ପଡୁଛି । ୧୯୪୮ ମସିହାର ଆଦ୍ୟକାଳର କଥା । ଜାନୁଆରୀ କି ଫେବୃଆରୀ ମାସର କଥା । ବମ୍ବେ ସହରରେ ନିଖିଳ ଭାରତ ଛାତ୍ର ସଂଘର ସମ୍ମିଳନୀ ହେଉଥାଏ । ଶେଖ୍ ଅବଦୁଲ୍ଲା (ସେତେବେଳେ କାଶ୍ମୀରର ପ୍ରଧାନ ମନ୍ତ୍ରୀ) ଏହାକୁ ଉଦ୍‌ଘାଟନ କରିବାର କାର୍ଯ୍ୟକ୍ରମ ଥାଏ ହଠାତ୍ ସରକାର ଏହି ସମ୍ମିଳନୀ ଉପରେ ନିଷେଧାଜ୍ଞା ଜାରି କଲେ ଏବଂ ଭାରତବର୍ଷର ବିଭିନ୍ନ ପ୍ରଦେଶରୁ ଯାଇଥିବା ପ୍ରତିନିଧିମାନେ ଏହି ନିଷେଧାଜ୍ଞାକୁ ଅମାନ୍ୟ କଲେ । ଲଠିଚାର୍ଜ ହେଲା । ଆହତ ପ୍ରତିନିଧିମାନଙ୍କ ଭିତରେ ଥିଲେ ଶ୍ରୀ ବଂଶୀଧର ଶତପଥୀ ଏବଂ ଆଉଜଣେ କିଏ ତାଙ୍କ ନାମ ମନେପଡୁ ନାହିଁ । ସେ ଦୁଇଜଣ ଉକ୍ତ ବର୍ଷ ପ୍ରାଦେଶିକ ସିଭିଲ ସର୍ଭିସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥାନ୍ତି । କିନ୍ତୁ ପୋଲିସ ରିପୋର୍ଟ ଅନୁସାରେ ସେ ଦୁଇଜଣଙ୍କୁ ଉକ୍ତ ଚାକିରି ନ ଦେବାପାଇଁ ରିପୋର୍ଟ ଗଲା ମୁଖ୍ୟମନ୍ତ୍ରୀଙ୍କ ପାଖକୁ । କିନ୍ତୁ (ନବବାବୁ କି ଡକ୍ଟର ମହତାବ ମନେପଡୁନି) ମୁଖ୍ୟମନ୍ତ୍ରୀ ବା ଘରୋଇ ମନ୍ତ୍ରୀ ଏହି ସୁପାରିଶକୁ ଗ୍ରହଣ ନ କରି ଆଦେଶ ଦେଲେ ଯେ ଏଇ କାରଣରୁ ଯଦି ସେମାନଙ୍କୁ ଚାକିରି ନ ମିଳେ ତା' ହେଲେ ସରକାର ବିରୁଦ୍ଧରେ ଆଉ ଅଧିକା ଦୁଇଟି ଲୋକ ବଢ଼ାଇବା ସାର ମାତ୍ର । ଛାତ୍ରମାନେ ବିପ୍ଳବର ହୁଏତ ସ୍ୱପ୍ନ ଦେଖନ୍ତି କିନ୍ତୁ ସରକାରୀ ଚାକିରି କରିବାକୁ ଯାଉଥିବା ଛାତ୍ରମାନଙ୍କୁ ଚାକିରି ନ ଦେଲେ ସେମାନଙ୍କୁ ବିପ୍ଳବୀ ହେବା ପାଇଁ ସୁଯୋଗ ହେବା ସାର ହେବ । ବିପ୍ଳବର ସ୍ୱପ୍ନଦେଖି ଚାକିରି କରିବାକୁ ଯାଉଥିବା ଛାତ୍ରମାନଙ୍କୁ ଚାକିରି ଥରେ ମିଳିଲେ ବିପ୍ଳବର ସ୍ୱପ୍ନ ସେମାନେ ଭୁଲିଯିବେ ଓ ଚାକିରି କରିବେ ।

ତାହା ଯଥାର୍ଥ ବୋଲି ପ୍ରମାଣିତ ହେଲା, ପରବର୍ତ୍ତୀ କାଳରେ ।

ବିଧାନବାବୁ ଥିଲେ ବେଶ୍ କଠୋର । ଆମେସବୁ ଯାଇଥାଉ ମସ୍କୋ ୧୯୫୬ ମସିହାରେ ବିଶ୍ୱ ଯୁବ ଓ ଛାତ୍ର ଉତ୍ସବକୁ । ସେଇ ଯୁବ ଓ ଛାତ୍ର ଉତ୍ସବକୁ ସ୍ୱତନ୍ତ୍ର ଭାବରେ ନିମନ୍ତ୍ରିତ ହୋଇ ଯାଇଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କର ଭିତରେ ଥିଲେ ପ୍ରସିଦ୍ଧ ଭାଷାବିଦ୍ ଅଧ୍ୟାପକ ନୀହାର ରଞ୍ଜନ ରାୟ । ସେଠାରେ ଚୀନା ପ୍ରତିନିଧି ଦଳ ନିମନ୍ତ୍ରଣ କଲେ କିଛି ପ୍ରତିନିଧିଙ୍କୁ ଚୀନ ପରିଭ୍ରମଣରେ ଯିବା ପାଇଁ । ସେମାନଙ୍କ ମଧ୍ୟରେ ଥିଲେ ଅଧ୍ୟାପକ ନୀହାର ରଞ୍ଜନ ରାୟ । ସେ କହିଲେ ଯେ ବୟସାଧିକ୍ୟ ହେତୁ ଜଣେ ସେକ୍ରେଟେରୀ ତାଙ୍କ ସାଂଗରେ ନ ଗଲେ ସେ ଯାଇ ପାରିବେ ନାହିଁ । ସେଥିପାଇଁ ପ୍ରସିଦ୍ଧ ଲେଖକ ଗୋପାଲ ହାଲଦାରଙ୍କ ନାମ ବାଛିଲେ । ଗୋପାଲ ହାଲଦାର କହିଲେ ଯେ ତାଙ୍କ ପାସପୋର୍ଟରେ ପଶ୍ଚିମବଙ୍ଗ ସରକାରଙ୍କ ନିର୍ଦ୍ଦେଶରେ ଲେଖାଯାଇଛି ଯେ ପଶ୍ଚିମବଙ୍ଗ ସରକାରଙ୍କ ବିନାନୁମତିରେ ଏଇ ପାସପୋର୍ଟର ସମୟକାଳ ବଢ଼ାଯାଇ ପାରିବ ନାହିଁ କି ଅନ୍ୟ ଦେଶକୁ ଅନ୍ତର୍ଭୁକ୍ତ କରାଯାଇ ପାରିବ ନାହିଁ । ଗୋପାଳ ହାଲଦାର କେବଳ ପ୍ରସିଦ୍ଧ ଲେଖକ,

Digitized by srujan ka@gmail.com

ସମାଲୋଚକ ନୁହନ୍ତି କମ୍ୟୁନିଷ୍ଟ ପାର୍ଟିର ଜଣେ ସକ୍ରିୟ ନେତା । ସେଇଯୋଗୁଁ ପଶ୍ଚିମବଙ୍ଗ ସରକାରଙ୍କ ପ୍ରରୋଚନାରେ ଏଇଭଳି ଲିପିବଦ୍ଧ କରାଯାଇଛି ତାଙ୍କ ପାସପୋର୍ଟରେ । ଏଥିରେ କୌଣସି ସନ୍ଦେହ ନାହିଁ । ସମସ୍ତେ ଜାଣନ୍ତି ଭାରତ ସରକାରଙ୍କ ଉପରେ ବିଶେଷତଃ ପଣ୍ଡିତ ନେହେରୁଙ୍କ ଉପରେ ଡାକ୍ତର ବିଧାନ ଚନ୍ଦ୍ର ରାୟଙ୍କ ପ୍ରଭାବ ! ସମସ୍ତଙ୍କ ମନ ଉପରେ ଏକ ବିଷାଦର ଛାୟା, ତଥାପି ଦେଖାଯାଉ, ସୋଭିଏଟ ରୁଷରେ ସ୍ଥାପିତ ଭାରତର ରାଷ୍ଟ୍ରଦୂତ କିଛି କରିପାରିବେ କି ? ଅଧ୍ୟାପକ ନୀହାର ରଞ୍ଜନ ରାୟ, ଅଧ୍ୟାପକ ଗୋପାଲ ହାଲଦାର, ଅଚ୍ୟୁତ କୁରୁପ (କେରଳର ଛାତ୍ର ନେତା) ଏବଂ ମୁଁ ରାଷ୍ଟ୍ରଦୂତ କେ.ପି.ଏସ୍. ମେନନ୍‌ଙ୍କୁ ଭେଟିଲୁ । ବିନୀତ ଭାବରେ ନୀହାରବାବୁ ତାଙ୍କ ବକ୍ତବ୍ୟକୁ ଉପସ୍ଥାପିତ କଲେ । କେ.ପି.ଏସ. ମେନନ୍ ଶୁଣି କେବଳ କହିଲେ ଠିକ୍ ଅଛି । ତା'ପରେ ସାହିତ୍ୟ, କଳା, ସଂସ୍କୃତି ବିଷୟରେ ଆଲୋଚନା ଆରମ୍ଭ କଲେ । କାଳେ କଥାଟାର ଗୁରୁତ୍ୱ ବିଷୟରେ ବୁଝାଇ ପାରିଲେ ନାହିଁ ଭାବି ପୁଣି ନୀହାର ବାବୁ କହିଲେ ଯେ ଆପଣ ତ ଜାଣନ୍ତି ବିଧାନ ଚନ୍ଦ୍ର ରାୟଙ୍କୁ । ତାଙ୍କରି ପ୍ରରୋଚନାରେ ଗୋପାଲ୍‌ର ପାସ୍‌ପୋର୍ଟରେ ଏଇପରି ଉଲ୍ଲେଖ କରାଯାଇଛି । ସେ ପାସପୋର୍ଟଟିର ସଂପୃକ୍ତ ପୃଷ୍ଠାଟିକୁ ଦେଖାଇଲେ ମେନନ୍‌ଙ୍କୁ । ମେନନ୍ ତାକୁ ପଢ଼ି ଖୋଲା ପାସ୍‌ପୋର୍ଟଟିକୁ ବନ୍ଦକରି ରଖିଦେଇ କହିଲେ ଯେ କାହିଁ, ଅଧ୍ୟାପକ ହାଲଦାର ତ ଏଭଳି ବିପଜ୍ଜନକ ବୋଲି ମନେହେଉ ନାହାନ୍ତି । ତା'ପରେ ସେ ପୁଣି ଆରମ୍ଭ କଲେ ସାହିତ୍ୟ, ସଂସ୍କୃତି କଥା । ଅପ୍ରତିଭ ନୀହାରବାବୁ ଏତିକିମାତ୍ର କହିଛନ୍ତି ଯେ ''ଆପଣ ତ ବିଧାନବାବୁଙ୍କୁ ଜାଣନ୍ତି । ମୁଁ ଆପଣଙ୍କୁ ଏହାଦ୍ୱାରା ଅସୁବିଧାରେ ପକାଉ ନାହିଁ ତ'' । କେ.ପି.ଏସ୍. ମେନନ୍ କଦାପି ରାଗନ୍ତି ନାହିଁ । ତାଙ୍କ ସଂପର୍କରେ କୁହାଯାଏ ଥରେ ଜଣେ ଅଫିସର ବାରମ୍ବାର ନିର୍ଦ୍ଦେଶ ସତ୍ତ୍ୱେ ତାଙ୍କର ନିର୍ଦ୍ଦେଶକୁ ମାନିଲେ ନାହିଁ । ବିରକ୍ତ ହୋଇ ମେନନ୍ ତାକୁ କହିଲେ ଯେ ଦେଖ ତମେ ସେକ୍ରେଟେରୀ ହୋଇଥିଲେ ହୁଏତ ତମେ ଯାହା ଚାହୁଁଛ ତାହା କରି ପାରିଥାଆନ୍ତ କିନ୍ତୁ ମୁଁ ସେକ୍ରେଟେରୀ ଥିବା ପର୍ଯ୍ୟନ୍ତ ମୁଁ ଯାହା ନିଷ୍ପତ୍ତି କରିବି ତାହା ହିଁ ଚୂଡ଼ାନ୍ତ । କାରଣ ଏ ସବୁଥିପାଇଁ ମୁଁ ହିଁ ଉତ୍ତରଦାୟୀ, ତମେ ନୁହଁ । ଏଇ ପର୍ଯ୍ୟନ୍ତ ହେଉଛି ତାଙ୍କର ସବୁଠାରୁ ବଡ଼ କ୍ରୋଧର ପ୍ରକାଶ । ସେ ଖୁବ୍ ଜୋରରେ ହସନ୍ତି ମଧ୍ୟ ନାହିଁ । ଏକ ମ୍ଳାନ ହସର ରେଖା ତାଙ୍କ ମୁହଁରେ ଉକୁଟି ଲିଭିଗଲା ଏବଂ ମୁଖମଣ୍ଡଳ ଗମ୍ଭୀର ହୋଇଗଲା । ''ଦେଖୁଚି ଆପଣଙ୍କର ଏଇ କାମ ନ ସରିଲା ପର୍ଯ୍ୟନ୍ତ ଆପଣ ମୋତେ ଆପଣଙ୍କର ସ୍ଥାନରୁ କାଣିଚାଏ ଦେବେନାହିଁ ।'' ପାସପୋର୍ଟର ପୃଷ୍ଠାରେ ସେ ହାତରେ ଲେଖିଦେଲେ Endorse to China, Vietnam and other countries of Asia ଏବଂ ଲେଖିଲେ ପାସପୋର୍ଟର ସମୟକାଳ ନର୍ମାଲ ବା ସାଧାରଣ ପାସପୋର୍ଟ ପରି ପାଞ୍ଚବର୍ଷ ହେବ ।

ତା' ପରେ ସେ କହିଲେ ବିଧାନବାବୁ ଭାରତର ଗୋଟିଏ ରାଜ୍ୟ ପଶ୍ଚିମବଙ୍ଗର ଶକ୍ତିଶାଳୀ ମୁଖ୍ୟମନ୍ତ୍ରୀ କିନ୍ତୁ ମୁଁ ଭାରତ ସରକାରଙ୍କର ପ୍ରତିନିଧି ଏବଂ ଭାରତର ରାଷ୍ଟ୍ରପତିଙ୍କର ମୁଁ ପ୍ରତିନିଧି ।

Digitized by srujan ka@gmail.com

ଯଥା ସମୟରେ ଏହା ବିଧାନବାବୁଙ୍କ ଦୃଷ୍ଟିକୁ ଅଣାଯାଇଥିଲା କିନ୍ତୁ ସେ କିଛି ପଦକ୍ଷେପ ନେବା ଉଚିତ ମନେକଲେ ନାହିଁ । ଜନ୍ମଦିନ ହିଁ ତାଙ୍କର ମୃତ୍ୟୁ ହୋଇଥିଲା । ଏଭଳି ଭାଗ୍ୟ ଖୁବ୍ କମ ଲୋକଙ୍କର ଜୀବନରେ ଘଟେ । ଗୌତମ ବୁଦ୍ଧଙ୍କର ଏହିପରି ହୋଇଥିଲା ବୋଲି କାହାଣୀ ଅଛି । ଐତିହାସିକ ଦୃଷ୍ଟିରୁ ଅବଶ୍ୟ ତାହାର ସତ୍ୟତା ପ୍ରମାଣିତ ହୋଇନାହିଁ ।

ଆଗରୁ କହିଚି ଯେ ମୁଁ ଅଙ୍କରେ ଅତ୍ୟନ୍ତ ଦୁର୍ବଳ । ଥରେ ୧୯୬୦ ମସିହା ହେବ କି କଣ, ମୋର ଅଧ୍ୟାପକ ଡକ୍ଟର ତିବିକ୍ରମ ପତିଙ୍କ ସହିତ ଆଳାପ ହେଉଥିଲା ଆଲାହାବାଦ ସହରର କଟରା ନାମକ ସ୍ଥାନରେ ଏକ ଚାହା ଦୋକାନରେ । ତିବିକ୍ରମ ବାବୁ ଜଣେ କଠୋର ମାର୍କ୍ସବାଦୀ ଏବଂ ପଣ୍ଡିତ ବ୍ୟକ୍ତି । ଜୀବନରେ ବହୁ ବିଭାବକୁ କେବଳ ସେ ସ୍ପର୍ଶ କରି ନାହାନ୍ତି ସବୁଥିରେ ପାଣ୍ଡିତ୍ୟ ମଧ ଲାଭ କରିଛନ୍ତି । ସାହିତ୍ୟଠାରୁ ଦର୍ଶନ, ଅଙ୍କଠାରୁ ବିଜ୍ଞାନ, ଜୀବନରେ କୌଣସି ବିଭାବକୁ ସେ ବାଦ ଦେଇ ନାହାନ୍ତି । ତାଙ୍କୁ ଅନ୍ୟମାନେ ସମ୍ମାନ ଦେଖାନ୍ତି ଯେପରି ଭୟ ବି କରନ୍ତି ସେପରି । ତାଙ୍କର ପାଣ୍ଡିତ୍ୟ ଜନିତ 'ପାଗଳାମୀ' ଯୋଗୁଁ ବହୁତ ଗଳ୍ପ ତାଙ୍କ ନାମରେ ପ୍ରଚାରିତ ସେତେବେଳକୁ ।

ମେଡିଓକ୍ରିଟି (mediocrity)କୁ ସେ ଆଦୌ ସହ୍ୟକରି ପାରନ୍ତି ନାହିଁ । ମୁହେଁ ମୁହେଁ କହନ୍ତି ବେଶ୍ ନିଷ୍ଠୁର ସତ୍ୟ । ଥରେ ଏକ ବହି ଦୋକାନରେ ସେ, ମୁଁ ଏବଂ ଜଣେ ଅଧ୍ୟାପକ ବହି ଦେଖୁଥିଲୁ । ହଠାତ୍ ସେ ଅଧ୍ୟାପକ ତିବିକ୍ରମ ବାବୁଙ୍କୁ କହିଲେ ଦେଖନ୍ତୁ ତ ଡକ୍ଟର ପତି, ଏଇ ବାକ୍ୟଟା କେତେ ସୁନ୍ଦର । ବାକ୍ୟଟା ଥିଲା "Democracy without education is hypocrisy without limitation." ହସର ଏକ ମ୍ଳାନ ରେଖା ଉକୁଟି ଗଲା ଡକ୍ଟର ପତିଙ୍କ ମୁହଁ ଉପରେ । ସେ କିଛି କହିଲେ ନାହିଁ । ଅଧ୍ୟାପକ ସେ ବାକ୍ୟଟିକୁ ଦୋହରାଇ ଦୋହରାଇ ମୁଖସ୍ଥ କଲାପରି ବିଦାୟ ନେଲେ । ଗଲାପରେ ଡକ୍ଟର ପତି କହିଲେ ଦେଖନ୍ତୁ ଏଇ ଅଧ୍ୟାପକଙ୍କୁ । ସେ ଏଇ ବାକ୍ୟଟିକୁ ପଢ଼ିଲେ ଏବଂ ମୁଖସ୍ଥ କଲେ । ସେ ଦିନଯାକ ଆଜି ଯେଉଁଠି ପାଇବେ ତାକୁ ସ୍ଥାନ କାଳ ପାତ୍ର ନିର୍ବିଶେଷରେ ପ୍ରୟୋଗ କରିବେ ଏବଂ ସଂଧ୍ୟା ବେଳକୁ ତାଙ୍କର ମନେ ହେବ ଯେ ସେ ହିଁ ଏଇ ବାକ୍ୟର ସୃଷ୍ଟି କର୍ତ୍ତା । ଏହା ଯେ ଏକ ଉଦ୍ଧୃତ ବାକ୍ୟ ତାହା ସେ ଜାଣିଶୁଣି ଭୁଲିଯିବେ । ଏହାକୁ ହିଁ ଇଂରାଜୀରେ କୁହନ୍ତି ପାଲିଆଗ୍ରିଜମ୍ । ସତକୁ ସତ ସେଇ ସଂଧ୍ୟାରେ ଏକ ଅଧ୍ୟାପକଙ୍କର ବିଦାୟକାଳୀନ ସଭାରେ ଉକ୍ତ ଅଧ୍ୟାପକ ସେଇ ବାକ୍ୟକୁ ନିଜସ୍ୱ ଭାବରେ ବ୍ୟବହାର କରି ଭାଷଣ ଦେଲେ ଏବଂ ତ୍ରିବିକ୍ରମ ବାବୁ ତା'ର ଉତ୍ତର ମଧ ଯଥାନୁରୂପ ଦେଲେ ।

ଶ୍ରୀ ମନମୋହନ ମିଶ୍ର, ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ ପ୍ରଭୃତିଙ୍କର ସ୍ମରଣ ଶକ୍ତି ଅଗାଧ । ସେମାନେ ବହୁ ବିଷୟରେ ଆପଣାର ଅସୀମ ସ୍ମରଣ ଶକ୍ତିର ପରିଚୟ ଦେଇଛନ୍ତି । କିନ୍ତୁ ମୋ ମତରେ ଡକ୍ଟର ତ୍ରିବିକ୍ରମ ପତି ହେଉଛନ୍ତି ସେଇଭଳି ଜଣେ ବ୍ୟକ୍ତି ଯେ ବହୁ ବିଷୟରେ ଆପଣାର ଅଗାଧ ପାଣ୍ଡିତ୍ୟର ନିଦର୍ଶନ ଦେଇ ପାରିଛନ୍ତି । ସେ ଓଡ଼ିଶାର ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ପଦରୁ ବିଦାୟ ଦେଇ ବର୍ତ୍ତମାନ ଆଲାହାବାଦରେ ରହୁଛନ୍ତି, କିନ୍ତୁ ସେ ପ୍ରତିଭାକୁ ଏ ଦେଶ

Digitized by srujan ka@gmail.com

ଉପଯୁକ୍ତ ବ୍ୟବହାର ବା ଉପଯୋଗ କରି ପାରିଲା କି ନାହିଁ ସେ ସଂପର୍କରେ ମୋର ସନ୍ଦେହ ରହିଛି ।

ତ୍ରିବିକ୍ରମ ବାବୁ ମାର୍କ୍ସିଷ୍ଟ । ଆପଣ ତା' ହେଲେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ ନାହିଁ କାହିଁକି ? ମୁଁ ଯେହେତୁ ମାର୍କ୍ସିଷ୍ଟ, ସେଇ କାରଣରୁ ହେଲି ନାହିଁ । ମାର୍କ୍ସିଷ୍ଟମାନେ ଅବଜେକ୍ଟିଭ୍ (Objective) ହେବା ଉଚିତ । କୌଣସି ପାର୍ଟିର ସଭ୍ୟ ହେଲେ ଆପଣ ପାର୍ଟିଜାନ ହୋଇଯିବେ । ଆପଣ ଆଉ ଅବଜେକ୍ଟିଭ ହେବେ କେମିତି ?

ଅଲାହାବାଦ ସହର । ଡିସେମ୍ବର ମାସ, ହାଡ଼ଭଙ୍ଗା ଶୀତ । ଅଧ୍ୟାପକ ଡକ୍ଟର ମନମୋହନ ଲାଲୋରିଆଙ୍କ ଘରେ ମୁଁ ଅତିଥି । ରାତି ଅଛି । ପାହାନ୍ତିଆ ହୋଇ ନାହିଁ । ହଠାତ୍ କବାଟରେ ଠକ୍ ଠକ୍ ଶବ୍ଦ ଶୁଣି ମୋର ନିଦ ଭାଙ୍ଗିଗଲା । ଏତେ ପାହାନ୍ତାରୁ କିଏ ? କବାଟ ଖୋଲି ଦେଖେ ଡକ୍ଟର ତ୍ରିବିକ୍ରମ ପତି ଓଭର କୋଟ ପିନ୍ଧି ଛିଡ଼ା ହୋଇଛନ୍ତି । ଆଖିରେ ତଥାପି ନିଦ ଥିଲା । ସେ ସୁପ୍ରଭାତ ଜଣାଇ କହିଲେ ଆସନ୍ତୁ ପ୍ରାତଃ ଭ୍ରମଣରେ ଯିବା । ପ୍ରାତଃ ଭ୍ରମଣ ? ବାହାରକୁ ଅନେଇଲି । କଜ୍ଜ୍ୱଳ ନିଭ ରାତ୍ରିର ନିକଷରେ ଉଷାରୂପସୀର ଉଜ୍ଜ୍ୱଳ ହିମରେଖା ଦେଖା ହେବାପାଇଁ ତଥାପି ବହୁତ ଡେରି ଅଛି । ଭିତରକୁ ତାଙ୍କୁ ଡାକିନେଇ ପଚାରିଲି, ଡକ୍ଟର ପତି, ବସନ୍ତୁ । ଏଇଟା କଣ ପ୍ରାତଃ ଭ୍ରମଣର ସମୟ । ଏକ ବିରାଟ ହାସ୍ୟରେ ଘର କମ୍ପି ଉଠିଲା । ସମୟ, ସେଇଟା କଣ ? ଆପଣଙ୍କର ଯଦି ସ୍ମୃତି (memory) ଅଛି ତା ହେଲେ ସିନା ସମୟ ପାଖରେ ଆପଣ ବନ୍ଧା ପଡ଼ିବେ ? କିନ୍ତୁ ସ୍ମୃତି ନ ଥିଲେ ?

ତ୍ରିବିକ୍ରମ ବାବୁ କହିଚାଲିଲେ ସମୟର ଆପେକ୍ଷିକତା ବିଷୟରେ । ରାତି ପାହିଗଲା । ଚାହା ଦୁଇକପ୍ ଆସିଗଲା । ଡକ୍ଟର ଲାଲୋରିଆ ମଧ୍ୟ ଆସି ଯୋଗଦେଲେ । ଆମେ ବାହାରିଲୁ ପ୍ରାତଃ ଭ୍ରମଣରେ । ମନେପଡ଼ିଲା ଆଲବର୍ଟ ଆଇନ୍‌ଷ୍ଟାଇନଙ୍କ କଥା । ଥରେ ସେ ପ୍ରାତଃ ଭ୍ରମଣକୁ ଯାଇ ଆଉ ଫେରିଲେ ନାହିଁ । କୁଆଡ଼େ ଗଲେ ? ଖୋଜା ଚାଲିଲା । କିନ୍ତୁ କିଛି ଖବର ମିଳିଲା ନାହିଁ । ଖବରଟା ଚାରିଆଡ଼େ ବ୍ୟାପିଗଲା । ଆମେରିକାର ଜଳ, ସ୍ଥଳ, ଆକାଶ ବାହିନୀକୁ ସତର୍କ କରି ଦିଆଗଲା । ସବୁ ଏୟାର ପୋର୍ଟ ଅବରୋଧ ହୋଇଗଲା । ଆଇନଷ୍ଟାଇନ ଗଲେ କୁଆଡ଼େ ? ବେଳଗଡ଼ି ଅପରାହ୍ନ ହୋଇଗଲା । ତାଙ୍କୁ କିଏ ହରଣଚାଲ କରିନେଲା କି ଆଉ ? ଖୋଜି ଖୋଜି ଦେଖାଗଲା ଏକ ଅଖ୍ୟାତ ଗଳି ଭିତରେ ଆଇନ୍‌ଷ୍ଟାଇନ୍ ପିଲାଙ୍କ ସାଙ୍ଗରେ ବସି ଗୋଲି ଖେଳୁଛନ୍ତି । ଆଇନ୍‌ଷ୍ଟାଇନଙ୍କ ସ୍ତ୍ରୀ ଯାଇ ତାଙ୍କୁ ପଚାରିଲେ କ'ଣ ଜଳଖିଆ ଖାଇବା ସମୟ ହୋଇନି ନା କଣ ? ଆଇନ୍‌ଷ୍ଟାଇନ ମୁଣ୍ଡଟେକି ଉତ୍ତର ଦେଲେ, ସମୟ, ସେଇଟା କଣ ? ମୁଁ ତ ତାକୁ ଇ ଖୋଜି ଚାଲିଛି । ସେଦିନ ତ୍ରିବିକ୍ରମ ବାବୁଙ୍କୁ ଦେଖି ସେହି କଥା ମନେପଡ଼ିଲା ।

ମନେପଡ଼ିଲା ନୋବେଲ୍ ପୁରସ୍କାର ବିଜେତା ଅବଦୁଲ କାଲାମଙ୍କ କଥା । ସେ ନୋବେଲ ପୁରସ୍କାର ପାଇ ସାରିବା ପରେ ଆସିଥିଲେ କଲିକତା । ଦେଖାକଲେ ତାଙ୍କର ଗଣିତ ଶିକ୍ଷକଙ୍କୁ ସେଦନି । ତାଙ୍କର ପାଦତଳେ ସେ ଆପଣାର ନୋବେଲ ପଦକ ଏବଂ ସାର୍ଟିଫିକେଟଟି ରଖିଦେଇ

Digitized by srujan ka@gmail.com

ମୁଣ୍ଡିଆଟିଏ ମାରିଲେ । କହିଲେ ସାର୍ ମୁଁ ସତ କହୁଛି, ଆପଣ ଲାହୋରରେ ମୋତେ ଯେତିକି ଗଣିତ ପଢ଼େଇଥିଲେ ସେତିକି ହିଁ ମୋର ପୁଞ୍ଜି । ମୁଁ ଆଉ କିଛି ଅଧିକା ପଢ଼ି ନାହିଁ ।

ଅବଦୁଲ କାଲାମ ସେତେବେଳେ ଥାଆନ୍ତି ଇଟାଲୀରେ । କୌଣସି ଏକ ଆନ୍ତର୍ଜାତିକ ସେମିନାରରେ ଯୋଗଦେବା ପାଇଁ ତାଙ୍କୁ ନିମନ୍ତ୍ରଣ କରି ଚିଠି ଲେଖିଥିଲି । ସେ ଉତ୍ତରରେ ଲେଖିଥିଲେ ଯେ ଓଡ଼ିଶାରେ ସେମିନାର ହେବ । କିନ୍ତୁ ଆପଣ କିପରି ମୋର ସହଯୋଗୀ ଏବଂ ମୋ ଠାରୁ ବଳି ବୈଜ୍ଞାନିକଙ୍କୁ ଡାକି ନାହାନ୍ତି । ଅଥଚ ସେ ହେଉଛନ୍ତି ଓଡ଼ିଶାର ଲୋକ । ତାଙ୍କ ନାଁ ଯୋଗେଶ ଚନ୍ଦ୍ର ପତି । ମୁଁ ସିନା ନୋବେଲ ପୁରସ୍କାର ପାଇଛି କିନ୍ତୁ ସେ ମୋଠାରୁ ବଡ଼ ବୈଜ୍ଞାନିକ । ଯୋଗେଶ ଚନ୍ଦ୍ର ରେଭେନ୍ସା କଲେଜର ଛାତ୍ର । ମୋ ସ୍ତ୍ରୀ ଡକ୍ଟର କମଳ କୁମାରୀ ପଟ୍ଟନାୟକଙ୍କର ସେ ସହପାଠୀ । ଘର ବାରିପଦା । ଓଡ଼ିଆ ପୁଅର ଏଇ ଖ୍ୟାତିରେ ବୁକୁ ଉଲୁସି ଉଠିଲା । ଯୋଗେଶ ଚନ୍ଦ୍ର ଏ ପର୍ଯ୍ୟନ୍ତ ନୋବେଲ ପୁରସ୍କାର ପାଇ ନାହାନ୍ତି । କିନ୍ତୁ ସବୁ ବିଶିଷ୍ଟ ବ୍ୟକ୍ତି କଣ ନୋବେଲ ପ୍ରାଇଜ ପାଇଛନ୍ତି ? ଆଉ ଅନେକ କଣ ନୋବେଲ ପ୍ରାଇଜର ଊର୍ଦ୍ଧ୍ୱରେ ନୁହନ୍ତି ? ଭାରତବର୍ଷରେ ମହାତ୍ମାଗାନ୍ଧୀ, ଜବାହରଲାଲ ନେହେରୁ, ଋଷିଆରେ ଟଲଷ୍ଟୟ କଣ ନୋବେଲ ପ୍ରାଇଜର ଊର୍ଦ୍ଧ୍ୱରେ ନୁହନ୍ତି ? ଏ ତାଲିକା ତ ସରିବ ନାହିଁ ।

ଆମ ଇଂରାଜୀ ଅଧାପକ ସର୍ବେଶ୍ୱର ଦାସ ସବୁବେଳେ କହନ୍ତି– ପର୍ଲବକଙ୍କର 'ଗୁଡ ଆର୍ଥ' ଯଦି ନୋବେଲ ପ୍ରାଇଜ ପାଇବା ପାଇଁ ଯୋଗ୍ୟ ତା ହେଲେ ଗୋପୀନାଥ ମହାନ୍ତିଙ୍କର 'ପରଜା' ଉପନ୍ୟାସ କେଉଁ ଗୁଣରେ ଯୋଗ୍ୟ ନୁହେଁ ନୋବେଲ ପ୍ରାଇଜ ପାଇବା ପାଇଁ ।

ତ୍ରିବିକ୍ରମ ବାବୁ କହି ଚାଲିଥିଲେ ଯେ ସେ ଅଙ୍କ କାହିଁକି ପଢ଼ିଲେ ବୋଲି । ମୁଁ ଚୁପଚାପ ଶୁଣୁଥିଲି । ମୁଣ୍ଡ ହଲାଇବାକୁ ମଧ ଭୟ ଲାଗୁଥିଲା । ଆପଣ କଣ କିଛି କହୁ ନାହାନ୍ତି ? ମୋ ଉତ୍ତର ଦେବା ପାଇଁ କିଛି ନାହିଁ । କାରଣ ଅଙ୍କରେ ମୁଁ କୌଣସି ଦିନ ତିରିଶରୁ ବୋଶୀ ରଖି ନାହିଁ । ଗଣିତ ଶାସ୍ତ୍ରର ଅଧାପକ ଯଦି ଆପଣାକୁ ମୂର୍ଖ ବୋଲି ବିଚାରି ଗଣିତ ପଢ଼ିବା ପାଇଁ ସ୍ଥିର କଲେ, ତାହେଲେ ମୋ ସ୍ଥାନ କେଉଁଠି ?

ତିବିକ୍ରମ ବାବୁଙ୍କର ପୁଅ କିମ୍ବା ଝିଅଟିଏ ହୋଇଥାଏ । ଠିକ୍ ମନେପଡୁନି । ପିଲାଟିକୁ ଗେହ୍ଲେଇ କରି ସେ କହିବାକୁ ଲାଗିଲେ– ତୁ ଯଦି ବାପା ଜେଜେବାପଙ୍କ ଭଳି ବୁଦ୍ଧିମାନ ହୋଇଥିବୁ ତାହାହେଲେ ଅଧାପକ ହେବୁ । ଯଦି ମୂର୍ଖ ହୋଇ ଜନ୍ମ ହୋଇଥିବୁ ତା'ହେଲେ ଆଇ.ଏ.ଏସ୍. ହେବୁ । ଝିଅ କୁମୁଦିନୀ ପତି ବର୍ତ୍ତମାନ ଇଣ୍ଡିଆନ ପିପୁଲସ୍ ଫ୍ରଣ୍ଟର ନେତ୍ରୀ ।

ଆମ ଗାଆଁ ପାଖରେ ଲିଙ୍ଗରା ନଈ କୂଳରେ ଗାଆଁଟିଏ, ନାଁ କରଣ୍ଡାପାଳ । କବି ରାଧାମୋହନ ଗଡ଼ନାୟକଙ୍କୁ ଜନ୍ମ ଦେଇ ସେ ଗାଆଁ ପ୍ରସିଦ୍ଧିଲାଭ କରିଛି । ଓଡ଼ିଆ ସାହିତ୍ୟର ଛନ୍ଦ ସମ୍ରାଟ ରାଧାମୋହନ ଗଡ଼ନାୟକଙ୍କର ଭାଷାରେ ଓଡ଼ିଆ ପଦ୍ୟ ସାହିତ୍ୟ ଛନ୍ଦ ମାନିଲା । କିନ୍ତୁ ମାନିଲା ନାହିଁ ଲିଙ୍ଗରାର ସ୍ରୋତ । ଲିଙ୍ଗରା ନଈର ପ୍ଳାବନରେ କରଣ୍ଡାପାଳ ଗାଁବାଲାଙ୍କୁ

Digitized by srujan ka@gmail.com

ଅନ୍ୟ ଜାଗାକୁ ଯିବାକୁ ହେଲା । ଯେଉଁମାନେ ଉଠିଗଲେ ସେମାନେ ବୁଦ୍ଧିମାନର କାମ କଲେ । ଆଉ ଯେଉଁମାନେ ରହିଗଲେ ସେମାନେ ସେଇ ଭିଟାମାଟିକୁ ଆବୋରି ରହିବାକୁ ବାଧ ହେଲେ । ଘର ସେମିତି ରହିଲା । ତା' ଫଳରେ ୧୯୯୩ ମସିହା ମାର୍ଚ୍ଚ ମାସରେ ଏକ ଘୂର୍ଣ୍ଣିବାତ୍ୟାରେ ଆମର ସେଇ ଘରର କାନ୍ଥ ଭାଙ୍ଗି ମୋର ବଡ଼ବାପା ଝିଅ ଭଉଣୀ ସାବିତ୍ରୀ ଅପାର ପରଲୋକ ହୋଇଗଲା । ବୟସ ହୋଇଥିଲା ଅଶୀରୁ ଉର୍ଦ୍ଧ୍ୱ । ବୈଧବ୍ୟ ଭୋଗୁଥିଲା ଅନେକ କାଳ ଧରି । ପିଲାମାନେ ପାରିଗଲେଣି । କିନ୍ତୁ ଘରର କାନ୍ଥ ଭାଙ୍ଗିପଡ଼ି ମୃତ୍ୟୁ ହେବା ଏକ କରୁଣ ଘଟଣା । ଇଂଜିନିଅର ଭାଇର ସ୍ତ୍ରୀ ଯେଉଁସବୁ ଜିନିଷ ଆଣିଥିଲା ସେ ସବୁ ଘର ଭିତରେ ରଖିବା ପାଇଁ ବହୁ ସମୟ ଲାଗିଥିଲା । ମୁଁ ଦେଖିଲା ସମୟକୁ ସବୁ ଘର ଭିତରେ ଯେଉଁ ସବୁ ବିରାଟ ବିରାଟ ଖଟ, ଚୌକିସବୁ ପଡ଼ିଥିଲା ସେ ସବୁକୁ ଘରବାହାରକୁ କବାଟ ଭିତର ଦେଇ ଆଣିବା ସମ୍ଭବ ନ ଥିଲା । ବଢ଼େଇ ସେସବୁ ଘର ଭିତରେ ହିଁ ଫିଟ୍ କରିଥିଲେ । କିନ୍ତୁ ହଠାତ୍ ଲକ୍ଷ୍ମୀଛଡ଼ା ଘରର ସବୁଗୁଣ ବହନ କରି ଦିନେ ସେସବୁ କୁଆଡ଼େ ଉଭେଇଗଲା । ଲକ୍ଷ୍ମୀ ଇମିତି ଛାଡ଼ନ୍ତି ! ସୁନ୍ଦରୀ ସ୍ତ୍ରୀକୁ ଘରେ ଛାଡ଼ି ସ୍ୱାମୀ ଗଲେ ସୋନପୁରକୁ ରାଜାଙ୍କର ଇଂଜିନିଅର ହୋଇ । ପ୍ରଚୁର ଅର୍ଥ ପାଉଥିଲେ ଏବଂ ପଠାଉଥିଲେ ମଧ୍ୟ । ଏଇ ପଇସା କାଳେ ଆସିବ ନାହିଁ ସେଇ ଲୋଭରେ ନାନା ଆଳରେ ସ୍ତ୍ରୀଙ୍କୁ ଛଡ଼ାଗଲା ନାହିଁ ସ୍ୱାମୀ ପାଖକୁ । ସ୍ୱାମୀଙ୍କର ସେଇ ସୋନପୁରରେ ହିଁ ପରଲୋକ ହୋଇଗଲା । ସୋନପୁରରେ କୁଆଡ଼େ ସବୁ ତଣ୍ଟେଇ ବା ଡାହାଣୀ ଅଛନ୍ତି । ସେମାନେ ଦେଖିବାକୁ କାଳେ ଖୁବ୍ ସୁନ୍ଦର । ସେଇମାନେ ତାଙ୍କୁ କୁଆଡ଼େ ଗୁଣିକରି ରଖିଦେଲେ ଏବଂ ପରେ ତଣ୍ଟେଇମାନେ ତାଙ୍କର ରକ୍ତ ପିଇ ମାରିଦେଲେ, ଏଇପରି ଗଳ୍ପ ପ୍ରଚାରିତ ହେଲା । ଏଗୁଡ଼ାକ ମୋର ମନେହୁଏ ସଂପୂର୍ଣ୍ଣ ମିଛ । ସୋନପୁର ସୁନ୍ଦରୀ ରମଣୀମାନଙ୍କର ରାଜ୍ୟ । ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳକୁ ମୁଁ ଯାଇଛି । କିନ୍ତୁ ସୋନପୁର-ସମ୍ବଲପୁର ବେଲ୍ଟରେ ମନଲୋଭା ସୁନ୍ଦରୀ ପରି ଅନ୍ୟ କେଉଁଠି ଦେଖିନାହିଁ । ଦୁଧ ଅଳତା ରଂଗ ଦେହର । ପାଣି ଖସିପଡ଼ିବ ଦେହରୁ । ତନୁ ପାତଳୀ ନୁହଁନ୍ତି କିନ୍ତୁ ସୌଷ୍ଠବ ଚେହେରା । ସମ୍ବଲପୁରୀ କିସ୍ତା ଶାଢ଼ୀ ଦେହରେ । ସୂର୍ଯ୍ୟସ୍ନାତା ଝିଅଟିକୁ ଦେଖିଲେ ପରୀ ଭଳି ମନେହୁଏ ।

ପରେ ଅକ୍ଷୟ ମହାନ୍ତିଙ୍କ ଗୀତ ଶୁଣିଛି ..........

''ସମ୍ବଲପୁରର ନଈରେ ଆହା ସିନାନ କରେ ନାନୀ,
ଗାଧୁଆ ତୁଠେ ଦିଶୁଛି ତାର ନାଲି ପଣତ କାନି ।''

*"Down the Amazon" ନାମକ ଗୀତର ଛାୟାରେ ଏହା ଲେଖାହୋଇଛି ।*

ମୋର ମନେହୁଏ ଯୁବକ ଇଂଜିନିଅର କେତେଦିନ ଅପେକ୍ଷା କରନ୍ତେ ଆପଣାର ସ୍ତ୍ରୀକୁ ? ସ୍ତ୍ରୀ ତ ଆସିପାରିବେ ନାହିଁ ଜାଣିଲା ପରେ ତାଙ୍କର କଣ ପ୍ରତିକ୍ରିୟା ହୋଇଥିବ କିଏ କହିବ ? ସେତେବେଳେ ଆପଣା ସ୍ତ୍ରୀକୁ ଯୁଗ୍ମ ପରିବାର ଭିତରୁ ନେଇଯିବା ଆଜିକାଲି ପରି ସହଜ ନ

Digitized by srujan ka@gmail.com

ଥିଲା । ଇଂଜିନିଅର ରହିଗଲେ ସେ ଆଡ଼େ । ଏଣେ ପ୍ରୋଷିତଭର୍ତ୍ତୃକା ସୁନ୍ଦରୀ ନାରୀ ସ୍ୱାମୀଙ୍କ ଉଦ୍ଦେଶ୍ୟରେ ଲୁହ ଢାଳି ଢାଳି ଆପଣାକୁ କ୍ଷୟ କରିବାକୁ ଲାଗିଲେ । ମୋର ବାପା ଏବଂ ଦାଦାଙ୍କୁ ତାଙ୍କର ଦାଦା ଏବଂ ଖୁଡ଼ୀ ଖୁବ୍ ଭଲ ପାଉଥିଲେ । ଦାଦା ଖୁଡ଼ୀଙ୍କ ବିରୁଦ୍ଧରେ କେହି କିଛି କହିଲେ ତାହା ବାପା ବା ଦାଦାଙ୍କର ସହ୍ୟ ହେଉ ନ ଥିଲା । ସେମାନେ ସ୍ମରଣ କରୁଥିଲେ ସାଶ୍ରୁଳ ନୟନରେ ତାଙ୍କର ଖୁଡ଼ୀଙ୍କ କଥା । ବାପା ଓ ଦାଦା ଉଭୟ ମାଟ୍ରିକ୍ ପାଶ କରିଥିଲେ ପ୍ରଥମ ଶ୍ରେଣୀରେ । ବାପା ମାଟ୍ରିକ ପଢ଼ିବା ବର୍ଷ ହେଉଛି କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଶାରେ ଶେଷ ବର୍ଷ । ତା'ପରେ ଓଡ଼ିଶାର ସ୍କୁଲ ସବୁ ଚାଲିଗଲା ପାଟନା ବିଶ୍ୱବିଦ୍ୟାଳୟ ଅଧୀନକୁ । ଦାଦା ପାଟନା ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରି ମାଟ୍ରିକ ପାଶ୍ କରିଥିଲେ । ସେମାନେ ମାଟ୍ରିକ ପାଶ୍ କରି ସାରିଲା ପରେ (ବା ଦାଦା ମାଟ୍ରିକ ପାଶ୍ କରିବାର ଅବ୍ୟବହିତ ପୂର୍ବରୁ) ଦୁହେଁ ରିଲିଫ୍ ଅଫିସରେ ଅସ୍ଥାୟୀ କାମ କରୁଥିଲେ । ସେ ବର୍ଷ ଅନୁଗୋଳ ଜିଲ୍ଲା (ସେତେବେଳେ ଅନୁଗୋଳ ଜିଲ୍ଲାରେ କନ୍ଧମାଳ ଜିଲ୍ଲା ଅନ୍ତର୍ଭୁକ୍ତ ଥିଲା) ରେ ଦୁର୍ଭିକ୍ଷ ପଡ଼ିଥିଲା । ସେ କେଉଁ ଦୁର୍ଭିକ୍ଷ ମୁଁ କହିପାରିବି ନାହିଁ । ବାପା ଓ ଦାଦା ଚାକିରି କରନ୍ତି, ଦରମା ମାସକୁ କୋଡ଼ିଏ ଟଙ୍କା । କୋଡ଼ିଏ ଟଙ୍କା ସେତେବେଳେ ବହୁତ ପଇସା । ବାପା ଓ ଦାଦାଙ୍କର ଆୟରେ ସମଗ୍ର ପରିବାର ଚଳେ । କାରଣ ଏକ କୃଷି ଭିତ୍ତିକ ପରିବାରରେ ଥରେ ଦୁର୍ଭିକ୍ଷ ପଡ଼ିଲେ ଯାହା ଅବସ୍ଥା ହୁଏ । ପୁଣି ସେତେବେଳେ ପରିବାରରେ ପ୍ରାୟ ପଚାଶ ଜଣ ବ୍ୟକ୍ତି । ସେ ଯାହାହେଉ ବାପା ଓ ଦାଦା ଅନୁଗୋଳ ଟାଉନରେ କାମ କରି ଘରକୁ ଫେରିଲା ବେଳକୁ ପ୍ରାୟ ଅଧାରାତି । ସମସ୍ତେ ଖାଇପିଇ ଆରାମରେ ଶୋଇ ଯାଇ ଥାଆନ୍ତି । କେବଳ ଲଣ୍ଠନଟିଏ ଜାଳି ଦୁଆର ମୁହଁରେ ଅପେକ୍ଷା କରିଥାନ୍ତି ଖୁଡ଼ୀ । ଦି' ପୁତୁରା ଗଲେ ସେମାନଙ୍କ ପାଇଁ ଖାଇବାକୁ ଦେବେ ଏବଂ ପରେ ନିଜେ ଖାଇବେ । ଆଖିରୁ ତାଙ୍କର ଧାରଧାର ଲୁହ ବୋହି ଚାଲିଥାଏ । ଏ ଲୁହ ପୁତୁରାମାନଙ୍କ ପାଇଁ ଲୁହ ନା ଆପଣାର ଅଭିଶପ୍ତ ଜୀବନ ପାଇଁ ଲୁହ ! କିଏ କହିବ ? ମୋର କାହିଁକି ମନେ ହୋଇଛି ଯେ ସେଇ ଲୁହର ଧାର ସେଇ ଭିଟାମାଟିକୁ ଅଭିଶପ୍ତ କରି ଦେଇଛି । ତା'ପରେ ଆଉ କିଛି ଉଧେଇ ନାହିଁ ।

ଜେଜେବାପା ସତ୍ୟବାଦୀ ପଟ୍ଟନାୟକ ଥିଲେ ସବା ବଡ଼ଭାଇ । ବଂଚିଥିଲେ ୧୨୧ ବର୍ଷ । ମୃତ୍ୟୁ ହେଲା ୧୯୪୩ ମସିହାରେ । ମୃତ୍ୟୁ ପର୍ଯ୍ୟନ୍ତ ସେ କାର୍ଯ୍ୟକ୍ଷମ ଥିଲେ । ବେମାର ତାଙ୍କୁ ଛୁଇଁ ନ ଥିଲା । ମୋ ଜେଜେମାଙ୍କର ମଧ ପ୍ରାୟ ସେଇ ୧୨୦/୧୨୧ ବର୍ଷ ବୟସରେ ପରଲୋକ ହୁଏ ୧୯୫୧ ମସିହାରେ । ମୋ ବାପା ଦାଦା ୨୧ ଭାଇ ଭଉଣୀ । ମୁଁ ମାତ୍ର ପାଞ୍ଚ ଜଣଙ୍କୁ ଦେଖିଛି । ବାପା ବୋଧହୁଏ ଷଷ୍ଟଦଶ ସନ୍ତାନ । ସବା ସାନ ହେଉଛି ଝିଅ । ମୋ ଜେଜେବାପାଙ୍କ ପରଲୋକ ହେଲାବେଳକୁ ମଧ (୧୯୪୩) ତାଙ୍କର ଚାରିପୁଅ ଏବଂ ଗୋଟିଏ ଝିଅ ମାତ୍ର ବଂଚିଥିଲେ । ଯେଉଁମାନେ ମରିଯାଇଥିଲେ ସେମାନଙ୍କ ମଧରେ ଗୋଟିଏ ପୁଅ ଏବଂ

Digitized by srujan ka@gmail.com

ବାକିସବୁ ଝିଅବୋଲି ଶୁଣିଛି । ଜୀବନର କେତୋଟି ବର୍ଷକୁ ଛାଡ଼ିଦେଲେ ଆଉ ଅନୁଗୋଳ ସହିତ କିଛି ପ୍ରତ୍ୟକ୍ଷ ସଂପର୍କ ନ ଥିବାରୁ ପରିବାରର ଅଧିକାଂଶ ଶାଖା ପ୍ରଶାଖା ସହିତ ମୋର ସଂପର୍କ କ୍ଷୀଣ । ତେବେ ଦୁଇଟି ପିଉସୀଙ୍କର ପରିବାର ସହିତ ସଂପର୍କ ଅଦ୍ୟାପି ନିବିଡ଼ । ଜେଜେବାପା ଥିଲେ ଜଣେ ଅମିତବ୍ୟୟୀ । ମହାଖର୍ଚ୍ଚୀ ଏବଂ ସାଆନ୍ତିଆ ଲୋକ ଥିଲେ । ପିଲା ଜନ୍ମ କରିଛନ୍ତି କିନ୍ତୁ ସେମାନଙ୍କର ଶିକ୍ଷା ବା ସ୍ୱାସ୍ଥ୍ୟ ସଂପର୍କରେ କୌଣସି ଯତ୍ନ ନେଇ ନାହାନ୍ତି । ସେଇଯୋଗୁଁ ପୁଅମାନଙ୍କ ଭିତରୁ ଗୋଟିଏ ଏବଂ ଝିଅମାନଙ୍କ ଭିତରୁ ବେଶ୍ କେତୋଟିଙ୍କର ପରଲୋକ ହୋଇଯାଇଥିଲା ଅକାଳରେ । ମୋ ବାପା ଓ ଦାଦା ପାଠ ପଢ଼ିପାରିଥିଲେ ଆପଣାର ଦାଦାଙ୍କ ଯୋଗୁଁ । ତାଙ୍କର ଦୀର୍ଘ ପରମାୟୁ ସମସ୍ତଙ୍କ ପାଇଁ ଏକ ବିସ୍ମୟ ଥିଲା । ଗାଁର ସମସ୍ତଙ୍କର ସେ ''ଜେଜେ'' ଥିଲେ । ସେଇଯୋଗୁଁ ଅନେକ ସମୟରେ ମୋ ବୋଉ ବୟସର ସ୍ତ୍ରୀ ଲୋକମାନେ ମୋତେ ଦିଅର ଲେଖାରେ ଥଟ୍ଟା କରିବାର ଦେଖିଛି । ଉଠନ୍ତି ରାତି ଚାରିଟାରେ । ଏକ ବିରାଟ ହାତେ ଲମ୍ବା ଦାନ୍ତକାଠି ଧରି ଚାଲନ୍ତି ଆପଣାର ବିଲ ଦେଖି । ଖାଲି ପାଦ । ପ୍ରାୟ ଦଶ କିଲୋମିଟରରୁ ବେଶୀ ବାଟ ଚାଲି ଫେରିଲା ବେଳକୁ ଦାନ୍ତକାଠିଟାର ପ୍ରାୟ ଆଠଭାଗ ଚୋବାଇ ସାରିଥାନ୍ତି । ନଈ କୂଳରେ ଦାନ୍ତଘସି ଗାଧୋଇ ଘରକୁ ଫେରନ୍ତି । ଗାଈ ଦୁହାଁ ହେଉଥାଏ । ଅଧବାଲଟିଏ କଞ୍ଚା କ୍ଷୀରରେ ହୁଡୁମ୍ବ ପକାଇ ତାକୁ ପିଇ ଦିଅନ୍ତି । ତା'ପରେ ଚାଲିଲେ ବାରିକୁ । ହଳିଆମାନେ କାମ କରୁଥାନ୍ତି । ସେମାନଙ୍କ ସହିତ ମିଶି କୋଡ଼ି ବା ଶାବଳ ଧରି କାମ କରନ୍ତି ଛାଇ ଲେଉଟିଲା ପର୍ଯ୍ୟନ୍ତ । ଫେରନ୍ତି କୂଅ ମୂଳକୁ । ଦେହ କଳାକାଠ ପଡ଼ିଯାଇଥାଏ । ଦୁଇ ଗିନା ମାଲପା ଘସାଯାଏ ଦେହରେ । ନିଦା ବିଷ୍ଣୁ ପରି ପଦ୍ମାସନରେ ବସନ୍ତି କୂଅ ମୂଳରେ । ଦୁଇଜଣ ହଳିଆ ପାଣି ଢାଳନ୍ତି ଦେହର ରୁମ ଟାଙ୍କୁରି ଠିଆ ହେବା ପର୍ଯ୍ୟନ୍ତ । ପାଣି ଢଳା ବନ୍ଦ ହୁଏ । ଗାଧୋଇ ସାରି ଖାଆନ୍ତି ନାଲି ବଗଡ଼ା ଚାଉଳର ଭାତ, ଚୋପାଥିବା ଡାଲି, ଛୋଟମାଛରୁ କେଜିଏ ଖଣ୍ଡେ ଏବଂ ବାରିରୁ ସବୁଗଛରୁ ସଂଗୃହୀତ ହୋଇଥିବା ଶାଗରୁ ଗୋଟାଏ ତିନି ନମ୍ବରିଆ ଫୁଟବଲ ସାଇଜର ଟେଳାଏ ନିଶ୍ଚୟ ଥିବ ଅନ୍ୟସବୁ ତରକାରୀ ଛଡ଼ା । ଖାଇସାରି ଗୋଟାଏ ବିରାଟ ପାନ ଚୋବାନ୍ତି । ପାନ ସାଦା । କିନ୍ତୁ ବେଶ୍ ବଡ଼ ସାଇଜର ଗୁଆ, ବିଭିନ୍ନ ପ୍ରକାରର ସାଦା ମସଲା । ବୀରାସନରେ ବସି ସେତକ ଚୋବାଇ ମୁହଁ ଧୁଅନ୍ତି ଏବଂ ଠିକ୍ ଘଣ୍ଟାଏ ଶୁଅନ୍ତି ଡାହାଣ ପଟ କଡ଼ ମାଡ଼ି । ଉଠି ମୁହଁ ଧୋଇ ବେଲାଏ ନାଲି ଚାହା ପିଇ ଯାଆନ୍ତି ଗ୍ରାମ ପରିଭ୍ରମଣରେ । ମାଲି ମକଦ୍ଦମା, ନ୍ୟାୟ ନିଶାପ ସାରି ଭାଗବତ ଘରେ ଅଧ୍ୟାୟେ ଭାଗବତ ପଢ଼ନ୍ତି ଏବଂ ଶୁଣାନ୍ତି । 'ସମାଜ' କାଗଜର ମୂଳରୁ ଶେଷ ପର୍ଯ୍ୟନ୍ତ ପଢ଼ନ୍ତି ଏବଂ ଶୁଣାନ୍ତି (ଅବଶ୍ୟ ସମାଜ କାଗଜର ଆକାର ଏତେ ବଡ଼ ନ ଥିଲା ସେତେବେଳକୁ) । ରାତିକୁ ଫେରି ମରାହୋଇଥିବା ଦୁଧରେ ଦୁଇଚାରିପଟ ରୁଟି ବା ହୁଡୁମ୍ବ ପକାଇ ଖାଆନ୍ତି । ଆଉ ତା'ପରେ ପୁଣି ଏକ ପାନଖିଆ ପର୍ବ । ପାନଖାଇ ମୁହଁ ହାତ ଧୋଇ ଶୋଇବାକୁ ଯାଆନ୍ତି ଠିକ୍ ରାତି ଦଶଟାରେ । ବେଶ୍ ଆଉ

Digitized by srujan ka@gmail.com

କଡ଼ ଲେଉଟାଇବା ମଧ କ୍ୱଚିତ୍ ଦେଖିଛି । ଖଟ ଉପରେ ମଶାରୀ ବାଡ଼ରେ ଗୋଟାଏ କଣ କାଠର ବାଡ଼ି ରଖାଯାଇଥାଏ । ମଶା, ଡାଆଁସ କିଛି ଖଟ ପାଖକୁ ଆସି ପାରନ୍ତି ନାହିଁ ।

ଉଚ୍ଚତା ଥିଲା ୬ ଫୁଟ ୨ ଇଞ୍ଚ ରୁ ଟିକିଏ ବେଶି । ସ୍ତ୍ରୀଙ୍କର ଉଚ୍ଚତା ପାଞ୍ଚଫୁଟ । ଦାନ୍ତ ଦ୍ୱିତୀୟ ଥର ପଡ଼ି ଉଠିଥିଲା । ପୂରା ପାଟିଏ ଦାନ୍ତ । ଚଷମା ଆଦୌ ଦରକାର ପଡ଼ି ନ ଥିଲା । ସ୍ତ୍ରୀ ମଧ ବଂଚିଥିଲେ ପାଖାପାଖି ସେତିକି ବର୍ଷ । କିନ୍ତୁ ସେ ଜଣେ ହେଙ୍ଗେଲୀ ମାଇପି ଛଡ଼ା ଆଉ ତାଙ୍କର କୌଣସି ସ୍ୱାତନ୍ତ୍ର୍ୟ ନ ଥିଲା । ସତ୍ୟବାଦୀ ପଟ୍ଟନାୟକ ବେମାର ଅଛନ୍ତି ଖବର ପାଇ ଅମେ ଆସିଲୁ । ଯୁଦ୍ଧ ସମୟ । ଗାଡ଼ିସବୁ ପେଟ୍ରୋଲ ଅଭାବରୁ କୋଇଲାରେ ଚାଲୁଥାଏ । ତଥାପି ବସ୍‌ରେ ଜାଗା ମିଳେନାହିଁ ।

ଚକ୍ରଧର ମିଶ୍ର ବର୍ତ୍ତମାନ ଓଡ଼ିଶାରେ ବିସ୍ମୃତ । କିନ୍ତୁ ଦିନ ଥିଲା ସେ ଓଡ଼ିଶାର ଅନେକ କଥାରେ ପାୟୋନିଅର ଥିଲେ । ବସ୍ ଚଳାଇବା ସେଥିରୁ ଅନ୍ୟତମ । ସେତେବେଳେ ସମ୍ୱଲପୁରରୁ ମେରାମୁଣ୍ଡଳୀ ରେଲବାଇ ଷ୍ଟେସନକୁ ସେ ବସ୍ ଚଳାଉଥିଲେ । ସମ୍ୱଲପୁରରୁ ଅନୁଗୋଳ ପର୍ଯ୍ୟନ୍ତ ଘୋର ଅରଣ୍ୟ ଭରି ରହିଥିଲା । ମୁଁ ପିଲାଦିନେ ରେଢ଼ାଖୋଲ ଛକ (ବର୍ତ୍ତମାନ ବଜାର ଛକ) ଉପରେ ଦିନ ଦି ପହରେ ମହାବଳ ବାଘ ଦେଖିଛି ଅନ୍ତତଃ ଦୁଇଥର । ବହୁତ ଥର ବସ୍ ବାଟରେ ଅଟକି ରହିଛି ହାତୀ ପଲ ଭୟରେ, ଘଣ୍ଟା ଘଣ୍ଟା ଧରି । ଆଗରେ ହାତୀପଲ ଡାଳ ଭାଙ୍ଗୁଛନ୍ତି । ଗାଡ଼ି ଯାଏ କୁଆଡ଼େ ? ଏଇଭଳି ପରିସ୍ଥିତି ଭିତରେ ଦୁଇଟି ବସ୍ ଆସେ । ସାମନ୍ତ ସିଂହାରଙ୍କ ପୂରା ନାଁ ମନେ ପଡୁନାହିଁ । ସେ ଥାଆନ୍ତି ମ୍ୟାନେଜର ମିଶ୍ର ଟ୍ରାନ୍ସପୋର୍ଟର ସମ୍ୱଲପୁରରେ ।

ସାମନ୍ତ ସିଂହାର ଆମର ପାରିବାରିକ ବନ୍ଧୁ ଥିଲେ । ଏହାରି ସୁଯୋଗ ନେଇ ଥରେ ବାପା ଓ ଦାଦା ତାଙ୍କୁ ସମ୍ୱଲପୁରରୁ ମେରାମୁଣ୍ଡଳୀ ପର୍ଯ୍ୟନ୍ତ ଦୁଇଟି ଟିକେଟ୍ ଦେବାକୁ କହିଲେ ଏବଂ ସେ ଦୁଇଜଣ ସମ୍ୱଲପୁର ମେରାମୁଣ୍ଡଳୀ ରାସ୍ତାରେ ପାଞ୍ଚ ମାଇଲ ପରେ ମାନେଶ୍ୱର ନାମକ ସ୍ଥାନରୁ ଉଠିବେ ବୋଲି କହିଲେ । ସାମନ୍ତ ସିଂହାରଙ୍କୁ ଯାତ୍ରୀ ଦୁଇଜଣଙ୍କ ସଠିକ୍ ନାମ କୁହାଯାଇଥିଲା କି ନାଇଁ ମୋତେ ଜଣା ନାହିଁ । କିନ୍ତୁ ବୋଧହୁଏ ସାମନ୍ତ ସିଂହାର ଭାବିଥିଲେ ଯେ ବନ୍ୟ ବିଭାଗର କେହି ଲୋକ ହୋଇଥିବେ । ସ୍ପଷ୍ଟ ମନେପଡୁଛି ଟିକଟ ଦୁଇଟି ମୁଁ ନେଇ ଏକ ନିର୍ଦ୍ଦିଷ୍ଟ ଜାଗାରେ ଦେଇ ଆସିଥିଲି । ସାମନ୍ତ ସିଂହାର ସିନା ଜାଣି ନ ଥିଲେ, ପୁଲିସ୍ କିନ୍ତୁ ସୁରାକ ପାଇ ସାରିଥିଲେ ଯେ ଯାତ୍ରୀ ବନ୍ୟ ବିଭାଗର ନୁହେଁ, ପଳାତକ ସ୍ୱାଧୀନତା ସଂଗ୍ରାମୀ । ନାମ ଭୈରବ ଚନ୍ଦ୍ର ମହାନ୍ତି । ଭୈରବ ବାବୁ ଆପଣାର ସେକ୍ରେଟେରିଏଟ୍ ଚାକିରି ଛାଡ଼ି ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇଥିଲେ । ତାଙ୍କ ନାଁରେ ଗିରଫଦାରୀ ପରବାନା ଜାରି ହେଲା । ସେ ପଳାତକ ଭାବରେ କଂଗ୍ରେସ ପାଇଁ ପାଣ୍ଠି ସଂଗ୍ରହରେ ଲାଗିଲେ । ସେତେବେଳେ ତାଙ୍କର ବଂଧୁ ପ୍ରସିଦ୍ଧ କ୍ରୀଡ଼ାବିତ୍ ନନ୍ଦକୃଷ୍ଣ ଦାସ ସେଠାରେ ପୋଲିସ ସବ୍ ଇନିସପେକ୍ଟର । ସେ ଦିନଯାକ

Digitized by srujan ka@gmail.com

ଭୈରବ ବାବୁଙ୍କୁ ଖୋଜନ୍ତି ଏବଂ ରାତିରେ ତାଙ୍କୁ ସାଇକେଲ ପଛରେ ବସାଇ ବୁଲାନ୍ତି । କିନ୍ତୁ ଏଥିରେ କଣ ପଳାତକ ଜୀବନ ଚାଲେ ? ସେକ୍ରେଟେରିଏଟରେ ଚାକିରି କରୁଥିବା ବେଳେ ଭୈରବବାବୁ ଏକ ମେସ୍‌ରେ (ବୁଢ଼ାରଜା କଲୋନୀ, ବର୍ତ୍ତମାନ ଗଂଗାଧର ମେହେର ଟ୍ରଷ୍ଟ ଫଣ୍ଡ କଲୋନୀ)ରେ ରହୁଥାନ୍ତି । ନାଁ ଥିଲା ସିମଳା ମେସ୍ । ସେଇ ମେସ୍‌ର କିଛି ପ୍ରଗଳ୍ଭ ବଂଧୁଙ୍କର ଗପ ଚାଲିଲା । ଏଇଭଳି ଜଣେ ବନ୍ଧୁ ସେଦିନ ଜଳଖିଆ ଦୋକାନକୁ ଯାଇ ଏଇପରି ଗପ ମାରିଲେ । ଜଲଦି ଜଳଖିଆ ଦିଅ । ଆଜି ଭୈରବ ଯିବ । ଗାଡ଼ି ଠିକ୍ ସମୟରେ ଛାଡ଼ିବ । କୁହାଳିଆ ଲୋକ, ଟିକିଏ ବାହାପିଆ ମଧ । ତାଙ୍କର ଭୈରବ ବାବୁଙ୍କର ଅଣ୍ଡର ଗ୍ରାଉଣ୍ଡ ଜୀବନ ସହିତ କୌଣସି ସଂପର୍କ ନାହିଁ । ଇମିତି ଅନେକ ଦେଖେଇ ହେବା ବ୍ୟକ୍ତି ସମାଜରେ ମିଳନ୍ତି । ତାର ଫଳ ହେଲା ଭୈରବ ବାବୁ ବସ୍‌ରେ ବସିବା ପରିବର୍ତ୍ତରେ ଗିରଫ ହେଲେ ଏବଂ ପ୍ରଥମେ କଟକ ଜେଲ ଓ ପରେ ବ୍ରହ୍ମପୁର ଜେଲକୁ ସ୍ଥାନାନ୍ତରିତ ହେଲେ । କିନ୍ତୁ ଭୈରବବାବୁଙ୍କୁ ଆଗତୁରା ଟିକଟ୍ ଦେଲା କିଏ ? ସାମନ୍ତ ସିଂହାରଙ୍କୁ ଜେରା କରାଗଲା, କଛି ସୂତ୍ର ମିଳିଲା ନାହିଁ । କିନ୍ତୁ ପୁଲିସ୍ ତଥାପି ପିଛା ଧରିଲା । ମୋ ଦାଦା ବିରଞ୍ଚି ନାରାୟଣଙ୍କୁ ଖୋଜା ଚାଲିଲା । ସେ କିନ୍ତୁ କୁଆଡ଼େ ଚାଲିଗଲେ ତାହାର କୌଣସି ପତ୍ତା ମିଳିଲା ନାହିଁ । ଦାଦା ମୋର ଏଭଳି କାର୍ଯ୍ୟରେ ବହୁ ଆଗରୁ ସିଦ୍ଧିଲାଭ କରି ସାରିଥିଲେ । ସେଇଯୋଗୁଁ ସେ ଜେଲ୍ ଯାଇ ନ ଥିଲେ ଏବଂ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଇଁ ଦରଖାସ୍ତ ମଧ କରି ନ ଥିଲେ । ସ୍ୱାଧୀନତା ପରେ ସେ ଖଦଡ଼ ପିନ୍ଧିବା ଛାଡ଼ି ଦେଇଥିଲେ କିନ୍ତୁ ସ୍ୱାଧୀନତା ପୂର୍ବରୁ କେବଳ ସେ ଖଦଡ଼ ପିନ୍ଧୁ ନ ଥିଲେ, ନିଜେ ସୂତା କାଟି ସେଇ ସୂତାରେ ହିଁ ଆପଣାର ବସ୍ତ୍ର ତିଆରି କରୁଥିଲେ । ବିବାହ କରିବା ପାଇଁ ମଧ ସମୟ ପାଇ ନ ଥିଲେ । ୧୯୬୮ ମସିହା ଜୁନ୍ ଛ' ତାରିଖରେ କଟକ ବଡ଼ ଡାକ୍ତରଖାନାରେ ତାଙ୍କର ପରଲୋକ ହୋଇଯାଏ ଏବଂ ତାଙ୍କର ବନ୍ଧୁ ବିନୋଦ କାନୁନ୍‌ଗୋଙ୍କ ଯୋଗୁଁ ଖବରକାଗଜରେ ତାଙ୍କର ମୃତ୍ୟୁ ସଂବାଦ ପ୍ରକାଶ ପାଇଥିଲା ।

ଆଗରୁ କହିଛି ଚକ୍ରଧର ମିଶ୍ର ବର୍ତ୍ତମାନ ବିସ୍ମୃତ । ବସ୍ ଚଳାଇବା ଠାରୁ ସିନେମା ପର୍ଯ୍ୟନ୍ତ, ବଗିଚା ଠାରୁ ଆରମ୍ଭ କରି ହୋମିଓପାଥି ପର୍ଯ୍ୟନ୍ତ ବହୁ କଥାରେ ସେ ପ୍ରାଓନିଅର । ଚକ୍ରଧର ମିଶ୍ର ଓ କହ୍ନେଇ ମିଶ୍ର ଦୁଇ ଭାଇ । ବହୁକାଳ ଧରି ସେମାନେ ଅଭିନ୍ନ ଥିଲେ । ବାପାଙ୍କର ଢେଙ୍କାନାଳ ସ୍କୁଲ୍‌ରେ ସମସାମୟିକ ଥିଲେ ଚକ୍ରଧର ମିଶ୍ର । ବାପା କହନ୍ତି ଯେ ଚକ୍ରଧର ବାବୁ କେବେ କୁଆଡ଼େ ଗୋଟିଏ ଶାଢ଼ୀ କିଣି ନାହାନ୍ତି । ସବୁବେଳେ ଦୁଇଟି । ଗୋଟିଏ କହ୍ନେଇ ବାବୁଙ୍କ ସ୍ତ୍ରୀଙ୍କ ପାଇଁ ଓ ଗୋଟିଏ ନିଜ ସ୍ତ୍ରୀଙ୍କ ପାଇଁ । ଚକ୍ରଧର ବାବୁ ବୋଧହୁଏ ଓଡ଼ିଶାରେ ପ୍ରଥମ ଟୁରିଙ୍ଗ ସିନେମା ପ୍ରଚଳନ କରିଥିଲେ । ପ୍ରଥମ ଓଡ଼ିଆ ଚଳଚିତ୍ର ସୀତା ବିବାହ ମୁଁ ତାଙ୍କରି ସିନେମାରେ ଦେଖିଛି । ସେତେବେଳେ ଟୁରିଙ୍ଗ ସିନେମା ଏକ କଷ୍ଟସାଧ ବିଷୟ ଥିଲା । ତାହା ସତ୍ତ୍ୱେ ସେ ଏହି ଚାଲେଞ୍ଜକୁ ଗ୍ରହଣ କରିଥିଲେ । ଆଠଗଡ଼ ଚେଲବାଇ ଷ୍ଟେସନ ପାଖରେ ତାଙ୍କ

Digitized by srujan ka@gmail.com

ଭାଇଙ୍କର ଏକ ବଗିଚା ଥିଲା । ଏବଂ ସେ ବଗିଚା ଏକ ଦର୍ଶନୀୟ ତଥା ପ୍ରେରଣାଦାୟକ ବଗିଚା ଥିଲା । ଜୀବନର ଅପରାହ୍ନରେ ସେ ହୋମିଓପାଥ ଭାବରେ ଖ୍ୟାତି ଲାଭ କରିଥିଲେ । ମୁଁ ଥରେ ଏକ ଭୟାନକ ଦୁରାବସ୍ଥାରେ ପଡ଼ି ତାଙ୍କର ଦ୍ୱାରସ୍ଥ ହୋଇଥିଲି । ୧୯୫୫ ମସିହା ବଢ଼ି । ଦଳେଇ ଘାଇ ଅଞ୍ଚଳରେ ରିଲିଫ କାମ କରିବାକୁ ଯାଇ ମୁଁ ଦାନପୁର ପାଖରେ ଏକ ଡଙ୍ଗାରେ ଶୋଇଥିଲି । ରାତିରେ କଣ ଗୋଟାଏ କାମୁଡ଼ି ଦେଲା ବାଁ ହାତର ବୁଢ଼ା ଆଙ୍ଗୁଠିକୁ । ବୋଡ଼ା ସାପ ବୋଲି କିଏ କହୁଥିଲା କିନ୍ତୁ ସାପ ଭଳି ଏକ ଜିନିଷକୁ ମୁଁ ରାତିରେ ଟେକି ପାଣିକୁ ଫୋପାଡ଼ି ଦେବା ଛଡ଼ା ଆଉକିଛି ଜାଣି ନାହିଁ । ଦେହର ତିନି ସ୍ଥାନରେ କାମୁଡ଼ି ଦେଇଥିଲା । ତିନି ଜାଗାକୁ ରାତିରେ ଛୁରୀରେ କାଟି ରକ୍ତ ବାହାର କଲି, ଗେଂଜିଟାକୁ ଚିରି ବ୍ୟାଣ୍ଡେଜ କରି ବାନ୍ଧିଲି, ପାହାନ୍ତିଆରୁ ବାହାରି ଚାଲି ଚାଲି କଟକରେ ପହଞ୍ଚିଲି । ସିଧା ଡାକ୍ତରଖାନାକୁ ଗଲି । ଔଷଧ ଦିଆ ହେଲା । ହାତର ଘା'ଟା ଶୁଖିଗଲା ସତ୍ୟ କିନ୍ତୁ ପୁଣି କିଛି ଦିନ ପରେ ସେଇ ଘା'ରୁ ପାଣି ଭଳି ବାହାରିଲା । ଚିପି ଦେବାରୁ ପୁଣି ଶୁଖିଗଲା କିନ୍ତୁ ପୁଣି ଦେଖାଗଲା ତାହା ଧୀରେ ଧୀରେ ବଢ଼ି ମୋର ସମଗ୍ର ହାତକୁ ଗ୍ରାସ କରିଗଲା । ମାଂସ ଖାଇ କେବଳ ହାଡ଼ ଦେଖାଗଲା । ବହୁ ଡାକ୍ତର ଦେଖିଲେ । ଔଷଧ ଦେଲେ । କିନ୍ତୁ ଭଲ ହେଲା ନାହିଁ । ଶେଷରେ ହାତଟିକୁ ପାପୁଲିଠାରୁ କାଟିଦେବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ ବୋଲି ଡାକ୍ତର ଗିରିଜା ଶଙ୍କର ଦାସ ମହାପାତ୍ର ମତ ଦେଲେ । ''ଯାର ନାହିଁ ଅନ୍ୟ ଗତି, ଧରଲୋ ବେଟା ହୋମିଓପାଥି'' ନ୍ୟାୟରେ ଯାଇ ପହଞ୍ଚିଲି ଚକ୍ରଧର ମିଶ୍ରଙ୍କ ପାଖରେ । ପରିଚୟ ଦେବି କି ନାହିଁ ଭାବିବା ପୂର୍ବରୁ ପାଖରେ ବସିଥିବା ତାଙ୍କର ପୁଅ ହୃଷୀକେଶ ମିଶ୍ର ପରିଚୟ କରାଇଦେଲେ । ଜଳଖିଆ ଓ ଗାଳି ଉଭୟ ଖାଇସାରିଲା ପରେ ସ୍ଥିର ହେଲା ଯେ ମୁଁ ମାସକୁ ଥରେ ପାନେ ଔଷଧ ଖାଇବି । ସେଦିନ ତାଙ୍କ ଘରେ ଚାରି ଛଅ ପାନ ଔଷଧ ଖାଇବା ପରେ ଘା' ଭଲ ହୋଇଗଲା, କିନ୍ତୁ ତା'ପରେ ପରେ ଚକ୍ରଧର ବାବୁ ଚାଲିଗଲେ ପୁରୀ । ସେଇଠି ହିଁ ତାଙ୍କର ଶେଷ ଜୀବନ କଟାଇ ଦେଲେ । ମୋର ସେଇ ଘା' କିଛି ବର୍ଷ ବ୍ୟବଧାନ ପରେ ପୁଣି ଦେଖାଗଲା । କିନ୍ତୁ ଚକ୍ରଧର ବାବୁ ସେତେବେଳକୁ ପୁରୀ ଚାଲି ଯାଇଥିଲେ ।

ଚକ୍ରଧର ବାବୁଙ୍କ ମ୍ୟାନେଜର ସାମନ୍ତ ସିଂହାରଙ୍କର ଅନୁକମ୍ପାରୁ ଆମେସବୁ ଢେଙ୍କାପାଙ୍କୁ ଦେଖିବାପାଇଁ ସମ୍ବଲପୁରରୁ ଅନୁଗୋଳ ଆସିଲୁ । କିନ୍ତୁ ବାଟରେ ଏକ ବିରାଟ ପୋଲ ଭୁଷୁଡ଼ି ପଡ଼ିଥିଲା । ନଦୀର ନାମ ଖଲଖଲିଆ, ମାନେ ଯାହା ଖଳ ଖଳ ହୋଇ ବୋହିଯାଏ । କିନ୍ତୁ ପାର ହେବୁ କେମିତି ? ଦୁଇ ପଟରେ ଦଉଡ଼ି ବଂଧା ହେଲା । ତାକୁ ଧରି ଧରି ପାର ହେବାକୁ ହେବ । ବର୍ଷା ଦିନ । ନଦୀର ସ୍ରୋତ ଖୁବ୍ ପ୍ରଖର । ଟିକିଏ ହାତ ଖସିଗଲେ ମୃତ୍ୟୁ ସୁନିଶ୍ଚିତ । ବଡ଼ ବଡ଼ ମଣିଷମାନେ ସିନା ପାର ହୋଇଯିବେ । ଆମେ ଯେଉଁସବୁ ସାନ ପିଲା ସେମାନେ ପାର ହେବୁ କେମିତି ? ଯିଏ ଆମକୁ ଧରିବ ସେ ଗୋଟିଏ ହାତରେ ଦଉଡ଼ି

Digitized by srujan ka@gmail.com

ସମ୍ଭାଳିବ ଏବଂ ଆର ହାତରେ ଧରିବ ଗୋଟିଏ ପିଲାକୁ । ତ୍ରାହି ମାଂ ମଧୁସୂଦନ । ଉପାୟ କିଛି ନାହିଁ । ଏବେ ବି ମନେ ପଡ଼ିଲେ ଦେହ ଟାଙ୍କୁରି ଯାଏ ।

ଅନୁଗୋଳରେ ପହଞ୍ଚି ଗାଁକୁ ଗଲୁ । ସତ୍ୟବାଦୀ ପଟ୍ଟନାୟକଙ୍କୁ ଜ୍ୱର ହୋଇଥିଲା ଦୁଇଦିନ । ଆଜି ଜ୍ୱର ଛାଡ଼ି ଯାଇଛି । କିନ୍ତୁ ଦେଖିଲା କ୍ଷଣି ସେ କହିଲେ ଭଲ କଲ ଆସିଲ । ମୁଁ ଚାଲିଲି । ଗାଁକୁ ଗଲାବେଳେ ଖମାର ଗାଁ ପଡ଼େ । ସେଇଠି ଚୌପାଢ଼ୀରେ ବସିଥାନ୍ତି ପଣ୍ଡିତ ନଟବର କର । ତାଙ୍କୁ ମୁଣ୍ଡିଆଟିଏ ମାରି, ଦି'ଚାରି ପଦ ଆଶୀର୍ବଚନ ଶୁଣିଯିବାକୁ ପଡ଼େ । ସେ ହାତ ଦେଖନ୍ତି । କୁହନ୍ତି ଡାକ୍ତର ହେବୁ । ମନ ଉଲୁସି ଉଠେ । କାରଣ ଡାକ୍ତର ହେବାର ସ୍ୱପ୍ନ ମୋର ଥିଲା । କିନ୍ତୁ ବିଜ୍ଞାନ ଛାଡ଼ି କଳା କ୍ଲାସରେ ଆଇ.ଏ. ପଢ଼ିବା ପରେ ମଧ ନଟବର କର ମହାଶୟ ସେଇ କଥା କହୁଥିଲେ– ଡାକ୍ତର ହେବୁ । ମୋ ଦାଦା ବେଶ୍ ରେସନାଲ (rational) ସେ କହନ୍ତି ଜ୍ୟୋତିଷଙ୍କ କଥା ଶୁଣ କିନ୍ତୁ ବିଶ୍ୱାସ କର ନାହିଁ । ଯାହା ତୁମ ପାଇଁ ଲାଗିଲା ଭଲ, ଯାହା ଲାଗିଲା ନାହିଁ ତାକୁ ଖାତିର କର ନାହିଁ । ନଟବର କର ଦେଖିବାକୁ ଆସିଲେ ସତ୍ୟବାଦୀ ପଟ୍ଟନାୟକଙ୍କୁ । କହିଲେ ଯେ କର୍ଣ୍ଣମୂଳ ବଂକା ହୋଇ ଗଲାଣି । ଆଉ ରହିବେ ନାହିଁ । କଣ ସେ କର୍ଣ୍ଣମୂଳ ବଂକା ହେବା କଥା ମୁଁ ଜାଣେ ନାହିଁ, ଜାଣି ପାରି ନାହିଁ । ସଂଧ୍ୟା ବେଳକୁ ସତ୍ୟବାଦୀ ପଟ୍ଟନାୟକ କହିଲେ ମୋତେ ଭୂମି ଶଯ୍ୟା କରିଦିଅ । ଭାଗବତ ପଢ଼ । ତଳେ ଶୁଆଇ ଦିଆଗଲା । ମୁଁ ଭାଗବତ ପଢ଼ିଲି । ପାଦ ଥଣ୍ଡା ହୋଇ ଗଲାଣି । କିନ୍ତୁ ମସ୍ତିଷ୍କ ଏବଂ କଣ୍ଠ ସେମିତି ଅଛି । ଭାଗବତ ପଢ଼ିବାକୁ ଆରମ୍ଭ କଲି । ସୁର ଦେଇପାରି ପଢ଼ିଲି ନାହିଁ । ବୁଢ଼ା ଖିଙ୍କାରି ଉଠିଲା । ଆଦେ, ସୁର ଦେଇ ପଢ଼ । ପଢ଼ ଏଇ ଭଳି । ସେ ସୁର ବି ଶିଖାଇ ଦେଲେ । ସକାଳ ହେବା ପୂର୍ବରୁ ଠିକ୍ ବ୍ରାହ୍ମ ମୁହୂର୍ତ୍ତରେ ସେ ଚାଲିଗଲେ । ମାତ୍ର ପାଞ୍ଚଶହ ଲୋକ ଯାଇଥିଲେ ମାଲଭାଇ ହୋଇ । ଜେଜେମାକୁ ବିଧବା କରିବାକୁ ଯାଇଥିଲେ ମାତ୍ର ଦୁଇଶହ ନାରୀ । ସମସ୍ତଙ୍କୁ ଲୁଗା ଦେବାକୁ ହେବ । ଯୁଦ୍ଧ ସମୟ । ଲୁଗା ମିଳୁଛି କେଉଁଠୁ ? ଆଜି ସେଇଟା ଆଶ୍ଚର୍ଯ୍ୟ ମନେହେବ । କିନ୍ତୁ ସେତେବେଳେ ଲୁଗା ମିଳୁ ନ ଥିଲା । ଯଦି ମିଳୁଥିଲା ତାହେଲେ ପରମିଟ୍‌ରେ । ବାପାଙ୍କୁ ଲୁଗା ଯୋଗାଡ଼ କରିବାପାଇଁ ନାକେଦମ୍ ହେବାକୁ ପଡ଼ିଲା । ଦାଦା ଆସି ପହଞ୍ଚିଲେ । ସ୍ୱାଧୀନତା ସଂଗ୍ରାମୀ ବିରଞ୍ଚି ନାରାୟଣ ଥିଲେ ବହୁ ଆଇ.ସି.ଏସ୍. ଅଫିସରଙ୍କର ଓଡ଼ିଆ ଏବଂ ବିଭିନ୍ନ ଭାଷାର ଶିକ୍ଷକ । ବିରଞ୍ଚି ନାରାୟଣ ହୋ, କୋହ୍ଲ, ସାନ୍ତାଳ, ନରିଆ ପ୍ରଭୃତି ବହୁତ ଆଦିବାସୀ ମାନଙ୍କର ଭାଷା ଜାଣିଥିଲେ ଏବଂ ସେମାନଙ୍କ ସହିତ ତାଙ୍କରି ଭଳି ମିଶି ପାରୁଥିଲେ । ସେ ଯାଇ ଦେଖାକଲେ ଅଫିସରଙ୍କୁ । ସାର୍ ଆସିଛନ୍ତି ଏଇ ସାମାନ୍ୟ ସାହାଯ୍ୟ ପାଇଁ । ପରମିଟ୍ ମିଳିଥିଲା ।

ଆମ ଗାଁରେ ଏକ ପରମ୍ପରା ଥିଲା ! କେହି ମରିଗଲେ ତାର ଶବ ନ ଉଠିଲା ପର୍ଯ୍ୟନ୍ତ ଗାଁରେ କାହାରି ଘରେ ଚୁଲୀ ଜଳୁ ନ ଥିଲା । ଗାଁ ପାଖରେ କୌଣସି ଜଂଗଲ ନାହିଁ । ଲୋକେ

Digitized by srujan ka@gmail.com

ଆପଣା ଘରୁ ଢାଳେଣି କାଠ କାଢ଼ି ଶବ ଯିବା ରାସ୍ତା ଉପରେ ପକାଇ ଦିଅନ୍ତି । ଏକ ବା ଦୁଇ ଶଗଡ଼ ଗାଡ଼ି ସବୁ କାଠ ଗୋଟାଇ ନେଇଯାଏ ଶ୍ମଶାନକୁ । ବିବାହ ବ୍ରତ ବା ଶୁଦ୍ଧିରେ ଗାଁରୁ ପ୍ରତ୍ୟେକ ଘରୁ କିଛି ନଗଦ ପଇସା ଏବଂ ସାମଗ୍ରୀ ନିଶ୍ଚୟ ଆସିବ । ସେତେବେଳେ ଅନୁଗୋଳ ଅଂଚଳରେ ଯୌତୁକ ପ୍ରଥା ନ ଥିଲା । ତେଣୁ ବିବାହର ଏକ ବିରାଟ ଅଂଶ ଏଇ ଦାନରୁ ହିଁ ଉଠି ଯାଉଥିଲା । ଶବ ନ ଉଠିଲେ ଚୁଲୀ ଜଳି ପାରିବ ନାହିଁ । ତେଣୁ ଶବ ଉଠାଇବାକୁ ସମସ୍ତେ ତତ୍ପର ହୋଇ ଉଠନ୍ତି । ସ୍ୱାଭାବିକ ।

ଶବ ଦାହ ମଧ ଅନୁଗୋଳ ଅଂଚଳରେ ସ୍ୱତନ୍ତ୍ର । କଟକ ଜିଲ୍ଲାରେ ମୃତ ଦେହକୁ ମୁହଁମାଡ଼ି କାଠ ଉପରେ ରଖାଯାଏ ଏବଂ ତା'ର ଗୋଡ଼କୁ ଭାଙ୍ଗି ଦେହ ଉପରେ ରଖାଯାଏ । ତା' ପରେ କାଠରେ ଏକ କଇଁଚି ଦେଇ ଅଧିକା କାଠ ଦିଆଯାଏ ଏବଂ ମୁଖାଗ୍ନି ଦିଆଯାଏ । ଅନୁଗୋଳ ଅଂଚଳରେ କାଠର ଏକ ଗଦା ଉପରେ ଶବକୁ ଚିତ୍‌କରି ରଖି ଦିଆଯାଏ ଏବଂ ଚିତାଗ୍ନି ଏବଂ ମୁଖାଗ୍ନି ପ୍ରାୟ ଏକ ସମୟରେ କରାଯାଏ । ବୋଧହୁଏ କାଠର ଅଭାବ ଏବଂ ପ୍ରାଚୁର୍ଯ୍ୟ ଏହି ପରମ୍ପରା ସୃଷ୍ଟି କରିଛି । ଚିତା ଉପରେ ମୁହଁମାଡ଼ି ଶୁଆଇଲେ ପେଟ ଫାଟି ପାଣି ତଳକୁ ବୋହିଯାଏ । କମ କାଠରେ ଶବ ପୋଡ଼ାଯାଇ ପାରେ । କିନ୍ତୁ ଅନ୍ୟ ପଦ୍ଧତିରେ ତାହା ସମ୍ଭବ ନୁହେଁ ।

ମୋ ବୋଉର ଶବଦାହ ମୁଁ ଦେଖିନାହିଁ । ବାପା ଦାଦାଙ୍କୁ କଟକରେ ଦାହ କରିଛି । କିନ୍ତୁ ନବକୃଷ୍ଣ ଚୌଧୁରୀଙ୍କ ଶବଦାହ ସମୟରେ ଏଇ ସ୍ୱାତନ୍ତ୍ର୍ୟ କେବଳ ମୋର ନୁହେଁ, ଅନୁଗୋଳ ବାହାରୁ ଯାଇଥିବା 'ସମାଜ'ର ସଂପାଦକ ରାଧାନାଥ ରଥଙ୍କ ସମେତ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ପରମ୍ପରା, ପଦ୍ଧତି କିମିତି ଗଢ଼ି ଉଠେ ଏହା ତାହାର ଏକ ନମୁନା ।

ହିନ୍ଦୁ ଧର୍ମ ଏକ ନଦୀକୂଳ ସଭ୍ୟତା । ପାଣି ପ୍ରଚୁର । ପରମ୍ପରା, ପଦ୍ଧତି ଗଢ଼ି ଉଠିଛି ସେଇ ଅନୁରୂପରେ । ପ୍ରତି କାର୍ଯ୍ୟ ପାଇଁ ପାଣି । ଇସ୍‌ଲାମ ଧର୍ମ ଏକ ମରୁଭୂମି ସଭ୍ୟତା । ପାଣିର ଅଭାବ ବହୁତ । ତେଣୁ ପଦ୍ଧତି ପରମ୍ପରା ଗଢ଼ି ଉଠିଛି ସେଇପରି । କିନ୍ତୁ ଉଭୟଙ୍କୁ ଯାନ୍ତ୍ରିକ ଭାବରେ ପ୍ରୟୋଗ କଲେ ଅସୁବିଧା ଏବଂ ତାହା ଅନ୍ଧବିଶ୍ୱାସରେ ପରିଣତ ହୁଏ । ସମୟର ପରିବର୍ତ୍ତନ ସହିତ ସବୁ ପରିବର୍ତ୍ତନ ହେବାକୁ ବାଧ୍ୟ । ପରମ୍ପରା ବା ପଦ୍ଧତିକୁ ଜାବୋଡ଼ି ଧରିବସିଲେ ପରମ୍ପରାର କୌଣସି ମୂଲ୍ୟ ରହେ ନାହିଁ । ସାମାଜିକ ଚେତନାର ରୂପାନ୍ତର ହେଉଛି ଧର୍ମ । ତାହା ସ୍ଥିର ନୁହେଁ । ଯାହା ଧାରଣ କରେ ତାହା ଧର୍ମ । ତେଣୁ ଏହା ବିଶାଳ, ସୀମାହୀନ ଏବଂ ପରିବର୍ତ୍ତନଶୀଳ । ତାକୁ ନିଗଡ଼ରେ ବାନ୍ଧି ରଖିବା ଧର୍ମାନ୍ଧତା ।

ମୁଁ ଦେଖିଲା ବେଳକୁ ସତ୍ୟବାଦୀ ପଟ୍ଟନାୟକଙ୍କର ପୁଅ ଝିଅମାନଙ୍କ ମଧ୍ୟରୁ ମାତ୍ର ଚାରିପୁତ୍ର ଏବଂ ଗୋଟିଏ ଝିଅ । ବିଧୁ ବଦନ, ପଦ୍ମଚରଣ, ଶଶିଭୂଷଣ (ମୋ ବାପା), ବିରଞ୍ଚି ନାରାୟଣ ଏବଂ ଭଉଣୀ ଦେବ । ବାପାଙ୍କର ସବା ବଡ଼ ଭଉଣୀଙ୍କର ପରଲୋକ ହୋଇଗଲା

Digitized by srujan ka@gmail.com

ପରେ ତାଙ୍କର ଦୁଇପୁଅ ମାଗୁଣୀ ଚରଣ ଓ କ୍ଷେତ୍ରମୋହନ ଆସି ମାମୁଁ ଘରେ ରହୁଥିଲେ ବାପାଙ୍କ ପାଖରେ । ପିଲାଦିନେ ସେମାନଙ୍କ ପିଠିରେ ନାଉ ହୋଇ ବୁଲିଛି, କାନ୍ଧରେ ବସେଇ ସେମାନେ କେତେ ବୋହିଛନ୍ତି । ମାଗୁଣି ଚରଣଙ୍କର ପରଲୋକ ହୋଇଯାଇଛି ୧୯୯୨ ମସିହାରେ । କ୍ଷେତ୍ରମୋହନ ଜଂଗଲ ବିଭାଗରୁ ଅବସର ନେଇ ଗାଁରେ ଅବସର କଟାଉଛନ୍ତି । ଏଇ ଦୁଇ ପିଉସୀ ପରିବାର ସହିତ ମୋର ପାରିବାରିକ ସଂପର୍କ ରହିଛି । ଅନ୍ୟ କିଏ କୁଆଡ଼େ ସବୁ ଗଲେ ମୁଁ ଜାଣି ନାହିଁ । ସେମାନଙ୍କ ସହିତ ପରିଚିତି ମଧ ନାହିଁ । ମୋର ମନେ ପଡୁଛି ଏଇ କିଛି ବର୍ଷ ତଳେ ଜଣେ ଭଦ୍ରଲୋକ ଆସି ପହଞ୍ଚିଲେ ଘରେ, ଏଇ କଟକରେ । ମୋତେ ପରିଚୟ ଦେଲେ ସେ ମୋର ଭାଇ ହେବେ । ଆଜିକୁ ବହୁ ବର୍ଷ ତଳେ ଘରୁ ଚାଲିଯାଇ ସେ ସାମରିକ ବାହିନୀରେ ଯୋଗ ଦେଇଥିଲେ ଏବଂ ପ୍ରାୟ ୪୦ ବର୍ଷ କି ତା'ଠାରୁ ଉର୍ଦ୍ଧ୍ୱ କାଳ ସେ ଦେଶ ବିଦେଶରେ ରହି ଫେରିଛନ୍ତି । ମୋ ବାପାଙ୍କୁ ଖୋଜି ସେ ମୋ ପାଖରେ ପହଞ୍ଚିଛନ୍ତି । ବାପା କିନ୍ତୁ ଆଉ ନାହାନ୍ତି । ଦାଦା ବିରଞ୍ଚି ନାରାୟଣ ମଧ ନାହାନ୍ତି । ଭଦ୍ରଲୋକ ବର୍ମାରେ, ସିଙ୍ଗାପୁରରେ ଅନେକ ଦିନ କଟାଇଛନ୍ତି । ତାଙ୍କର ଓଡ଼ିଆ ମଧ ବିକୃତ ହେବାକୁ ଆରମ୍ଭ କରିଛି । ସେ ମୋତେ ଏକ ବଂଶ ପରିଚୟର ତାଲିକା ଦେଇଗଲେ । କିନ୍ତୁ ସେଥିରୁ ମଧ ମୁଁ କିଛି ଠାବ କରିପାରିଲି ନାହିଁ । କାରଣ କାହାରି ସହିତ ମୋର ପରିଚୟ ନାହିଁ । ସେ ସେଇ ରାତିରେ ଉଭାଇଗଲେ । କହିଥିଲେ ଆସିବେ ବୋଲି । କିନ୍ତୁ ଆଉ ଆସି ନାହାନ୍ତି । ଆମ ଅଂଚଳରୁ ଲୋକେ ପୁଲିସ ଓ ସେନାବାହିନୀରେ ପଶିବା କିଛି ନୂଆ କଥା ନୁହେଁ । ଅନୁଗୋଳ, ତାଳଚେର ଏପରିକି ଢେଙ୍କାନାଳରେ ଏକ ଅଂଶର ପ୍ରତି ଗାଁର ପନ୍ଦର କୋଡ଼ିଏରୁ ବେଶି ବ୍ୟକ୍ତି ସାମରିକ ବାହିନୀରେ ନଚେତ୍ ପୁଲିସ୍‌ରେ ଥିବେ । ବଡ଼ ପାହ୍ୟାରେ କେହି ନାହାନ୍ତି । ପ୍ରାୟ ସବୁ ସିପେଇ ବା ନାୟକ । ସେମାନେ ସବୁ ଗାଁକୁ ଫେରନ୍ତି । ସେମାନେ ଫେରିଲେ ଗାଁରେ ଏକ ନୂତନ ଦୃଶ୍ୟ ଦେଖାଯାଏ । ନେଳୀ ଲୁଙ୍ଗି, ଡାହାଣ ହାତରେ ଏକ ଘଡ଼ି, ପରବର୍ତ୍ତୀ କାଳରେ ବାଁ ହାତରେ ଏକ ଚିତ୍କାର କରୁଥିବା ଟ୍ରାନ୍‌ଜିଷ୍ଟର ଏବଂ ଆର ହାତରେ ଦିନ ଦି ପହରେ ଏକ ଟର୍ଚ୍ଚ ଲାଇଟ୍ ବେଶ୍ କୌତୂହଳପ୍ରଦ ଦୃଶ୍ୟ ସୃଷ୍ଟିକରେ । ଗାଁମାନଙ୍କର ବିଭିନ୍ନ ବ୍ୟକ୍ତିମାନେ ଫେରିଥାନ୍ତି ଦେଶ ବିଦେଶରୁ ଜାହାଜମାନଙ୍କରେ କାମ କରି । ସେମାନଙ୍କ ଭିତରୁ ବେଶ୍ କିଛି ହରିଜନ । ଗାଁରେ ସେମାନେ ବଢ଼ିଆସିଛନ୍ତି ଏକ ଇନଫିରିଅରିଟି କମ୍ପ୍ଲେକ୍ସରେ । ତା' ବଦଳରେ ବର୍ତ୍ତମାନ ସେମାନେ ଏହିପରି ବ୍ୟବହାର କରିଥାନ୍ତି । ସେମାନଙ୍କର ଏପରି ବୁଲିବା ତଥାକଥିତ ଉଚ୍ଚଶ୍ରେଣୀ ବ୍ୟକ୍ତିମାନଙ୍କ ମଧରେ ଈର୍ଷା ସୃଷ୍ଟିକରେ । ଛୁଟିରେ ଅନେକ ଦିନ ରହି ସେମାନେ ଆଣିଥିବା ରେଡ଼ିଓ, ଟର୍ଚ୍ଚ, ଘଣ୍ଟା ଇତ୍ୟାଦି ସବୁ ବିକ୍ରୀ କରନ୍ତି । କିଣନ୍ତି ସେଇ ଉଚ୍ଚ ଶ୍ରେଣୀର ଲୋକ ଏକ ତାଚ୍ଛଲ୍ୟର ସହିତ । ଓଡ଼ିଶା ମିଲିଟାରୀ ପୁଲିସ୍‌ରେ ତ ଅନୁଗୋଳ ଅଂଚଳର ପ୍ରତି ଗାଁର ଲୋକେ ଅଛନ୍ତି । ଏବେ ସେମାନଙ୍କ ସଂଖ୍ୟା କମି କମି ଗଲାଣି । ଅନୁଗୋଳରେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଏକ ପାଇଓନିଅର ଫୋର୍ସ ରିକ୍ରୁଟିଙ୍ଗ ଅଫିସ ଥିଲା ।

Digitized by srujan ka@gmail.com

ପରେ ସେଠାରେ ଏକ ପୋଲିସ ଟ୍ରେନିଂ ସ୍କୁଲ ପ୍ରତିଷ୍ଠା ହେଲା । ଏହାରି ପ୍ରଭାବ ବୋଧହୁଏ ପଡ଼ିଛି ଏ ଅଂଚଳରେ । ଏହାର ଏକ ବିଚିତ୍ର ପ୍ରଭାବ ପଡ଼ିଛି ମୋ ଜୀବନରେ । ମୁଁ ଅନୁଗୋଳରେ କେବେ ରହି ନାହିଁ, ପ୍ରାୟ ଯାଇ ନାହିଁ । କେବେ କେବେ ବାପା ବା ଦାଦାଙ୍କ ସାଂଗରେ ପୂଜା ଛୁଟିରେ ଯାଇଛି । ସୁତରାଂ ମୋତେ ସେଠାରେ କେହି ଜାଣି ନାହାନ୍ତି । ଯେଉଁମାନେ ଜାଣିଛନ୍ତି ସେମାନେ ମୋତେ ଜାଣିଛନ୍ତି ମୋ ଡାକ ନାମରେ । ମୋ ଡାକ ନାଁ ପାକୁ । ଏଇ ନାଁଟା ବର୍ତ୍ତମାନ ଆଉ ବ୍ୟବହୃତ ହେଉ ନାହିଁ । ସୁପ୍ରଭା ମହାନ୍ତି(ରାଓ) ଅଳକା ତ୍ରିପାଠୀ(ରଥ) ଶୈଳ ବେହେରା, ବିଜୟଲକ୍ଷ୍ମୀ ସାହୁ ଇମିତି ହାତ ଗଣତା କେତେଜଣ ଡାକନ୍ତି ବର୍ତ୍ତମାନ ମୋତେ ଏଇ ନାମରେ । ମନ୍ତ୍ରୀ ଅଦ୍ୱୈତ ପ୍ରସାଦ ସିଂହ, ଅବସରପ୍ରାପ୍ତ କୃଷି ବିଭାଗ ଡାଇରେକ୍ଟର ଲକ୍ଷ୍ମୀନାରାୟଣ ସାହୁ (କୋରାପୁଟ) ମଧ୍ୟ ଡାକନ୍ତି ଏଇ ନାଁରେ । ସେ ନାଁରେ ଡାକିଲେ ବର୍ତ୍ତମାନ ଚମକ ଲାଗେ, ପୁଲକ ଲାଗେ । ମନ ଫେରିଯାଏ ବହୁତ ପଛକୁ, ଅନେକ ଦିନ ତଳକୁ । ଆଜି କୁଟ୍ରାର ଡାକ ଶୁଣିଲେ, ମୟୂରର କାକଳୀ ଶୁଣିଲେ ଯେମିତି ମନେହୁଏ ଠିକ୍ ସେଇପରି ମନେହୁଏ ଏଇ ଡାକରେ । ଆଜି ଏଇ ଧାଡ଼ିଲେଖିଲା ବେଳେ ବର୍ଷା ଝରୁଚି ଆକାଶରୁ । ଟିପି, ଟିପି ବର୍ଷା, ଭିଜା ମାଟିର ଗନ୍ଧ । ବର୍ଷା ଆସୁଛି ତୁହାକୁ ତୁହା । ଭିଜିବାରେ କି ଉନ୍ମାଦ । ପିଲାଦିନେ ଇମିତି ବର୍ଷାରେ କେବେ କେବେ କୁଆପଥର ପଡ଼େ । ମୋ ବାପାଙ୍କର ଗୋଡ଼ ଭାଙ୍ଗି ଯାଇଥିଲା । ବର୍ଷ ମନେ ନାହିଁ । ତେବେ ଓଡ଼ିଶା ପ୍ରଦେଶ ଗଠନର ପୂର୍ବରୁ । କାରଣ ବାପାଙ୍କର ବଦଳି ହୁଏ ରସେଲକୋଣ୍ଡା (ବର୍ତ୍ତମାନ ଭଞ୍ଜନଗର)କୁ ଓଡ଼ିଶା ପ୍ରଦେଶ ଗଠନ ପରେ ପରେ । ସେତେବେଳକୁ ବାପାଙ୍କର ଗୋଡ଼ ପୂରା ଭଲ ହୋଇ ନ ଥିଲା । ବାପା ଓ ୰ରାଧାମୋହନ ଭଞ୍ଜ ଯାଉଥିଲେ ଦୁଇଟି ସାଇକେଲରେ । ଦୁର୍ଘଟଣା ଘଟେ । ଅନୁଗୋଳରେ ଡାକ୍ତର ପ୍ଲାଷ୍ଟର କରନ୍ତି । ସେଥିରେ ତ୍ରୁଟି ରହିଯାଏ, ସେ ଆସନ୍ତି କଟକ ବଡ଼ ଡାକ୍ତରଖାନାକୁ । ମାଜର୍ ଓନୀଲ ଥାଆନ୍ତି ସର୍ଜନ । ସେ ଆଉଥରେ ହାଡ଼କୁ ଭାଙ୍ଗି ଯୋଡ଼ିବା ବିପକ୍ଷରେ ମତ ଦେଇ ତାଙ୍କୁ କୁଆପଥର ପଡ଼ିଲେ ସେ କୁଆପଥରକୁ ଗୋଡ଼ରେ ବାନ୍ଧିବା ପାଇଁ ଉପଦେଶ ଦେଲେ । ସେତେବେଳେ ବରଫ ମିଳେ କେଉଁଠୁ ? ପିଲାଦିନେ କୁଆପଥର ପଡ଼ିଲେ ଆମେସବୁ ଗୋଟାଇ ବାପାଙ୍କୁ ଦେଉ । ବାପାଙ୍କ ଗୋଡ଼ରେ ସେଇ ତ୍ରୁଟି ରହିଗଲା ଜୀବନଯାକ । କିନ୍ତୁ କୁଆପଥର ଯୋଗୁଁ ହେଉ ବା ଯେଉଁଥିପାଇଁ ହେଉ ତା'ପରେ ବାପା ଘୋଡ଼ା ଚଢ଼ିଛନ୍ତି, ସାଇକେଲ ଚଢ଼ିଛନ୍ତି, କିଛି ଅସୁବିଧା ହୋଇନାହିଁ । ବାପାଙ୍କର ତିନୋଟି ଦୁର୍ଘଟଣା ଘଟିଥିଲା ଜୀବନରେ । ଘୋଡ଼ାରୁ ପଡ଼ି ଯାଇଥିଲେ । ସେଇ ଯୋଗୁଁ ସେ ରେଞ୍ଜର ଟ୍ରେନିଂରେ ଯାଇ ପାରିଲେ ନାହିଁ ଡେରାଡୁନ । ତା'ତଳ ର୍ୟାଙ୍କରେ ଟ୍ରେନିଂ ଗଲେ କର୍ସିଙ୍ଗ (ଦାର୍ଜିଲିଂ ପାଖରେ) । ସାଇକେଲ ଦୁର୍ଘଟଣାରେ ଗୋଡ଼ ଭାଙ୍ଗି ଯାଇଥିଲା ଏବଂ ଥରେ ଟ୍ରେନରୁ ଓହ୍ଲାଇବାରେ ଟିକିଏ ଭୁଲ କରି ଦେଇଥିବାରୁ ହାତ ଭାଙ୍ଗି ଯାଇଥିଲା । ଏବଂ ସବୁତକ ଘଟିଥିଲା ଗୁରୁବାର ଉପର ବେଳା । ବାପା ତା'ପରେ ନିଜେ ତ ଜୀବନଯାକ

Digitized by srujan ka@gmail.com

କେବେହେଲେ ଗୁରୁବାର ଉପରବେଳା କୁଆଡ଼େ ଯିବାକୁ ବାହାରି ନାହାନ୍ତି, ଅନ୍ୟ ସମସ୍ତଙ୍କୁ ଗୁରୁବାର ଉପରବେଳାକୁ ବାରବେଳା ଆଖ୍ୟା ଦେଇ ଯିବାକୁ ମନା କରିଛନ୍ତି । ଏହି ସଂସ୍କାର ମୋର ପରିବାର ଭିତରେ ଇମିତି ପ୍ରବେଶ କରିଛି ଯେ ଗୁରୁବାର ଦିନ ସବୁ ଯାତ୍ରା ଆମ ପାଇଁ ନିଷିଦ୍ଧ ହୋଇ ଯାଇଥିଲା । ପରବର୍ତ୍ତୀ କାଳରେ ମୋର ବାପାଙ୍କ ସହିତ ଯୁକ୍ତି ହୋଇଛି, 'ବାର' ଭାରତୀୟମାନଙ୍କ  ଅବଦାନ ନୁହେଁ । ଭାରତୀୟ ବା ହିନ୍ଦୁମାନେ ବାରରେ କୌଣସି ଗଣନା କରନ୍ତି ନାହିଁ । କରନ୍ତି ତିଥିରେ । ରାମଚନ୍ଦ୍ର, ଶ୍ରୀକୃଷ୍ଣ କେଉଁ ବାରରେ ଜନ୍ମ ହୋଇଥିଲେ ? ଆମ ଜାତକରେ କଣ ବାରରେ ଉଲ୍ଲେଖ ରହିଛି ନା ତିଥିରେ ? ବାର ହେଉଛି ଆମକୁ ଗ୍ରୀକ୍ ଓ ରୋମାନମାନଙ୍କର ଅବଦାନ । ତେଣୁ ଗୁରୁବାରଟା ଲକ୍ଷ୍ମୀଙ୍କ ବାର, ସୋମବାର ଶିବଙ୍କ ବାର କହିବା ସଂପୂର୍ଣ୍ଣ ଭ୍ରମାତ୍ମକ । ଏବେ ପୁଣି ଶୁକ୍ରବାର ନୂତନ ଭାବରେ ଆବିଷ୍କୃତ ହୋଇଥିବା ସନ୍ତୋଷୀ ମା'ଙ୍କର ବାର ଭାବରେ ଖ୍ୟାତି ଲାଭ କରିଛି । ଥରେ ମୁଁ ମଂଗୋଲିଆ ଯାଉଥିଲି । ସେଦିନ ଥିଲା ଗୁରୁବାର ଉପର ବେଳା । ମୋତେ ଅନେକ ବୟସ୍କ ବ୍ୟକ୍ତି ମନା କଲେ । କାଲି ଯାଉନ ? ମୋର ଜିଦ୍ ମୁଁ ଆଜି ଯିବି । ଆଜି ଗୁରୁବାର ଉପରବେଳା କଣ ବସ୍, ଟ୍ରେନ୍, ଉଡ଼ାଜାହାଜ ସବୁ ବନ୍ଦ ହୋଇ ଯାଉଛି । ମୋ ସାଂଗରେ ଦିଲ୍ଲୀ ପର୍ଯ୍ୟନ୍ତ ଥିଲେ ପାରିବାରିକ ବନ୍ଧୁ ଇଂଜିନିୟର ରବି ପାଣିଗ୍ରାହୀ । ଭୁବନେଶ୍ୱର ଏବଂ ଦିଲ୍ଲୀରେ କିଛି କିଛି ଅସୁବିଧା ଦେଖାଗଲା । ମନରେ ସେଇ ଭୟ ଉଙ୍କି ମାରିଲା । ଗୁରୁବାର ଉପରବେଳା । କିନ୍ତୁ ତାକୁ କାଟିବାରେ ତ ରହିଛି ପୌରୁଷତ୍ୱ । ମସ୍କୋ ବିମାନ ବନ୍ଦରରେ ଅସୁବିଧା ଅସମ୍ଭାଳ ହୋଇ ଉଠିଲା । ଇମିତି ଅସୁବିଧା କଣ ଏକ ସଭ୍ୟ ଜଗତରେ ଦେଖାଦିଏ ? ସେଇଦିନ ମସ୍କୋ ଏୟାରପୋର୍ଟରେ ମୋର ୧୯୫୨ରୁ ଜନ୍ମିଥିବା ଧାରଣା ବଦ୍ଧମୂଳ ହୋଇଥିଲା ଯେ ସୋଭିଏଟ୍ ରାଷ୍ଟ୍ର ଦକ୍ଷ ମଣିଷ ସୃଷ୍ଟି କରିନାହିଁ, ସୃଷ୍ଟି କରିଛି ଭଲ ରୋବଟ୍ । କିନ୍ତୁ ରିମୋଟ୍ କଣ୍ଟ୍ରୋଲରେ ହିଁ ଜୀବନରେ ସବୁ କଥା ଚାଲି ପାରିବ ନାହିଁ ।

ଗୁରୁବାର ବଡ଼ି ସକାଳୁ ଉଠି ଲିଭା ହୋଇଥିବା ଲଣ୍ଠନ ବା ଡିବିରି ଦେଖିଲେ ବାପା ଭାବନ୍ତି ଯେ ଦିନଟା ଯାକ ଭଲରେ କଟିବ ନାହିଁ । ଠିକ୍ ସେଇପରି ସକାଳୁ ଉଠି ତେଲ ଟାଟିଆ ଦେଖିଲେ ମଧ୍ୟ ଅନୁରୂପ ଅବସ୍ଥା । ବାପାଙ୍କର ଏଇ ସଂସ୍କାର ମୋ ଉପରେ ଗଭୀର ଛାୟା ବିସ୍ତାର କରିଛି । ଭଲ ଗୁଣ କଣ ଶିଖିଛି କହିପାରିବି ନାହିଁ କିନ୍ତୁ ଏଇ ସବୁ ସଂସ୍କାରର ଛାୟା ପ୍ରଭୂତ । ମୋର ସ୍ତ୍ରୀଙ୍କ ଘରେ ଠିକ୍ ଓଲଟା । ସେମାନଙ୍କ ଘରେ ଅମୃତାଞ୍ଜନ ଏବଂ ତେଲ ଘଷା ଆବାଳବୃଦ୍ଧବନିତାଙ୍କର ଆବଶ୍ୟକ ହୁଏ । ତେଣୁ ତେଲଗିନା ଖଟ ପାଖରେ ରହିବା ଏବଂ ଅମୃତାଞ୍ଜନ ଶିଶିଟାଏ ମୁଣ୍ଡ ପାଖରେ ରହିବା ଏକ ନୈମିତ୍ତିକ ଘଟଣା ତାଙ୍କ ପରିବାରରେ ।

ଆଜି ଆକାଶରୁ ପାଣି ପଡୁଚି ଟୁପୁରୁ, ଟୁପୁରୁ । ବର୍ଷାର ଆନନ୍ଦ ମୋ ପାଇଁ ପ୍ରିମିଟିଭ । ଆଜି ମଧ୍ୟ ବର୍ଷା ହେଲେ ଯାଇ ଖୋଲା ଦେହରେ ଭିଜିବାକୁ ଇଚ୍ଛା । ଆମ ସରକାରୀ କ୍ୱାଟର୍ସ

Digitized by srujan ka@gmail.com

ରାଷ୍ଟ୍ରଭାଷା ରୋଡ଼ରେ । ତା ଆଗରେ ଏକ ବିରାଟ କ୍ୱାଡ଼ରାଙ୍ଗଲ, ଚାରିପଟରେ ତେରଟି କ୍ୱାଟର୍ସ । ବର୍ଷା ଆସେ । ଝିଅ, ଦୁଇପୁଅ କହନ୍ତି ବାପା, ଆମେ ବର୍ଷାରେ ଖେଳିବୁ । ମନାକରି ହୁଏନା । କିମିତି ମନା କରିବି ? ମୋତେ ତ ନିଜେ ଯାଇ ଭିଜିବାକୁ ଇଚ୍ଛା ହେଉଛି ଏ ବୟସରେ ଆଉ ସେମାନଙ୍କୁ ମନା କରିବି କିମିତି ? ଛୋଟିଆ ଚଡ଼ି ଖଣ୍ଡିଏ ଲେଖାଏଁ ପିନ୍ଧି ସେମାନେ ଦୌଡ଼ନ୍ତି ବାହାରକୁ । ଗଡ଼ନ୍ତି ପଡ଼ିଆରେ, ଚବର ଚବର ପାଣି ଭିତରେ । ପଡ଼ୋଶୀମାନଙ୍କ ଭିତରୁ କିଏ କିଏ କହନ୍ତି ଗିରିଜା ପଟ୍ଟନାୟକ ସତରେ ଜଂଗଲୀ, ଆଉ କିଏ କିଏ କହନ୍ତି ଯେ ସେ ପ୍ରକୃତିପ୍ରେମୀ, କେବଳ ପଡ଼ୋଶୀ ଉପେନ୍ଦ୍ର ଗୁରୁ ଏବଂ ତାଙ୍କର ସ୍ତ୍ରୀ କହନ୍ତି ଯେ ଏଇ ଯେ ଠିକ୍ ମଣିଷ । ଉପେନ୍ଦ୍ର ଗୁରୁ ବଲାଙ୍ଗୀରର ଲୋକ । ଆମରି ଭଳି ସେମାନେ ଘର ବାହାରେ ଶୋଇବାକୁ ଭଲ ପାଆନ୍ତି । ଆମେ ଦୁଇ ପରିବାର ଶୋଉ ଘର ବାହାରେ ମୁକ୍ତ ଆକାଶ ତଳେ ଖରାଦିନ ଯାକ । ଅନ୍ୟମାନଙ୍କ ପାଇଁ ଏହା ଏକ ପ୍ରିମିଟିଭ ବା ଆଦିମ ସଂସ୍କାର । ସମସ୍ତେ ଘର ଭିତରେ କବାଟ କିଳି ଶୋଇବାକୁ ଭଲ ପାଆନ୍ତି । ଆମକୁ କିନ୍ତୁ ଘର ବାହାର ଅଗଣା, ଉନ୍ମୁକ୍ତ ଆକାଶ, ଶିରି ଶିରି ପବନ ଭଲଲାଗେ । ପିଲାଦିନର ଜଂଗଲୀ ପ୍ରକୃତି ରହିଯାଇଛି ।

ଆଗରୁ କହିଛି ପୁଲିସ୍ ବିଭାଗରେ ଅନୁଗୋଳର ବହୁତ ଲୋକ । ମୋର ଜଣେ ପିଉସା ୰ବିଷ୍ଣୁ ଚରଣ ପଟ୍ଟନାୟକ ପୁଲିସ ଇନିସ୍‌ପେକ୍ଟର ଥିଲେ । ତାଙ୍କର ସ୍ତ୍ରୀ ମୋ ବାପାଙ୍କର ପିଉସୀ ଝିଅ ଭଉଣୀ । ସେ ନିଜେ ବାପାଙ୍କର ସହପାଠୀ । ଦୁର୍ଦ୍ଦାନ୍ତ ପୁଲିସ ଅଫିସର । ଭଦ୍ରଖରେ ଥିବାବେଳେ ଏକ ଦାନ୍ତ ଉପୁଡ଼ା ଦୁର୍ଘଟଣାରେ ତାଙ୍କର ପରଲୋକ ହୋଇଗଲା । ସେ ଥିଲେ ତତ୍‌କାଳୀନ ସମୟରେ ଟିପିକାଲ ପୁଲିସ ଇନିସ୍‌ପେକ୍ଟର । ମାଲପାଣି ବେଶ୍ ଚଳୁଥିଲା । ବୋଧହୁଏ ଦିନେ ମାତ୍ରାଧିକ ହେତୁ ସ୍ତ୍ରୀଙ୍କ ସହିତ ଝଗଡ଼ା ଜୋର ହୋଇଛି ଏବଂ ଚିରାନୁଚରିତ ରୀତିରେ ତାଙ୍କ ସ୍ତ୍ରୀ ଆସି ଭାଇ (ମୋ ବାପା)ଙ୍କ ପାଖରେ ଆପତ୍ତି କରିଛନ୍ତି । ବାପା ଜଂଗଲ ବିଭାଗରେ କାମ କରନ୍ତି । ପାନ, ବିଡ଼ି, ସିଗାରେଟ୍, ମଦ ସ୍ପର୍ଶ କରନ୍ତି ନାହିଁ । ବାପା ଡକାଇ ପଠାଇଲେ ଦୁର୍ଦ୍ଦାନ୍ତ ପୁଲିସ ଇନିସ୍‌ପେକ୍ଟର ସହପାଠୀ ତଥା ଭଉଣୀ ଜୋଇଁଙ୍କୁ । ସେ ଆସି ପହଞ୍ଚିଲେ । ପାରମ୍ପରିକ ସମ୍ଭାଷଣ ପରେ ଆରମ୍ଭ ହେଲା କଥାବାର୍ତ୍ତା । କଣ ବିଷ୍ଣୁବାବୁ, ମାଲପାଣି ଜୋର ଚାଲିଛି ନା । ସେ ଏକଦମ୍ ସ୍ପଷ୍ଟବାଦୀ । ମୁଁ କଣ ତୋ ଭଳି ଜଂଗଲ ବିଭାଗରେ କାମ କରୁଛି କାଠ, ପଥର ନିର୍ଜୀବ ପଦାର୍ଥ ସହିତ ? ମୋର କାମ ହେଉଛି ଚୋରିନାରୀ, ଦଗାବାଜି ଡକାୟତମାନଙ୍କ ସହିତ । ଦିନଯାକ ସେଇ କାମରେ ଗଲେ ରାତିରେ ନିଦ ହେଉଛି କେଉଁଠି ? ଦି' ଚାରି ପେଗ୍ ପକାଇ ଦେଲେ ବେଶ୍ ନିଦ ହୋଇଗଲା । ବିଷ୍ଣୁ ଚରଣ ପଟ୍ଟନାୟକ ନିଶକୁ ମୋଡ଼ି ପୁଲିସ ଅଫିସର ଭଙ୍ଗୀରେ ଉତ୍ତର ଦେଲେ । ବାପା ଛାଡ଼ିବାକୁ ନାରାଜ । ତମେ ଏକୁଟିଆ ପୁଲିସ୍ ଚାକିରି କରିଛ ନା ଅନ୍ୟମାନେ ବି କରୁଛନ୍ତି ? ବୃନ୍ଦାବନ (ବାପା ଓ ବିଷ୍ଣୁ ପିଉସାଙ୍କର ଆଉ ଜଣେ ସହପାଠୀ) ବି ତ ପୁଲିସ ଇନସ୍‌ପେକ୍ଟର । ସେ ତ ମଦମାଂସ କିଛି ଛୁଏଁ ନାହିଁ ।

Digitized by srujan ka@gmail.com

ସଂଧ୍ୟାରେ ତାକୁ ପୂଜାପାଠରେ ଦେଖିଲା ବେଳକୁ ତୁମକୁ........ କଥା ସରି ନାହିଁ । ଦୁର୍ଦ୍ଦାନ୍ତ ପୁଲିସ ଅଫିସର ବିଷ୍ଣୁ ଚରଣଙ୍କ ଭାଷା ନରମ ହୋଇଗଲା । ସେ ଭାବାକୁଳ ହୋଇ ଉଠିଲେ । କହିଲେ ହଁ ସେଇଟା ସତକଥା । ଦିନ ଯାକ ସେ ଯେମିତି ଚୋରିନାରୀ, ଦଗାବାଜମାନଙ୍କ ସହିତ ବୁଲେ ମୁଁ ବି ସେମିତି । ରାତିରେ ତା'ର ବି ମୋ ଭଳି ନିଦ ହୁଏନା । ମୁଁ ଦୁଇଚାରି ପେଗ୍ ପକାଇ ଦିଏ । ନିଦ ହୋଇଯାଏ । ସେ ମହାକାମ୍ପି, ମାଇଜର୍ । ସେ କୋଡ଼ିଏ ଟଙ୍କା ଖର୍ଚ୍ଚ କରିବ ? ତାର ସେତେ କଲିଜା କାହିଁ ? ସେ ଚାରି ପଇସା ଭୋଗ ଧୂପ ଠାକୁରଙ୍କ ଆଗରେ ଲଗାଇ ଦେଇ ମୁଣ୍ଡିଆ ମାରିଦିଏ । ହେ ଭଗବାନ କାନ, ନାକ ଧରୁଛି ମୋତେ ମାଫ କର । ତାର ନିଦ ହୋଇଯାଏ । ସକାଳୁ ସେ ଓ ମୁଁ ସମାନ । ମୋର କୋଡ଼ିଏ ଟଙ୍କା ଖର୍ଚ୍ଚ ମୁଁ ମଦ୍ୟପ । ସେ ଚାରି ପଇସା ଖର୍ଚ୍ଚରେ ଧାର୍ମିକ । କିନ୍ତୁ ଦିନଯାକ ଆମେ ସେଇ ଚୋରିନାରୀରେ ବ୍ୟସ୍ତ । ବାପାଙ୍କର କିଛି କହିବାର ନ ଥିଲା । ସେ ଚୁପ୍ କରି ଉଠି ଚାଲିଯାଇଥିଲେ । ମୋ ମନରେ କିନ୍ତୁ କଥାଟା ଖୁବ୍ ରେଖାପାତ କରିଥିଲା । ସତରେ ତ ! ଯେଉଁମାନେ ମନ୍ଦିର, ମସଜିଦ୍, ଗୀର୍ଜାକୁ ଯାଉଛନ୍ତି କେତେଜଣ ପରିବର୍ତ୍ତନ କରୁଛନ୍ତି ସେମାନଙ୍କର ଜୀବନଧାରାର ? ନା ଭଗବାନ ପୂଜା ଆଉ ଏକ ପ୍ରତାରଣା ତାଙ୍କ ପାଇଁ ? ପୂଜାପାଠ ପ୍ରତି ସେଇ ଦିନଠୁଁ ମୋର ଏକ ବିତୃଷ୍ଣା ଦେଖା ଦେଇଛି । ଏଇ ପୂଜା ପଦ୍ଧତି ମଣିଷକୁ ବନ୍ଦୀ କରିଛି । ଏକ ସୃଷ୍ଟିକର୍ତ୍ତା ସହିତ ସଂଯୋଗ ସ୍ଥାପନ କରିବା ପରିବର୍ତ୍ତରେ ଏହା ତାକୁ ଏକ ଶାଙ୍ଖୁଳିରେ ପରିଣତ କରିଛି । କାହିଁ ସମଗ୍ର ସୃଷ୍ଟି ଏବଂ ଏହାର ସମ୍ଭାବ୍ୟ ସ୍ରଷ୍ଟାକୁ ଖୋଜିବାର ଜିଜ୍ଞାସା ଆଉ କାହିଁ ଏକ ରୁଦ୍ଧ କକ୍ଷ ଭିତରେ ଧୂପଦୀପ ଦେଇ ଆପଣାର କୃତ ଅପରାଧ ପାଇଁ ସାର୍ଟିଫିକେଟ୍ ଯୋଗାଡ଼ କରିବାର ପ୍ରଚେଷ୍ଟା ?

ଆମ ଘରେ ସେଇଯୋଗୁଁ ପୂଜାପାଠ ହୁଏନା । କେବେ କାର୍ତ୍ତିକ ଯାଇ ମାର୍ଗଶୀର ଆସିଲା, ଏକାଦଶୀ ଯାଇ ସଂକ୍ରାନ୍ତି ହେଲାଣି ତାର କୌଣସି ଖବର ଆମ ପାଖରେ ନ ଥାଏ । ବୋଧହୁଏ ସେଇ ଅଲେଖ ଧର୍ମ ଗ୍ରହଣ କରିଥିବା ପିତାମହ, ଦାଦା ବିରଞ୍ଚିନାରାୟଣଙ୍କର ବଳିଷ୍ଠ ଚିନ୍ତାଧାରା ମୋର ରକ୍ତ ଭିତରେ ଏଇ ସଂସ୍କାରକୁ ଜନ୍ମ ଦେଇଛି । ପୂଜା ପାଠ, ପର୍ବ ପର୍ବାଣୀ ନହେବା ଫଳରେ କିନ୍ତୁ ଗୋଟାଏ କ୍ଷତି ଆମର ହୋଇଛି । ଆମ ସମାଜର ଏଇ ପର୍ବପର୍ବାଣୀ ସହିତ ଖାଦ୍ୟର କିସମ ବଦଳି ଥାଏ । ବିଭିନ୍ନ ପର୍ବ ପର୍ବାଣୀରେ ବିଭିନ୍ନ ପ୍ରକାରର ଖାଦ୍ୟମିଳେ ନାହିଁ । ସେଇ ଖାଦ୍ୟର ଭେରାଇଟି ବା ବିଭିନ୍ନତା ଆମ ଘରେ ମିଳେ ନାହିଁ । ସେଇ ଯୋଗୁଁ ବନ୍ଧୁବାନ୍ଧବମାନେ ପଠାନ୍ତି ଖାଇବାକୁ ପିଠା, ଚକୁଳି, ଆରିସା, କୋଳିଆଚାର, ଘାଣ୍ଟ ତରକାରୀ ଇତ୍ୟାଦି । ଏଇଟା କେବଳ ଆମ ଘରର ଦୁଃଖ ନୁହେଁ । ଅନେକ ଲୋକଙ୍କର ଘରେ ଏଇ ଅଭାବ ରହିଛି । ବିଜୁ ପଟ୍ଟନାୟକ ପିଠା, ଆରିସା ପିଠା ଖାଇବାକୁ ଭଲ ପାଆନ୍ତି । ଘରେ କିଏ କରିବ ? ବେଳେବେଳେ ଅନ୍ୟମାନେ ଦେଇ ଆସନ୍ତି । ମୋ ସ୍ତ୍ରୀ କମଳକୁମାରୀ ତାଙ୍କର ଭାଣିଜୀ । ସେ ମଧ୍ୟ ନେଇଯାଏ ବେଳେ ବେଳେ । ବୁଢ଼ା ହେଲେଣି, ଇମିତି ଦେଇଦେଲେ କେତେ ଖାଇବା

Digitized by srujan ka@gmail.com

ଉଚିତ ତାର ଖିଆଲ ରହେ ନାହିଁ । ସେଇଯୋଗୁଁ ପ୍ରକୃତ ଆତ୍ମୀୟମାନେ ନିଜେ ଅଳ୍ପ ଅଳ୍ପ ଖାଇବାକୁ ଦିଅନ୍ତି ବା ଖାନସମା ଖଇରାତିକୁ ଦେଇ ଆସନ୍ତି । କିନ୍ତୁ କେତେକ ତାହା କରନ୍ତି ନାହିଁ ।

ନିଜର କୌଣସି କାର୍ଯ୍ୟପାଇଁ ସେମାନେ ଅନ୍ୟର ଏବଂ ଜାତିର କ୍ଷତି କରୁଛନ୍ତି ତାହା ସେମାନେ ଜାଣି ପାରନ୍ତି ନାହିଁ । ମୋ ସ୍ତ୍ରୀଙ୍କର ବାପା ସ୍ୱର୍ଗତ ଉଦୟନାଥ ପଟ୍ଟନାୟକ ମଧ ଜଣେ ସଂସ୍କାରବାଦୀ ବ୍ୟକ୍ତି ଥିଲେ । ତାଙ୍କର ମାମୁଁ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ବ୍ରାହ୍ମ ଧର୍ମ ଗ୍ରହଣ କରିଥିଲେ । ହିନ୍ଦୁ ଧର୍ମର ପିତୁଳା ପୂଜା ଏବଂ ପାର୍ବଣ ପଦ୍ଧତି ବିରୁଦ୍ଧରେ ବିଦ୍ରୋହର ପ୍ରତୀକ ହେଉଛି ବ୍ରାହ୍ମଧର୍ମ । ପୃଥିବୀର ଇତିହାସରେ ବିଭିନ୍ନ ସମୟରେ ସଭ୍ୟତାର ଏକ ପର୍ଯ୍ୟାୟରେ ସବୁ ଦେଶରେ ପିତୁଳା ପୂଜା ଦେଖା ଦେଇଛି ଏବଂ ପରେ ତାହା ବିରୁଦ୍ଧରେ ସବୁ ସ୍ଥାନରେ ବିଦ୍ରୋହ ଘୋଷଣା କରାଯାଇଛି । ମହମ୍ମଦଙ୍କ ପ୍ରଚାରିତ ଇସଲାମ ଧର୍ମ ମଧ ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେତେବେଳେ ସେ ଦେଶରେ ପିତୁଳା ପୂଜା ବ୍ୟାପକ ଥିଲା ଏବଂ ମହମ୍ମଦ ଏହା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଆହମ୍ ଏକ- ଭଗବାନ ଏକ ଏହା ହିଁ ଥିଲା ତାଙ୍କର ବାର୍ତ୍ତା । ଏହା ତେଣୁ ହିନ୍ଦୁ ଧର୍ମର ପିତୁଳା ପୂଜା ବିରୁଦ୍ଧରେ ଉଦ୍ଦିଷ୍ଟ ନ ଥିଲା । ବ୍ରହ୍ମ ଏକ- ଏହା ନିରାକାର । ବ୍ରାହ୍ମ ଧର୍ମର ଏହି ବାଣୀ ଭାରତବର୍ଷରେ ଏକଦା ଉଦ୍‌ବେଳନ ସୃଷ୍ଟି କରିଥିଲା । କାରଣ ପିତୁଳା ପୂଜା କେବଳ କୁସଂସ୍କାରର କେନ୍ଦ୍ର ନ ଥିଲା, ଏହାକୁ କେନ୍ଦ୍ର କରି ଧର୍ମର ନିଗଡ଼ ସମାଜର ପ୍ରଗତିକୁ ଅବରୁଦ୍ଧ କରି ଦେଉଥିଲା । ଠିକ୍ ଏହିପରି ଏକ ପରିସ୍ଥିତିରେ ବିଦ୍ରୋହର ଗୈରିକ ପତାକା ଉତ୍ତୋଳନ କରିଥିଲା ବୌଦ୍ଧଧର୍ମ, ଜୈନଧର୍ମ ବା ମହିମା ଧର୍ମ ।

ବ୍ରାହ୍ମଧର୍ମ ଗ୍ରହଣ କରି ଲକ୍ଷ୍ମୀନାରାୟଣ ପଟ୍ଟନାୟକ କେବଳ ପିତୁଳା ପୂଜା କୁସଂସ୍କାର ବିରୁଦ୍ଧରେ ବ୍ରିଦ୍ରୋହ ଘୋଷଣା କରି ନ ଥିଲେ, ବ୍ରାହ୍ମ ଧର୍ମରେ ପ୍ରଚଳିତ ପଦ୍ଧତିର ମଧ ପରିବର୍ତ୍ତନ କରିଥିଲେ । ବ୍ରାହ୍ମଧର୍ମର ସବୁ ଉପାସନା ବଂଗଳାରେ ହେଉଥିଲା । ଗୀତ ମଧ ବଂଗଳା ଭାଷାରେ ହିଁ ଗାଉଥିଲେ । ଆଜି ମଧ ବ୍ରାହ୍ମ ଉପାସନା କହିଲେ ବଂଗଳା ଭାଷାରେ ପ୍ରାର୍ଥନା ହିଁ ବୁଝାଏ । ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଦ୍ୱିତୀୟ ସ୍ତ୍ରୀ (ପ୍ରଥମ ସ୍ତ୍ରୀ ମରିଯାଇଥିଲେ ବହୁଦିନରୁ) ବଂଗାଳୀ ହେଲେ ହେଁ ସବୁ ବ୍ରାହ୍ମ ଉପାସନା ଓଡ଼ିଆ ଭାଷାରେ ପ୍ରଚଳନ କରାଇଥିଲେ ଲକ୍ଷ୍ମୀନାରାୟଣ । ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର ବଡ଼ଝିଅ ସୁକୀର୍ତ୍ତିଙ୍କର ବିବାହ ବ୍ରହ୍ମାନନ୍ଦ ମହାପାତ୍ରଙ୍କ ସହିତ ହେବାକୁ ଥାଏ ବ୍ରାହ୍ମ ମତରେ । କଥିତ ଅଛି ଲକ୍ଷ୍ମୀନାରାୟଣ ନିମନ୍ତ୍ରଣ କରିବାକୁ ଯାଇ ପହଞ୍ଚିଲେ ରେଭେନ୍‌ସା କଲେଜର ଜଣେ ଖ୍ୟାତନାମା ଅଧ୍ୟାପକଙ୍କ ପାଖରେ । ସେ ଅଧ୍ୟାପକ ବ୍ରାହ୍ମ ଧର୍ମାବଲମ୍ବୀ । ଲକ୍ଷ୍ମୀନାରାୟଣଙ୍କୁ ସେ ପଚାରିଲେ ଯେ ଉପାସନା କେଉଁ ଭାଷାରେ ହେବ ? ଲକ୍ଷ୍ମୀନାରାୟଣ ଉତ୍ତର ଦେଲେ, ଓଡ଼ିଆରେ ହେବ ନିଶ୍ଚୟ । ଅଧ୍ୟାପକ କହିଲେ ଯେ ବଂଗଳା ଭାଷାରେ ନ ହେଲେ ସେ ଯୋଗଦେଇ ପାରିବେ ନାହିଁ । ବିକ୍ଷୁବ୍ଧ ଲକ୍ଷ୍ମୀନାରାୟଣ ଫେରି ଆପଣାର ବନ୍ଧୁ ପଣ୍ଡିତ ନୀଳକଣ୍ଠଙ୍କ ପାଖରେ ଏକଥା କହିଲେ । ପଣ୍ଡିତ ନୀଳକଣ୍ଠଙ୍କର ସାଟାୟାର ତୀବ୍ର ଓ

Digitized by srujan ka@gmail.com

ଶାଣିତ । ସେ କହିଲେ ଯେ ସେ କିମିତି ଆସିବେ ? ତାଙ୍କର ଭଗବାନ ପରା ବଂଗଳା ଭାଷା ଛଡ଼ା ଆଉ କୌଣସି ଭାଷା ଜାଣନ୍ତି ନାହିଁ ।

ପଣ୍ଡିତ ନୀଳକଣ୍ଠଙ୍କର ମୂଲ୍ୟାୟନ ଓଡ଼ିଶାରେ ହୋଇପାରି ନାହିଁ । ରାଜନୈତିକ ଉତ୍‌ଥାନ ପତନ ସହିତ ଏହି ପଣ୍ଡିତ ପ୍ରବର ଜଡ଼ିତ ହେବା, ଏଥିପାଇଁ ଅନେକ ପରିମାଣରେ ଦାୟୀ । କିନ୍ତୁ ସାହିତ୍ୟର ବହୁ ବିଭାବ, ଦର୍ଶନ ଏବଂ ଚିନ୍ତାର ବହୁ ବିଭାବକୁ ପ୍ରଭାବିତ କରିଥିବା ଏଇ ବିରାଟ ମନିଷୀଙ୍କର ପୂର୍ଣ୍ଣ ବିନିଯୋଗ ହୋଇପାରିଲା ନାହିଁ ବୋଲି ମୋର ମନେହୁଏ । ପଣ୍ଡିତଜୀ ଜଗନ୍ନାଥ ସଂସ୍କୃତିର ଏକ ବିରାଟ ବାବଦୂକ କିନ୍ତୁ ସେ କୁତ୍ରାପି ଜଗନ୍ନାଥ ଧର୍ମ ବୋଲି ଉଲ୍ଲେଖ କରି ନାହାନ୍ତି । ସବୁବେଳେ କହି ଆସିଛନ୍ତି ଯେ ଏହା ହେଉଛି ଜଗନ୍ନାଥ ସଂସ୍କୃତି । ଜଗନ୍ନାଥ ସଂସ୍କୃତିର ଏହି ବିରାଟ ବାବଦୂକଙ୍କର ସଂପାଦନାରେ ପ୍ରକାଶ ପାଉଥିଲା ନବ ଭାରତ । ସେଇ ନବ-ଭାରତରେ ପ୍ରକାଶ ପାଇଲା ଏକ କବିତା ସେତେବେଳକାର ବିପ୍ଳବୀ କବି ଅନନ୍ତ ପଟ୍ଟନାୟକଙ୍କର । ସେଥିରେ ଲେଖାଥିଲା—

''ଜଗନ୍ନାଥ ପଙ୍ଗୁ ଦେଖୁ,
ତଥାପି ତାର ପତାକା ଟେକୁ''

ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ପଣ୍ଡିତଜୀଙ୍କୁ ପଚରାଗଲା । ସେ ଉତ୍ତର ଦେଲେ, ଓଡ଼ିଆ ପିଲା ଗୋଟାଏ କିଛି ନୂଆ କଥା ଭାବୁଛି । ଲେଖୁଛି । ଲେଖୁ । ବ୍ୟସ୍ତ ହେଉଛ କାହିଁକି ? ତରୁଣମାନଙ୍କୁ ଉତ୍ସାହିତ କରିବାର ଇମିତି ଉଦାହରଣ କ୍ୱଚିତ ମିଳେ । ପଣ୍ଡିତଜୀଙ୍କର ଅପରାହ୍ନ ହୋଇ ସାରିଥିଲା । ଦିନେ ତାଙ୍କୁ ଦେଖା କରିବାକୁ ଗଲାବେଳକୁ ସେ ଜଣଙ୍କ ଉପରେ ଚିତ୍କାର କରି କହୁଛନ୍ତି ଦେଇଦିଅ, ସେଉଟାକୁ ବଂଗାଳୀମାନଙ୍କୁ । ସେଉଟା ସଖା, କୂଟନୀତିଜ୍ଞ, ପ୍ରାଜ୍ଞ, ଶ୍ରୀକୃଷ୍ଣଙ୍କୁ ନାରୀର କିଙ୍କର କରି ଦେଇଛି । ସେ ଜୟଦେବଟାକୁ ଦେଇଦିଅ ବଂଗାଳୀଙ୍କୁ । ଆମର ଦର୍‌କାର ନାହିଁ ତାକୁ । ଆଗରେ ରାଧାମୋହନ ଗଡ଼ନାୟକ ।

ପଣ୍ଡିତଜୀ ମାଛ ପ୍ରିୟ । ଜୀବନର ସଂଧ୍ୟା ଉପଗତ ହେଲାଣି । ଭଦ୍ରଖରେ ଛାତ୍ର ସଂଘର ବାର୍ଷିକ ସମ୍ମିଳନୀରେ ସେ ଭାଷଣ ଦେବାକୁ ଯାଇଥିଲେ । ଖାଦ୍ୟର ମେନୁରେ ମାଛର ଯେଉଁ ତାଲିକା ଥିଲା ତା' ଦେଖି ଆମେ ତଟସ୍ଥ । ଭାକୁର ମାଛର ପେଟି ଭଜା, ମୁଣ୍ଡ, ଛୋଟମାଛ ଇତ୍ୟାଦିର ଏକ ଲମ୍ବା ତାଲିକା । ପଣ୍ଡିତଜୀ ବହୁମୂତ୍ର ରୋଗୀ ଥିଲେ । ପ୍ରତିଦିନ ଇନସୁଲିନ ଦୁଇଥର ନିଅନ୍ତି । ଏବଂ ସେଇଥିରେ ବହୁମୂତ୍ର ରୋଗକୁ ସେ ଅଟକାଇ ଦେଲେ ଦୀର୍ଘ ୩୫ ବର୍ଷ । ଏବେ ବୋଧହୁଏ ସେଇ ରେକର୍ଡ଼କୁ ଭାଙ୍ଗିଥିଲେ ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି, ଅବସରପ୍ରାପ୍ତ ଆଇ.ଏ.ଏସ୍. । ଖରା ବର୍ଷା ରାତି ଚାରିଟାରୁ ଉଠି ସେ ସତ୍ୟସାଇ ବାବାଙ୍କ ଭଜନ ବୋଲି ବୋଲି ଚାଲନ୍ତି ପ୍ରାତଃ ଭ୍ରମଣରେ । ହାତରେ ଏକ ମୁଣି । ଫୁଲ ତୋଳିବେ ପୂଜା ପାଇଁ । ପ୍ରତିଦିନ ସକାଳେ ତାଙ୍କର ସେଇ ବାଡ଼ି ଖଣ୍ଡିଏ ହାତରେ ଧରି ଯାତ୍ରା । ସମସ୍ତଙ୍କର ଏକ ପରିଚିତ ବ୍ୟକ୍ତିତ୍ୱ ।

Digitized by srujan ka@gmail.com

ଏଇ ଲେଖାକୁ ରିଭାଇଜ୍ କଲାବେଳକୁ ରବିବାବୁ ଆଉ ନାହାନ୍ତି । ଚାଲିବା ଏବଂ ଉତ୍ତେଜନା ବର୍ଜିତ (Tension free) ଜୀବନ ବୋଧହୁଏ ବହୁମୂତ୍ର ରୋଗକୁ ଜୟ କରିବାର ଏକ ପ୍ରକୃଷ୍ଟ ଉପାୟ । ନୀଳକଣ୍ଠଙ୍କର ପୁତ୍ର ଅଶୋକ ଦାସ ମଧ ଉତ୍ତରାଧିକାରୀ ସୂତ୍ରରେ ପାଇଥିଲେ ବହୁମୂତ୍ର ରୋଗକୁ । ସେ କିନ୍ତୁ ବେଶିଦିନ ରୋଗକୁ ଅଟକାଇ ପାରିଲେ ନାହିଁ । ବହୁମୂତ୍ର ରୋଗ ତାଙ୍କର କିଡନିକୁ ନଷ୍ଟ କରିଦେଲା । ଏବଂ ସେ ଚିକିତ୍ସା କରିବାକୁ ଯାଇ ଦିଲ୍ଲୀଠାରେ ତାଙ୍କର ପରଲୋକ ହୋଇଗଲା । ଶ୍ରୀ ଅଶୋକ ଦାସ ଛାତ୍ର ଜୀବନରେ ଏକ ତୁଙ୍ଗ ନେତା ଥିଲେ । ରେଭେନ୍ସା କଲେଜରୁ ବହିଷ୍କୃତ ହୋଇ କଲିକତାରେ ପାଠ ପଢ଼ିଥିଲେ । ସୁଭାଷ ଚନ୍ଦ୍ର ବୋଷ ଯେତେବେଳେ ଫରୱାର୍ଡ ବ୍ଲକ ଗଠନ କଲେ ସେତେବେଳେ ସେ ଏହି ଦଳରେ ଯୋଗ ଦେଇଥିଲେ । ପରବର୍ତ୍ତୀ କାଳରେ ସେ ସୋସାଲିଷ୍ଟ ପାର୍ଟିରେ ଯୋଗଦେଇଥିଲେ । କିଛି କାଳପାଇଁ ସେ ଓଡ଼ିଶାର ଆଡଭୋକେଟ୍ ଜେନେରାଲ ହୋଇଥିଲେ । ଐତିହାସିକ ସୀମା ଆନ୍ଦୋଳନ (୧୯୫୬) ରେ ସେ ଯୋଗ ଦେଇଥିଲେ ।

ଅଶୋକ ଦାସ ଏବଂ ତାଙ୍କର ପିତା ନୀଳକଣ୍ଠ ଦାସଙ୍କ ସହିତ ମାଲି ମକଦ୍ଦମା ଚାଲିଥିଲା ବହୁ ବର୍ଷ ଧରି । ଏହା ବ୍ୟକ୍ତିଗତ କଥା ହେଲେ ହେଁ ଏହି ମକଦ୍ଦମା ଓଡ଼ିଶାର ଜାତୀୟ ଆନ୍ଦୋଳନ ଉପରେ ଅଶୁଭ ସୂଚନା ବହନ କରି ଆଣିଥିଲା । କାରଣ ଦୁହେଁ ଆପଣାର ନିଜସ୍ୱ ଶକ୍ତିରେ ଥିଲେ ବେଶ୍ ବଳଶାଳୀ । ଏହି ମକଦ୍ଦମାର କିପରି ସମାପ୍ତି ହେଲା ତାହା ମୁଁ କହି ପାରିବି ନାହିଁ । କିନ୍ତୁ ଏହାର କୁପ୍ରଭାବ ବହୁଦିନ ବ୍ୟାପୀ ପଡ଼ିଥିଲା, ଓଡ଼ିଶାର ଜାତୀୟ ଆନ୍ଦୋଳନରେ । ଏ ସଂପର୍କରେ ମୋର ସହଯୋଦ୍ଧା ଓ ନେତା ଶ୍ରୀ ମନମୋହନ ମିଶ୍ର କୁଆଡ଼େ ଜଡ଼ିତ ଥିଲେ ବୋଲି ଶୁଣି ତାଙ୍କୁ ମୁଁ ପଚାରିଥିଲି ଏଇ ମକଦ୍ଦମା ବିଷୟରେ । ସେ କେବଳ ଏତିକି କହିଲେ ଯେ, ଏହା ଏକ ଦୁଃଖାବହ ଘଟଣା । କାରଣ ବାପ ପୁଅକୁ ପୁତ୍ର ବୋଲି ଅସ୍ୱୀକାର କରିବା ଅତ୍ୟନ୍ତ ମର୍ମନ୍ତୁଦ । ଅଶୋକ ବାବୁ ଯେପରି ଥିଲେ ତରୁଣମାନଙ୍କର ନେତା ଠିକ୍ ସେଇପରି ନୀଳକଣ୍ଠ ଦାସ ଥିଲେ ଓଡ଼ିଶାର ପ୍ରବୁଦ୍ଧ ଜନନାୟକ । କିନ୍ତୁ ସେ ଅଧ୍ୟାୟର ସମାପ୍ତି ଘଟିଛି । ତାକୁ ମନେ ନ ପକାଇବା ଭଲ । ଏହା କିନ୍ତୁ ସତ୍ୟ ଯେ ଏହି ଘଟଣାର ପ୍ରଭାବ ବେଶ ପଡ଼ିଥିଲା, ସମସାମୟିକ ବ୍ୟକ୍ତିମାନଙ୍କ ଉପରେ ।

ମୋ ଗାଁ ସହିତ ମୋର ପରିଚିତି ନ ଥିଲା । ମୁଁ ପ୍ରଥମ ସାଧାରଣ ନିର୍ବାଚନ ପୂର୍ବରୁ ଜେଲରୁ ଖଲାସ ହେଲି । ମୋତେ ଅନ୍ତରୀଣ ବନ୍ଦୀ କରାଗଲା ଅନୁଗୋଳରେ । କାରଣ ଅନୁଗୋଳ ମୋର ଘର । ସେତେବେଳେ ମୁଁ ଜାଣିଲି ଯେ ପୁଲିସର ଦୟାରୁ ମୁଁ ଅନୁଗୋଳ ସହର ସମେତ ମୋ ଗାଁ ଏବଂ ମୋର ବନ୍ଧୁବାନ୍ଧବଙ୍କ ଗାଁମାନଙ୍କରେ ମୋର ପରିଚିତି ହୋଇ ଯାଇଛି । ଏବଂ ମୋତେ ଦେଖିବାକୁ ଦଳ ଦଳ ଲୋକ ଆସୁଛନ୍ତି ଗାଁରୁ । ବାଟରେ ଚାଲିଲାବେଳେ ମଧ

Digitized by srujan ka@gmail.com

ପିଲାମାନେ ଅନଉଛନ୍ତି ମୋତେ, ବିଭିନ୍ନ ଘରୁ ଝିଅ ବୋହୂମାନେ କବାଟ ଫାଙ୍କରୁ ଅନଉଛନ୍ତି ମୋତେ, କିଛି ଭୟ, କିଛି ଆଗ୍ରହର ସହିତ ।

ଘଟଣା କଣ ?

ଘଟଣାଟା ଏଇପରି । ମୁଁ ପଳାତକ ହେଲାବେଳକୁ ମୋର ପରିଚିତି ଥିଲା ଛାତ୍ର ସମାଜ ଭିତରେ ଏବଂ କିଛି କିଛି ରେଳବାଇ ଶ୍ରମିକ ମାନଙ୍କ ଭିତରେ । ମୋତେ ଧରିବା ପାଇଁ ପୁଲିସ୍ ଖୋଜୁଥିଲା । କିନ୍ତୁ ବିଶେଷ କିଛି ବିବରଣୀ ମଧ ନ ଥିଲା ସେମାନଙ୍କ ପାଖରେ । ବୟସ ମୋର ସେତେବେଳକୁ ସତର ଅଠର ବର୍ଷ ମାତ୍ର । ପୁଲିସ୍ ଖୋଜିଲା ମୋତେ ଅନୁଗୋଳ ଭିତରେ, ଯେଉଁଠି ମୋର ପରିଚିତି ଥିଲା ଶୂନ୍ । ମୋ ନାମ ଲୋକେ ଜାଣି ନ ଥିଲେ, ଯେଉଁଠି କେତେଜଣ ଜାଣିଥିଲେ ସେମାନେ ଜାଣିଥିଲେ ମୋ ଡାକ ନାମରେ । ମୋର ଅନୁଗୋଳ ଯିବାର ପ୍ରଶ୍ନ ମଧ ଉଠୁ ନ ଥିଲା । ତେଣୁ ପୁଲିସ୍ ମୋତେ ଧରିବା ପାଇଁ ବ୍ୟର୍ଥ ହେବା ସ୍ୱାଭାବିକ । ପୁଲିସ୍ ଯେତିକି ବ୍ୟର୍ଥ ହେଲା, ମୋର ଭାଉ ସେତିକି ବଢ଼ିବାକୁ ଲାଗିଲା । ଏତିକିବେଳେ ଅନୁଗୋଳରେ ଗୋଟାଏ ସର୍ବୋଦୟ ମେଳା ଅନୁଷ୍ଠିତ ହେଲା । ଭାରତର ସବୁ ଆଡ଼ରୁ ପ୍ରତିନିଧିମାନେ ଆସିବେ । କିଏ ପ୍ରଚାର କରିଦେଲା (କି ପୁଲିସ୍ ନିଜେ ପ୍ରଚାର କଲା) ଯେ କମ୍ୟୁନିଷ୍ଟମାନେ ଗୁପ୍ତରେ ଅନୁଗୋଳ ଭିତରେ ପ୍ରବେଶ କରିଛନ୍ତି । ତା'ହେଲେ ନିଶ୍ଚୟ ମୁଁ ଯାଇଥିବି ତା'ର ନେତୃତ୍ୱ ନେଇ । ମୋର ବୟସ କେତେ, କଣ ମୋର ଅଭିଜ୍ଞତା, କଣ ପରିଚୟ ମୋର ଅନୁଗୋଳ ସହିତ ପଚାରୁଛି କିଏ ? ଖୋଜ ଖୋଜ ତାକୁ । ଗାଁକୁ ଗାଁ ଖୋଜି ଚାଲିଲେ । ରାତି ଅଧିଆ ଚଢ଼ାଉ । ମୋତେ ତ ପାଇବା ପ୍ରଶ୍ନ ଉଠୁନାହିଁ । କିନ୍ତୁ ସେଇ ଅଂଧାର ରାତିରେ ଯିଏ ଯେଉଁଠି ପଳାଇଲା ସେ ନିଶ୍ଚୟ ମୁଁ । କିଏ ନଈରେ ମାଛ ଚୋରି କରୁଥିଲା, କିଏ କାହା କଦଳୀ ବାରିରୁ କଦଳୀ ଚୋରି କରୁଥିଲା, କିଏ କେଉଁ ଝିଅକୁ ଭେଟିବା ପାଇଁ ପାଚେରୀ ଡେଇଁ ପଶିଥିଲା । ସମସ୍ତେ ପୁଲିସକୁ ଦେଖି ପଳାଇଲେ ଅଂଧାର ଭିତରେ । ଅଥଚ ଯିଏ ପଳାଇଲା ସେ ହେଲି ମୁଁ । ଗପ, କାହାଣୀ ଆରମ୍ଭ ହେଲା । ଡେଙ୍ଗା, ଚଉଡ଼ା, ବଳ ସବୁ ଅତିରଞ୍ଜିତ କାହାଣୀ । କିଏ କହିଲା ଗୋଡ଼ରେ ତାର ମନପବନ କଠଉ । ଗାଁ ମାଇପେ ମୋ ନାଁରେ ଗପ ଯୋଡ଼ିବାକୁ ଖୋରାକ୍ ମିଳିଗଲା । କେତେ ଲୋକ ବାଡ଼ିଆ ଖାଇଲେ । କହ ଚିହ୍ନିଛୁକି ନାହିଁ ? ମାଡ଼ ଖାଇ କିଏ ହୁଏତ କହିଲା ଯେ ହଁ, ଫରେଷ୍ଟ ଅଫିସର ଶଶୀବାବୁଙ୍କ ପୁଅ । ଭଲ ନାମ ଜାଣି ନାହିଁ । ଜାଣିଛୁ କିନ୍ତୁ ନାମ ଜାଣିନାହୁଁ ? ହେଲା ଆହୁରି ମାଡ଼ । ଏ ପାଲା ଚାଲିଲା ଅନେକ ଦିନ । କିନ୍ତୁ ଗଳ୍ପ କାହାଣୀ ଚାଲିଲା ବଢ଼ି ବଢ଼ି ।

ମୁଁ ଜେଲଖାନାରୁ ଖଲାସ ହେଲି ସକାଳେ । ରାତିରେ ଗାଡ଼ି । ମୋ ସାନଭାଇ ଆସିଥିଲା ଜେଲ୍ ଗେଟକୁ । ବାପା ବଦଳି ହୋଇ ଆସିଥାନ୍ତି ଅନୁଗୋଳକୁ ଅବସର ନେବାର ଉପକଣ୍ଠରେ । ଟାଉନ୍‌ରେ ଘର ନାହିଁ । ଭଡ଼ାଘରେ ଥାଆନ୍ତି । ଛୋଟ ଘରଟିଏ ତୋଳୁଥାନ୍ତି ଟାଉନ୍‌ରେ । ଆମେ

Digitized by srujan ka@gmail.com

ଦଳେ ଏକା ସଂଗରେ ଖଲାସ ହୋଇଥାଉ । ସେତେବେଳେ ମହାନଦୀରେ ପୋଲ ହୋଇ ନଥାଏ । ମେରାମୁଣ୍ଡଳିରେ ଟ୍ରେନ ପହଞ୍ଚିଲା ବେଳକୁ ରାତି ଦଶଟା । ମେରାମୁଣ୍ଡଳିରୁ ଅନୁଗୋଳ ସମ୍ବଲପୁର ପ୍ରଭୃତି ଯିବାକୁ ୫/୬ଟା ବସ୍ । ମୋତେ ଅନୁଗୋଳ ଯାଉଥିବା ଏକ ବସ୍‌ରେ ବସାଇ ଦେଇ ସେ ଗଲା ଟିକଟ ଆଣିବାକୁ । ମୁଁ ଡ୍ରାଇଭରର ଠିକ୍ ପଛପଟେ ଫ୍ରଣ୍ଟ ସିଟ୍‌ରେ ବସି ରହିଛି । ଆଗରେ ଡ୍ରାଇଭର । ହଠାତ୍ କିଏ ଜଣେ ଆସି ତାକୁ କହିଲା, ଆଜି ସାବଧାନରେ ଯିବୁ । ବାଟରେ କଣ ହୋଇଯାଇପାରେ ? ଗିରିଜା ପଟ୍ଟନାୟକ କୁଆଡ଼େ ଯାଉଛି ବସ୍‌ରେ । କଣ ହୋଇଯିବ କେଜାଣି ? ପୁଲିସ୍ ଖୋଜୁଛି ତାକୁ । ପାଉ ନାହିଁ । ଫଟୋ ତ ନାହିଁ ପାଇବ କେମିତି ? ଗଳ୍ପରୁ ଶୁଣି ସେମାନେ ଖୋଜୁଛନ୍ତି ଲମ୍ବା ଚଉଡ଼ା, ବିଶାଳ ବପୁର ମଣିଷକୁ । ସେ କଳ୍ପନାର ମଣିଷ ଆଉ ମୁଁ ? ଡ୍ରାଇଭର ରୀତିମତ ଥରିବାକୁ ଆରମ୍ଭ କଲା । ମୁଁ ଶୁଣି ପାରୁଚି କଥାସବୁ । ଭାଇ କଣ କରିବା ? ମା ବୁଢ଼ୀ ଠାକୁରାଣୀକୁ ଡାକ । ଆଉ ଉପାୟ କଣ ? ସେ ଡାକିବାକୁ ଲାଗିଲା । ଭାଇ ଟିକଟ ଆଣିଲା । ଦିହେଁ ଚାଲିଲୁ । କେହି ମୋତେ ଅନେଇ ନାହାନ୍ତି ମଧ୍ୟ । ଖୋଜୁଛନ୍ତି ସେଇ ଭୟାନକ ମଣିଷକୁ । ଗାଡ଼ିରୁ ଓହ୍ଲାଇଲାବେଳେ ମୁଁ ଧନ୍ୟବାଦ ଦେଲି ଡ୍ରାଇଭରକୁ ଏବଂ କହିଲି ଯେ ତମେ ଖୋଜୁଥିବା ବ୍ୟକ୍ତି ଜଣକ ମୁଁ ! ଦେଖ ତାର ଅବସ୍ଥା ! ସେ ମୋତେ ସାଷ୍ଟାଙ୍ଗ ପ୍ରଣିପାତ କଲା ଏବଂ ସାଂଗେ ସାଂଗେ ବୁଢ଼ୀ ଠାକୁରାଣୀଙ୍କୁ ବି ଜଣାଇଲା କୃତଜ୍ଞତା ।

ଓହ୍ଲାଇଲି ବସ୍‌ରୁ । ଚାରିଆଡ଼ ଅଂଧାର । ବିଜୁଳି ଲାଇନ୍ ଯାଇ ନାହିଁ ସେ ପର୍ଯ୍ୟନ୍ତ । ରିକ୍ସା ବି ନାହିଁ । ଆମେ ଦି'ଭାଇ ଚାଲିଲୁ ଅମଲାପଡ଼ା ଷଷ୍ଠ ଲାଇନ୍‌ରେ ବାପା ରହୁଥିବା ଘରକୁ । ବାଟଯାକ ଗଛ । ଦି' ଚାରିଟା ଗଛ ପରେ ଜଣେ କିଏ ଛିଡ଼ା ହୋଇଛି । ସକାଳୁ ବି ସେଇ ଅବସ୍ଥା । ଯୁଆଡ଼େ ଗଲେ ଲୋକେ ଅନେଇଲେ, ଆଙ୍ଗୁଠି ଠାରି ଦେଖାଇଲେ ବେଶ୍ କିଛି କାଳ । ଜନରବ, କାହାଣୀ, ଗଳ୍ପ କଣ କରିପାରେ ଏ ତାହାର ଏକ ଛୋଟ ଉଦାହରଣ ।

ମୋ ପାଇଁ ତ ଅବସ୍ଥା ଏପରି, ଯେଉଁମାନେ ପ୍ରକୃତରେ ପ୍ରବାଦ ପୁରୁଷ । ସେମାନଙ୍କ ଅବସ୍ଥା କଣ ହୋଇଥିବ ଅନୁମାନ କରାଯାଇପାରେ । ଏକ ପ୍ରକାର ଅତିରଞ୍ଜନ ବେଶି ବଢ଼ିଗଲେ ବିପଦ ବଢ଼େ । କାରଣ ତମଠାରୁ ଲୋକେ ଅନେକ ବେଶି ଆଶା କରନ୍ତି । ଯାହା ସେ ଲୋକପକ୍ଷରେ ପୂରଣ କରିବା ସମ୍ଭବ ନୁହେଁ । ଏହାର ଆଉ ଗୋଟାଏ ସ୍ତରରେ ଦେବତ୍ୱ ଆରୋପିତ ହୁଏ ଯାହାକୁ ଇଂରାଜୀରେ କହନ୍ତି ଡେଇଫିକେଶନ ତାହା ଆରୋପିତ ହେଲେ ଏକ ଦିଗରେ ଲୋକମାନଙ୍କର ଆଶା ବହୁତ ବଢ଼ିଯାଏ ଏବଂ ଅନ୍ୟଦିଗରେ ସବୁ କୁକର୍ମ ମଧ୍ୟ ''ଲୀଳା'' ରେ ପରିଣତ ହୁଏ ।

ଜନ୍ମ ହୋଇଥିଲି ଗଭୀର ଅରଣ୍ୟ ଭିତରେ । ସେଇଠି ଥିଲେ କିନ୍ତୁ ଅନେକ ବଂଗାଳୀ କଣ୍ଟ୍ରାକ୍ଟର । ସେମାନଙ୍କ ମଧ୍ୟରେ ନରେନ୍ ସୁର, ଧୀରେନ୍ ସୁରଙ୍କ ନାମ ମନେ ପଡୁଛି । କଟକରେ ସେମାନେ ପରେ ପ୍ରତିଷ୍ଠିତ ବ୍ୟବସାୟୀ ହୋଇଥିଲେ । ନରେନ୍ ସୁରଙ୍କ ଝିଅ ବିବାହକୁ ନିଜେ ବିସ୍‌ମିଲ୍ଲା ଆସିଥିଲେ ସାହାନାଇ ବଜାଇବା ପାଇଁ । ଝିଅ ବିଦାବେଳେ ଧରିଲେ ସାହାନାଇ

Digitized by srujan ka@gmail.com

ନିଜେ ବିସ୍‌ମିଲ୍ଲା । ଉପସ୍ଥିତ ସମସ୍ତଙ୍କ ଆଖିରୁ ଲୁହ ଝରିଲା । ନିଜେ ବିସ୍‌ମିଲ୍ଲା ମଧ କାନ୍ଦୁଥିଲେ । ସେ ଦୃଶ୍ୟ ମୁଁ ଭୁଲି ପାରିବି ନାହିଁ ।

ଏଇ ବଂଗାଳୀମାନେ ସେଇ ଅରଣ୍ୟ ଭିଂତରେ ରବୀନ୍ଦ୍ର ଜୟନ୍ତୀ ଯେପରି ପାଳନ କରୁଥିଲେ ଠିକ୍ ସେଇପରି ଶରତ ଚନ୍ଦ୍ର, ବଙ୍କିମ ଚନ୍ଦ୍ର ସଂଧ୍ୟା ପାଳନ କରୁଥିଲେ । ମୋ ବାପା ଓ ଦାଦା ବଂଗଳା, ହିନ୍ଦୀ ଖୁବ୍ ଭଲ ଭାବରେ କହି ପାରୁଥିଲେ । ସେଇ ସଂପର୍କର ଫଳ ସ୍ୱରପ ମୋ ସାନଭାଇର ଡାକ ନାମ 'ଖୋକା' ହୋଇଥିଲା । ଏବଂ ପରେ ତାହା ଅପଭ୍ରଂଶ ହୋଇ ଖୁକୁ ହୋଇଥିଲା ।

ଏଇ ସମୟରେ ସେଠାରେ ଜଣେ ବଂଗୀୟ ପରିବାରର ଗୋଟିଏ ଝିଅର ପରଲୋକ ହୋଇଯାଏ । ସେ ଭଲ ବୀଣା (କି ସିତାର) ବଜାଇ ପାରୁଥିଲା । ମୃତ୍ୟୁ ପରେ ବି କୁଆଡ଼େ ସେ ବାଦ୍ୟ ଯନ୍ତ୍ରକୁ ଏକୁଟିଆ ଏକ ଘରେ ରଖିଦେଲେ ସେ ବାଦ୍ୟ ଯନ୍ତ୍ରର ଝଂକାର ଶୁଣିବାକୁ ମିଳୁଥିଲା । ସେ ଝିଅଟି ମୋତେ ଖୁବ୍ ଭଲପାଉଥିଲା କୁଆଡ଼େ । ମୋତେ ଏକୁଟିଆ ସେ ଘରେ ଛାଡ଼ିଦେଲେ କୁଆଡ଼େ ଝଂକାର ଆହୁରି ଜୋର୍‌ରେ ବାଜି ଉଠୁଥିଲା । ମୋର କିନ୍ତୁ କିଛି ମନେ ନାହିଁ । ଏଇ ସମୟରେ ବାପାଙ୍କ ବଦଳି ହୁଏ ଲବଙ୍ଗୀ ନାମକ ସ୍ଥାନକୁ । ଲବଙ୍ଗୀ ସେତେବେଳେ ଘନ ଜଂଗଲ ପରିବେଷ୍ଟିତ । ଜଂଗଲର ଉପକଣ୍ଠରେ ଗୋଟିଏ ରେଞ୍ଜ ଅଫିସର କ୍ୱାଟର୍ସ ପାଖରେ ଫରେଷ୍ଟରଙ୍କ କ୍ୱାଟର୍ସ ଏବଂ ଉଭୟ ଘରର ଠିକ୍ ପଛପଟେ ଏକ ଉଚ୍ଚ କାନ୍ଥ ବିଶିଷ୍ଟ କାଇନ ହାଉସ୍ (ବଣରେ ଚରୁଥିବା ଗାଈ ଗୋରୁଙ୍କୁ ଯେଉଁଠି ଅଟକ ରଖାଯାଏ) ସେଇଠି ରାମ ଅବତାର ସିହ୍ନା ନାମକ ଜଣେ ବ୍ୟକ୍ତି ରେଞ୍ଜ ଅଫିସର ଥିଲେ । ସେ ସେଠାରେ ତାଙ୍କର ସ୍ତ୍ରୀ, ପିଲାଛୁଆ ପୁତୁରା, ଝିଆରୀ ପ୍ରଭୃତି ଏକ ବିରାଟ ପରିବାରକୁ ନେଇ ରହୁଥିଲେ । ସେ ଥିଲେ ବିହାରର ଲୋକ । ଅରଣ୍ୟମାନଙ୍କରେ ପ୍ରସିଦ୍ଧ ବ୍ଲାକ ୱାଟର ଫିଭରରେ ପରିବାରର ସମସ୍ତେ ମରିଗଲେ ଗୋଟାଏ ସପ୍ତାହ ଭିତରେ । ଏ ରୋଗ ଆଜିକାଲି ଆଉ ପ୍ରାୟ ନାହିଁ । ବ୍ଲାକ୍ ୱାଟର ଫିଭର ଥରେ ହେଲେ ବଂଚିବା କଷ୍ଟ । ଦୁଇଥର ହେଲେ ତ ବଂଚିବାର ପ୍ରଶ୍ନ ଉଠୁନାହିଁ । ମୁଁ ଜାଣିବାରେ ମୋର ମଉସା ଲକ୍ଷ୍ମୀଧର ପଟ୍ଟନାୟକଙ୍କୁ ତିନିଥର ସେଇ ଜ୍ୱର ହୋଇଛି, କିନ୍ତୁ ସେ ବଂଚିଯାଇଛନ୍ତି ମରଣ ମୁହଁରୁ । ଏବଂ ଅଶୀ ବର୍ଷରୁ ବେଶୀ ସମୟ ମଧ ବଂଚି ରହିଲେ ସେ । ରାମ ଅବତାର ସିହ୍ନା ସେଠାରୁ ବିଦାୟ ନେଲାବେଳେ ଗଲେ ଏକୁଟିଆ । ସେଇ ଘରେ କୁଆଡ଼େ ଭୂତ ଅଛନ୍ତି ବୋଲି ସଂବାଦ ପ୍ରଚାରିତ ହେଲା । ବାପାଙ୍କର ବଦଳି ହେଲା ସେଇଠିକୁ । ବାପା ବିବାହ କଲାପରେ ସବୁବେଳେ ବୋଉକୁ ସାଂଗରେ ନେଇଛନ୍ତି ରହଣି ସ୍ଥାନକୁ ଯାହା ଅସୁବିଧା ହେଉ ପଛକେ । ଲବଙ୍ଗୀକୁ ମଧ ବାପା ବୋଉକୁ ନେଇଗଲେ ସାଂଗରେ । ପାଖ ଘରେ ଜନାର୍ଦ୍ଦନ ପଣ୍ଡା, ତାଙ୍କର ସ୍ତ୍ରୀ ଏବଂ ଏକମାତ୍ର ଝିଅ ବୁଇ (ଯେ ପରବର୍ତ୍ତୀ କାଳରେ ସମ୍ବଲପୁରର ପ୍ରସିଦ୍ଧ ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ବୋହୂ ହୋଇଥିଲା) । ଦିନେ ରାତିରେ ବାପାଙ୍କୁ ଟିକିଏ ଜ୍ୱର

Digitized by srujan ka@gmail.com

ହୋଇଛି । ବାପା ଘରର ପଛପଟ ବାରଣ୍ଡାରେ ଶୋଇଛନ୍ତି, ବୋଉ ପାଖରେ ବସିଛି । ହଠାତ୍ ବୋଉ ଦେଖିଲା ଯେ ଦଳେ ଭୂତ ଚାଲିଛନ୍ତି ଧାଡ଼ି ଧାଡ଼ି ହୋଇ । ବାପାଙ୍କୁ ସେ ଡାକି ଦେଖାଇଲା । ବାପା ଦେଖିଲେ । ବୋଉ ଡରିଯିବ ବୋଲି କଥାଟାକୁ ବାଆଁରେଇ ଦେଲେ । ବାପା ମୋର ଭୂତ ବିଶ୍ୱାସ କରନ୍ତି କିନ୍ତୁ ଭୟ କରନ୍ତି ନାହିଁ । ତାଙ୍କର ଯୁକ୍ତି ହେଲା, ''ଆମେ ଅଛୁ, ସେମାନେ ଅଛନ୍ତି, ଭୟ କାହିଁକି ?'' ଭୂତସବୁ କୁଆଡ଼େ ଯାଇ ସେଇ ଜୋଇନ୍ ହାଉସ୍‌ର କାନ୍ଥ ଡେଇଁ ଆର ପଟକୁ ଚାଲିଗଲେ । ଜନାର୍ଦ୍ଦନ ପଣ୍ଡା ଏବଂ ତାଙ୍କର ସ୍ତ୍ରୀ ମଧ୍ୟ ସେଇପରି ଦୃଶ୍ୟ ଦେଖିଛନ୍ତି ବୋଲି ସକାଳେ ଜଣା ପଡ଼ିଲା । ଦୁଇ ସ୍ତ୍ରୀ ଏକ ଟ୍ରକରେ ବସି ଅନୁଗୋଳ ଟାଉନକୁ ପଳାଇଲେ । କିନ୍ତୁ ବାପା ଓ ଜନାର୍ଦ୍ଦନ ବାବୁ ରହିଗଲେ ସେଇପରି । ମାସର ପହିଲାରେ ସେମାନେ ଆସିଲେ ଅନୁଗୋଳ ଟାଉନକୁ । ତାଙ୍କର ଡି.ଏଫ୍.ଓ. ଏବଂ କନ୍‌ଜରଭେଟର ପଚାରିଲେ ଘଟଣା କଥା । ଦୁଇ ସ୍ତ୍ରୀଙ୍କର ନିବେଦନ ହେତୁ ବାପା ଓ ଜନାର୍ଦ୍ଦନ ପଣ୍ଡାଙ୍କୁ ସେଠାରୁ ବଦଳି କରି ଦିଆଗଲା । ଏବଂ ଦୁର୍ଦ୍ଧର୍ଷ ରେଞ୍ଜ ଅଫିସର ଅବଦୁଲ୍ଲାଙ୍କୁ ସେଠାରେ ଅବସ୍ଥାପିତ କରାଗଲା । ଅବଦୁଲ୍ଲା ଥିଲେ ଜଣେ ସାହସୀ ବ୍ୟକ୍ତି । ତାଙ୍କ ପାଖରେ ଥିବା ଡବଲ ବ୍ୟାରେଲ ଗନ୍ ଏବଂ ଏକ ରାଇଫଲ ତାଙ୍କର ଶକ୍ତିର ଉତ୍ସ ଥିଲା । ସେ ଭୂତ ଗଳ୍ପକୁ ଯୁବକମାନଙ୍କର ଦୁର୍ବଳତା ବୋଲି ଭାବି ଲବଙ୍ଗୀ ଗଲେ । ସେ ଯାଇ ପହଞ୍ଚିଲେ ଲବଙ୍ଗୀରେ । ରାତିରେ ସେ ଭୂତମାନଙ୍କୁ ଦେଖି ତାଙ୍କ ଡବଲ ବ୍ୟାରେଲ ଗନ୍‌ରୁ ଗୁଳି ମାରନ୍ତି ଏବଂ ଦେଖାଯାଏ ତାଙ୍କ ଶୋଇବା ସ୍ଥାନ ଚାରିପଟରେ ସେମାନେ ନାଚନ୍ତି ଉଦ୍ଦଣ୍ଡ ଭାବରେ । ତା'ପରେ ତାଙ୍କୁ ଦେଖାଯାଏ ମୂର୍ଚ୍ଛିତ ଅବସ୍ଥାରେ । ଏଇ ରିପୋର୍ଟ ପାଇଲା ପରେ ତତ୍‌କାଳୀନ କମିଶନର, କଞ୍ଜରଭେଟର, ଏସ୍.ପି. ସମସ୍ତେ ଯାଇ ପହଞ୍ଚନ୍ତି । ସେମାନେ କୁଆଡ଼େ ଏହାର ଚାକ୍ଷୁସ ପ୍ରମାଣ ପାଇ ସେ ସମଗ୍ର କମ୍ପ୍ଲେକ୍ସରେ ନିଆଁ ଲଗାଇ ଦିଅନ୍ତି । ସେଠାରୁ ଫରେଷ୍ଟ ଅଫିସ ଉଠିଆସେ ନୂଆ ସ୍ଥାନକୁ । ଏବେ ମଧ୍ୟ ସେ ପୋଡ଼ା ଘରର ଅବଶିଷ୍ଟାଂଶ ସେଠାରେ ଦେଖାଯାଏ ।

ମୁଁ କିନ୍ତୁ ଭୂତ ଦେଖି ନାହିଁ । ଦେଖିବାକୁ ଚେଷ୍ଟା କରିଛି, କିନ୍ତୁ ପାଇ ନାହିଁ । ଖାନ ନଗରରେ ୧୯୫୫, ୧୯୬୦ ମସିହା ବଢ଼ି ସମୟରେ ଆମେ ବଂଧୁମାନେ ସେଠାରେ ରାତିରେ ଏକୁଟିଆ ଶୋଇଛୁ । ସେତେବେଳେ ସେଠାରେ କାଳୀ ମନ୍ଦିର ନ ଥିଲା । ମନ୍ଦିର ପରେ ହୋଇଛି । କିନ୍ତୁ ଏଇନା ପଚାରିଲେ ସମସ୍ତେ କହିବେ ଯେ ଯୁଗ ଯୁଗ ହେଲା ସେ ସେଠାରେ ବିଦ୍ୟମାନ । ସେମିତି କାହାଣୀ ମଧ୍ୟ ଶୁଣାଯାଏ କଟକ ଚଣ୍ଡୀ ମନ୍ଦିର ସଂପର୍କରେ । ପଚାରିଲେ ସମସ୍ତେ କହିବେ ଯେ ଏହା ବହୁ ବହୁ ଯୁଗ ହେଲା ସେଠାରେ ରହିଛି । ୧୯୪୩-୧୯୪୫ ମସିହାରେ ମାୟାଧର ମାନସିଂହଙ୍କ ସଂପାଦନାରେ 'ଶଙ୍ଖ' ନାମକ ଏକ ପତ୍ରିକା ପ୍ରକାଶ ପାଉଥିଲା ସମ୍ବଲପୁରରୁ । ସେଥିରେ କବି ରାଧାନାଥ ରାୟଙ୍କ ପୁତ୍ର ଶ୍ରୀ ଶଶି ଭୂଷଣ ରାୟ 'ଷାଠିଏ ବର୍ଷ ତଳର ଓଡ଼ିଶା' ନାମକ ଲେଖା ଧାରାବାହିକ ଭାବରେ ଲେଖୁଥିଲେ । ସେଥିରେ ସେ ଲେଖିଛନ୍ତି ଯେ ଏଇଠି

Digitized by srujan ka@gmail.com

ଏକ ତେଲେଙ୍ଗା ଅଂଧ ବ୍ୟକ୍ତି ମାଗି ମାଗି ଏକ ଚଣ୍ଡୀ ମନ୍ଦିର ନିର୍ମାଣ କରୁଛନ୍ତି । କନିକା ରାଜା ସାହାଯ୍ୟ କରିବାକୁ ସମ୍ମତି ଦେବାରୁ କାମ ଦ୍ରୁତତର ହୋଇଛି । ଏଇଥିରୁ ହିସାବ କରି ଦିଆଯାଇପାରିବ ସମୟ । ଗଡ଼ଚଣ୍ଡୀ (ବାରବାଟୀ ଦୁର୍ଗ ଭିତରେ ପ୍ରତିଷ୍ଠିତ) କିନ୍ତୁ ପୁରୁଣା । ଓଡ଼ିଆ ରାଜାମାନଙ୍କର ସେ ଥିଲେ ଆରାଧ୍ୟା ଦେବୀ । କିନ୍ତୁ ସେ ମଧ୍ୟ ସେଇଠି ଆଗରୁ ଥିଲେ ନା ବିଡ଼ାନାସୀରେ ଥିଲେ କହିବା କଷ୍ଟକର । କାରଣ ବିଡ଼ାନାସୀ ହିଁ ଥିଲା ଓଡ଼ିଆ ରାଜାମାନଙ୍କର ଦୁର୍ଗ । ବାରବାଟୀ ଦୁର୍ଗ ମାତ୍ର ଆଠଶହ ବର୍ଷ ତଳର । ଗଡ଼ଗଡ଼ିଆ ମହାଦେବଙ୍କ ବିଷୟ କଟକ ହଜାର ବର୍ଷ ବହିରେ ସ୍ଥାନ ପାଇ ନ ଥିବାରୁ ୰କୃଷ୍ଣ ନନା ମୋତେ ଏ ସଂପର୍କରେ ପଚାରିଥିଲେ । ତାଙ୍କ ପାଖରେ ଯାହା ସବୁ କାଗଜପତ୍ର ଅଛି ତାହା ମୋତେ ଦେଖିବାକୁ କହିଥିଲେ । ସବୁ ପଢ଼ିଲା ପରେ ଦେଖିଲି ଯେ ଚୈତନ୍ୟ ଦେବଙ୍କ ଓଡ଼ିଶା ଆଗମନ ବେଳକୁ ମଧ୍ୟ ଗଡ଼ଗଡ଼ିଆ ମହାଦେବ ନ ଥିଲେ । କାରଣ ଚୈତନ୍ୟ ଦେବଙ୍କ ଆଗମନ ସଂପର୍କୀୟ ଲିପିମାନଙ୍କରେ ଗଡ଼ଗଡ଼ିଆ ମହାଦେବଙ୍କ କଥା ଉଲ୍ଲେଖ ନାହିଁ ।

ସେ ଯାହାହେଉ ଭୂତ ମୁଁ କେବେ ଦେଖି ନାହିଁ । ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନ କୁତଃ । ଏ ବିଶ୍ୱାସ ମୋର ଏଯାବତ୍ ରହିଛି । ଜୀବନ ହେଉଛି ବସ୍ତୁର ବିକାଶ ଏବଂ ବସ୍ତୁ ସହିତ ତାହା ମଧ୍ୟ ଧ୍ୱଂସ ପାଇଯାଏ । ଆତ୍ମାର ଏକ ସ୍ୱତନ୍ତ୍ର ଅସ୍ତିତ୍ୱ ଥିବାର କୌଣସି ପ୍ରମାଣ ନାହିଁ ।

ମୋ ବୋଉର ପରଲୋକ ହୋଇଗଲା ୧୯୬୨ ମସିହାରେ । ବାପା ପଚାରିଲେ କିଏ କ୍ରିୟା ଧରିବ ? ମୁଁ ଉତ୍ତର ଦେଲି– ଆପଣଙ୍କର ଇଚ୍ଛା । ବାପା କହିଲେ ଯେ ବୋଉର ଇଚ୍ଛା ଥିଲା ତୁ କ୍ରିୟା ଧରିବୁ । ମୁଁ ହଁ ଭରିଲି । ବାପା ପଚାରିଲେ ତୋର ପରା ସେଥିରେ ବିଶ୍ୱାସ ନାହିଁ । ତେଣୁ ତୁ କିମିତି ଧରିବୁ ? ମୋର ଉତ୍ତର ଥିଲା – ଆପଣ କଣ ଦେଖି ନାହାନ୍ତି ଭୀଷଣ ତରୁଆକୁ ମହାବୀର କର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହେବାର ? ବୋଉର କଣ ଇଚ୍ଛା ଥିଲା ମୁଁ ଜାଣିନାହିଁ, କିନ୍ତୁ ଆପଣ ତୃପ୍ତ ହେବେ ମୁଁ ବୋଉର କ୍ରିୟା ଧରିଲେ । ଶୁଦ୍ଧି କ୍ରିୟାର ଶେଷ ପର୍ଯ୍ୟାୟରେ ଅଂଧକାର ରାତିରେ ଶେଷ କ୍ରିୟା ସାରି ଘରକୁ ଫେରିଲା ସମୟରେ ଏକ ଲୁହା କଣ୍ଟାରେ ତିନୋଟି ଗାର କାଟି ମୋତେ କହିବାକୁ କୁହାଗଲା ଯେ ଚନ୍ଦ୍ରମଣି ( ମୋ ବୋଉର ନାମ) ନାମକ ପ୍ରେତୟା, ତୁମକୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ରାଣ, ତମେ ଏ ଗାର ଡେଇଁ ଆସିବ ନାହିଁ । ମୁଁ ଏହା କରିବାକୁ ନାସ୍ତି କରିଦେଇ ଘରକୁ ଫେରିଲି । ଏ ଘର ତାର, ଘର ତିଆରି ସେ କରିଛି । ମୁଁ କେବଳ ମାତ୍ର ଘରର ଅତିଥି । ମୁଁ କିଏ ତାକୁ ମନା କରିବା ପାଇଁ । ସେ ଆସିବ ଯଦି ଆସୁ । ବାପାଙ୍କୁ ମଧ୍ୟ ମୁଁ ସେଇୟା କହିଲି ଆସି । ମୁଁ ପୁରୋହିତବାଦ ବା ବ୍ରାହ୍ମଣବାଦରେ ବିଶ୍ୱାସ କରେନା । ସବୁ ମୁଁ କଲି କେବଳ ଆପଣଙ୍କ ଯୋଗୁଁ । ମୁଁ କିନ୍ତୁ ଏଇ କଥା କହି ପାରିଲି ନାହିଁ । ବାପା ମୋ ସହିତ ଏକମତ ହେଲେ, କିନ୍ତୁ କେବେହେଲେ ମୁଁ ବୋଉର ଭୂତକୁ ଦେଖିନାହିଁ ।

Digitized by srujan ka@gmail.com

ପୁରୋହିତବାଦ ବା ବ୍ରାହ୍ମଣବାଦ ପ୍ରତି ମୋର ବିତୃଷ୍ଣା କାଳକ୍ରମେ ଅବିଶ୍ୱାସରେ ପରିଣତ ହୋଇଛି । ଏହା ସହିତ ବେଦ ବା ବୈଦିକ ଧାରାର କୌଣସି ସଂପର୍କ ନାହିଁ । ଏସବୁ ସୂତ୍ର ତିଆରି ହୋଇଛି କୃଷି ସଭ୍ୟତାର ପ୍ରାକ୍ କାଳରେ । ମଣିଷ ଜାଣିଥିବା ଚାରୋଟି ଫଳ ଏଥିରେ ସ୍ଥାନ ପାଇଛି । ନଡ଼ିଆ, କଦଳୀ, ଆମ୍ବ ଏବଂ ପଣସ । ଧାନର ସ୍ଥାନ କମ୍ । ଯଅର ସ୍ଥାନ, ରାଶିର ସ୍ଥାନ ବେଶୀ । ତଥାକଥିତ ପୁରୋହିତ ସର୍ବସ୍ୱରେ ଯେଉଁ ସବୁ ପଦ୍ଧତିର ଅବତାରଣା କରାଯାଇଛି ତାକୁ ଠିକ୍ ଠିକ୍ ପ୍ରୟୋଗ କଲେ କୌଣସି ବିବାହ, ବ୍ରତ, ଶୁଦ୍ଧିକ୍ରିୟା ହୋଇପାରିବ ନାହିଁ । କାରଣ ଏ ସବୁର ଅବତାରଣା କରାଯାଇଥିଲା କୃଷି ସଭ୍ୟତାର ଆଦ୍ୟ କାଳରେ । ସମୟ, ପରିବେଶର ବ୍ୟାପକ ପରିବର୍ତ୍ତନ ହୋଇସାରିଛି । କିନ୍ତୁ ଆମେ ଅଂଧ ଭାବରେ ପୁରୋହିତବାଦ ଉପରେ ବିଶ୍ୱାସ କରି ଆସିଚୁ । ଏବଂ 'ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍' ନାମରେ ପୁରୋହିତ ଯାହା ଇଚ୍ଛା ତାହା କରିବାକୁ ସୁଯୋଗ ପାଆନ୍ତି । ଅଧିକ ପଇସା ମିଳିଲେ ଅଶୁଭ ଲଗ୍ନ ଶୁଭ ଲଗ୍ନରେ ପରିଣତ ହୋଇଯାଏ । ଏହାର ଦୃଷ୍ଟାନ୍ତ ଅନେକ ଲୋକ ନିଜ ଜୀବନରେ ଭୋଗିଛନ୍ତି କିନ୍ତୁ ସ୍ୱୀକାର କରିବାକୁ ନାରାଜ ।

ଡି.ଏମ୍.କେ.ର ସଂପାଦକ (ନାମଟା ମନେପଡୁ ନାହିଁ) ପୁଅ ବିଭା କଲେ । ସବୁଠାରୁ କାଳ ରାଶିଚକ୍ରରେ (ଜ୍ୟୋତିଷମାନଙ୍କ ମତରେ) ବିବାହ ଦେଲେ । ଶ୍ମଶାନକୁ ଶବ ଗଲାବେଳେ ଯେଉଁ ବାଜା ବାଜେ ସେଇ ବାଜା ବାଜିଲା । ତିନିଶହ ବିଧବା ପାଟ ପିନ୍ଧି ଏକ ମଣ୍ଡପ ଉପରେ ଏକତ୍ରିତ ହେଲେ ଏବଂ ସେଠାରେ ମାଂସ ସହିତ ଖାଦ୍ୟ ପରଷା ହେଲା ସେମାନଙ୍କ ପାଇଁ । ଏହା ଶୁଣି ପ୍ରସିଦ୍ଧ ସାମ୍ବାଦିକ, କୂଟନୀତିଜ୍ଞ ମିନୁ ମିଶାନୀ ଲେଖିଲେ ଯେ ମୋର ଡି.ଏମ୍.କେ. ଦଳ ସହିତ ନୀତିଗତ ମତଭେଦ ସତ୍ତ୍ୱେ ଏଇ ଭଦ୍ରଲୋକ ହିଁ ମୋ ସାଂଗରେ ଯାଇପାରିବେ ଏକବିଂଶ ଶତାବ୍ଦୀକୁ ।

ବିଂଶ ଶତାବ୍ଦୀର ଆଶାଥିଲେ ସିନା ଏକବିଂଶ ଶତାବ୍ଦୀକୁ ଯାଇ ପାରିବା ।

ବାପାଙ୍କର ବଦଳି ହେଲା ପୁରୁଣାଗଡ଼କୁ । ପୁରୁଣାଗଡ଼ ହେଉଛି ଅନୁଗୋଳର ପୁରୁଣା ରାଜଧାନୀ । ରାଜଦୁର୍ଗ ଉପରେ ବ୍ରିଟିଶ ସରକାର ଆକ୍ରମଣ କରିବା ହେତୁ ସେ କୃଷ୍ଣଚକ୍ର ଗଡ଼ରେ ଆଶ୍ରୟ ନେଲେ । ରୁନ୍ଧା ରୁନ୍ଧା ପାହାଡ଼ ଘେରା କୃଷ୍ଣଚକ୍ର ଗଡ଼ ଥିଲା ଦୁରାରୋଧ୍ୟ । ବ୍ରିଟିଶ ସରକାରଙ୍କ ସବୁ ଆକ୍ରମଣକୁ ପ୍ରତିହତ କରି ରାଜା ସେଇଠି ବସତି ସ୍ଥାପନ କଲେ । ପରିଶେଷରେ ବ୍ରିଟିଶ ସରକାର ତାଙ୍କର ଚିରାନୁଚରିତ ରୀତି ଗ୍ରହଣ କଲେ ଏବଂ ରାଜାଙ୍କ ସେନାପତି ବା ମନ୍ତ୍ରୀଙ୍କୁ ହାତ କରିନେଲେ । ରାଜା ଧରା ପଡ଼ିଲେ । ଏହା ସତ୍ତ୍ୱେ ଅନୁ ନାମକ କଂଧ ନେତୃତ୍ୱରେ ଏଭଳି ''ଗୋଳ'' ଦେଖାଗଲା ଯେ ବ୍ରିଟିଶମାନେ ଜିଲ୍ଲା ହେଡ୍‌କ୍ୱାଟର୍ସକୁ ଉଠାଇ ଆଣିଲେ । ନୂଆ ବସତିର ନାମ ହୋଇଗଲା ଅନୁଗୋଳ । ଏକ ସାଧାରଣ ଲୋକ ନାମରେ ସହରଟା ଆପେ ଆପେ ନାମିତ ହେବାର ସଂଖ୍ୟା ଖୁବ୍ କମ୍ । ଅନୁ କଂଧ ନାମରେ ଅନୁଗୋଳ, ଢେଙ୍କା

Digitized by srujan ka@gmail.com

ଶବର ନାମରେ ଢେଙ୍କାନାଳ ଏଇ ଦୁଇଟି ମନକୁ ଆସେ । ରାଜା ସୋମନାଥ ସିଂହ ଜଗଦେବଙ୍କର କାଞ୍ଚନିକ ମୂର୍ତ୍ତି ବର୍ତ୍ତମାନ ଅନୁଗୋଳ ପୋଷ୍ଟ ଅଫିସ ସାମନାରେ ।

ପୁରୁଣାଗଡ଼ରେ ରାଜଦୁର୍ଗର କିଛି ଭଂଗା ପାଚିରୀ ସେଠାରେ ଥିଲା ମୁଁ ଦେଖିଲା ବେଳକୁ । ମୋତେ ଆଶ୍ଚର୍ଯ୍ୟ କରିଛି ଯେ ଓଡ଼ିଶାର କୌଣସି ଗୋଟିଏ ଦୁର୍ଗ ଅକ୍ଷତ ନାହିଁ ବା ବିଶେଷ କିଛି ଚିହ୍ନ ବି ନାହିଁ କାହାରି । ଯଦିଓ ଏଇ ରାଜ୍ୟରେ ବହୁ ରାଜା ଶାସନ କରୁଥିଲେ ବୋଲି ଆମେ ଜାଣୁ । ଖାଲି ଅନୁଗୋଳ ନୁହେଁ, ଚୁଡ଼ଙ୍ଗଗଡ଼, ଯାଜପୁର ଗଡ଼, ପଞ୍ଚକଟକ ଗଡ଼, ସବୁଠି ସେଇ ଅବସ୍ଥା । ବାରବାଟୀ ଦୁର୍ଗକୁ ଜେନେରାଲ ହାରକୋର୍ଟ 'ଉଇଣ୍ଡସର୍ ପ୍ୟାଲେସ' ସହିତ ତୁଳନା କରିଛନ୍ତି ଏବଂ ତା' ଉପରକୁ ଗୁଳି ଚାଳନା କରିଛନ୍ତି ମହାନଦୀ ଗର୍ଭରୁ ଆପଣାର ସାମରିକ ବୋଟରୁ । ତଥାପି ସବୁ ଭାଙ୍ଗି ନ ଥିଲା । ବାରବାଟୀ ଦୁର୍ଗ ପଥରରେ କ୍ୟାଣ୍ଟନମେଣ୍ଟ ରୋଡ଼, ଜୋବ୍ରା ଆନିକଟ, ପାରାଦୀପର ବତିଘର ଗଢ଼ାହେଲା । ଶେଖ ବଜାର, ମହମ୍ମଦିଆ ବଜାରର ବହୁ ଘରର ନିଅଁ ସେଇ ପଥରରେ ତିଆରି ହୋଇଛି । ଏ ପଥର ଏକ ସମୟରେ ଶହ ତିନି ଟଙ୍କା ଦରରେ ବିକ୍ରୀ ହୋଇଛି, କିନ୍ତୁ ବାକି ସବୁ ଦୁର୍ଗ ଗଲା କୁଆଡ଼େ ? କେତେକ କହନ୍ତି ଏସବୁ ମାଟି ଓ ପଥରରେ ଗଢ଼ା ହୋଇଥିଲା । ତେଣୁ ଥରେ ପରିତ୍ୟକ୍ତ ହେଲାପରେ ସବୁ ଭାଙ୍ଗିଗଲା । ରାଜସ୍ଥାନଠାରୁ ହାଇଦ୍ରାବାଦ ପର୍ଯ୍ୟନ୍ତ ସବୁ ସ୍ଥାନରେ ଦୁର୍ଗସବୁ ଅତୁଟ ଏବଂ ଅକ୍ଷତ ଅବସ୍ଥାରେ ରହିଛି । କଣ ହେଲା କିନ୍ତୁ ଓଡ଼ିଶା କ୍ଷେତ୍ରରେ ?

ପୁରୁଣାଗଡ଼ ଅବସ୍ଥା ବି ସେଇଆ । ଦୁର୍ଗର କୌଣସି ଅସ୍ତିତ୍ୱ ଦେଖିନାହିଁ । ସମ୍ବଲପୁରରେ ବି ଦେଖିଛି ସେଇ ଅବସ୍ଥା । ବାଲିବଂଧା ପାଖରେ ରାଜଦୁର୍ଗ ଥିଲା କିନ୍ତୁ ଖୁବ୍ କମ୍ ଚିହ୍ନ ରହିଛି ତାର ଅସ୍ତିତ୍ୱର । ରେଙ୍ଗାଲି ପାଖରେ ଥିବା ଗରପାଟି ପାହାଡ଼ ଉପରେ ସମ୍ବଲପୁର ରାଜାଙ୍କର ଦୁର୍ଗ ଥିଲା ବୋଲି ଶୁଣି ସେ ପାହାଡ଼ ଉପରକୁ ଯାଇଛି । କିନ୍ତୁ ଦେଖିଚି ଏକ ବାଲୁକାଚର ମାତ୍ର । ପୁରୁଣାଗଡ଼ରେ ମୋ ବାପାଙ୍କର ମାଉସୀ ଘର । ବାପାଙ୍କର ମଉସା ଥିଲେ ଅନୁଗୋଳ ରାଜାଙ୍କର ପାଞ୍ଜିଆ । ଟିକରପଡ଼ା ଘାଟୀ ଜଗିବା ଥିଲା ତାଙ୍କର କାମ । ଶୁଣିଚି ବହୁ ବଣିକଙ୍କୁ ସେ ଧରିଆଣି ପୋତି ଦେଇଥିଲେ ତାଙ୍କ ବିଶାଳ ବଗିଚା ଭିତରେ । ତାଙ୍କ ପୁରୁଣା ଘର ଭାଙ୍ଗିଯିବା ପରେ ନୂଆ ଘର ପାଇଁ ନିଅଁ ଖୋଳା ହେଲାବେଳେ ଅନେକ ଭାବିଥିଲେ ଯେ ବହୁତ ନରକଙ୍କାଳ ବାହାରିବ, ସୁନାରୂପା ମଧ୍ୟ ବାହାରିବ । କିନ୍ତୁ ପାଟ କନାରେ ଗୁଡ଼ାହୋଇଥିବା ବହୁପ୍ରକାର ମଂଜି ବାହାରିଲା ବିଭିନ୍ନ ପାତ୍ର ଭିତରୁ । ସବୁପାତ୍ର ମଧ୍ୟ ମାଟିର ପାତ୍ର । ବାହାରିଲା ବହୁ ପାତ୍ର ଭିତରେ ଥିବା ଶାଳଗ୍ରାମ, ଗୋଟିଏ ଦୁଇଟି ସ୍ଥାନରେ ହାଡ଼ ବାହାରିଥିଲା । କିନ୍ତୁ ସେଗୁଡ଼ିକ ମଣିଷର କି ନୁହେଁ ଜାଣି ହେଲା ନାହିଁ ।

ପୁରୁଣାଗଡ଼ରେ ବାପା ପହଞ୍ଚିଲା ବେଳକୁ ମୋର ଦାଦା ବିରଞ୍ଚି ନାରାୟଣ ପଟ୍ଟନାୟକ ଆସି ରହନ୍ତି ସେଇଠି । ଦାଦା ବିରଞ୍ଚି ନାରାୟଣ ପିଲାଦିନରୁ ବେଶ୍ ସ୍ୱାଧୀନ-ଚେତା ଥିଲେ ।

Digitized by srujan ka@gmail.com

ପାଠ ଭଲ ପଢୁଥିଲେ । ପାଟଣା ବିଶ୍ୱବିଦ୍ୟାଳୟ ଅଧୀନକୁ ଓଡ଼ିଶା ଯିବାର ଦ୍ୱିତୀୟ ବ୍ୟାଚରେ ସେ ମାଟ୍ରିକ୍ୟୁଲେଶନ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ବେଶ୍ ଦୁଷ୍ଟ ଏବଂ ବଗୁଲିଆ ମଧ ଥିଲେ । ମାର୍ଗଶୀର ଗୁରୁବାର ଲକ୍ଷ୍ମୀ ଭୋଗ କେବଳ ପୁଅମାନଙ୍କୁ ଦିଆଯାଏ, ଝିଅମାନେ ତାହା ଖାଆନ୍ତି ନାହିଁ । କାଳେ ଲକ୍ଷ୍ମୀ ପଳାଇବେ ବୋଲି ଘରୁ । ବାହାର ଲୋକଙ୍କୁ ଦେବାର ପ୍ରଶ୍ନ ଉଠେନା । ସେ କିନ୍ତୁ ଭୋଗକୁ ନେଇ ଗାଁ ଲୋକ ସମସ୍ତଙ୍କୁ ବାଣ୍ଟି ଦିଅନ୍ତି । ଗାଁ ମାଇପେ ପାଣି ଆଣନ୍ତି ମାଠିଆରେ । ଧାଡ଼ି ଧାଡ଼ି କରି ସେମାନେ ଆସନ୍ତି ନଦୀ ଭିତରୁ । ବିରଞ୍ଚି ନାରାୟଣ ଫିଟି ନାମକ ଏକ ଘୂର୍ଣ୍ଣାୟମାନ ଦଉଡ଼ିରେ ପଥର ମାରି ସେ ମାଠିଆ ସବୁ ଭାଙ୍ଗି ଦିଅନ୍ତି ଦୂରରୁ । ଗାଁ କଂପି ଉଠେ । କିନ୍ତୁ ଫିଟି ଏତେ ଦୂରରୁ ମାରନ୍ତି ଯେ କୌଣସି ଚାକ୍ଷୁସ ପ୍ରମାଣ ନ ଥାଏ । ରେଭେନ୍ସା କଲେଜକୁ ପାଠ ପଢ଼ିବାକୁ ଆସିଲେ । ସହପାଠୀ ହେଲେ ରାଜକୃଷ୍ଣ ବୋଷ, ଜଗନ୍ନାଥ ମିଶ୍ର, ଲୋକନାଥ ପଟ୍ଟନାୟକ, ସୁନିଲ ପାଲିତ (ପରେ ଆଇ.ଏ.ଏସ୍.) ପ୍ରମୁଖ । କାଠଯୋଡ଼ିର ଉଛୁଳା ବଢ଼ି ପାଣିରେ ପହଁରିବା ତାଙ୍କର ସଉକ । ଏଇପରି ଥରେ ସେ ସାଥୀମାନଙ୍କ ସହିତ ପହଁରିବାକୁ ଯାଇଥିବା ବେଳେ ଜଣେ ସହପାଠୀର ଜଳସମାଧି ହୋଇଗଲା । ତାଙ୍କର ଏକ ସମାଧି ଥିଲା ବର୍ତ୍ତମାନର 'ମା' ରମାଦେବୀ ଉଦ୍ୟାନ ପାଖାପାଖି । ମୁଁ ପଢ଼ିବାକୁ କଟକ ଆସିଲାବେଳେ ଦାଦା ସେଇଟିକୁ ଦେଖାଇ ଦେଇଥିଲେ । ଏବେ ଅଛି କି ନାହିଁ ଜାଣେନାହିଁ । ମୁଁ କଟକ ପଢ଼ିବାକୁ ଆସିଲି ୧୯୪୬-୪୭ ମସିହାରେ । ଦାଦା ସାଂଗରେ ଆସିଥିଲେ । ସେତେବେଳକୁ ତାଙ୍କ ବୟସ ୪୫ ଟପିଲାଣି । କାଠଯୋଡ଼ି କୂଳକୁ ବୁଲି ଯାଇଥିଲୁ । ନଈରେ ଭରା ପାଣି । ହଠାତ୍ ତାଙ୍କର ସହପାଠୀଙ୍କ ସମାଧି ପାଖରେ ସେ କହିଲେ, ତୁ ଏଇଠି ବସିଥା । ମୁଁ ଟିକିଏ ନଈ ମଝିରୁ ଆସେ । ମୁଁ କିଛି କହିବା ପୂର୍ବରୁ ସେ ନଈକୁ ଡେଇଁ ପଡ଼ିଥିଲେ ଏବଂ ଘଣ୍ଟାକ ପରେ ଆସିଲେ । ଦାଦାକୁ ଆମେ ପୁତୁରା ଦୁଇଭାଇ 'ତୁ' ବୋଲି ସମ୍ବୋଧନ କରୁଥିଲୁ । ବୋଉ ଅନେକ ସମୟରେ ତାଗିଦ କରିଛି କିନ୍ତୁ ଦାଦା ଆମକୁ ସେଇଭଳି ଡାକିବାକୁ ଉତ୍ସାହିତ କରିଛନ୍ତି । ସେ କଲେଜରେ ପାଠ ପଢ଼ିଲାବେଳେ ପ୍ରିନସିପାଲ ଥିଲେ ଲାମ୍ବାର୍ଟ । ରାଜକୃଷ୍ଣ ବୋଷ ମୋତେ କହୁଥିଲେ ଯେ କୌଣସି କାରଣରୁ ତାଙ୍କ ସହିତ ଦାଦାର ଝଗଡ଼ା ହେଲା ଏବଂ ଦାଦା ପାଠଛାଡ଼ି ଚାଲିଗଲେ । ଯାଇ ଚାକିରି କଲେ ସିଂହଭୂମିରେ, ଜଂଗଲ ବିଭାଗରେ । ବନମାଳୀ ପଟ୍ଟନାୟକ (ମନ୍ତ୍ରୀ ଥିଲେ)ଙ୍କ ବାପା ଗୋଲକ ବିହାରୀ ପଟ୍ଟନାୟକ ରେଞ୍ଜ ଅଫିସର । ଦାଦା ଡେପୁଟି ରେଞ୍ଜର, ରାଧାନାଥ ରଥ (ପରେ ସଂପାଦକ, ସମାଜ) ସେଠାରେ ଫରେଷ୍ଟ କିରାଣୀ । ସେତିକିବେଳେ ଜଣେ ସ୍ୱାଧୀନତାପ୍ରେମୀ ଜଂଗଲ ବିଭାଗ କର୍ମଚାରୀକୁ ବ୍ରିଟିଶ ସରକାର ଅଭିଯୁକ୍ତ କରନ୍ତି ଏକ ମୋକଦ୍ଦମାରେ । ଏହି ମିଥ୍ୟା ମକଦ୍ଦମାରେ ସାକ୍ଷୀ ନ ଦେବାପାଇଁ ବିରଞ୍ଚି ନାରାୟଣ ଏକ ଚିଠି ଦିଅନ୍ତି ଜଣେ ସହକର୍ମୀଙ୍କୁ ଏବଂ ଉକ୍ତ ନିମକହାରାମ ଅଫିସର ସେ ଚିଠିକୁ କୋର୍ଟରେ ଉପସ୍ଥାପିତ କରନ୍ତି । ବିରଞ୍ଚି ନାରାୟଣ

Digitized by srujan ka@gmail.com

ଚାକିରିରୁ ବହିଷ୍କୃତ ହୁଅନ୍ତି ଏବଂ ସେ ଆସି ବାପାଙ୍କ ପାଖରେ ରହନ୍ତି । ସେତେବେଳେ ସେ ସୂତା କାଟୁଥିଲେ ଏବଂ ଖଦଡ଼ ପିନ୍ଧୁଥିଲେ । ମୋ ବାପା ଓ ସେ ଦୁହେଁ ବିପରୀତ ସବୁଥିରେ । ସେ ଡେଙ୍ଗା, ବାପା ବାଙ୍ଗରା । ସେ ଭୀଷଣ ସ୍ପଷ୍ଟବାଦୀ ଏବଂ ମୁହେଁ ମୁହେଁ ଅପ୍ରିୟ ସତ୍ୟକଥା କହନ୍ତି । ବାପା ଏକଦମ୍ ମାନ୍ଦା ଧରଣର ମଣିଷ । ବାପା ପାନ ବିଡ଼ି, ସିଗାରେଟ୍, ମଦ ଛୁଇଁ ନାହାନ୍ତି । ସେ ପାନ ଖାଆନ୍ତି ଏବଂ ସିଗାରେଟ୍ ବିଡ଼ିର ଚେନ୍‌ସ୍ମୋକର । ସେଇଯୋଗୁଁ ବୋଉ ସହିତ ତାଙ୍କର ଝଗଡ଼ା ବହୁତ ଥର ହୋଇଛି । ବୋଉ ତାଙ୍କର ବିଡ଼ି ବଣ୍ଡଲ ଏବଂ ସିଗାରେଟ୍ ପ୍ୟାକେଟ୍ ଲୁଚାଇ ଦିଏ ବା ନଷ୍ଟ କରିଦିଏ । କିନ୍ତୁ ବାପା ଓ ଦାଦାଙ୍କ ଭିତରେ ନିବିଡ଼ ମମତା, ଏପରି ବିରଳ ସଂପର୍କ ମୁଁ ଖୁବ୍ କମ୍ ଦେଖିଛି । ଏଇଭଳି ଭାଇ ଦୁଇଜଣ ଥିଲେ- ଚକ୍ରଧର ମିଶ୍ର ଏବଂ କହ୍ନେଇ ମିଶ୍ର, ଥିଲେ ନରେନ୍ ସୁର ଏବଂ ଧୀରେନ୍ ସୁର । କିନ୍ତୁ ଜୀବନର ଅପରାହ୍ନରେ ତାହା ଭାଜି ଯାଇ, ତୀବ୍ର ବୈରତାରେ ପରିଣତ ହୋଇଥିଲା । ବାପା, ଦାଦାଙ୍କୁ ଅଲଗା ଖାଇବାକୁ ଦେବା ପାଇଁ ବୋଉ କେବେ ସାହାସ କରିନାହିଁ । ବାପା ଯଦି କିଛି ଗୋଟାଏ କହିଛନ୍ତି ସେଇଟା ଫାଇନାଲ, ଠିକ୍ ସେଇପରି ଦାଦା ବି କିଛି କହିଛି ସେଇଟା ଫାଇନାଲ । ମୁଁ ଓ ମୋ ଭାଇକୁ ଯଦି ପଚରାଯାଇଥାନ୍ତା ବାପା ବୋଉ ଗୋଟାଏ ପଟରେ, ଦାଦା ଗୋଟାଏ ପଟରେ ତା'ହେଲେ ତମେ କାହାକୁ ଗ୍ରହଣ କରିବ, ଦୁଇଭାଇ ନିଶ୍ଚିତ ଭାବରେ ଦାଦାଙ୍କୁ ହିଁ ଗ୍ରହଣ କରିଥାଆନ୍ତୁ ।

ବିରଞ୍ଚି ନାରାୟଣ ପହଞ୍ଚିଲେ ପୁରୁଣାଗଡ଼ରେ । ସେତେବେଳକୁ ସେ ହିନ୍ଦୀ, ବଂଗଳା ସହିତ ପ୍ରାୟ ଆଠ ନଅଟି ଆଦିବାସୀ ଭାଷାକୁ ଆୟତ୍ତ କରି ସାରିଥିଲେ । ତାଙ୍କର ଇଂରାଜୀ ଥିଲା ଖୁବ୍ ଭଲ । ସେ ନୂଆ ହୋଇ ଆସିଥିବା ଆଇ.ସି.ଏସ୍., ଆଇ.ଏଫ୍.ଏସ୍. ଏବଂ ଆଇ.ପି.ଏସ୍. ଅଫିସରମାନଙ୍କୁ ହିନ୍ଦୀ ଏବଂ ଓଡ଼ିଆ ପଢ଼ାନ୍ତି । ଇଂରେଜମାନଙ୍କର ଏହି ପ୍ରକାର ବ୍ୟବହାର ବେଶ୍ ବିଚିତ୍ର । ଜଣେ ଲୋକ ଖଦଡ଼ ପିନ୍ଧେ, ଚାକିରିରୁ ବହିଷ୍କୃତ ହୋଇଛି, ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସାହଯ୍ୟ କରି । ସେଇ ପୁଣି ନିଯୁକ୍ତ ହୋଇଛି ସାହେବମାନଙ୍କୁ ହିନ୍ଦୀ ଏବଂ ଇଂରାଜୀ ପଢ଼ାଇବା ପାଇଁ ।

ସେଇପରି କରୁକରୁ ସେମାନେ ସୁପାରିଶ କଲେ ତାଙ୍କୁ ବିଲାତୀ ବାଉଁଶ କଂପାନୀରେ ଚାକିରି ପାଇଁ ଟିକରପଡ଼ାରେ । ସେ ଚାକିରିରେ ଯୋଗଦେଲେ କିନ୍ତୁ ଦିନେ ହଠାତ୍ ସେ କଂପାନୀର ମ୍ୟାନେଜରଙ୍କର 'ବ୍ଲଡ଼ି ଇଣ୍ଡିଆନସ୍' ନାମକ ଶବ୍ଦର ପ୍ରୟୋଗରେ ସେ ଉକ୍ତ ମ୍ୟାନେଜରକୁ ତଡ଼ିଲେ ବଂଧୁକରେ ମାରିବା ପାଇଁ । ସେ ବଂଚି ଖସି ପଳାଇଲେ । ପୁରୁଣାଗଡ଼ ପାଖରେ ମାତିଳିଆ ନାମକ ଏକ ଜୋର (କ୍ଷୁଦ୍ର ପାର୍ବତ୍ୟ ନଦୀ) ଅଛି । ତାକୁ ପାର ହୋଇ ଟିକରପଡ଼ା ଯିବାକୁ ପଡ଼େ । ସେଇଠି ଗଛ ଉପରେ ବଂଧୁକ ଧରି ଜଗି ରହିଲେ ବିରଞ୍ଚି ନାରାୟଣ । ମ୍ୟାନେଜର ଟିକରପଡ଼ାକୁ ଯିବା ବାଟ ବଂଦ । ସେ ପୁଲିସରେ ଖବର ଦେଲେ, କମିଶନରଙ୍କୁ କହିଲେ । ସେମାନେ ସମସ୍ତେ ବିରଞ୍ଚି ନାରାୟଣଙ୍କ ଛାତ୍ର । କଥାଟା ବି ବିରଞ୍ଚି ନାରାୟଣଙ୍କ

Digitized by srujan ka@gmail.com

ସପକ୍ଷରେ । କଣ କରାଯିବ ? ଶେଷରେ ବାଧ ହୋଇ ସେ କ୍ଷମା ମାଗିଲେ ସମସ୍ତଙ୍କ ଆଗରେ । ବିରଞ୍ଚି ନାରାୟଣ କିନ୍ତୁ ଆଉ ସେଠି ଚାକିରି କଲେ ନାହିଁ ।

କଲେରା ଲାଗିଲା ପୁରୁଣାଗଡ଼ରେ । ଡାକ୍ତର ନାହାନ୍ତି କି ଔଷଧ ନାହିଁ । ସେତେବେଳେ ବନ୍ୟ ବିଭାଗର ଅଫିସର ମାନେ 'ହୋମିଓପ୍ୟାଥିକ' ଚିକିତ୍ସାରେ ତାଲିମ ପାଇଥାଆନ୍ତି । ସେମାନେ ସେତେବେଳେ ଶିକ୍ଷା, ରାଜସ୍ୱ, ସ୍ୱାସ୍ଥ୍ୟ, ଅବକାରୀ ସବୁ କାମ ତଦାରଖ କରନ୍ତି । ତେଣୁ କ୍ଷମତା ଅପରିସୀମ । ବାପା ଔଷଧ ଦିଅନ୍ତି । ମୋର ଏବେବି ସେ ଡାକ ମନେ ପଡ଼େ । ରାତି ଅଧରେ ବିକଳିଆ ଡାକ, ବା....... ବୁ । ବା.......ବୁ । ଲୋକଟି ଆସିଚି ଔଷଧ ପାଇଁ । ବାପା ଔଷଧ ଦିଅନ୍ତି । ସେ କିନ୍ତୁ ଘରକୁ ଫେରି ପାରେ ନାହିଁ । ବାଟରେ ସେଇ ଝଙ୍କାଳିଆ ବରଗଛ ମୂଳରେ ଖୋଦ ''ଠାକୁରାଣୀ''ଙ୍କ ସାକ୍ଷାତ ହୁଏ ଓ ତାର ପ୍ରାଣବାୟୁ ଉଡ଼ିଯାଏ । ଆଜିକାଲି ସେମିତି କଲେରା ଦେଖାଯାଏନା ।

ବାପା ଡିନାମାଇଟ୍ ଅଫିସର । ଅଫିସ ଘରେ ପ୍ରଚୁର ପରିମାଣରେ ଡିନାମାଇଟ୍ ଗଚ୍ଛିତ ଥାଏ । ପ୍ରତିଦିନ ସକାଳେ ବାପା ଡିନାମାଇଟ୍‌ର ଡିଟୋନେଟର ଗଣି କରି ଦିଅନ୍ତି । ଫ୍ୟୁଜ ତାର ଦିଆଯାଇ ତାହା ଲଗାଯାଏ ଏବଂ ବାପା ନିଜେ ତଦାରଖ କରନ୍ତି ବିସ୍ଫୋରଣ । ବୋଉ ବହୁତ ଥର ମନା କରିଛି । ତମେ ନ ଗଲେ କଣ ଚଳିବ ନାଇଁ ? ଦିନେ ବାପାଙ୍କ ଦେହ ଖରାପ ଥିଲା, ଫରେଷ୍ଟ ଗାର୍ଡ଼ଟିଏ ଗଣିଲା ସବୁ ବିସ୍ଫୋରଣ, କିନ୍ତୁ ଗୋଟିଏ ଫୁଟିଲା ନାହିଁ, ବହୁ ସମୟ ଧରି । ଅସାବଧାନ ହୋଇ ଫରେଷ୍ଟ ଗାର୍ଡ଼ଟି ଟିକିଏ ପାଖକୁ ଦେଖିବାକୁ ଚାହିଁଲା ବିସ୍ଫୋରଣକୁ । ହଠାତ୍ ଡିନାମାଇଟ୍ ଫୁଟିଗଲା ଏବଂ ଏକ ବିଶାଳ ପଥର ଖଣ୍ଡ ଉକ୍ତ ଫରେଷ୍ଟ ଗାର୍ଡ଼ର ମୁଣ୍ଡଟାକୁ ଉଡ଼ାଇ ଫିଙ୍ଗିଦେଲା ଏକ କିଲୋମିଟର ଦୂରରେ । ଠିକ୍ ସେଇପରି ଆଉ ଦିନେ ଜଣେ ଫରେଷ୍ଟ ଗାର୍ଡ଼ ବାପାଙ୍କୁ କହିଲା ଯେ ତା' ପାଖରେ ଗୋଟାଏ ଅଫୁଟା ଡିଟୋନେଟର ରହିଛି ଅନେକ ଦିନରୁ । ବାପା ତାକୁ ତାଗିଦ କରିଥିଲେ ଯେ ତାକୁ ନ ରଖିବା ପାଇଁ । ଦିନେ ତାର ତକିଆ ତଳୁ ଡିଟୋନେଟରଟିକୁ ଆବିଷ୍କାର କଲେ ଫରେଷ୍ଟ ଗାର୍ଡ଼ଙ୍କ ଗୃହିଣୀ । ଯେଉଁମାନେ ଡିଟୋନେଟର ଦେଖିଛନ୍ତି ସେମାନେ ଜାଣନ୍ତି ଯେ ଏହା ଠିକ୍ ଏକ ସୁନ୍ଦର ଡେଉଁରିଆ ଭଳି ଦେଖାଯାଏ । ଗୋଟାଏ ପଟ ମୁଦା ହୋଇଥାଏ, ଆର ପଟଟା ଖୋଲାଥାଏ ଫିଉଜ ପଶିବା ପାଇଁ । ଗୃହିଣୀ ଭାବିଲେ ଏହା ଏକ ସୁନ୍ଦର ଡେଉଁରିଆ । ସେଥିରେ କଣ ଗୋଟାଏ ଚେରମୂଳି ଭର୍ତ୍ତି କରି ପଠାଇଦେଲେ ଗାଁ କମାରଶାଳକୁ ଆର ପଟଟା ବନ୍ଦ କରିଦେବା ପାଇଁ । ଲୋକଟି ନେଇ ପହଞ୍ଚିଲା କମାରଶାଳରେ । ସେଠି ଆଗରୁ ୭/୮ ଜଣ ଲୋକ ପହଞ୍ଚି ସାରିଥିଲେ ଦାଆ, ଲଙ୍ଗଳ ଲୁହା, ପନଖି ପଜେଇବା ପାଇଁ । ଫରେଷ୍ଟ ଗାର୍ଡ଼ ଅଂଚଳର ସର୍ବମୟ କର୍ତ୍ତା । ବ୍ରିଟିଶ ଶାସନର ପ୍ରୟୋଗକାରୀ ହେଲେ ଗାଁ ଚଉକିଆ, ସର୍ବରାକାର ଏବଂ ଫରେଷ୍ଟ ଗାର୍ଡ଼ । ମହାମହିମ ବ୍ରିଟିଶ ସରକାରର ପ୍ରତିନିଧି । ତେଣୁ ଫରେଷ୍ଟ ଗାର୍ଡ଼ଙ୍କ କାମ ହେବ ଆଗ । ବାସ୍, ଚିମୁଟାରେ ଧରି

Digitized by srujan ka@gmail.com

କମାର ଡିଟୋନେଟ୍‌ରକୁ ନିଆଁରେ ଦେଖାଇଛି ଏବଂ ତା'ପରେ ସାକ୍ଷୀ ଦେବାକୁ କେହି ନଥିଲେ ସେହି ବିସ୍ଫୋରଣରେ । ତେଣୁ କଥାଟା ସେଇଠି ଚାପା ପଡ଼ିଗଲା । ବାପା ହାତୀ ଅଫିସର । ଆଠୋଟି ହାତୀ ଥାଆନ୍ତି ହାତୀଶାଳରେ । ହାତୀମାନଙ୍କୁ ମାହୁନ୍ତମାନେ ଗାଧୋଇବାକୁ ନିଅନ୍ତି ମଦନମୋହନ ମନ୍ଦିର ପାଖ ଗଭୀର ପୋଖରୀକୁ । ହାତୀ ତ ପାହାଚରେ ଓହ୍ଲାଇ ପାରିବ ନାହିଁ । ହୁଡ଼ାରୁ ସିଧା ଗଡ଼େ ଗଭୀର ଜଳକୁ । ହାତୀ 'ପାର୍ବତୀ' ଆମ ଘର ବାଟ ଦେଇ ଯାଏ ପୋଖରୀକୁ । ଆମ ଦୁଇଭାଇକୁ ଶୁଣ୍ଢରେ ଟେକି ଥୋଇଦିଏ ପିଠି ଉପରେ । ଦେଖ ବୋଉର ଆତଙ୍କ । ବାପା କିନ୍ତୁ କିଛି କହନ୍ତି ନାହିଁ । ଦାଦା ତ ଆଗ୍ରହ ଦେଖାଏ । ଏହିପରି ପ୍ରତିଦିନ ଏହା ଚାଲିଥିଲା ବହୁ ବର୍ଷ ଧରି । ପାର୍ବତୀ ମତେ ଚିହ୍ନି ଯାଇଥିଲା ଭଲ ଭାବରେ । ପୁରୁଣାଗଡ଼ ଛାଡ଼ିବାର ଅନେକ ବର୍ଷ ପର୍ଯ୍ୟନ୍ତ ଆମେ ଯେତେବେଳେ ପୁରୁଣାଗଡ଼ ଯାଇଛୁ ପାର୍ବତୀ ମୋତେ ଚିହ୍ନି ପାରିଛି ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ପୂର୍ବପରି ମୋତେ ଟେକି ନେଇଛି ଉପରକୁ । ମଜାର କଥା ହେଉଛି ଯେ, ଅନେକ ବର୍ଷ ପରେ ହଠାତ୍ ନନ୍ଦନକାନନ (ନୂଆ ଗଢ଼ାଯାଉଥାଏ)ରେ ମୋର ଦେଖା ହୋଇଗଲା 'ପାର୍ବତୀ' ସାଂଗରେ । ମୁଁ ତା' ପାଖକୁ ଗଲା କ୍ଷଣି ଚିହ୍ନା ଚିହ୍ନା ମନେହେଲା ତାକୁ । କିଏ ପାର୍ବତୀ ନାଁ ରେ ତୁ ! ଏତିକି କହିଲା କ୍ଷଣି ମୋତେ ପାର୍ବତୀ ସାଂଗେ ସାଂଗେ ଟେକି ନେଇଗଲା ଉପରକୁ । ମୋର ତ ଆଉ ସେ ବୟସ ନାହିଁ । ମୁଁ ଡରି ଛାନିଆଁ, କିନ୍ତୁ ପାର୍ବତୀ ମୋତେ ନ ଛାଡ଼େ । ତା ଶୁଣ୍ଢରେ ମୋତେ ଗେହ୍ଲା କଲା, ଆଦର କଲା । ମୋ ସ୍ତ୍ରୀ ଯାଇ ତା' ପାଇଁ କିଁଛି କଦଳୀ କିଣି ଆଣିଲେ । ତାକୁ ସେ ଆରାମରେ ଖାଇଲା ଏବଂ ମୋ ଉପରେ ଖୁସି ହୋଇ ମୋତେ ଗେହ୍ଲା କଲା ତା ଶୁଣ୍ଢରେ । ଚାରି ପାଖରେ ଭିଡ଼ ଜମିଗଲାଣି ସେତେବେଳକୁ । ଘଟଣା କଣ ଦେଖିବା ପାଇଁ । ମୋ ସ୍ତ୍ରୀଙ୍କ ଯେତିକି ଭୟ ନୁହେଁ ଅନ୍ୟମାନଙ୍କର ତା'ଠାରୁ ବେଶୀ । କିନ୍ତୁ ସେ ମୋତେ କିମିତି ଚିହ୍ନି ପାରିଲା ଏତେ ବର୍ଷ ପରେ, ତାହା ମୋତେ ବିସ୍ମିତ କରିଛି ।

କିନ୍ତୁ ପୁରୁଣାଗଡ଼ରେ ଏକ ମର୍ମନ୍ତୁଦ ଦୁର୍ଘଟଣା ଘଟିଗଲା । ବାପାଙ୍କର ଜଣେ ସହକର୍ମୀଙ୍କର ଦୁଇଟି ଝିଅ ମଧ୍ୟ ଆଉ ଗୋଟିଏ ହାତୀରେ ଆମରି ଭଳି ଯାଆନ୍ତି ସବୁବେଳେ । ଦିନେ ହାତୀକୁ ପୋଖରୀ ପାଖରେ ଛାଡ଼ିଦେଇ ମାହୁନ୍ତ ଯାଇଛି ତା ନିଜପାଇଁ ଦାନ୍ତକାଠିଟିଏ ଭାଙ୍ଗିବା ପାଇଁ । ହାତୀ ପୋଖରୀ ହୁଡ଼ାକୁ ତ ଉଠିଗଲା ସହଜରେ ଏବଂ ଆର ପଟରେ ଓହ୍ଲାଇଗଲା ଗଭୀର ଜଳକୁ ଆଉ ପିଲା ଦୁଇଟିର ସେଇଠି ଜଳ ସମାଧି ହୋଇଗଲା । ତା ପରେ ବୋଉ ତ ଆମକୁ ଛାଡ଼ିବାକୁ ନାରାଜ । ବାପା, ଦାଦା କିନ୍ତୁ ବୋଉର ପ୍ରତିବାଦ ସତ୍ତ୍ୱେ ଆମକୁ ଛାଡୁଥିଲେ ଯିବା ପାଇଁ । ବନ୍ୟବିଭାଗରେ ଲୋକ ପ୍ରାୟ ଶୁଅନ୍ତି ଦାଣ୍ଡ ବାରଣ୍ଡାରେ (ଶୀତ ଦିନକୁ ଛାଡ଼ି) । ଖରାଦିନେ ଶୁଅନ୍ତି ଖୋଲା ଆକାଶ ତଳେ । କେବଳ ଗର୍ଭଣୀ ନାରୀଙ୍କ ପାଇଁ ଛାମୁଣ୍ଡିଆ ତିଆରି ହୁଏ । ଚିରାନୁଚରିତ ଭାବରେ ବାପା, ଦାଦା, ବୋଉ ଏବଂ ଆମ ଦୁହିଁଙ୍କ ପାଇଁ ଖଟ ପଡ଼ିଛି ଦାଣ୍ଡ ଦୁଆରେ । ଆମେ ଦି ଭାଇ ଶୋଇଚୁ ସେଇଠି । ବାପା, ଦାଦା, ବୋଉ ବାରଣ୍ଡାରେ ଖାଇ

Digitized by srujan ka@gmail.com

ବସିଛନ୍ତି । ସେତେବେଳେ ସେଇ ଅଂଚଳରେ ଏକ ଲିଓପାର୍ଡ଼ (Leopard) ମାତିଥିଲା । ବାଘ ମାତିବା ଅପେକ୍ଷା ଲିଓପାର୍ଡ଼ ମାତିବା ବେଶୀ ଭୟାନକ । ବାଘ ଗୋଟିଏ ଜାଗାରେ ଖାଇଲେ ସେଇଠାକୁ ଫେରେ, କିନ୍ତୁ ଲିଓପାର୍ଡ଼ ବିଭିନ୍ନ ଜାଗାକୁ ଯାଇ ମଣିଷ ଖାଏ । ବାଘଠାରୁ ଲିଓପାର୍ଡ଼ ବେଶୀ ଦ୍ରୁତଗାମୀ । ବାଘ ମାତିଲେ ଅର୍ଥାତ ମଣିଷ ଖାଇଲେ ତ ଆତଙ୍କ ଖେଳିଯାଏ । କିନ୍ତୁ ଲିଓପାର୍ଡ଼ ବା ଚିତାବାଘ ମାତିଲେ ତା'ଠାରୁ ବେଶୀ ଆତଙ୍କ ଖେଳିଯାଏ । ଏଇପରି ଏକ ଲିଓପାର୍ଡ଼ ଥରେ ମାତିଥିଲା ଏବଂ ଆକ୍ରମଣରେ ଆହତ ହୋଇ ପଶିଥିଲା ଗୁମ୍ଫା ଭିତରେ । ତାକୁ ମାରିବାକୁ ଅନୁଗୋଳର ତତ୍‌କାଳୀନ ଗୋରା କଲେକ୍ଟର, ଏସ୍.ପି. ଏବଂ ଡି.ଏଫ୍.ଓ. ଗଲେ ସେଇ ଗୁମ୍ଫା ପାଖକୁ । ପରି ବାଣୁଆ ବା ଲୋକାଲ ଗାଇଡ଼ର ବାରଣ ସତ୍ତ୍ୱେ ସେମାନେ ତିନୋଟି ବନ୍ଧୁକ ଧରି ସେ ଗୁମ୍ଫା ପାଖକୁ ଗଲେ । ଆହତ, ମଣିଷଖିଆ ଲିଓପାର୍ଡ଼ ହଠାତ୍ ଝାଂପ ମାରିଲା ସେମାନଙ୍କ ଉପରକୁ । କଲେକ୍ଟରଙ୍କର ସେଇଠି ମୃତ୍ୟୁ ହୋଇଗଲା । ଏସ୍.ପି.ଙ୍କ ମୃତ୍ୟୁ ହୋଇଗଲା ଡାକ୍ତରଖାନାରେ ଏବଂ ଡି.ଏଫ୍.ଓ ଉଇଲିଅମ ଚଗ୍ଲସ ମାର୍ଗାରେଟ ବ୍ୟାରେନ ଦୁଇବର୍ଷ ଛୁଟିରେ ବିଲାତ ଯାଇ ଚିକିତ୍ସିତ ହୋଇ ଫେରିଲେ । ତାଙ୍କର ପିଚାଟାକୁ ଖାଇ ଯାଇଥିଲା ଲିଓପାର୍ଡ଼ । ସେଇପରି ଆଉ ଏକ ଲିଓପାର୍ଡ଼ ମାତିଥିଲା । ତା ପୂର୍ବଦିନ ସେ ପଚିଶ କି.ମି. ଦୂରରେ ଖାଇଥିଲା ଏକ ମଣିଷ । ବାପା, ଦାଦା, ବୋଉ ଖାଇ ବସିଛନ୍ତି ବାରଣ୍ଡାରେ, ହାତ ଅଇଁଠା । ବୋଉର ଆଖି ପଡ଼ିଗଲା ଆମ ଦୁହିଁଙ୍କ ଉପରେ ଏବଂ ସେ ଦେଖିଲା ଯେ ଅଦୂରରେ ସେଇ ଲିଓପାର୍ଡ଼ ଠିଆ ହୋଇଛି ଝାମ୍ପ ମାରିବା ପାଇଁ ଆମ ଉପରକୁ । ସେ ମୋର ଦାଦାଙ୍କୁ ହାତଠାରି ଦେଖାଇଦେଲା ଦୃଶ୍ୟକୁ । ଭାଗ୍ୟବଶତଃ ଦାଦାଙ୍କ ପାଖରେ ଥିଲା ତାଙ୍କର ଲୋଡ଼େଡ଼ ଡବଲ ବାରେଲ ଗନ୍ । ସେ କାଳ ବିଳମ୍ବ ନ କରି ସେ ବଂଧୁକକୁ ଉଠାଇ ଅପେକ୍ଷାକଲେ ଲିଓପାର୍ଡ଼ର ଝାମ୍ପକୁ । ଏବଂ ଝାମ୍ପ ମାରିବା ଅବସ୍ଥାରେ ହିଁ ଶୂନ୍ୟରେ ତାକୁ ଗୁଳିକଲେ ଦୁଇଟିଯାକ ଟ୍ରିଗର ଟିପି । ଲକ୍ଷ୍ୟଥିଲା ଅଭେଦ୍ୟ । ପ୍ରଚଣ୍ଡ ଗର୍ଜନ କରି ଓଲଟି ପଡ଼ିଲା ଆରପଟକୁ । ମୂହୂର୍ତ୍ତକରେ ବଂଚିଗଲୁ ଆମେ ଦି ଭାଇ ।

ଅରଣ୍ୟ ଘେରା ଅଂଚଳ । ଚତୁର୍ଦ୍ଦିଗର କୁଞ୍ଚିତ ପର୍ବତମାଳା । ନାରୀ ସ୍ତନର ଭ୍ରମ ସୃଷ୍ଟି କରେ । ବାପା ଯାଆନ୍ତି ଟୁର୍‌ରେ ଜଂଗଲକୁ । କେବେ କେବେ ଆମେ ଦୁଇଭାଇ ଯାଉ ସାଂଗରେ । ମୋ ଜେଜେମା' ବଡ଼ ନାତି ବୋଲି ଅନେକ ସମୟରେ ମୋତେ ଛାଡ଼େ ନାହିଁ । ସାନଭାଇ ବେଶି ଯାଏ । ତାର ଭୟ କମି ଯାଇଥିଲା ପିଲାଦିନରୁ । ଜେଜେମା' ମୋତେ ଝରକାବାଟେ ଭୂତ ଆସିବ ବୋଲି କହି ଡରାଇ ଶୁଆଇ ଦିଏ । ଅନେକ ବର୍ଷ ଅତିକ୍ରାନ୍ତ ହୋଇଛି । ମୁଁ ଦାଣ୍ଡପିଣ୍ଡାରେ, ଅଗଣାରେ, ମୁକ୍ତ ପଡ଼ିଆରେ ଶୋଇ ପାରେ କିନ୍ତୁ ଘରେ ଝରକା ଖୋଲି ଶୋଇ ପାରେନା । ଆଜି ମଧ ଚାଉଁ ଚାଉଁ ଲାଗେ, ଡର ଲାଗେ । ଥରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସାଂଗରେ ମୁଁ ଯାଉଥିଲି ବ୍ରହ୍ମପୁର । ବାଟରେ ବରକୂଳ (ସେତେବେଳକୁ ପାନ୍ଥନିବାସ ହୋଇ ନ

Digitized by srujan ka@gmail.com

ଥାଏ) ବଂଗଳାରେ ରହିଲୁ ଆମେ ରାତିରେ । ଦେଖିଲି ଗୋଦାବରୀଶ ବାବୁ ଝରକା ସବୁ ବନ୍ଦ କରୁଛନ୍ତି । କାରଣ ପଚାରିବାରୁ ସେ କହିଲେ ଯେ ସେ ଝରକା ଖୋଲି ଶୋଇ ପାରନ୍ତି ନାହିଁ । ମନରେ ସାନ୍ତ୍ୱନା ଆସିଲା । ଯାହାହେଉ ଏଡ଼େବଡ଼ ଲୋକଙ୍କ ସହିତ ମୁଁ ଅନ୍ତତଃ ଏଇଥିରେ ସମାନ । ଏଇପରି ମୁଁ ସାନ୍ତ୍ୱନା ଲାଭ କରିଛି ମୋର ଅନେକ ଦୁର୍ବଳତାର । ମୋର ଅଙ୍କ ହୁଏନା, କି ବ୍ୟାକରଣ ହୁଏନା । ବୀଜ ଗଣିତର ପୃଷ୍ଠା ମୁଁ କେବେ ଓଲଟାଇ ନାହିଁ । କୌଣସିମତେ ଗଣିତରେ ଶହେରୁ ବତିଶ ନମ୍ବର ରଖି ପାଶ କରିଚି । ଠିକ୍ ସେଇପରି ବ୍ୟାକରଣ । ନାଉନ୍ କ୍ଲଜ କଣ ମୁଁ ଅଦ୍ୟାପି କହି ପାରିବି ନାହିଁ । ଇଂରାଜୀର ଦ୍ୱିତୀୟ ପେପରରେ ୪୦ ନମ୍ବର ବ୍ୟାକରଣ । ସେଥିରେ ମୁଁ ଶୂନ୍ ବା ପାଞ୍ଚ ନମ୍ବର ପାଇଥିବି । ଯେଉଁଠି ଫର୍ମୁଲା ବା ରୁଲ୍ ଅଛି ସେ ସବୁ ମୋ ଦ୍ୱାରା ହୋଇ ପାରିବ ନାହିଁ । ମୁଁ ଏକ ବେନିୟମ ବ୍ୟକ୍ତି ଭାବରେ ଗଢ଼ି ଉଠିଛି । କବି ନଜ୍‌ରୁଲ୍ ଇସଲାମଙ୍କର 'ଆମି ଉଚ୍ଛୃଙ୍ଖଳ, ଆମି ମାନିନା କୋ କୋନୋ ଆଇନ୍' ମୋ ପାଇଁ ବୋଧିହୁଏ ପ୍ରଯୁଜ୍ୟ । କିନ୍ତୁ ସାନ୍ତ୍ୱନା ଖୋଜିଛି । ଶୁଣିଲି ଯେ ଥରେ ଜଣେ ଇଂରେଜ ଶିଳ୍ପୀ ପ୍ରସିଦ୍ଧ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ ପ୍ରତିମୂର୍ତ୍ତି ତିଆରି କରୁଥିଲେ । ଆଇନ୍‌ଷ୍ଟାଇନ୍ ତାଙ୍କୁ ସମୟ ଦେଇଥିଲେ ସିଟିଙ୍ଗ ପାଇଁ । ଶିଳ୍ପୀ ଦେଖନ୍ତି ଜଣେ କିଏ ଆସି ବୈଜ୍ଞାନିକଙ୍କ ଆଗରେ ବସୁଚି । ବୈଜ୍ଞାନିକ ତାକୁ ଅନର୍ଗଳ କଣସବୁ କହି ଚାଲିଛନ୍ତି ଜର୍ମାନ ଭାଷାରେ । ମୁହଁଭଙ୍ଗୀ ସବୁ ବଦଳି ଯାଉଛି ମୁହୂର୍ତ୍ତକୁ ମୁହୂର୍ତ୍ତ । ସେ ଲୋକ ନୀରବରେ ଟିପି ନେଉଛନ୍ତି ସବୁ ଏବଂ ପୁଣି ଫେରି ଆସୁଛନ୍ତି କିଛି ସମୟ ପରେ । ଦୁହିଁଙ୍କ ଭିତରେ ବାକ୍ୟାଳାପ ଜର୍ମାନ ଭାଷାରେ । ଶିଳ୍ପୀ କିଛି ବୁଝି ପାରୁ ନାହାନ୍ତି । କିନ୍ତୁ ଆଇନଷ୍ଟାଇନଙ୍କ ମୁହଁଭଂଗୀ ସବୁ ବାରମ୍ବାର ବଦଳି ଯାଉଥିବାରୁ ସେ ପଚାରିଲେ ଏଇ ଭଦ୍ରଲୋକ କିଏ ? ଆଇନ୍‌ଷ୍ଟାଇନ୍ ହସିଦେଇ କହିଲେ, ସେ ପରା ମୋର ଗଣିତଜ୍ଞ । ମୁଁ ପିଲାଦିନୁ ଅଙ୍କରେ ବହୁତ ଦୁର୍ବଳ । ତେଣୁ ମୁଁ ମୋର ମନକୁ ଯେଉଁ ଚିନ୍ତା ଆସେ ତାହା ତାଙ୍କୁ କହିଯାଏ । ସେ ତାକୁ ଗଣିତରେ କଷି ଆଣନ୍ତି । ମୋତେ ମିଳିଗଲା ବେଶ୍ ଏକ ସାନ୍ତ୍ୱନା । ଠିକ୍ ସେଇପରି ଥରେ ପଣ୍ଡିତ ଜବାହରଲାଲ ନେହେରୁଙ୍କର ପାଣ୍ଡୁଲିପିକୁ ନେଇଥିଲେ କ୍ରିଷ୍ଣ ମେନନ ସଂପାଦନା କରିବା ପାଇଁ । ହଠାତ୍ ଏକ କ୍ଳାନ୍ତ ଶ୍ରାନ୍ତ ମେନନ୍ ଆସି ଜବାହରଲାଲଙ୍କୁ କହିଲେ କି ପ୍ରକାର ବ୍ୟାକରଣ ଲେଖନ୍ତି ଆପଣ ? ଆପଣଙ୍କ ଲେଖା ସଂପାଦନା କରିବା ପାଇଁ ମୋତେ ଟନ୍ ଟନ୍ କମା, ସେମିକୋଲନ, କଂଜକସନ୍ ପ୍ରଭୃତି ବ୍ୟବହାର କରିବାକୁ ପଡ଼ିଲା ଏବଂ ବ୍ୟାକରଣଗତ ଅଶୁଦ୍ଧି ମଧ୍ୟ ସଂଶୋଧନ କରିବାକୁ ପଡ଼ିଲା । ଜବାହରଲାଲ ଉତ୍ତର ଦେଲେ ଲେଖିବା ମୋର କାମ, ବ୍ୟାକରଣ ସବୁ ତମର । ସେଇଯୋଗୁଁ ତ ସଂଶୋଧନ କରିବାକୁ ଦେଇଥିଲି ତୁମକୁ । ମୋତେ ଆଉ ଏକ ସାନ୍ତ୍ୱନା ମିଳିଗଲା । ସାନ୍ତ୍ୱନା ଯେପରି ସଂଗ୍ରହ କରିଛି, ଶିଖିବାକୁ ବି ଚେଷ୍ଟା କରିଛି ସମସ୍ତଙ୍କଠାରୁ । ଗୁରୁ, ଗଡ଼, ଗାଡ଼ିଆନ ଏବଂ ଗଭର୍ଣ୍ଣମେଣ୍ଟ— ଏଇ ଚାରି 'ଗ' ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛି ପିଲାଦିନରୁ । ଏନକୁଆରୀ ବା ଜିଜ୍ଞାସାରୁ ମୁଁ

Digitized by srujan ka@gmail.com

ହୋଇଯାଇଛି ଆଗ୍ନୋଷ୍ଟିକ (Agnostic) ଏବଂ ସେଥିରୁ ହୋଇଯାଇଛି ନିରୀଶ୍ୱରବାଦୀ ବା Atheist । କିନ୍ତୁ ଉଦ୍ଧବ ପରି ମୋର ଗୁରୁ ବହୁତ । ଥରେ ପ୍ରସିଦ୍ଧ ଆଡ଼ଭୋକେଟ୍ ଗଂଗାଧର ରଥଙ୍କ ସହିତ ଯାଉଥିଲି ବ୍ରହ୍ମପୁର । ପୁଣି ସେଇ ବରକୂଳରେ ରାତି କଟାଇବାକୁ ପଡ଼ିଲା । (ପାନ୍ଥ ନିବାସ ହୋଇ ନ ଥାଏ) ରାତିରେ ଗଂଗାଧର ବାବୁ ପଚାରିଲେ ଯେ ଗିରିଜା, ଆମେ କାହିଁକି ଯାଇଥାଉଁ ବ୍ରହ୍ମପୁର ? କୌଣସି ଏକ ବିବାହ ବା ସେଭଳି କାମରେ ଯାଇଥାଉଁ ଆମେ । 'ଆମେ ନ ଗଲେ ସେ ଆମକୁ ଖୋଜିବେ, ନ ପାଇଲେ ମନ ଖରାପ କରିବେ' ଏଇ ଥିଲା ମୋର ଉତ୍ତର । ସେ କହିଲେ ଠିକ୍ କହିଚ । "Attend those functions where your absence will be felt" । ଏଇ କଥାଟିକୁ ମଧ ମନେ ରଖିଛି । ବିବାହ ବ୍ରତ ଘରକୁ ନିଜେ ନ ଡାକିଲେ ଯାଏ ନାହିଁ । ଡାକିବା ଅର୍ଥ ଫୋନ କଲେ ବି ଯଥେଷ୍ଟ । କିନ୍ତୁ କାହା ହାତରେ ପଠାଇଦେଲେ ବା ଡାକରେ ପଠାଇଲେ ଯାଏ ନାହିଁ । ବ୍ୟକ୍ତିଗତ ଦି'ଧାଡ଼ି ଲେଖିଲେ ଯାଏ । କଟକ ସହରରେ ଜଣେ ନେତା ଥିଲେ । କଲେଜରୁ ପାଠ ପଢ଼ିବା ଦିନୁ ମୁଁ ତାଙ୍କୁ ଜାଣେ । ସେ ଜରୋରୀ ପରିସ୍ଥିତି ସମୟରେ ଜେଲ ଗଲେ । ସେତେବେଳେ ମୋର ଏକଦା ପଡ଼ୋଶୀ ଏବଂ ବଂଧୁ ଶ୍ରୀ ସତ୍ୟରଂଜନ ପାଲ ଥାଆନ୍ତି କଲେକ୍ଟର । ସେ ବଂଧୁ ବେମାର ହୋଇ ଗଲେ ଡାକ୍ତରଖାନାକୁ । ମୁଁ ଶ୍ରୀ ପାଲଙ୍କୁ କହିଲି ଚାଲନ୍ତୁ ଯିବା ତାଙ୍କୁ ଦେଖି ଆସିବା । ସେ ଆପଣଙ୍କ ମନ୍ତ୍ରୀ ଥିଲେ, ପୁଣି ମନ୍ତ୍ରୀ ହୋଇ ପାରନ୍ତି । ବିଧାନ ସଭାର ସଦସ୍ୟ । ଆପଣ ଯିବା ଉଚିତ । ତାଙ୍କୁ ତ ଏଇନା କେହି ପଚାରୁ ନ ଥିବେ, ଚାଲନ୍ତୁ ଯିବା । ଆମେ ଦି'ଚାରିଥର ସାଂଗ ହୋଇ ଯାଇଛୁ ଏବଂ ମୁଁ ଏକୁଟିଆ ଅନେକଥର ଯାଇଚି । ମୋର ଏତେଥର ଯିବା ଶୁଣି ଥରେ ରାଧାନାଥ ବାବୁ (ସମାଜ ସଂପାଦକ) ପଚାରିଲେ କଣ ସେ ଆପଣଙ୍କର ଖୁବ୍ ବଂଧୁ । ମୁଁ ତାଙ୍କୁ କହିଲି ଯେ ନା ତା' ନୁହେଁ । କିନ୍ତୁ ଏଇନା ତାଙ୍କ ପାଖକୁ ଯିବା ଉଚିତ ମନେକଲି । କାରଣ କିଏ ପଚାରିବ ତାଙ୍କୁ ବର୍ତ୍ତମାନ । ରାଧାନାଥ ବାବୁ କଥାଟାକୁ ବେଶ୍ ଭଲ ଭାବରେ ଗ୍ରହଣ କଲେ ଏବଂ ସାଂଗ ହୋଇ ଯାଇଛୁ ତାଙ୍କୁ ଦେଖିବା ପାଇଁ କିଛିଥର । ସେ ଖଲାସ ହେଲେ ଏବଂ ମନ୍ତ୍ରୀ ହେଲେ । ତାଙ୍କର କନ୍ୟାର ବିବାହ ହେଲା । ମୋ ପାଖକୁ କିଏ ଜଣେ ଆସି କାର୍ଡ଼ ଦେଇଗଲା । ଅସୁମାରି କାର୍ଡ଼ ଭିତରୁ ଗୋଟାଏ । ରାଧାନାଥ ବାବୁ ବାହାରିଲେ ବିବାହକୁ ଯିବାପାଇଁ । ମୋତେ ସାଂଗରେ ଯିବାକୁ କହିଲେ । କଣ ଆପଣଙ୍କୁ ସେ ଡାକି ନାହାନ୍ତି ? ମୁଁ ହଁ କଲି । କିନ୍ତୁ ଯିବି ନାହିଁ ବୋଲି କହିଲି । କାରଣ ପଚାରିବାରୁ କହିଲି ଯେ ମୁଁ ନ ଗଲେ ବି ସେ ମୋତେ ଖୋଜିବେ ନାହିଁ । କଣ ଖୋଜିବେ ନାଇଁ ? ରାଧାନାଥ ବାବୁ ପଚାରିଲେ । ଆପଣ ତାଙ୍କୁ ଏତେ ସାହାଯ୍ୟ କରିଛନ୍ତି ଦୁଃସମୟରେ ଏତେଥର ତାଙ୍କୁ ଭେଟିଛନ୍ତି ବନ୍ଦୀ ଅବସ୍ଥାରେ । ସେ ଖୋଜିବେ ନାହିଁ । ନା, ସେ ଖୋଜିବେ ନାହିଁ । ସେତେବେଳେ ତାଙ୍କ ପାଖରେ କେହି ନ ଥିଲେ । ଆଜି ସେ ସମୟ ନାହିଁ । ଆଜି ସେ ମନ୍ତ୍ରୀ, ବହୁତ ଲୋକ ଅଛନ୍ତି ପାଖରେ । ତା' ହେଲେ ମୁଁ ବି ଯିବିନାହିଁ ବୋଲି ରାଧାନାଥ ବାବୁ କହିଲେ । ଆପଣ ନ ଗଲେ

Digitized by srujan ka@gmail.com

ଆପଣଙ୍କୁ ସେ ଖୋଜିବେ । ରାଧାନାଥ ବାବୁଙ୍କୁ ନୁହେଁ, 'ସମାଜ'ର ସଂପାଦକ ରାଧାନାଥ ରଥଙ୍କୁ । ଯାଆନ୍ତୁ ଆପଣ । ସେ ଗଲେ ଏବଂ ଅକସ୍ମାତ ଭାବରେ ବିବାହର ଠିକ୍ ଦୁଇଦିନ ପରେ ରାଧାନାଥ ବାବୁଙ୍କ ପାଖରେ ସେଇ ବଂଧୁଙ୍କର ଓ ମୋର ଭେଟ ହୋଇଗଲା । ସେ ମୋତେ କିଛି ପଚାରିବା ଆଗରୁ ମୁଁ ତାଙ୍କୁ କହିଲି ଯେ ଯାହାହେଉ ମାଛ ତରକାରୀ ବେସରଟା ଖୁବ୍ ଭଲ ହୋଇଥିଲା ଇତ୍ୟାଦି । ସେ କଥାଟାକୁ ବେଶ୍ ଗ୍ରହଣ କରି ମୋତେ ଧନ୍ୟବାଦ ଦେଲେ ମୋର ଯୋଗଦାନ ପାଇଁ । ମୁଁ କହି ଚାଲିଛି ଏବଂ ସେ ତାର ପ୍ରତ୍ୟୁତ୍ତର ଦେଇ ଚାଲିଛନ୍ତି । ରାଧାନାଥ ବାବୁ ଆଉ ସମ୍ଭାଳି ପାରିଲେନି । ତାଙ୍କୁ କହିଲେ, ବୁଝିଲେ ଗିରିଜାବାବୁ ଠିକ୍ କହୁଥିଲେ । ତମେ ବିପଦରେ ଥିବା ବଂଧୁମାନଙ୍କୁ ହେଜ ନାହିଁ । ଇତ୍ୟାଦି ଇତ୍ୟାଦି । ସେ ବଂଧୁ ମୁହଁ ଶୁଖାଇ ବସିଲେ । ଅତ୍ୟନ୍ତ ଅପ୍ରୀତିକର ପରିସ୍ଥିତି ସତରେ !

ମୋର ମନେ ପଡୁଚି ଝିଅ ବିବାହ ସମୟରେ ମୋ ସ୍ତ୍ରୀ ନିମନ୍ତ୍ରଣ କାର୍ଡ଼ ବାଣ୍ଟୁଥିଲେ । ବଂଧୁ ରମାକାନ୍ତ ରଥ କହିଲେ ଯେ ତମେ କଣ ଆମ ସମସ୍ତଙ୍କୁ କାର୍ଡ଼ ବାଣ୍ଟି ବାଣ୍ଟି ଚାଲିଥିବ ? ଅସମ୍ଭବ । କାର୍ଡ଼ ଡାକରେ ପଠାଇ ଦିଅ ଏବଂ ଫୋନ୍ କରିଦିଅ । ସେଇ ଯଥେଷ୍ଟ । ଗିରିଜାର ଓ ତାର ସବୁ ବଂଧୁ ଯାଇ ପହଞ୍ଚିବେ । ନ ପହଞ୍ଚିଲେ ନାହିଁ । ତାଙ୍କ ଝିଅ ବିବାହ ବେଳକୁ ସେଇ ନିୟମରେ ଫୋନ କଲେ ଏବଂ ଡାକରେ କାର୍ଡ଼ ପାଇ ଯାଇଚୁ ଆମେ । ବଂଧୁ ଲକ୍ଷ୍ମୀଧର ମିଶ୍ର (ଲେଖିବା ସମୟରେ ଭାରତ ସରକାରଙ୍କର ଶ୍ରମ ସଚିବ) ମଧ ଠିକ୍ ସେଇ ପନ୍ଥା ଅନୁସରଣ କରିଥିଲେ । ଏକ ନିମନ୍ତ୍ରଣ ପତ୍ର, ଏକ ବ୍ୟକ୍ତିଗତ ଚିଠି ଏବଂ ଫୋନ କଲ୍ ଯଥେଷ୍ଟ ଥିଲା । ବଂଧୁ ରମେଶ ଚନ୍ଦ୍ର ମହାନ୍ତି (ଆଇ.ଜି. ପୋଲିସ) ତାଙ୍କର ଝିଅ ବିବାହ ବେଳକୁ ନାନା କାରଣରୁ ନିଜେ ନ ଆସି କାର୍ଡ଼ ପଠାଇଥିଲେ ଏବଂ କାହିଁକି ନିଜେ ଯାଇପାରୁ ନାହାନ୍ତି ତାହାର କାରଣ ଦେଇଥିଲେ । ନିମନ୍ତ୍ରଣ ଏବଂ ନିମନ୍ତ୍ରଣ ମଧରେ ପାର୍ଥକ୍ୟ ରହିଛି । ନିଜେ ଯିବାରେ, ଏକ ଚିଠି ସହ କାର୍ଡ଼ ପଠାଇବାରେ ବ୍ୟକ୍ତିଗତ ସଂପର୍କକୁ ଉଜ୍ଜୀବିତ କରିଥାଏ, ଡାକରେ ପଠାଇଲେ ତାହା ମିଳେ ନାହିଁ । ଡକ୍ଟର ସଦାଶିବ ମିଶ୍ର ତ କହନ୍ତି ଯେ ଡାକରେ ନିମନ୍ତ୍ରଣ ପତ୍ର ପଠାଇବାଟା ଯୋଗଦାନ ପାଇଁ ନିମନ୍ତ୍ରଣ ନୁହେଁ, କେବଳ ଜାଣିବା ପାଇଁ ମାତ୍ର ।

ପୁରୁଣା ଗଡ଼ରେ ଥିଲାବେଳେ ଗାନ୍ଧିଜୀଙ୍କ ପଦଯାତ୍ରା ସେଇ ପାଖ ବଡ଼କେରା ଛକ ଦେଇ । ଅସଂଖ୍ୟ ଲୋକଙ୍କର ଭିଡ଼ । ପୁଣି ଅନୁଗୋଳର ମହାମହିମ ଡେପୁଟି କମିଶନରଙ୍କ ହୁକୁମ ହୋଇଛି ଯେ ଅନୁଗୋଳ ସୀମା ଭିତରେ କେହି ତାଙ୍କୁ ଅତିଥି କରି ରଖି ପାରିବେ ନାହିଁ । ଅନୁଗୋଳର ପଶ୍ଚିମ ପଟ ରିଙ୍ଗ ରୋଡ଼ (ଯାହା ବର୍ତ୍ତମାନ ଗାନ୍ଧୀ ମାର୍ଗ ନାମରେ ପରିଚିତ) ଦେଇ ଗାନ୍ଧିଜୀ ଯାତ୍ରା କରି ଅନୁଗୋଳ ସୀମା ବାହାରେ ଏକ ଆମ୍ବ ତୋଟାରେ ରହିଲେ । ବ୍ରିଟିଶ ସରକାରଙ୍କର ଏଇ ପ୍ରବଳ ପରାକ୍ରମୀ ହାକିମ ସ୍ୱାଧୀନତା ପରେ ସ୍ୱାଧୀନ ସରକାରଙ୍କର ମଧ

Digitized by srujan ka@gmail.com

ସେଇପରି ପ୍ରବଳ ପରକ୍ରମୀ ହାକିମ ହେଲେ । ଲୋକଙ୍କ ପାଇଁ ସ୍ୱାଧୀନତାର କୌଣସି ସ୍ୱାଦ ରହିଲାନାହିଁ । ସ୍ୱାଧୀନତା ମିଳିଲା କିଛି ଉପର ଲୋକଙ୍କ ପାଇଁ ।

କବି ଲେଖିଥିଲେ :

''ଧଳା ବଦଳରେ କଳା ହେଲେ ଯୋକ
ମେଣ୍ଟିବ କି କୋଟି ଗରିବଙ୍କ ଦୁଃଖ ।''

ସାଧାରଣ ଲୋକଙ୍କ ପାଇଁ ସାଇନବୋର୍ଡ଼ ବଦଳି ଯାଇଛି ସିନା ଶାସନ ବଦଳି ନାହିଁ । ସମସ୍ତେ ଯିଏ ଯେଉଁଠି ଥିଲେ ସେମାନେ ସମସ୍ତେ ସେଇପରି ଅଛନ୍ତି । ନୂଆ କଣ ହେଲା ?

ଆଉ ଜଣେ କବି ଲେଖିଥିଲେ :

''ଯାହା ଯହିଁ ଥିଲା ସବୁ ତ ସେଠାରେ ଥୁଆ
କହ ମୋ ଧରଣୀ କେଉଁଠି ହୋଇଛି ନୂଆ ।''

କିନ୍ତୁ ସେଦିନ ଚାଞ୍ଚଲ୍ୟ ଖେଳିଗଲା । ନୂଆ 'ଓଡ଼ିଶା ପ୍ରଦେଶ' ଗଠନ ହୋଇଛି । ୧୯୩୬ ମସିହା ଏପ୍ରିଲ ପହିଲା । ଏପ୍ରିଲ ପହିଲାକୁ ଇଂରେଜମାନେ All fools day ଭାବରେ ପାଳନ କରନ୍ତି । ବର୍ଷଯାକ ମହଜୁଦ୍ କରି ନୂଆ ନୂଆ ରସରସିଆ କଥା ବା ପାଖ ଲୋକକୁ ମିଛ କହି ଭୁଲେଇଦେବା ବା ମନେଇଦେବା ସେଦିନ ହୁଏ । ବ୍ରିଟିଶ୍ ସରକାର ସେଦିନ ଓଡ଼ିଆ ଜାତିକୁ ଫୁଲ୍ ବା ବୋକା ବନାଇ ଦେଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳ ରହିଗଲା । ମେଦିନୀପୁରରେ, ସିଂହଭୂମି ରହିଗଲା, ବିହାରରେ, ମଂଜୁଷା, ତରଳା ଟିକାଲୀ ରହିଗଲା ମାନ୍ଦ୍ରାଜ ପ୍ରଦେଶରେ, ରାୟଗଡ଼ା ଜିଲ୍ଲା ରହିଗଲା ମଧ୍ୟପ୍ରଦେଶରେ । ଏସବୁ ବାଦ ଦେଇ ଓଡ଼ିଶା ପ୍ରଦେଶ ଗଠନ ହେଲା । କୁଳବୃଦ୍ଧ ମଧୁସୂଦନ ବିଦାୟ ନେଇଥିଲେ ଧରାପୃଷ୍ଠରୁ ୧୯୩୪ ମସିହାରେ । ପାଞ୍ଚୋଟି ଜିଲ୍ଲାକୁ ନେଇ ଓଡ଼ିଶା ପ୍ରଦେଶ ଗଠିତ ହେଲା ଏବଂ ଗଂଜାମ ଜିଲ୍ଲାର ସବୁ ତାମିଲିଆନ ଅଫିସରମାନେ ବିଦାୟ ନେଇଗଲେ । ତେଣୁ ଓଡ଼ିଶାର ଅଫିସରମାନଙ୍କୁ ପୋଷ୍ଟିଂ କରାଗଲା ଗଂଜାମ, କୋରାପୁଟ ଜିଲ୍ଲାମାନଙ୍କରେ । ଗଂଜାମ ଜିଲ୍ଲାରେ ଦେଶ ମିଶ୍ରଣ ବାର୍ତ୍ତା ପହଞ୍ଚାଇଥିଲେ ୰ ପର୍ଶୁରାମ ବର୍ମା, ୰ ଦିବ୍ୟସିଂହ ପଟ୍ଟନାୟକ ପ୍ରଭୃତି ।

ଓଡ଼ିଶା ପ୍ରଦେଶ ଗଠନ ହେଲା । ଆମର ଆନ୍ଦୋଳନ ଯୋଗୁଁ ସମ୍ଭବ ହେଲା କି ସାଇମନ୍ କମିଶନଙ୍କ ଦୟାରୁ ହେଲା ତାହା ସେମାନେ କହି ପାରିବେ ; ମୋର ବୟସ ହୋଇ ନ ଥିଲା ବିଚାର କରିବା ପାଇଁ । ସାଇମନ୍ କମିଶନ ଭାରତବର୍ଷକୁ ଆସିଥିଲେ ୧୯୨୯ ମସିହାରେ । ସାଇମନ କମିଶନଙ୍କୁ ବୟକଟ କରିଥିଲେ ଭାରତବାସୀ । ସେମାନେ ଯୁଆଡ଼େ ଗଲେ ତାଙ୍କୁ କଳାପତାକା ଦେଖାଗଲା, ବିକ୍ଷୋଭ ହେଲା, ହରତାଳ ହେଲା ଏବଂ ଲାଠିଗୁଳି ଚାଲିଲା । ବାଲ ଗଙ୍ଗାଧର ତିଳକ ପୁଲିସ ଲାଠି ମାଡ଼ରେ ପ୍ରାଣତ୍ୟାଗ କଲେ । ପଣ୍ଡିତ ନେହେରୁ ଘୋଡ଼ା ସବାର ସୈନ୍ୟଙ୍କ ଆଗରେ ପଡ଼ି ଆହତ ହେଲେ । ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଲାଠି ମାଡ଼ରେ ଏପରି

Digitized by srujan ka@gmail.com

ଆଘାତ ପାଇଲେ ଯେ ହାତ ଥରିବା ତାଙ୍କର ରହିଗଲା ମୃତ୍ୟୁ ପର୍ଯ୍ୟନ୍ତ । ସାଇମନ କମିଶନ ଓଡ଼ିଶା ଆସି ନ ଥିଲେ । ଓଡ଼ିଶାର ଏକ ପ୍ରତିନିଧି ଦଳ ତାଙ୍କୁ ଭେଟିବାକୁ ଯାଇଥିଲେ ଜାମ୍‌ସେଦ୍‌ପୁର । ସେଠାରେ ଷ୍ଟେସନ ଉପରେ ସେମାନେ ପ୍ଲାକାର୍ଡ଼ ଧରି ଠିଆ ହୋଇଥିଲେ – Welcome Simon Commission, We want Orissa Province. ସାଇମନ କମିଶନ ଆପଣାର ରିପୋର୍ଟରେ ସେଇକଥା ଉଲ୍ଲେଖ କରିଛନ୍ତି । ଆମେ ସମଗ୍ର ଭାରତବର୍ଷରେ ଭୀଷଣ ବିକ୍ଷୋଭର ସମ୍ମୁଖୀନ ହୋଇଛୁ । ଆମେ ଓଡ଼ିଶା ଯାଇନାହୁଁ । ଓଡ଼ିଶା ଲୋକେ କିନ୍ତୁ ଆମକୁ ସ୍ୱାଗତ ଜଣାଇଥିଲେ ଜାମସେଦପୁର ଷ୍ଟେସନରେ । ସେମାନଙ୍କୁ ଓଡ଼ିଶା ପ୍ରଦେଶ ଦିଆଯାଉ ।

ଏହା ନ୍ୟାଯ୍ୟ ଦାବିର ପୂରଣ ନା ନିମକହାରାମି ମାହାଲ ? ଆମେ ଓଡ଼ିଶା ପ୍ରଦେଶ ପାଇଲେ ସତ କିନ୍ତୁ ମହାଭାରତୀୟ ସ୍ରୋତରେ ଆମର ସ୍ଥାନ କେଉଁଠି ରହିଲା ? ଏଇ ପ୍ରଶ୍ନ ମୋ ମନରେ ଉଠିଛି । ଏଇ ପ୍ରତିନିଧି ଦଳରେ ଜଷ୍ଟିସ ହରିହର ମହାପାତ୍ର ଯାଇଥିବା ଜାଣି ତାଙ୍କୁ ଥରେ ମୁଁ ସେକଥା ପଚାରିଥିଲି । ସେ କହିଲେ ଯେ ଆମେ ଜାତୀୟ ମହାସ୍ରୋତରୁ କିଞ୍ଚିତ ଅଲଗା ହୋଇଗଲୁ ସତ୍ୟ କିନ୍ତୁ ତମେମାନେ ଆମର ସେଦିନର ଦୁଃଖ ବୁଝିପାରିବ ନାହିଁ । ଗଡ଼ଜାତର ପ୍ରଜାମାନଙ୍କୁ ଯେପରି ରାଜା ବିରୋଧୀ ଆନ୍ଦୋଳନ ଏବଂ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ଏଇପରି ଦୁଇଟି ସଂଗ୍ରାମ କରିବାକୁ ପଡୁଥିଲା ଠିକ୍ ସେଇପରି ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ସହିତ ଓଡ଼ିଆମାନଙ୍କୁ ବଂଗାଳୀମାନଙ୍କ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡୁଥିଲା । ଆମର ନିଜର ଭାଷା, ସ୍ୱାଧୀନ ଅସ୍ତିତ୍ୱ ଯେତେବେଳେ ବିପଦାପନ୍ନ ସେତେବେଳେ ଆମ ଆଗରେ ମୁଖ୍ୟ ପ୍ରଶ୍ନ ଥିଲା ଆମର ସ୍ୱତନ୍ତ୍ର ଅସ୍ତିତ୍ୱ । ତା' ନ ହେଲେ ଆମେ ସାମ୍ରାଜ୍ୟବାଦ ବିରୁଦ୍ଧରେ କଣ ଓ କିପରି ସଂଗ୍ରାମ କରିବୁ ? ଏ କଥାର କିଛି ଗୁରୁତ୍ୱ ମୁଁ ନିଜେ ଅନୁଭବ କଲି । ଯଦିଓ ଏକଥା ମଧ ସତ୍ୟ ଯେ ଆଧୁନିକ ଓଡ଼ିଆ ସାହିତ୍ୟର ମଉଡ଼ମଣି ରାଧାନାଥ ରାୟ ବଂଗାଳୀ, ଭକ୍ତକବି ମଧୁସୂଦନ ରାଓ ମରାଠୀ, କର୍ମବୀର ଗୌରୀଶଙ୍କର ବଂଗାଳୀ, ଓଡ଼ିଆ ଆଧୁନିକ ନାଟକର ବିନ୍ଧାଣୀ ଅଶ୍ୱିନୀ କୁମାର ଘୋଷ ବଂଗାଳୀ ଏପରିକି ଓଡ଼ିଶା ପ୍ରଦେଶ ଗଠନ ପାଇଁ ସହିଦ ହୋଇଥିବା ସୁନୀଲ ଦେ ବଂଗାଳୀ । ଏ ତାଲିକା ସରିବ ନାହିଁ । ଏମାନେ ସମସ୍ତେ ଓଡ଼ିଆ ।

ଓଡ଼ିଆ ଜାତିର ସେଇ ସର୍ବଭାରତୀୟତା ଅନ୍ୟତ୍ର ଖୁବ୍ କମ୍ ଦେଖା ଯାଇଚି । ଓଡ଼ିଶାର ମାଟି ପାଣି ପବନକୁ ଯେ ଆପଣାର କରିନେଇଛି, ଓଡ଼ିଶା ଦେଶର ସ୍ୱାର୍ଥ ସହିତ ଯାହାର ସ୍ୱାର୍ଥ ଜଡ଼ିତ ସେ ଯେଉଁ ଭାଷାର ଲୋକ ହେଉନା କାହିଁକି ଓଡ଼ିଶା ସେମାନଙ୍କୁ ଓଡ଼ିଆ ଭାବରେ ଗ୍ରହଣ କରିଛି । ଯେଉଁ ମୁଷ୍ଟିମେୟ ବଂଗଭାଷୀ ଓଡ଼ିଶାର ଲୋକମାନଙ୍କ ଉପରେ ଅତ୍ୟାଚାର କରୁଥିଲେ ସେମାନେ ଏ ଗୋଷ୍ଠୀର ନୁହଁନ୍ତି । ସେମାନେ ଥିଲେ ସାମ୍ରାଜ୍ୟବାଦୀ ଶୋଷଣର ଅଂଶବିଶେଷ । କିନ୍ତୁ ଏହା ଓଡ଼ିଆ-ବଂଗାଳୀ ତିକ୍ତତାର ରୂପ ନେଇଛି ବେଳେ ବେଳେ । ଏ ସଂପର୍କରେ ମୋର

Digitized by srujan ka@gmail.com

ଏକ କାହାଣୀ ମନେ ପଡୁଚି । ମୋର ଜଣେ ବଂଧୁ ଥିଲେ କଲ୍ୟାଣ ମଜୁମଦାର । ତାଙ୍କର ସଂଧ୍ୟା ଠାରୁ ପାହାନ୍ତିଆ ପର୍ଯ୍ୟନ୍ତ ସମୟ କଟେ ରେଳବାଇ ଷ୍ଟେସନରେ, ନଚେତ୍ ରେଳବାଇ ଇନ୍‌ଷ୍ଟିଚ୍ୟୁଟରେ ଡ୍ରାମା କରିବାରେ । ରେଳବାଇ ଷ୍ଟେସନରେ ବିଭିନ୍ନ ବଂଧୁଙ୍କ ସହିତ ଆଡ୍ଡା ମାରିବା ସହିତ ସହାୟତା ଲୋଡୁଥିବା ଯାତ୍ରୀମାନଙ୍କୁ ସାହାଯ୍ୟ କରିବା ଥିଲା ତାଙ୍କ କାମ । ଦିନେ ସେ ରାତି ପୁରୀ ଏକ୍ସପ୍ରେସରେ ଜଣେ ଯାତ୍ରୀକୁ ଗାଡ଼ିରେ ଉଠିବା ପାଇଁ ସାହାଯ୍ୟ କରୁଥିଲେ । କିନ୍ତୁ ଭିତର ପଟୁ କବାଟ ଅନ୍ୟମାନେ ଖୋଲୁ ନ ଥିଲେ । କଲ୍ୟାଣ ଦା କିନ୍ତୁ ଜିଦ୍‌ଖୋର, ନଛୋଡ଼ ବଂଧା । ପରିଶେଷରେ ଜଣେ ଭଦ୍ରଲୋକ ଝରକା ବାଟେ ମୁହଁ ବାହାର କରି କାହିଁକି କବାଟ ବାଡ଼ଉଚ ବୋଲି ପଚାରିଲେ । କାରଣ କହିବାରୁ ସେ ଡବା ଭିତରକୁ ଆସିବାକୁ ଚାହୁଁଥିବା ବ୍ୟକ୍ତିଙ୍କୁ ଓଡ଼ିଆ ଭାବି କଣ ଗୋଟାଏ ଖରାପ ମନ୍ତବ୍ୟ ଦେଲେ । ହଠାତ୍ ଦେଖାଗଲା ଯେ କଲ୍ୟାଣଙ୍କ ହାତର ଏକ ଶକ୍ତ ଚାପୁଡ଼ାରେ ତାଙ୍କ ମୁଣ୍ଡ ତଳକୁ ଝୁଙ୍କି ପଡ଼ିଛି ଏବଂ ପାଟିରୁ ରକ୍ତ ବାହାରୁଛି ଏବଂ କଲ୍ୟାଣ ତାଙ୍କୁ କହୁଛନ୍ତି ଯେ ଏ ମାଡ଼ଟା ଓଡ଼ିଆ ହାତରୁ ନୁହେଁ ବଂଗାଳୀ ହାତରୁ ହିଁ ହୋଇଛି । ତମେସବୁ ଦିନକ ଲାଗି ଓଡ଼ିଶା ଆସିବ ସମୁଦ୍ର ହାୱା ଖାଇବା ପାଇଁ, ଜଳବାୟୁ ପରିବର୍ତ୍ତନ ପାଇଁ ଆଉ ଛାଡ଼ିଯିବ ଏପରି ବିଷ ଯେ ସେଇ ବିଷରେ ଜର୍ଜରିତ ହେବୁ ଆମେ । ଚାପୁଡ଼ାର ଶକ୍ତ ଆଘାତରେ କଲ୍ୟାଣଙ୍କ ହାତର ମୁଦିଟା ଭାଙ୍ଗି ଖସି ପଡ଼ିଛି ତଳେ ।

କଲ୍ୟାଣ ବହୁବର୍ଷ ଧରି ସୂର୍ଯ୍ୟୋଦୟ ଦେଖି ନ ଥିଲେ । କାରଣ ସେ ଶୁଅନ୍ତି ପାହାନ୍ତିଆ ବେଳକୁ ଏବଂ ଉଠନ୍ତି ଦିନ ଦଶଟା ବେଳକୁ । ରାତିଟା ରେଳବାଇ ଷ୍ଟେସନ ବା ରେଳବାଇ ଇନ୍‌ଷ୍ଟିଚ୍ୟୁଟରେ କଟିଯାଏ । କଲ୍ୟାଣ ଦା ଏବଂ ମୁଁ ଏକା ସାଂଗରେ ଜେଲ ଯାଇଥିଲୁ । ଜେଲଖାନା ଭିତରେ ସକାଳୁ ଉଠିବାକୁ ବାଧ । ସେଦିନ ସକାଳେ ସୂର୍ଯ୍ୟୋଦୟ ଦେଖି କଲ୍ୟାଣ ଦା ହଠାତ୍ ଚିତ୍କାର କରି ଉଠିଲା । ଓଃ ! ଏଇ ହେଉଛି ସୂର୍ଯ୍ୟୋଦୟ ! ତାପରେ ସେ ଗାଇ ଉଠିଲା—

ଅରୁଣ ପାତେର ତରୁଣ ଦଲ୍,
ଚଲରେ, ଚଲରେ ଚଲରେ ଚଲ ।
ଉଷାର ଦୁଆରେ ହାନି ଆଘାତ
ଆମରା ତୁଟା ବୋ ତିମିର ରାତ
ବାଧାର ବିନ୍ଧ୍ୟାଚଲ୍ ।
ଚଲରେ, ଚଲରେ, ଚଲରେ ଚଲ ।

ସାମ୍ପ୍ରଦାୟିକ, ଭାଷାଗତ ମୈତ୍ରୀ ସତ୍ତ୍ୱେ କେବେ ଏମିତି ଦୁଷ୍ଟବ୍ରଣ ଦେଖାଯାଏ । ମୋର ମନେ ପଡୁଛି ଏଇପରି ଏକ ଘଟଣାର କଥା । କିଛି ଟ୍ରେନ ଯାତ୍ରୀଙ୍କ ଉପରେ ଦୁର୍ବୃତ୍ତମାନେ ଆକ୍ରମଣ କରିଥିଲେ ଏବଂ ବଂଗଳାର ଏକ ଖ୍ୟାତନାମା ଖବରକାଗଜରେ ବଂଗାଳୀ ଯାତ୍ରୀଙ୍କ ଉପରେ ଓଡ଼ିଆ ଗୁଣ୍ଡାମାନଙ୍କ ଆକ୍ରମଣ— ଶୀର୍ଷକ ଏକ ସମ୍ବାଦ ପ୍ରକାଶ ପାଇଥିଲା ଏବଂ

Digitized by srujan ka@gmail.com

ଫଳରେ ଉତ୍ତେଜନା ସୃଷ୍ଟି ବି ହୋଇଥିଲା । ହାବଡ଼ାରେ କିଛି ଓଡ଼ିଆ ମାଲିକାନାରେ ପରିଚାଳିତ ଦୋକାନ ଉପରେ ମଧ୍ୟ କିଛି ଦୁର୍ବୃତ୍ତ ଚଢ଼ାଉ କରିଥିଲେ । ଏକ ପ୍ରତିନିଧି ଦଳ ଯାଇ ଦେଖା କରନ୍ତି ବଂଗଳାର ତତ୍କାଳୀନ ଉପମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁଙ୍କୁ ଏବଂ ଖବରକାଗଜରେ ପ୍ରକାଶିତ କଟିଙ୍ଗ ବି ଦେଖାନ୍ତି । ଜ୍ୟୋତି ବାବୁ ଫୋନ କରନ୍ତି ଉକ୍ତ ସଂବାଦପତ୍ରର ସଂପାଦକଙ୍କୁ । ପଚାରନ୍ତି ଦୁର୍ବୃତ୍ତମାନେ ଯାତ୍ରୀମାନଙ୍କ ଉପରେ ଆକ୍ରମଣ କଲେ । ଏହା ନିନ୍ଦାର ବିଷୟ । କିନ୍ତୁ ଯାତ୍ରୀମାନଙ୍କୁ ବଂଗାଳୀ ଏବଂ ଦୁର୍ବୃତ୍ତମାନଙ୍କୁ ଓଡ଼ିଆ ବୋଲି ଆଖ୍ୟା ଦେବାର ଯଥାର୍ଥତା କେଉଁଠି ? ଏହାର ପ୍ରତିକ୍ରିୟା ସଂପର୍କରେ ଆପଣ ସଚେତନ ତ ! ସେ ପଟରୁ କଣ ଉତ୍ତର ଆସିଲା ମୁଁ କହି ପାରିବି ନାହିଁ । କିନ୍ତୁ ଜ୍ୟୋତି ବାବୁ ଏ ପଟରୁ କହିବାର ଶୁଣାଗଲା, ''କଣ ପୁଲିସ ପଠାଇବି ନା ଲୋକ ପଠାଇବି ?'' ଘଟଣାଟିର ସମାପ୍ତି ସେଇଠି ଘଟିଥିଲା ।

ଠିକ୍ ସେଇପରି କଟକରେ ଥରେ ତଥାକଥିତ ବଂଗାଳୀ-ଓଡ଼ିଆ ବିଦ୍ୱେଷ ମୁଣ୍ଡ ଟେକି ଥିଲା । କେଉଁ ଘଟଣାରୁ ତାହାର ସୂତ୍ରପାତ ହେଲା ମୋର ମନେପଡୁ ନାହିଁ । କଟକ ରାଣୀହାଟରେ ଶ୍ରୀ ସୁକୁମାର ସେନ (ବାଦଲ ସେନ) ପରିବାର ଜଣେ ପ୍ରତିଷ୍ଠିତ ପରିବାର । ସେମାନେ ଅନେକ 'କଟକିଆ'ଙ୍କ ଠାରୁ ମଧ୍ୟ ପୁରାତନ ବାସିନ୍ଦା । ତାଙ୍କ ଘର ଉପରେ କିଛି କଲେଜ ପିଲା ଚଢ଼ଉ କରନ୍ତି ଏବଂ ଜଣେ କଲେଜ ଛାତ୍ର ତାଙ୍କ ସ୍ତ୍ରୀଙ୍କର ବାଳ ଟାଣିଦିଏ । ସୁକୁମାର ସେନ ମୋର ସହପାଠୀ ଏବଂ ଗଭୀର ବଂଧୁ । ଅଭିମାନ ଓ ଦୁଃଖରେ ବାଦଲ ସେନ୍ କଟକ ଛାଡ଼ିବା ପାଇଁ ସ୍ଥିର କରନ୍ତି । କାରଣ ଏପରି ଏକ ଘଟଣା ଘଟିବ ବୋଲି ସେ ଆଶା କରି ନ ଥିଲେ । ଅବଶ୍ୟ ବହୁ ବଂଧୁ ତାଙ୍କ ପଛରେ ଠିଆ ହୋଇଥିଲେ ଏଇ ଘଟଣା ପରେ ଏବଂ ତାଙ୍କର କଟକ ଛାଡ଼ିବା ପ୍ରଶ୍ନ ଉଠି ନ ଥିଲା ।

କିଛି ବର୍ଷପରେ ଉକ୍ତ କଲେଜ ଛାତ୍ର  ମନ୍ତ୍ରୀ । ଥରେ ଆସିଥାନ୍ତି କଟକ । କଲେକ୍ଟର ଥାଆନ୍ତି ଶ୍ରୀ ବିନୋଦ ଝା । କୌଣସି ଏକ କାର୍ଯ୍ୟକ୍ରମରେ ତାଙ୍କ ସହିତ ଭେଟହୁଏ କଲେକ୍ଟରଙ୍କ ରେସିଡେନ୍ସ ଅଫିସରେ । ଆଉ ଦି'ଚାରିଜଣ ବ୍ୟକ୍ତି ମଧ୍ୟ ସେଠାରେ ଥିଲେ । ସେ ଭିତରେ ଥିଲେ କଟକ ପୌର ସଂସ୍ଥାର ତତ୍କାଳୀନ ଏକଜିକ୍ୟୁଟିଭ ଅଫିସର ୬ କଲ୍ଲୋଳ କୁମାର ଘୋଷ । କଥାବାର୍ତ୍ତା ଭିତରେ ସୁକୁମାର  ମନ୍ତ୍ରୀଙ୍କୁ ଦୁଇଚାରିଥର ସାର୍ ସାର୍ କହିଛନ୍ତି । ସୁକୁମାର ସ୍ୱଭାବତଃ ବିନୟୀ ଓ ଭଦ୍ର । ସେ ପୂର୍ବକଥା ଭୁଲନ୍ତୁ ବା ନ ଭୁଲନ୍ତୁ ପୁରୁଣା କଥା ଉଠାଇ ନାହାନ୍ତି । କଲ୍ଲୋଳ ଘୋଷ କିନ୍ତୁ ତାକୁ ରାଗରେ ଅନେଇଛନ୍ତି, ଦାନ୍ତକୁ କାମୁଡ଼ି । ମନ୍ତ୍ରୀ ଉଠିଯିବା ମୁହୂର୍ତ୍ତରେ ଆରମ୍ଭ କଲେ କଲ୍ଲୋଳ ଘୋଷ ତାଙ୍କର ବାକ୍ୟବାଣ । ସେ ଭୁଲିଗଲେ ଯେ ତାଙ୍କ କଲେକ୍ଟର ସେଠି ଉପସ୍ଥିତ । ବିନୋଦ ଝା ଘଟଣା କଣ ବୁଝିପାରୁ ନାହାନ୍ତି । କାହିଁକି ଏ ତୋଫାନ ?

କଲ୍ଲୋଳ ଘୋଷ ଏକ ବିଚିତ୍ର ପ୍ରକାରର ମଣିଷ । ଆମ ପରିବାର ସହିତ ତାଙ୍କ ପରିବାର ସଂପର୍କ ଥିଲା ବେଶ୍ ଘନିଷ୍ଠ । କଲ୍ଲୋଳ ଘୋଷ ଦୁଃସାହସୀ । ଚଳନ୍ତା ଟ୍ରେନ୍‌ରୁ ଆର ପଟରେ

Digitized by srujan ka@gmail.com

ଠିଆ ହୋଇଥିବା ଟ୍ରେନ୍‌ର କମ୍ପାଟମେଣ୍ଟକୁ ଡେଇଁ ପାରୁଥିଲେ ସେ । ଏଇପରି ଥରେ ଡେଉଁ ଡେଉଁ ପାଦ ଖସିଗଲା ଏବଂ ତାଙ୍କର ଗୋଡ଼ର ଆଗ ଭାଗଟା ସଂପୂର୍ଣ୍ଣ କଟିଗଲା ଟ୍ରେନ୍ ଚକ ତଳେ ହାଉଡ଼ା ଷ୍ଟେସନ ପାଖରେ । ସେ ରେଭେନ୍ସା କଲେଜକୁ ପାଠ ପଢ଼ିବାକୁ ଆସିଥାନ୍ତି ଅନୁଗୋଳ ହାଇସ୍କୁଲରୁ । ସେତେବେଳେ ରାଣୀହାଟ ଛକଠାରୁ ଦୋଳମୁଣ୍ଡେଇ ଛକ ଭିତରେ ରାସ୍ତା ଦୁଇ କଡ଼ରେ କୌଣସି ଘର ନ ଥିଲା । ଶଗଡ଼ିଆ ସାହୀ ନାମରେ କିଛି ଚାଳଘର ଥିଲା ରାସ୍ତାଠାରୁ ବେଶ୍ ଦୂରରେ । ଆଜିର ଫ୍ରେଣ୍ଡସ୍ କଲୋନୀ ସେତେବେଳେ ଦୁରାରୋଧ ଅଂଚଳ । ଗୋଖୁର ସାପ କିଆବୁଦାର ସ୍ଥାନ । କଟକର ସବୁ ପାଣି ନିଷ୍କାସନ ପାଇଁ ଗୋଟିଏ ବୃହତ୍ ନାଳ ଅଛି । ତାହାର ନାମ ଷ୍ଟର୍ମ ୱାଟର ଚାନେଲ । ତାହା ବାରବାଟୀ ଷ୍ଟାଡିଅମଠାରେ ମହାନଦୀରୁ ବାହାରି ଖାନନଗରଠାରେ କାଠଯୋଡ଼ୀରେ ପଡ଼ିଛି । ଏହିବାଟ ଦେଇ କଟକର ସବୁ ପାଣି ନିଷ୍କାସିତ ହୋଇଯାଏ । ବଜ୍ରକବାଟି ପାଖରେ ରାଣୀହାଟ-ଦୋଳମୁଣ୍ଡେଇ ରାସ୍ତାକୁ କାଟି କରି ଯାଇଛି । ରାଣୀହାଟଠାରୁ ଖାନ୍‌ନଗର ଶ୍ମଶାନ ପର୍ଯ୍ୟନ୍ତ ଯାଇଥିବା ରାସ୍ତା ହେଉଛି ପ୍ରକୃତରେ ନଇବନ୍ଧ । ବଢ଼ିପାଣି ସହର ଭିତରକୁ ପଶିଆସିବାର ଭୟ ଦେଖାଗଲେ ଏଠାରେ ଥିବା କବାଟକୁ ବଂଦ କରି ଦିଆଯାଏ । କବାଟଟିକୁ ଜଗୁଥିଲା ବ୍ରଜ ନାମକ ଏକ ବ୍ୟକ୍ତି । ତେଣୁ ତାହା ବ୍ରଜକବାଟି ନାମରେ ଖ୍ୟାତ ଥିଲା । ପରେ ତାହା ଅପଭ୍ରଂଶ ହୋଇ ବଜ୍ରକବାଟି ନାମରେ ପରିଣତ ହୋଇଛି । କଟକ ସହରଟା ଗୋଟାଏ ସଶର୍ ବା ଟା ପ୍ଲେଟ ଭଳି ସ୍ଥାନ । ନଇବନ୍ଧ କ୍ରମଶଃ ଉଚ୍ଚ ହେବାରେ ଲାଗିଛି । କଟକ ସହରରେ ଆଗ ଥିଲା ୧୮୦୦ ଛୋଟବଡ଼ ପୋଖରୀ । ପାଣିକୁ ଧରି ରଖୁଥିଲା ଏସବୁ ପୋଖରୀ । ସମଗ୍ର ଫେଣ୍ଡସ୍ କଲୋନୀ ଅଂଚଳ ଥିଲା ଏକ ବିଶାଳ ହ୍ରଦ ଭଳି ଅଂଚଳ । ସେ ସବୁ ପୋତି ହୋଇଗଲାଣି । ଆଉ ମାତ୍ର ଶହେ ବି ନାହିଁ । ଫଳରେ ସହରର ସବୁ ପାଣି ଷ୍ଟର୍ମ ୱାଟର ଚାନେଲ ଦେଇ ଯିବାକୁ ବାଧ କିନ୍ତୁ ଏତେ ପାଣିକୁ ବାଟ କାହିଁ ? ତେଣୁ ବେଙ୍ଗ ମୁତିଲେ ବି ଜଳାର୍ଣ୍ଣବ ହେବାକୁ ବାଧ । ସେଇଯୋଗୁଁ ସମସ୍ତଙ୍କର ମତ ଯେ ରାଣୀହାଟ ଖାନନଗରର ଉଚ୍ଚା ରାସ୍ତାକୁ ଭାଙ୍ଗି ସମତଳ କରି ଦିଆଯାଉ । ତା'ହେଲେ ରାସ୍ତା ବି ଚଉଡ଼ା ହେବ, ପାଣି ଖଲାସ ହେବାପାଇଁ ମଧ ସୁବିଧା ହେବ ।

କିନ୍ତୁ ଆମ ଦେଶ ହେଉଛି ଏକ ପ୍ରିଜନର୍ ଅଫ୍ ଇନଡିସିସନ (Prisioner of indecision)ର ଦେଶ । ନିଷ୍ପତ୍ତି ନେଲେ ଦାୟିତ୍ୱ ବେଶି, ବିପଦ ବି ଅଛି, କାଳେ ଭୁଲ୍ ନିଷ୍ପତ୍ତି ହୋଇଯିବ । କିଛି ନ କଲେ ତୁମେ ''ଗୁଡ୍‌ବୟ'', ଭଲ ମଣିଷ । ମାଛିକୁ ମ କହେ ନାହିଁ । ଏଭଳି ଏକ ପରିସ୍ଥିତିକୁ ମୁଁ ଘୃଣା କରି ଆସିଛି । ସେଇଯୋଗୁଁ ବିବାଦ ମୋତେ ଗୋଡ଼ାଇଛି ଚିରକାଳ । ପରେ ଆସିବା ସେ କଥାକୁ ।

ବଜ୍ରକବାଟି ରାସ୍ତା ଥିଲା ନିକାଞ୍ଚନ । ସେଇଠି ଦିନ ଦି ପହରରେ ତିନିପତି ତାସ ଖେଳାହୁଏ । ବାଟରେ ଯାଉଥିବା ଲୋକେ ଆକୃଷ୍ଟ ହୁଅନ୍ତି ଟଂକାକ ବଦଳରେ ଦଶଟଙ୍କା/କୋଡ଼ିଏ

Digitized by srujan ka@gmail.com

ଟଙ୍କା ପାଇବା ଲୋଭରେ ସର୍ବସ୍ୱାନ୍ତ ହୁଅନ୍ତି । ତିନିପତି ତାସ ଖେଳ ପାଇଁ କ୍ୟାପିଟାଲ ଦରକାର ନାହିଁ । ଗାମୁଛାଟିଏ, ଗୋଟିଏ ବିଡ଼ା ତାସ, କିଛି ନଗଦ ଟଙ୍କା (ଯେଉଁ ଟଙ୍କା ସେମିତି ଅତୁଟ ରହିବ) ଏବଂ ତିନି ଚାରିଜଣ ଲୋକ । ଜଣେ ତାସ ଖେଳୁଥିବ ଏବଂ ଆଉ ତିନିଜଣ ମିଛରେ ଜିତୁଥିବେ । ଏହା ଫଳରେ ବାଟୋଇର ଆଗ୍ରହ ବଢ଼ିଯିବ ଜିତିବା ପାଇଁ । ଏହି ତିନିପତି ତାସ ଖେଳ କେବଳ ସେଇଠି ନୁହେଁ, କଲେଜ ଛକରେ ବହୁ ବ୍ୟକ୍ତି ଏଥିରେ ଲିପ୍ତ ଥିଲେ । ଧନାଢ଼୍ୟ ବ୍ୟକ୍ତିଙ୍କଠାରୁ ଆରମ୍ଭ କରି ସେଲୁନ୍ ଦୋକନୀ ମଧ ଏକାଠି ଖେଳନ୍ତି । ରାତା ରାତି ହଜାର ହଜାର ଟଙ୍କା ଏ ହାତ ସେ ହାତ ହୁଏ ।

କଟକ ସହରରେ ଓଡ଼ିଶାର ରବିନ୍ ହୁଡ୍, ବିହାରୀ ନାୟକ, ଅମୁ ଏବଂ ଖଇରାତି ଖୁବ୍ ଜଣାଶୁଣା । ବିହାରୀ ନାୟକ ତା କ୍ଷେତ୍ରରେ ସେ ପ୍ରବାଦପୁରୁଷ । ରବିନ୍ ହୁଡ୍ ଓ ବଂଗଳା ଉପନ୍ୟାସର 'ଦସ୍ୟୁ ମୋହନ' ଭଳି ତା ନାଁରେ ବହୁତ କାହାଣୀ ରହିଛି । ସେଥିରୁ କେତେ ସତ୍ୟ, କେତେ ଗଳ୍ପ କହିବା କଠିନ । ତେବେ ପରିଶେଷରେ ସେ ଧରା ପଡ଼େ ଖାନନଗରରୁ ପୁଲିସ ବିଭାଗର ଅନ୍ୟତମ ପ୍ରବାଦପୁରୁଷ ଶ୍ରୀକୃଷ୍ଣ ମହାପାତ୍ରଙ୍କ ଦ୍ୱାରା । ସେ ସଂତ୍ରାସବାଦୀ କାର୍ଯ୍ୟରେ ଲିପ୍ତଥିବା ତାଙ୍କ ପୁଅକୁ ଧରାଇଦେଇଥିଲେ । ପୁଅ ବିଶ୍ୱାସରେ ବାପାଙ୍କୁ କହିଥିଲା ତାର ଉଦଗ୍ର ଦେଶପ୍ରେମର କାର୍ଯ୍ୟକ୍ରମ । ଭାବିଥିଲା ଯେ ବାପା ପ୍ରଥମେ ଭାରତୀୟ ଏବଂ ପରେ ସେ ପୁଲିସ୍ ଅଫିସର । କିନ୍ତୁ ଭୁଲି ଯାଇଥିଲା ଯେ ଜଣେ ପୁଲିସ ଅଫିସର ପ୍ରଥମେ ପୁଲିସ ଅଫିସର ଏବଂ ପରେ ଆଉ ଯାହା କିଛି । ପୁଅର ଗୁପ୍ତ ଆଡ୍ଡା ଧରା ପଡ଼ିଥିଲା ବାପାଙ୍କ ସାହାଯ୍ୟରେ ବ୍ରିଟିଶ ପୁଲିସଙ୍କ ଦ୍ୱାରା । ପୁଅ ଆତ୍ମହତ୍ୟା କରିଥିଲା, ବାପା ଦେବାନ୍ ବାହାଦୂର ଉପାଧି ପାଇଥିଲେ । ସୁରେନ୍ଦ୍ର ମହାନ୍ତି ଆପଣାର 'ପତାକା ଉତ୍ତୋଳନ' ଗଳ୍ପରେ ଏହି କାହାଣୀକୁ ଅମର କରି ଯାଇଛନ୍ତି । ଦେବାନ ବାହାଦୂର ଶ୍ରୀକୃଷ୍ଣ ମହାପାତ୍ରଙ୍କର ଶିକାରୀ ଆଖିକୁ ଏଡ଼ାଇ ଯାଇ ନ ପାରି ବିହାରୀ ନାୟକ ଧରା ପଡ଼ିଥିଲା ଏବଂ ବୟାନ ଦେଇଥିଲା ଯେ ତାର ଚୋରା ମାଲର ବେପାର ସେ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଜରିଆରେ କରୁଥିଲା । ଏହି ଅଭିଯୋଗର ସତ୍ୟତା ମୁଁ କହି ପାରିବି ନାହିଁ । କିନ୍ତୁ ଗୋପାଳ ଚନ୍ଦ୍ର ପ୍ରହରାଜ ତାର ଓକିଲ ଥିଲେ ଏବଂ ଜାମିନଦାର ମଧ ଥିଲେ ।

ଗୋପାଳ ଚନ୍ଦ୍ର ପ୍ରହରାଜ ଓକିଲାତି ଛାଡ଼ି ''ଓଡ଼ିଆ ଭାଷାକୋଷ'' ପ୍ରଣୟନରେ ବ୍ୟାପୃତ ହେଲେ । ଜମିଦାର ଥିଲେ ସେ । ଭଲ ଓକିଲ ବି ଥିଲେ । କିନ୍ତୁ ସବୁ ଛାଡ଼ି ଲେଖିଲେ ଭାଷାକୋଷ । ଏଥିରେ ସମଗ୍ର ଜୀବନ କଟିଗଲା । କିନ୍ତୁ ଆର୍ଥିକ ଅବସ୍ଥା ହେଲା ଶୋଚନୀୟ । ବହୁ ରାଜା ମହାରାଜାଙ୍କ ସାହାଯ୍ୟ ପାଇଥିଲେ ସେ ଭାଷାକୋଷ ସଂକଳନ ପାଇଁ । ସେ ଭାଷାକୋଷ ଆଉ ମିଳୁନାହିଁ । ଏବେ ତାକୁ ସଂଶୋଧନ ଓ ପରିମାର୍ଜିତ କରି ଶ୍ରୀ ଗିରିଶ ଚନ୍ଦ୍ର ମିଶ୍ର ନୂତନ ସଂସ୍କରଣ କରୁଛନ୍ତି । ସେଥିପାଇଁ ସେ ଅଭିନନ୍ଦନୀୟ ସମଗ୍ର ଜାତିର । ଜଷ୍ଟିସ ହରିହର ମହାପାତ୍ରଙ୍କର

Digitized by srujan ka@gmail.com

ସ୍ୱପ୍ନକୁ ସେ ସାର୍ଥକ କରିଛନ୍ତି । ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଏଇ ସ୍ୱପ୍ନ ଦେଖୁଥିଲେ । ମୋର ମନେ ପଡୁଛି, ମୃତ୍ୟୁର ଦୁଇଦିନ ପୂର୍ବରୁ ମୁଁ ତାଙ୍କୁ ଭେଟିବାକୁ ଯାଇଥିଲି । ସେ ଶୀର୍ଣ୍ଣ ହୋଇଯାଇଥିଲେ । ସ୍ୱର୍ଣ୍ଣାଭ ଦେହ ମଳିନ ହୋଇ ଆସିଥିଲା । କୁଞ୍ଚିତ ହୋଇ ଯାଇଥିଲା ଚକ୍ ଚକ୍ ମାରୁଥିବା ଚମଡ଼ା । ସେ ଧୀର କଣ୍ଠରେ କହିଲେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ନୂତନ ସଂସ୍କରଣ ହୁଅନ୍ତା ନାହିଁ ? ମୁଁ ଅର୍ଥର ବନ୍ଦୋବସ୍ତ କରିବି । ମୁଁ ଚାହିଁ ରହିଥିଲି ତାଙ୍କୁ । ମୃତ୍ୟୁର ପଦଧ୍ୱନି ଶୁଭୁଛି କେବଳ ତାଙ୍କୁ ନୁହେଁ, ଆମ ସମସ୍ତଙ୍କୁ । ଡାକ୍ତର କହିଦେଇ ସାରିଲେଣି ଯେ ସମୟ ହୋଇଛି । ଯେ କୌଣସି ମୁହୂର୍ତ୍ତରେ ମୃତ୍ୟୁ ଆସି ଯାଇପାରେ । ସେ ମଧ ତାହା ଜାଣିଛନ୍ତି । ଏ' କଣ ସ୍ଥିତପ୍ରଜ୍ଞତା ନା ମୃତ୍ୟୁର ପ୍ରଳାପ ? ଭାଷାକୋଷ ରଚନା ସମାପ୍ତି ବେଳକୁ ଗୋପାଳ ଚନ୍ଦ୍ର ପ୍ରହରାଜ ପୁଣି ବୃଦ୍ଧ ବୟସରେ ଓକିଲାତି କରିବାକୁ ଯାଇଥିଲେ । ଜଷ୍ଟିସ ରାଜକିଶୋର ଦାସ ତାଙ୍କର ଆତ୍ମ-ଜୀବନୀରେ ଲେଖି ଯାଇଛନ୍ତି, ତାଙ୍କର ଦୂରାବସ୍ଥାର କାହାଣୀ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସବୁ ଛପା ସରିଥିଲା, କିଛି ବଂଧା ହୋଇ ମାର୍କେଟକୁ ଯାଇଥିଲା, ବାକିସବୁ ଥିଲା ସେଇପରି । ଏତିକିବେଳେ ତାଙ୍କର ପରଲୋକ ହୋଇଯାଇଥିଲା । ଅବନ୍ଧା ଭାଷାକୋଷ ସବୁ ବିକ୍ରି ହୋଇଥିଲା ଠୁଙ୍ଗା ଦରରେ । ତାଙ୍କର ଚା'ରେ ବିଷ ମିଶାଇ ତାଙ୍କୁ ମାରି ଦିଆଗଲା ବୋଲି ଅଭିଯୋଗ ହେଲା । କିନ୍ତୁ ବିଷ ଦେଲା କିଏ ? ଗୋପାଳ ଚନ୍ଦ୍ର ପ୍ରହରାଜ ରହୁଥିଲେ କଟକରେ । ତାଙ୍କ ସ୍ତ୍ରୀ ରହୁଥିଲେ ଗାଁରେ । ହଠାତ୍ ଦିନେ ଦେଖାଗଲା ଯେ ତାଙ୍କ ସ୍ତ୍ରୀ ମରି ପଡ଼ିଛନ୍ତି ତାଙ୍କ ଘର ବାହାରେ ଥିବା ପାଳଗଦାମାନଙ୍କ ଭିତରେ । ଅନେକ ଖୋଳତାଡ଼ ହେଲା, କିନ୍ତୁ କିଛି ଜଣା ପଡ଼ିଲା ନାହିଁ । ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପାଖରେ ରହୁଥିଲେ ତାଙ୍କର ଶାଳୀ ପିତାମ୍ବରୀ ଦେବୀ । ସେ ଅସାମାନ୍ୟା ସୁନ୍ଦରୀ ଥିଲେ କୁଆଡ଼େ । ମୋ ଅଜା ବ୍ରଜମୋହନ ପଟ୍ଟନାୟକଙ୍କର ଗୋପାଳଚନ୍ଦ୍ର ପ୍ରହରାଜ ଥିଲେ ଅନ୍ତରଂଗ ବନ୍ଧୁ । ତାଙ୍କରିଠାରୁ ଶୁଣିଥିଲି । ପିତାମ୍ବରୀ ଦେବୀ ବିଷ ଦେଇଥିବା ଅଭିଯୋଗରେ ଗିରଫ ହେଲେ । ପିତାମ୍ବରୀ ଦେବୀଙ୍କର ବକ୍ତବ୍ୟ ହେଲା ଯେ ସେ ପ୍ରକୃତରେ ପ୍ରହରାଜଙ୍କର ସ୍ତ୍ରୀ । ଏହା ପ୍ରମାଣିତ କରିବା ପାଇଁ ସେ କୋର୍ଟରେ ପ୍ରହରାଜଙ୍କର ଡାଇରୀ ଉପାସ୍ଥାପିତ କଲେ । ସେ ତାଙ୍କର ସ୍ତ୍ରୀ ଏହା ପ୍ରମାଣିତ ହେଲା, ସେ ଖଲାସ ହେଲେ । କିନ୍ତୁ ସେ ଡାଇରୀରୁ ମଧ ପ୍ରକାଶିତ ହୋଇଗଲା ଯେ ଗୋପାଳଚନ୍ଦ୍ର ପ୍ରହରାଜ ଆପଣାର ସ୍ତ୍ରୀଙ୍କୁ ମାରି ଦେଇଥିଲେ ଲୋକ ଲଗାଇ ।

ଅନେକ ଦିନ ପରେ, ଦିନେ ବିନୋଦ କାନୁନଗୋ ଓ ମୁଁ ଚାଲି ଚାଲି ଆସୁଥିଲୁ ପୁରୀ ବଡ଼ ଦାଣ୍ଡରେ । ହଠାତ୍ ଦେଖାହେଲା ନାଟ୍ୟମଂଚର ପ୍ରବାଦପୁରୁଷ ବାଉରୀବଂଧୁ ମହାନ୍ତିଙ୍କ ସାଂଗରେ । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ବାଉରୀବଂଧୁଙ୍କୁ କିଏ ନ ଜାଣେ ଓଡ଼ିଶାରେ ? ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ନାଟକ ଦଳକୁ ନେଇ ସେ ଓଡ଼ିଶାର ବିଭିନ୍ନ ସହର ଓ ଗ୍ରାମମାନଙ୍କୁ ଯାଆନ୍ତି ଏବଂ ଆୟୋଜନ କରନ୍ତି ନାଟକ । ମାଗି ଯାଚି ଚଉକୀ ଆଣନ୍ତି ବିଭିନ୍ନ ସ୍ଥାନରୁ । ସେତେବେଳେ ତ

Digitized by srujan ka@gmail.com

ଆଜିକାଲି ଭଳି ଚଉକୀ ଟେବୁଲ, ଚାନ୍ଦୁଆ ଯୋଗାଇବା ପାଇଁ ପେଷାଦାର ସପ୍ଲାୟର୍ସ ନ ଥିଲେ । ସବୁ ମାଗିବାକୁ ପଡ଼େ, ହଲ ଖୋଜିବାକୁ ପଡ଼େ । ବାଉରୀବଂଧୁଙ୍କ ଭଳି ମଣିଷର ନାଁ ମନେରଖିବା ଲୋକ ମୁଁ ଜୀବନରେ ଦେଖି ନାହିଁ । ସେ ହଜାର ହଜାର ଲୋକଙ୍କର ନାମ, ଡାକନାମ ଓ ସେ ଲୋକ ବିଷୟରେ ସବୁ ବିଷୟ ମନେ ରଖିପାରୁ ଥିଲେ ବର୍ଷ ବର୍ଷ ଧରି । ଜୀବନ ତମାମ ନାଟକ ଆୟୋଜନ କରିଛନ୍ତି । ନିଜ ଜୀବନର ନାଟକ କିନ୍ତୁ ଆୟୋଜିତ ହୋଇ ପାରି ନାହିଁ । ବିବାହ କରି ନାହାନ୍ତି । ଅନ୍ନପୂର୍ଣ୍ଣା ଥିଏଟର ଭାଙ୍ଗି ଯାଇଛି । ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍, 'ଏ' ଗ୍ରୁପରୁ ଅଲଗା ହୋଇଯାଇଛି । ପରେ ଦୁଇଟି ଯାକ ଭାଙ୍ଗି ଯାଇଛି । ନାଟକର ମୋକଦ୍ଦମା ଜୀବନର ମୋକଦ୍ଦମାରେ ପରିଣତ ହୋଇଛି । ଅନ୍ନପୂର୍ଣ୍ଣା ଥିଏଟରର ଘର ରହିଛି କଟକରେ । ତାର ପୁନରୁଦ୍ଧାର କରିବା ପାଇଁ ବହୁ ଉଦ୍ୟମ ହୋଇଛି । କିନ୍ତୁ ସବୁ ପରାଜୟ ଲଭିଛି । ବାଉରୀବଂଧୁଙ୍କ ବୟସ ହୋଇଛି । ସେ ପୁରୀରେ ରହୁଥିଲେ ସେତେବେଳେ । ସେ ବିନୋଦ ବାବୁଙ୍କୁ ନାମ ଧରି ଡାକିଲେ । ସେଥିରେ ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ । କାରଣ ବିନୋଦ ବାବୁ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । କିନ୍ତୁ ସେ ମୋତେ ଦେଖିଥିଲେ ପିଲାଦିନେ । ବର୍ତ୍ତମାନ ପର୍ଯ୍ୟନ୍ତ ସେ ମୋର ଡାକ ନାମ ମନେ ରଖିଥିବା ଜାଣି ମୁଁ ଆଶ୍ଚର୍ଯ୍ୟ ହେଲି ।

ମୋର ଡାକ ନାମ 'ପାକୁ' । ଦାନ୍ତ ଉଠିବାର ବିଳମ୍ବ ହେତୁ 'ପାକୁଆ' ବୋଲି କହୁ କହୁ ଅପଭ୍ରଂଶ ହୋଇ 'ପାକୁ'ରେ ପରିଣତ ହୋଇଛି । ସେ ନାମ ଧୀରେ ଧୀରେ ହଜି ଗଲାଣି । କିନ୍ତୁ ଦିନ ଥିଲା ଲୋକମାନେ ଏଇ ନାମରେ ହିଁ ଜାଣିଥିଲେ । ମୋର ଭଲ ନାମ ଅନେକ ଜାଣି ନ ଥିଲେ । ଆଜି ମୁଷ୍ଟିମେୟ ଲୋକେ ମୋତେ ସେଇ ନାମରେ ଡାକନ୍ତି । ଡାକିଲେ ଆଜି ଦେହରେ ମନରେ ଶିହରଣ ଖେଳିଯାଏ । ପିଲାଦିନର ସ୍ମୃତି ଜାଗରୂକ ହୁଏ ।

ବାଉରୀବଂଧୁ ଡାକିଲେ ତାଙ୍କ ଘରକୁ । ନାହିଁ କରିବାର ବାଟ ନ ଥିଲା । ତାଙ୍କୁ ତ କେହି କେବେ ନାହିଁ କରିପାରି ନାହାନ୍ତି ।

ତାଙ୍କ ଘର ଦେଖି ମନେ ହେଲା ଏକ ବିରାଟ ଭଙ୍ଗାଭଙ୍ଗିର ସଂସାର । ସବୁ ଯେପରି ଭଂଗା । ଜୀବନଠାରୁ ଆରମ୍ଭ କରି ଚା' କପ୍ ପର୍ଯ୍ୟନ୍ତ । ଜୀବନର ସ୍ୱପ୍ନଠାରୁ ଆରମ୍ଭ କରି ଚୌକୀ ପର୍ଯ୍ୟନ୍ତ । ମନେ ପଡ଼ିଲା ଗୋପାଳ ଛୋଟରାୟଙ୍କ ନାଟକ 'ଭରସା'ର ଶିଳ୍ପୀ ଆନନ୍ଦଙ୍କ ଘର ପରି । ସବୁ ଯେପରି ଭାଜି ଯାଇଛି ମହାକାଳର ଘୂର୍ଣ୍ଣିର ପ୍ରକୋପରେ । ଯେଉଁ ଭଦ୍ରମହିଳା ଚା' ଆଣି ଦେଲେ ସେ ପିନ୍ଧିଥିଲେ ଅଖା ଭଳି ଏକ ଶାଢ଼ୀ । ବୟସ ହୋଇଛି । ଶୀର୍ଣ୍ଣ ଦେହରେ ବୟସର ଦାଗ ପ୍ରଚୁର । ହାତ କିଛି କିଛି ଥରୁଛି । ସେ ଥରିବା ସହିତ ଚା' କପଟା ପ୍ଲେଟ ଉପରେ ମଧ ଶବ୍ଦ କରି ଚାଲିଛି । ବହୁ ଦୂରରେ ଯେପରି କେଉଁ ଦୂରନ୍ତ ଅଶ୍ୱର ପଦଧ୍ୱନି ! ବିନୋଦ ବାବୁ ତାଙ୍କୁ ଅନେଇ ଚାଲିଲେ ଆପାଦ ମସ୍ତକ । ଚିହ୍ନିଲା ଚିହ୍ନିଲା ମୁହଁ, କିନ୍ତୁ ସମୟର ଧୂଳିରେ ଅସ୍ପଷ୍ଟ । କଣ ବିନୋଦ ବାବୁ ଇମିତି ଗୋଟାଏ ସ୍ତ୍ରୀ ଲୋକକୁ ଅନେଇଛନ୍ତି ?

Digitized by srujan ka@gmail.com

ବାଉରୀବଂଧୁ କିନ୍ତୁ ଜାଣିଲା ପରି କହିଲେ । ହଁ, ବିନୋଦ, ଏ ସେଇ । ତମେ ଠିକ୍ ଧରିଛ । ମହାକାଳର ବାତଚକ୍ର ଭିତରେ ସେ ଓ ମୁଁ ଦୁହେଁ ଘୂରି ବୁଲୁଥିଲୁ । ହଠାତ୍ ଦେଖାହେଲା ସେ ମୋତେ ଆଉଜି ଗଲେ ଏବଂ ମୁଁ ତାଙ୍କୁ ମଧ, ଜୀବନର ଏଇ ସଂଧ୍ୟାରେ । ଆମେ ରହିଯାଇଛୁ ସେଇପରି କୂଳ ଗୋଟାଏ ପାଇଛୁ ଯେପରି । ମନେ ପଡ଼ିଲା ହେମନ୍ତ କୁମାରଙ୍କ ସେଇ ଗୀତର ଲହରୀ...

''ଓ ନଦୀରେ ଏକ୍‌ଟୁ କଥା ଶୁଧାଇ ସୁଧୁ ତୋମାରେ,
ଏ କୁଲ୍ ଭେଂଗେ ଓ କୁଲ ତୁମି ଗଡ଼ୋ,
ଯା'ର ଏ କୁଲ ଓ କୁଲ ଦୁକୁଲ୍ ଗେଲୋ,
ତାର ଲାଗି କି କରୋ ।''

ଯା'ର ଦୁଇକୂଳ ଗଲା ତା' ପାଇଁ ବି ବେଳେ ବେଳେ କୂଳର ସଂଧାନ ମିଳେ, ନା ?

ବିନୋଦ ବାବୁ ପଚାରିଲେ । ସେ ଭଦ୍ରମହିଳାଙ୍କ ମୁହଁରେ ହସର ଏକ ମ୍ଳାନ ରେଖା ଉକୁଟି ହଠାତ୍ ଲିଭିଗଲା । ତାଙ୍କୁ ଦେଖିଲେ ମନେହେଉଥିଲା ଯେ ଯଦିଓ ଆଜି ସେ ବିଗତ-ଯୌବନା, କିନ୍ତୁ ଦିନେ ତାଙ୍କ ଦେହରେ ସୌନ୍ଦର୍ଯ୍ୟ ଲହଡ଼ି ମାରୁଥିଲା । ଟଣା ଟଣା ଆଖି, ଉନ୍ନତ ଗ୍ରୀବା, କେଶ ପକ୍ୱ ସତ୍ୟ ତଥାପି କି ଦୈର୍ଘ୍ୟ ତାର ! ନିତମ୍ୱ ତଳକୁ ଝୁଲି ରହିଛି କେଉଁ ଯୁବକର ସ୍ୱପ୍ନ ପରି । ଓଠ ଦିଓଟିରେ ଗୋଲାପୀ ରେଖା ତଥାପି ସ୍ପଷ୍ଟ ଯଦିଓ ଶୁଷ୍କ । ଶୁଖିଲା ଗୋଲାପ ପରି ।

କଣ ହେଲା ଆପଣଙ୍କର ପିତାମ୍ବରୀ ଦେବୀ ? ବିନୋଦ ବାବୁ ପଚାରିଲେ । ସେତେବେଳେ ଯାଇ ମୁଁ ଜାଣିଲି ଯେ ଏ ହେଉଛନ୍ତି ସେଇ ପିତାମ୍ବରୀ ଦେବୀ ।

ପିତାମ୍ବରୀ ଦେବୀଙ୍କ କଣ୍ଠ ରୁଦ୍ଧ ହୋଇଯାଉଥିଲା । ସେ କହି ଚାଲିଲେ । ଭାବନା ସବୁ ଯେପରି ସମୟର ବ୍ୟାରେଲ ଭିତରୁ ବାହାରି ଆସୁଛି । ବେଦନାର ସ୍ୱର ।

ଆପଣ ତ ସବୁ ଜାଣନ୍ତି । ସେଦିନ ରିକ୍ସାରେ ଲଦି ନେଇ ଯାଇଥିଲି ମୋର ସବୁ ସୁନା ଅଳଙ୍କାର ଏବଂ ତାଙ୍କର ଡାଏରୀ, ବଂଚିବା ପାଇଁ ମୋ ହାତରେ ଥିଲା କେବଳ ସେ ଦୁଇଟି ସମ୍ୱଳ । ମୁଁ ଜାଣିଥିଲି ଯେ ମୁଁ ହୁଏତ ଫାଶି କାଠରୁ ମୁକ୍ତି ପାଇବି କିନ୍ତୁ ଛାଡ଼ି ଆସିଥିବା ଘରକୁ ଆଉ ଫେରି ପାଇବି ନାହିଁ । ତେଣୁ ପାରିବାରିକ ବଂଧୁ ଭାବରେ ସବୁ ସୁନା ଗହଣା ଓ ଡାଏରୀ ତାଙ୍କ ପାଖରେ ଛାଡ଼ି ଯାଇଥିଲି । ଯଦି କେବେ ଫେରେ ତା' ହେଲେ...... ? ମୁଁ ଫେରିଥିଲି । ଘରର କବାଟ ବନ୍ଦ ହୋଇ ଯାଇଥିଲା । କିନ୍ତୁ ଜୀବନର ସବୁ ଦ୍ୱାର ବନ୍ଦ ହୋଇଗଲା ପରି ଲାଗିଲା ଯେତେବେଳେ ଓକିଲ କହିଲେ ଯେ ସବୁ ସୁନା ଅଳଙ୍କାର ବିକ୍ରୀ ହୋଇ ମୋକଦ୍ଦମାରେ ଖର୍ଚ୍ଚ ହୋଇ ଯାଇଛି । ସେତେବେଳେ ମନେହେଲା ଯେ କାହିଁକି ମୁଁ ଲଢ଼ିଲି ଏ କେସ୍ ? ଫାଶି

Digitized by srujan ka@gmail.com

କାଠରେ ଚଢ଼ିଥିଲେ ତ ମୃତ୍ୟୁ ସହିତ ଥରେ ଭେଟ ହୋଇଥାନ୍ତା । କିନ୍ତୁ ବର୍ତ୍ତମାନ ତ ସାରା ଜୀବନବ୍ୟାପୀ ମୃତ୍ୟୁ ସହିତ ଭେଟ ହେବ ପ୍ରତି ମୁହୂର୍ତ୍ତରେ ।

ତା' ପରେ.... ? ତାଙ୍କ ଆଖିରୁ ଲୁହ ଝରୁଥିଲା । ତାଙ୍କୁ କହିବାକୁ ନ ଦେଇ ବାଉରୀବଂଧୁ କହିଲେ, ତାପରେ ମୋ'ଠାରୁ ଶୁଣ । ସେ ଆସି ରହିଲା ଏଇଠି । ପତିତପାବନଙ୍କୁ ସ୍ମରଣ କରି କରି ଯେଉଁଠି ଏଇପରି ଅସଂଖ୍ୟ ନାରୀ ନିଜର ଚୂର୍ଣ୍ଣୀଭୂତ ସ୍ୱପ୍ନକୁ ଆଞ୍ଜୁଳା କରି ଠାକୁରଙ୍କ ପାଖରେ ଅର୍ଘ୍ୟ ବାଢ଼ନ୍ତି ଅନାଗତ ମୁକ୍ତିର କାମନା କରି କରି । ମୁଁ ବି ସେଇପରି କୁଳହରା ହୋଇ ଆସି ପହଞ୍ଚିଲି ଏଇଠି । ଅନ୍ନପୂର୍ଣ୍ଣା ଭାଙ୍ଗିଗଲା । ଜୀବନର ତ ସେଇ ଗୋଟିଏ ଲକ୍ଷ୍ୟ ମୋତେ ଆବିଷ୍ଟ କରି ରଖିଥିଲା ଚିରଦିନ । ତାହା ଭାଙ୍ଗିଗଲା ପରେ ମୁଁ ଯାଏ କୁଆଡ଼େ ? ମୋତେ ଆଉ କିଛି ବିଦ୍ୟା ମାଲୁମ ନାହିଁ । କେବଳ ଜାଣିଚି ଥିଏଟର ପାର୍ଟି ଯୋଗାଡ଼ କରିବା କଥା ।

ଆମେ ଫେରି ଆସିଥିଲୁ । ସେମାନେ ଆମକୁ ବଳେଇ ଦେବାକୁ ଆସି ହାତ ହଲଉଥିଲେ । ମୋର ମନେ ପଡୁଥିଲା ଅଖିଳ ମୋହନ ପଟ୍ଟନାୟକଙ୍କ ''ଡିମିରି ଫୁଲ'' ଗଳ୍ପ । ମହାକାଳ ହାତରେ କ୍ରୀଡ଼ନକ ଦୁଇଟି କଣ୍ଢେଇ ଯେପରି ନାଚୁଛନ୍ତି ଅଦୃଶ୍ୟ ହାତର ଇଙ୍ଗିତରେ ।

ଓଡ଼ିଶା ପ୍ରଦେଶ ଗଢ଼ା ହୋଇଛି । ଓଡ଼ିଆ ଭାଷା ଏବଂ ଓଡ଼ିଆ ଜାତିକୁ ଲୋପ କରିଦେବାର ଚକ୍ରାନ୍ତ ପଣ୍ଡ ହୋଇଛି । ସମ୍ବଲପୁର, ଗଂଜାମ ଜିଲ୍ଲାର ନେତାମାନଙ୍କର ଭୂମିକା ଏଥିପାଇଁ ବହୁତ ଗୁରୁତ୍ୱପୂର୍ଣ୍ଣ । କାରଣ ମଧ୍ୟପ୍ରଦେଶ ଏବଂ ମାନ୍ଦ୍ରାଜ ପ୍ରଦେଶ ଭିତରେ ରହି ଆନ୍ଦୋଳନ କରିବା ଆହୁରି କଠିନ ଥିଲା ଅନ୍ୟମାନଙ୍କ ଅପେକ୍ଷା । ବଂଗଳା ପ୍ରଦେଶରୁ ଅଲଗା ହୋଇ ସ୍ୱତନ୍ତ୍ର ବିହାର-ଓଡ଼ିଶା ଗଠନ ହୋଇଥିବା ହେତୁ ବିହାରର ସିଂହଭୂମ ଜିଲ୍ଲାର କଂଗ୍ରେସ କମିଟିକୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଅଧୀନରେ ରଖିବା ପାଇଁ ବାଧାକୁ ଆମେ ଅତିକ୍ରମ କରି ଯାଇଥାଉଁ । ଠିକ୍ ସେଇପରି ପଶ୍ଚିମ ବଂଗଳାର ମେଦିନୀପୁର ଜିଲ୍ଲା ମଧ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ଅନ୍ତର୍ଭୁକ୍ତ ଥିଲା । ମେଦିନୀପୁରର କଂଗ୍ରେସ ନେତା ଶ୍ରୀ ବୀରେନ୍ଦ୍ର ସାସମଲ ଏହି ଆନ୍ଦୋଳନର ନେତା ଥିଲେ । ସେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି (ନା ସାଧାରଣ ସଂପାଦକ) ପଦବୀ ପାଇଁ ପ୍ରତିଦ୍ୱନ୍ଦିତା କରୁଥିଲେ ଏବଂ ତାଙ୍କୁ ଆମର ଅନ୍ୟ ନେତାମାନେ ବଂଗାଳୀ ବୋଲି ଅଭିଯୋଗ କରି ନିର୍ବାଚନରେ ହରାଇ ଦେଲେ । ଆହତ-ଅଭିମାନରେ ଶ୍ରୀ ସାସମଲ ମେଦିନୀପୁର କଂଗ୍ରେସ କମିଟିକୁ ବଂଗଳା କଂଗ୍ରେସ କମିଟିର ଅନ୍ତର୍ଭୁକ୍ତ କରିଦେଲେ । ମୋର ମନେପଡୁଚି ଜର୍ମାନୀରେ ଥିଲାବେଳେ ମୋତେ ଜଣେ ବଂଗଳାର ନେତା ଏଇ କଥା ମନେପକାଇ ଦେଇଥିଲେ ଏବଂ କହିଥିଲେ ଯେ ସେଇ ତ୍ରୁଟି ନ ହୋଇଥିଲେ ମେଦିନୀପୁର ଓଡ଼ିଶାକୁ ଯାଇଥାନ୍ତା । କାରଣ ଏହା ଓଡ଼ିଆ ଭାଷାଭାଷୀ ବହୁଳ ଅଂଚଳ । ସମ୍ବଲପୁର ଜିଲ୍ଲାରେ ଉତ୍କଳ ସମ୍ମିଳନୀର ଆରମ୍ଭ ହୁଏ, ଏବଂ ଚନ୍ଦ୍ରଶେଖର ବେହେରା, ଗଂଗାଧର ମେହେର ପ୍ରଭୃତି ଓଡ଼ିଶା ପ୍ରଦେଶ ଗଠନ ପାଇଁ ବିପୁଳ ଅବଦାନ ଦେଇ ଯାଇଛନ୍ତି । ଥରେ

Digitized by srujan ka@gmail.com

କୁଆଡ଼େ ଗୋପବନ୍ଧୁ ଦାସ ଫେରୁଥିଲେ ବମ୍ବେରୁ ଓଡ଼ିଶା ସମ୍ବଲପୁର ବାଟ ଦେଇ । ସେତେବେଳେ ବାଲେଶ୍ୱର-ପୁରୀ ଜିଲ୍ଲାରେ ପ୍ରବଳ ବନ୍ୟା ହୋଇଥାଏ । ସେ ସାଂଗରେ କିଛି ହଜାର ଟଙ୍କା ନେଇ ଆସୁଥାନ୍ତି ରିଲିଫ କାର୍ଯ୍ୟ ପାଇଁ । ଠିକ୍ ସେତିକିବେଳେ ସମ୍ବଲପୁରର ବରଗଡ଼ ଅଂଚଳରେ ଭୟାନକ ମରୁଡ଼ି ଦେଖା ଦେଇଥାଏ । ସମ୍ବଲପୁରରେ କଂଗ୍ରେସ ନେତାମାନେ ଗୋପବନ୍ଧୁ ଦାସଙ୍କୁ ଭେଟିଲେ ଏବଂ ମରୁଡ଼ି ଅଂଚଳରେ ରିଲିଫ ଦେବା ସକାଶେ କିଛି ଟଂକା ପାଇଁ ନିବେଦନ କଲେ । ଗୋପବନ୍ଧୁ ଦାସ କୁଆଡ଼େ ଏହା ବଢ଼ି କଉଡ଼ି, ମରୁଡ଼ି କଉଡ଼ି ନୁହେଁ ବୋଲି କହି ଉକ୍ତ ନିବେଦନକୁ ଗ୍ରହଣ କଲେ ନାହିଁ । ନୀତି ଦୃଷ୍ଟିରୁ ଏହା ଠିକ୍ ହୋଇପାରେ, କିନ୍ତୁ କୌଶଳ ଦୃଷ୍ଟିରୁ ଏହା ଆଦୌ ଠିକ୍ ନୁହେଁ । ସମ୍ବଲପୁରରେ ଆରମ୍ଭ ହେଲା ଅବହେଳା-ଅଭିଯୋଗର ଅସନ୍ତୋଷ । ସେଇ ଅସନ୍ତୋଷ ବଢ଼ି ବଢ଼ି ବର୍ତ୍ତମାନ  କୋଶଳ ରାଜ୍ୟ ପାଇଁ ଦାବି ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଗଠନରେ ପହଞ୍ଚିଛି । ଏବଂ ସେ ଅଂଚଳର ନେତା ବା ପ୍ରତିଷ୍ଠିତ ସାହିତ୍ୟିକ ପ୍ରଭୃତିମାନଙ୍କୁ ''ପଶ୍ଚିମ ଓଡ଼ିଶା''ର ଗୌରବ ଇତ୍ୟାଦି ଭୂଷଣରେ ଭୂଷିତ କରାଯାଉଛି । ଗଂଗାଧର ମେହେର ପଶ୍ଚିମ ଓଡ଼ିଶାର ନୁହଁନ୍ତି ସମଗ୍ର ଓଡ଼ିଆ ଜାତିର ଏକଥା କେତେକ ଭୁଲି ଯାଉଛନ୍ତି । ପଶ୍ଚିମ ଓଡ଼ିଶା ଅବହେଳିତ, ପଶ୍ଚିମ ଓଡ଼ିଶାକୁ ନ୍ୟାୟ ମିଳୁ ନାହିଁ ଇତ୍ୟାଦି ଅଭିଯୋଗ ବର୍ତ୍ତମାନ ବେଶ୍ ଜୋରଦାର ହୋଇଚି । ଏହି ଅଭିମାନର କାରଣ ରହିଛି କିନ୍ତୁ ଏହା ସଂପୂର୍ଣ୍ଣ ସତ୍ୟ ଉପରେ ପ୍ରତିଷ୍ଠିତ ନୁହେଁ । ଓଡ଼ିଶାର ପ୍ରଥମ ବୃହତ ଶିଳ୍ପ ପଶ୍ଚିମ ଓଡ଼ିଶାରେ ହିଁ ପ୍ରତିଷ୍ଠିତ ହୁଏ । ''ଗାନ୍ଧିଜୀଙ୍କ କୁଲି'' (ଘନଶ୍ୟାମ ଦାସ ବିରଳାଙ୍କ ଆତ୍ମଜୀବନୀର ନାମ) ଘନଶ୍ୟାମ ଦାସ ବିରଳା ଗାନ୍ଧିଜୀଙ୍କଠାରୁ ଓଡ଼ିଶାର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ପାଖକୁ ଏକ ଚିଠି ଆଣି ଆସିଥିଲେ । ସେ ବ୍ରଜରାଜ ନଗରରେ ପ୍ରତିଷ୍ଠା କଲେ କାଗଜକଳ ଓରିଏଣ୍ଟ ପେପର ମିଲ୍ସ । ସେ ଠିକା ନେଲେ ବାଉଁଶ ଶହକୁ ଏକ ପଇସା ଦରରେ । ଓଡ଼ିଶାର ତାହା ହେଉଛି ପ୍ରଥମ ବୃହତ୍ ଶିଳ୍ପ । ଏ ତ ପରାଧୀନ ଭାରତର କଥା । ସ୍ୱାଧୀନ ଭାରତରେ ଏଇ ଅଂଚଳରେ ହୀରାକୁଦ ବନ୍ଧ, ରାଉରକେଲା ଇସ୍ପାତ କାରଖାନା, ରାଜଗାଙ୍ଗପୁର ସିମେଣ୍ଟ, ବେଲ ପାହାଡ଼ ରିଫ୍ରାକ୍ଟରିଜ, ଇଣ୍ଡିଆନ ଆଲୁମିନିୟମ, ହୀରା ସିମେଣ୍ଟ କାରଖାନା ବରଗଡ଼ରେ ପ୍ରତିଷ୍ଠା ହୋଇଛି । ରାଉରକେଲାରେ ଲାର୍ସନ୍ ଏଣ୍ଡ ଟ୍ୟୁବ୍ରୋର ଫାକ୍ଟରୀ, ଇଣ୍ଡିଆନ ଡିଟୋନେଟରସ୍ ପ୍ରଭୃତି ବହୁ ଶିଳ୍ପ ଗଢ଼ି ଉଠିଛି । ଏହା କେହି ସେମାନଙ୍କୁ ଦୟାକରି ଦେଇନାହିଁ । ଏଇ ଅଂଚଳ ଖଣିଜ ସଂପଦ, ଜଳ ସଂପଦରେ ଭରପୂର । ତେଣୁ ଏସବୁ ଗଢ଼ି ଉଠିଛି । କେଉଁ ଅଂଚଳରେ ଏହା ହୋଇଛି ତା'ର ବିଚାରରେ ନୁହେଁ । ସେ ଅନୁପାତରେ କେଉଁଝର, ମୟୂରଭଂଜ ପ୍ରଭୃତିରେ ବହୁ ଖଣିଜ ଦ୍ରବ୍ୟ ଥିବା ସତ୍ତ୍ୱେ ଯେତେ ଶିଳ୍ପ ଗଢ଼ି ଉଠିବାର କଥା ତାହା ଗଢ଼ିଉଠି ନାହିଁ । ଉଦ୍ଭିଦ -ବିଦ୍ ଡକ୍ଟର ପର୍ଶୁରାମ ମିଶ୍ର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଛନ୍ତି । ଡାକ୍ତର ଜନାର୍ଦ୍ଦନ ପୁଝାରୀ କଟକ ମେଡିକାଲର ଅଧକ୍ଷ ହୋଇଛନ୍ତି ସେମାନଙ୍କର ଯୋଗ୍ୟତା ଯୋଗୁଁ । କୌଣସି

Digitized by srujan ka@gmail.com

ଅଂଚଳର ବୋଲି ତାଙ୍କୁ ଉକ୍ତ ପଦବୀରେ ଦୟାକରି ଭୂଷିତ କରାଯାଇ ନାହିଁ । ଭୁବନେଶ୍ୱର ବେହେରା ୟୁନିଅନ୍ ପବ୍ଲିକ ସର୍ଭିସ କମିଶନର ସଭ୍ୟ ହୋଇଛନ୍ତି । ଏହା ସତ୍ତ୍ୱେ ଏପରି ଏକ ମନୋଭାବ ଏଇ ଅଂଚଳରେ ବେଶି ଉଗ୍ର ହେବାରେ ଲାଗିଛି । ଗୁର୍ଖାଲାଣ୍ଡ ପରୀକ୍ଷାର ତିକ୍ତ ଫଳ ସତ୍ତ୍ୱେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଗଢ଼ା ହୋଇଛି । ଗୁର୍ଖାମାନଙ୍କର ବିକାଶ ପାଇଁ ଗିସିଙ୍ଗଙ୍କ ନେତୃତ୍ୱରେ ଆନ୍ଦୋଳନ ମୁଣ୍ଡ ଟେକି ଉଠିଲା ତୀବ୍ର ଭାବରେ । ବାମପନ୍ଥୀମାନେ ନିଜ ଗୁଳିରେ ନିଜେ ଶିକାର ହେଲେ । ସେମାନେ ହିଁ ପ୍ରଥମେ ଦାବି କରିଥିଲେ ‘‘ଗୁର୍ଖାମାନଙ୍କର ଆତ୍ମ ନିୟନ୍ତ୍ରଣ’’ କଥା । ଲେଲିନ୍‌ଙ୍କର Problems of Nationalities ସେମାନଙ୍କୁ ଏହି ଶିକ୍ଷା ଦେଇଥିଲା । ସୋଭିଏତ୍ ୟୁନିୟନରେ ଏହି ପ୍ରକାର ପରୀକ୍ଷା ସଫଳ ହୋଇଛି, ସେମାନେ ସେଇଥିରୁ ଧରିନେଲେ ଯେ ଏଇଭଳି ଏକ ପରୀକ୍ଷା ସବୁଠାରେ ସଫଳ ହେବ । ଲେନିନ୍‌ଙ୍କର ମାନବେନ୍ଦ୍ରନାଥ ରାୟଙ୍କ ସହିତ ଏଇ ପ୍ରଶ୍ନ ଉପରେ ଗୁରୁତର ମତଭେଦ ହୁଏ ଏବଂ ରାୟ କମ୍ୟୁନିଷ୍ଟ ପାର୍ଟି ପରିତ୍ୟାଗ କରନ୍ତି ଏଇ ସମସ୍ୟା ଉପରେ । ଏ ମତଭେଦ ଇତିହାସ ପ୍ରସିଦ୍ଧ । ଲେନିନ୍‌ଙ୍କ ମତରେ ଏଇପରି ଆତ୍ମ-ନିୟନ୍ତ୍ରଣ ଅଧିକାର ସେମାନଙ୍କର ବିକାଶକୁ ତ୍ୱରାନ୍ୱିତ କରିବ ଏବଂ ଜାତି ଜାତି ଭିତରେ ମୈତ୍ରୀ ସ୍ଥାପନ ହୋଇପାରିବ ଏବଂ ଦୃଢ଼ୀଭୂତ ହୋଇପାରିବ । ସୋଭିଏତ୍ ୟୁନିଅନରେ ଏଇ ପରୀକ୍ଷା ସାଫଲ୍ୟ ଲାଭ କରିଥିଲା ବୋଲି କୁହାଯାଉଥିଲା କିନ୍ତୁ ସୋଭିଏତ୍ ୟୁନିଅନ ଭାଙ୍ଗିଯିବା ପରେ ତାହାର ଅସାରତା ପ୍ରମାଣିତ ହୋଇଛି । ଆର୍ମେନିଆରେ ଯେଉଁ ଭୟାବହ ଅନ୍ତର୍ଯୁଦ୍ଧ ଘଟିଥିଲା ତାହା ପ୍ରମାଣିତ କଲା ଯେ ଜାତିଗତ ବୈରତା ଷାଠିଏ ବର୍ଷର ସମାଜବାଦୀ ରାଷ୍ଟ୍ରରେ ମଧ୍ୟ ସେଇଭଳି ଉତ୍କଟ ରହିଛି । କେବଳ ବାଟ ଖୋଜୁଛି ଉଦ୍‌ଗୀରଣ ପାଇଁ । ଆହୁରି ଭୟାବହ ଘଟଣା ଘଟୁଛି ମାର୍ଶାଲ ଟିଟୋଙ୍କ ଯୁଗୋସ୍ଲାଭିଆରେ । ଫାସୀବାଦ ବିରୋଧୀ ସଂଗ୍ରାମର ମହାରଥି ମାର୍ଶାଲ ଟିଟୋ ଫାସିବାଦୀ ଅତ୍ୟାଚାର ବିରୁଦ୍ଧରେ ‘‘ପାର୍ଟିଦାନ’’ ସଂଗ୍ରାମରେ କେବଳ ବିଜୟ ହାସଲ କରି ନ ଥିଲେ ବସନିଆ, ହରଗୋଦିନା, କ୍ରୋଏସିଆ ତିନୋଟି କ୍ଷୁଦ୍ର ରାଷ୍ଟ୍ର ଭିତରେ ଐକ୍ୟ ପ୍ରତିଷ୍ଠା କରି ଯୁଗୋସ୍ଲୋଭିଆ ସମାଜବାଦୀ ରାଷ୍ଟ୍ର ଗଠନ କରିଥିଲେ । ଏଇ ତିନୋଟି ରାଷ୍ଟ୍ର ମଧ୍ୟରୁ ବସନିଆ, ହରଗୋବିନାରେ ମୁସଲମାନ, କ୍ରୋଏସିଆରେ ଖ୍ରୀଷ୍ଟିଆନମାନଙ୍କର ସଂଖ୍ୟା ବେଶି । ସେ ଦେଶରେ ସମାଜବାଦ ଭାଙ୍ଗିଗଲା ପରେ ବର୍ତ୍ତମାନ ମୁସଲମାନ ସଂପ୍ରଦାୟ, ଖ୍ରୀଷ୍ଟିଆନ ସଂପ୍ରଦାୟ ଭିତରେ ଯେଉଁ ଭୟାବହ ଯୁଦ୍ଧ ଚାଲିଛି ତାହା ଘୃଣା ଉଦ୍ରେକ କରିବ । ଫାସୀବାଦ ବିରୋଧି ସଂଗ୍ରାମର ଅଯୁତ ବିନ୍ଧାଣୀମାନେ ବର୍ତ୍ତମାନ ପରସ୍ପର ବିରୁଦ୍ଧରେ ଏଭଳି କନ୍‌ସେନ୍‌ଟ୍ରେସନ କ୍ୟାମ୍ପ (Concentration Camp) ସବୁ ପ୍ରସ୍ତୁତି କରୁଛନ୍ତି ଯେ ତାହା ଫାସୀବାଦର ହିଂସ୍ରତାକୁ ଟପି ଯାଇଛି ।

ଲେନିନଙ୍କର ସେ ଥିଓରୀକୁ ଗ୍ରହଣ କରିନେଲେ ଭାରତୀୟ କମ୍ୟୁନିଷ୍ଟମାନେ ଯାନ୍ତ୍ରିକ ଭାବରେ । ମୁସଲମାନମାନଙ୍କୁ ଆତ୍ମ-ନିୟନ୍ତ୍ରଣ ଅଧିକାର ଦେଲେ ପାକିସ୍ଥାନ ହେବ ନାହିଁ ବୋଲି

Digitized by srujan ka@gmail.com

ସେମାନଙ୍କର କଳନା ଥିଲା । ଏକଦା ଗୁର୍ଖାମାନଙ୍କୁ ଆତ୍ମନିୟନ୍ତ୍ରଣ ଅଧିକାର ଦେବାପାଇଁ କମ୍ୟୁନିଷ୍ଟମାନେ ହିଁ ପ୍ରଥମେ ଦାବୀ କରିଥିଲେ । କିନ୍ତୁ ତାହା ଯେ ଠିକ୍ ନୁହେଁ ଏ କଥା ବୁଝିଲା ବେଳକୁ କେବଳ ଗୁର୍ଖାଲାଣ୍ଡ ପ୍ରତିକ୍ରିୟାଶୀଳ ନେତୃତ୍ୱ ଅଧୀନକୁ ଚାଲିଯାଇଥିଲା ନୁହେଁ, ଆପଣା ପାର୍ଟିର ନେତୃତ୍ୱ ଭିତରୁ ମଧ୍ୟ ଏକ ବିରାଟ ଅଂଶ ସେମାନଙ୍କ ହାତରୁ ଖସି ଯାଇଥିଲା । ଗୁର୍ଖାମାନଙ୍କୁ ଆତ୍ମ-ନିୟନ୍ତ୍ରଣ ଅଧିକାର ଦେବାକୁ ପଡ଼ିଲା । କିନ୍ତୁ ଫଳ କଣ ହେଲା ? ଗୁର୍ଖାମାନଙ୍କର ବିକାଶ ହେଲାନାହିଁ । ଗୁର୍ଖାଲ୍ୟାଣ୍ଡ ପାଇଁ ପ୍ରଦତ୍ତ ଅନୁଦାନ ଗିସିଙ୍ଗଙ୍କ ଲାଲକୋଠିରେ ପରିବର୍ଦ୍ଧନ ପାଇଁ ବ୍ୟବହୃତ ହେଲା । କିନ୍ତୁ ସେ ଭୁଲର ସଂଶୋଧନ ବର୍ତ୍ତମାନ ସମ୍ଭବ କି ? ଏବଂ ଯଦି ବି କେବେ ସଂଶୋଧିତ ହୁଏ କେତେଦିନ ଲାଗିବ ?

ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ଅବସ୍ଥା କଣ ହେବ କିଏ କହିବ ? ପଶ୍ଚିମ ଓଡ଼ିଶାର ବହୁ ବ୍ୟକ୍ତି ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଛନ୍ତି ଅତୀତରେ । ସେମାନଙ୍କର ଭୂମିକା କଣ ଥିଲା ? ତାହାର ବିଚାର ଆଜି କରାଯିବ କି ? ନା କରାଯିବା ଉଚିତ ନୁହେଁ । କାରଣ ନେତୃତ୍ୱ ପ୍ରଗତିଶୀଳ ନ ହେଲେ ସମସ୍ୟାର ସମାଧାନ ସମ୍ଭବ ନୁହେଁ ।

ଗଂଜାମ ଜିଲ୍ଲା ପ୍ରଭୃତିରେ ଏଭଳି ଅସନ୍ତୋଷ ଯେ ନାହିଁ ତାହା ନୁହେଁ । କିନ୍ତୁ ତାହା ''ପରିଷଦ'' ଗଠନ ପର୍ଯ୍ୟନ୍ତ ଯାଇନାହିଁ ।

କିନ୍ତୁ ଏ ଅସନ୍ତୋଷ ପ୍ରକୃତରେ କାହିଁକି ? ଏହାର କଣ କୌଣସି ଯାଥାର୍ଥ୍ୟ ନାହିଁ ? ନାହିଁ ବୋଲି କହିଲେ ଭୁଲ ହେବ । ଏହାର କାରଣ ରହିଛି ଅନେକ । ଏଥିପାଇଁ ପ୍ରଥମେ ଦାୟୀ ଶାସନ କଳ । ଗଂଜାମ ସହିତ ଯେପରି ସାଂସ୍କୃତିକ ଓ ସାମାଜିକ ସଂପର୍କ ରହିଲା ଓଡ଼ିଶାର ଅନ୍ୟ ଅଂଚଳର ଠିକ୍ ସେଇପରି ରହି ପାରିଲା ନାହିଁ ସମ୍ବଲପୁର ଅଂଚଳ ସହିତ । ଦୁଇ ଅଂଚଳ ଭିତରେ ଗଡ଼ଜାତ ଏବଂ ସେଠାରେ ରାଜା ଅତ୍ୟାଚାର ଏହାର ଏକ ପ୍ରତିବନ୍ଧକ ହୋଇ ଠିଆ ହେଲା । ସମ୍ବଲପୁର ସହିତ ରେଳବାଇ ସଂପର୍କ ସ୍ୱାଧୀନତାର ୫୦ ବର୍ଷ ପରେ ପୂରଣ ହୋଇଛି । ଏ ପର୍ଯ୍ୟନ୍ତ ଏହା ପୂର୍ଣ୍ଣାଙ୍ଗ ହୋଇ ନାହିଁ । କଟକ ଭୁବନେଶ୍ୱର ସମ୍ବଲପୁର ରେଳ ଯୋଗେ ଗଲେ ଦୁଇଟି ରାଜ୍ୟ ଭିତର ଦେଇ ଯିବାକୁ ପଡ଼େ । ସିଧା ବା ଡାଇରେକ୍ଟ ଲାଇନ୍ ମଧ୍ୟ ନ ଥିଲା । ଏଠାରୁ ଜଣେ ଲୋକକୁ ଯିବାକୁ ପଡୁଥିଲା ଖଡ଼ଗପୁର, ସେଠାରୁ ଓହ୍ଲାଇ ଯିବାକୁ ପଡୁଥିଲା ଝାରସୁଗୁଡ଼ା ଏବଂ ସେଠାରୁ ଓହ୍ଲାଇ ଯିବାକୁ ପଡୁଥିଲା ସମ୍ବଲପୁର । ସେଇଠି ରେଲଲାଇନ୍ ଶେଷ । ବରଗଡ଼ ପ୍ରଭୃତି ଅଂଚଳ ସହିତ ରେଳ ସଂପର୍କ ନ ଥିଲା । ସୁତରାଂ ସମସ୍ତେ ନିର୍ଭର କରୁଥିଲେ ମେରାମୁଣ୍ଡଳି ପର୍ଯ୍ୟନ୍ତ (ସେତେବେଳେ ମେରାମୁଣ୍ଡଳି-ମୁଟଙ୍ଗା ମଧ୍ୟ ଢେଙ୍କାନାଳ ରାଜ୍ୟ ଅଧୀନରେ ଥିଲା) ଟ୍ରେନରେ ଯାଇ ସେଠାରୁ ଚକ୍ରଧର ମିଶ୍ରଙ୍କ ବସ୍‌ରେ ସମ୍ବଲପୁର ଯିବା । ବହୁଦିନ ପର୍ଯ୍ୟନ୍ତ ସମ୍ବଲପୁରଠାରେ ରାସ୍ତା ଉପରେ ଲେଖା ହେଉଥିଲା ''ପରବର୍ତ୍ତୀ ପେଟ୍ରୋଲ ପମ୍ପ ଶହେ ମାଇଲ ଦୂରରେ ।'' ଅର୍ଥାତ ତାକୁ ଚାହିଁ ଗାଡ଼ିରେ ପେଟ୍ରୋଲ ନେଇଥାଅ ।

Digitized by srujan ka@gmail.com

ପୁଣି ବାଟଯାକ ନିବିଡ଼ ଅରଣ୍ୟ । ଦିନରେ ବାଘ ଦେଖାଯାଏ ରାସ୍ତା ଉପରେ, ହାତୀପଲ ରାସ୍ତା ଅବରୋଧ କରି ଛିଡ଼ା ହୁଅନ୍ତି ଘଣ୍ଟା ଘଣ୍ଟା ଧରି । ବାଟରେ ବହୁ ଖରସ୍ରୋତା ନଦୀ । ସେଥିରେ ପୋଲ ନାହିଁ । ଅଛି କଜ୍‌ୱେ ବା ରପ୍ଟା । ଅନେକ ସମୟରେ ସେଇ ଖରସ୍ରୋତା ନଈମାନଙ୍କରେ ବଢ଼ି ଆସେ, ପ୍ରବଳ ବେଗରେ । ଘଣ୍ଟା ଘଣ୍ଟା ଧରି ଗାଡ଼ି ଘୋଡ଼ା ସବୁ ନଈର ଗୋଟିଏ ପଟରେ ରହିଯାଆନ୍ତି ଅଟକି । ମୋ ହେତୁରେ ଅନ୍ତତଃ ଦଶ ପଚାଶ ଥର ପ୍ରବଳ ବଢ଼ି ବା ହାତୀ ପଲର ରାସ୍ତା ଅବରୁଦ୍ଧ ଜନିତ ଉତ୍ପାତ ଯୋଗୁଁ ଗାଡ଼ି ଫେରି ଯାଇଛି । କାରଣ ରାସ୍ତା ଉପରେ ଅଟକି ଯିବାର ପ୍ରଶ୍ନ ଉଠୁନାହିଁ । ରାତିବିକାଳିରେ କଣ ହେବ କିଏ କହିବ ? ବିଶେଷତଃ ପିଲାପିଲି ଧରି ତ ପଡ଼ି ରହିବାର ପ୍ରଶ୍ନ ଉଠେନା । ପୁଣି ଯୁଦ୍ଧ ସମୟରେ (୧୯୩୯-୪୫) ତ ପେଟ୍ରୋଲ ମିଳିଲା ନାହିଁ । ତେଣୁ କୋଇଲାରେ ଗାଡ଼ି ଚାଲିଲା । ଗାଡ଼ିର ପଛପଟେ ଏକ ବିରାଟ ବ୍ୟାରେଲ ଠିଆ କରି ଦିଆଯାଏ । ସେଥିରେ କୋଇଲା ଭର୍ତ୍ତି ହୁଏ ଏବଂ ତାକୁ ପବନ ଦେଇ ନିଆଁ ଲଗାଇ ଦିଆଯାଏ । ସେଇଥିରେ ଗାଡ଼ି ଚାଲେ । ତେଣୁ ବସ୍‌ର ସବା ପଛ ସିଟ୍‌ରେ ବସିବାର ପ୍ରଶ୍ନ ଉଠେନା । ଚକ୍ରଧର ମିଶ୍ରଙ୍କର ଦୁଇଟି ଗାଡ଼ି ଆସେ ସମ୍ବଲପୁରରୁ । ଯାତ୍ରୀମାନେ ଅନୁଗୋଳରେ ମଧାହ୍ନ ଭୋଜନ କରନ୍ତି ଏବଂ ଚାରିଟା ବେଳକୁ ପହଞ୍ଚିଯାନ୍ତି ମେରାମୁଣ୍ଡଳିରେ । ରାତିରେ ତ ଟ୍ରେନ ନ ଥିଲା । ସକାଳେ ପୁରୀ ତାଳଚେର ପାସେଞ୍ଜର ଗାଡ଼ିରୁ ଯାତ୍ରୀ ନେଇ ଗାଡ଼ି ଦୁଇଟି ଯାଏ ସମ୍ବଲପୁର । ସେ ବସ ଦୁଇଟିର ସର୍ବୋଚ୍ଚ ୬୦ଟି ଯାତ୍ରୀ ନେଇଯିବାର କ୍ଷମତା ରହିଛି । ମେରାମୁଣ୍ଡଳି-ଅନୁଗୋଳ-ବଇଣ୍ଡା-ରେଢ଼ାଖୋଲ ଦେଇ ସମ୍ବଲପୁର । ସମ୍ବଲପୁର ସହିତ ଆମର ସାମାଜିକ, ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ସମ୍ପର୍କର ମାଧମ ହେଉଛନ୍ତି ଚକ୍ରଧର ମିଶ୍ରଙ୍କର ଦୁଇଟି ବସ୍ । ସମ୍ବଲପୁର ବା ପଶ୍ଚିମ ଓଡ଼ିଶାକୁ ଯେ ଲୋକେ ଯାଉ ନ ଥିଲେ ତା ନୁହେଁ । କିନ୍ତୁ ସେମାନଙ୍କର ସଂଖ୍ୟା ନଗଣ୍ୟ । ଅଧିକାଂଶ ଯାଉଥିଲେ ସରକାରୀ ଚାକିରି ଯୋଗୁଁ । ସେମାନଙ୍କ ଭିତରୁ ଅଧିକାଂଶ ମନଦୁଃଖରେ ଯାଉଥିଲେ ଏବଂ ସେଇ ମନସ୍ତାପ ସେମାନଙ୍କୁ ''ଶାସକ''ର ପ୍ରଭୁତ୍ୱ ସୃଷ୍ଟି କରିବାରେ ସାହାଯ୍ୟ କରୁଥିଲା ଏବଂ ତାହା ହିଁ ସୃଷ୍ଟି କରୁଥିଲା ପ୍ରଭେଦ । ସେମାନଙ୍କ ମଧ୍ୟରୁ ଅନେକ ପିଲାପିଲି ନେଇ ଯାଉ ନ ଥିଲେ । ସମ୍ବଲପୁର ଅଂଚଳ ଏକ ନାରୀ ପ୍ରାଧାନ୍ୟ ରାଜ୍ୟ । ବୋଧହୁଏ ମାତୃସତ୍ତା ସମାଜର ଏହା ଲକ୍ଷଣ । ବୌଦ୍ଧଧର୍ମ କାଳକ୍ରମେ ବିଭିନ୍ନ ଗୋଷ୍ଠୀରେ ବିଭକ୍ତ ହୋଇଯାଇଥିଲା ଏବଂ ତନ୍ତ୍ର ସହିତ ମିଶି ବଜ୍ରଯାନ, ଉଡ୍ଡୀୟଯାନ ଗୋଷ୍ଠୀ ସୃଷ୍ଟି ହୋଇଥିଲା । କାମନାର ବିନାଶ କେଉଁ କାଳରୁ ହଜି ଯାଇଥିଲା । ବୌଦ୍ଧଧର୍ମ, ହିନ୍ଦୁଧର୍ମର ପୁରୋହିତବାଦ ବିରୁଦ୍ଧରେ ଏକ ଯୁଦ୍ଧ ଘୋଷଣା । ବୁଦ୍ଧ ନିଜେ ନାସ୍ତିକ ବା ନିରୀଶ୍ୱରବାଦୀ ଥିଲେ । ସଂଘ ଏବଂ ଧମ୍ମମ୍‌ରେ ହିଁ ଆପଣାର ମୁକ୍ତିର ସଂଧାନ ସେ ପାଇଥିଲେ । ବିଷୟାବଶରୁ ମୁକ୍ତ ରହି ସଂଘର ଶରଣ ନେବା ବା ସାମୂହିକ କଲ୍ୟାଣ ପାଇଁ ନିବେଦିତ ହେବା ଏହାର ଲକ୍ଷ୍ୟ ଥିଲା । କିନ୍ତୁ ଏହା ରାଜଧର୍ମରେ ପରିଣତ ହେଲାପରେ ସେ

Digitized by srujan ka@gmail.com

ନୈଷ୍ଟିକତା ଲୋପ ପାଇଗଲା । ଯୀଶୁଙ୍କ ନାମରେ ଯେପରି ଅସ୍ତଧାରଣ ହେଲା, ରୋଜ ୱାର (Rose war) ହେଲା ଠିକ୍ ସେହିପରି ଅବସ୍ଥା ବୌଦ୍ଧଧର୍ମ ନାମରେ ବି ହେଲା । ଏପରିକି କଳିଙ୍ଗ ଯୁଦ୍ଧ ପରେ ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହେଲେ କିନ୍ତୁ ସାମ୍ରାଜ୍ୟ ଲିପ୍ସା ଛାଡ଼ିଲେ ନାହିଁ । ବରଂ ବୌଦ୍ଧଧର୍ମକୁ ସେ ସାମ୍ରାଜ୍ୟ ବିସ୍ତାରର ନୂତନ ଆୟୁଧ ଭାବରେ ଗ୍ରହଣ କଲେ । ଅଶୋକଙ୍କର ଶିଳାଲିପି ଦୁଇ ଭାଗରେ ବିଭକ୍ତ । ଗୋଟିଏ ହେଉଛି ସାମ୍ରାଜ୍ୟ ଭିତରେ ଏବଂ ଆରଟି ହେଉଛି ସାମ୍ରାଜ୍ୟ ସୀମାନ୍ତରେ । ଏଇ ଦୁଇ ପ୍ରକାରର ଶିଳାଲେଖର ତୁଳନାତ୍ମକ ଅଧ୍ୟୟନ କଲେ ଏହା ସ୍ପଷ୍ଟ ଜଣାପଡ଼େ । ବୌଦ୍ଧଧର୍ମ ଓଡ଼ିଶାରେ ତୁଙ୍ଗ ଶିଖରରେ ପହଞ୍ଚିଥିଲା ଭୌମକର ଯୁଗରେ । ଏହି ରାଜାମାନେ ସମ୍ବଲପୁରଠାରୁ ଯାଜପୁର ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ରାଜୁତି କରୁଥିଲେ । ଏହି ରାଜବଂଶ ଦୁଇଶହ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା ଏବଂ ଏଇ ରାଜବଂଶରେ ଛଅଜଣ ନାରୀ ରାଜୁତି କରୁଥିଲେ । ଏହା ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ସେତିକିବେଳେ ସମ୍ବଲପୁରରେ ଇନ୍ଦ୍ରଭୂତିଙ୍କ ରାଜୁତି । ତାଙ୍କର ଭଉଣୀ ଲକ୍ଷ୍ମୀ କରା ଶାସନାରୂଢ଼ ହୁଅନ୍ତି ଏବଂ ସେ ଘୋଷଣା କରନ୍ତି ଯେ କାମନାର ବିନାଶରେ ନିର୍ବାଣ ନୁହେଁ, କାମନାର ତୃପ୍ତିରେ ହିଁ ନିର୍ବାଣ । ଏଥିରୁ ମନେହୁଏ ଯେ ନିଶ୍ଚିତ ଭାବରେ ସେ ଆଲଟ୍ରୁଇଷ୍ଟିକ (alltruistic) ଥିଲେ । ଏହା ସତ୍ତ୍ୱେ ସମ୍ବଲପୁର ଜନସାଧାରଣ ତାଙ୍କୁ ରାଣୀ କରି ରାଜୁତି କରିବାର ସୁଯୋଗ ଦେଇଥିଲେ । ଏଥିରୁ ମନେହୁଏ ଯେ ସମ୍ବଲପୁର ସେତେବେଳେ ମାତୃସତ୍ତା ସମାଜ ଥିଲା ବା ତାହାର ପ୍ରଭାବ ଥିଲା କାରଣ ପିତୃସତ୍ତା ସମାଜ ଥିଲେ କୌଣସି ପୁରୁଷ ନାରୀକୁ ଏପରି ଅଧିକାର ବା ସୁଯୋଗ ଦେଇ ନ ଥାନ୍ତା । ପଶ୍ଚିମ ଓଡ଼ିଶାରେ ନାରୀର ପ୍ରାଧାନ୍ୟ ଦେଖାଯାଏ, ଜୀବନର ବିଭିନ୍ନ ବିଭାବରେ । ଯାନିଯାତ୍ରା, ହଟଲି, ହାଟ ସବୁଠାରେ ନାରୀମାନେ ବେଶୀ ସଂଖ୍ୟାରେ ଯୋଗ ଦିଅନ୍ତି । ମୋ ଜୀବନରେ ଯେତେ ନାରୀ ଦେଖିଚି ସଂଖ୍ୟାନୁପାତରେ ପଶ୍ଚିମ ଓଡ଼ିଶାର ନାରୀମାନେ ନିଶ୍ଚିତ ଭାବରେ ବେଶୀ ସୁନ୍ଦରୀ । ବିଶେଷତଃ ବ୍ରାହ୍ମଣ ଏବଂ ଅଘୋରିଆମାନଙ୍କର ନାରୀମାନେ ଖୁବ୍ ସୁନ୍ଦର ।

ସମ୍ବଲପୁର ବା ପଶ୍ଚିମାଞ୍ଚଳକୁ ଯାଉଥିବା ଅନେକ ଅଫିସରଙ୍କର କାର୍ଯ୍ୟକଳାପ ବେଶ୍ ସନ୍ତୋଷଜନକ ଏବଂ ସେମାନେ ସ୍ଥାନୀୟ ଲୋକଙ୍କୁ ଆପଣେଇ ନେଇ ପାରିଥିଲେ । କିନ୍ତୁ କେତେକ ବ୍ୟକ୍ତିଙ୍କ ବ୍ୟବହାର ଓ ଚାଲିଚଳନ ସ୍ଥାନୀୟ ଲୋକଙ୍କର ଅସନ୍ତୋଷ ସୃଷ୍ଟି କରିଥିଲା । ସେମାନେ କେତେକ ମାତ୍ର, ସମସ୍ତେ ନୁହନ୍ତି । କିନ୍ତୁ ଏହା ବିରୁଦ୍ଧରେ ଅସନ୍ତୋଷକୁ 'କଟକ-ସମ୍ବଲପୁରୀ'ରେ ପରିଣତ କଲେ, ସେଇମାନେ, ଯେଉଁମାନେ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ, ଯେଉଁମାନେ ନିଜେ ହୁଏତ ସମ୍ବଲପୁରର ନିଜସ୍ୱ ଲୋକ ନୁହନ୍ତି । ଏହି ପ୍ରକାର ମନୋଭାବ ସମାଜର ଗୋଟାଏ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଭିତରେ, ଏବଂ ସମାଜର ଗୋଟାଏ ସ୍ତରରେ ହିଁ ସୀମିତ ବୋଲି ମୋର ମନେ ହୁଏ । ସେ ଅଂଚଳରେ ବହୁବର୍ଷ ରହିବା ଭିତରେ ମୋର ଏଇଆ ହିଁ ମନେ ହୋଇଛି ।

Digitized by srujan ka@gmail.com

ଏଇଠି ମୋର ଗୋଟିଏ କଥା ମନେପଡୁଛି ।

ଆମର ଶିକ୍ଷକ ଥିଲେ ଡକ୍ଟର ଶ୍ରୀପତି ପାଣି, ପ୍ରସିଦ୍ଧ ରସାୟନବିଦ୍ । ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସବୁବେଳେ ଦାବୀକରି ଆସୁଥିଲେ ଆପ୍ଲାଏଡ କେମିଷ୍ଟ୍ରି ପାଠ୍ୟକ୍ରମ ପାଇଁ । ତା ନହେଲେ ଓଡ଼ିଶାରେ ଗଢ଼ି ଉଠୁଥିବା ଶିଳ୍ପମାନଙ୍କରେ ଓଡ଼ିଆ ପିଲାଏ ନିଯୁକ୍ତି ପାଇବେ ନାହିଁ । କିନ୍ତୁ କୌଣସି କାରଣରୁ ତାହା ଗୃହୀତ ହୋଇ ପାରି ନ ଥିଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟ ହେଲା । ସେ ଭାବିଥିଲେ ଯେ ବର୍ତ୍ତମାନ ତାହା କାର୍ଯ୍ୟକାରୀ ହେବ । କିନ୍ତୁ ତାହା ହେଲାନାହିଁ । ତାହା ହୋଇଥିଲେ କାଳେ ବର୍ତ୍ତମାନର ଅଧାପକମାନଙ୍କର (ଲେକଚରର ବା ରିଡର) ପ୍ରମୋଶନ ହୋଇପାରିବ ନାହିଁ । ଭଗ୍ନ ମନୋରଥ ଡକ୍ଟର ଶ୍ରୀପତି ପାଣିଙ୍କୁ ଭେଟିବାର ସୁଯୋଗ ଆସିଥିଲା ତା' ପରେ ।

ବ୍ରହ୍ମପୁର ଏବଂ ସମ୍ବଲପୁରରେ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା ହଠାତ୍ । ଆଗରେ ଥିବା ନିର୍ବାଚନକୁ ଆଖିରେ ରଖି । ଆମେ ଶହେ ଜଣ ନାଗରିକ, ବୁଦ୍ଧିଜୀବୀ ଏଥିରେ ଆପତ୍ତି କରିଥିଲୁ । ଏହାକୁ ସମ୍ବଲପୁର-ଗଂଜାମ ବିରୋଧୀ ମନୋଭାବ ବୋଲି ପ୍ରଚାର କଲେ କେତେକ ଲୋକ । ଆଞ୍ଚଳିକତାବାଦ, ଜାତୀୟତାବାଦ, ସାଂପ୍ରଦାୟିକତାବାଦ ଇମୋଶନକୁ ଛୁଇଁଯାଏ ଚଟ୍ କରି । ଅନେକ ସମୟରେ ଯୁକ୍ତି ହାରିଯାଏ ସେଭଳି ପରିସ୍ଥିତିରେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଯେଉଁସବୁ ବିଷୟ ପଢ଼ାଯାଏ ଠିକ୍ ସେଇସବୁ ବିଷୟକୁ ରିପିଟ୍ କରିବା ବା ସେଇ ବିଷୟ ସମ୍ବଲପୁର ବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ପଢ଼ାଇବା ଉଚିତ୍ ହେବ ନାହିଁ । କାରଣ ଏହା ହେଲେ ସେଠାକାର ପିଲାମାନେ ଏଠାକୁ ଆସିବେ ନାହିଁ । କିନ୍ତୁ ଅନ୍ୟାନ୍ୟ ବହୁ ବିଷୟ ଯାହା ଉତ୍କଳ ବିଶ୍ୱବିଦ୍ୟାଳୟରେ ପଢ଼ାଯାଏ ନାହିଁ ତାହା ବ୍ରହ୍ମପୁର ବା ସମ୍ବଲପୁରରେ ପଢ଼ାଯାଇ ପାରିବ । ଉଦାହରଣ ସ୍ୱରୂପ ଉତ୍କଳ ବିଶ୍ୱବିଦ୍ୟାଳୟରେ ଇତିହାସ ପଢ଼ାଯାଏ । ଠିକ୍ ସେଇ ବିଷୟ ସମ୍ବଲପୁର ବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ନ ଖୋଲି ପ୍ରାଚୀନ ଇତିହାସ (ancient History) ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ, ଆର୍କିଓଲଜି ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପଢ଼ାଯାଇପାରିବ । ଡିପାର୍ଟମେଣ୍ଟ ଅଫ ରାମାୟଣ ଓ ମହାଭାରତ ମଧ ଖୋଲାଯାଇ ପାରିବ । ଉତ୍କଳ ବିଶ୍ୱବିଦ୍ୟାଳୟରେ ବାଇଓଲୋଜି ପଢ଼ାଯାଏ । ଠିକ୍ ସେଇ ବିଭାଗ ବ୍ରହ୍ମପୁରରେ ନଖୋଲି ସମୁଦ୍ରତଟରେ ଥିବା ବିଶ୍ୱବିଦ୍ୟାଳୟରେ ମାରାଇନ୍ ବାଇଓଲୋଜି ଖୋଲିବା ଉଚିତ୍ । ମନ୍ଦିର ମାଳିନୀ ଭୁବନେଶ୍ୱରରେ ଅବସ୍ଥିତ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏ ପର୍ଯ୍ୟନ୍ତ ଆର୍କିଓଲୋଜି ଏକ ପୂରା ବିଷୟବସ୍ତୁ ରୂପରେ ପଢ଼ାଯାଏନା । ପ୍ରସିଦ୍ଧ ଆର୍କିଓଲୋଜିଷ୍ଟ 'ଡେକାନ ସ୍କୁଲ ଅଫ ଷ୍ଟଡିଜ୍'ର ଡାଇରେକ୍ଟର ଏଚ୍.ଡି. ସାଂଖାଲିଆ କହନ୍ତି ଯେ ରାମଚନ୍ଦ୍ର ବିନ୍ଧ୍ୟାଞ୍ଚଳ ଟପି ଯାଇଥିଲେ କୌଣସି ପ୍ରମାଣ ବାଲ୍ମୀକି ରାମାୟଣରେ ମିଳେନା । ସେତେବେଳେ ମଧ ସିଂହଳର ନାମ ଶ୍ରୀଲଙ୍କା ନ ଥିଲା । ଏହି ନାମକରଣ ହୋଇଛି ଚତୁର୍ଥ ଶତାବ୍ଦୀରେ । ତାଙ୍କ ମତରେ ଓଡ଼ିଶାର ସୋନପୁର (ଯାହାର

Digitized by srujan ka@gmail.com

ପୁରାତନ ନାମ ଥିଲା ସୁବର୍ଣ୍ଣପୁର) ହିଁ ଶ୍ରୀଲଙ୍କା । ରାମଚନ୍ଦ୍ର ଅଯୋଧ୍ୟାର ଲୋକ । ସେ ନଦୀ ଦେଖିଥିଲେ ମଧ୍ୟ ସମୁଦ୍ର ଦେଖି ନ ଥିଲେ । ନଦୀ ଦେଖିଥିବା କୌଣସି ଲୋକ ସମୁଦ୍ରର କଳ୍ପନା କରିପାରି ନାହିଁ । ପର୍ବତ ଦେଖି ହିମାଳୟ କଳ୍ପନା କରିବା କଠିନ । ରାମଚନ୍ଦ୍ର ମହାନଦୀ ଓ ତେଲ ନଦୀର ସମ୍ମିଶ୍ରଣ ଦେଖି ଏହାକୁ ହିଁ ସମୁଦ୍ର ବୋଲି ବିଚାରିଥିଲେ । ଏହି ତଥ୍ୟ ଉପରେ ନିର୍ଭର କରି ଐତିହାସିକ ଡକ୍ଟର ନବୀନ ଚନ୍ଦ୍ର ସାହୁ ସୋନପୁରରେ ଅସୁରଗଡ଼ର ଖନନ ଆରମ୍ଭ କରିଥିଲେ । ଡକ୍ଟର ସାହୁ ଜଣେ ପ୍ରସିଦ୍ଧ ଐତିହାସିକ । ତାଙ୍କର ଓଡ଼ିଶାରେ ବୌଦ୍ଧଧର୍ମ (Buddhism in Orissa) ଏକ ମୌଳିକ ଗବେଷଣା ପ୍ରସୂତ ଗ୍ରନ୍ଥ । କିନ୍ତୁ ସେ ଆର୍କିଓଲଜିଷ୍ଟ ନଥିଲେ । ତେଣୁ ଏହି କାମ ସଂପୂର୍ଣ୍ଣ ହୋଇ ପାରିଲା ନାହିଁ । ଅପରପଟରେ ସାଂଖାଲିଆଙ୍କ ମୃତ୍ୟୁପରେ ଲିଜେଣ୍ଡ ବା କାହାଣୀ, ଧର୍ମବିଶ୍ୱାସ ଏବଂ ସର୍ବୋପରି ଫଣ୍ଡାମେଣ୍ଟାଲିଷ୍ଟମାନଙ୍କ ପ୍ରବଳ ଆକ୍ରମଣ ଆଗରେ ସାଂଖାଲିଆଙ୍କ ଥିଓରି ତିଷ୍ଠିପାରିଲା ନାହିଁ ବା ଏହାକୁ ଆଉ କେହି ଅନୁଧାବନ କଲେ ନାହିଁ । ଧର୍ମବିଶ୍ୱାସ ଏଭଳି ଗୁରୁତର ବିଷୟ ଯେ ତାକୁ ଭାଙ୍ଗି ସତ୍ୟର ସଂଧାନ କରିବା ଭାରି କଷ୍ଟକର । ଟ୍ରାଇବାଲ ସୋସାଇଟିରେ ବହୁ ରାମଚନ୍ଦ୍ର ନାମରେ ବ୍ୟକ୍ତି ଥିଲେ । କେଉଁଠି ସେ ଦଶରଥଙ୍କ ପୁତ୍ର, କେଉଁଠି ସେ ଜନକଙ୍କ ପୁତ୍ର, କେଉଁଠି ରାବଣଙ୍କ ପୁତ୍ର, କେଉଁଠି ସେ ଦୁଶ୍ଚରିତ୍ର, କେଉଁଠି ସେ ଚରିତ୍ରବାନ । ସୀତା କେଉଁଠି ଦଶରଥଙ୍କ କନ୍ୟା, କେଉଁଠି ଅବା ଜନକଙ୍କ କନ୍ୟା କେଉଁଠି ରାବଣଙ୍କ କନ୍ୟା ଏହିପରି ନାନା ପ୍ରକାର ରାମଚନ୍ଦ୍ର ସେତେବେଳେ ଏଇ ଟ୍ରାଇବେଲ ସୋସାଇଟିରେ ପରିଚିତ ଥିଲେ ।

ସେମାନଙ୍କ ଭିତରୁ କୌଣସିଟିକୁ ବାଲ୍ମୀକି ନେଇଛନ୍ତି ଆପଣାର ମୁଖ୍ୟ ଚରିତ୍ର ରାମଚନ୍ଦ୍ର ରୂପରେ ଏବଂ ତାଙ୍କର ମହିମ୍ନ କାବ୍ୟରେ ସେ ରାମଚନ୍ଦ୍ର ହୋଇଛନ୍ତି ପୁରୁଷୋତ୍ତମ । ଏଇ ରାମାୟଣ ରଚୟିତା ବାଲ୍ମୀକି, ଚମାର । ଦୁଇଟି କ୍ରୌଞ୍ଚ ମିଥୁନର ବିଳାପରେ ବିଗଳିତ ରତ୍ନାକର, ବାଲ୍ମୀକି ପାଲଟି ଯାଇଥିଲେ କବି । ନିର୍ଦ୍ଦିଷ୍ଟ ଭାବରେ ତେଣୁ ଏହା ଏକ ଟ୍ରାଇବାଲ ଏବଂ ଆଦ୍ୟ କୃଷି ସଭ୍ୟତାର କାହାଣୀ । ତେଣୁ ସ୍ୱାଭାବିକ ଭାବରେ ରାମଚନ୍ଦ୍ର ବା ସୀତା ଆମିଷାଶୀ ଏବଂ ଗୋମାଂସ, ତାଙ୍କର ଖାଦ୍ୟ । ଏଥିରେ ବିଚିତ୍ରତା କିଛି ନାହିଁ । କିନ୍ତୁ ବାଲ୍ମୀକି ରାମାୟଣ ଶେଷ ହୋଇଛି ଅଭିଷେକରେ । ସୀତା ବନବାସ ହେଉଛି ଉତ୍ତର ରାମଚରିତ । ଭବଭୂତି ଏହାକୁ ଯୋଡ଼ିଛନ୍ତି ଅନେକ ବର୍ଷ ପରେ । ସେତେବେଳେ ମଧ୍ୟ ମୁନିମାନେ ଗୋମାଂସ ଭକ୍ଷଣ କରୁଥିଲେ ଏବଂ କଞ୍ଚାମାଂସ ମଧ୍ୟ ଖାଇବା ସେତେବେଳେ ପ୍ରଚ୍ଳିତ ଥିଲା । ରନ୍ଧନ ସେ ପର୍ଯ୍ୟନ୍ତ ମଣିଷର ସମାଜରେ ପୂର୍ଣ୍ଣଭାବରେ ପ୍ରଚଳିତ ହୋଇନାହିଁ । ସେଥିଯୋଗୁଁ ରାମଚନ୍ଦ୍ର ବା ସୀତା ଆମିଷ ଖାଉଛନ୍ତି କିନ୍ତୁ ତାହାକୁ ବାଦ ଦେଲେ ଫଳ-ମୂଳ ହିଁ ତାଙ୍କର ମୁଖ୍ୟ ଆହାର । ବାଲ୍ମୀକି ରାମାୟଣ ଲେଖାହେବାର ବହୁବର୍ଷ ପରେ ତୁଳସୀ ଦାସ ଲେଖନ୍ତି 'ରାମଚରିତ ମାନସ' ଯାହା ହିଁ ବର୍ତ୍ତମାନ ବହୁଳ ଭାବରେ ଜନପ୍ରିୟତା ଲାଭ କରିଛି । ତୁଳସୀ ଦାସଙ୍କ ବେଳକୁ ବିଶାଳ ସୈନ୍ଧବ ଗାଂଗେୟ

Digitized by srujan ka@gmail.com

ସଭ୍ୟତାର ସମୟ । କୃଷି ସଭ୍ୟତାର ବିକାଶ ହୋଇଛି । ଗାଈ ଆଉ ଜଙ୍ଗଲର ଜୀବ ନୁହେଁ । ଏହା ଡୋମେଷ୍ଟିକେଟେଡ୍ ବା ଗୃହପାଳିତ ହୋଇଛି । ଆଜି ମଧ୍ୟ ହେଙ୍ଗରିଆ କନ୍ଧମାନେ ଗାଈ ଦ୍ୱାରା ଚାଷ କରାନ୍ତି କିନ୍ତୁ ଦୁଧ ପିଅନ୍ତି ନାହିଁ । ଗାଈ ମାଂସ ଖାଆନ୍ତି । ସେଥିଯୋଗୁଁ ସ୍ୱାଭାବିକ ଭାବରେ ସମାଜର ପରିବର୍ତ୍ତନ ସହିତ ତୁଳସୀ ଦାସ ଆପଣାର ମହିମ୍ନ ଶ୍ଳୋକରୁ ଗୋମାଂସ ବାଦ ଦେଇଛନ୍ତି ।

'ସମାଂସ' ଗୋମାଂସ କି ନୁହେଁ । ସେ ବିବାଦ ଭିତରକୁ ମୁଁ ଯିବି ନାହିଁ । 'ସମାଂସ' ସଂପର୍କରେ ମୁଁ ଦୁଇଜଣ ବେଦଜ୍ଞ ପଣ୍ଡିତଙ୍କୁ ପଚାରିଥିଲି । ଜଣେ କହିଲେ ଯେ 'ସମାଂସ' ଗୋମାଂସ ନୁହେଁ । କିନ୍ତୁ ଅନ୍ୟ ଜଣେ କହିଲେ ଯେ ଏହା ଗୋ-ମାଂସ ହୋଇପାରେ । ଗୋମାଂସର ଭକ୍ଷଣ ନିଷିଦ୍ଧ ହେଲା କୃଷି ସଭ୍ୟତାର ବିକାଶ ସହିତ । ଧର୍ମ ହେଉଛି ସାମାଜିକ ଧାରଣାର ସ୍ଥୂଳୀକରଣ ବା Crystalisation of social ideas in religion । ଗୋଟିଏ ସମୟରେ ଯାହା ଧର୍ମ ଥିଲା, ସମାଜର ପରିବର୍ତ୍ତନ ସହିତ ଅନ୍ୟ ଯୁଗକୁ ତାହା ଅଧର୍ମ ହୋଇଗଲା । ମହାଭାରତରେ ଦ୍ରୌପଦୀଙ୍କର ପାଞ୍ଚ ସ୍ୱାମୀ ଥିଲେ ବି ସତୀ, କୁନ୍ତୀଙ୍କର ସବୁ ସନ୍ତାନ ଅନ୍ୟର ପୌରୁଷରୁ ଜନ୍ମ ହୋଇଥିଲେ ବି ସେ ସତୀ । କିନ୍ତୁ ରାମାୟଣ ସୀତାଙ୍କୁ ହିଁ ଅଗ୍ନିପରୀକ୍ଷା ଦେବାକୁ ହେଲା । ରାମଚନ୍ଦ୍ରଙ୍କୁ ନୁହେଁ । ଯଦି ତୁଳସୀ ଦାସଙ୍କ ରାମଚରିତ ମାନସକୁ ରାମାୟଣ ବୋଲି ଧରାଯାଏ ତା'ହେଲେ କୌଣସି ଧୋବା ତା'ର ସ୍ତ୍ରୀକୁ ଗାଳି ଦେଇ ସୀତାଙ୍କ କଥା ଉଲ୍ଲେଖ କରିବାରୁ ରାମଚନ୍ଦ୍ର ସୀତାଙ୍କୁ ବନବାସ ପଠାଇବା ସହିତ ମୁଁ ରାମଚନ୍ଦ୍ରଙ୍କ ''ପୁରୁଷୋତ୍ତମତ୍ୱ''ର ଯାଥାର୍ଥ୍ୟ ପାଇନାହିଁ ବୋଲି ଭାବିବି । ମନସ୍ତତ୍ୱବିଦ୍‌ମାନେ କୁହନ୍ତି ଜଣେ ଲୋକ ଆପଣାର ସନ୍ଦେହକୁ ଯଥାର୍ଥ ବୋଲି ପ୍ରମାଣିତ କରିବା ପାଇଁ ଏକ ଆଳ ଖୋଜେ । ରାମଚନ୍ଦ୍ର ଖୁବ୍ ଭଲ ମଣିଷ ଏଥିରେ ସନ୍ଦେହ ନାହିଁ । କିନ୍ତୁ ସମାଜରେ ଯେଉଁମାନଙ୍କୁ ଭଲ କୁହାଯାଏ ସେଇପରି ଭଲ ମଣିଷ ଥିଲେ ଅର୍ଥାତ୍ ଦୁର୍ବଳ ଚରିତ୍ରର ମଣିଷ ଥିଲେ । ରାମଚନ୍ଦ୍ର ସୀତାଙ୍କୁ ଅରଣ୍ୟକୁ ପଠାଇ ଦେବାର କୌଣସି ଯାଥାର୍ଥ୍ୟ ମୁଁ ପାଇ ନାହିଁ । ସେଥିରେ ମାନବିକତା ପରିବର୍ତ୍ତେ ''ଷାଡିଷ୍ଟିକ ପ୍ଲେଜର''ର ସନ୍ଧାନ ପାଇଛି ।

ସେ ଯାହାହେଉ ସମ୍ବଲପୁର ବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପଢ଼ାଯାଉଥିବା ବିଷୟଗୁଡ଼ିକୁ ରିପିଟ୍ ବା ଦୋହରାକରି ଦେବା ଫଳରେ ସେଠାକାର ପିଲାଏ ଆଉ ଏ ଅଞ୍ଚଳକୁ ଆସିଲେ ନାହିଁ ପଢ଼ିବା ପାଇଁ । ତା' ନ କରିଥିଲେ ସମ୍ବଲପୁର ପିଲାଏ ଆସିଥାନ୍ତେ କଟକ-ଭୁବନେଶ୍ୱର-ବ୍ରହ୍ମପୁରକୁ ପଢ଼ିବା ପାଇଁ, ଏ ଅଞ୍ଚଳର ପିଲାଏ ଯାଇଥାନ୍ତେ ବ୍ରହ୍ମପୁର, ସମ୍ବଲପୁରରେ ପଢ଼ିବା ପାଇଁ, ବ୍ରହ୍ମପୁର ପିଲାଏ ଯାଇଥାନ୍ତେ ଉତ୍କଳ ଏବଂ ସମ୍ବଲପୁର ପଢ଼ିବା ପାଇଁ । ଜାତୀୟ ଐକ୍ୟ ପ୍ରତିଷ୍ଠା ସୁଦୃଢ଼ କରିବା ପାଇଁ ତାହା ସହାୟକ ହୋଇଥାନ୍ତା । କିନ୍ତୁ ତା' ହେଲା ନାହିଁ । ଆମର ନିବେଦନ ବିରୁଦ୍ଧରେ, ପ୍ରତିବାଦ ବିପକ୍ଷରେ ଅନୁଷ୍ଠିତ ହେଲା ।

Digitized by srujan ka@gmail.com

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅନ୍ୟତମ ପୁରୋଧା ବୃନ୍ଦାବନ ନାୟକଙ୍କୁ ଥରେ ଏକୁଟିଆ ପାଇଂ ମୁଁ ଏଇକଥା ପଚାରିଥିଲି । ସେ ମ୍ୟାଟ୍ରିକ୍ ପାଶ କରିଥିଲେ ସତ୍ୟ କିନ୍ତୁ ବିଚକ୍ଷଣ ଛାତ୍ର ଥିଲେ । ଆନ୍ଧ୍ର ବିଦ୍ୟାଳୟର ମ୍ୟାଟ୍ରିକ୍ ପରୀକ୍ଷାରେ ପ୍ରଥମ ହୋଇଥିଲେ । ସେ କହିଲେ ଆମ ପାଇଁ ଆଗାମୀ ନିର୍ବାଚନ ବଡ଼ କଥା ।

ତେଣୁ ବାକି କଥା ବୁଝିବାକୁ ବେଳ ନାହିଁ । ଏହା ଏକ ସ୍ପଷ୍ଟ ସ୍ୱୀକାରୋକ୍ତି । ଦେଶରେ ଆଉ ଷ୍ଟେଟସମ୍ୟାନ ରହିବେ ନାହିଁ । କେବଳ ପଲିଟିସିଆନ ହିଁ ରହିବେ । ଷ୍ଟେଟ୍ସମ୍ୟାନମାନେ ଅନାନ୍ତି ଆଗାମୀ ପୀଢ଼ିକୁ । ପଲିଟିସିଆନମାନେ ଅନାନ୍ତି ଆଗାମୀ ନିର୍ବାଚନକୁ । ବୃନ୍ଦାବନ ନାୟକ ଜଣେ ଦକ୍ଷ ରାଜନୀତିଜ୍ଞ ଥିଲେ । ସଂକୀର୍ଣ୍ଣ ମନୋଭାବର ବ୍ୟକ୍ତି ନ ଥିଲେ । ସେ ପ୍ରଥମେ ମନ୍ତ୍ରୀ ହୋଇଥିଲେ ପରେ ଉପମନ୍ତ୍ରୀ ହେଲେ । ଏହା ଅସ୍ୱାଭାବିକ ଭାବି ମୁଁ ତାଙ୍କୁ ଥରେ ପଚାରିଥିଲି ଯେ ସେ ଏହା କିପରି ଗ୍ରହଣ କଲେ । କିସ ଗ୍ରହଣ କଲି ? ବୋଲି ମୋତେ ସେ ପଚାରିଲେ । ଏଇ ମନ୍ତ୍ରୀପଦ ପରେ ଉପମନ୍ତ୍ରୀ ପଦ ? ତାଙ୍କର ଉତ୍ତର । ସେ ବୁଝାଇବାକୁ ଚେଷ୍ଟାକଲେ ମୋତେ । ମନ୍ତ୍ରୀ ଗଲେ ଯେପରି ଗାଡ଼ିରେ ପତାକା ଉଡ଼େ, ଉପମନ୍ତ୍ରୀ ଗଲେ ସେପରି ଉଡ଼ିବ ନାହିଁ ? ସର୍କିଟ ହାଉସରେ ମନ୍ତ୍ରୀ ଯେପରି ରହିପାରିବେ ଉପମନ୍ତ୍ରୀ ସେପରି ରହିପାରିବେ ନାହିଁ ? କଲେକ୍ଟର, ଏସ୍.ପି., ଇଞ୍ଜିନିୟରମାନଙ୍କୁ ମନ୍ତ୍ରୀ ଡାକିଲେ ଯେପରି ହାଜର ହେବେ ଉପମନ୍ତ୍ରୀ ଡାକିଲେ ସେପରି ହାଜର ହେବେ କି ନାହିଁ ? ଯଦି ଉତ୍ତର ହଁ, ତାହେଲେ ମନ୍ତ୍ରୀ, ଉପମନ୍ତ୍ରୀ ଭିତରେ ଫରକସବୁ କଟକିଆମାନଙ୍କ ପାଖରେ, ଗଂଜାମ ଜିଲ୍ଲାରେ ସେସବୁ କିଛି ନାହିଁ । ଆଉ ଦରମା ଭିତରେ ଫରକ କଥା ଯଦି କହିବ ତାହେଲେ ମୁଁ ତମକୁ ପଚାରିବି ଆମେ ଦରମା ଉପରେ କେବେ ଚଳୁଥିଲୁ କି ? ସେ ମୋତେ ଏତକ କହିସାରି ଏକ ବିଜୟସୂଚକ ହସ ହସିଲେ ମୋର ''ଅଳ୍ପବୁଦ୍ଧିଆ'' ପଣିଆକୁ ତାଚ୍ଛଲ୍ୟକରି ।

ଏଇ ଅଧ୍ୟାୟ ଲେଖିଲାବେଳେ ବାହାରେ ଶରତର ପହିଲି ସ୍ପର୍ଶ, କୁଆଁରୀର ପରଶ ଯେପରି ମୁଲାୟମ ସେହିପରି ଶିହରଣ ସୃଷ୍ଟିକାରୀ । ଆକାଶରେ ଚୂନାଚୂନା ସ୍ୱପ୍ନପରି ଚୂନାଚୂନା ମେଘ । ବେଳେବେଳେ ବର୍ଷିଯାଉଛି ଟୋପାଏ ଟୋପାଏ, ଏକ ନୂତନ ଆଶାର ସଂଚାର କରି । ପର ମୁହୂର୍ତ୍ତକୁ ଆକାଶ ନିର୍ମଳ । ନିର୍ମେଘ ଆକାଶର ନୀଳିମା ବ୍ୟାପ୍ତି ହୋଇଯାଇଛି ଦିଗନ୍ତକୁ । ମୋର ସାନପୁଅର ନାମ ହେଉଛି ବ୍ୟାପ୍ତି ଆଲବର୍ଟ । ଆମର ପଡ଼ୋଶୀ ଝିଅଟିଏ ପଢୁଥିଲା କଲେଜରେ । ଦର୍ଶନରେ ଏମ.ଏ. ପଢୁଥିଲା । ତାକୁ ରଚନା ଲେଖିବାକୁ ଦିଆଯାଇଥିଲା ''ବ୍ୟାପ୍ତି'' ବିଷୟରେ । ଯାହା ବ୍ୟାପିଯାଇଛି, ଯାହାର ସୀମା ନାହିଁ, ଯାହାର ସୀମା ଦିଗନ୍ତୁଆଁ,ସେ ସବୁତ ହେଉଛି ବ୍ୟାପ୍ତ । ମନକୁ ଛୁଇଁଥିଲା ବିଷୟଟି । ସେତିକିବେଳେ ଆମର ଦ୍ୱିତୀୟ ପୁତ୍ର ଏବଂ ତୃତୀୟ ସନ୍ତାନ ଜନ୍ମ ହୁଏ । ନିଷ୍ପତ୍ତି କରିଥିଲୁ ଯେ ଦୁଇଟି ସନ୍ତାନରୁ ବେଶି ହେବ ନାହିଁ । ପରିବାର ନିୟନ୍ତ୍ରଣର ଔଷଧ ସଫଳତାର ସହିତ ଖାଇଥିଲେ ସ୍ତ୍ରୀ କମଳକୁମାରୀ ।

Digitized by srujan ka@gmail.com

ତଥାପି ସଫଳତାର ପ୍ରତୀକ ରୂପରେ ଜନ୍ମନେଲା ଏଇ ପୁତ୍ରଟି । ନାମ ଦେଲି 'ବ୍ୟାପ୍ତି' । ଆମର ସନ୍ତାନମାନଙ୍କର କାହାରି ସାଙ୍ଗିଆ ନାହିଁ । ଝିଅର ନାମ ହେଉଛି ପ୍ରଜ୍ଞା ଏଲିନାର ଭାଲେଣ୍ଟିନା, ବଡ଼ପୁଅ ନାମ ହେଉଛି ଅଭିଜିତ ଆଇନ୍‌ଷ୍ଟାଇନ ଏବଂ ସାନପୁଅର ନାମ ହେଉଛି ବ୍ୟାପ୍ତି ଆଲବର୍ଟ । ମୋର ମନେହୁଏ ଆମମାନଙ୍କ ନାମ ସହିତ ସାଙ୍ଗିଆଗୁଡ଼ିକ ଯୋଡ଼ା ହୋଇଛି ସମାଜରେ ଶ୍ରେଣୀ ବିଭାଜନ ସହିତ, ବ୍ୟକ୍ତିଗତ ସଂପତ୍ତି ଆହରଣ ସହିତ । ରାମଚନ୍ଦ୍ରଙ୍କର ସାଙ୍ଗିଆ କଣ ଥିଲା ? ଶ୍ରୀକୃଷ୍ଣଙ୍କର ସାଙ୍ଗିଆ କଣ ଥିଲା ଶ୍ରୀକୃଷ୍ଣ ରାଉତ, ଯାଦବ ନା ଆଉ କିଛି ? ଆଜି ଆଶ୍ୱିନରେ ଶରତର ପହିଲି ପରଶରେ ମନେପଡୁଛି କେତେକଥା ସେଇ ଆକାଶକୁ ଦେଖି । ମେଘସବୁ ଉଡ଼ିବୁଲୁଛନ୍ତି ଆକାଶରେ ମନର ସ୍ୱପ୍ନ ପରି । କାଲି କିନ୍ତୁ ପାଗ ସେମିତି ନ ଥିଲା । ଆକାଶରେ କାଲି ରାତିରେ ଧୂର୍ଜଟୀ ଜଟାପରି ମେଘ ଥିଲା । କାମୁକୀ ନାୟିକାର ଆଲୁଳାୟିତ କୁନ୍ତଳପରି, ଅଭିମାନିନୀ ପ୍ରିୟତମାର ମୁହଁପରି ଆକାଶ ଗମ୍ଭୀର ଥିଲା । ଆଜି କିନ୍ତୁ ନିର୍ମେଘ ଆକାଶ ।

ସମୟ ହୋଇଛି । ଆମେ ଛାଡ଼ିବୁ ପୁରୁଣାଗଡ଼ ଏବଂ ତା'ସହିତ ଆରଣ୍ୟାନୀ ମଧ । ପୁଣି କେବେ ଦେଖାହେବ ଅରଣ୍ୟ ତମ ସାଥିରେ । ବାପା ଦେଖାଇ ଦିଅନ୍ତି ପ୍ରତି ରାତିରେ– ଏଇ ଦେଖ, ହାତୀପଲ ଗଡୁଛନ୍ତି ପାଣି ପିଇବାକୁ, ଏଇ ମିରିଗପଲ, ଏଇ ଦେଖ ବାଘ । ଏ ଆମର ନିତିଦିନିଆ କଥା । ବାପାଙ୍କ ହାତରେ ଶକ୍ତିଶାଳୀ ଟର୍ଚ୍ଚ, ଝରକା ବାଟେ ସବୁ ଜନ୍ତୁ ଦେଖାଯାନ୍ତି କିନ୍ତୁ ଟର୍ଚ୍ଚ ପଡ଼ିବା ମାତ୍ରକେ ସେମାନେ ସାମାନ୍ୟ ଚଂଚଳ ହୋଇ ଯାଆନ୍ତି କିନ୍ତୁ ହୁରୁଡ଼ି ପଳାନ୍ତି ନାହିଁ । ବାଘ ହେଉଛି gentleman of the forest. ସେ'ଇ କେବଳ ଅନାଏ ବୁଲିକରି ଏବଂ ଟର୍ଚ୍ଚ ଆଲୁଅ ବନ୍ଦ କରିଦେଲେ ଲାଙ୍ଗୁଡ଼ ପିଟେ ଭୂଇଁଟାରେ । ଟାଇଁ ଟାଇଁ ଶବ୍ଦ ହୁଏ । କେବେକେବେ ଭୂଇଁକୁ ମୁହଁକରି ହୁଁକାର ମାରେ । ଘଡ଼ଘଡ଼ି ଶବ୍ଦ ପରି ଶୁଭେ । ମାଙ୍କଡ଼ସବୁ ଖୁଁ ଖୁଁ ହୋଇ ଏ ଗଛରୁ ସେ ଗଛକୁ ଡେଇଁ ପଳାନ୍ତି । ମାଙ୍କଡ଼ ମାଂସ ବ୍ୟାଘ୍ରର ଖୁବ୍ ପ୍ରିୟ । ତେଣୁ ଜଙ୍ଗଲରେ ମାଙ୍କଡ଼ସବୁ ଖୁଁ ଖୁଁ ହୋଇ ଏ ଗଛରୁ ସେ ଗଛକୁ ଡେଇଁ ପଳାଇବା ଦେଖିଲେ ବାଘ ଅଛି ବୋଲି ଜଣାପଡ଼େ । ଯେପରି ବଳିଆ କୁକୁର ଦେଖିଲେ ଶିକାରୀମାନେ ଶିକାର ମିଳିବ ନାହିଁ ଜାଣି ଫେରିଯାଆନ୍ତି । ବଳିଆ କୁକୁର ଦଳଦଳ ହୋଇ ବୁଲନ୍ତି । ଦଳର ଶକ୍ତି କଣ ହୋଇପାରେ ତାର ପ୍ରମାଣ ହେଉଛନ୍ତି ବଳିଆ କୁକୁର । ତାଙ୍କୁ ଦେଖିଲେ ଜନ୍ତୁମାନେ ଛାନିଆରେ ପଳାନ୍ତି ଅରଣ୍ୟର ସେ ଭୂଖଣ୍ଡକୁ ଛାଡ଼ି । ବଳିଆ କୁକୁର ଦେଖିଲେ ଅରଣ୍ୟ ଭିତରକୁ ଯାଇଥିବା ବ୍ୟକ୍ତିମାନେ ନିରାପଦରେ ଯାଆନ୍ତି କାରଣ ବାଟରେ ଜନ୍ତୁ ହାବୁଡ଼ିବାର ପ୍ରଶ୍ନ ଉଠେନାହିଁ । ସେମାନେ ହେଉଛନ୍ତି ଅରଣ୍ୟ ଭିତରେ ମଣିଷର ବଂଧୁ । ଯେକୌଣସି ଜନ୍ତୁ ହେଉନା କାହିଁକି, ସେ ଯେତେ ବଡ଼ ବା ଭୟାନକ ହେଉନା କାହିଁକି ସେମାନଙ୍କର ସମବେତ ଆକ୍ରମଣ ଆଗରେ ପ୍ରାଣ ବଞ୍ଚାଇ ପାରେ ନାହିଁ ।

Digitized by srujan ka@gmail.com

ଅନୁଗୋଳ ଜଂଗଲ ଭିତରେ ଅହିରାଜ, ଅଜଗର ସାପ ପ୍ରଚୁର । ମୁଁ କିନ୍ତୁ ଅହିରାଜ ଦେଖିନାହିଁ । ଅଜଗର ସାପ ମାଙ୍କଡ଼, ମିରିଗ ଗିଳିଦେବା ଦେଖିଛି । ଅଜଗର ମୁହଁରେ ପଡ଼ିଗଲେ ରକ୍ଷାନାହିଁ । କିନ୍ତୁ ଅନେକ ସମୟରେ ରାସ୍ତା ଉପରେ ସେ ଶୋଇଥାଏ ଏବଂ ଲୋକେ ତା ଉପରେ ଚଢ଼ି ବା ଡେଇଁ ଯିବା ମୁଁ ଦେଖିଛି । 'ଅରଣ୍ୟ ଓ ମଣିଷ' ଉପରେ ଆମର ଏକ ଗବେଷଣା ପ୍ରକଳ୍ପ ରହିଛି । ଜଣେ ଗବେଷକ ଏବଂ ଗବେଷିକା ରହନ୍ତି ରାୟଗଡ଼ା ଜିଲ୍ଲାର ଗଭୀର ଅରଣ୍ୟ ଭିତରେ । ଗବେଷିକା ପଦ୍ମିନୀ ପାଠୀ ରହୁଥିଲେ ଗୋଟିଏ ଘରେ– ଗ୍ରାମରେ । ଥରେ ମୁଁ ଓ ମୋ ସ୍ତ୍ରୀ କମଳକୁମାରୀ ସେଠି ଯାଇ ପହଞ୍ଚିଲୁ । ପଦ୍ମିନୀ ବାଥରୁମରେ ଥିଲେ । ସେ ଆସିଲାପରେ ମୁଁ ବାଥରୁମକୁ ଯିବାକୁ ବସିଲି । କିନ୍ତୁ ବାଥ୍‌ରୁମ୍ ଖୋଜି ଖୋଜି ପାଇଲି ନାହିଁ । ଗୁଡ଼ାଏ ଡିମା ଡିମା ପଥର ଭିତରେ ଖଣ୍ଡେ ଅଖା ଓହଳିଛି । ସେଇଟା ହିଁ ତାଙ୍କର ବାଥ୍‌ରୁମ୍ । ପଦ୍ମିମୀ ଏମ.ଏ. ପାଶ୍ କରି ଏଇ ପ୍ରକଳ୍ପରେ ଯୋଗଦେଇଛନ୍ତି । ମଣିଷ ଓ ଅରଣ୍ୟ ଉପରେ ଆଦିବାସୀମାନଙ୍କ ଠାରୁ ଅମିଶ୍ରିତ (Raw) ତଥ୍ୟ ସଂଗ୍ରହ ପାଇଁ ସେ ଓ ଡକ୍ଟର ମିହିର ଜେନା ଏଇ ଅରଣ୍ୟକୁ ହିଁ ଆପଣାର ଆବାସ କରି ନେଇଛନ୍ତି । ଉଭୟଙ୍କ ଭିତରେ ବଂଧୁତା ଏବଂ ସହଯୋଦ୍ଧୃତ୍ୱ ପ୍ରଗାଢ଼ ହୋଇଛି । ପଦ୍ମିନୀଙ୍କ ଘରେ କବାଟ ନାହିଁ, ଖାଲି ବାଉଁଶ ଚଢ଼ା ଦିଆହୋଇଛି । ତମକୁ ଡର ଲାଗେନା ? ଜନ୍ତୁ ପ୍ରଚୁର । ସେଇଯୋଗୁଁ ଟାଟି ଦେଇଛି ଯଡ଼ ବି ଦେଇଛି । ଆଉ ଭୟ କଣ ? ଏଇଠି ତ ଭୁବନେଶ୍ୱର-କଟକ ପରି ମଣିଷର ଭୟ ନାହିଁ । ଆଦିବାସୀ ବଳାତ୍କାର, ଧର୍ଷଣ ଜାଣେନା । ଯେଉଁ ଝିଅଟି ପ୍ରତି ଆସକ୍ତି ଥାଏ, ଝିଅର ବି ସମ୍ମତି ଥାଏ, ତାକୁ ସେ ଟେକିନିଏ ସମସ୍ତଙ୍କ ସମ୍ମୁଖରେ । ତେଣୁ ଏଠି ଆଉ ଭୟ କଣ ? ଜନ୍ତୁର ଭୟକୁ ଏଡ଼ାଇ ଯିବା ସହଜ କିନ୍ତୁ ମଣିଷର ଭୟ ପ୍ରକୃତରେ ଆତଙ୍କ ସୃଷ୍ଟି କରେ । ଖବରକାଗଜ ପୃଷ୍ଠା ମେଲାଇଲେ ଧର୍ଷଣ, ବଳାତ୍କାର ଖବର ଭର୍ତ୍ତି ଏବଂ ସେମାନେ ସମସ୍ତେ ଶିକ୍ଷିତ ବ୍ୟକ୍ତି । ଆଧୁନିକ ସଭ୍ୟତା ଏବଂ ମଣିଷ ପାଇଁ ସମ୍ଭାବନାର ଦ୍ୱାର ଯେପରି ଉନ୍ମୁକ୍ତ କରିଛି, ମଣିଷ ତାର ବିଷରେ ମଧ୍ୟ ସେଇପରି ବିଷାକ୍ତ ହୋଇଛି ।

ଜୀବନରେ ଓକିଲାତି କରିବାର ଇଚ୍ଛା ଦେଖାଦେଇଥିଲା । ଶ୍ରୀ ଗଂଗାଧର ରଥ (ଓଡ଼ିଶାର ବର୍ତ୍ତମାନ ବିଶିଷ୍ଟ ଆଡଭୋକେଟ୍‌ମାନଙ୍କ ଭିତରେ ଅନ୍ୟତମ)ଙ୍କୁ ସିନିଅର ଭାବରେ ପାଇଥିଲି । ମୋର ଦୁର୍ଭାଗ୍ୟକୁ ପ୍ରଥମ କେଶ୍ ପଡ଼ିଲା ଏକ ବିଚିତ୍ର କେସ୍ ।

ଏକ ବିବାହିତା ଗର୍ଭବତୀ ମହିଳାଙ୍କୁ ସାତଜଣ ଯୁବକ ଧର୍ଷଣ କରିଥିଲେ । ଅଭିଯୁକ୍ତ ବ୍ୟକ୍ତିମାନେ ଯୁବକ, ଶିକ୍ଷିତ, ବଡ଼ଲୋକମାନଙ୍କ ପୁଅ । ସେମାନଙ୍କ ପାଇଁ ଲଢୁଥିଲେ କଟକ ବାର୍‌ର ଦନ୍ତାବଳମାନେ । ବିଚାର ଆରମ୍ଭକରି ଜଜ୍ କହିଲେ ଯେ ମଣିଷ ହେଉଛି ଭଗବାନଙ୍କର ସୃଷ୍ଟିମାନଙ୍କ ଭିତରେ ଶ୍ରେଷ୍ଠ । କିନ୍ତୁ ଏଇ ଅଭିଯୋଗ ପ୍ରମାଣିତ ହେଲେ ପ୍ରମାଣିତ ହୋଇଯିବ ଯେ ମଣିଷ ଓହ୍ଲାଇ ଯାଇଛି ପଶୁଠାରୁ ତଳକୁ, ପଶୁଠାରୁ ହୀନ ହୋଇଯାଇଛି । କାରଣ ପଶୁ

Digitized by srujan ka@gmail.com

ଜଗତରେ କୌଣସି ଗର୍ଭବତୀ ମାଈପଶୁ ସହିତ ପୁରୁଷ ପଶୁ ସହବାସ କରେ ନାହିଁ, ଧର୍ଷଣ ଦୂରର କଥା । ଚାକ୍ଷୁସ ପ୍ରମାଣ ନ ଥିଲା, ଥିଲା ଖାଲି circumstantial evidence । ସବୁ ସାକ୍ଷୀଙ୍କୁ କିଣାଯାଇ ସାରିଥିଲା ଟଙ୍କା ବଳରେ, ପ୍ରଭାବ ବଳରେ । ଭଦ୍ରମହିଳାଙ୍କର ଦିଅର ଏବଂ ପରେ ସ୍ୱାମୀ ଯେତେବେଳେ ସାକ୍ଷୀ ଦେବାକୁ ଆସି ଅଭିଯୁକ୍ତମାନଙ୍କ ସପକ୍ଷରେ ବୟାନ ଦେଲେ, ସେଇଦିନ କୋର୍ଟ ଛାଡ଼ି ଚାଲିଆସିଥିଲି । ଆଉ ଓକିଲାତି ହୋଇପାରିଲା ନାହିଁ । ବଂଧୁ ବିଚାରପତି ଶରତ ମହାପାତ୍ର, ଲିଙ୍ଗରାଜ ରଥ ପ୍ରଭୃତି ଖେଦ ପ୍ରକାଶ କରିଛନ୍ତି ଅନେକ ସମୟରେ । ସେଇ ବଂଧୁମାନଙ୍କ ପାଖରେ ମୁଁ କୃତଜ୍ଞ । ସେମାନଙ୍କର ଶ୍ରଦ୍ଧା ଏବଂ ସହାନୁଭୂତି ପାଇଁ । କିନ୍ତୁ ପ୍ରାକ୍ତନ ସହଯୋଦ୍ଧା (ବର୍ତ୍ତମାନ ପଣ୍ଡିଚେରୀ ଶ୍ରୀ ଅରବିନ୍ଦ ଆଶ୍ରମରେ ଅନ୍ତେବାସୀ) ବିଶ୍ୱମ୍ଭର ସାମନ୍ତ କହନ୍ତି ଯେ ତମେ ଯେ ଓକିଲ ହେଲନାହିଁ, ସେଇଟା ହେଉଛି ଏକ ପଜିଟିଭ୍ ସାଇନ୍ ବା ଆସ୍ତିବାଚକ ଲକ୍ଷଣ । ସେ ବାବାଜୀ ଲୋକ, ଅନେକ ସମୟରେ ମଣିଷର ଅସାମର୍ଥ୍ୟତାକୁ ଏପରି ଦାର୍ଶନିକ ଶବ୍ଦରେ ବିଭୂଷିତ କରନ୍ତି, ଅସାମର୍ଥ୍ୟତା ସାମର୍ଥ୍ୟତାଠାରୁ ବହୁତ ବଡ଼ ବୋଲି ମନେହୁଏ ।

ଅରଣ୍ୟକୁ ବିଦାୟ ଦେବାକୁ ହେବ ବୋଲି ସେଦିନ ମନେହେଉଥିଲା । କିନ୍ତୁ ତାହା ଅତ୍ୟନ୍ତ ସାମୟିକ ବୋଲି ଜାଣି ନ ଥିଲି । ନିଜେ ଡାକ୍ତର ହେବି ବୋଲି ସ୍ୱପ୍ନ ଦେଖିଥିଲି । ପରବର୍ତ୍ତୀ କାଳରେ ତା' ହୋଇପାରିଲା ନାହିଁ ଏକ ବିଚିତ୍ର ପରିସ୍ଥିତିରେ । ମୁଁ ମ୍ୟାଟ୍ରିକ ପାଶ୍ କରିଥିଲି ଦ୍ୱିତୀୟ ଶ୍ରେଣୀରେ । ଅଙ୍କରେ ମୁଁ ଖୁବ୍ ଦୁର୍ବଳ ବୋଲି ଆଗରୁ କହିଛି । ମୋର କିନ୍ତୁ ସ୍ୱପ୍ନଥିଲା ରେଭେନ୍ସା କଲେଜରେ ପଢ଼ିବା । କିନ୍ତୁ ବିଜ୍ଞାନରେ ସିଟ୍ ପାଇଲି ନାହିଁ । ପାରଳାଖେମୁଣ୍ଡି କଲେଜରେ ସିଟ୍ ମିଳିଥିଲା । କଟକ ଆସିଛି ରେଭେନ୍ସା କଲେଜରେ ପଢ଼ିବା ପାଇଁ । ଦାଦା ବିରଞ୍ଚି ନାରାୟଣ ଆସିଛନ୍ତି ସାଙ୍ଗରେ । ବିଜ୍ଞାନରେ ସିଟ୍ ହୋଇନାହିଁ, କଳାରେ ହୋଇଛି । ଅଧ୍ୟାପକ ମହେଶ ଚନ୍ଦ୍ର ପ୍ରଧାନ ସେତେବେଳେ ରାଧାନାଥ ଟ୍ରେନିଂ କଲେଜର ପ୍ରିନ୍ସିପାଲ (ପରେ ସେ ରେଭେନ୍ସା କଲେଜରେ ପ୍ରିନ୍ସିପାଲ ହେଲେ) ସେ ଆମ ଗାଁ ଲୋକ । ମୋର ସିନା ଗ୍ରାମ ସହିତ କିଛି ପରିଚୟ ନାହିଁ କିନ୍ତୁ ଦାଦା ତାଙ୍କୁ ଚିହ୍ନିଥିଲେ ଭଲଭାବରେ । ସେ ମୋତେ ନେଇ ତାଙ୍କ ପାଖରେ ପହଞ୍ଚିଲେ । ସେ ମୋର ଇଂରାଜୀ, ଓଡ଼ିଆ, ଇତିହାସ ପ୍ରଭୃତିରେ ଉଚ୍ଚ ନମ୍ବର ଏବଂ ଗଣିତରେ କମ୍ ନମ୍ବର ଦେଖି ପଚାରିଲେ ମୋତେ । ତମେ କାହିଁକି ପଢ଼ିବ ବିଜ୍ଞାନ ? ମୁଁ ଉତ୍ତର ଦେଲି ଯେ ଡାକ୍ତର ହେବା ମୋର ଇଚ୍ଛା । ଡାକ୍ତର କାହିଁକି ହେବ ? ଡାକ୍ତରମାନଙ୍କୁ ଯେଉଁମାନେ ନିଯୁକ୍ତି ଦିଅନ୍ତି ତମେ କାହିଁକି ସେମାନଙ୍କଭଳି ନିଯୁକ୍ତିକାରକ (appointing authority) ହେବ ନାହିଁ ? ମୁଁ କିଛି ବୁଝିପାରିଲି ନାହିଁ । ସେ ଦାଦାଙ୍କୁ ଉପଦେଶ ଦେଲେ ଯେ ଏହାକୁ ନେଇ ତୁରନ୍ତ ଆର୍ଟସରେ ନାମ ଲେଖାଇ ଦିଅ । ନାମଲେଖା ପରେ ଦାଦା କଟକ ଛାଡ଼ିଲେ ।

Digitized by srujan ka@gmail.com

ହଠାତ୍ ମୁଁ ଦିନେ ଦେଖିଲି ଯେ ସେକେଣ୍ଡ ସିଲେକ୍ସନରେ ବିଜ୍ଞାନରେ ନାମ ଲେଖାଇବା ପାଇଁ ମୋର ନାମ ବାହାରିଛି । ମୁଁ କ୍ଷଣେମାତ୍ର ବିଳମ୍ବ ନ କରି ବିଜ୍ଞାନ ବିଭାଗକୁ ମୋ ନାମଟା ଟ୍ରାନସଫର କରି ଆଣିଲି । ଶଚି ରାୟ ଆମର ପ୍ରିନ୍ସିପାଲ । ପ୍ରସିଦ୍ଧ ଶିକ୍ଷାବିତ୍ ରେବା ରାୟଙ୍କ ପୁତ୍ର । ରେବା ରାୟଙ୍କ ନାମରେ ଏକ ବଗିଚା ଥିଲା କାଫଲା ପାଖରେ । ଲୋକେ ତାକୁ ରେବା ବଗିଚା ବୋଲି ଡାକୁଥିଲେ । ବର୍ତ୍ତମାନ ତା'ର ଆଉ ଚିହ୍ନ ନାହିଁ । ସେଇଠି ଠିଆ ହୋଇଛି ଇନ୍‌କମ୍ ଟ୍ୟାକ୍ସ ବିଭାଗର ଦୁଇ ମହଲା କୋଠାର ଧାଡ଼ି ।

ଶଚି ରାୟଙ୍କ ବାପାଙ୍କର ପରଲୋକ ହୋଇଯାଇଥିଲା । ସେ ବିଲାତ ଗଲେ ପଢ଼ିବା ପାଇଁ । ଫେରି ଦେଖନ୍ତି ଯେ ମା' ରେବା ରାୟ ଏହା ଭିତରେ ଦ୍ୱିତୀୟ ବିବାହ କରି ସାରିଛନ୍ତି । ଶଚି ରାୟ ଏକ ମାନସିକ ଧକ୍କା ଖାଇଲେ ଏବଂ ଚରିତ୍ରଗତ ବିଶୃଙ୍ଖଳାକୁ ସେ ତାପରେ ଜୀବନତମାମସହ୍ୟକରିପାରି ନାହାନ୍ତି । ମୋର ମନେପଡୁଛି ରେଭେନ୍ସା କଲେଜ ୟୁନିଅନରେ ସଦ୍ୟ ନିର୍ବାଚିତ ସଭାପତି ତାଙ୍କର କୌଣସି ସହପାଠିନୀଙ୍କ ପାଖକୁ ଏକ ଚିଠିରେ ଆଉ ଜଣେ ସହପାଠିନୀଙ୍କ ବିଷୟରେ ଏକ ମନ୍ତବ୍ୟ ଦେଇଥିଲେ । ଚିଠିରେ ଲେଖାଥିଲା "She is a veritable prostitute" ଏଇ ଚିଠିଟି ପ୍ରିନ୍ସପାଲଙ୍କ ହାତରେ ପଡ଼ିଗଲା । ପ୍ରିନ୍ସିପାଲ ଏଇ ବାକ୍ୟଟିକୁ ନୋଟିସ ବୋର୍ଡ଼ରେ ଦେଇ ଉକ୍ତ ଚିଠିର ଲେଖକଙ୍କୁ ଶହେ ଟଙ୍କା ଜୋରିମାନା କଲେ । କହିବା ବାହୁଲ୍ୟଯେ ସେତେବେଳେ ୫୦/୬୦ ଟଙ୍କାରେ ଜଣେ ଛାତ୍ର ଖୁବ୍ ଭଲ ଭାବରେ ଚଳିପାରୁଥିଲା କଟକ ସହରରେ । ପ୍ରିନ୍ସପାଲଙ୍କ ମତ ଯେ ଯଦି ଜୋରିମାନା କରିବ ତା'ହେଲେ ଅଳ୍ପ ଟଙ୍କା କରିବ ନାହିଁ । ତା' ନ ହେଲେ ପିଲାର ବାପା ମା' ବା ଗାର୍ଡ଼ିଆନମାନେ ଜାଣିପାରିବେ ନାହିଁ । ଘରୁ ମିଳୁଥିବା ଟଙ୍କାରୁ ସେ ଉକ୍ତ ଜୋରିମାନା ଟଙ୍କା ଦେଇପାରିବ । ମୋଟା ପରିମାଣ ଟଙ୍କା ଜୋରିମାନା ହେଲେ ତା ବାପା ମା' ବା ଗାର୍ଡିଆନ ଜାଣିବାକୁ ବାଧ । ପ୍ରିନ୍ସପାଲ ନୋଟିସ ଦେଇଥିଲେ ଯେ ଯଦି ଏଇ ଛାତ୍ର ରେଭେନ୍ସା କଲେଜରେ ନିର୍ବାଚିତ ହୋଇ ନ ଥାନ୍ତା ତା'ହେଲେ ସେ ତାକୁ କଲେଜରୁ ବହିଷ୍କାର କରିଥାଆନ୍ତେ । କିନ୍ତୁ ନିର୍ବାଚିତ ସଭାପତିଙ୍କୁ ବହିଷ୍କାର କଲେ ତାହା କଲେଜ ୟୁନିଅନ ସହିତ କଲେଜ ପ୍ରିନ୍ସିପାଲଙ୍କ ମଧ ବଦନାମ ହେବ । ତେଣୁ ସେ ସେଥିରୁ ବିରତ ରହୁଛନ୍ତି । ସେ ଛାତ୍ର ଉପରେ ତା'ର ପ୍ରଭାବ ପଡ଼ିଥିଲା ଏବଂ ପରବର୍ତ୍ତୀ କାଳରେ ସେ ଜଣେ ସଫଳ ଅଫିସର ହୋଇପାରିଲେ ।

ମୋର କିନ୍ତୁ ସେଥିରୁ ଏତିକି ଲାଭ ହେଲା ଯେ veritable ଶବ୍ଦର ଅର୍ଥ ମୁଁ ବୁଝିଗଲି ଏବଂ ତାହା ମୋର ଜୀବନଯାକ ମନେ ରହିବ । ମୋର ଇଂରାଜୀ ଭାଷା ଜ୍ଞାନର ଶ୍ରୀ ବୃଦ୍ଧି ହେଲା ।

ଏଇଠି ମୋର ଆଉ ଗୋଟିଏ କଥା ମନେପଡୁଛି । ଜେଲଖାନାରୁ ଖଲାସ ହୋଇ ମୁଁ ଅନ୍ତରୀଣ ବନ୍ଦୀ ହୋଇଥାଏ ଅନୁଗୋଳରେ । କାରଣ ସରକାର ବାହାଦୂରଙ୍କ ମତରେ ମୋର

Digitized by srujan ka@gmail.com

ଜନ୍ମସ୍ଥାନ ହେଉଛି ଅନୁଗୋଳ । କିନ୍ତୁ ଅନୁଗୋଳ ସହିତ ମୋର ସଂପର୍କ କିଛି ନ ଥିଲା । ଆଜି ବି ଯାହା ଅଛି ତାହା ଅତ୍ୟନ୍ତ ଗୌଣ ।

ଓଡ଼ିଶାର ପାଞ୍ଚୋଟି ଜିଲ୍ଲାକୁ ନେଇ ଏଇ ପ୍ରଦେଶ ଗଠନ ହେଲା । ମୋର ମନେହୁଏ ଯେ ୰ ମଧୁସୂଦନ ଦାସ ପ୍ରଭୃତିଙ୍କ ପ୍ରଚେଷ୍ଟ ଏବଂ ସାଇମନ୍ କମିଶନକୁ ସ୍ୱାଗତ ଉଭୟ କାରଣ ଏଇପାଇଁ ସାହାଯ୍ୟ କରିଥିଲା । କିନ୍ତୁ ସିଂହଭୂମି ବା ମେଦିନୀପୁର ଓଡ଼ିଶାକୁ ଆସିଲା ନାହିଁ ।

ନୂଆ ପ୍ରଦେଶ ଗଠନ ହେବାର କିଛିକାଳ ପୂର୍ବରୁ ମହାତ୍ମା ଗାନ୍ଧୀ ଅନୁଗୋଳ ବାଟଦେଇ ଯାତ୍ରା କଲେ, ଓଡ଼ିଶାର ପଦଯାତ୍ରା । ମୋର ଝାପସା ଝାପସା ମନେ ପଡୁଚି । ବାପା ଓ ଦାଦାଙ୍କ ସହିତ ଯାଇ ବଡ଼କେରା ଛକରେ ତାଙ୍କୁ ଭେଟିଥିଲୁ ଅଗଣିତ ଜନସମୁଦ୍ର ମଧ୍ୟରେ । ମହାତ୍ମା ଗାନ୍ଧୀ କିନ୍ତୁ ଅନୁଗୋଳ ଭିତରେ ରହି ପାରିଲେ ନାହିଁ । ପ୍ରବଳ ପ୍ରତାପୀ କଲେକ୍ଟର ୰ ଦୁର୍ଗା ଦାସ ହୁକୁମ ଜାରି କରିଥିଲେ ଯିଏ ଅନୁଗୋଳ ଭିତରେ ତାଙ୍କୁ ରହିବା ପାଇଁ ସ୍ଥାନ ଦେବ ତା'ର ଘରକୁ ମାଟିରେ ମିଶାଇ ଦିଆଯିବ । ଅନୁଗୋଳ ନନ୍-ରେଗୁଲେଶନ ଆକ୍ଟ ଅନୁଯାୟୀ ଏହି ହୁକୁମ ଜାରି କରଯାଇଥିଲା । ତେଣୁ ମହାତ୍ମା ଗାନ୍ଧୀ ଲିଙ୍ଗରା ନଦୀ ଛକରୁ ରିଙ୍ଗ ରୋଡ଼ରେ ଯାଇ କୋଶଳା ଗ୍ରାମର ଏକ ଆମ୍ବ ତୋଟା ଭିତରେ ରହିଥିଲେ । ସେଠାରେ ତାଙ୍କର ରହିବା ପାଇଁ ବନ୍ଦୋବସ୍ତ ହୋଇଥିଲା ।

ଅନୁଗୋଳ ଯଦିଓ ମୋଗଲବନ୍ଦୀ ଅଞ୍ଚଳ ଅର୍ଥାତ ସରକାରଙ୍କ ପ୍ରତ୍ୟକ୍ଷ ଶାସନରେ ପରିଚାଳିତ ଏଥିପାଇଁ କିନ୍ତୁ ଏକ ସ୍ୱତନ୍ତ୍ର ଆଇନ ପ୍ରଣୟନ ହୋଇଥିଲା । ନନ୍-ରେଗୁଲେସନ ଆକ୍ଟ ନାମରେ ବିଦିତ । ଏହି ହୁକୁମ ଅନୁଯାୟୀ ଜିଲ୍ଲା ହାକିମଙ୍କୁ ଅଖଣ୍ଡ କ୍ଷମତା ପ୍ରଦାନ କରାଯାଇଥିଲା । ରାସ୍ତାରେ ମଇଳା ଜମା କରିବାଠାରୁ ଆରମ୍ଭ କରି ଘରେ କିଏ ଅତିଥି ହେବେ ସବୁ ଉପରେ ସରକାରଙ୍କ ଅଖଣ୍ଡ କ୍ଷମତା ଥିଲା । ପ୍ରତିଦିନ ସକାଳୁ ଲୋକେ ଧରା ହୋଇ ଆସୁଥିଲେ ହାକିମଙ୍କ ପାଖକୁ । କିଏ ନିଜ ଘର ଆଗରେ ମଇଳା ଜମା କରିଛି ତ କିଏ ସ୍ତ୍ରୀକୁ ବାଡ଼େଇଛି ଇତ୍ୟାଦି ବହୁ ପ୍ରକାର କାରଣରୁ ଏବଂ ହାକିମ ହୁକୁମ ଦିଅନ୍ତି ବେତମାଡ଼ ଦେଇ ।

ଏଇପରି ଏକ ସମୟରେ ଶ୍ରୀନିବାସ ସିଂହ ନାମକ ଜଣେ ବ୍ୟକ୍ତି ଅନୁଗୋଳ ଶିକ୍ଷା ବିଭାଗର ଅଧ୍ୟକ୍ଷ ହେଲେ । ସେ ଦେଖିଲେ ଲୋକଙ୍କର ଦୁରବସ୍ଥା । ସେ ଗୋଟିଏ ଉପାୟ ଚିନ୍ତା କଲେ । ଭାବିଲେ ଯଦି ଏମାନଙ୍କର କିଛି ଶିକ୍ଷାର ବନ୍ଦୋବସ୍ତ ହେଇପାରନ୍ତା, ତା' ହେଲେ ବୋଧହୁଏ ଅବସ୍ଥା ବଦଳି ଯାଆନ୍ତା । ସେତେବେଳେ ବେଠିର ଯୁଗ । ସେ ଆଦେଶ ଦେଲେ ଯେ ଅନୁଗୋଳର ପ୍ରତି ଗ୍ରାମରେ ଗୋଟାଏ ସ୍କୁଲ ହେବ ଏବଂ ସେଇଠି ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତେ ଆପଣାର ପିଲାମାନଙ୍କୁ ପଢ଼ାଇବାକୁ ବାଧ୍ୟ ।

ନନ୍-ରେଗୁଲେଶନ ଆକ୍ଟ ଅନୁଯାୟୀ ଏଇପରି ହୁକୁମ ହୋଇଗଲା । ତେଣୁ ଅନୁଗୋଳର ପ୍ରତି ଗ୍ରାମରେ ଏଇପରି ସ୍କୁଲ ଗୋଟିଏ ରହିଛି ଏବଂ ସ୍ୱାଧୀନତା ପୂର୍ବରୁ ଅନୁଗୋଳର ସ୍ୱାକ୍ଷର

Digitized by srujan ka@gmail.com

ସଂଖ୍ୟା ଥିଲା ଶତକଡ଼ା ଶହେ । କାରଣ ସରକାରୀ ହୁକୁମ ଅମାନ୍ୟ କରିବ କିଏ ? ବାପା, ଦାଦା, ସବୁ ଜଙ୍ଗଲ ବିଭାଗରେ କାମ କରନ୍ତି । ପ୍ରତିଦିନ ଶହଶହ କୁଲି କାମ କରନ୍ତି, ଅନେକ ସେଥିରୁ ଟିପ ଦିଅନ୍ତି । କାରଣ ସେମାନେ ପାଠ ପଢ଼ି ନାହାନ୍ତି । କିନ୍ତୁ ଅନୁଗୋଳରେ ତାହା ଚଳେନା । ଟିପ ଦେବା ପାଇଁ ପ୍ୟାଡ଼ର ଦରକାର ପଡ଼େନାହିଁ । ସମସ୍ତେ ଦସ୍ତଖତ କରନ୍ତି ।

ସ୍ୱାଧୀନତା ପରେ ତାହା ବଦଳିଗଲା । ଡ୍ରପ-ଆଉଟ ଶବ୍ଦର ସୃଷ୍ଟି ହେଲା ସ୍କୁଲମାନଙ୍କରେ । କେନ୍ଦୁପତ୍ର ସଂଗ୍ରହ ଏବଂ ବିଡ଼ି ବଳିବା କୁଟୀର ଶିଳ୍ପ ଆରମ୍ଭ ହେଲା ପରେ, ନିରକ୍ଷରତା ଦେଖାଗଲା ଏବଂ ବଢ଼ିଗଲା । ତେଣୁ ପରବର୍ତ୍ତୀ କାଳରେ ପ୍ରୌଢ଼ଶିକ୍ଷା, ସମୂହଶିକ୍ଷା, ନନ୍-ଫର୍ମାଲ ଶିକ୍ଷା ଆରମ୍ଭ ହେଲା । ତାହା ସହିତ ଆରମ୍ଭ ହେଲା କରପ୍‌ସନ୍ । ଏହି ସ୍କାମ୍ ବା ସ୍କାଣ୍ଡାଲ ଅନୁଗୋଳ ସମେତ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶିକ୍ଷା ବିଭାଗ ସହିତ ଶାସନକୁ ମଧ୍ୟ ସଂକ୍ରମିତ କଲା ।

ଅନୁଗୋଳର ଏଇଭଳି ଜଣେ ବ୍ୟକ୍ତି ଥିଲେ ସତ୍ୟବାଦୀ ପ୍ରଧାନ । ଦରଘା ବଜାରରେ ଥିବା ପରିତ୍ୟକ୍ତ କଟକ ଜେଲ୍‌ରେ ସେ ଥିଲେ ଜେଲର । ଏହି ଜେଲ୍ ଭିତରେ ଏଭଳି ବିରଳ ଆମ୍ବ, ପିଜୁଳି, ବେଲ, ଲେମ୍ବୁ ଗଛ ଥିଲା ଯାହା ଓଡ଼ିଶାର ଅନ୍ୟ କେଉଁଠି ମିଳେ ନାହିଁ । ପରବର୍ତ୍ତୀ କାଳରେ ଜେଲ୍‌ର କର୍ମକର୍ତ୍ତାମାନେ ତାକୁ ନଷ୍ଟ କରିଚାଲିଲେ ନିଜର ସ୍ୱାର୍ଥ ପାଇଁ ।

ମୋର ମନେ ପଡ଼ୁଛି, କଟକ ଜେଲର ୧୫, ୧୬, ୧୭ ନମ୍ବର ୱାର୍ଡ଼ ହେଉଛି ରାଜନୈତିକ ବନ୍ଦୀମାନଙ୍କ ପାଇଁ ପ୍ରାୟତଃ ରଖିବାକୁ । ଜେଲ ଭିତରେ ଏହା ଏକ ସ୍ୱତନ୍ତ୍ର ଜେଲ୍ । ଆଗେ ଏଠାରେ ପାଗଳା ଗାରଦ ଥିଲା । ବର୍ତ୍ତମାନ ବି ତା'ର ଅବଶିଷ୍ଟାଂଶ ରହିଛି । ଏହି ୧୫ ନମ୍ବର ୱାର୍ଡ଼ର ପଛପଟେ ଥିଲା ଏକ ଲେମ୍ବୁ ବଗିଚା । ବିରଳ ଧରଣର ଲେମ୍ବୁ ପ୍ରଚୁର ଫଳେ ବର୍ଷସାରା । ଠିକ୍ ସେଇପରି ୱାର୍ଡ଼ ସମ୍ମୁଖରେ ଥିଲା ବିରଳ ବେଲ ଏବଂ ଆମ୍ବଗଛ । ରାଜନୈତିକ ବନ୍ଦୀମାନଙ୍କ ୱାର୍ଡ଼ । ତେଣୁ କେହି ସେଠାରୁ ଫଳ ନିଅନ୍ତି ନାହିଁ । ବରଂ ଆମେ ଚାହିଁଲେ କିଛି ଫଳ ଆମେ ଜେଲ ଷ୍ଟାଫ୍‌କୁ ଦେଉ ।

୰ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ଆମର ଜେଲ୍ ସୁପରିଟେଣ୍ଡେଣ୍ଟ । ତାଙ୍କ ସହିତ ସଂପର୍କ ଖୁବ୍ ଭଲ । ହଠାତ୍ ଶୁଣାଗଲା ଯେ ସ୍ୱାସ୍ଥ୍ୟ ବିଭାଗ ସେକ୍ରେଟେରୀ, ଡାଇରେକ୍ଟର ଜେଲ୍ ପରିଦର୍ଶନରେ ଆସିବେ । ହଠାତ୍ ଗୋପାଳବାବୁ ଆସି କହିଲେ ଆମର ଜେଲ୍ କମିଟିର ନେତା ବନମାଳୀ ବାବୁଙ୍କୁ ଆଜି ଏଇ ଆମ୍ବ ଓ ବେଲ ଆପଣମାନେ ତୋଳିଦେଲେ ଭଲ ହୁଅନ୍ତା ନାହିଁ ? କାରଣ କ'ଣ ପଚାରିବାରୁ ସେ କହିଲେ ଯେ କର୍ତ୍ତାମାନେ ଆସିବେ । ସେମାନଙ୍କର ଆଖି ପଡ଼ିବ ଏଇ ଫଳ ଉପରେ । ପଠାଇବାକୁ କହିବେ । ତେଣୁ ଆପଣମାନଙ୍କ ସହିତ ସଂଘର୍ଷ କାହିଁକି ହେବ ସେଥିପାଇଁ ।

Digitized by srujan ka@gmail.com

କିନ୍ତୁ ସେତିକିବେଳେ ସେଠାରେ ଜଣେ ଜେଲର୍ ଥିଲେ । ସେ ଲେମ୍ବୁଗଛସବୁ କାଟି ପଦା କରିଦେଲେ କାରଣ ସେ ଲେମ୍ବୁନେଇ ପାରିଲେ ନାହିଁ ସେଠାରୁ ।

ମହତାବବାବୁ ମୋତେ ଥରେ କହୁଥିଲେ— ସେ କଟକ ଜେଲରେ ବନ୍ଦୀ ଥିଲାବେଳେ ଜେଲର୍ ଥାଆନ୍ତି ସତ୍ୟବାଦୀ ପ୍ରଧାନ । ଜେଲରେ ଥିବା ବନ୍ଦୀମାନେ ଅଧିକ ସୁବିଧା ଦାବି କରି ଅନଶନ କରିବା ସକାସେ ଏକ ଦାବୀପତ୍ର ଦେଲେ ଜେଲରଙ୍କୁ ଏବଂ ବନ୍ଦୀମାନଙ୍କର ନେତା ଭାବରେ ମହତାବବାବୁ ତାକୁ ଦେଇଦେଲେ ସତ୍ୟବାଦୀ ପ୍ରଧାନଙ୍କୁ । ସତ୍ୟବାଦୀ ବାବୁ ମହତାବବାବୁଙ୍କୁ ଏକାନ୍ତରେ ଡାକି କହିଲେ ଯେ ଏଥିପାଇଁ ଦାବୀପତ୍ର କ'ଣ ଦରକାର ? ସରକାର ତ ଏହା ଚାହୁଁଛନ୍ତି । କିନ୍ତୁ ଆପଣ ଜାଣନ୍ତି ତ ତା'ର ଗୂଢ଼ ରହସ୍ୟ !

ତା'ପରେ ସେ ଏକ ଗୁପ୍ତ ସର୍କୁଲାର ଦେଖାଇଲେ ମହତାବ ବାବୁଙ୍କୁ ।

ସେଥିରେ ଲେଖାଅଛି ଯେ କଟକ ଜେଲ୍‌ରେ ବହୁ ରାଜନୈତିକ ବନ୍ଦୀ ଅଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଆସିଛନ୍ତି ସମାଜର ନିମ୍ନ ମଧ୍ୟବିତ୍ତ ପରିବାରରୁ । ଜେଲଖାନା ଭିତରେ ସେମାନଙ୍କୁ ଏପରି ସ୍ୱାଚ୍ଛନ୍ଦ୍ୟ ଏବଂ ସୁବିଧାରେ ରଖ ଯେପରି ସେମାନେ ଜେଲ୍‌ରୁ ଫେରିଲା ପରେ ଏଭଳି ସ୍ୱାଚ୍ଛନ୍ଦ୍ୟ ସୁବିଧା ସହିତ ଜଡ଼ିତ ହୋଇଯାଇଥିବେ ଯେପରି ସ୍ୱାଧୀନତା ସଂଗ୍ରାମର କଠୋର ଜୀବନକୁ ଫେରିବାକୁ ଚାହିଁବେ ନାହିଁ ।

ମହତାବବାବୁ କହିଲେ ମୋର ଅକଲ୍ ଗୁଡୁମ୍ ! ମୁଁ ଦାବୀପତ୍ରକୁ ଚୁପ୍‌ଚାପ୍ ଫେରାଇ ଆଣିଲି ।

ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପରଲୋକ ହୋଇଯାଇଥାଏ । ଓଡ଼ିଶାର ରାଜ୍ୟପାଳ, 'ସମାଜ' ସଂପାଦକ ରାଧାନାଥ ରଥ ଏବଂ ମୁଁ ଠିଆହୋଇଥାଉ ଗୋଟିଏ ଧାଡ଼ିରେ ତାଙ୍କର ଚିତା ପାଖରେ । ପଛରୁ ଅନୁଗୋଳର କିଛି ଲୋକ କଥା ହେଉଥିଲେ । ଜଣେ ଜଣଙ୍କୁ ପଚାରୁଛି, ହଇରେ ସେଇ ଯେଉଁ ଲୋକଟି ଠିଆ ହୋଇଛି ରାଜ୍ୟପାଳ ଓ ରାଧାନାଥ ବାବୁଙ୍କ ମଝିରେ ତା' ଘର କୁଆଡ଼େ ଅନୁଗୋଳ । ଆର ଜଣକ ଉତ୍ତର ଦେଉଛି ''ସବୁ ଗୁଲି, ଗୁଲିଖଟି ଗପ । ତା' ଘର ପରା କଟକରେ ।'' ଆଉ ଜଣେ ତାକୁ ସଂଶୋଧନ କରି କହୁଛି,ନାଇଁମ,ମୁଁ ବି ଶୁଣିଥିଲି ସେଇୟା । ତା' ଘର ଏଇଠି । ଅଶୋକ (ମିଶ୍ର) କହୁଥିଲେ ଯେ ସେଇଆଡ଼େ ପାଠପଢ଼ି ସେଇଆଡ଼େ ରହିଯାଇଛି । ମୋର ଅନୁଗୋଳ ସହିତ ପରିଚିତ ଏଇପରି । ଏହା ସତ୍ତ୍ୱେ ମୁଁ ଅନୁଗୋଳରେ ଅନ୍ତରୀଣ ବନ୍ଦୀ । ମୋର ଭାଗ୍ୟ ଯେ ସେତେବେଳକୁ ଅବସର ନେବାର ଅବ୍ୟବହିତ ପୂର୍ବରୁ ମୋ ବାପାଙ୍କର ପୋଷ୍ଟିଂ ହୋଇଛି ଅନୁଗୋଳରେ । ଭଡ଼ା ଘରେ ରହି ସେ ଘର ଖଣ୍ଡିଏ ତୋଳାଉଛନ୍ତି ଟାଉନରେ । ସାଂସାରିକ ବୁଦ୍ଧିର ଅଭାବରୁ ସେ ଘର ଖଣ୍ଡିଏ କରିପାରି ନାହାନ୍ତି ଟାଉନରେ । ସେ ବିଷୟରେ ଚେତା ପଶିଲା ବେଳକୁ ସମୟ ଅତିକ୍ରାନ୍ତ ହେଇ ସାରିଛି ।

Digitized by srujan ka@gmail.com

ସେଦିନ ମୋର ଦାଦା ନେତ୍ରାନନ୍ଦ ପଟ୍ଟନାୟକ (ମୋ ବାପାଙ୍କର ମାମୁଁ ପୁଅ ଭାଇ ଏବଂ ସତ୍ୟବାଦୀ ବନବିଦ୍ୟାଳୟର ପୁରାତନ ଛାତ୍ର)ଙ୍କ ଘରେ ଏକ ଗଳ୍ପ ଆସର ବସିଥିଲା । ଯୋଗ ଦେଇଥିଲେ ବଡ଼ବାପା ନବକିଶୋର ପଟ୍ଟନାୟକ (ଲୋକସଭାର ପୂର୍ବତନ ଅତିରିକ୍ତ ସେକ୍ରେଟାରୀ ପ୍ରଫୁଲ୍ଲ ପଟ୍ଟନାୟକଙ୍କର ବାପା) । କଣ ଗୋଟିଏ ବିଷୟ କଥା ହେଉ ହେଉ ଇଂରେଜୀ ଭାଷାଜ୍ଞାନ ଉପରେ କଥା ପଡ଼ିଲା । ନବ ବଡ଼ବାପା କହିଲେ– ବୁଝିଲୁ ବାପା, ଭାଷାରେ ଜ୍ଞାନଟା ଖାଲି ପୋଥିରୁ ମିଳେନା, ମିଳେ ବେଶି ଜୀବନରୁ । ମୋ କଥା ଦେଖୁନୁ । ଚତୁର୍ଥ ଶ୍ରେଣୀ ପାସ୍ କରି ମୁଁ ଚାକିରିରେ ଯୋଗ ଦେଇଥିଲି । ସେତେବେଳେ ସେତିକି ପାଠ କୁଳାନ ହୋଇଥିଲା ଚାକିରିଟିଏ ପାଇବା ପାଇଁ । ଅନୁଗୋଳ ଥିଲା ନନ୍-ରେଗୁଲେଟଡ୍ ଏରିଆ, କଟକ, ପୁରୀ, ବାଲେଶ୍ୱର ଥିଲା ରେଗୁଲେଟେଡ । ନନ୍-ରେଗୁଲେଟଡ୍ ଜିଲ୍ଲାର ହାକିମଙ୍କୁ ଡେପୁଟି କମିଶନର କୁହାଯାଉଥିଲା । ସେମାନଙ୍କ ହାତରେ ଥିଲା ଅଖଣ୍ଡ କ୍ଷମତା । ମହାତ୍ମା ଗାନ୍ଧୀ ଏଇ ବାଟ ଦେଇ ଗଲାବେଳେ ତତ୍‌କାଳୀନ ହାକିମ ହୁକୁମ ଦେଲେ ଯେ ମହାତ୍ମା ଗାନ୍ଧୀଙ୍କୁ କେହି ଅତିଥି କରିପାରିବେ ନାହିଁ । କଲେ ତା ପରଦିନ ଘର ନ ଥିବ ମାଟି ଉପରେ । ସେ ଯାଇ ଅନୁଗୋଳ ସୀମା ଟପି ଏକ ଆମ୍ବ ତୋଟାରେ ରହିଲେ । ଡେପୁଟି କମିଶନରଙ୍କ ଇଜଲାସକୁ ପ୍ରତିଦିନ ଲୋକେ ଧରା ହୋଇ ଆସନ୍ତି ବିଭିନ୍ନ ଅପରାଧରେ । ସେଇଠି ବିଚାର ହୁଏ । କମିଶନରଙ୍କ ହାତରେ ଥାଏ ବିରାଟ ଚାବୁକ । ଅନେକ ସମୟରେ ସେହି ଚାବୁକ ହିଁ କାମ କରେ । କିଏ ରାସ୍ତାରେ ମଇଳା ଗଦେଇଛି, କିଏ ଗାଈ ଛାଡ଼ିଦେଇଛି ରାସ୍ତା ଉପରେ, କିଏ ଶଗଡ଼ମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବା ରାସ୍ତାରେ ଶଗଡ଼ ନ ନେଇ ଶଗଡ଼ ନେଇ ଯାଇଛି ମେନ୍‌ରୋଡ଼ରେ । ଅଭିଯୋଗ ଓଡ଼ିଆରେ, ମୋ କାମହେଲା ତାକୁ ଇଂରାଜୀରେ ଅନୁବାଦ କରି କହିବା ସାହେବଙ୍କୁ । ମୋର ଚତୁର୍ଥ ଶ୍ରେଣୀ ପାଠ । ଇଂରାଜୀ ଭାଷାରେ ଯେଉଁ ବ୍ୟୁତ୍ପତ୍ତି ! ତଥାପି ର ବ ଠ କରି ଚଳାଇ ନିଏ । ମାସକୁ ଦରମା ବାର ଟଙ୍କା । ସେଇ ଟଙ୍କା ବେଳ ନା କେତେ ଆମ ପରିବାର ପାଇଁ । ଟଙ୍କାକୁ କଟକୀ ୩୨ ସେର (ବାଲେଶ୍ୱରୀ ସେର ଅଶୀ ତୋଳା, କଟକୀ ସେର ୧୦୫ ତୋଳା) ଚାଉଳ । କୁକୁଡ଼ା ଗୋଟାକ ପଇସାଟିଏ । ଦିନେ ହଠାତ୍ ଜଣେ ସ୍ତ୍ରୀ, ଜଣେ ପୁରୁଷକୁ ବାନ୍ଧି ହାଜର କରାଗଲା ଇଜଲାସରେ । ସ୍ତ୍ରୀ ଲୋକଟି କାନ୍ଦୁଛି ଜୋର୍‌ରେ । ସ୍ୱାମୀ ଧରାହୋଇ ଆସିଛି । ସ୍ୱାମୀ, ସ୍ତ୍ରୀ ଭିତରେ ଝଗଡ଼ା ହୋଇ, ଶେଷକୁ ସ୍ୱାମୀ ପିଟିଛି ସ୍ତ୍ରୀକୁ ଜୋରରେ । ସ୍ତ୍ରୀ ଲୋକଟିଏ କାନ୍ଦୁଚି ଦେଖି ଉତ୍‌କ୍ଷିପ୍ତ ହୋଇ କମିଶନର ପଚାରିଲେ ଇଂରାଜୀରେ, କଣ ହେଲା ପେଷ୍କାର ତୁରନ୍ତ କୁହ । ଚାବୁକଟା ହାତ ଉପରକୁ ଉଠି ଗଲାଣି, ଏଣେ ମୋର ପିଚା ସନ୍ନିପାତ । ସ୍ତ୍ରୀ ଲୋକ ଜଣକ ତା'ର ସ୍ୱାମୀକୁ ଦେଖାଇ ଅଭିଯୋଗ କଲା ଏଇ ହେଉଛି ମୋର ସ୍ୱାମୀ । ମୋତେ ଖୁବ୍ ଜୋର୍‌ରେ ମାରିଛି । ନୋଳା ଫାଟି ଯାଇଛି ପିଠିରେ । ଆଉ ରକ୍ଷା ଅଛି ! ଗର୍ଜନ କରି କମିଶନର ମୋତେ ଅନାଇଲେ ଏବଂ ପଚାରିଲେ ପେଷ୍କାର କଣ ହେଲା ? କଣ ହେଲା ?

Digitized by srujan ka@gmail.com

ତାଙ୍କ ଗର୍ଜନ ଦେଖି ତ ମୁଁ ଛାନିଆ । ପାଟି ଖନି ବାଜିଗଲାଣି । ମୁଁ ଅନୁବାଦ କଲି– Sir, Lady say she beaten by her..... ସ୍ୱାମୀର ଇଂରାଜୀ ପ୍ରତିଶବ୍ଦଟା ତ ମୋର ଆଦୌ ମନେ ପଡ଼ିଲା ନାହିଁ । ତେଣେ ସାହେବ ଗର୍ଜନ କରୁଛି, Yes, yes, beaten by whom...... ମୁଁ ଡରରେ କହି ପକାଇଲି beaten by..... servant, ଆଉ ମୁଁ ଯାଏଁ କୁଆଡ଼େ । ସାହେବ ଗର୍ଜୁଛି । Lady beaten by servant... କହୁଛି ଆଉ ଚାବୁକ ମାଡ଼ ଚାଲିଛି ସର୍ଭାଣ୍ଟ ଉପରେ ନୁହେଁ, ସ୍ୱାମୀ ଉପରେ । ଏପରି ମାଡ଼ ଚାଲିଛି ଯେ ସ୍ତ୍ରୀ ମଧ ତଟସ୍ଥ ହୋଇ ଗଲାଣି । କି ମାଡ଼ ! ସ୍ୱାମୀ ଦେହରୁ ପିଚ୍ ପିଚ୍ ରକ୍ତ ବାହାରୁଛି । ବର୍ତ୍ତମାନ ମୋର ମନେ ପଡ଼ିଲାଣି ସ୍ୱାମୀ ମାନେ Husband, ଚାକର ମାନେ Servant । ମୋର ଭୟ ହେଲାଣି ଯଦି ସାହେବ ଜାଣିଯିବେ ଏଇ ଫରକଟା ତା'ହେଲେ... ? ଚାବୁକଟା ତ ମୋ ଉପରେ ଚାଲିବ ଏଇପରି । ମୁଁ ଡରି ଛାନିଆ । ସେ ଦୁଇଜଣଯାକ ଦୌଡ଼ି ମିଶିଗଲେଣି ଆମ୍ବଗଛ ଉହାଡ଼ରେ । ମୁଁ ଖାଲି ଘୋଷି ହେଉଚି Husband ମାନେ ସ୍ୱାମୀ । Servant ମାନେ ଚାକର । ସେଇଦିନରୁ ଏଇ ଶବ୍ଦ ଦୁଇଟାରେ ମୋର ଆଉ ଭୁଲ୍ ହୋଇନାହିଁ ।

ଆଉ ଡାକ୍ତର ହେବା ନୋହିଲା । ଆମ ଗାଁ କାଙ୍କୁଲା ଯିବା ବାଟରେ ପଡ଼େ ଖମାର ଗାଁ । ସେଇଠି ରହନ୍ତି ନଟବର କର । ସେ ଆମର କୁଳ ପୁରୋହିତ ଏବଂ ସୂର୍ଯ୍ୟବାନ୍ଧବ । ସେ ତାଙ୍କ ଘର ଆଗ ଚଉପାଢ଼ୀରେ ବସିଥାଆନ୍ତି । ଯିବା ବାଟରେ ତାଙ୍କୁ ପ୍ରଣାମ କରି ଯିବାକୁ ପଡ଼େ । ସେ ପୁରୋହିତ ଏବଂ ଜ୍ୟୋତିଷ ମଧ । ହାତ ଦେଖି ମୋର ସେ କହିଛନ୍ତି ଯେ ମୁଁ ଡାକ୍ତର ହେବି । ଆର୍ଟସ କ୍ଲାସରେ ନାମ ଲେଖାଇବା ପରେ ସେ ବି କହିଲେ ଯେ ତୁ ଡାକ୍ତର ହେବୁ । ଫଳିତ ଜ୍ୟୋତିଷର ମୋହ ମୋ ପାଇଁ କଟିଗଲା । ଜେଲରେ ଥିବା ବେଳେ କେବେ କେବେ ସ୍ୱତନ୍ତ୍ର ଅନୁମତି ନେଇ ଫଳିତ ଜ୍ୟୋତିଷମାନଙ୍କର ଆଗମନ ହୋଇଛି । ସେମାନେ ଦେଖିବାକୁ ଚାହିଁଛନ୍ତି ଯେ କଣ ସେଇରେଖା ଯାହାସବୁ ବାନ୍ଦୀମାନଙ୍କ ହାତରେ ରହିଛି, ଯାହା ଫଳରେ ସେ ଏଇ କାରାଗାର ଭିତରେ ଆବଦ୍ଧ ରହିଛନ୍ତି । କିନ୍ତୁ କେହି ତାହା ପାଇ ନାହାନ୍ତି । କିନ୍ତୁ ଏଇଠି ପ୍ରସିଦ୍ଧ ଦାର୍ଶନିକ ଭାରତର ପ୍ରାକ୍ତନ ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କର ଜୀବନୀ ମନେପଡ଼େ । ତାଙ୍କର ଜୀବନୀ ଲେଖିଛନ୍ତି ତାଙ୍କର ପୁତ୍ର ପ୍ରସିଦ୍ଧ ଐତିହାସିକ ଏସ୍.ଗୋପାଲ । ଗୋପାଲ ରେସନାଲିଷ୍ଟ । ସେ ତାଙ୍କ ବାପାଙ୍କର ଜୀବନୀ ଯେପରି ଲେଖିଛନ୍ତି ସେପରି କେହି ଲେଖିବା ମୁଁ ଜାଣି ନାହିଁ । ଏଭଳି କଠୋର ସତ୍ୟ ଆପଣାର ପିତାଙ୍କ ଉପରେ ଲିପିବଦ୍ଧ କରିଯିବା ଭାରି କଠିନ କାମ । ପିତା ଏକ ଜାରଜ ସନ୍ତାନ । ପିତାଙ୍କ କହିବା ଢଙ୍ଗ କି ଚମତ୍କାର । ଦର୍ଶକଙ୍କୁ ସେ ସ୍ତବ୍ଧ କରି ରଖନ୍ତି । ପାଟିରୁ ଶବ୍ଦ ବାହାରେ ବୁଲେଟ ପରି । ସେ ବକ୍ତୃତା ଦେଉଛନ୍ତି "ଏକ ପତ୍ନୀତ୍ୱର ମାହାତ୍ମ୍ୟ" ଉପରେ । ତାଙ୍କର ଆଖି ସ୍ଥିର ରହିଛି । ଶ୍ରୋତାମାନେ ମନ୍ତ୍ରମୁଗ୍ଧ । ଠିକ୍ ତାଙ୍କ ସମ୍ମୁଖରେ ବସିଛନ୍ତି ତାଙ୍କର ଅନ୍ୟତମ ରକ୍ଷିତା । କିଏ ଲେଖିପାରିବ ଇମିତି ? ଗୋପାଲ ଲେଖିଛନ୍ତି ପ୍ରସିଦ୍ଧ

Digitized by srujan ka@gmail.com

ହସ୍ତରେଖାବିଦ୍ 'କିରୋ' ବିଂଶ ଶତାବ୍ଦୀର ତୃତୀୟ ଦଶକରେ ରାଧାକ୍ରିଷ୍ଣନଙ୍କ ହାତ ଦେଖି କହିଲେ ଯେ ସେ ଦିନେ ଏକ ସାର୍ବଭୌମ ସ୍ୱାଧୀନ ରାଷ୍ଟ୍ରର ମୁଖ୍ୟ ହେବେ । ଗୋପାଳ ଲେଖିଛନ୍ତି ଭାରତ ସ୍ୱାଧୀନ ହେବା ପାଇଁ ଆହୁରି ଅନେକ ବର୍ଷ ବାକି ଥିଲା । ଭାରତ ସ୍ୱାଧୀନ ହେବ । ତାର ଏକ ରାଷ୍ଟ୍ରପତି ରହିବେ ଏବଂ ସେଇ ପଦବୀକୁ ଅଳଙ୍କୃତ କରିବେ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରି ନ ଥିବା ଜଣେ ବ୍ୟକ୍ତି, ଏହା ଆମ ଘରେ ଦୁଇ ଦଶନ୍ଧି ଧରି ଏକ ଜୋକ୍ (Joke) ବା ଖୁସିଗଳ୍ପର ବସ୍ତୁ ଥିଲା । ସେଇଭଳି କେତେଟା କଥା ଏକସେପସନ ହୋଇପାରେ କିନ୍ତୁ ଏହା ନିୟମ ହୋଇପାରେନା । କିନ୍ତୁ ଅହେତୁକ ଆଗାମୀ କଥା ଜାଣିବା ପାଇଁ ଆଗ୍ରହ କାହାର ନାହିଁ । ଆଜି ବି ସେ କୌତୂହଳ ମୋର ରହିଛି । କିନ୍ତୁ ଯେଉଁମାନଙ୍କର ଜୀବନର ଧାରା ସାଧାରଣ ଗତିରେ ଗଡ଼ି ଚାଲିଛି ସେମାନଙ୍କ ସଂପର୍କରେ ଅନୁମାନ କରି ହୁଏତ କିଛି କୁହାଯାଇପାରେ କିନ୍ତୁ ମୋ ଭଳି ଯେଉଁମାନଙ୍କର ଜୀବନ ବହୁ ଉତ୍ଥାନ ପତନ ଭିତର ଦେଇ ଗତି କରିଛି ସେମାନଙ୍କ ବିଷୟରେ ଠାସକୁ ମାରି ବା ଅନୁମାନ କରି କୁହାଯାଇ ପାରିବ ନାହିଁ ।

ଠିକ୍ ସେଇପରି ଗଣିତ ଜ୍ୟୋତିଷ କଥା । ଗ୍ରହ ନକ୍ଷତ୍ରମାନଙ୍କର ଜୀବନ ନାହିଁ, ସେମାନେ ପୃଥିବୀ ଉପରେ ସାଧାରଣ ପ୍ରତିକ୍ରିୟା ସୃଷ୍ଟିକରନ୍ତି । ଯେପରି ଚନ୍ଦ୍ର ସୃଷ୍ଟିକରେ ଜୁଆର ବା ଭଟ୍ଟା । କିନ୍ତୁ ଏହି ଜୀବହୀନ ଗ୍ରହମାନେ ଜୀବଥିବା ବସ୍ତୁମାନଙ୍କର ଜୀବନକୁ କିପରି ନିୟନ୍ତ୍ରିତ, ପ୍ରଭାବିତ କରି ପାରନ୍ତି ? ସେ ବର୍ଷ ଭାରତୀୟ ଜ୍ୟୋତିର୍ବିଦମାନଙ୍କର ସମ୍ମିଳନୀ ହେଉଥିଲା କଟକ ସହରର ଶହୀଦ ଭବନରେ । ରାତିରେ ହଠାତ୍ ପ୍ରବଳ ଝଡ଼ ହୋଇ ବିଜୁଳି ତାରସବୁ କଟିଯାଇ ଥିଲା । ସମ୍ମିଳନୀ ଆରମ୍ଭ ହୋଇପାରିଲା ନାହିଁ ଯଦିଓ ଶହ ଶହ ଜ୍ୟୋତିର୍ବିଦ ଏବଂ ମୁଖ୍ୟମନ୍ତ୍ରୀ, ବିଜୁଳି ମନ୍ତ୍ରୀଙ୍କ ସମେତ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ସମ୍ମିଳନୀରେ ଉପସ୍ଥିତ । ସମ୍ମିଳନୀ ଆରମ୍ଭ ହେବା କଥା ସକାଳେ କିନ୍ତୁ ଆରମ୍ଭ ହେଲା ସଂଧ୍ୟାରେ । ଜ୍ୟୋତିର୍ବିଦମାନେ କଣ ଗଣନା କରିପାରି ନ ଥିଲେ ଆପଣାର ଭବିଷ୍ୟତ ?

ସେଇପରି ମୋ ଜୀବନ ସବୁ ଗଣନାକୁ ନ ମାନି ଚାଲିଲା ଏକ ଭିନ୍ନ ପଥରେ । ଡାକ୍ତର ହେବାର ସ୍ୱପ୍ନ ଥିଲା ମୋର । ଜ୍ୟୋତିଷ ବି ହାତଦେଖି ସେଇଆ କହିଥିଲେ । ଅଧ୍ୟାପକ ମହେଶ ଚନ୍ଦ୍ର ପ୍ରଧାନ କଳନା କରିଥିଲେ ଇଂରାଜୀ ଓ ଇତିହାସରେ ନମ୍ବର ଦେଖି, ଯେ ଏଇ ବାଳକ ପ୍ରଶାସକ ହେବ, ଡାକ୍ତରମାନଙ୍କୁ ନିଯୁକ୍ତି ଦେବ । ତା' ବି ହେଲା ନାହିଁ । କିନ୍ତୁ ରେଭେନ୍ସା କଲେଜରେ ପାଠପଢ଼ି ଏଇ କଲେଜ ସହିତ ମୋର ସଂପର୍କ ନିବିଡ଼ ହୋଇଗଲା କେବଳ ନୁହେଁ, ମୋ ଜୀବନର ଉତ୍ଥାନ ସହିତ ମଧ ଏହି କଲେଜ ଜଡ଼ିତ ହୋଇଗଲା । ମୋର ମନେପଡୁଛି । ଏକଦା ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏବଂ ଠିକ୍ ସେଇପରି ଏକଦା ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭଙ୍କର ମୋ ପାଇଁ ଥିଲା ଏକ ସାଧାରଣ ପ୍ରଶ୍ନ । ୟୁନିଭର୍ସର କ୍ୟାମ୍ପସ ଦେଖି ସେମାନେ ଦୁହେଁ ସମାନ ପ୍ରଶ୍ନ ପଚାରିଛନ୍ତି । ରାଜ୍ୟ ସରକାରଙ୍କ ଅନୁଦାନ ନାହିଁ, ବୈଦେଶିକ ସାହାଯ୍ୟ

Digitized by srujan ka@gmail.com

ନାହିଁ, ଏ ସବୁ ହେଲା କେମିତି ? ଉଭୟଙ୍କୁ ମୁଁ ସମାନ ଉତ୍ତର ଦେଇଥିଲି । ରେଭେନ୍ସା କଲେଜ ଓ ଜନ ଆନ୍ଦୋଳନ ହେଉଛି ମୋର ଶକ୍ତିର ଉତ୍ସ । ୧୯୭୧-୭୨ ମସିହାରେ ମୋର ବାମପନ୍ଥୀ ଆନ୍ଦୋଳନ ସହିତ ସଂପର୍କ ତୁଟିଗଲା । ଗୋଟାଏ ଗୋଷ୍ଠୀର ଶରବ୍ୟ ଥିଲି ମୁଁ । ସେମାନେ ମୋତେ ନେତୃତ୍ୱର ନିର୍ଦ୍ଦେଶ ସତ୍ତ୍ୱେ ସିଧାସଳଖ ବାହାର କରିଦେଲେ ବିଭିନ୍ନ ସଂଗଠନରୁ । ଗଣର ଅତ୍ୟାଚାର ଆଗରେ ବ୍ୟକ୍ତିର ସ୍ଥାନ କେଉଁଠି ? ସେ ଅସହାୟ, ନିରୁପାୟ । ବ୍ୟକ୍ତିର ଅତ୍ୟାଚାର ବିରୁଦ୍ଧରେ ସିନା ଗଣର ସଂଗ୍ରାମ ହୋଇପାରେ କିନ୍ତୁ ଗଣର ଅତ୍ୟାଚାର ବିରୁଦ୍ଧରେ ବ୍ୟକ୍ତି କଣ କରିପାରିବ ?

ଏ ବୟସରେ କରିବି କଣ ? ସାଧାରଣ ଜୀବନରୁ ତ ନିଷ୍କ୍ରାନ୍ତ ହେବାର ପ୍ରଶ୍ନ ଉଠୁନାହିଁ । ତେଣୁ ୟୁନିଭର୍ସ ଗଢ଼ିଲି । ଏବେ ଭାବୁଛି, ଯେଉଁମାନେ ମୋତେ ବାହାର କରିଦେଲେ ସେମାନେ ଆଉ ଦି'ଚାରିବର୍ଷ ପୂର୍ବରୁ ବାହାର କରିଦେଇଥାନ୍ତେ କି ? କାରଣ ୟୁନିଭର୍ସ ଗଢ଼ାହେଲା ବେଳକୁ ମୋର ସହପାଠୀ ସମସାମୟିକମାନଙ୍କ ଭିତରୁ ଅନେକ ଅବସର ନେବାକୁ ଆରମ୍ଭ କରିଦେଲେଣି । ତଥାପି ଯେତିକି ରହିଯାଇଛନ୍ତି ସେଇମାନଙ୍କ ବିପୁଳ ସହଯୋଗ ମୋତେ ସାହାଯ୍ୟ କରିଛି ଏହା ଗଢ଼ିବା ପାଇଁ । ରେଭେନ୍ସା କଲେଜ ସହିତ ସଂପର୍କ ନିବିଡ଼ ହୋଇଛି ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ ଅତୁଟ ରହିଛି । ଯଦିଓ କଲେଜ ଛାଡ଼ିବା ହୋଇଗଲାଣି ପ୍ରାୟ ୪୦ ବର୍ଷ । ମୋ ଠାରୁ ବହୁତ ବିଚକ୍ଷଣ, ଦନ୍ତାବଳମାନେ ରେଭେନ୍ସା କଲେଜର ଛାତ୍ର । ଠିକ୍ ସେଇପରି ମୋ ଠାରୁ ବହୁଗୁଣରେ ଦକ୍ଷ ପ୍ରତାପଶାଳୀ ବ୍ୟକ୍ତିସବୁ ରେଭେନ୍ସା କଲେଜ ୟୁନିଅନରେ ସଭାପତି ହୋଇଛନ୍ତି । ସେମାନଙ୍କ ଭିତରେ ଶ୍ରୀ ସୁରେନ୍ଦ୍ରନାଥ ଖୁଣ୍ଟିଆ, ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଶ୍ରୀ ଭାଗବତ ବେହେରା, ଶ୍ରୀମତୀ ଅର୍ଚ୍ଚନା ନାୟକ, ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ, ଅଧ୍ୟାପକ ଗୌରକିଶୋର ଦାସ ପ୍ରମୁଖ ଅନ୍ତର୍ଭୁକ୍ତ । ସେମାନଙ୍କ ଭିତରୁ ଅନେକ ସମାଜରେ ପ୍ରତିଷ୍ଠିତ, ଅନେକ ମନ୍ତ୍ରୀ, କଟକ ପୌରସଂସ୍ଥାର ଚେୟାରମ୍ୟାନ ପ୍ରଭୃତି ହୋଇଛନ୍ତି । ସେମାନଙ୍କୁ ରେଭେନ୍ସା କଲେଜ କେତେ ଘାରିଛି ମୁଁ କହିପାରିବି ନାହିଁ । ମୋତେ କିନ୍ତୁ ଘାରିଚି ରେଭେନ୍ସା କଲେଜ । ଜୀବନରେ ଯେତେବେଳେ ଅବସାଦ ଆସିଛି, କ୍ଳାନ୍ତି ଆସିଛି ମୁଁ ଯାଇଛି ଚୁପ୍‌ଚାପ ରେଭେନ୍ସା କଲେଜକୁ । ସେଇଠି ଶୋଇ ଯାଇଛି ଟେନିସ୍ କୋର୍ଟରେ, ବୁଲିଛି କରିଡରରେ । ଦୁର୍ଭାଗ୍ୟବଶତଃ ରେଭେନ୍ସା କଲେଜ କର୍ତ୍ତୃପକ୍ଷ କାହାର ପରାମର୍ଶ ବା ନିର୍ଦ୍ଦେଶରେ କେଜାଣି ରେଭେନ୍ସା କଲେଜର କରିଡରକୁ ଅବରୁଦ୍ଧ କରି ଦେଇଛନ୍ତି କିଛି ବର୍ଷ ହେଲା । ଏହା ଏକ ଅବିମୃଶ୍ୟକାରୀ କାମ ଏଥିରେ ସନ୍ଦେହ ନାହିଁ ।

ଠିକ୍ ସେଇପରି ଅରଣ୍ୟ ମୋତେ ଛାଡ଼ି ନାହିଁ, ମୁଁ ବି ଛାଡ଼ିପାରି ନାହିଁ ଅରଣ୍ୟକୁ । ଏଇ ଅଧ୍ୟାୟ ଲେଖିଲା ବେଳେ କାଠମାଣ୍ଡୁରେ ଏକ ଆନ୍ତର୍ଜାତିକ ସମ୍ମିଳନୀ ଅନୁଷ୍ଠିତ ହେଉଛି । ମଣିଷ ଓ ଅରଣ୍ୟ ଉପରେ ଏବଂ ଆମର ଏକ ପ୍ରତିନିଧି ଦଳ ସେଥିରେ ଯୋଗଦେବେ ଏ ସଂପର୍କରେ

Digitized by srujan ka@gmail.com

ଆପଣାର ଗବେଷଣା ପ୍ରସୂତ ନିବନ୍ଧ ପାଇଁ ।

ଅରଣ୍ୟ ଆମର ସାମାଜିକ, ସାଂସ୍କୃତିକ ଏବଂ ଅର୍ଥନୈତିକ ଐତିହ୍ୟ, ପରମ୍ପରା । ଏହାକୁ କେନ୍ଦ୍ରକିର ଗଢ଼ି ଉଠିଛି ଆମର ମହାଭାରତ ଓ ରାମାୟଣ । ମହାଭାରତ ଭିତରେ ତିନୋଟି ସଭ୍ୟତା ଓ ସେମାନଙ୍କ ଭିତରେ ସଂଘର୍ଷର ଚିତ୍ର ପ୍ରସ୍ଫୁଟିତ । ଜରା ଶବର ପ୍ରିମିଟିଭ ଟ୍ରାଇବାଲ ସଭ୍ୟତା, କୃଷ୍ଣ ହେଉଛନ୍ତି ପାଷ୍ଟୋରାଲ ବା ଗୋପାଳନ ସଭ୍ୟତା ଏବଂ ବଳରାମ ହେଉଛନ୍ତି କୃଷି ସଭ୍ୟତାର ପ୍ରତୀକ । ରାମାୟଣ ଏକ ପରବର୍ତ୍ତୀ ସଭ୍ୟତାର କାବ୍ୟ । ରାମାୟଣକୁ ଦାକ୍ଷିଣାତ୍ୟରେ ଆର୍ଯ୍ୟମାନଙ୍କ ଦ୍ରାବିଡ଼ ସଭ୍ୟତା ଉପରେ ଆକ୍ରମଣ ବୋଲି ବିଚାର କରନ୍ତି ଏବଂ ଏଥିରେ ଉନ୍ନତ ଦ୍ରାବିଡ଼ ସଭ୍ୟତାକୁ ଅନୁନ୍ନତ ଏବଂ ପଶ୍ଚାଦ୍‌ପଦ ବୋଲି ଦେଖାଯାଇଛି ବୋଲି ସେମାନଙ୍କର ଅଭିଯୋଗ । ମହାଭାରତ ଆଗ ନା ରାମାୟଣ ଆଗ ? ଆମର କଳ୍ପନା ଅନୁଯାୟୀ ତ୍ରେତୟା ପରେ ଦ୍ୱାପର । ସେଥିଯୋଗୁଁ ମହାଭାରତରେ ହନୁମାଙ୍କଡ଼ ଉଲ୍ଲେଖ ରହିଛି ବୋଲି ସେମାନଙ୍କର ଯୁକ୍ତି । କିନ୍ତୁ ମାନବୀୟ ସଭ୍ୟତାର ଧାରାର ବିକାଶକୁ ବିଶ୍ଳେଷଣ କଲେ ଦେଖାଯିବ ଯେ ଯଦି ମାନବୀୟ ସଭ୍ୟତାର ଆୟୁ ଏକଲକ୍ଷ ବର୍ଷବୋଲି ଧରାଯାଏ, ତାହେଲେ ସେଥିରୁ ମାତୃସତ୍ତା ସମାଜ ହେଉଛି ଅଶୀ ହଜାର ବର୍ଷ । କେବଳ ସେତିକି ନୁହେଁ । ମାତୃସତ୍ତା ସମାଜ ପିତୃସତ୍ତା ସମାଜ ପରେ । ମହାଭାରତରେ ମାତୃସତ୍ତା ସମାଜର ଛାପ ପ୍ରଚୁର । ପିତୃସତ୍ତା ସମାଜରେ ନାରୀପାଇଁ ସ୍ୱତନ୍ତ୍ର ଆଇନ ହୋଇଛି । ସୀତାଙ୍କୁ ଅଗ୍ନିପରୀକ୍ଷା ଦେବାକୁ ପଡ଼ିଛି, ରାମଙ୍କୁ ନୁହେଁ, ନାରୀର ଦ୍ୱିତୀୟ ପତି ପ୍ରଶ୍ନ ନାହିଁ ରାମାୟଣରେ । ପୁରୁଷର ଏକାଧିକ ପତ୍ନୀ କିନ୍ତୁ ଗ୍ରହଣୀୟ ହୋଇଛି । ସତୀତ୍ୱର ନୂଆ ସଂଜ୍ଞା ଦେଖାଦେଇଛି ରାମାୟଣରେ, ନାରୀର ପ୍ରତିକୂଳ ସ୍ୱାର୍ଥରେ । ଅତିଥିଙ୍କୁ ସମ୍ମାନ ଦେଖାଇବାର ଅଂଶ ଭାବରେ ଦେହ ଦାନ ପ୍ରଚଳିତ ଥିଲା ସମାଜରେ, ଯାହା ରାମାୟଣ ବେଳକୁ ଲାଗୁ ହୋଇଛି କିନ୍ତୁ ତାହା ପୂର୍ବରୁ ନୁହେଁ । କେଉଁ କାବ୍ୟ କେବେ ରଚିତ ହୋଇଥିଲା ସେ ସ୍ୱତନ୍ତ୍ର କଥା । କିନ୍ତୁ କେଉଁ କାବ୍ୟ କେଉଁଯୁଗର ପ୍ରତିକୂଳ ବହନ କରେ ତାହା ସ୍ୱତନ୍ତ୍ର କଥା । ସବୁଠାରୁ ମଜାର କଥା ହେଉଛି ଯେ ଭାରତବର୍ଷର ତିନି ମହାକାବ୍ୟ— ମହାଭାରତ, ରାମାୟଣ ଏବଂ ସଂବିଧାନର ଲେଖକ ହେଉଛନ୍ତି 'ଇତର' ସଂପ୍ରଦାୟର ଲୋକ । ବାଲ୍ମୀକି ଚମାର, ବ୍ୟାସ କୈବର୍ତ୍ତ ଏବଂ ଆମ୍ବେଦକର ହାଡ଼ି । ଏହାଙ୍କ ଭିତରେ କେହି ତଥାକଥିତ ସବର୍ଣ୍ଣ ନାହାନ୍ତି । ଏପରିକି ଶିଖମାନଙ୍କର 'ଗ୍ରନ୍ଥସାହେବ'ର ଲେଖକ ନାନାକ ମଧ ତଥାକଥିତ 'ସବର୍ଣ୍ଣ' ନୁହନ୍ତି । କିନ୍ତୁ ଭାରତୀୟ ସଂସ୍କୃତି ଏକ ବିଚିତ୍ର ସଂସ୍କୃତି । ସବୁ ଭାବନା, ଚିନ୍ତା, ଦିଗଦର୍ଶନକୁ ଏହା ଗ୍ରହଣ କରିଛି ଏବଂ ଆହରଣ କରିଛି । ଏପରିକି ଭଗବାନଙ୍କ ଅସ୍ତିତ୍ୱକୁ ବିଶ୍ୱାସ କରୁ ନ ଥିବା ଗୌତମବୁଦ୍ଧ ପାଲଟିଯାଇଛନ୍ତି ଅବତାର । ଚାର୍ବାକ, ବୃହସ୍ପତି, ଚଣ୍ଡିଦାସ ପ୍ରଭୃତି ଅନ୍ୟୁନ ନଅଜଣ ଦାର୍ଶନିକ ସଂପୂର୍ଣ୍ଣ ନାସ୍ତିକ ।

Digitized by srujan ka@gmail.com

''ଶୁଣରେ ମାନୁଷ ଭାଇ,
ସବାର ଉପରେ ମାନୁଷ ସତ୍ୟ
ତା'ର ଉପରେ ନାଇଁ '' (ଚଣ୍ଡୀଦାସ)

''ଯାବଦ୍ ଜୀବେଦ୍ ସୁଖଂ ଜୀବେଦ୍
ଋଣଂକୃତ୍ୱା ଘୃତଂ ପିବେଦ୍
ଭସ୍ମୀଭୂତସ୍ୟ ଦେହସ୍ୟ
ପୁନରାଗମନଃ କୁତ '' (ଚାର୍ବାକ୍)

ଚାର୍ବାକଙ୍କର କେବଳ ପ୍ରଥମ ଦୁଇଧାଡ଼ିକୁ ଶୁଣାଯାଏ ଆମ୍ଭମାନଙ୍କୁ । ଏବଂ ତାଙ୍କର ଆଲଟ୍ରାଇଷ୍ଟିକ ଦର୍ଶନକୁ ଏକ ବେଖାପି, ବିଶୃଙ୍ଖଳ ଜୀବନର ଯାଥାର୍ଥ୍ୟ ପ୍ରତିପାଦନ କରାଯାଇଛି ବୋଲି କହି ପ୍ରତିପାଦିତ କରିବାକୁ ଚେଷ୍ଟା କରାଯାଏ । କିନ୍ତୁ ଏ ଦେହ ଭସ୍ମ ହେବାସହିତ ଯେ ଆତ୍ମାର ମଧ୍ୟ ବିଲୟ ଘଟେ ଏବଂ ଆତ୍ମାର କୌଣସି ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ ଏକଥା କୁହାଯାଏନା ପ୍ରାୟ । ଚଣ୍ଡିଦାସଙ୍କ କଥା ତ ପ୍ରାୟ କୁହାଯାଏନା । ଏପରିକି ବହୁ ଦାର୍ଶନିକ ସିଷ୍ଟମ ବା ଧାରା ଯଥା ନ୍ୟାୟ, ବୈଶେଷିକ ପ୍ରଭୃତି ଦର୍ଶନରେ ଭଗବାନଙ୍କ ବିଷୟରେ କୌଣସି ସ୍ୱତନ୍ତ୍ର ଉଲ୍ଲେଖ ନାହିଁ ।

ସେ ଦୃଷ୍ଟିରୁ ଭାରତୀୟ ଦର୍ଶନକୁ କେବଳ ହିନ୍ଦୁ ଦର୍ଶନ ବୋଲି କହିବା ଠିକ୍ ନୁହେଁ । ହିନ୍ଦୁ ଶବ୍ଦର ଜନ୍ମ ଅନେକ ପରେ । ସିନ୍ଧୁ ନଦୀକୁ ଇଣ୍ଡସ୍ ବୋଲି ଇଂରେଜମାନେ (ବା ତା ପୂର୍ବର ଅଭିଯାନକାରୀମାନେ) କହୁଥିଲେ । ସେଇ ଇଣ୍ଡସ୍‌ର ଅପଭ୍ରଂଶ ହେଉଛି 'ହିନ୍ଦୁ' । ଏହା କିପରି ଭାବରେ ସମଗ୍ର ଭାରତୀୟ ଦର୍ଶନରେ ରୂପାନ୍ତରିତ ହୋଇଗଲା ମୁଁ କହିପାରିବି ନାହିଁ ।

କିନ୍ତୁ ଭାରତୀୟ ଦର୍ଶନ ବୋଲି କହିଲେ ମୋର ରବୀନ୍ଦ୍ରନାଥଙ୍କ କବିତା 'ଏଇ ଭାରତର ମହାମାନବର ସାଗର ତୀରେ' କବିତା ମନେପଡ଼େ ।

''ମିଳିବେ ମିଳାବେ ଯାବେନା ଫିରେ,
ଏଇ ଭାରତର ମହାମାନବର ସାଗରତୀରେ''

ଅନେକ ଚିନ୍ତା, ଅନେକ ଦର୍ଶନର ମହା ସମନ୍ୱୟର ଦର୍ଶନ ହେଉଛି ଆମର ପରମ୍ପରା । ଏହାକୁ କୌଣସି ଗୋଷ୍ଠୀ, ଗୋଟିଏ ଦଳ ଆପଣାର ବୋଲି ଦାବୀ କରିପାରିବ ନାହିଁ । କାକଟପୁରରେ ଆଜି ମଧ୍ୟ ଦଶହରାର ପ୍ରଥମ ଶୁଭାରମ୍ଭ କରେ ଜଣେ ମୁସଲମାନ । ମୋର ମନେପଡୁଚି ଯେ ମୋ ବାପା ଯେତେବେଳେ ସମ୍ବଲପୁରର ରେଙ୍ଗାଲିରେ ଫରେଷ୍ଟ ଅଫିସର ଥିଲେ ସେତେବେଳେ ସେ ଓ ତଦ୍‌କାଳୀନ ରେଲବାଇ ଷ୍ଟେସନର ଷ୍ଟେସନ ମାଷ୍ଟର ଫନୀ ଭୂଷଣ ସାନ୍ୟାଲ ମିଶି ଦୁର୍ଗାପୂଜା କରୁଥିଲେ । ଏହି ପୂଜା କମିଟିର ସଭାପତି ଥିଲେ ଜଣେ ମୁସଲମାନ । ତାଙ୍କର ନାମ ମୋର ମନେ ପଡୁନାହିଁ । ସେ ଭଦ୍ରଲୋକ ପୂଜାମଣ୍ଡପକୁ ଆସନ୍ତି ଏବଂ ବେତାର

Digitized by srujan ka@gmail.com

ଦୂରରେ କରନ୍ତି । ପୂଜକର ସ୍ତୋତ୍ର ପଢ଼ିବାରେ କେଉଁଠି ଟିକିଏ ଭୁଲ୍ ହେଲେ, ସେ କୌଣସି ପଦ ଛାଡ଼ିଗଲେ ସେ ବିନୀତ ଭାବରେ କହିବେ ଯେ ପଣ୍ଡିତ ମହାଶୟ ମୋର କାହିଁକି ମନେହେଉଛି ଯେ ସ୍ତୋତ୍ରରେ କେଉଁଠି ଭୁଲ୍ ରହିଗଲା । ଦେବୀମନ୍ତ୍ର ! ଭୁଲ୍ ପଢ଼ିଲେ ଭାରି ଗଣ୍ଡଗୋଳ । ସ୍ତୋତ୍ରଟା ବୋଧହୁଏ ଏଇପରି ହେବ ବୋଲି କହି ସେ ସେଇଟିକୁ ପଢ଼ିବେ । ଦେଖ ମଜା ପୁରୋହିତଙ୍କର ।

ଯେଉଁ ଟେବୁଲରେ ବସି ମୁଁ ଏଇ ଅଧ୍ୟାୟ ଲେଖୁଛି ସେଇ ଟେବୁଲରେ ଏକ ଅଭିନବ ଘଟଣା ଘଟିଗଲା । କୁଚିଣ୍ଡା (ସମ୍ବଲପୁର)ର ଜଣେ ମୁସଲମାନ ପିଲା ଚିଠି ଲେଖିଥିଲା ଯେ ସେ ଆସି ଆମ ଗେଷ୍ଟ ହାଉସରେ ରହିବ । ସେ ଆସିବ ସ୍ତ୍ରୀଙ୍କ ସହିତ । ତାର ସ୍ତ୍ରୀ ଗବେଷଣା କରୁଛନ୍ତି । ସେ ପିଲାର ନାମ ହେଉଛି ତବସିକ୍ । ସେଦିନ ସକାଳେ ଗୋଟିଏ ପୁଅ ଏବଂ ଝିଅଟିଏ ଆସି ପହଞ୍ଚିଲେ । ଝିଅଟି ଶଙ୍ଖା ପିନ୍ଧିଛି, ସିନ୍ଦୂର ପିନ୍ଧିଛି ମୁଣ୍ଡରେ । ହାତରେ ଭୋଗ ଧରିଛି କଟକ ଚଣ୍ଡୀଙ୍କ ଭୋଗ । ବେକରେ ଚଣ୍ଡୀଙ୍କର ସିନ୍ଦୂର । ଗୋଡ଼ରେ ପାଉଞ୍ଜି । ସେ ଆସି ମୁଣ୍ଡିଆଟିଏ ମାରିଲା । ମୁଁ ତ ଲେଖିଥିବା ପୁଅକୁ ଜାଣେ ତାର ସ୍ତ୍ରୀକୁ ଜାଣେ ନା । ମୁଁ ପ୍ରଥମେ ଭାବିଲି ଯେ ମୋର କୌଣସି ସଂପର୍କୀୟା ବୋଧହୁଏ । ପିଲାଟି ପରିଚୟ ଦେଲା । ମୁଁ ତାର ଅଭିବାଦନକୁ ହସି ହସି ଗ୍ରହଣ କରିଲି ସତ୍ୟ କିନ୍ତୁ ବିସ୍ମୟର ରେଖା ନିଶ୍ଚୟ ଉକୁଟିଲା ମୁହଁ ଉପରେ । ଏ ତ ତବସିକ କିନ୍ତୁ ଏ ସ୍ତ୍ରୀ ଲୋକଟି କିଏ ? ଏ ତ ହିନ୍ଦୁ ଝିଅ ଭଳି ମନେହେଉଛି, ପଚାରିଲି ତମକୁ ତ ମା' ମୁଁ ଚିହ୍ନିପାରିଲି ନାହିଁ । ସେ ପିଲା ପରିଚୟ କରାଇଦେଲା ଏ ମୋର ସ୍ତ୍ରୀ ଶାହେନାଜ । ମୋର ବିସ୍ମୟ ଆହୁରି ବଢ଼ିଗଲା । ତମେ ତ ଗେଷ୍ଟ ହାଉସରେ ରହୁଛ । ସକାଳୁ କୁଆଡ଼େ ଯାଇଥିଲ ? ନିର୍ବିକାର ଚିତ୍ତରେ ସେମାନେ କହିଲେ ଯେ ଗାଧୋଇ ପାଧୋଇ ଆମେ ଚଣ୍ଡୀ ମନ୍ଦିରକୁ ଯାଇଥିଲୁ ଦର୍ଶନକୁ । ସେଇଠୁ ସିଧା ଆସୁଛୁ । ସେ ଝିଅଟି ଯେତେବେଳେ ମୋତେ ନାସ୍ତିକ ଜାଣି ମଧ ଭୋଗ ଖୁଆଇଦେଲା ମୋ ଆଖି ଲୁହରେ ଭର୍ତ୍ତି ହୋଇଗଲା । ଯଦି ତଥାକଥିତ ଧର୍ମ ବିଶ୍ୱାସ ମଣିଷ ଭିତରେ ଭେଦଭାବ ସୃଷ୍ଟି କରେ ତା'ହେଲେ ସେ ଓ ମୋ ଭିତରେ ବେଶି ହିନ୍ଦୁ କିଏ ? ତା'ପରେ ସେ ଝିଅ କହିଚାଲିଲା ତାଙ୍କ ଗାଁରେ ଚଳଣୀ କଥା । ସେମାନେ ସବୁ ମୁସଲମାନ ଏଇ ଚଳଣି ଭିତରେ ଜନ୍ମ ହୋଇଛନ୍ତି, ବଢ଼ିଛନ୍ତି । ସେଇ ଦିନଠାରୁ ସେ ମୋର ଝିଅ ହୋଇଗଲା । ଆଜି ବି ସେ ଚିଠି ଲେଖନ୍ତି ଗଭୀର ଭକ୍ତି ଓ ସ୍ନେହରେ ।

ମୋର ଜନ୍ମିତ ଭଉଣୀ କେହି ନାହାନ୍ତି । ମାମୁଁ ଝିଅ, ମାଉସୀ ଝିଅ, ପିଉସୀ ଝିଅ, ବଡ଼ବାପାଙ୍କ ଝିଅ– ଅନେକ ଅଛନ୍ତି । କିନ୍ତୁ ସାମାଜିକ ଦୂରତ୍ୱ ହେତୁ କେହି ମୋତେ ରାକ୍ଷୀ ପିନ୍ଧାନ୍ତି ନାହିଁ । କେବଳ ଗୋଟିଏ ଝିଅ ମୋତେ ରାକ୍ଷୀ ପିନ୍ଧାଇବାକୁ ଆସେ । ସେ ଗୋଟିଏ ମୁସଲିମ୍ ଝିଅ । ନାଁ ହେଉଛି ଶାହନାଜ ବାନୁ । ଆମେ ଡାକୁ ମୁନି । ସେ ମୋର ମାମୁଁ ଝିଅ ଭଉଣୀର ସାଙ୍ଗ । ମାମୁଁ ଝିଅ ଭଉଣୀ ରାକ୍ଷୀ ପିନ୍ଧାଇବାକୁ ଆସିପାରେନା ବା ଆସେନା । କିନ୍ତୁ

Digitized by srujan ka@gmail.com

ଏଇ ଝିଅଟି ଆସେ । ତାକୁ ବାହା କରେଇଛୁ ମଧ୍ୟ ଆମେ । ସେ ବର୍ତ୍ତମାନ କଂଗ୍ରେସ ଦଳର ଜଣେ ନେତ୍ରୀ । ଥରେ ମୋ ମାଉସୀ ପୁଅ ଭାଇ ବିଶ୍ୱମୋହନ ପଟ୍ଟନାୟକ (ଫାପୁ) ବର୍ତ୍ତମାନ ଓଡ଼ିଶା ହାଇକୋର୍ଟରେ ଆଡଭୋକେଟ୍, ନିର୍ବାଚନରେ ଠିଆ ହୋଇଥିଲା ସ୍ୱାଧୀନ ପ୍ରାର୍ଥୀ ହୋଇ । ନୟାଗଡ଼ର ସହର ପାଖରେ କିଛି ମୁସଲମାନ ବସ୍ତି ଅଛି । ଶାହନାଜ ଯାଇ ପହଞ୍ଚିଲା । ମଉସା ଲକ୍ଷ୍ମୀଧର ପଟ୍ଟନାୟକଙ୍କ ଘରେ ବିଶ୍ୱମୋହନକୁ ନିର୍ବାଚନରେ ସାହାଯ୍ୟ କରିବା ପାଇଁ । ମାଉସୀ ନ ଥିଲା, ଥିଲା ପୁଅ ସୀତାଂଶୁ ମୋହନ (ବଡ଼ ବୁଢ଼ା) ପାଖରେ ବାଙ୍ଗାଲୋରରେ ସୀତାଂଶୁ ମୋହନ ସେଇଠି ଆଇ.ଏ.ଏସ୍ ଅଫିସର । ଚଳିତ ବର୍ଷ ୧୯୯୮ ମସିହାରେ ତା'ର ପରଲୋକ ହୋଇଯାଇଛି । ମୋଠାରୁ ଢେର ସାନ ବୟସରେ । ଶାହନାଜ ଯାଇ ରହିଲା ମଉସାଙ୍କ ଘରେ । ଘରେ ବଡ଼ପୁଅ ମଦନ ମୋହନ ଏବଂ ବୋହୂ । ମଉସା ଖୁବ୍ ରକ୍ଷଣଶୀଳ । ତଟସ୍ଥ ମଉସା ସକାଳୁ ଦେଖନ୍ତି ଶାହନାଜ୍ ତାଙ୍କ ଗୋଡ଼ ମୋଡ଼ି ଦେଉଚି । ଚା' ଆଣି ଦେଉଛି । ସକାଳୁ ଗାଧୋଇ ସାରିଲାଣି । ଫୁଲ ତୋଳି ଚାଙ୍ଗୁଡ଼ାରେ ରଖି ସାରିଲାଣି । ଠାକୁର ଘର ଓଳାଇ ଦେଇଛି, ଚନ୍ଦନ ବାଟି ଦେଇଛି । ମଉଷାଙ୍କୁ ପୂଜା କରିବାରେ ସାହାଯ୍ୟ କରୁଛି, ଧୂପ ଦେଉଛି । ଜଳଖିଆ, ଭାତ ସବୁ ବାଢ଼ିନେଇ ଆସୁଛି ରୋଷାଇଘରୁ । ନିଜେ ରୋଷେଇ ଘରେ ଭାଉଜ (ବଡ଼ବୋହୂ) କୁ ସାହାଯ୍ୟ କରୁଛି । ପାଖରେ ବସି ବିଞ୍ଚି ଦେଉଛି । ଆଉ ଖାଇ ସାରିଲା ପରେ ଅଇଣ୍ଠା ବାସନ ଉଠାଇ ନେଇ ଯାଉଛି । ତଟସ୍ଥ, ମୂହ୍ୟମାନ ଲକ୍ଷ୍ମୀଧର ମଉସା ଚିଠି ଲେଖୁଛନ୍ତି ମାଉସୀ ପାଖକୁ । ମୁଁ କିଛି କହିପାରୁନି । ପାଟି ମୋର ଚୁପ୍ ହୋଇଯାଉଛି । ମନେ ହେଉଛି ଯେପରି ବୁଢ଼ୀ (ତାଙ୍କର ଝିଅ) ସବୁ କରିଯାଉଚି । ମୋର କିଛି ଉପାୟ ନାହିଁ । ସ୍ନେହରେ ସେ ମୋର ପାଟିବନ୍ଦ କରି ଦେଇଛି ।

ଧର୍ମର ପ୍ରାଚୀର ଭାଙ୍ଗିପଡ଼ିଛି । ଭାଙ୍ଗି ପଡ଼ିଥିଲା ଭାରତବର୍ଷ ଭିତରେ । ମୁକ୍ତି ପାଇଁ ସଂଗ୍ରାମରେ । ଭାଙ୍ଗି ପଡ଼ିଥିଲା ସୁନ୍ଦର ଭାରତବର୍ଷ ଗଢ଼ିବା ପାଇଁ ସମବେତ ଉଦ୍ୟମରେ । କିନ୍ତୁ ଡିଭାଇଡ୍ ଏଣ୍ଡ୍ ରୁଲର ନିୟମ ପ୍ରଯୁଜ୍ୟ କରି ବ୍ରିଟିଶ୍ ସାମ୍ରାଜ୍ୟବାଦ ହିଁ ସୃଷ୍ଟିକଲା ପୁଣିଥରେ ସାମ୍ପ୍ରଦାୟିକ ବିଷ । ସେଇ ବିଷ ଧର୍ମମାନଙ୍କରେ, ସବୁଧର୍ମର, ମୌଳବାଦୀମାନଙ୍କର ସାହାଯ୍ୟ, ସମର୍ଥନ ପାଇଛି । ଭାରତର ଅହିଂସା ଆନ୍ଦୋଳନ ଭ୍ରାତୃରକ୍ତରେ ରଂଜିତ ହୋଇଛି । କିନ୍ତୁ କେତେ 'ମୁସଲମାନ' ଥିଲେ ପାକିସ୍ଥାନର ସ୍ରଷ୍ଟା ନିଜେ ମହମ୍ମଦ ଅଲ୍ଲୀ ଜିନ୍ନା ? ସେ ଗାଈ ମାଂସ ଖାଉଥିଲେ, କିନ୍ତୁ ଘୁଷୁରୀ ମାଂସ ମଧ୍ୟ ଖାଉଥିଲେ । ସେ ଧାଡ଼ିଏ ଉର୍ଦ୍ଦୁ ଜାଣି ନ ଥିଲେ । କୋରାନ ପଢ଼ି ନଥିଲେ । ମସ୍‌ଜିଦ୍ ଦିନେ ବି ଯାଇ ନାହାନ୍ତି । ନମାଜ୍ ପଢ଼ି ନାହାନ୍ତି । ବଫଦ କ୍ୟାପ ପିନ୍ଧି ନାହାନ୍ତି । କିନ୍ତୁ ପାକିସ୍ଥାନ ଗଠନରେ ସେ ହେଉଛନ୍ତି ନିର୍ମାତା ।

ଜିନାଙ୍କର ସଂପର୍କରେ ଭାରତର ଏକଦା ଶିକ୍ଷାମନ୍ତ୍ରୀ ଶ୍ରୀ ଚଗଲା ତାଙ୍କ ଆତ୍ମ-ଜୀବନୀ ରୋଜେସ-ଇନ୍ ଡିସେମ୍ବର (Roses in December) ରେ ବେଶ୍ କୌତୂହଳଜନକ କାହାଣୀ

Digitized by srujan ka@gmail.com

ଲେଖିଛନ୍ତି । ଜିନ୍ନା କେବଳ ଘୁଷୁରି ମାଂସ, ଯାହା ମୁସଲମାନଙ୍କର ନିଷିଦ୍ଧ ଖାଦ୍ୟ, ଖାଉ ନ ଥିଲେ ମୁଲ୍ଲାମାନଙ୍କୁ ମଧ ଖୁଆଉଥିଲେ । ଜିନ୍ନାଙ୍କ ପ୍ରତି ଭାରତର ଜାତୀୟବାଦୀ ମୁସଲିମ ନେତାମାନଙ୍କର ବିଦ୍ୱେଷ ପ୍ରଚୁର । ଖାଁ ଅବଦୁଲ ଗଫୁର ଖାଁ, ଡକ୍ଟର ଖାଁ ସାହେବ, ମୌଲାନା ଆଜାଦ, ଡକଷ୍ଟ ଆନସାରୀ, ଆସଫ ଅଲ୍ଲୀ, ରଫି ମହମ୍ମଦ କିଦ୍‌ୱାଇ ପ୍ରଭୃତି ଜାତୀୟବାଦୀ ମୁଲଲିମ୍ ନେତାମାନେ ଜିନ୍ନାଙ୍କୁ ଘୃଣା କରୁଥିଲେ । ଓଡ଼ିଶାର ରାଜ୍ୟପାଳ ଥିବା ଡକ୍ଟର ଏସ୍.ଏସ୍. ଆନସାରୀ ଜଣେ ଜାତୀୟବାଦୀ ମୁଲଲିମ ନେତା । ତାଙ୍କର ଶ୍ୱଶୁର ଡକ୍ଟର ଆନସାରୀଙ୍କୁ ସମସ୍ତେ ଜାଣନ୍ତି । ଥରେ ଡକ୍ଟର ଆନସାରୀ ଆମକୁ କହୁଥିଲେ ଯେ, ଜିନ୍ନାଙ୍କ ପ୍ରତି ଆମର ସବୁ ତୀବ୍ର ଘୃଣା । ତାଙ୍କୁ ମୁଁ ନମସ୍କାର ମଧ କରେ ନାହିଁ । କୌଣସି ଏକ କଂଗ୍ରେସ ଅଧିବେଶନରେ ମୁଁ ବସି ଏକ ପ୍ରସ୍ତାବର ଚିଠା କରୁଥିଲି । ହଠାତ୍ ମୋ ପିଠିରେ କେହି ଜଣେ ଥାପୁଡ଼େଇବାର ମନେହେଲା । ଅନେଇ ଦେଖିଲି ଯେ ନିଜେ ମହମ୍ମଦ ଅଲ୍ଲୀ ଜିନ୍ନା । କଣ କରୁଛ ସୌକତ, ସେ ପଚାରିଲେ । ମୁଁ ଉତ୍ତରଦେଲି, ଆପଣଙ୍କର ଉଗ୍ର ସାମ୍ପ୍ରଦାୟିକତାବାଦ ବିରୁଦ୍ଧରେ ପ୍ରସ୍ତାବ ଚିଠା କରୁଛି । ସେ ମୋର କଥାକୁ ଏଡେଇ ଦେଇ କହିଲେ, ତମେ ମୋ ସାଂଗରେ ମୁସଲିମ ଲିଗ୍‌ରେ ଯୋଗଦେଉ ନାହଁ ? ମୁଁ ରୁକ୍ଷ ଭାବରେ ପଚାରିଲି– କଣ ଆପଣଙ୍କର କାର୍ଯ୍ୟକ୍ରମ, କଣ ଆପଣଙ୍କର ଲକ୍ଷ୍ୟ ? ସେ ମୋ ଟେବୁଲ ଉପରେ ପଡ଼ିଥିବା ଏକ ଧଳାକାଗଜ ଉପରେ ଲେଖି ମୋ ହାତକୁ ବଢ଼ାଇଦେଇ କହିଲେ, ଆମର ଏଇ ଗୋଟିଏ କାର୍ଯ୍ୟକ୍ରମ, ଗୋଟିଏ ଲକ୍ଷ୍ୟ, ବୁଝିଲ ତ ? ସେ କାଗଜରେ ଲେଖାଥିଲା ଗୋଟିଏ ଶବ୍ଦ, POWER ବା କ୍ଷମତା । ତା'ହେଲେ ଆପଣଙ୍କର ଏଇ ସାମ୍ପ୍ରଦାୟିକତାବାଦ ମଧ ଏଇ ଲକ୍ଷ୍ୟ ପାଇଁ ? ସେ ଉତ୍ତର ଦେଲେ, ତମେ ତ ଜାଣିଛ ମୁଁ କେତେ ମୁସଲମାନ ।

ଏଇଥିରୁ ଜିନ୍ନାଙ୍କ ମୁସଲିମ ପ୍ରୀତି ସହଜରେ ଅନୁମେୟ । ଗାନ୍ଧିଜୀ ଥିଲେ ଜଣେ ରକ୍ଷଣଶୀଳ ବ୍ୟକ୍ତି । ପ୍ରତିଦିନ ଶୋଇବା ପୂର୍ବରୁ ସେ ପ୍ରାର୍ଥନା କରୁଥିଲେ । ଦିନେ ରାତ୍ରିର ବିଳମ୍ବିତ ପ୍ରହରରେ ଦେଖାଗଲା ଯେ ଗାନ୍ଧିଜୀଙ୍କ ଦେହରୁ ପ୍ରବଳ ଝାଳ ନିର୍ଗତ ହେଉଛି । ସେ ଥରୁଛନ୍ତି । ସମସ୍ତେ ଅନୁମାନ କଲେ ଯେ ବୋଧହୁଏ ଗାନ୍ଧିଜୀ ହୃଦରୋଗରେ ପୀଡ଼ିତ ହୋଇଛନ୍ତି । ଡାକ୍ତର ଡକା ପଡ଼ିଲା, କିନ୍ତୁ ଗାନ୍ଧିଜୀ ସମସ୍ତଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ସେ ହୃଦରୋଗରେ ପୀଡ଼ିତ ହୋଇନାହାନ୍ତି । ଆଜି ରାତିରେ ଶୋଇବାକୁ ଯିବା ପୂର୍ବରୁ ପ୍ରାର୍ଥନା କରି ନ ଥିବାରୁ ସେଇ ପାପର ଫଳ ତାଙ୍କୁ ଭୋଗିବାକୁ ପଡୁଛି । ଅନ୍ୟ ଦିଗରେ ଜିନ୍ନା ଏକ ଆଧୁନିକ ଧରଣର ମଣିଷ ଥିଲେ । ପୂଜାପାଠ ତାଙ୍କର ନ ଥିଲା । ବେଶପୋଷାକ, ଖାଦ୍ୟ, ରହିବା, ଚଳିବା ଭଂଗୀ ସବୁ ଥିଲା ଆଧୁନିକ । କିନ୍ତୁ ଏହା ଇତିହାସର କ୍ରୁର ପରିହାସ ଯେ ଏଇଭଳି ଏକ ରକ୍ଷଣଶୀଳ ଗାନ୍ଧିଜୀ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ପ୍ରତିଷ୍ଠା କରିବା ପାଇଁ ପ୍ରାଣପାତ କରିଗଲେ ଅଥଚ ଏଇପରି

Digitized by srujan ka@gmail.com

ଏକ ଆଧୁନିକ ମହମ୍ମଦ ଅଲ୍ଲୀ ଜିନ୍ନା ପ୍ରତିଷ୍ଠା କରିଗଲେ ଏକ ଥିଓକ୍ରାଟିକ (Theocratic) ବା ଧର୍ମଭିତ୍ତିକ ରାଷ୍ଟ୍ର !

ଭାରତର ସ୍ୱାଧୀନତା ପାଇଲା ବେଳକୁ ଜିନ୍ନା ତତ୍‌କାଳୀନ ଭୟାନକ ରୋଗ ଯକ୍ଷ୍ମାରେ ପୀଡ଼ିତ ଥିଲେ । ତାଙ୍କର ଆୟୁଷ ସରି ଆସୁଥିଲା । କିନ୍ତୁ ତାଙ୍କ ସହିତ ଆଲୋଚନାରତ କୌଣସି ଭାରତୀୟ ନେତା ଏହାର ଟେର୍ ବି ପାଇ ନ ଥିଲେ । ଗାନ୍ଧିଜୀ କହିଥିଲେ ଯେ ଭାରତର ବିଭାଜନକୁ ବନ୍ଦ କରିବାପାଇଁ ଜିନ୍ନାଙ୍କୁ ପ୍ରଧାନମନ୍ତ୍ରୀ କରିଦିଅ । କ୍ଷମତାର ଉପକଣ୍ଠରେ ପହଞ୍ଚି ସାରିଥିବା ସମୟରେ ଏବଂ ପ୍ରତିପକ୍ଷର କୁଚକ୍ର ଆଗରେ ପରାହତ ଜାତୀୟ କଂଗ୍ରେସର ନେତାମାନେ ଆଉ ରିସ୍କ ନେବାପାଇଁ ପ୍ରସ୍ତୁତ ନ ଥିଲେ । ଜିନ୍ନାଙ୍କ ସହିତ ଜବାହରଲାଲ୍‌ଙ୍କର 'ପର୍ସନାଲିଟି କ୍ଲାସ' (Personality Class) ଥିଲା ପ୍ରଚୁର । ସର୍ଦ୍ଦାର ପଟେଲ ଲୌହମାନବ ଯେପରି ଥିଲେ, ଆପଣାର ଧର୍ମ ସଂକ୍ରାନ୍ତୀୟ ମତରେ ହିନ୍ଦୁ ରକ୍ଷଣଶୀଳତା ତାଙ୍କ ଭିତରେ ଥିଲା ପ୍ରଚୁର । ମୌଲାନା ଆଜାଦ୍ ପ୍ରମୁଖ ଜାତୀୟବାଦୀ ମୁସଲିମମାନେ ଥିଲେ ପ୍ରବଳ ଜିନ୍ନା ବିରୋଧୀ । ଜିନ୍ନା ପ୍ରଧାନମନ୍ତ୍ରୀ ହେବେ ଭାରତବର୍ଷର ଏକଥା ସେମାନେ ଗ୍ରହଣ କରିବା ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । ଏଣେ ଦେଶ ଛାରଖାର ହୋଇସାରିଥିଲା ସାମ୍ପ୍ରଦାୟିକ ହତ୍ୟାକାଣ୍ଡରେ । ଶାସନ କଳ ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ଉଠିଥିଲା । ସେତେବେଳେ ତେଣୁ ଗାନ୍ଧିଜୀଙ୍କ ପ୍ରସ୍ତାବକୁ ଗ୍ରହଣ କରିବ କିଏ ? "After you, The deluge" ''ତମର ଶାସନ ପରେ ପ୍ରଳୟ'' ଗାନ୍ଧିଜୀଙ୍କର ବ୍ରିଟିଶ ସରକାରକୁ ଏଇ ବିଦ୍ରୁପ ବାଣୀ କଣ ସତ୍ୟରେ ପରିଣତ ହେବାକୁ ଯାଉଛି ନା କଣ ?

ଜାତୀୟତାବାଦ ଏବଂ ସାମ୍ପ୍ରଦାୟିକତାବାଦ, ଏଇ ଦିଓଟି ଏପରି ଜିନିଷ ଯେ ଏହା ଦେହରେ ଚଟ୍‌କିନା ଲାଗିଯାଏ, ଉନ୍ମାଦନା ସୃଷ୍ଟିକରେ, ହିତାହିତ ଜ୍ଞାନ ଲୋପ ପାଇଯାଏ । ତେଣୁ ଏଇ ଦୁଇଟି ସହିତ ଖେଳିବା ସମୟରେ ସାବଧାନ ହେବା ଉଚିତ୍ । ଏହି ପ୍ରକାର ଉଗ୍ର ଜାତୀୟତାବାଦ ପ୍ରଚାର କରି ହିଟଲର ଦ୍ୱିତୀୟ ମହାଯୁଦ୍ଧର ବିଭୀଷିକା ସୃଷ୍ଟି କରିଛି ଏବଂ ଯୁଦ୍ଧରେ ଆତ୍ମ-ସମର୍ପଣ ପର୍ଯ୍ୟନ୍ତ ଜର୍ମାନ ଯୁବକ ଯୁବତୀଙ୍କ ଭିତରେ ସେଇ ଉଗ୍ର ସୁପର୍‌ମ୍ୟାନ୍ ବା ଅତିମାନବ ମନୋଭାବ ଅତୁଟ ରଖି ଯାଇଛି । ଭାରତ ଏଇ ପ୍ରକାର ସାମ୍ପ୍ରଦାୟିକ ବିଷରେ ରକ୍ତସ୍ନାତ ହୋଇଛି, ଜର୍ଜରିତ ହୋଇଛି । ଏହି ବିଷ ଅନେକ ସମୟରେ 'ସଚେତନ' ମଣିଷକୁ ମଧ ଗ୍ରାସ କରିଯାଇଛି । ହିନ୍ଦୁ ମନ୍ଦିର ବିରୁଦ୍ଧରେ ଦରିଦ୍ର ମୁସଲମାନ ଚାଷୀର ସଂଗ୍ରାମକୁ ସାମ୍ପ୍ରଦାୟିକତାବାଦୀମାନେ ହିନ୍ଦୁ ମୁସଲିମ ସଂଗ୍ରାମରେ ପରିଣତ କରିଛନ୍ତି । ଠିକ୍ ସେଇପରି ଶୋଷକ ମିଲ୍ ମାଲିକ ବିରୁଦ୍ଧରେ ହିନ୍ଦୁ ମୁସଲିମ୍ ଶ୍ରମିକମାନଙ୍କର ଐକ୍ୟବଦ୍ଧ ସଂଗ୍ରାମ ଦ୍ୱିଧା ବିଭକ୍ତ ହୋଇଛି । କିନ୍ତୁ ମତାନ୍ଧତା, ସେ ହିନ୍ଦୁ ମତାନ୍ଧତା ହେଉ ବା ମୁସଲିମ୍ ମତାନ୍ଧତା ହେଉ କୌଣସି ଯୁକ୍ତିକୁ ମାନି ନାହିଁ ।

Digitized by srujan ka@gmail.com

କଟକରେ ଏକ ସାମ୍ପ୍ରଦାୟିକ ଦଂଗା ହୋଇଗଲା ସାମାନ୍ୟ କଥାରୁ । ଖ୍ରୀଷ୍ଟ କଲେଜର କିଛି ଛାତ୍ର (ସେଥିରେ ମୁସଲିମ ଛାତ୍ର ବି ଥାଇପାରନ୍ତି) କଣ ଗୋଟାଏ ଶୋଭାଯାତ୍ରାରେ ଯାଉ ଯାଉ ବାଜା ବଜାଇଦେଲେ ମସ୍‌ଜିଦ୍ ଆଗରେ । କିଛି ଗଣ୍ଡଗୋଳ ଦେଖାଗଲା, ଉତ୍ତେଜନା ଦେଖାଗଲା । ସେଇ ରାତିରେ ଏକଦା ଦସ୍ୟୁ ଜଗତରେ ପ୍ରବାଦ ପୁରୁଷ ଅମ୍ପୁର ପରଲୋକ ହୋଇଗଲା । ସେଇ ଉତ୍ତେଜନା ସ୍ଥାନର ଅଳ୍ପ ଦୂରରେ ଏକ ବତୀଖୁଣ୍ଟ ତଳେ । ଅମ୍ପୁ ଏକଦା ନାମଜାଦା ଚୋର ଭାବରେ ଖ୍ୟାତି ଓ ଭୀତି ଅର୍ଜନ କରିଥିଲା । ସେ ଥିଲା ଆମର ବନ୍ଦୀଶାଳାର ସାଥୀ । ପ୍ରଚଣ୍ଡ ଟାଣ ଦେହ, କସ୍‌ରତ କରି କରି ଦେହକୁ ପଥର କରି ଦେଇଛି । ଜେଲଖାନା ଭିତରେ ସେ ଆମର ବେଶ୍ ବଂଧୁ ଥିଲା । ହୁଏତ ''ବେନିଜନେ ପଡ଼ିଛି ଏକ ଦଶା'' ସୂତ୍ରରେ ! ସେ ଜେଲଖାନାରୁ ଖଲାସ ହୋଇ ଚୌର୍ଯ୍ୟବୃତ୍ତି ଛାଡ଼ି ଦେଇଥିଲା । ବୋଧହୁଏ ମୋର ଯାହା ମନେ ପଡୁଛି କଟକ ପୌରସଂସ୍ଥାରେ ଝାଡୁଦାର ପରି କଣ ଗୋଟାଏ ଚାକିରି ବି ମିଳିଥିଲା ତାକୁ । ପିଇବାକୁ କିନ୍ତୁ ଆରମ୍ଭ କରିଥିଲା ପ୍ରଚୁର । ବିନା ଲାଇସେନ୍ସରେ ଯାଉଥିବା ସାଇକେଲ ଧରୁଥିଲା ସେ । ମୁଁ ବି ଦି'ଚାରିଥର ପଡ଼ିଛି ତା' ହାବୁଡ଼ରେ । କିନ୍ତୁ ଜେଲ୍‌ର ପୂର୍ବ ସାଥୀ ବୋଲି ସେ ଜିଭ କାମୁଡ଼ି ସାଲ୍ୟୁଟ କରେ ଏବଂ ସାଇକେଲ୍ ଛାଡ଼ିଦିଏ ଅନ୍ୟମାନଙ୍କୁ ବିସ୍ମିତ କରି । ସେଇ ରାତିରେ ଅମ୍ପୁ ବୋଧହୁଏ ଖୁବ୍ ପିଇଚି ଏବଂ ସେଇ ବତୀଖୁଣ୍ଟ ତଳେ ପଡ଼ି ମରିଯାଇଛି । ଶବ ବ୍ୟବଚ୍ଛେଦରେ ତା'ପେଟରୁ ପ୍ରଚୁର ମଦ ବାହାରିଥିଲା, ଆଘାତର କୌଣସି ଚିହ୍ନ ନ ଥିଲା । କିନ୍ତୁ ସେ କଥାକୁ ଶୁଣୁଛି କିଏ ?

ଇଏ କଣ ହିନ୍ଦୁ ମୁସଲିମ୍ ସଂଘର୍ଷ ନା ତାରାମାର୍କା ବିଡ଼ି, ମନ୍ଦିର ମାର୍କା ବିଡ଼ି ଉପରେ ସଂଘର୍ଷ ? ଠିକ୍ ବୁଝିହେଲା ନାହିଁ । ବର୍ତ୍ତମାନ ବୁଝୁଛି କିଏ ? ସଂଘର୍ଷର ଫଳରେ କେବଳ ସାର ହେଲା କିଛି ମଧ୍ୟବିତ୍ତ ପରିବାରର ସଂପତ୍ତି, କିଛି ଛୋଟ ଛୋଟ ଦୋକାନୀଙ୍କର ସର୍ବସ୍ୱ ଧ୍ୱଂସ । ଏଇ ସଂଘର୍ଷର ଚରିତ୍ର ଦେଖିଲେ ଚକିତ ହେବାକୁ ପଡ଼େ । ହିନ୍ଦୁ ଘଣ୍ଟା ଦୋକାନୀ, ମୁସଲିମ ଘଣ୍ଟା ଦୋକାନୀ, ହିନ୍ଦୁ ଯୋତା ଦୋକାନୀ, ମୁସଲିମ ଯୋତା ଦୋକାନୀ, ମୁସଲିମ ଗୁଡ଼ାଖୁ କଂପାନୀ, ହିନ୍ଦୁ ଗୁଡ଼ାଖୁ କଂପାନୀ, ହିନ୍ଦୁ ମୋଟର ଗ୍ୟାରେଜ, ମୁସଲିମ ମୋଟର ଗ୍ୟାରେଜ ଭିତରେ ଥିବା 'ବ୍ୟବସାୟଗତ ଦ୍ୱନ୍ଦ ବା ରାଇଭାଲରି' ରାତାରାତି ପରିଣତ ହୋଇଗଲା ସାମ୍ପ୍ରଦାୟିକ ସଂଘର୍ଷରେ ଏବଂ ଉଭୟପଟରୁ ମଦତ ବି ମିଳିଲା ପ୍ରଚୁର । ସଂଖ୍ୟାଲଘୁ ମାନେ ହିଁ ହୁଅନ୍ତି ପରିଶେଷରେ ସବୁଠାରୁ କ୍ଷତିଗ୍ରସ୍ତ, ଏଇ ସବୁ ସଂଘର୍ଷରେ । ପଂଜାବ ଠାରୁ ବଂଗଳା ପର୍ଯ୍ୟନ୍ତ ଏହା ଘଟିଛି । ଯଦିଓ ହୁଏତ ସଂଖ୍ୟାଲଘୁମାନଙ୍କ ତରଫରୁ ପ୍ରଥମ ଆକ୍ରମଣ ବା ଉତ୍ତେଜନା ସୃଷ୍ଟି ହୋଇଛି ।

କଲିକତାର ଐତିହାସିକ ଦଂଗା ଯାହା Great Killing Day (ଅଗଷ୍ଟ ୧୯୪୬)ର ମଧ୍ୟ ସେଇ ଶିକ୍ଷା । ସୁରାବର୍ଦ୍ଦି ସେତେବେଳେ ବଂଗଳାର ପ୍ରଧାନମନ୍ତ୍ରୀ । ସେ ତ ଏଇ କାଣ୍ଡ

Digitized by srujan ka@gmail.com

ପାଇଁ ଆହ୍ୱାନ ଦେଲେ । ପ୍ରଥମ ଦିନେ ଦୁଇଦିନ ଗୋଟାଏ ପ୍ରକାରର ଦୃଶ୍ୟ । କିନ୍ତୁ ତା'ପରେ ? ତା' ପରର ବିଭୀଷିକା ତ ଲୋମହର୍ଷଣକାରୀ । ସେତେବେଳେ କିଏ କାହାକୁ ମାନିବା ପାଇଁ ପ୍ରସ୍ତୁତ ନୁହନ୍ତି । ସମଗ୍ର ପାର୍କଷ୍ଟ୍ରିଟ ଥିଲା ମୁସଲିମ ଅଧ୍ୟୁଷିତ ଅଂଚଳ । ଏହା ମୁସଲିମ ଶୂନ୍ୟ ହୋଇଗଲା ।

କଟକର ସେଇ କଠୋର ହୃଦୟହୀନ ଦିନଗୁଡ଼ିକ ପରେ ଦିନେ ଦେଖାଗଲା ଯେ କିଛି ରକ୍ଷଣଶୀଳ ମୁସଲିମ ନେତାମାନେ ଯାଇ ହାଜର ରାଜ୍ୟପାଳ ସୌକତ ଆନସାରୀଙ୍କ ପାଖରେ ଅଭିଯୋଗ ବାଢ଼ି । ସେ ଶୁଣିଲେ ସବୁ । ତା'ପରେ ପଚାରିଲେ ଯେଉଁମାନେ ଦୈବାତ୍ ବାଜା ବଜାଇ ଦେଲେ ମସଜିଦ୍ ଆଗରେ, ସେମାନଙ୍କ ଭିତରେ ସମସ୍ତେ ଛାତ୍ର, ଆମ ପୁଅଝିଅ ଭଳି । ପ୍ରତିନିଧି ଦଳ ହଁ ଭରିଲେ । ଆଉ ଯାଆନ୍ତି କୁଆଡ଼େ ? ସେଇଟା ତ ରାତି, ନମାଜ ପଢ଼ା ବନ୍ଦ ହୋଇ ସାରିଥିବ । ବାଜା ବଜେଇ ଦେଲେ ତ କଣ ସରିଗଲା ? ସେ ବାଟରେ ତ ଟ୍ରକ, ଟ୍ରାକ୍ଟର, ଗାଡ଼ିସବୁ ଯାଉଛି । ସେମାନେ ଶବ୍ଦ କରୁ ନାହାନ୍ତି ? ଆଗ ମସ୍‌ଜିଦ୍‌ସବୁ ନିରୋଳା ଯାଗାରେ ଥିଲା । ଉପାସନାରେ ଆଘାତ ହେବ ବୋଲି ମସଜିଦ୍ ଆଗରେ ବାଜା ବଜାଇବା ନିଷିଦ୍ଧ ଥିଲା । କିନ୍ତୁ ବର୍ତ୍ତମାନ ପରା ମସ୍‌ଜିଦସବୁ ସହର ମଝିରେ । ପାଟିରେ ଡାକିଲେ 'ଆଜାନ୍' ଶୁଭୁନାହିଁ ବୋଲି ପରା ମାଇକ୍‌ରେ ଡାକୁଛ ?

ତା'ପରେ ଗପଟିଏ କହିଲେ । କହିଲେ ଯେ ଥରେ ଦିଲ୍ଲୀରେ ଏକ ମହରମ ଶୋଭା ଯାତ୍ରା ଯାଉଥିଲା । ସେ ଥରକ ମକ୍କା ଓ ମଦିନାରୁ ଦୁଇଜଣ ପ୍ରଖ୍ୟାତ ପୀର ଆସିଥିଲେ ଦିଲ୍ଲୀକୁ ସେଇ ସମୟରେ । ସ୍ୱାଭାବିକ ଭାବରେ ସେମାନେ ମହରମ୍ ଶୋଭାଯାତ୍ରାକୁ ଲକ୍ଷ୍ୟ କରୁଥିଲେ । ପଛରେ ଦଳେ ଲୋକ ଛାତିରେ ହାତ ପିଟି ପିଟି ଯାଉଥିବା ଦେଖି, ସେ ଦୁଇଜଣ ପୀର ଦିଲ୍ଲୀର ଜଣେ ମୌଲାନାକୁ ଆଶ୍ଚର୍ଯ୍ୟାନିତ ହୋଇ ପଚାରିଲେ– ଏ କଣ ହେଉଛି, କିଏ ମରିଗଲା ? ଦିଲ୍ଲୀର ମୌଲାନା ଆଶ୍ଚର୍ଯ୍ୟ ଯେ ଏମାନେ କଣ ଜାଣନ୍ତି ଯେ ମହମ୍ମଦଙ୍କ ପୁଅ ହୁସେନ୍‌ଙ୍କ ପରଲୋକରେ ଶୋକ ପ୍ରକାଶକରି ଛାତିରେ ହାତ ପିଟି ପିଟି ଯିବାର ପାରମ୍ପରିକ ପ୍ରଥା, ଏମାନେ ମକ୍କା ଓ ମଦିନାରେ ପୀର ହୋଇ ଜାଣିନ୍ତି ନାହିଁ ! ସେ କହିଲେ ଯେ– ହୁସେନ ମରିଗଲେ । କେଉଁ ହୁସେନ୍ ? ସେମାନଙ୍କର ପ୍ରଶ୍ନ । ପୀର ଦୁଇଜଣ ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଯେ ତମେ ସେ ଖବର ଆଜି ପାଇଲ ନା କଣ ? ଅର୍ଥାତ୍ ଏଇ ପାରମ୍ପରିକ ବହୁ କାଳରୁ ସେଠାରୁ ଲୋପ ପାଇଯାଇଥିଲେ ମଧ୍ୟ ଆମର ଏଠି ଚାଲୁଛି ।

ଏହାପରେ ଦେଖ ମଜା ! ସୌକତ ଆନସାରିଙ୍କ ଚଉଦପୁରୁଷ ଉଦ୍ଧାର କରି କରି ସେମାନେ ଫେରିଲେ । ଡଗ୍‌ମାଟିଜିମ୍ ଏବଂ ଧର୍ମ ଦୁଇଟି ଅଲଗା କଥା । **"ଯ ଧାରୟତି ସ ଧର୍ମ ।"** ସାମାଜିକ ଚିନ୍ତାଧାରାର କ୍ରିଷ୍ଟାଲାଇଜେସନ୍ ବା ଏକତ୍ରୀକରଣର ନାମ ହେଲା ଧର୍ମ । ପାଶ୍ଚାତ୍ୟ ଦେଶମାନଙ୍କରେ ଏବଂ ଏପରିକି ବାକି ସବୁ ସାମାଜିକ ଚିନ୍ତା ଦର୍ଶନ ହୋଇରହିଛି ।

Digitized by srujan ka@gmail.com

ଦର୍ଶନ ହେଉଛି ଜୀବନର ବାଟ (Way of life) କିନ୍ତୁ ପ୍ରାଚ୍ୟ ଦେଶମାନଙ୍କ ଭିତରେ ଦର୍ଶନ ଧର୍ମ ହୋଇ ଯାଇଛି । ଧର୍ମ ହେଉଛି ମୁକ୍ତିର ବାଟ । ମୁକ୍ତିର ବାଟ ଖୋଜୁ ଖୋଜୁ ଏହା ଡଗ୍‌ମାରେ ପରିଣତ ହୋଇଛି ଏବଂ ଧର୍ମମାନଙ୍କ ଭିତରେ ପାଦ୍ରୀବାଦ, ମୁଲ୍ଲାବାଦ, ପୁରୋହିତବାଦ ମୁଖ୍ୟ ହୋଇଛି । ଧର୍ମ ଅପେକ୍ଷା ପଦ୍ଧତିର ସ୍ଥାନ ଅଗ୍ରାଧିକାର ଲାଭ କରିଛି ଏବଂ ଏହା ବିରୁଦ୍ଧରେ ବିଦ୍ରୋହ ସବୁଠାରେ ଦେଖାଦେଇଛି । ଭାରତବର୍ଷରେ ଯେପରି ବ୍ରାହ୍ମଣବାଦ ବା ପୁରୋହିତବାଦ ବିରୁଦ୍ଧରେ ବୌଦ୍ଧ ଧର୍ମ, ଜୈନ ଧର୍ମ, ବ୍ରାହ୍ମ ଧର୍ମ, ମହିମା ଧର୍ମ ଦେଖାଦେଇଛି । ଯେଉଁ ମହମ୍ମଦ ଦିନେ ପିତୁଳା ପୂଜା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି କୋରାନ୍‌ର ବାଣୀ ପ୍ରଚାର କରିଥିଲେ, ସେଇ ମହମ୍ମଦଙ୍କ ବାଣୀ ମୁଲ୍ଲା ଏବଂ ମୌଳବାଦୀମାନଙ୍କ ଚକ୍ରାନ୍ତରେ ଅଂଧ ଧାରଣାରେ ବୁଡ଼ିଯାଇଛି ଏବଂ ତାହା ବିରୁଦ୍ଧରେ ଅମହ୍ମଦିଆ ସଂପ୍ରଦାୟର ମୁସଲମାନମାନେ ବିଦ୍ରୋହ ଘୋଷଣା କରିଛନ୍ତି । ମହମ୍ମଦ ଭଗବାନଙ୍କର ଶେଷ ପ୍ରଫେଟ (Prophet) ନୁହଁନ୍ତି ଏହା ହେଉଛି ଅହମ୍ମଦିଆମାନଙ୍କର ନୀତି-ଘୋଷଣା । ଠିକ ସେଇପରି ଖ୍ରୀଷ୍ଟଧର୍ମ ପଡ଼ିଛି ପୋପ୍‌ଙ୍କ ହାତରେ ଯେ ଆପଣାକୁ ରାଷ୍ଟ୍ର ବୋଲି ଘୋଷଣା କରିଛନ୍ତି ଏବଂ ଏହା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛନ୍ତି ମାର୍ଟିନ ଲୁଥର ଏବଂ ପ୍ରୋଟେଷ୍ଟାଣ୍ଟମାନଙ୍କର ଜନ୍ମ ହୋଇଛି । ମନେରଖିବା ଉଚିତ୍ ଯେ ଏମାନଙ୍କ ଭିତରୁ କେହି ମୂଳଧର୍ମକୁ ଅବଜ୍ଞା ବା ଅସ୍ୱୀକାର କରିନାହାନ୍ତି । ବେଦ, କୋରାନ, ବାଇବେଲ୍‌କୁ ଅବଜ୍ଞା କରା ହୋଇନାହିଁ, କରାହୋଇଛି ତାକୁ ବିକୃତ କରିବାର ଉଦ୍ୟମକୁ, ପରବର୍ତ୍ତୀ କାଳରେ ସେଇ ବିଦ୍ରୋହୀ ଚେତନା ସବୁ ମଧ୍ୟ ନିଜେ ଡଗ୍‌ମାରେ ପରିଣତ ହୋଇଯାଇଛନ୍ତି ଆପଣାର ବିପରୀତ-ଧର୍ମ ଚିନ୍ତାରେ । ଯେଉଁ ମୁହୂର୍ତ୍ତରେ ଏଇ ଚିନ୍ତାଗୁଡ଼ିକ କାର୍ଯ୍ୟରେ ନିୟାମକ (Guide of action) ହୋଇନାହାନ୍ତି ସେଗୁଡ଼ିକ ଆପଣାର ବୈପ୍ଲବିକ ଚରିତ୍ର ହରାଇଛନ୍ତି ।

ଏହା ହିଁ ମଧ୍ୟ ଘଟିଛି ପ୍ରସିଦ୍ଧ ମାର୍କ୍ସବାଦ କ୍ଷେତ୍ରରେ । ମାର୍କ୍ସ ଭଗବାନଙ୍କର ଅବତାର ନ ଥିଲେ । ସେ ଥିଲେ ସମାଜ ବିଜ୍ଞାନୀ । ସାମାଜିକ ପରିବର୍ତ୍ତନର ଧାରାକୁ ସେ ଅଧ୍ୟୟନ କରି ଆପଣାର ବୟାନ ଦେଲେ ଏବଂ କହିଲେ ଯେ ସେ ନୂତନ ସାମାଜିକ ନିୟମ ବୟାନ କରୁନାହାନ୍ତି ସାମାଜିକ ପରିବର୍ତ୍ତନର ପ୍ରାକୃତିକ ନିୟମର ଧାରାକୁ ହିଁ ସେ ଉପସ୍ଥାପନ କରୁଛନ୍ତି । ହେଗେଲ୍‌କୁ ସେ ଠିଆ କରାଇଛନ୍ତି ଗୋଡ଼ରେ । ତାଙ୍କ ଭାଷାରେ ହେଗେଲ୍ ସାମାଜିକ ଚିନ୍ତାଧାରାର ନିୟମକୁ ଠିକ୍ ଭାବରେ ଉପସ୍ଥାପିତ କରିଥିଲେ କିନ୍ତୁ ସେ ମୁଣ୍ଡରେ ଠିଆ ହୋଇଥିଲେ । ମୁଁ ତାଙ୍କୁ ଗୋଡ଼ରେ ଠିଆ କରାଇ ଦେଇଛି ମାତ୍ର । ମାର୍କ୍ସ ଜ୍ୟୋତିଷେ ନ ଥିଲେ । ତାଙ୍କର କଳନା ଥିଲା ଯେ ଜର୍ମାନୀରେ ହିଁ ସମାଜବାଦୀ ବିପ୍ଲବ ହେବ । କାରଣ ସେଇଠି ଗଢ଼ି ଉଠିଛି ଶିଳ୍ପ ଏବଂ ସର୍ବହରା । କିନ୍ତୁ ଇତିହାସର ଗତିପଥରେ ସେଇଠି ଜନ୍ମହେଲା ପୁଞ୍ଜିବାଦୀ ସଭ୍ୟତାର ସବୁଠାରୁ ଭୟାନକ ବିକୃତି ଫାସିବାଦ । ତାକୁ ଲୋପ କରିବା ପାଇଁ ମଣିଷ ଜାତିକୁ ବହୁ ମୂଲ୍ୟ ଦେବାକୁ ହେଲା । ଅନ୍ୟ

Digitized by srujan ka@gmail.com

ଦିଗରେ ଏକ ପଶ୍ଚାଦପଦ ରାଷ୍ଟ୍ର ରୁଷରେ ସମାଜବାଦର ପ୍ରତିଷ୍ଠା ହେଲା । ଲେନିନ୍‌ଙ୍କ ଭାଷାରେ ''ସାମ୍ରାଜ୍ୟବାଦର ସବୁଠାରୁ ଦୁର୍ବଳତମ ଶିକୁଳି'' ରୁଷରେ । ଚୀନର ବିପ୍ଳବର ପଥ ଥିଲା ସ୍ୱତନ୍ତ୍ର । ସାମନ୍ତବାଦୀ ସମାଜରେ ଚାଷୀମାନଙ୍କର ଏହି ବିପ୍ଳବକୁ ''ଏସିଆଟିକ୍ ମାର୍କ୍ସବାଦ'' ବୋଲି କୁହାଯାଏ । ଠିକ୍ ସେଇପରି ଭିଏତ୍‌ନାମ ବା କ୍ୟୁବାର ବିପ୍ଳବର ପଥ ଥିଲା ସ୍ୱତନ୍ତ୍ର, ଏକ ଠାରୁ ଅନ୍ୟ ହେଉଛି ଭିନ୍ନ । ପ୍ରତ୍ୟେକ ଦେଶରେ ବିପ୍ଳବ ହେବ ତାହାର ନିଜସ୍ୱ ପରିସ୍ଥିତିକୁ ଚାହିଁ, ତାହା ହେବ ''ସମାଜବାଦ ପାଇଁ ଜାତୀୟ ରାଷ୍ଟ୍ର'' । ଏହି ମତ ଘୋଷଣା କରିଥିଲେ ଇଟାଲୀର କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରବାଦ ପୁରୁଷ ପାଲମୋରିଓ ଟୋଗଲିଆତି (Palmorio Toglliatti) ଷ୍ଟାଲିନ୍‌ଙ୍କ ମୃତ୍ୟୁପରେ । ପୂର୍ବ ଇଉରୋପୀୟ ରାଷ୍ଟ୍ରମାନଙ୍କରେ ଏବଂ ଉତ୍ତର କୋରିଆରେ ସମାଜବାଦ ପ୍ରତିଷ୍ଠା ହୋଇଥିଲା ଦ୍ୱିତୀୟ ଯୁଦ୍ଧ ଫଳରେ । ପ୍ରଧାବିତ ଶତ୍ରୁ ସୈନ୍ୟକୁ ଅନୁଧାବନ କରି ସୋଭିଏତ ସୈନ୍ୟବାହିନୀ ଏହିସବୁ ରାଜ୍ୟରେ ସମାଜବାଦ ପ୍ରତିଷ୍ଠା କରିଥିଲେ । ଯଦିଓ ଏଇ ଦେଶମାନଙ୍କ ମଧ୍ୟରୁ ଅନେକରେ ଶ୍ରମଜୀବୀ ମଣିଷର ଆନ୍ଦୋଳନ ବେଶ୍ ପରିପକ୍ୱ ହୋଇଥିଲା, କିନ୍ତୁ ଶାସନ କ୍ଷମତା ଆସିଥିଲା ସୋଭିଏତ ସୈନ୍ୟବାହିନୀ ଯୋଗୁଁ ।

ଆଜି ଯଦି ଇତିହାସର ପୃଷ୍ଠାକୁ ପୁଣିଥରେ ଓଲଟାଯାଏ, ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟମାନେ ଆପଣାର ଆତ୍ମ-ସମୀକ୍ଷା କରନ୍ତି ତା'ହେଲେ ଦେଖାଯିବ ଯେ ଏଇ ଦୁଇ ସମାଜବାଦୀ ଶକ୍ତି ଯଦି ଶତ୍ରୁ ବିରୁଦ୍ଧରେ ସଂଗ୍ରାମକୁ ଆପଣା ଭିତରେ ସଂଗ୍ରାମ ଅପେକ୍ଷା ବେଶୀ ଗୁରୁତ୍ୱ ଦେଇ ଥାଆନ୍ତେ ତା' ହେଲେ ସ୍ପେନ୍‌ର ଅନ୍ତର୍ଯୁଦ୍ଧରେ ଫାସିବାଦ ବିଜୟ ହାସଲ କରିପାରି ନ ଥାନ୍ତା । ଜର୍ମାନୀରେ ହିଟଲରର ବିଜୟ ସମ୍ଭବ ହୋଇପାରି ନ ଥାନ୍ତା । ଫ୍ରାନ୍ସ, ଇଟାଲୀ, ହଙ୍ଗେରୀ, ବୁଲଗେରିଆ, ଚେକୋସ୍ଲୋଭାକିଆରେ ସମାଜବାଦ ପ୍ରତିଷ୍ଠା ହୋଇଥାନ୍ତା ଆପଣାର ଶକ୍ତିରେ । ସେଥିପାଇଁ ସୋଭିଏତ ସୈନ୍ୟ ବାହିନୀକୁ ଅପେକ୍ଷା କରିବାକୁ ପଡ଼ି ନ ଥାନ୍ତା କିନ୍ତୁ ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟମାନଙ୍କ ଭିତରେ ବିଭେଦ ଏବଂ ପରସ୍ପର ବିରୋଧୀ ମନୋଭାବ ପ୍ରତିକ୍ରିୟାଶୀଳ ଶକ୍ତିକୁ ନିମନ୍ତ୍ରଣ କରି ଆଣିଛି । ସେମାନଙ୍କ ଭିତରୁ ଅନେକ ହୁଏତ ଆଜି ବି ରାଜି ହେବେ ନାହିଁ ଏଥିରେ କିନ୍ତୁ ଅନେକ ରାଜିହେବେ । କେବଳ ସେତିକି ନୁହେଁ, ଭାରତବର୍ଷର ମାନଚିତ୍ର ମଧ ବଦଳିଯାଇଥାନ୍ତା ଏତେବେଳକୁ । ପଶ୍ଚିମବଂଗ, ଆସାମ, ବିହାର, ଉତ୍ତରପ୍ରଦେଶ, ଆନ୍ଧ୍ର, କେରଳ, ତ୍ରିପୁରା ସମେତ ବହୁ ରାଜ୍ୟରେ ସେମାନେ ଶାସନକୁ ଆସନ୍ତେଣି ଅନେକ ଦିନରୁ । ଦେଶର ରାଜନୈତିକ ଭାରସାମ୍ୟ ବଦଳିଯାଇ ସାରିଥାନ୍ତା । କିନ୍ତୁ ସେମାନେ ପରସ୍ପର ଏପରି ବିରୋଧୀ ହୋଇଗଲେ ଯେ ଦୁହେଁ ଅନ୍ୟଟି ଅପେକ୍ଷା ତୃତୀୟ ଶକ୍ତିକୁ ସେ ଗ୍ରହଣ କଲେ । ସୋସାଲିଷ୍ଟମାନଙ୍କର ସୁଧାରବାଦୀ ମନୋଭାବ, କମ୍ୟୁନିଷ୍ଟମାନଙ୍କର ସେକ୍ଟେରିଆନିଜମ୍ ଏହାର ମୁଖ୍ୟ କାରଣ ହେଲା ।

Digitized by srujan ka@gmail.com

ସୋଭିଏତ ୟୁନିଅନ ଭାଙ୍ଗିଯିବାର କାରଣମାନଙ୍କ ମଧ୍ୟରେ ଏହା ବି ଏକ କାରଣ । ଷ୍ଟାଲିନଙ୍କ ଜନ୍ମ ଏବଂ ପରିବର୍ଦ୍ଧନ ହୋଇଛି ଏକ ଷଡ଼ଯନ୍ତ୍ରକାଳୀନ ପରିସ୍ଥିତିରେ । ବଲ୍‌ସେଭିକ୍ ଏବଂ ମେନ୍‌ସେଭିକ୍‌ମାନଙ୍କ ମଧ୍ୟରେ ସଂଘର୍ଷ (ଯାହାର ଜନ୍ମ ହେଉଛି ଦ୍ୱିତୀୟ ଏବଂ ତୃତୀୟ ଆନ୍ତର୍ଜାତିକ ଭିତରୁ) ସାମ୍ରାଜ୍ୟବାଦମାନଙ୍କରେ ଷଡ଼ଯନ୍ତ୍ର ଭିତରେ ପରିବର୍ଦ୍ଧିତ ଷ୍ଟାଲିନ ଆପଣାର ଯୁଗକୁ ସେଇ ଦୃଷ୍ଟିରେ ଦେଖିବାକୁ ଲାଗିଲେ । 'ଆମର ଯିଏ ବିରୋଧ କରୁଛି, ସେ ହେଉଛି ଶତ୍ରୁ', ଏଭଳି ଏକ ମନୋଭାବର ହୁଏତ କିଛି ଅର୍ଥ ଥାଇପାରେ, ସମାଜବାଦୀ ରାଷ୍ଟ୍ରର ଗଠନ ସମୟରେ । ଏହା ସତ୍ତ୍ୱେ ଦଳ ଭିତରେ ଆଭ୍ୟନ୍ତରିଣ ଗଣତନ୍ତ୍ର ରହିଲେ ଏପରି ଏକ ମନୋଭାବ ସ୍ୱେଚ୍ଛାଚାରୀ ହୋଇଯିବାକୁ ବାଧ । ସୋଭିଏଟ୍ ରୁଷରେ ତାହା ହିଁ ଘଟିଛି । ଯେଉଁମାନେ ସିଡନି ଏବଂ ବିଏଟ୍ରିସ୍ ଡୋବଙ୍କ ସୋଭିଏଟ୍ କମ୍ୟୁନିଜମ ପଢ଼ିଥିବେ ସେମାନେ ଦେଖିଥିବେ ପାର୍ଥକ୍ୟ ସୋଭିଏଟ୍ ରାଷ୍ଟ୍ରର ପ୍ରଥମ ସଂବିଧାନ ଗଢ଼ାହେବାର ସମୟ ଏବଂ ପରବର୍ତ୍ତୀ କାଳରେ ଘଟିଥିବା ଘଟଣାବଳୀ । କମ୍ୟୁନିଷ୍ଟ ପାର୍ଟି ଥିଲା ଏକ ମନୋଲିଥିକ ପାର୍ଟି । କିନ୍ତୁ ପାର୍ଟି ଭିତରେ ଗଣତନ୍ତ୍ର ପ୍ରବଳ । ଜେନେରାଲ ବଡ଼ି ବୈଠକରେ କେହି କାହାକୁ ସହଜରେ ଛାଡ଼ନ୍ତି ନାହିଁ । କିନ୍ତୁ ତାହା ଯଦି ନ ହୁଏ ତାହେଲେ ବିପଦକୁ ନିମନ୍ତ୍ରଣ କରିବା ସାର ହେବ । ସେଇଆ ଘଟିଲା ସୋଭିଏଟ୍ ୟୁନିୟନ୍‌ରେ । ଷ୍ଟାଲିନବାଦକୁ ଆଖିବୁଜି ସମର୍ଥନ ମିଳିଲା । କେବଳ ସୋଭିଏଟ୍ ୟୁନିଅନର ପାର୍ଟି ଭିତରେ ନୁହେଁ, ପୃଥିବୀର ସବୁ କମ୍ୟୁନିଷ୍ଟମାନଙ୍କଠାରୁ ।

ମୋ ମତରେ ବିଲାତର କମ୍ୟୁନିଷ୍ଟ ନେତା ହାରି ପଲିଟ୍, ଫ୍ରାନ୍ସର କମ୍ୟୁନିଷ୍ଟ ନେତା ମରିସ୍ ଥୋରେ, ଇଟାଲୀ କମ୍ୟୁନିଷ୍ଟ ପାର୍ଟିର ନେତା ଟୋଗଲିଆତି, ବୁଲଗେରିଆ କମ୍ୟୁନିଷ୍ଟ ପାର୍ଟିର ନେତା ଡିମିଟ୍ରଭଙ୍କ ଭଳି ନେତାମାନଙ୍କର ଏହା କରିବା ଉଚିତ୍ ନ ଥିଲା । ''ସାମ୍ରାଜ୍ୟବାଦ ପୁଞ୍ଜିବାଦର ପଠା ଘା'' ସୋଭିଏଟ୍ ୟୁନିଅନକୁ ରକ୍ଷାକରିବା ନାମରେ ଷ୍ଟାଲିନଙ୍କ ସବୁକାର୍ଯ୍ୟକୁ ସମର୍ଥନ କରିବା ସେମାନଙ୍କ ପକ୍ଷରେ ଉଚିତ ନଥିଲା । ଷ୍ଟାଲିନଙ୍କର ଏଇ ନେତାମାନଙ୍କ ପ୍ରତି ଥିଲା ଭକ୍ତି, ବିଶ୍ୱାସ ଏବଂ ଭୟ । ଏମାନେ ଖୁସିରେ ତାଙ୍କର ମତକୁ ଷ୍ଟାଲିନଙ୍କ ପାଖରେ ଉପସ୍ଥାପିତ କରିପାରିଥାନ୍ତେ । କିନ୍ତୁ ସେମାନେ ତାହା କଲେ ନାହିଁ । ବରଂ ଟୋଗଲିଆତି ଘୋଷଣା କଲେ ଯେ ''ପ୍ରଧାବିତ ଶତ୍ରୁ ସୈନ୍ୟକୁ ଅନୁଧାବନ କରି ଯଦି ସୋଭିଏଟ୍ ସୈନ୍ୟବାହିନୀ ଆମ ଦେଶରେ ପ୍ରବେଶ କରନ୍ତି ତା' ହେଲେ ଆମେ ତାକୁ ମୁକ୍ତି ବାହିନୀ ଭାବରେ ଗ୍ରହଣ କରିବୁ'' । ମୁସୋଲିନ ଫାଶୀ ପାଇସାରିଥିଲା ଶେଷବେଳକୁ ଇଟାଲୀର ପାର୍ଟିଜାନ ବାହିନୀ ଆପଣାର ଚାଳିଶ ଜଣକୁ ଧରି ପଳାୟିତ ମୁସୋଲିନୀକୁ ଆଲପସ ପର୍ବତମାଳାରୁ ଧରି ଆଣିଥିଲେ, ସେମାନେ ଫାଶି ଦେଇଥିଲେ ରାଜପଥ ଉପରେ । ମୁସୋଲିନ ହେଉଛନ୍ତି ନାଜିବାଦର ପ୍ରବକ୍ତା । ହିଟଲର ତାହାର ହତିଆର । ମୁସୋଲିନ ଦିନେ ବାମପନ୍ଥୀ ଥିଲେ । ତତ୍ତ୍ୱ ବି ବେଶ ମାଲୁମ ଥିଲା ତାଙ୍କୁ । କିନ୍ତୁ ଘଟଣାଚକ୍ରରେ ସେ ଫାସିଷ୍ଟ ହୋଇଯାଇଥିଲେ ଏବଂ ତାହାର ତାତ୍ତ୍ୱିକ ପ୍ରବକ୍ତା

Digitized by srujan ka@gmail.com

ମଧ୍ୟ ହୋଇଥିଲେ । ଆପଣାର ରକ୍ଷିତା ବା ପ୍ରେମିକାମାନଙ୍କୁ ସହବାସ କରିବାପାଇଁ ସେ ହୁକୁମ ଦେଉଥିଲେ, ଅନୁରୋଧ ନୁହେଁ, ନିବେଦନ ନୁହେଁ । ସେଇଥିରୁ ସେ ଆନନ୍ଦ ପାଉଥିଲେ, ଏଇ ହୁକୁମରୁ । ଜୋର ଜବରଦସ୍ତିରୁ । ଫାସୀବାଦୀ ମନୋଭାବ ମନସ୍ତାତ୍ତ୍ୱିକ କ୍ଷେତ୍ରରେ ଯେ କିଭଳି ପ୍ରତିଫଳିତ ହୁଏ ଏହା ତାହାର ଏକ ଉଦାହରଣ ମାତ୍ର । ମୁସୋଲିନ ଫାଶି ପାଇବାପରେ ଏବଂ ରୁଷ ସୈନ୍ୟବାହିନୀ ଜର୍ମାନ ଭୂଇଁ ଛୁଇଁସାରିବା ପରେ ତୋଗଲିଆତିଙ୍କର ଏଭଳି ବିବୃତିର କୌଣସି ଆବଶ୍ୟକତା ନ ଥିଲା ।

ସେମାନଙ୍କ ଛଡ଼ା ପୃଥିବୀର ସବୁ କମ୍ୟୁନିଷ୍ଟମାନେ ମଧ୍ୟ ଏଇ ପ୍ରକାର ମନୋଭାବ ଅନେକ ଦିନ ଧରି ପୋଷଣ କରୁଥିଲେ, ଯାହାର ଆବଶ୍ୟକତା କିଛି ନ ଥିଲା । ୧୯୫୭ ମସିହାର କଥା । ଷ୍ଟାଲିନଙ୍କର ମୃତ୍ୟୁ ହୋଇସାରିଲାଣି । କ୍ରୁଷ୍ଚେଭ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କମିଟିରେ ଷ୍ଟାଲିନଙ୍କ ସଂପର୍କରେ ତାଙ୍କର ଐତିହାସିକ ବିବୃତି ଦେଇ ସାରିଲେଣି । ସାରା ବିଶ୍ୱରେ ଏହା ପ୍ରଚଣ୍ଡ ଉଦ୍‌ବେଳନ ସୃଷ୍ଟି କରିସାରିଲାଣି । ତୋଗଲିଆତି କହିସାରିଲେଣି ଯେ ''ବରଫ ତରଳିଲା ବେଳେ (Thaw) ଫରଗଛମାନେ ଯେପରି କମ୍ପନ୍ତି ବର୍ତ୍ତମାନ ଆମ ଅବସ୍ଥା ସେଇପରି ହୋଇଛି । ଏଣିକି ବିଭିନ୍ନ ଦେଶର କମ୍ୟୁନିଷ୍ଟ ପାର୍ଟିମାନେ ସମାଜବାଦ ପାଇଁ ଆପଣାର ଜାତୀୟ ରାସ୍ତା ସ୍ଥିର କରିବେ । ଏହା ତାଙ୍କର ବହୁ ଆଗରୁ କହିବାର ଉଚିତ୍ ଥିଲା ।

ସେତିକିବେଳେ ମସ୍କୋର ପ୍ରସିଦ୍ଧ କୃଷି ପ୍ରଦର୍ଶନୀ ଆମେସବୁ ବୁଲି ଦେଖୁଥାଉଁ । ଏହି କୃଷି ପ୍ରଦର୍ଶନୀ ଏକ ବିସ୍ତୀର୍ଣ୍ଣ ଅଂଚଳ ଉପରେ ଅବସ୍ଥିତ ଏବଂ ଏହାକୁ ପୂରା ଦେଖିବାକୁ ଅନ୍ୟୁନ ଆଠଦଶ ଦିନ ପ୍ରାୟ ଆବଶ୍ୟକ । ଏହା ଦେଖିବାକୁ ପୃଥିବୀର ବିଭିନ୍ନ ଦେଶରୁ, ସୋଭିଏତ୍ ୟୁନିଅନର ବିଭିନ୍ନ ସାଧାରଣତନ୍ତ୍ରର ଲକ୍ଷ ଲକ୍ଷ ଲୋକ ଠୁଳ ହୁଅନ୍ତି । ଆମ ସାଥିରେ ଥିଲେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରସିଦ୍ଧ ତାତ୍ତ୍ୱିକ ଏବଂ ପ୍ରଖ୍ୟାତ ପାର୍ଲିଆମେଣ୍ଟାରିଆନ ଭୂପେଶ ଗୁପ୍ତ । ତାଙ୍କ କାନ୍ଧର ପଛ ପାଖରେ ଏକ କ୍ୟାମେରା । ହଠାତ୍ ଦେଖାଯାଏ ସେ କ୍ୟାମେରାଟି ଚୋରି ହୋଇଯାଇଛି, ଖାଲି ଫିତାଟି ଝୁଲୁଛି । କ୍ୟାମେରା ଖୋଜିବେ କଣ, ପୁଲିସରେ ଖବର ଦେବେ କଣ, ଭୂପେଶ ବାବୁ ଆମକୁ ସବୁ ତାଗିଦ୍ କରି କହିଲେ ''ସାବଧାନ, ଏ ସଂପର୍କରେ ସୋଭିଏତ୍ ୟୁନିଅନ ବାହାରେ ପଦେହେଲେ ଯେପରି କୁହା ନ ଯାଏ କ୍ୟାମେରା ଚୋରି ହୋଇଛି । ସବୁ ସୋଭିଏତ୍ ନାଗରିକ ''ସାଧୁ'' ପାଲଟି ନାହାନ୍ତି କଦାପି, ତା ଛଡ଼ା ପୃଥିବୀର ବିଭିନ୍ନ ଦେଶର ଲକ୍ଷ ଲକ୍ଷ ଲୋକ ବୁଲୁଛନ୍ତି । ସମସ୍ତେ କଣ ସାଧୁ ନା ମହାପୁରୁଷ ! କିନ୍ତୁ ସୋଭିଏତ୍ ୟୁନିଅନ ବିରୁଦ୍ଧରେ କହିଲେ ଘଟେ ଫ ''ପ୍ରଥମ ସମାଜବାଦୀ ରାଷ୍ଟ୍ର''ର କ୍ଷତିହେବ ଏଇଯୋଗୁଁ ଏ ପ୍ରକାର ତାଗିଦ୍ । କାଳକ୍ରମେ ଏହା ଗଳ୍ପରେ ପରିଣତ ହେଲା । ସମସ୍ତେ ସମସ୍ତଙ୍କୁ କହିଲେ ଏବଂ ପରିଶେଷରେ ହାସ୍ୟରସରେ କହିଲେ ''କିନ୍ତୁ ମନେରଖ ସୋଭିଏତ୍ ୟୁନିଅନ ବାହାରେ ଏଥିରୁ ପଦେ ହେଲେ ବି ନୁହେଁ ।'' ଦାଦା ଭୂପେଶ ଗୁପ୍ତ କହିଛନ୍ତି । ଅପଭ୍ରଂଶ ହୋଇ ଚାଲିଲା ।

Digitized by srujan ka@gmail.com

ଫକୀର ମୋହନଙ୍କ ''ଛ'ମାଣ ଆଠ ଗୁଣ୍ଠ'' ମନେ ପଡ଼ିଲା । ରାମଚନ୍ଦ୍ର ମଂଗରାଜ ହୁକୁମ ଦେଇଛନ୍ତି ''ଖବରଦାର, ଦାଦାଙ୍କ କାନକୁ ଏପରି ଗପ ଚାଲିଛି ବୋଲି କଥାଗଲା । ସେ ମୋତେ ଦିଲ୍ଲୀରେ ଏକଥା ପଚାରିଲେ । ମୁଁ ତାଙ୍କୁ ଉତ୍ତର ଦେଇ, ରାମଚନ୍ଦ୍ର ମଂଗରାଜଙ୍କ ଉଦାହରଣ ଦେଲି । ସମସ୍ତେ ହସି ଉଠିଲେ । ଭୂପେଶ ବାବୁ ପ୍ରାୟ ହସନ୍ତି ନାହିଁ । ତାଙ୍କ ଗମ୍ଭୀର ମୁହଁରେ ହସର ଏକ ରେଖା ଉକୁଟି ଲିଭିଗଲା । ଷ୍ଟାଲିନ୍‌ବାଦର ବିଲୟ ଘଟିଛି ନିଶ୍ଚୟ । ହ୍ୟୁମର ସ୍ଥାନ ପାଇଛି ପୁଣି କମ୍ୟୁନିଷ୍ଟମାନଙ୍କ ଅଭିଧାନରେ । ମନେପଡ଼ିଲା, ସୋଭିଏଟ୍ ୟୁନିଅନର ଏକ ପ୍ରସିଦ୍ଧ ଫିଲ୍ମ 'The Cranes are flying' ଆନ୍ତର୍ଜାତିକ ପୁରସ୍କାର ଲାଭ କରିଥାଏ । ଝିଅଟିର ପ୍ରେମିକ ଯାଇଛି ଯୁଦ୍ଧକ୍ଷେତ୍ରକୁ । ଯୁଦ୍ଧର ପରିସମାପ୍ତି ଘଟିଛି । ଫେରି ଆସୁଛନ୍ତି ସୈନ୍ୟବାହିନୀ । ଝିଅଟି ଦିନ ପରେ ଦିନ ଯାଇଛି ଷ୍ଟେସନକୁ ଆପଣାର ପ୍ରିୟକୁ ଭେଟିବା ପାଇଁ । କିନ୍ତୁ ସେ ଫେରୁନାହିଁ । ତା'ପରେ ସେ ଦେଖୁଛି ଫେରି ଆସୁଥିବା ସବୁ ସୈନ୍ୟଙ୍କ ମୁହଁରେ ତା'ର ପ୍ରେମିକର ଛବି । ସେ ସିନା ଆସିବ ନାହିଁ । କିନ୍ତୁ ହଜାର ହଜାର ଅନ୍ୟ ପ୍ରେମିକାମାନେ ତ ପାଉଛନ୍ତି ସେମାନଙ୍କର ପ୍ରେମିକଙ୍କୁ । ତାହାରି ଭିତରେ ସେ ପାଉଛି ତୃପ୍ତି । ଆକାଶ ଚିରି ଉଠିଯାଉଛନ୍ତି ଦଳେ କ୍ରେନ ବା ସହର । ପାଗ ବଦଳି ଯାଉଛି । ଏଇପରି ଥିଲା ତା'ର ବିଷୟବସ୍ତୁ । ଜଣେ ପ୍ରଖ୍ୟାତ ସମାଲୋଚକ ଲେଖିଲେ ସମାଜରେ ପ୍ରେମିକା ତାର ପ୍ରେମିକକୁ ଭେଟିବା ପାଇଁ ଯାଇଛି, କ୍ରେନକୁ ନୁହେଁ । ଅର୍ଥାତ୍ ଏକ ସମୟରେ ଟଲଷ୍ଟୟ, ପୁଷ୍କିନ, ସେଖରଙ୍କ ରୁଷରେ ଯେଉଁ ସାହିତ୍ୟ ସୃଷ୍ଟି ହେଲା ତାହା ହୋଇଗଲା ଆମ ଉତ୍କଳ ପ୍ରସଙ୍ଗର କାବ୍ୟିକ ସଂସ୍କରଣ । ପ୍ରତ୍ୟେକ ସୃଷ୍ଟିର ଏକ ମହାନ ଉଦ୍ଦେଶ୍ୟ ରହିବା ନାମରେ କେବଳ ପ୍ରଚାରଧର୍ମୀ ସାହିତ୍ୟ ହିଁ ସୃଷ୍ଟି ହେଲା । ଏଇକଥା ସେଦିନ ପଚାରି ଥିଲେ ଜଣେ ମାର୍କ୍ସବାଦୀ ବଂଧୁ ସୋଭିଏଟ୍ ଔପନ୍ୟାସିକ ଶୋଲୋକଭଙ୍କୁ (ଯାହାଙ୍କ ଉପନ୍ୟାସ "And quiet flows the Don" ପରବର୍ତ୍ତୀ କାଳରେ ନୋବେଲ ପ୍ରାଇଜ ପାଇଥିଲା) ଯେ ଏଭଳି ଏକ ସାହିତ୍ୟିକ ପରମ୍ପରା ଯେଉଁ ରାଜ୍ୟରେ ସେଠାରେ ସମାଜବାଦ ପ୍ରତିଷ୍ଠା ସତ୍ତ୍ୱେ ସେଭଳି ଉନ୍ନତ ସାହିତ୍ୟ କାହିଁକି ସୃଷ୍ଟି ହେଉନାହିଁ । ଶୋଲୋକଭ ଉତ୍ତର ଦେଲେ ଯେ ଆପଣ ଜଣେ ମାର୍କ୍ସବାଦୀ ହୋଇ ଏହା କିପରି ପଚାରୁଛନ୍ତି ? କେଉଁଠି ମାର୍କ୍ସ କହିଛନ୍ତି ଯେ ଦେଶରେ ସମାଜବାଦ ପ୍ରତିଷ୍ଠା ହୋଇଗଲେ ସାହିତ୍ୟ ବି ଉନ୍ନତ ହୋଇଯିବ । ତା'ପରେ ମାର୍କ୍ସଙ୍କର ଏକ ପଂକ୍ତି ଉଦ୍ଧାର କରିଲେ ସେ । ମାର୍କ୍ସ ଲେଖିଛନ୍ତି ଯେ ''....... ଯଦି ତାହା ହୋଇଥା'ନ୍ତା ତା'ହେଲେ ଇଉରୋପର ବ୍ୟାକ୍ ୱାଟର (back water) ନାମରେ ଖ୍ୟାତ ନରୱେରେ ଇବ୍‌ସନ ନାମକ ନାଟ୍ୟକାର ଜନ୍ମହୋଇ ନ ଥାନ୍ତେ ଯାହାଙ୍କର ନାଟକ ଷ୍ଟାଇଲ ଏବଂ ବସ୍ତୁ ସାରା ଇଉରୋପରେ ନାଟ୍ୟକାରମାନେ ଅନୁସରଣ କରି ନ ଥାନ୍ତେ ।''

ମାର୍କ୍ସ ଦେଖି ନ ଥିଲେ ପରମାଣୁ ବୋମା, ମାର୍କ୍ସ ଦେଖି ନ ଥିଲେ ଜନମଂଗଳ ରାଷ୍ଟ୍ର । ଏଇକଥା ଆପଣାର Contemporary Capitalism ନାମକ ବହିରେ ଉଲ୍ଲେଖ କରିଛନ୍ତି ପ୍ରସିଦ୍ଧ

Digitized by srujan ka@gmail.com

ସାମ୍ୟବାଦୀ ଅର୍ଥନୀତିଜ୍ଞ ଜନ୍ ଷ୍ଟ୍ରାଚି । ସେ ପ୍ରଥମେ କମ୍ୟୁନିଷ୍ଟ ଥିଲେ ଏବଂ ପରେ ସୋସଲିଷ୍ଟ ହୋଇଗଲେ । ଆପଣାକୁ ସଂକଟରୁ ମୁକ୍ତି କରିବା ପାଇଁ ପୁଂଜିବାଦ ଯେଉଁ ଜନମଂଗଳ ରାଷ୍ଟ୍ର ଗଠନ କରିଛି ତାହା ପୃଥିବୀର ଶ୍ରେଣୀ ସଂଗ୍ରାମ ଉପରେ ପ୍ରଭାବ ବିସ୍ତାର କରିଚି ବହୁତ । ପଣ୍ଡିତ ନେହେରୁ ଏହି ବହି ଖଣ୍ଡକ ପଢ଼ିବା ପାଇଁ ଭାରତର ସବୁ ମୁଖ୍ୟମଂତ୍ରୀମାନଙ୍କୁ ଅନୁରୋଧ କରିଥିଲେ ।

ଏହି ବହିରୁ ପାଞ୍ଚଖଣ୍ଡ ଆଣିଥିଲେ ସେତେବେଳେ ମଙ୍ଗଳାବାଗରେ ଥିବା ପ୍ରସିଦ୍ଧ ବହିଦୋକାନୀ ପ୍ରଭାତ କେ. ମହାପାତ୍ର । ମୁଁ ଖଣ୍ଡିଏ ସେଥିରୁ ନେଇଥିଲି । ପରେ ଜାଣିଲି ଯେ ସେଥିରୁ ଖଣ୍ଡିଏ ନେଇଥିଲେ ଅଧ୍ୟାପକ ଡକ୍ଟର ବୈଦ୍ୟନାଥ ମିଶ୍ର । ସୀମା ଆନ୍ଦୋଳନ ସରି ଯାଇଛି । ମୋ ବିରୁଦ୍ଧରେ ୱାରେଣ୍ଟ ସଦ୍ୟ ଉଠିଛି ଏବଂ ମୋର ପରୀକ୍ଷା ସରିଛି । ଶ୍ରୀ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ସେ ପର୍ଯ୍ୟନ୍ତ ଇସ୍ତଫା ଦେଇନାହାନ୍ତି । ହଠାତ୍ ଦିନେ ଉପରବେଳା ମୁଁ ପୋଷ୍ଟ-ଗ୍ରାଜୁଏଟ୍ ହଷ୍ଟେଲ (ଓ.ଏମ.ପି. ପାଖରେ ଥିବା ମୟୂରଭଂଜ କୋଠି)ରେ ପହଞ୍ଚିଲା ଏକ ଗାଡ଼ି । ମୋତେ କିଏ ଖୋଜୁଛନ୍ତି ଶୁଣି ମୁଁ ଯାଇ ପହଞ୍ଚିଲା ବେଳକୁ ଦେଖେ ଯେ ଖୋଦ୍ ନବବାବୁ ଗାଡ଼ିରେ କହିଲେ, ପଣ୍ଡିତେ,ଟିକିଏ ଆସିଲେ ମୋ ସାଂଗରେ । ମୁଁ ଛାନିଆ । ନବବାବୁଙ୍କ ଉପରେ ରାଗ ସେ ପର୍ଯ୍ୟନ୍ତ ପିଲାଙ୍କ ଭିତରୁ ଯାଇନାହିଁ । କାଳେ କଣ ଗଣ୍ଡଗୋଳ ହୋଇଯିବ କି ? ମୁଁ ଗାଡ଼ିରେ ବସି ପଡ଼ିଲି । ସେ ନିର୍ଦ୍ଦେଶ ଦେଲେ ଗାଡ଼ିଚାଳକକୁ, ଚାଲ କଲେଜ ଛକକୁ । ସେଇଠି ଥିଲା ବଚୁଭାଇର ପ୍ରସିଦ୍ଧ ଗୁଜୁରାଟୀ ଜଳଖିଆ ଦୋକାନ । ଗାଡ଼ି ଅଟକିଲା, ନବବାବୁ କହିଲେ ଆସ, ଟିକିଏ ଚାହା ପିଇ ଯିବା । ମୋର ମନେହେଲା, ଲୋକଟା କଣ ପରିସ୍ଥିତି ଭୁଲି ଯାଇଛି ନା କଣ ? ସତରେ ସେ ଭୁଲିଯାଇ ଥିଲେ । ସେ ଗାଦି ଛାଡ଼ିବେ ଏବଂ ତାହା ସହିତ ଗାଦି ସଂକ୍ରାନ୍ତୀୟ ସବୁ ଭୟଭୀତି, ମାୟା ମମତା ସବୁ ଭୁଲିଯିବେ, ତାହାରି ପ୍ରଥମ ପର୍ବ ଆରମ୍ଭ ହୋଇଛି ।

ତାଙ୍କୁ ଓ ମୋତେ ଏକାଠି ଦେଖି ନଚୁଭାଇ ଏକଦମ୍ ମୂର୍ଚ୍ଛାହତ । ନବବାବୁ ତାଙ୍କୁ କହିଲେ କଣ ଚିହ୍ନିପାରୁନ କିଓ ବଚୁଭାଇ ! ବଚୁଭାଇ ଖାଇବାକୁ ଦେଲା କିନ୍ତୁ ପଇସା ନେବାକୁ ନାରାଜ । ପଇସା ପରିଶେଷରେ ନେଲା କି ନାଇଁ ମନେ ପଡୁନି । ତା'ପରେ ଡ୍ରାଇଭରକୁ ନିର୍ଦ୍ଦେଶ ଚାଲ କଲେଜ ପଡ଼ିଆକୁ । କଲେଜ ପଡ଼ିଆ ଭିତରେ ଏବେ ବି ସେ ବେଞ୍ଚଟା ଅଛି ବହୁ ଅତୀତର ସ୍ମୃତି ବହନ କରି ।

ମୋର ମନେପଡୁଛି । ଥରେ ରାତିରେ ପୋଷ୍ଟର ମାରି ଫେରୁଥିଲୁ । ମଧ୍ୟରାତ୍ରି ପ୍ରାୟ ହୋଇ ଯାଇଥିଲା । ମୋତେ ବଂଧୁମାନେ ସେଇଠି ବିଦାୟ ଦେଇ ଗଲେ ଶଙ୍କରପୁରକୁ । ମୁଁ ରହୁଥାଏ ପଶ୍ଚିମ ଛାତ୍ରାବାସରେ । ହଠାତ୍ ମୋ ମନକୁ ଖିଆଲ ଜୁଟିଲା ରାକା ରଜନୀ । ଜ୍ୟୋତ୍ସ୍ନାରେ ମତୁଆଲା ହୋଇ କ୍ରନ୍ଦସୀ ଯେପରି ଶୋଇପଡ଼ିଛି । ମୁଁ ସେଇ ବେଞ୍ଚ ଉପରେ ବସି

Digitized by srujan ka@gmail.com

ରହିଲି କିଛିକ୍ଷଣ । ବୋଧହୁଏ ଟିକିଏ ତନ୍ଦ୍ରା ଲାଗି ଯାଇଥିଲା । ସେଇ ସମୟଟା ମୋର ନିଜ ଜୀବନର ଏକ ଉଦ୍‌ବେଳନର ସମୟ । ସୂର୍ଯ୍ୟ କିରଣ ମୋତେ ଭଲ ଲାଗୁ ନ ଥିଲା, ସୂର୍ଯ୍ୟର କିରଣ ଯେପରି ମୋ ପାଇଁ ଆଣିଦେଉଥିଲା ବେଦନା । ପରବର୍ତ୍ତୀ କାଳରେ ଅନନ୍ତ ପଟ୍ଟନାୟକଙ୍କ କବିତା ପଢ଼ିଲି—

''ହେ ଧରଣୀ ତୁମେ ଯେବେ ହୋଇଯିବ ବୁଢ଼ୀ''

ମୋର ସେଇକଥା ମନେପଡ଼ିଲା । ମୁଁ ଖୋଜୁଥିଲି ଏକ ବାଟ, ସେ ଗ୍ଲାନି ଅବସାଦରୁ ମୁକ୍ତିର ବାଟ ।

ସଚ୍ଚି ରାଉତରାୟଙ୍କ କବିତା :

''ମୋହରି ଏ ପ୍ରେମ ଠାରୁ ମୁହିଁ ବଡ଼ ଅଛି ଏହା ଜାଣି,
ତେଣୁ ତ ବିଦାୟବେଳେ, ନାଇଁକଣ୍ଠେ ବିରହର ବାଣୀ''

ମନକୁ ଆଶ୍ୱାସନା ଦେଉଥିଲା କିନ୍ତୁ ଶକ୍ତି ଦେଉ ନ ଥିଲା । କଣ ପାଇଁ ମୋର ଏ ଦୁର୍ଦ୍ଦଶା ଘୋଟିଥିଲା, ତା'ପରେ ବର୍ଣ୍ଣନା କରିବି । କିନ୍ତୁ ସେ ଦିନ ରାତିରେ ହଠାତ୍ ନିଦ ଲାଗିଯାଇଥିଲା ସେଇ ବେଞ୍ଚ ଉପରେ । ତା'ପରେ ? ହଠାତ୍ ମୁଁ ଆଖି ଖୋଲି ଦେଖେ ଦୂରରେ ଏକ ଛାୟାମୂର୍ତ୍ତି । ମୋ ଦେହରେ ଶିହରଣ ଖେଳିଗଲା । ସେ ମୂର୍ତ୍ତିଟା ମଣିଷ ନା ଅଶରୀରୀ । ମୋର ଅଶରୀରୀ ଉପରେ ବିଶ୍ୱାସ ଟିକିଏ ନାହିଁ । କିନ୍ତୁ ସେ ରାତିରେ ମୋ ଦେହରେ ବେଶି ଶିହରଣ ଖେଳିଗଲା, ଯେତେବେଳେ ଜାଣିଲି ଯେ ଆସୁଥିବା ମୂର୍ତ୍ତିଟି ଗୋଟିଏ ନାରୀର । ଏତେ ରାତିରେ କୌଣସି ନାରୀ ଏଠାକୁ ଆସିବ କାହିଁକି ? ଏହା ତ ଅଭିସାର ପାଇଁ ପ୍ରକୃଷ୍ଟ କ୍ଷେତ୍ର ନୁହେଁ । ଏଠି ତ ସହକାର ନାହିଁ ଯେ ଏଠି—

''ଏଇ ସହକାର ତଳେ,
ସେ ଦିନ ପ୍ରିୟାର କର କଙ୍କଣ ଭିଡ଼ିଥିଲା ମୋର ଗଳେ'' ।

ହୋଇ ପାରିବ ? ତା'ହେଲେ ଏ କିଏ ? ମୋର ଆତଙ୍କ ସୃଷ୍ଟି ହେଲା । ମୁଁ ଡରରେ ପଶିଗଲି ବେଞ୍ଚ ତଳକୁ । ସେ ନାରୀଟି ଆସିଲା । ଦିହରୁ ସବୁ ଲୁଗା କାଢ଼ିଲା ଏବଂ ସଂପୂର୍ଣ୍ଣ ଉଲଗ୍ନ ହୋଇ ଗଛରେ ଚଢ଼ି ଗାଇଲା ରବୀନ୍ଦ୍ର ସଂଗୀତ । ମୁଁ କିନ୍ତୁ ଉପଭୋଗ ଅବସ୍ଥାରେ ନ ଥିଲି । ସେ ଝିଅଟିକୁ ମୁଁ ଜାଣିଥିଲି । ସେ ରେଭେନ୍ସା କଲେଜରେ ଜଣେ କୃତୀ ଛାତ୍ରୀ ଏବଂ ମହିଳା ଛାତ୍ରାବାସରେ ରହୁଥିଲା । (ସେତେବେଳେ ମହିଳା ଛାତ୍ରାବାସଟି ପିଲଗ୍ରିମ ରୋଡ଼ରେ ଏକ ନାଲି କୋଠାରେ ଥିଲା ଏବଂ ସେଠାରେ ଷୋହଳ ଜଣ ଛାତ୍ରୀ ରହୁଥିଲେ । ଏବେ ଆମେ ରେଭେନ୍ସା କଲେଜ ଡେଭେଲପମେଣ୍ଟ ଟ୍ରଷ୍ଟ ଏବଂ ଆଲୁମନି ଆସୋସିଏସନ ତରଫରୁ ଏକ ହଜାର ଛାତ୍ରୀଙ୍କ ହଷ୍ଟେଲ ତିଆରି ପାଇଁ ଅନୁଦାନ ସକାଶେ ଉଦ୍ୟମ କରୁଛୁ ।) ମୁଁ ବେଞ୍ଚ ତଳେ । ନା ବାହାରି ପାରୁଛି ନା ରହି ପାରୁଛି । ଦେହକୁ କାଟିଲାଣି । ଭୟ କଟିଗଲାଣି । କିନ୍ତୁ ଲାଜ

Digitized by srujan ka@gmail.com

ଘାରିଲାଣି । ଯାହା ହେଉ କିଛି ସମୟ ପରେ ସେ ଝିଅଟି ଫେରିଲା ହଷ୍ଟେଲକୁ । ମୁଁ ତ ପଶ୍ଚିମ ଛାତ୍ରାବାସକୁ ଫେରିବି । ସେଇ ପାଖରେ, ରାସ୍ତା ଆର କଡ଼ରେ ମହିଳା ଛାତ୍ରାବାସ । ସେ ଗେଟ୍ ଡେଇଁ ପଶିଲା ଭିତରକୁ । ତା' ପରଦିନ ଆମେ ସବୁ ଗପ କରୁକରୁ ଏଇ କାହାଣୀଟି ମୁଁ କହିଲି, ଗଲା ରାତିର କାହାଣୀ । ଅଖିଳ ମୋହନ ପଟ୍ଟନାୟକଙ୍କ ସହିତ ସେଇ ଝିଅଟିର ସଂପର୍କ ଅତି ନିବିଡ଼ । ସେ କହିଲେ ସେ ଝିଅଟି ସଂପର୍କରେ ତାଙ୍କର ଅଭିଜ୍ଞତା । ଥରେ ସେ ତାକୁ ଭେଟିବା ପାଇଁ ଯାଇଥିଲେ ମହିଳା ଛାତ୍ରାବାସକୁ । ଝିଅଟି ଆସି ତାଙ୍କ ଆଗରେ ବସିଲା । ଦେହରେ ସୂତାଟିଏ ବି ନାହିଁ । ଅଖିଳବାବୁଙ୍କ ଭଳି ପ୍ରେମିକ, ରୋମାଣ୍ଟିକ ଲୋକ ମଧ୍ୟ ଟିକିଏ ଅପ୍ରତିଭ ହୋଇଗଲେ ।

ସେ ଝିଅଟି କିନ୍ତୁ କୌଣସି ଦ୍ୱିଧା ନ ରଖି ପଚାରିଲା, ଆପଣ କିଛି ଭାବୁଛନ୍ତି କି ? ଆପଣଙ୍କ ଆଗରେ ମୁଁ ଏଇପରି ବସିବାକୁ ଚାହେଁ ଏବଂ ତାହା ଭଲ ଲାଗେ । ତା'ପରେ ଗପ ସେଇ ବିଷୟରେ । ତା'ର ଦି'ଚାରି ଦିନ ପରେ ସେ ଝିଅଟିର ଅନ୍ୟତମ ବଂଧୁ ବିଶ୍ୱମ୍ଭର ସାମନ୍ତଙ୍କ ସହିତ ଦେଖାହୁଏ ଏବଂ ସେ ଅଖିଳ ମୋହନଙ୍କ ସହିତ କଥାବାର୍ତ୍ତାର ସଂପୂର୍ଣ୍ଣ ଅବତାରଣା କରି କହିଲା ଯେ ଏଇଭଳି ଲୋକକୁ ଚାବୁକ ମାରି ଜୀବନ ଦର୍ଶନ ପଢ଼ାଇବାକୁ ଇଚ୍ଛା ହୁଏ । ସେ ଝିଅଟି ପରେ ମୋର ଜଣେ ସଂପୂର୍ଣ୍ଣ ବେରସିକ କିନ୍ତୁ ବିଦ୍ୱାନ ବନ୍ଧୁଙ୍କୁ ବିବାହ କରେ ଏବଂ ବର୍ତ୍ତମାନ ପାଶ୍ଚାତ୍ୟ ମହାଦେଶରେ ସ୍ଥାୟୀ ଭାବରେ ବସବାସ କରେ ।

ସେଇ ବେଞ୍ଚରେ ନବବାବୁ ଆଉ ମୁଁ ବସିଲୁ । ଅପରାହ୍ଣ ସୂର୍ଯ୍ୟର କନକ କିରଣରେ ସମସ୍ତ କଲେଜ ପ୍ରାନ୍ତର ଲୋହିତ ବର୍ଣ୍ଣ ଧାରଣ କରିଛି । ଆଜି କ'ଣ ପ୍ରକୃତିର ହୋରିଖେଳ ନା କ'ଣ ? ନବବାବୁ ଆରମ୍ଭକଲେ ପଣ୍ଡିତେ, ତମେ ଯେଉଁ Contemporary Capitalism ପଢ଼ିଛ ସେ ସଂପର୍କରେ ଆମେ ଆଲୋଚନା କରିବା । ସେ ବହି ମୁଁ କିଣିଛି ବୋଲି ଆପଣ କେମିତି ଜାଣିଲେ ? ମୋର ଆଶ୍ଚର୍ଯ୍ୟଭରା ଉକ୍ତି । କ'ଣ ଆପଣଙ୍କ ଗୁଇନ୍ଦା ମୋ ସଙ୍ଗରେ ଲାଗିଛନ୍ତି କି ? ନବବାବୁ ହସିଦେଇ କହିଲେ ଧେତ୍ ଆମ ଗୁଇନ୍ଦାଙ୍କ ଯୋଗ୍ୟତା ତମେ ଜାଣିପାରିଲ ନାହିଁ ? ତମକୁ ମାରିଦେବା ପାଇଁ ପୁଲିସ୍‌କୁ Shoot at Sight ଅର୍ଡ଼ର ଦିଆଯାଇଥିଲା । ତୁମକୁ ଧରି ବି ପାରିଲେ ନାହିଁ । ଛାଡ଼ ! ମୁଁ ଯାଇଥିଲି ସେ ଦୋକାନକୁ ବହି ଆଣିବା ପାଇଁ । ଦେଖିଲି ତିନିଖଣ୍ଡ ବହି ଅଛି । ପଚାରି ବୁଝିଲି କେତେଖଣ୍ଡ ମଗାଇଥିଲା ବୋଲି । ସେ ପାଞ୍ଚଖଣ୍ଡ ବୋଲି କହିଲା । କେଉଁମାନେ କିଣିଛନ୍ତି ବୋଲି ପଚାରିବାରୁ ସେ ଡକ୍ଟର ବୈଦ୍ୟନାଥ ମିଶ୍ର ଏବଂ ତମ ନାମ କହିଲା । ଆମର ଆଲୋଚନା ଚାଲିଲା ରାତି ପ୍ରାୟ ଦଶଟା ପର୍ଯ୍ୟନ୍ତ ଆଲୋଚନା କଲାପରେ ସେ ମୋତେ ଆଣି ପୁଣି ହଷ୍ଟେଲରେ ଛାଡ଼ିଦେଇଗଲେ ।

ଓଡ଼ିଶା ନୂତନ ପ୍ରଦେଶ ହେଲା ୧୯୩୬ ମସିହାରେ । ଇଂରେଜମାନେ ଏପ୍ରିଲ ପହିଲାକୁ April Fool Day ଭାବରେ ଭାବରେ ପାଳନ କରନ୍ତି । ଆମ ଜାତିଟାକୁ ସେମାନେ ମଧ୍ୟ ସେଇଦିନ

Digitized by srujan ka@gmail.com

'ଫୁଲ୍' (f୦୦l) କରିଦେଲେ ଖଣ୍ଡିତ ଓଡ଼ିଶା ଦେଇ । ସିଂହଭୂମି, ମେଦିନୀପୁର, ମଂଜୁଷା, ତରଳା, ଟିକାଲି ସବୁ ରହିଗଲା ସେମିତି । ଏ ଭାବପ୍ରବଣ ଜାତିକୁ ଏଇପରି ଏକ ପ୍ରଦେଶ ଦେଇ ମନବୋଧ କରି ଦିଆଗଲା । ଆମେ ଏହା ଆଂଶିକ ଭାବରେ ଆମର ଆନ୍ଦୋଳନ ଯୋଗୁଁ ଏବଂ ଆଂଶିକ ଭାବରେ ସାଇମନ୍ କମିଶନ ଆଗରେ ଆମର ଆନୁଗତ୍ୟର ପ୍ରମାଣ ଯୋଗୁଁ ମିଳିଥିଲା ।

ଓଡ଼ିଆ ଜାତୀୟତାର ପ୍ରବାଦ ପୁରୁଷ ମଧୁସୂଦନ ଦାସ ଆଖି ବୁଜିଦେଇଥିଲେ ଦୁଇବର୍ଷ ଆଗରୁ । ମଧୁସୂଦନ ଦାସ କେବଳ ଓଡ଼ିଆ ଜାତିର ପ୍ରବକ୍ତା ନ ଥିଲେ, ସେ ଥିଲେ ଜାତୀୟ ସ୍ୱାଭିମାନର ପ୍ରତୀକ । ଓଡ଼ିଆ ପିଲା ଯେ ଯାହା କରୁଚ କର କିନ୍ତୁ ରୁହ ସବା ଆଗରେ, ସବା ଉପରେ ରୁହ– ଏଇଥିଲା ତାଙ୍କର ଉଦାତ୍ତ ଆହ୍ୱାନ । ଏହାଥିଲା ସମଗ୍ର ଜାତିକୁ– ଜମିଦାର, ଚାଷୀ, ମିଲ ମାଲିକ, ଶ୍ରମିକ, ଛାତ୍ର, ବୁଦ୍ଧିଜୀବୀ ସମସ୍ତଙ୍କୁ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନର ପ୍ରସ୍ତାବ କାଳେ ଜାତୀୟ କଂଗ୍ରେସ ଗ୍ରହଣ କଲାନାହିଁ ବୋଲି ସେ କଂଗ୍ରେସ ଛାଡ଼ିଦେଲେ । ଭାରତର ସ୍ୱାଧୀନତା ଅପେକ୍ଷା ସେ ଓଡ଼ିଶା ପ୍ରଦେଶ ଗଠନକୁ ଅଧିକ ମନେ କଲେ । ଆଗରୁ କହିଛି, ଜଷ୍ଟିସ ହରିହର ମହାପାତ୍ରଙ୍କର ଉକ୍ତି କଥା । ଗଡ଼ଜାତ ପ୍ରଜାମାନଙ୍କୁ ଯେପରି ଶୋଷଣରୁ ମୁକ୍ତି ପାଇଁ ରାଜ ଅତ୍ୟାଚାର ଏବଂ ବ୍ରିଟିଶ ଅତ୍ୟାଚାର ବିରୁଦ୍ଧରେ ଯୁଦ୍ଧ କରିବାକୁ ପଡୁଥିଲା ଠିକ୍ ସେଇପରି ଓଡ଼ିଆ ଭାଷାଭାଷୀମାନଙ୍କୁ ଭାରତର ସ୍ୱାଧୀନତା ସହିତ ଓଡ଼ିଶା ପ୍ରଦେଶ ଗଠନ ପାଇଁ ସଂଗ୍ରାମ କରିବାକୁ ପଡୁଥିଲା ।

କିନ୍ତୁ ଏ ଜାତୀୟତା ସହିତ ସାମ୍ୟ ବା ନ୍ୟାୟର କିଛି ସଂପର୍କ ନ ଥିଲା । ଏହାଥିଲା ଓଡ଼ିଆ ଜାତୀୟତା, ଓଡ଼ିଆ ଆଇଡେଣ୍ଟିଟି ଏବଂ ଓଡ଼ିଆ ସ୍ୱାଭିମାନର ପ୍ରକାଶ । ପ୍ରାୟ ସେଇଯୋଗୁଁ ଓଡ଼ିଶା ପ୍ରଦେଶ ଗଠନ ରାଜା ଜମିଦାରମାନଙ୍କର ସମର୍ଥନ ଲାଭ କରିଥିଲା । ପ୍ରଦେଶ ଗଠନ ସହିତ ସେମାନଙ୍କର ରାଜ୍ୟ ବା ରାଜ ଅତ୍ୟାଚାର ସହିତ କୌଣସି ଦ୍ୱନ୍ଦ୍ୱ ନ ଥିଲା । ସେମାନଙ୍କର ରାଜୁତି, ରାଜ୍ୟ, ଅତ୍ୟାଚାର ସବୁ ଅତୁଟ ରହିବ ବରଂ ଓଡ଼ିଶା ପ୍ରଦେଶ ଗଠନ ହେଲେ ରାଜ-ସରକାର ବା ବ୍ରିଟିଶ ଶାସନ ଉପରେ ସେମାନଙ୍କର ପ୍ରଭାବ ବୃଦ୍ଧି ପାଇବ ଏ ବିଷୟରେ ସେମାନେ ନିଶ୍ଚିତ ଥିଲେ । ରାଜ ଏବଂ ଅତ୍ୟାଚାର ଅତୁଟ ରହି ବାକି ସବୁ କଥାକୁ ସେମାନେ ପୃଷ୍ଠପୋଷକତା ତରିବା ପାଇଁ ପ୍ରସ୍ତୁତ ଥିଲେ । ମାୟାଧର ମାନସିଂହଙ୍କ ସଂପାଦନାରେ ପ୍ରକାଶିତ 'ଶଂଖ' ବାମଣ୍ଡା ରାଜାଙ୍କ ପୃଷ୍ଠପୋଷକତା ପାଉଥିଲା ଯେତେବେଳେ ତାଙ୍କର ଜଘନ୍ୟ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହର ଗୈରିକ ପତାକା ଉତ୍ତୋଳନ କରିବା ପାଇଁ ଦଳଦଳ ଯୁବକ ଆପଣା ଜୀବନକୁ ବାଜି ରଖିଥିଲେ । ଠିକ୍ ସେଇପରି ଓଡ଼ିଶା ପ୍ରଦେଶ ପାଇଁ ଆନ୍ଦୋଳନ ।

ମଧୁସୂଦନ ଦାସ ସେଇ ଜାତୀୟତାର ପ୍ରତୀକ ଥିଲେ । ବିଚକ୍ଷଣ ବୁଦ୍ଧି ତାଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା ।

Digitized by srujan ka@gmail.com

''ପାଠ ପଢ଼ିବି ଓକିଲ ହେବି,
କାଳିଆ ଘୋଡ଼ାରେ ଚଢ଼ିବି,
ମଧୁ ବାବୁ ସଂଗେ ଲଢ଼ିବି ।''

ପିଲାମାନେ ଗୀତ ଗାଉଥିଲେ, ଯଦିଓ ମଧୁବାବୁ ଆଦୌ ବାରିଷ୍ଟର ନ ଥିଲେ । ସେ ଜୀବନରେ ବୋଧହୁଏ କୌଣସି ଚାଷୀ ମୂଲିଆର ମୋକଦ୍ଦମା ଲଢ଼ି ନାହାନ୍ତି । ସବୁ ରାଜା ଜମିଦାରମାନଙ୍କର ସେ ଥିଲେ ଓକିଲ । ପ୍ରଚୁର ଅର୍ଥ ମଧ ଉପାର୍ଜନ କରିଛନ୍ତି ସେଥିରୁ । କିନ୍ତୁ ସେସବୁ ଅର୍ଥ ଯାଇଛି ଦାନରେ, ଶିଳ୍ପ ପ୍ରତିଷ୍ଠାରେ ବା ହାଜରା ପରିବାରଙ୍କ ପାଖରେ । ଶିଳ୍ପ ପ୍ରତିଷ୍ଠା ହେବ, ଆର୍ଟ ଓ୍ୱୟାର, ଜୋତା କାରଖାନା କିନ୍ତୁ ତାହାର ସବୁ ଖର୍ଚ୍ଚ ବହନ କରିବେ ମଧୁସୂଦନ । ସ୍ୱାଭିମାନୀ ମଧୁସୂଦନ କାହାରି ପାଖରେ ହାତ ପାତିବେ ନାହିଁ । ଗାନ୍ଧିଜୀଙ୍କ କୁଟୀର ଶିଳ୍ପ, ଖଦି ଗ୍ରାମୋଦ୍ୟୋଗ ପାଇଥିଲା ବିରଳା ବା ବଜାଜଙ୍କର ପୃଷ୍ଠପୋଷକତା । କିନ୍ତୁ ମଧୁସୂଦନ ନା ଥିଲେ ନିଜେ ଶିଳ୍ପପତି, ନା ଥିଲେ ତାଙ୍କର କେହି ଶିଳ୍ପପତି ପୃଷ୍ଠପୋଷକ । ଉତ୍ପାଦନ ତାଙ୍କୁ ଜଣାଥିଲା । କିନ୍ତୁ ମାର୍କେଟିଂର ଯାଦୁବିଦ୍ୟା ତାଙ୍କୁ ଜଣା ନଥିଲା । ଶୁଣିଛି ଯେ, ସେ ମୃତ୍ୟୁର କିଛି ଦିନ ପୂର୍ବରୁ ଜଣେ ବନ୍ଧୁଙ୍କଠାରୁ ଟଙ୍କା ଧାର ମାଗିଥିଲେ, କୌଣସି ଏକ ବାଉରୀ ସାହିରେ କୂଅଟିଏ ଖୋଳାଇବା ପାଇଁ ତାଙ୍କର ପ୍ରତିଶ୍ରୁତିକୁ ରକ୍ଷାକରିବା ପାଇଁ ।

ସେ ଓଡ଼ିଆ ଜାତିର ମଉଡ଼ମଣି । ହିନ୍ଦୁମାନଙ୍କର ଆରାଧଦେବତା ଜଗନ୍ନାଥଙ୍କର ମୋକଦ୍ଦମା ଲଢ଼ିବାର ପ୍ରବାଦ ପୁରୁଷ । କିନ୍ତୁ ସେ କାହିଁକି ନିଜେ ଓଡ଼ିଆ କହୁ ନ ଥିଲେ କେବଳ ବଂଗଳା କହୁଥିଲେ ତାହା ବୁଝିବା ମୋ ପକ୍ଷରେ ସମ୍ଭବ ହୋଇପାରି ନାହିଁ । ବଂଗାଳୀମାନଙ୍କର ଆଧିପତ୍ୟ ଏବଂ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମର ମହାରଥୀ ମଧୁସୂଦନ ଓଡ଼ିଆ କହନ୍ତି ନାହିଁ । କାହିଁକି ? ପଚାରିଛି ଅନେକ ଲୋକଙ୍କୁ । ରାଧାନାଥ ରଥ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ହରିହର ମହାପାତ୍ର ସମସ୍ତଙ୍କୁ । ସମସ୍ତେ ଚୁପ୍ ରହିଛନ୍ତି । କଥାଟାକୁ ବାଆଁରେଇ ଦେଇଛନ୍ତି । ମୋର ମନେହୁଏ ଶୈଳବାଳା, ସୁଧାଂଶୁବାଳା ଏବଂ ତାଙ୍କର ପରିବାରର ପ୍ରଭାବରୁ ସେ ମୁକ୍ତ ହୋଇ ପାରି ନ ଥିଲେ ଏବଂ ସେଇ ପରିବାରର ପ୍ରଭାବ ତାଙ୍କୁ ବଂଗଳା କହିବା ପାଇଁ ବାଧ କରିଥିଲା ଏବଂ ତାଙ୍କର ଆର୍ଥିକ ଦୁର୍ଗତିର ମଧ ଥିଲା ତାହା ଏକ ଅନ୍ୟତମ କାରଣ । ଏହା ମୁଁ ଶୁଣିଛି ଅନେକଙ୍କଠାରୁ ବ୍ୟକ୍ତିଗତ ସ୍ତରରେ କିନ୍ତୁ ଓଡ଼ିଆ ଜାତିର ଏହି ପ୍ରବାଦ ପୁରୁଷଙ୍କ ପ୍ରତି କେହି ଆକ୍ଷେପ କରିନାହାନ୍ତି ବରଂ ଏଇ ତ୍ରୁଟି ମାର୍ଜନୀୟ ବୋଲି ଗ୍ରହଣ କରିନେଇଛନ୍ତି । କିନ୍ତୁ ଓଡ଼ିଶାର ଶିଳ୍ପ ବିପ୍ଳବପାଇଁ ତାଙ୍କର ଉଦ୍ୟମ ପ୍ରଗାଢ଼ । ଏହା ସତ୍ତ୍ୱେ ଭାରତବର୍ଷର ଅନ୍ୟତ୍ର ଯେପରି 'ଜାତୀୟ ବୁର୍ଜୁଆ ବା ଶିଳ୍ପପତି' ସବୁ ଗଢ଼ିଉଠିଲେ, ମଧୁସୂଦନ ଦାସ ତାହା ମଧ ହୋଇ ପାରିଲେ ନାହିଁ । ତାଙ୍କର ସବୁ ବ୍ୟବସାୟ ଫେଲ୍ ମାରିଲା । ଜାତୀୟ ଆନ୍ଦୋଳନରୁ ସେ ଏକଘରକିଆ ହୋଇଗଲେ । ଋଣ ଦାୟରୁ ଆପଣାକୁ ମୁକ୍ତ କରିବାପାଇଁ ନିଜକୁ ଦେବାଳିଆ ବୋଲି ଘୋଷଣାକଲେ ।

Digitized by srujan ka@gmail.com

ଶୈଳବାଳା, ସୁଧାଂଶୁବାଳା ତାଙ୍କର ନିଜର କନ୍ୟା ନୁହଁନ୍ତି ଏବଂ ସେମାନଙ୍କୁ ମଧୁବାବୁଙ୍କ କନ୍ୟା ବୋଲି ଅନେକ ଗ୍ରହଣ କରନ୍ତି ନାହିଁ । ହରେକୃଷ୍ଣ ମହତାବ ଆପଣାର ଯୁବକ ସମୟରେ ମଧୁବାବୁଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରନ୍ତି । ମଧୁବାବୁଙ୍କର ଜାତୀୟ ଆନ୍ଦୋଳନରୁ ଆପଣାକୁ ନିବୃତ୍ତ କରିବା, ସାଇମନ କମିଶନକୁ ସ୍ୱାଗତ ଏବଂ ଅନ୍ୟାନ୍ୟ କାର୍ଯ୍ୟ ମହତାବ ବାବୁଙ୍କ ସମେତ ବହୁ ଜାତୀୟବାଦୀମାନଙ୍କର ବିରୋଧ ଲାଭକରେ । ମଧୁବାବୁଙ୍କୁ ନିଃସଙ୍ଗ କରିବାରେ ଯେଉଁମାନେ ଦାୟୀ, ସେମାନଙ୍କ ଭିତରେ ହରେକୃଷ୍ଣ ମହତାବ ନିଶ୍ଚୟ ଅନ୍ୟତମ । ସତେ ଯେପରି ସେଇ 'ଗ୍ଲାନି'ରୁ ଆପଣାର ମୁକ୍ତି ପାଇଁ ସେ ଶୈଳବାଳା ଦାସଙ୍କୁ ରାଜ୍ୟସଭାକୁ ପଠାଇଥିଲେ । ମଧୁସୂଦନ ଦାସ ବିହାର ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ହୋଇଥିଲେ । ସେ କୁଆଡ଼େ ସବୁବେଳେ କହୁଥିଲେ ଯେ ବଂଗଳାର ପ୍ରଥମ ଗ୍ରାଜୁଏଟ୍ ଡିପୋଟି ମାଜିଷ୍ଟ୍ରେଟ ଏବଂ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ମନ୍ତ୍ରୀ । ବଂଗଳାର ପ୍ରଥମ ଗ୍ରାଜୁଏଟ୍ ବଂକିମ୍ ଚନ୍ଦ୍ର ଏବଂ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ନିଜେ ମଧୁସୂଦନ ଦାସ । କିନ୍ତୁ କେତେବର୍ଷ ଏଇ ବ୍ୟବଧାନରେ ସେ କଥା ପାଶୋରି ଦେଲେ ଚଳିବ ନାହିଁ । ମଧୁସୂଦନ ଦାସ ସ୍ୱାୟତ୍ତ ଶାସନ ମଂତ୍ରୀ ହୋଇଥିଲେ ଏବଂ ସେତିକିବେଳେ ବିହାର-ଓଡ଼ିଶା ସ୍ୱାୟତ୍ତ ଶାସନ ଆକ୍ଟ ପ୍ରଚଳନ ହେଲା । ତାଙ୍କର ସେକ୍ରେଟେରୀ ଥିଲେ ଗୋରା ସାହେବ (ନାମ ମନେପଡୁ ନାହିଁ) ମଧୁସୂଦନ ଦାସ ମନ୍ତ୍ରୀ ହେବାପରେ ସେ ତାଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରିବାକୁ ଆସିଲେ ଏବଂ ମଧୁବାବୁ ତାଙ୍କୁ ବସିବାକୁ କହିବା ପୂର୍ବରୁ ସେ ଆସନରେ ବସିପଡ଼ିଲେ । ମଧୁସୂଦନ ଦାସ ଏହା ସୌଜନ୍ୟ ବିରୁଦ୍ଧ ବୋଲି ତାଙ୍କୁ କହିଥିଲେ ଏବଂ ସେଥିରେ ସେ କ୍ଷୁବ୍ଧ ହୋଇଥିଲେ । ପରବର୍ତ୍ତୀ କାଳରେ ଯେଉଁଦିନ ସ୍ୱାୟତ୍ତ-ଶାସନ ବିଲ୍‌ର ଚିଠାହେବା କଥା, ସେଦିନ ମଧୁବାବୁ ପଚାରିଲେ ତାଙ୍କର ସେକ୍ରେଟେରୀଙ୍କୁ– ମୋର ଚାରିଟା ଷ୍ଟେନୋ, ତମର ଚାରିଟା ଷ୍ଟେନୋ । ସମସ୍ତଙ୍କୁ ଡାକ ରବିବାର ଦିନ ମୋ ଘରକୁ । ସେଇଠି ଚିଠାହେବ ଏଇ ବିଲ୍ । ସେକ୍ରେଟେରୀ ଭାବିଲେ ଯେ ଏ ମଂତ୍ରୀ ନିଶ୍ଚୟ ପାଗଳ ବା କ୍ରାଙ୍କ (Crank) । ଆଗରୁ ତ ତାଙ୍କର ମଧୁବାବୁଙ୍କ ଉପରେ ଧାରଣା ଭଲ ନ ଥିଲା । ସେ ଅନିଚ୍ଛା ସହକାରେ ଆଠ ଜଣ ଷ୍ଟେନୋଙ୍କୁ ନେଇ ପହଞ୍ଚିଲେ ମଧୁବାବୁଙ୍କ ଘରେ । ସକାଳ ଆଠଟାରେ ମଧୁବାବୁ ଡିକ୍ଟେସନ ଦେବା ଆରମ୍ଭ କଲେ । ଦେବା ପୂର୍ବରୁ ସେ ସେକ୍ରେଟେରୀଙ୍କୁ କହିଲେ ଯେ ମୋର ଡିକ୍ଟେସନରେ ଯଦି କେଉଁଠି ଫାକ୍‌ଚୁଆଲ (Factual error)ଏରର୍ ଦେଖିବ ତା'ହେଲେ ମୋର ଦୃଷ୍ଟି ଆକର୍ଷଣ କରିବ । କ୍ରମାଗତ ଡିକ୍ଟେସନ ଚାଲିଲା । ଜଣଙ୍କ ପରେ ଜଣେ ଷ୍ଟେନୋ ଡିକ୍ଟେସନ ନେଇ ଚାଲିଲେ । ସଂଧ୍ୟାବେଳକୁ ପ୍ରାୟ ପାଞ୍ଚଶହ ପୃଷ୍ଠା ଡିକ୍ଟେସନର ସମାପ୍ତି । "ମୁଁ ପାଟି ଖୋଲିବା ଦରକାର ପଡ଼ି ନାହିଁ । ସେହିଦିନ ଠାରୁ ତାଙ୍କୁ ପିତା ଭଳି ଜ୍ଞାନ କରି ଆସିଛି" ଆପଣାର ସ୍ମୃତି ଚାରଣ କରି ଏଇ କଥାଟିକୁ ଇଂରେଜ ଅଫିସର ଲିପିବଦ୍ଧ କରନ୍ତି । ମଧୁବାବୁ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଇଂଲଣ୍ଡ ଯାଇଛନ୍ତି । ଜଗନ୍ନାଥ ମନ୍ଦିର

Digitized by srujan ka@gmail.com

ମୋକଦ୍ଦମାରେ ନୁହେଁ । କିନ୍ତୁ ସେ ଥିଲେ ଏଭଳି ପ୍ରବାଦ ପୁରୁଷ ଯେ ତାଙ୍କ ନାମରେ ବହୁ କାହାଣୀ ପ୍ରଚଳିତ ହୋଇଛି । ପୁରୀ ଜଗନ୍ନାଥ ମନ୍ଦିର ମୋକଦ୍ଦମା କଲିକତାରେ ଶୁଣାଣି ହୋଇଛି ଏବଂ ମଧୁବାବୁ ସିନିଅର ଓକିଲମାନଙ୍କୁ ସହଯୋଗ ବା ଆଶିଷ୍ଟ (assist) କରିଛନ୍ତି ମାତ୍ର । କିନ୍ତୁ ଏଇ ସାହାଯ୍ୟ ବା ସହଯୋଗ ଏତେ ଶକ୍ତିଶାଳୀ ଥିଲା ଯେ ଏହି ମୋକଦ୍ଦମାର ଗୌରବ ତାଙ୍କ ନାମରେ ଯାଇଛି । ଓଡ଼ିଶା ପ୍ରଦେଶ ଗଠନ ଦାବୀ ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା କାଳେ ଗୃହୀତ ନ ହେବ ସେଇଯୋଗୁଁ ସେ ଜାତୀୟ କଂଗ୍ରେସରୁ ଇସ୍ତଫା ଦେଇଛନ୍ତି । କିନ୍ତୁ ସେତେବେଳକୁ ସିଂହଭୂମି ତଥା ମେଦିନୀପୁର କଂଗ୍ରେସ କମିଟି ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଅଧୀନରେ ରହିଛି । ତେଣୁ ମଧୁବାବୁଙ୍କ ପଦକ୍ଷେପ ସହିତ ଅନେକ ଏକମତ ହୋଇପାରି ନାହାନ୍ତି । ଯେପରି ମଧୁବାବୁ ଖ୍ରୀଷ୍ଟିଆନ ବାହିଁକି ହେଲେ ତାକୁ ଯେତେ ଗ୍ଲୋରିଫାଇ କଲେ ମଧ ସମସ୍ତେ ଜାଣନ୍ତି ସେ କାହିଁକି ହେଲେ ଖ୍ରୀଷ୍ଟିଆନ । ବଂଗଳା କହିବା, ଏପରିକି ଇଂରାଜୀ ଟାଣ ଦେଇ କଥା କହିବା ତାଙ୍କ ପାଇଁ କେତେ ଶୋଭାବର୍ଦ୍ଧନ କରିଥିବ କହିବା କଠିନ । କିନ୍ତୁ ବଂଗାଳୀ ଓକିଲମାନଙ୍କର ପ୍ରଭୁତ୍ୱ ଓ ଅତ୍ୟାଚାର ବିରୁଦ୍ଧରେ ତାଙ୍କର ସଂଗ୍ରାମ ତାଙ୍କୁ ଓଡ଼ିଆ ଜାତିର ଆପଣାର କରିଛି । ସେ ପ୍ରତିଦିନ ପୋଖରୀ କୂଳରେ ପ୍ରଚୁର ଭାବରେ ବଢୁଥିବା କଣ୍ଟାଲେଉଟିଆ ଶାଗ ଖାଉଥିଲେ ଏବଂ କୁହାଯାଏ ତାଙ୍କର ଦୀର୍ଘ ଜୀବନ ଲାଭର ଏହା ଅନ୍ୟତମ କାରଣ ଥିଲା । ଏ ସଂପର୍କରେ 'ସମାଜ' ସଂପାଦକ ରାଧାନାଥ ରଥ ତାଙ୍କର ଚାକ୍ଷୁସ ଅଭିଜ୍ଞତା କଥା ମୋତେ କହିଥିଲେ । ମଧୁବାବୁଙ୍କ ସମୟାନୁବର୍ତ୍ତିତା ତାଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଛି । ଠିକ୍ ସମୟରେ ନ ଗଲେ ବା ଉପସ୍ଥିତ ନ ଥିଲେ ସେ କାହାକୁ ମଧ ଛାଡୁ ନ ଥିଲେ । ଏପରିକି ତାଙ୍କର ପାଟ୍ରନ ବା ପୃଷ୍ଠପୋଷକ କନିକା ରାଜାଙ୍କୁ ମଧ ସେ ଛାଡ଼ି ନାହାନ୍ତି । ଏଟିକେଟ୍ (Etiquette) ବା ଚଳଣୀ ଜଗିବା ତାଙ୍କର ଅନ୍ୟତମ ଗୁଣ ଥିଲା । ଥରେ ଓଡ଼ିଶାର କମିଶନର ତାଙ୍କୁ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ କଲେ । କମିଶନରଙ୍କର ଏ.ଡି.ସି. ମଧୁବାବୁଙ୍କୁ ସାଲ୍ୟୁଟ କରି ନିମନ୍ତ୍ରଣ ପତ୍ର ଦେଲେ । ମଧୁବାବୁ ତାକୁ ପଢ଼ି ଚିରି ୱେଷ୍ଟ ପେପର ବାସ୍କେଟକୁ ପକାଇଦେଲେ ଏବଂ ଏ.ଡି.ସି.ଙ୍କୁ କହିଲେ 'ତମେ ଯାଇପାର' । ନିମନ୍ତ୍ରଣର କୌଣସି ଉତ୍ତର ଗଲା ନାହିଁ କି ମଧୁବାବୁ ଡିନରକୁ ଗଲେ ନାହିଁ । ଦିନେ କମିଶନର ତାଙ୍କୁ ପଚାରିଲେ ''ମିଷ୍ଟର ଦାସ, ମୁଁ ଆପଣଙ୍କୁ ଡିନରକୁ ନିମନ୍ତ୍ରଣ କରିଥିଲି । ଆପଣ ତା'ର ଉତ୍ତର ଦେଲେ ନାହିଁ କି ଡିନର୍‌କୁ ଆସିଲେ ନାହିଁ'' ? ମଧୁବାବୁ ଉତ୍ତର ଦେଲେ ଯେ ସେ ନିମନ୍ତ୍ରଣ ଆଦୌ ପାଇ ନାହାନ୍ତି । କ୍ଷୁବ୍ଧ କମିଶନର ତାଙ୍କୁ କହିଲେ ଯେ ଆପଣ ମୋର ନିମନ୍ତ୍ରଣ ପତ୍ର ପାଇଛନ୍ତି । ମୋର ଏ.ଡି.ସି. ଆପଣଙ୍କୁ ମୋର ପତ୍ର ଦେଇଛି ଏବଂ ଆପଣ ତାକୁ ପଢ଼ି ଚିରି ୱେଷ୍ଟ ପେପର ବାସ୍କେଟକୁ ପକାଇ ଦେଇଛନ୍ତି । ମଧୁବାବୁ ସଂଗେସଂଗେ ଉତ୍ତର ଦେଲେ ଯେ ଓ ! ସେ ଚିଠିଟା । ଏକ ଡିନର୍ ନିମନ୍ତ୍ରଣରେ ସେଥିରେ ଲେଖାଯାଇଥିଲା ସି.ଆଇ.ଇ, ଓ.ବି.ଇ, ଆଇ.ସି.ଏସ୍ ଇମିତି କେତେ ପ୍ରକାର ଶବ୍ଦ । ବ୍ୟକ୍ତି ବ୍ୟକ୍ତିକୁ ନିମନ୍ତ୍ରଣ

Digitized by srujan ka@gmail.com

କରେ, ଉପାଧି କରେନା । ଏଇ ସାମାନ୍ୟ ସୌଜନ୍ୟ ତ ଆପଣ ନିଶ୍ଚୟ ଜାଣନ୍ତି ଇଂରେଜ ଭାବରେ ? ମଧୁବାବୁଙ୍କ ଉତ୍ତରରେ କମିଶନର ଚୁପ୍ ରହିଥିଲେ ଏବଂ କ୍ଷମା ପ୍ରାର୍ଥନା ମଧ କରିଥିଲେ ।

ମଧୁସୂଦନ ଦାସ ଥିଲେ କନିକା ରାଜାଙ୍କ ଓକିଲ । ଥରେ ପାଟନା ହାଇକୋର୍ଟର ଚିଫ୍ ଜଷ୍ଟିସ ଆସିଥିଲେ ଓଡ଼ିଶା ବୁଲି । ସେ କନିକା ରାଜାଙ୍କ ଅତିଥି ହୋଇଥିଲେ । ସେ ଓଡ଼ିଶାରେ ଥିଲାବେଳେ ଜାନୁଆରୀ ପହିଲା ବା ନବବର୍ଷ ହୋଇଥାଏ । ତାଙ୍କୁ ନବବର୍ଷର ଶୁଭେଚ୍ଛା ଜଣାଇବା ପାଇଁ ଅନେକ ବିଶିଷ୍ଟ ବ୍ୟକ୍ତି ଯାଇଥିଲେ ନବବର୍ଷର ସକାଳରେ ସେମାନଙ୍କ ଭିତରେ ଥିଲେ ମଧୁସୂଦନ ଦାସ ।

ମଧୁସୂଦନ ତାଙ୍କୁ ଶୁଭେଚ୍ଛା ଜଣାଇ କହିଲେ ଯେ ''ମୁଁ ଏକ ଦୁଃଖିତ ହୃଦୟରେ ଆପଣଙ୍କୁ ଶୁଭେଚ୍ଛା ଜଣାଉଛି । ଆପଣ କନିକା ରାଜାଙ୍କ ଅତିଥି ଏବଂ ସେଇ କନିକା ରାଜାଙ୍କ ବହୁ ମୋକଦ୍ଦମା ଆପଣଙ୍କ କୋର୍ଟରେ ଶୁଣାଣି ପାଇଁ ରହିଛି । ମୁଁ କନିକା ରାଜାଙ୍କ ଓକିଲ କିନ୍ତୁ ମୁଁ କ'ଣ ଆଉ ନିର୍ମଳ ବିବେକ ନେଇ ଆପଣଙ୍କ ମିଶଲରେ ଏହାପରେ କେଶ୍ ଲଢ଼ିପାରିବି ?

ଏଭଳି ଆଇନଜୀବୀ ବା ମଣିଷ କ'ଣ ବର୍ତ୍ତମାନ ମିଳିବେ ? ଅନେକ ଓକିଲ ବର୍ତ୍ତମାନ ପାନେଲଭୁକ୍ତ ଏବଂ ସେମାନେ ସେଥିରେ ଏପରି ଭାବରେ ଜଡ଼ିତ ଯେ ସେଥିରୁ ଆପଣାକୁ ମୁକ୍ତ କରି କୌଣସି ମୋକଦ୍ଦମା ଲଢ଼ିପାରୁ ନାହାନ୍ତି ।

ମଧୁସୂଦନ ଦାସ ଖଦି, ଗ୍ରାମୋଦ୍ୟୋଗ ଏବଂ କୁଟୀରଶିଳ୍ପ ଉପରେ ମତାମତ ଏବଂ ପଦକ୍ଷେପ ଗାନ୍ଧିଜୀଙ୍କୁ ଅନୁପ୍ରାଣିତ କରିଥିଲା । ଏବଂ ଗାନ୍ଧିଜୀ ତାଙ୍କୁ ଏସବୁ କ୍ଷେତ୍ରରେ ଆପଣାର ଗୁରୁ ବୋଲି ବିଚାର କରିଛନ୍ତି (ଗାନ୍ଧିଜୀଙ୍କ ସମଗ୍ର ରଚନା ବା Collective Works ଦ୍ରଷ୍ଟବ୍ୟ) କିନ୍ତୁ ତାଙ୍କର ବ୍ୟବସାୟିକ ବୁଦ୍ଧି ନ ଥିଲା ବୋଲି ମନେହୁଏ । ଠିକ୍ ସେଇପରି ଭିକାରୀବାବୁଙ୍କ ଅଭଙ୍ଗା କଣ୍ଢେଇ କାରଖାନା । ଥରେ କୁଆଡ଼େ କିଛି ଜାପାନୀ ଏଇ ଅଭଙ୍ଗା କଣ୍ଢେଇ କାରଖାନା ଦେଖିବାକୁ ଆସିଥିଲେ । ଦେଖି ମୁଗ୍ଧ ହୋଇଥିଲେ କିନ୍ତୁ ଏହାକୁ ବ୍ୟବସାୟ ଦୃଷ୍ଟିକୋଣରୁ ଅସଫଳ ବୋଲି ଅଭିହିତ କରିଥିଲେ । କଣ୍ଢେଇ ଯଦି ଭାଙ୍ଗିବ ନାହିଁ ତା'ହେଲେ ମାର୍କେଟିଂ ବା ବ୍ୟବସାୟ ହେବ କିମିତି, ଏହା ତାଙ୍କର ମତ ଥିଲା । ଠିକ୍ ସେଇପରି ତାରକସୀ କାମ ବା ଘୋଡ଼ାର 'ରପ୍ତାନି' ପାଇଁ ବାଟ କ'ଣ ଥିଲା ସେତେବେଳେ ତାହା ମୁଁ କହିପାରିବି ନାହିଁ । ତା' ହୋଇ ପାରିଥିଲେ ବୋଧହୁଏ ଏହି ପ୍ରକଳ୍ପ ସବୁ ସଫଳ ହୋଇ ପାରିଥାନ୍ତା ।

ଓଡ଼ିଆ ଜାତିର ଏଇ 'ମଉଡ଼ମଣି'ଙ୍କର ପରଲୋକ ପୂର୍ବରୁ ସେ ଡକାଇ ପଠାଇଥିଲେ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ । ତାଙ୍କର ଉତ୍ତରାଧିକାରୀ ନୀଳକଣ୍ଠଙ୍କ ସହ ତାଙ୍କର ମତଭେଦ ଥିଲା ବହୁତ । ଏହାସତ୍ତ୍ୱେ ସେ ପଣ୍ଡିତ ନୀଳକଂଠଙ୍କୁ ମନୋନୀତ କରିଥିଲେ । ମଧୁସୂଦନ ଦାସଙ୍କର ମର ଦେହକୁ ଖୋଲା କୋକେଇରେ କଟକ ସହର ପରିକ୍ରମା କରାଯାଇଥିଲା ହିନ୍ଦୁମାନଙ୍କ ପରି

Digitized by srujan ka@gmail.com

ଏବଂ ପରେ କଫିନରେ ଭର୍ତ୍ତି କରି ସମାଧି ଦିଆଯାଇଥିଲା "ଗୋରା କବରରେ" । ହିନ୍ଦୁ ଏବଂ ଖ୍ରୀଷ୍ଟଧର୍ମର ଏକ ବିରାଟ ସମନ୍ୱୟର ସେ ଥିଲେ ଉତ୍ତୁଙ୍ଗ ଶିଖର ।

ଏବେ ମୋର ଏକ ଆତ୍ମୀୟଙ୍କ କନ୍ୟା ବିବାହ ହୋଇଥିଲା । କାର୍ଡ଼ ଛାପିବା ଦାୟିତ୍ୱ ମୋର ଥିଲା । କିନ୍ତୁ ଦେଖିଲି ଯେ ଆତ୍ମୀୟ ଏବଂ ବିଶେଷତଃ ତାଙ୍କର ସ୍ତ୍ରୀ ସେ କାର୍ଡ଼ରେ ସନ୍ତୁଷ୍ଟ ହେଲେ ନାହିଁ । ମୁଁ ପଡ଼ିଲି ବଡ଼ ଅସୁବିଧାରେ । କାରଣ କାର୍ଡ଼ ଛପା ସରିଛି । ଅଧିକା କାର୍ଡ଼ ଛପାହେଲା । ବଣ୍ଟା ହେଲା । ମୋର ଆତ୍ମୀୟ ଏବଂ ତାଙ୍କ ପତ୍ନୀ ତାଙ୍କର ଅଫିସିଆଲ ଷ୍ଟାଟସ ସଂପର୍କରେ ଖୁବ୍ ବେଶି ସେନ୍‌ସିଟିଭ ଥିଲେ ।

ଏ ସଂପର୍କରେ ମୋର ଏକ ଘଟଣା ମନେ ପଡୁଛି । ୧୯୫୭ ମସିହାର କଥା । ହଠାତ୍ କଲିକତାର କିଛି ଓଡ଼ିଆ ମନେକଲେ ଯେ ନିର୍ବାଚନରେ ଭାରତୀୟ ଜାତୀୟ କଂଗ୍ରେସ ବିରୁଦ୍ଧରେ ବିରୋଧୀ ଦଳମାନଙ୍କର ଏକ ମହାମେଣ୍ଟ ହୋଇପାରିଲେ ଭଲ ହୁଅନ୍ତା । ଆଗରେ ସାଧାରଣ ନିର୍ବାଚନ । ଏଇ ମେଣ୍ଟ ହୋଇ ପାରିଲେ ସେମାନଙ୍କ ଭିତରୁ କିଛି ଏହି ମହାମେଣ୍ଟ ତରଫରୁ ପ୍ରାର୍ଥୀ ହୋଇ ପାରନ୍ତେ ଏବଂ ଜିତି ବି ଯାଇପାରନ୍ତେ । ମୋର ଯାହା ମନେ ପଡୁଛି ୰ ଆକୁଳି ମିଶ୍ର ଏହାର ଜଣେ ପୁରୋଧା ଥିଲେ । କଲିକତାରେ ଓଡ଼ିଆମାନେ ବହୁ ଗ୍ରୁପ୍, ଗୋଷ୍ଠୀରେ ବିଭକ୍ତ । ଯେତେ ଓଡ଼ିଆ, ସେତିକି ଗ୍ରୁପ୍ । ଏହା ଖାଲି କଲିକତାର ଲକ୍ଷଣ ନୁହେଁ । ପ୍ରାୟ ଅଧିକାଂଶ ସ୍ଥାନରେ ଏଇ ଦୁରାବସ୍ଥା ଆମର । ମୋର ମନେପଡୁଛି ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଏବଂ ମୁଁ ମସ୍କୋରେ ଷଷ୍ଠ ଯୁବ ଓ ଛାତ୍ର ଉତ୍ସବରେ ଯୋଗଦେଇ ଫେରୁଥିଲୁ । ଚିନ୍ତାମଣି ବାବୁ ସମଗ୍ର ଏସିଆ ମହାଦେଶ ତରଫରୁ ଉଦ୍‌ଘାଟନ ଉତ୍ସବରେ ଭାଷଣ ଦେବାର ସୁଯୋଗ ପାଇଥିଲେ । ଏହା ଏକ ବିରଳ ଗୌରବ ଥିଲା ଆମ୍ଭମାନଙ୍କ ପାଇଁ । ଆମକୁ ଦିଲ୍ଲୀରେ ସମ୍ବର୍ଦ୍ଧନା ଦେବାପାଇଁ ଓଡ଼ିଆମାନେ ସ୍ଥିର କରିଛନ୍ତି ଜାଣି ଖୁସି ହେଲୁ । ରାତିକୁ ସେ ସରାଗ ମଉଳିଗଲା । କାରଣ ତିନୋଟି ଗ୍ରୁପ୍‌ର ପ୍ରତିନିଧିମାନେ ଆସି ସ୍ୱତନ୍ତ୍ର ନିମନ୍ତ୍ରଣ କରିଗଲେ । ମିଳିତ ବୈଠକ ହୋଇପାରିବ ନାହିଁ ଜାଣି ଆମେ ତା ପରଦିନ ସକାଳୁ ଚୁପ୍‌ଚାପ୍ ଚାଲି ଆସିଲୁ କଟକ । କହିଲେ କୁଳ କୁଟୁମ୍ବକୁ ଲାଜ, ନ କହିଲେ କୁଳ ଭାସିଯାଉଛି । ମସ୍କୋରେ ଷଷ୍ଠ ବିଶ୍ୱଯୁବ ଓ ଛାତ୍ର ଉତ୍ସବ । ଅବର୍ଣ୍ଣନୀୟ ସେ ସମାବେଶ । ତାରି ଭିତରେ ପଡ଼ିଲା ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଜନ୍ମ ଦିବସ । ବଂଗାଳୀମାନେ ସ୍ଥିର କଲେ ଯେ ରବୀନ୍ଦ୍ର ସଂଧ୍ୟାର ଆୟୋଜନ ହେବ । ଖୋଜିଲେ ଲୋକଙ୍କୁ । ଆଚାର୍ଯ୍ୟ କ୍ରିପଲାନୀ ଯାଇଥାନ୍ତି ଅନ୍ୟ କୌଣସି କାମରେ । ସେ ହେଲେ ସଭାପତି । ଚଳଚ୍ଚିତ୍ର ଅଭିନେତା ବଲରାଜ ସାହାନୀ ବହୁଦିନ ଶାନ୍ତିନିକେତନରେ ଅଧ୍ୟାପକ ଥିଲେ । ସେ ହେଲେ ମୁଖ୍ୟ ଅତିଥି । ଏଇପରି ଗୋଟାଇ ଗୋଟାଇ ବେଶ୍ ଦୁଇ ଅଢ଼େଇ ଘଣ୍ଟାର କାର୍ଯ୍ୟକ୍ରମ ଉପସ୍ଥାପନା କଲେ ସେମାନେ । ସଫଳ କାର୍ଯ୍ୟକ୍ରମ, କିଏ କେଉଁ ଦଳର, କେଉଁ ଗୋଷ୍ଠୀର କିଏ ପଚାରୁଛି ? ରବୀନ୍ଦ୍ର ସଂଧ୍ୟା ହେଲା କି ନାହିଁ ସେଇଛି ମୁଖ୍ୟ ପ୍ରଶ୍ନ । ଆମେ କିନ୍ତୁ ବଂଗାଳୀଙ୍କୁ ଗାଳି

Digitized by srujan ka@gmail.com

ଦେବାରେ ଧୁରନ୍ଧର (ସେଥିରେ ବି ମୋର ସଂଦେହ ଅଛି) କିନ୍ତୁ ତାଙ୍କ ଠାରୁ ଶିଖୁନାହୁଁ କିଛି ।

ସେ ଯାହାହେଉ କଲିକତାରେ କଂଗ୍ରେସ ବିରୋଧୀ ଦଳଗୋଷ୍ଠୀମାନଙ୍କ ସମ୍ମିଳନୀ ଆହୂତ ହେଲା । ସବୁ ଦଳ, ସବୁ ଛାତ୍ର ସଂଗଠନମାନେ ପାଞ୍ଚଜଣ କରି ପ୍ରତିନିଧି ପଠାଇବେ । ସୀମା ଆନ୍ଦୋଳନ ସରିଥାଏ । ଛାତ୍ର ସଂଘ ତରଫରୁ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ବିଶ୍ୱମ୍ଭର ସାମନ୍ତ, ଆର୍ତ୍ତତ୍ରାଣ ମହାନ୍ତି ଏବଂ ମୁଁ ଅନ୍ତର୍ଭୁକ୍ତ । ପଞ୍ଚମ ବ୍ୟକ୍ତିଙ୍କର ନାମ ମନେପଡୁନାହିଁ । ସମୟର ଚୋରାବାଲିରେ ତା' ବିସ୍ମୃତିର ଗର୍ଭରେ ।

ସମ୍ମିଳନୀ ଆରମ୍ଭରୁ ହିଁ ସମସ୍ୟା ଉପୁଜିଲା । ଗଣତନ୍ତ୍ର ପରିଷଦ ଚାହିଁଲା ଯେ ଢେଙ୍କାନାଳର ପୂର୍ବତନ ରାଜା ଶଙ୍କର ପ୍ରତାପ ଏବଂ ତାଙ୍କ ସ୍ତ୍ରୀ ରାଣୀ ରତ୍ନପ୍ରଭା ଦେବୀ ଗଣତନ୍ତ୍ର ପରିଷଦର ପାଞ୍ଚଜଣିଆ ପ୍ରତିନିଧି ଦଳରେ ରହିବେ । ରତ୍ନପ୍ରଭା ଦେବୀଙ୍କୁ ଆମର ଆପତ୍ତି ନ ଥିଲା କିନ୍ତୁ ରାଜା ଶଙ୍କର ପ୍ରତାପଙ୍କୁ ଗ୍ରହଣ କରିବା ପାଇଁ ଆମର ଆପତ୍ତି ଉଠିଲା । ରାଜା ଶଙ୍କର ପ୍ରତାପ ଅତ୍ୟାଚାରର ପ୍ରତୀକ । ତାଙ୍କର ନୃଶଂସ ଅତ୍ୟାଚାର ପାଇଁ ସେ ବିଶ୍ୱ ପ୍ରସିଦ୍ଧ । ଗଣତନ୍ତ୍ର ପରିଷଦର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ କିନ୍ତୁ ନଛୋଡ଼ବନ୍ଧା । ଏକ ଅଚଳ ଅବସ୍ଥା ସୃଷ୍ଟି ହେଲା । କିନ୍ତୁ କମ୍ୟୁନିଷ୍ଟ ବା ବାମପନ୍ଥୀମାନଙ୍କୁ ବାଦଦେଇ ତ କଲିକତା ସହରରେ ସମ୍ମିଳନୀ ହୋଇପାରିବ ନାହିଁ । ଏକଥା ସଂଗଠକମାନେ ଜାଣନ୍ତି ।

ହଠାତ୍ ପରଦିନ ସକାଳେ ଦେଖାଗଲା ରାଜା ଶଙ୍କର ପ୍ରତାପ ଏକ ବାଡ଼ି ବୁଲାଇ ବୁଲାଇ ଆସି ଆମ କ୍ୟାମ୍ପରେ ହାଜର । ଆମେ ସବୁ କିଛି ତାଙ୍କୁ କହିବା ପୂର୍ବରୁ ସେ ତାଙ୍କ ତରଫରୁ କଥା ଆରମ୍ଭ କଲେ । ମୁଁ ଶୁଣିଲି ଆପଣମାନେ ମୋତେ ବିରୋଧ କରୁଛନ୍ତି । କିନ୍ତୁ କାହିଁକି ? ମୋର ତ ରାଜଗାଦି ନାହିଁ । ବର୍ତ୍ତମାନ ମୁଁ ସର୍ବହରା । ଆମ ଭିତରୁ କିଏ ଜଣେ ହଠାତ୍ ପଚାରିଦେଲା, ଆପଣ ସର୍ବହରା । ଆଉ ଏ ଗାଡ଼ି, ଏ ସଂପତ୍ତି । ସେ ନିର୍ବିକାର ଚିତ୍ତରେ କହି ଚାଲିଲେ, ପାଞ୍ଚ, ସାତଟା ଗାଡ଼ି, କିଛି ଲକ୍ଷ ଟଙ୍କା, ଆଠ ଦଶଟା ଘର ଏ କ'ଣ ସଂପତ୍ତିରେ ଗଣା ? ଭଦ୍ର ମହାଶୟ ଗଣ ! ଆପଣମାନେ ଭିକାରୀର ଆଖିନେଇ ସଂପତ୍ତିକୁ ଦେଖନ୍ତୁ ନାହିଁ । ଆପଣ ହେନରୀ ଫୋର୍ଡ଼, ରକଫେଲର, ଅନ୍ତତଃ ପ୍ରିନ୍ସ ଆଗା ଖାଁଙ୍କ ନାମ ଶୁଣିଛନ୍ତି । ନା, ତା ବି ଶୁଣିନାହାନ୍ତି । ତାକୁ ଇ କୁହାଯାଏ ସଂପତ୍ତି । ତେଣୁ ମୋତେ ଆପଣଙ୍କର ବିରୋଧ କାହିଁକି ? ଆପଣ ଆସନ୍ତୁ ମୋ ଲାଇବ୍ରେରୀକୁ । ଦେଖିବେ ଅଶୀହଜାର ବହିରୁ ଅଧା ହେଉଛି ବଲ୍‌ସେଭିଜିମ୍ ବା କମ୍ୟୁନିଜମ୍ ଉପରେ । (ସପକ୍ଷରେ କି ବିରୋଧରେ ତା ସେ କହିଲେ ନାହିଁ ଜାଣିଶୁଣି) ହରିଶ୍ଚନ୍ଦ୍ର ବକ୍ସିପାତ୍ର କହିଲେ ଆପଣ ଜଣେ ପୂର୍ବତନ ରାଜା (Ex-Raja), ସେଇଯୋଗୁଁ ଆମର ବିରୋଧ । ଏକ ପ୍ରଚଣ୍ଡ ହସରେ ସତେ ଯେମିତି କୋଠାଟା ଦୋହଲିଗଲା । ''ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର । ଆପଣଙ୍କ ରାଜନୈତିକ ଦକ୍ଷତା (Political accumen) ସଂପର୍କରେ ମୋର ଧାରଣା ଭଲ ନ ଥିଲା । କିନ୍ତୁ ଭାବିଥିଲି ଯେ ଆପଣ ଅନ୍ତତଃ ଇଂରାଜୀ ଭଲ ଜାଣନ୍ତି । ବର୍ତ୍ତମାନ ଭାବୁଛି

Digitized by srujan ka@gmail.com

ଯେ ସେ କଳନା ମଧ୍ୟ ଭୁଲ । କ'ଣ ସେଇ ଶବ୍ଦ '' Ex ବା ପୂର୍ବତନ'' ଯାହାକୁ ବ୍ୟବହାର କରି ଆପଣ ଯାହା ଇଚ୍ଛା ତାହା ବୟାନ ଦେଇ ଚାଲିଛନ୍ତି । ଏହି ଶବ୍ଦକୁ ବ୍ୟବହାର କରି ଆପଣ କ'ଣ ବର୍ତ୍ତମାନ ଉପରେ ଅତୀତକୁ ଜାହିର କରି ପାରିବେ ? ମୁଁ ଯଦି ଆପଣଙ୍କୁ କୁହେ ଯେ ଆପଣ ଜଣେ ପୂର୍ବତନ ଶିଶୁ (Ex-baby) ଏହା ତ ସତ୍ୟ ଯେ ଆପଣ ଏକଦା ଶିଶୁ ଥିଲେ । କିନ୍ତୁ ତାହା କହି ଯଦି ମୁଁ ବର୍ତ୍ତମାନ ଆପଣଙ୍କ କଥାର କୌଣସି ଗୁରୁତ୍ୱ ନ ଦିଏ ତା'ହେଲେ ତାହା କ'ଣ ଠିକ୍ ହେବ ? ମଣିଷ ଏକଦା ବାନର ଥିଲା । ମଣିଷକୁ ଯଦି ପୂର୍ବତନ ବାନର କହି ତାକୁ ସେହିପରି ବ୍ୟବହାର କରାଯାଏ ତା' ହେଲେ କଣ ଠିକ୍ ହେବ, ଶ୍ରୀ ବକ୍ସିପାତ୍ର ? ପୁଣି ଏକ ପ୍ରଚଣ୍ଡ ହସରୋଳରେ କରିଡର କଂପି ଉଠିଲା ।

ଅବଶ୍ୟ ଏହା ସତ୍ତ୍ୱେ ଶଙ୍କରପ୍ରତାପ ଗଣତନ୍ତ୍ର ପରିଷଦର ପ୍ରତିନିଧିତ୍ୱ କରିପାରିଲେ ନାହିଁ, ସେ ସ୍ୱତନ୍ତ୍ର କଥା । କିନ୍ତୁ ଏଇ ଏକ୍ସ ବା ପୂର୍ବତନ ଶବ୍ଦ ପ୍ରୟୋଗ କରିବା ମୋ ପକ୍ଷରେ ଆଉ ସହଜ ହୋଇନାହିଁ । ଶଙ୍କର ପ୍ରତାପ ଆଉ ନାହାନ୍ତି । କିନ୍ତୁ ତାଙ୍କ କଥା ମନେଅଛି ଏ ପର୍ଯ୍ୟନ୍ତ ।

ଶଙ୍କର ପ୍ରତାପ ସିନା ପ୍ରତିନିଧିତ୍ୱ କରିପାରିଲେ ନାହିଁ, ସମ୍ମିଳନୀର ଲକ୍ଷ୍ୟ ମଧ୍ୟ ସଫଳ ହୋଇ ପାରିଲା ନାହିଁ । କଲିକତା ଓଡ଼ିଆମାନଙ୍କର ଆଉ ଏକ ଗୋଷ୍ଠୀ ଆମ ପ୍ରତିନିଧିଦଳକୁ ନିମନ୍ତ୍ରଣ କଲେ ଏକ ମଧ୍ୟାହ୍ନ ଭୋଜନକୁ ଏକ ପ୍ରସିଦ୍ଧ ହୋଟେଲରେ । ସଂଗଠକମାନଙ୍କ ତରଫରୁ ଆପତ୍ତି ଉଠିଲା । କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧି ଦଳରେ ଥିଲେ ଶ୍ରୀ ଶରତ ପଟ୍ଟନାୟକ । ବହୁଦିନ ଧରି ସେ କଲିକତାରେ ରହି ଆସିଛନ୍ତି ସେଠାରେ ଓଡ଼ିଆ ନେତାମାନଙ୍କୁ ସେ ଭଲ ଭାବରେ ଜାଣନ୍ତି । ସେ ଯୁକ୍ତି କଲେ ଯେ ଆମକୁ ତମେ ନିମନ୍ତ୍ରଣ କରିଛ କିନ୍ତୁ ଆମେ ତୁମର ବନ୍ଦୀ ନୋହୁଁ । ଆମେ କାହାର ନିମନ୍ତ୍ରଣ ଗ୍ରହଣ କରିବୁ ସେଥିପାଇଁ କ'ଣ ତୁମର ଅନୁମତି ଭିକ୍ଷା କରିବାକୁ ହେବ ? ଅପର ଗୋଷ୍ଠୀର ନିମନ୍ତ୍ରଣ ଗୃହୀତ ହେଲା । କିନ୍ତୁ ମଧ୍ୟାହ୍ନ ଭୋଜନ ଆରମ୍ଭ ହେବାର ଠିକ୍ ପୂର୍ବରୁ ଦୁଇ ଚାରିଜଣ ଯୁବକ ଆଣି ଗୋଟାଏ ପାଖ ଟେବୁଲରେ ଗଦା କଲେ ପ୍ରଚାର ପତ୍ର । ସେଥିରୁ ଖଣ୍ଡିଏ ଟାଣି ଆଣିଲେ ୰ ମଧୁ ମହାନ୍ତି । ସେ ପ୍ରଚାରପତ୍ରରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଗଣତନ୍ତ୍ର ପରିଷଦ ବିରୁଦ୍ଧରେ ବିଷୋଦ୍‌ଗାର କରାଯାଇଥିଲା । ମଧୁ ମହାନ୍ତିଙ୍କ କଣ୍ଠ ଚିଇଁ ଚିଇଁଆ । ସେ ଚିତ୍କାର କରି ତାକୁ ସିଂହଦେଓଙ୍କ ହାତକୁ ବଢ଼ାଇଦେଲେ । ସିଂହଦେଓ ଶାନ୍ତଭାବରେ ଉଠି କହିଲେ ଆପଣମାନେ ଆମକୁ ନିମନ୍ତ୍ରଣ କରିଥିଲେ ଖାଇବା ପାଇଁ । ଖାଇବା ସ୍ଥାନରେ ଏହି ପ୍ରଚାରପତ୍ର ବାଣ୍ଟି ଆପଣ କେବଳ ମୋତେ ବା ମୋ ଦଳକୁ ଅପମାନିତ କରିନାହାନ୍ତି କରିଛନ୍ତି ଭାରତୀୟ ଆତିଥ୍ୟର ପରମ୍ପରାକୁ । ତାହା ହିଁ ମୋତେ ବେଶି ବାଧିଛି ଏବଂ ସେଇଯୋଗୁଁ ଆମ୍ଭମାନଙ୍କ ପକ୍ଷରେ ଆଉ ଆପଣଙ୍କର ଆତିଥ୍ୟ ଗ୍ରହଣ କରିବା ସମ୍ଭବପର ନୁହେଁ । ମୁଁ କ୍ଷମା ମାଗୁଛି ଏବଂ ବିଦାୟ ନେଉଛି । ସେ ଏଭଳି ଏକ ସ୍ତରକୁ ନେଇଗଲେ ସମସ୍ୟାକୁ ଯେ ଆମକୁ ବାଧ୍ୟହୋଇ ତାଙ୍କୁ ଅନୁସରଣ କରିବାକୁ ହେଲା । ତା' ପରେ ପିଟାପିଟି,

Digitized by srujan ka@gmail.com

ଧସ୍ତାଧସ୍ତି ଚାଲିଲା ହୋଟେଲରେ ଦୁଇ ଓଡ଼ିଆ ଗୋଷ୍ଠୀ ଭିତରେ । ବଂଗାଳୀମାନେ କହିଲେ, ‘‘ଉଡ଼େରା ଲେଗେଛେ’’ । ମୁହଁ ତଳକୁ କରି ଫେରିବାକୁ ହେଲା । ନିମନ୍ତ୍ରଣ କରିଥିବା ବ୍ୟକ୍ତିମାନେ ଆମକୁ ନେଇଥିଲେ ଟ୍ୟାକ୍ସିରେ । ଫେରିବା ବେଳକୁ ଆଉ ଟ୍ୟାକ୍ସିର ଦେଖାନାହିଁ । ପେଟ ଜଳୁଛି ଭୋକରେ । ଚାଲି ଚାଲି ଫେରିଲୁ କ୍ୟାମ୍ପକୁ । ବୋଧହୁଏ ସେଇ ସଂଧ୍ୟାରେ ପୁରୀ ଏକ୍ସପ୍ରେସରେ କଟକ ଯାତ୍ରା ।

ଓଡ଼ିଶା ପ୍ରଦେଶ ଗଠନ ହେଲା । ଓଡ଼ିଶାର ଜନସାଧାରଣ ବିଶେଷତଃ ସମ୍ବଲପୁର, ଗଂଜାମ ଜିଲ୍ଲାର ଜନସାଧାରଣ ପ୍ରାୟ ୭୨ ବର୍ଷ ଧରି ଯେଉଁ ସଂଗ୍ରାମ କରି ଚାଲିଥିଲେ ତାହାର ବିଜୟ ହେଲା, ଆଂଶିକ ଭାବରେ । କାରଣ ଅନେକ ଉପାନ୍ତ ଅଂଚଳ ରହିଗଲା ଅନ୍ୟ ପ୍ରଦେଶମାନଙ୍କରେ । ରାଜା, ମହାରାଜା, ଜମିଦାରମାନେ ସମ୍ମିଳନୀ କରୁଥିଲେ, ନିବେଦନ ଆବେଦନ କରୁଥିଲେ ମହାମହିମ ବ୍ରିଟିଶ ରାଜମୁକୁଟ ପାଖରେ ଓଡ଼ିଶା ପ୍ରଦେଶ ପାଇଁ । ସେମାନେ ପ୍ରଚାର ପାଉଥିଲେ ବହୁତ । କିନ୍ତୁ ସାଧାରଣ ମଣିଷର କଠୋର ସଂଗ୍ରାମର ରେକର୍ଡ଼ ରହିପାରି ନାହିଁ, ରହି ବି ପାରିବ ନାହିଁ । ଇତିହାସ କ୍ୱଚିତ୍ ତାହାର ମୂଲ୍ୟାୟନ କରିଥାଏ । ସମ୍ବଲପୁର ଓ ଗଂଜାମ ଜିଲ୍ଲାରେ ଓଡ଼ିଶା ପ୍ରଦେଶ ଗଠନ ଜାତୀୟ ଅଭିଲିପ୍‌ସାରେ ପରିଣତ ହୋଇଥିଲା । ସେଇ ସମ୍ବଲପୁରରେ ଆଜି ସ୍ୱତନ୍ତ୍ର କୋଶଳ ରାଜ୍ୟ ଗଠନର ଦାବି ଉଠୁଛି । ମୋର ମନେହୁଏ ଏହା ସୀମିତ ରହିଛି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଭିତରେ । ସେମାନେ ମୁନାଫା ପାଇ ନାହାନ୍ତି ବା ଏଇ କୋଶଳ ରାଜ୍ୟ ଗଠନ ଭିତର ସେମାନଙ୍କର ‘‘ହୃତଗୌରବ’’କୁ ଫେରି ପାଇବାର ଆଶା ରହିଛି । ତଥାପି କାହିଁକି ଏପରି ପ୍ରଚେଷ୍ଟା ? କାହିଁକି ସେମାନେ ଆପଣାକୁ ଅବହେଳିତ ବୋଲି ଭାବୁଛନ୍ତି ? ପ୍ରକୃତ କାରଣ କ’ଣ ଏବଂ କେଉଁମାନେ ଆପଣାର ସ୍ୱାର୍ଥ ଦୃଷ୍ଟିରୁ ଏହା ପଛରେ ଅଛନ୍ତି ତାହାର ବିଚାର କରାଯିବା ଉଚିତ୍ ।

ଉତ୍କଳ ସମ୍ମିଳନୀର ଆରମ୍ଭ ହୋଇଥିଲା ମୋର ମନେହୁଏ ସମ୍ବଲପୁରରୁ । ଉଭୟ ସମ୍ବଲପୁର ଓ ଗଂଜାମ ଜିଲ୍ଲାରେ ଏହା ଜନ ଆନ୍ଦୋଳନର ରୂପ ନେଇଥିଲା ଏବଂ ମୁଁ ଜାଣେ ଯେ ଅନେକ ବ୍ୟକ୍ତି ଏହି ଆନ୍ଦୋଳନ ସହିତ ସାମିଲ ହେବାପାଇଁ ସମ୍ବଲପୁର ଓ ଗଂଜାମ ଜିଲ୍ଲାକୁ ଆପଣାର କର୍ମକ୍ଷେତ୍ର ଭାବରେ ଗ୍ରହଣ କରିଥିଲେ । ମୋର ଦୁଇଜଣ ଶିକ୍ଷକ ୰ପର୍ଶୁରାମ ବର୍ମା ଏବଂ ୰ଦିବ୍ୟସିଂହ ପଟ୍ଟନାୟକଙ୍କ ନାମ ମୋର ଏ ସଂପର୍କରେ ମନେପଡ଼େ । ସେମାନେ ଗଞ୍ଜାମ ଜିଲ୍ଲାରେ ଶିକ୍ଷକ ହୋଇଥିଲେ ଏବଂ ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାରେ ଆପଣାର ଭୂମିକା ଗ୍ରହଣ କରୁଥିଲେ ।

ଶୁଣିଛି ଯେ ଭାରତୀୟ ଜାତୀୟ କଂଗ୍ରେସର ଅନ୍ୟତମ ନେତା (ଥରେ କଂଗ୍ରେସ ସଭାପତି) ପଟ୍ଟାଭି ସୀତାରାମେୟା ଘୋଷଣା କଲେ ଯେ ବ୍ରହ୍ମପୁର ସହର ଆନ୍ଧ୍ର ପ୍ରଦେଶରେ ରହିବା ଉଚିତ୍ କାରଣ ଏହାର ସଂଖ୍ୟାଧିକ ଲୋକ ହେଉଛନ୍ତି ତେଲୁଗୁଭାଷୀ । ଏହା ଗଂଜାମ

Digitized by srujan ka@gmail.com

ଜିଲ୍ଲା କଂଗ୍ରେସ ନେତାମାନଙ୍କୁ କ୍ଷୁବ୍ଧ କଲା । ସେମାନେ ପଟ୍ଟାଭିଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ସ୍ଥିର କଲେ । କିଛି କାଳ ପରେ ପଟ୍ଟାଭି ଦିନେ ଆସିଲେ ଗଂଜାମ ଜିଲ୍ଲା ଗସ୍ତରେ । ତାଙ୍କ ପାଇଁ ବିଶାଳ ଜନ ସମାବେଶର ଆୟୋଜନ କଲେ ଗଂଜାମ ଜିଲ୍ଲା କଂଗ୍ରେସ କମିଟି । ସଭାପତି ୰ଦିବାକର ପଟ୍ଟନାୟକ । ଯଥା ସମୟରେ ବାରାକ୍ସ ପଡ଼ିଆରେ ସଭାହେଲା । ବିଶାଳ ଜନ ସମାବେଶ । ସଭାର ଗୋଟିଏ କଡ଼ରେ ଅନେକ ଝଟକା ଘୋଡ଼ାଙ୍କୁ ରଖାଯାଇଛି ଅତିଥିଙ୍କୁ ସମ୍ମାନ ଜଣାଇବା ପାଇଁ । ସେମାନେ ଆସିଛନ୍ତି ଶୋଭାଯାତ୍ରାର ପୁରୋଭାଗରେ । ଦିବାକର ପଟ୍ଟନାୟକ ବେକରେ ଏକ ଚଦର ପକାଇ "ସ୍ୱାଗତ" ଭାଷଣ ଦେଲେ ଓଜଃସ୍ୱିନୀ ଭାଷାରେ । ଭାଷଣ ସରିଲା । ବର୍ତ୍ତମାନ ପଟ୍ଟାଭିଙ୍କ ପାଳି । ହଠାତ୍ ଦେଖାଗଲା ଲୋକେ ସବୁ ଦୌଡ଼ି ପଳାଉଛନ୍ତି ସଭାରୁ । ସଭା ମଝିରେ ଗୁଡ଼ାଏ ସାପ, ଦଳେ ବିରୁଡ଼ି ବିଂଧି ଚାଲିଛନ୍ତି ଲୋକଙ୍କୁ । ବିରୁଡ଼ିସବୁ ବିନ୍ଧିଲେଣି ଘୋଡ଼ାଗୁଡ଼ାକୁ । ଘୋଡ଼ାସବୁ ଦୌଡୁଛନ୍ତି ଲୋକଙ୍କ ଭିତରେ । ଦିବାକର ବାବୁ ଦେହରେ ଗୁଡ଼ାଇ ହୋଇଥିବା ଚଦରକୁ ମୁଣ୍ଡରେ ଘୋଡ଼ାଇଛନ୍ତି । ଏବଂ ପାଟିକରୁଛନ୍ତି କି ଗ୍ରହାଚାର ହେଲାରେ ! ସବୁ ଦିବାକର ବାବୁଙ୍କର କାରସାଦି । ଧଣ୍ଡ ସାପ, ବିରୁଡ଼ିମାନଙ୍କୁ ପ୍ୟାକେଟରେ ଅଣାଯାଇଥିଲା ତାଙ୍କର ବିଶ୍ୱସ୍ତ ସହକର୍ମୀମାନଙ୍କ ଜରିଆରେ । ସଭା ତ ଭାଙ୍ଗିଗଲା । ବିରୁଡ଼ିମାନଙ୍କ ଦଂଶନରେ ପଳାୟିତ ପଟ୍ଟାଭି ।

ଗଂଜାମ ଜିଲ୍ଲାରେ କଂଗ୍ରେସର ପ୍ରଭାବ ବେଶ୍ ଥିଲା । ୧୯୩୭ ମସିହାର ନିର୍ବାଚନ ତାହା ପ୍ରମାଣ କଲା । ଭାରତୀୟ ଜାତୀୟ କଂଗ୍ରେସର ପ୍ରାର୍ଥୀମାନେ ବିପୁଳ ବିଜୟ ହାସଲ କଲେ, ବ୍ରିଟିଶ ସରକାରଙ୍କ ଦ୍ୱାରା ସମର୍ଥିତ ପ୍ରାର୍ଥୀମାନଙ୍କର ଅମାନତ ଉଡ଼ିଗଲା । ଓଡ଼ିଶାରେ ଭାରତୀୟ ଜାତୀୟ କଂଗ୍ରେସର ଏଇ ବିଜୟ ହୋଇଥିଲା ପଣ୍ଡିତ ନୀଳକଂଠ ଦାସଙ୍କ ନେତୃତ୍ୱରେ । ସେ ପ୍ରଧାନମଂତ୍ରୀ ହେବାକଥା । କିନ୍ତୁ ସେଇ ସ୍ଥାନରେ ଅଣାଗଲା ବିଶ୍ୱନାଥ ଦାସଙ୍କୁ, ସେ ମାନ୍ଦ୍ରାଜ ବିଧାନସଭାର ସଦସ୍ୟ ଥିଲେ । ତାଙ୍କର ଅଭିଜ୍ଞତା ବହୁତ । ତେଣୁ ତାଙ୍କୁ ପ୍ରାର୍ଥୀ ମନୋନୟନ କରାଗଲା ବୋଲି ନେତୃତ୍ୱ ସଫେଇ ଦେଲେ । କିନ୍ତୁ ପ୍ରକୃତ କାରଣ ହେଉଛି କଂଗ୍ରେସ ଭିତରେ ଅନ୍ତର୍ଦ୍ୱନ୍ଦ୍ୱ । ସତ୍ୟବାଦୀ ଗ୍ରୁପ ବିରୁଦ୍ଧରେ ଅନ୍ୟମାନଙ୍କ ସ୍ୱର ଉତ୍ତୋଳନ, ଯାହାର ନେତୃତ୍ୱ ନେଲେ ହରେକୃଷ୍ଣ ମହତାବ, ଗୋପବଂଧୁ ଚୌଧୁରୀ ପ୍ରଭୃତି । ଭାରତୀୟ ଜାତୀୟ କଂଗ୍ରେସର ଓଡ଼ିଶା ଶାଖାରେ ବହୁ ପ୍ରକାର ଅନ୍ତର୍ଦ୍ୱନ୍ଦ୍ୱ ରହିଥିଲା । ତା' ଭିତରେ କରଣ-ବ୍ରାହ୍ମଣ ଲଢ଼ାଇ ଅନ୍ୟତମ । ଗଂଜାମ ଜିଲ୍ଲାରେ ଏଇ ଲଢ଼ାଇର ପ୍ରତିଫଳନ ଦେଖିଲେ ବିସ୍ମିତ ହେବାକୁ ପଡ଼େ । ଗଂଜାମ ଜିଲ୍ଲାର ପ୍ରତିଷ୍ଠିତ ଜନନାୟକ ଥିଲେ ଶ୍ରୀ ନିରଂଜନ ପଟ୍ଟନାୟକ । ସେ ଜଣେ ପ୍ରତିଷ୍ଠିତ ଆଇନଜୀବୀ ଥିଲେ ଏବଂ ଗଂଜାମ ଜିଲ୍ଲା ବୋର୍ଡ଼ର ସଭାପତି ଥିଲେ । ଆପଣାର ସ୍ୱଚ୍ଛଳ ଆଇନ ବ୍ୟବସାୟକୁ ପରିତ୍ୟାଗ କରି ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇଥିଲେ । ସେ ହିସାବପତ୍ର ରଖିବାରେ ଧୁରନ୍ଧର ନ ଥିଲେ ଏବଂ ଢିଲା ଥିଲେ ବୋଲି କହିଲେ ଭୁଲ ହେବନାହିଁ ।

Digitized by srujan ka@gmail.com

ଶୁଣିଛି ଯେ ତାଙ୍କ ହାତରେ ଥିବା ପାଣ୍ଠିର କିଛି ଟଙ୍କାର ହିସାବ ସେ ଦେଇ ପାରିଲେ ନାହିଁ । ସେ ଟଙ୍କାର ପରିମାଣ କେତେ, ତାହା କଂଗ୍ରେସର ପାଣ୍ଠି ନା ଜିଲ୍ଲାବୋର୍ଡ଼ର ପାଣ୍ଠି ମୁଁ କହି ପାରିବି ନାହିଁ । ତେବେ ପରିମାଣ ସ୍ୱଳ୍ପ ବୋଲି ମୁଁ ଶୁଣିଛି । ନିରଂଜନ ପଟ୍ଟନାୟକ କୁଆଡ଼େ ପ୍ରତିଶ୍ରୁତି ଦେଇ କହିଲେ ଯେ ଆଗାମୀ ମାସରେ ସେ ଓକିଲାତି କରି ଟଂକା ଶୁଝିଦେବେ । କିନ୍ତୁ ତାଙ୍କର ବିପକ୍ଷ ଗୋଷ୍ଠୀ ଏ ସୁଯୋଗକୁ ହାତଛଡ଼ା କରିବା ପାଇଁ ପ୍ରସ୍ତୁତ ନ ଥିଲେ । ସେମାନେ ଗାନ୍ଧୀଙ୍କୁ ଦରଖାସ୍ତ କଲେ ଏବଂ ମହାତ୍ମା ଗାନ୍ଧୀ ଜଣେ ଗୁଜୁରାଟୀ ବଣିଆ । ହିସାବପତ୍ର ଭୁଲ୍‌କୁ ସେ କ୍ଷମା ବରଦାସ୍ତ କରନ୍ତି ନାହିଁ । ସେ ସଂଗେ ସଂଗେ 'ହରିଜନ' କାଗଜରେ ଲେଖିଲେ ଯେ ନିରଂଜନ ପଟ୍ଟନାୟକଙ୍କୁ କେହି କୌଣସି ସାଧାରଣ ପାଣ୍ଠି ଦାନ କରିବେ ନାହିଁ । ନିରଂଜନ ପଟ୍ଟନାୟକ କଂଗ୍ରେସରୁ ବିଦାୟ ନେଲେ । ଭଗ୍ନ ମନୋରଥ ନିରଂଜନ ପଟ୍ଟନାୟକ ତାଙ୍କର ସତ୍ରୁ ରାଜକିଶୋର ଦାସ (ଓକିଲ ଏବଂ ପରେ ବିଚାରପତି)ଙ୍କ ଘରେ କଟକରେ ଆସି ରହିଲେ । ପରେ ବୋଧହୁଏ ରିଲିଫ୍ କାମରେ ଗଂଜାମ ଯାଇ ଅସୁସ୍ଥ ହୋଇ ଫେରି ମୃତ୍ୟୁବରଣ କଲେ । କମ୍ୟୁନିଷ୍ଟ ନେତା ଶରତ ପଟ୍ଟନାୟକ ସ୍ମୃତିଚାରଣ କରୁଥିଲେ ଯେ ସେ ଯେତେବେଳେ ଚଳିତ ଶତାବ୍ଦୀର ତୃତୀୟ ଦଶକରେ ଗାନ୍ଧିଜୀଙ୍କୁ ତାଙ୍କର ଆଶ୍ରମରେ ଭେଟିଲେ, ସେ ଓଡ଼ିଶାର କେବଳ ନିରଂଜନ ପଟ୍ଟନାୟକଙ୍କ କଥା ପଚାରି ବୁଝିଥିଲେ, ଅନ୍ୟ କୌଣସି ନେତାଙ୍କ କଥା ସେ ଉଲ୍ଲେଖ କରି ନ ଥିଲେ ।

ଏଭଳି ଏକ ଘଟଣାର ପ୍ରତିଶୋଧ ନେବାକୁ ହେବ । ଏବଂ ଏହା ଘଟିଲା କଟକ ଜିଲ୍ଲାରେ । ଦଶପଲ୍ଲାର ମେଳି ସର୍ଦ୍ଦାର ଗୋବିନ୍ଦ ଚନ୍ଦ୍ର ମିଶ୍ର ଓଡ଼ିଶାର ଜଣେ ପ୍ରବାଦ ପୁରୁଷ । ଦଶପଲ୍ଲା ମେଳି ସମୟରେ ତାଙ୍କ ନାମରେ ୱାରେଣ୍ଟ ବାହାରିଲା । ମୃତ୍ୟୁଦଣ୍ଡ ସୁନିଶ୍ଚିତ । ଗୋବିନ୍ଦ ମିଶ୍ର ପୋଲିସର ଅର୍ଗଳି ଭେଦ କରି ଓଡ଼ିଶା ଛାଡ଼ି ପଳାୟନ କଲେ ଏବଂ ଗାନ୍ଧିଜୀଙ୍କ ଆଶ୍ରମରେ ବହୁ ବର୍ଷ ରହିଗଲେ ଗାନ୍ଧୀଙ୍କର ନିର୍ଭୟ ବାହୁଛାୟା ତଳେ । ସେ ବେଶ୍ କିଛି ବର୍ଷ ସେଠାରେ କଟାଇ ଫେରିଲେ ଓଡ଼ିଶାକୁ । ସେଠାରେ ଥିବାବେଳେ ସେ ବହୁ ଜାତୀୟବାଦୀ ଶିଳ୍ପପତିଙ୍କ ସହିତ ପରିଚିତ ହେବାର ସୁଯୋଗ ଲାଭ କରିଥିଲେ । ବିଶେଷତଃ ଘନଶ୍ୟାମ ଦାସ ବିରଳା, ଯମୁନାଲାଲ୍ ବଜାଜ୍ ଗୋଷ୍ଠୀ ସହିତ ତାଙ୍କର ପରିଚିତି ବେଶ୍ ଥିଲା । ସେ ଓଡ଼ିଶାକୁ ଆସି ଚମ୍ପାପୁର ଏବଂ ଜେନାପୁରରେ ଦୁଇଟି ଆଶ୍ରମ ପ୍ରତିଷ୍ଠା କରିଥିଲେ । ଗୋଟିକରେ କମ୍ୟୁନିଷ୍ଟ ନେତା ଶରତ ପଟ୍ଟନାୟକ ପରିଚାଳକ ଥିଲେ । ଆଶ୍ରମର ଚଳିବା ପାଇଁ ଆର୍ଥିକ ସଂକଟ ଦେଖାଦେଲେ ଗୋବିନ୍ଦ ମିଶ୍ର ଚାଲି ଯାଉଥିଲେ ଗାନ୍ଧୀ ଆଶ୍ରମକୁ ଏବଂ ଟଙ୍କା ଦି' ଚାରିହଜାର ଧରି ଫେରୁଥିଲେ । ସେଇତକ ଟଂକା ସେତେବେଳେ ଯଥେଷ୍ଟ ଥିଲା ଆଶ୍ରମ ଚଳିବା ପାଇଁ । ହଠାତ୍ କୁଆଡ଼େ ତାଙ୍କ ନାମରେ ଅଭିଯୋଗ ହେଲା ଗାନ୍ଧିଜୀଙ୍କ ପାଖରେ । ସେ ତାଙ୍କର ଆତ୍ମ-ଜୀବନୀରେ ସେ ଅଭିଯୋଗ କଥା ଉଲ୍ଲେଖ କରିଛନ୍ତି । ଘଟଣାର ସତ୍ୟତା କ'ଣ ମୁଁ ଜାଣିନାହିଁ । କିନ୍ତୁ ସେ ଅଭିଯୋଗ ଅବ୍ରାହ୍ମଣ ଗୋଷ୍ଠୀ ଦ୍ୱାରା

Digitized by srujan ka@gmail.com

ହୋଇଥିଲା ବୋଲି ଅଭିଯୋଗ । ଗାନ୍ଧିଜୀଙ୍କର ପଦକ୍ଷେପ ଗୋବିନ୍ଦ ମିଶ୍ରଙ୍କୁ କଂଗ୍ରେସର ମହାସ୍ରୋତରୁ ଅଲଗା କରିଦେଲା ।

ଏ ଘଟଣାର ସତ୍ୟାସତ୍ୟ କଥା ବିଚାରକୁ ନେବାର ପ୍ରଶ୍ନ ସ୍ୱତନ୍ତ୍ର । କିନ୍ତୁ ଏ ଘଟଣାର ଅଭିଯୋଗ କ'ଣ ଓଡ଼ିଶା ସ୍ତରରେ ମୀମାଂସା ହୋଇପାରି ନ ଥାନ୍ତା, ସତ୍ୟ ହୋଇଥିଲେ ବି । ଏ ଘଟଣା କ'ଣ ସେପରି ଗୁରୁତର ଯେ ଏହା ସିଧାସଳଖ ଗାନ୍ଧୀଙ୍କ ପାଖକୁ ଯିବାର ଆବଶ୍ୟକତା ପଡ଼ିଲା ? ନା, ଏହା ଓଡ଼ିଆମାନଙ୍କର ଏକ ଦୁର୍ବଳତା ? ଅନ୍ୟାନ୍ୟ ରାଜ୍ୟରେ କ'ଣ ଏପରି ଘଟଣା ଘଟିନାହିଁ ? ସେମାନେ କ'ଣ ଏହାକୁ ଗାନ୍ଧିଜୀଙ୍କ ପାଖକୁ ନେଇଥିଲେ ?

ଗୋବିନ୍ଦ ମିଶ୍ର ଆପଣାର ଜୀବନରେ ଏହି ଘଟଣାର ଆଭାସ ଦେଇଛନ୍ତି ଏବଂ ମଧ ଉଲ୍ଲେଖ କରିଛନ୍ତି ଯେ ଚମ୍ପାପୁର ଆଶ୍ରମର ପରିଚାଳକ ଶରତ ପଟ୍ଟନାୟକ ଆଶ୍ରମର ଅର୍ଥ ଏବଂ ଆଶ୍ରମର ଏକ ବିଧବା କନ୍ୟାକୁ ଧରି ଫେରାର ହୋଇଯାଇଥିଲେ ।

ଗୋବିନ୍ଦ ମିଶ୍ର ଜନ-ଜୀବନରୁ ତା'ପରେ ପ୍ରାୟ ଓହରି ଗଲେ ଏବଂ କେବଳ ଐତିହାସିକ ସୀମା ଆନ୍ଦୋଳନରେ ସେ ଆମ ସାଂଗରେ ଯୋଗଦେଇଥିଲେ ।

ଏଇ କରଣ-ବ୍ରାହ୍ମଣ ବୈରତା ଏକ ଗୋଷ୍ଠୀ ଭିତରେ ସୀମିତ ଥିଲା । କିନ୍ତୁ ସେମାନେ ଏତେ ପ୍ରଭାବଶାଳୀ ଥିଲେ ଯେ ତାହାର କୁପ୍ରଭାବ ଅନ୍ୟମାନଙ୍କୁ ପ୍ରଭାବିତ ଏବଂ ବିଷାକ୍ତ କରୁଥିଲା । ଏହା ସମାଜର ବିଭିନ୍ନ ସ୍ତରକୁ ବିଷାକ୍ତ କରିଥିଲା । ଏପରିକି ଅନେକ ସମୟରେ ଏହା ସାମ୍ୟବାଦୀମାନଙ୍କୁ ମଧ ଏହାର ଜ୍ୱଳନରେ ଦହନ କରିଛି । ଅବଶ୍ୟ ଏହାକୁ କିଏ କେତେବେଳେ କେଉଁ ତତ୍ତ୍ୱ, ନୀତି, ଆଦର୍ଶର ମୁଖା ପିନ୍ଧେଇପାରିଛି ସେ ସ୍ୱତନ୍ତ୍ର କଥା । ଏପରିକି ସାମ୍ୟବାଦୀ ବା କମ୍ୟୁନିଷ୍ଟ ଦଳର ଶ୍ରୀ ଗଂଗାଧର ରଥ (ବିଶିଷ୍ଟ ଆଡଭୋକେଟ) ଏବଂ ଡାକ୍ତର ନିରୁପମା ରଥଙ୍କ ବିବାହକୁ ସ୍ୱାଗତ କରିବା ପରିବର୍ତ୍ତେ କେତେକ ଏହାକୁ କରଣ-ବ୍ରାହ୍ମଣ ବିବାହ ନାମରେ ବିରୋଧ କରିଥିଲେ ଏବଂ ବିରୋଧ କରୁଥିବା ବ୍ୟକ୍ତିମାନେ କେତେକ ସାମ୍ୟବାଦୀ ଥିଲେ । ଏହି ବିବାହ କିନ୍ତୁ ଅଧ୍ୟାପକ ବଳଭଦ୍ର ପ୍ରସାଦଙ୍କ ପରି ବ୍ୟକ୍ତିମାନଙ୍କର ଅକୁଣ୍ଠ ସମର୍ଥନ ପାଇଥିଲା ଏବଂ ଏହାକୁ ପ୍ରକୃତ ସାମ୍ୟବାଦୀ ଜନୋଚିତ ବୋଲି ଅଭିହିତ କରୁଥିଲେ ଖୋଲାଖୋଲି ।

ଏ ସଂପର୍କରେ ପ୍ରସିଦ୍ଧ ବୈଜ୍ଞାନିକ ଜେ.ବି.ଏସ୍. ହାଲଡନଙ୍କର ଏକ ଲେଖା ମୋର ମନେପଡୁଛି । ସେ କେବଳ ଜଣେ ବୈଜ୍ଞାନିକ ନ ଥିଲେ, ବିଜ୍ଞାନର ସବୁ ବିଭାବ ଉପରେ ତାଙ୍କର ବ୍ୟୁତ୍ପତ୍ତି ଥିଲା । ସେ ବିଲାତ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କମିଟିର ସଭ୍ୟ ଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ବିଲାତରେ ଜାତୀୟ ସରକାର ଗଠିତ ହେଲା । ଜାଠ ଦଳର ନେତା ଉଇନଷ୍ଟନ ଚର୍ଚ୍ଚିଲ ପ୍ରଧାନମଂତ୍ରୀ ଏବଂ ତାଙ୍କର ପ୍ରବଳ ରାଜନୈତିକ ବିରୋଧି ଶ୍ରମିକ ଦଳର ନେତା କ୍ଲିମେଣ୍ଟ ଅଟଲି ଉପ-ପ୍ରଧାନମଂତ୍ରୀ । ଚର୍ଚ୍ଚିଲ ଏବଂ ଅଟଲି ଖୋଜିଲେ ଏକ ବୈଜ୍ଞାନିକଙ୍କୁ ଯେ ହେବେ

Digitized by srujan ka@gmail.com

ଯୁଦ୍ଧ ପାଇଁ ପରାମର୍ଶଦାତା ବୈଜ୍ଞାନିକ । ହଠାତ୍ ନିଯୁକ୍ତି ଦିଆଗଲା ହାଲଡନ୍‌ଙ୍କୁ ସେ ପଦବୀରେ । ପାର୍ଲ୍ୟାମେଣ୍ଟରେ ପାଟିତୁଣ୍ଡ ହେଲା । ହାଲ୍‌ଡନ୍ ଜଣେ କମ୍ୟୁନିଷ୍ଟ । ସେ ସବୁ ସାମରିକ ଗୁପ୍ତ ତଥ୍ୟ ଜାଣିବେ । ସୋଭିଏଟ୍ ୟୁନିଅନ ପାଖରୁ ଏହା ଗୁପ୍ତ ରହିପାରିବ କି ? ଜାଠ ଦଳର ନେତା ଚର୍ଚ୍ଚିଲ ଉତ୍ତର ଦେଲେ– ଆମେ ବହୁତ ଖୋଜି ଖୋଜି ଶେଷକୁ ହାଲଡନଙ୍କୁ ନିଯକ୍ତି ଦେଇଛୁ । ଇଂଲଣ୍ଡରେ ବହୁ ବିଶିଷ୍ଟ ପଦାର୍ଥବିଦ୍, ରସାୟନବିଦ୍, ପ୍ରାଣୀବିଜ୍ଞାନୀ ଅଛନ୍ତି । କିନ୍ତୁ ହାଲଡନଙ୍କ ଛଡ଼ା ଆଉ କୌଣସି ବୈଜ୍ଞାନିକ ଇଂଲଣ୍ଡରେ ନାହାନ୍ତି ଯେ ବିଜ୍ଞାନର ସବୁ ବିଭାବରେ ପାରଦର୍ଶିତା ଲାଭ କରିଛନ୍ତି । ଏହାଛଡ଼ା ହାଲଡନ ପ୍ରଥମେ ଜଣେ ବ୍ରିଟିଶ, ଦ୍ୱିତୀୟରେ ଜଣେ ବୈଜ୍ଞାନିକ, ତୃତୀୟରେ ଆଉ ଯାହା କିଛି । ଚର୍ଚ୍ଚିଲଙ୍କ ଭବିଷ୍ୟତ ବାଣୀ ସତ୍ୟ ବୋଲି ପ୍ରତିପାଦିତ ହେଲା । ଇଂଲଣ୍ଡର ଏକ ବୁଡ଼ାଜାହାଜ ବୁଡ଼ିଯାଇ ସେଥିରେ ଥିବା କିଛି ନାବିକ ଏବଂ ସୈନ୍ୟଙ୍କର ମୃତ୍ୟୁ ଘଟିଲା ପାଣି ଭିତରେ । ସେଥିପାଇଁ ତଦନ୍ତ ସକାଶେ ଏକ କମିଶନ ନିଯୁକ୍ତ ହେଲା । କମିଶନଙ୍କ ଆଗରେ ସାକ୍ଷ୍ୟ ଦେବେ ନିଜେ ବୈଜ୍ଞାନିକ ହାଲଡନ୍ । କିପରି ଅବସ୍ଥାରେ ତାଙ୍କର ମୃତ୍ୟୁ ଘଟିଥାଇ ପାରେ, ଏ ସଂପର୍କରେ ଆପଣାର ମତ ଦେବେ ସେ । କାହାନ୍ତି ସେ ? ହଠାତ୍ ଦେଖାଗଲା ହାଲଡନ୍ କୋର୍ଟ ଭିତରକୁ ପଶି ଆସୁଛନ୍ତି । ତାଙ୍କର ସମଗ୍ର ଦେହରେ ଯେପରି ଭୂମିକଂପ ହେଉଛି । ଆଖି ନିସ୍ତେଜ, ପାଟି ଶୁଖିଲା । କ'ଣ ହେଲା ହାଲଡନ୍‌ଙ୍କର ? ସମସ୍ତେ ଚକିତ ହୋଇ ଅନେଇ ରହିଲେ । ହାଲଡନ ପାଣି ଭିତରେ ବୁଡ଼ିଯାଇଥିବା ବୁଡ଼ାଜାହାଜର ଯାତ୍ରୀମାନଙ୍କ ଅବସ୍ଥା କଣ ହୋଇଥିବ ଜାଣିବା ପାଇଁ ଏକ ପବନଶୂନ୍ୟ ଗୃହରେ ଆପଣାକୁ ୪୮ ଘଣ୍ଟା ବନ୍ଦରଖି ପରୀକ୍ଷା କରିଛନ୍ତି । ଫଳରେ ତାଙ୍କର ସମସ୍ତ ସ୍ନାୟୁ ଦୋହଲି ଯାଇଛି ଏବଂ ତାଙ୍କ ଅବସ୍ଥା ସାଂଘାତିକ ହୋଇଯାଇଛି ।

ଜେ.ବି.ଏସ୍. ହାଲଡନ ଅନେକ ବୈଜ୍ଞାନିକ ଦୃଷ୍ଟିକୋଣକୁ ସହଜ ସରଳ ଭାଷାରେ ଲେଖିଛନ୍ତି । ତା' ଭିତରୁ ଗୋଟିଏ ହେଉଛି ଯେ ବିଭିନ୍ନ ଜାତିରେ ବିବାହ, ବିଭିନ୍ନ ଧର୍ମରେ ବିବାହ, ବିଭିନ୍ନ ଦେଶରେ ବିବାହ ହେଉଛି ବେଶି ବିଜ୍ଞାନସମ୍ମତ କାରଣ, ଏହା ଫଳରେ ଅଧିକ ଉନ୍ନତ, ଅଧିକ ବୁଦ୍ଧିମାନ ସନ୍ତାନ ଜନ୍ମ ହେବେ । ନିଜର ମାମୁଁ ଝିଅ ଭଉଣୀ ବା ସେଇପରି ନିକଟ ସଂପର୍କୀୟମାନଙ୍କ ଭିତରେ ବିବାହ ଫଳରେ ଜନ୍ମ ହେବା ସନ୍ତାନମାନେ ମାନସିକ ଓ ଶାରୀରିକ ଦୃଷ୍ଟିରୁ ବିକଳାଙ୍ଗ ହେବାର ସମ୍ଭାବନା ଅଧିକ । ସେ ଦୃଷ୍ଟିରୁ କରଣ-ବ୍ରାହ୍ମଣ ବିବାହ ବେଶି ବିଜ୍ଞାନସମ୍ମତ । କିନ୍ତୁ ଆମ ଦେଶରେ ଏହା ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଗୃହୀତ ହୋଇନାହିଁ ।

ମୋର ମାଉସୀ ପୁଅ ଭାଇ କଇନା ଗୋଟିଏ ମୁସଲମାନ ଝିଅକୁ ବିବାହ କରିଛି । ତାର ବିବାହ ପାଇଁ ପ୍ରତିବାଦ ଉଠିଥିଲା ଖୁବ୍ ତୀବ୍ର ଭାବରେ । ମଉସା ଲକ୍ଷ୍ମୀଧର ପଟ୍ଟନାୟକ ଏହାର ଘୋର ବିରୋଧି ଥିଲେ । କିନ୍ତୁ ମୁଁ ସେ ବିବାହ ସ୍ଥିର କରି ମଉସାଙ୍କୁ ଲେଖିଲି ଚିଠି । ମଉସା ମୋତେ ଖୁବ୍ ଭଲ ପାଆନ୍ତି । ନିଜେ ଖୁବ୍ ରକ୍ଷଣଶୀଳ । ପିଲାଦିନୁ ମୁଁ ବିଦ୍ରୋହୀ ପାଲଟିଥିବା

Digitized by srujan ka@gmail.com

ଯୋଗୁଁ, ସମାଜର ସବୁ ସଂସ୍କାର ନୀତି ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିବା ଯୋଗୁଁ ସେ ମୋତେ କିମିତି ଅହେତୁକ ଭଲପାଆନ୍ତି । ମୋର ମନେ ପଡୁଛି ସେ ବନ୍ତଳା (ଅନୁଗୋଳ)ରେ ଥାଆନ୍ତି ଫରେଷ୍ଟ ଅଫିସର । ମୁଁ ଏକ ମାର୍ଗଶୀର ମାସ ଗୁରୁବାରରେ ତାଙ୍କ ଘରେ ପହଞ୍ଚିଲି । ମଉଷା ମାଉସୀଙ୍କୁ ଡାକି କହିଲେ ଯେ ମୁଁ ଯାଇଛି, ତେଣୁ କୁକୁଡ଼ା ମାଉଁସ ହେବା ଦରକାର । ମାଉସୀ ଚିହିଁକି ଉଠି କହିଲା ଯେ ମାର୍ଗଶୀର ମାସ ଗୁରୁବାରରେ କୁକୁଡ଼ା ଘରେ କିମିତି ହେବ ? ମଉସା କହିଲେ ତମେ ତ ଜାଣ । ପିଲାଦିନୁ ସେ ସବୁଥିରେ ବିଦ୍ରୋହୀ । କିଛି ତ ମାନିନି । ରୋଷେଇ ଘରକୁ କୁକୁଡ଼ା ନ ଆଣି ସେ ପାଖ ଘରେ କରିଦିଅ । କୁକୁଡ଼ା ମାଂସ ସେଦିନ ହୋଇଥିଲା ।

ମଉସାଙ୍କୁ ମୁଁ ଚିଠି ଲେଖିଲି । ମୁଁ ଆପଣଙ୍କର ବିଦ୍ରୋହୀ ପୁତ୍ର । ବିବାହ ହେବ କଇନାର ସେ ମୁସଲିମ ଝିଅ ସହିତ । କାରଣ ସେମାନେ ବିବାହ କରିବା ପାଇଁ ସ୍ଥିର କରିଛନ୍ତି । ବିବାହର ସବୁ ଆୟୋଜନ ହୋଇ ସାରିଚି କିନ୍ତୁ କାର୍ଡ଼ ଛପା ହେବାକୁ ବାକି ଅଛି । ଆପଣଙ୍କ ନାମରେ କାର୍ଡ଼ ଛପାଯାଉଛି । ଆପଣ ନିଶ୍ଚୟ ଆସିବେ । ସେ ମୋତେ ''ଧମକାଇ' ଚିଠି ଦେଲେ କିନ୍ତୁ ସେ ଧମକ ଯେ ସ୍ନେହାପ୍ଲୁତ ତାହା ଜଣାପଡ଼ିଥିଲା ଚିଠିର ଭାଷାରୁ । ବିବାହ ହୋଇଗଲା । ମଉସାଙ୍କ ଛଡ଼ା ବାକି ସମସ୍ତେ ଆସିଥିଲେ । ସେ ନିଜେ ଏକଘରକିଆ ହୋଇଗଲେ ବୋଲି ଅନୁଭବ କଲେ । ସବୁ ବିବାଦ ତୁଟିଗଲା, ମଉସା ନିଜେ ଯାଇ ବୋହୂ ପୁଅକୁ ଭେଟିଲେ ତାଙ୍କର କର୍ମସ୍ଥଳୀରେ, ଏକ ନାଟକୀୟ ଢଂଗରେ ।

ମଉସା ରକ୍ଷଣଶୀଳ । ଥରେ ସେ ଆପଣାର ଘରେ ନୟାଗଡ଼ରେ ଏକାକୀ ଥିଲେ । ମାଉସୀ ଥିଲା ପୁଅ (୰ସୁଧାଂଶୁ ମୋହନ ପଟ୍ଟନାୟକ ଆଇ.ଏ.ଏସ୍) ପାଖରେ । ସେ ବର୍ଷ ଓଡ଼ିଶାରେ ସାଧାରଣ ନିର୍ବାଚନ ହେଉଥାଏ । ମୋ ମାଉସୀ ପୁଅ ଭାଇ ଫାପୁ (ବିଶ୍ୱମୋହନ ପଟ୍ଟନାୟକ, ଆଡ଼ଭୋକେଟ) ନିର୍ବାଚନରେ ପ୍ରାର୍ଥୀ ହୋଇଥାଏ । ତା ପାଇଁ ପ୍ରଚାର ସକାଶେ ମୋର ଗୋଟିଏ ମୁସଲିମ ଭଉଣୀ ମୁନି (ଶାହାନାଜ ବାନୁ, ବର୍ତ୍ତମାନ କଂଗ୍ରେସର ଜଣେ ନେତ୍ରୀ) ଯାଇଥାଏ । ସେ ଯାଇ ପହଞ୍ଚିଲା ମଉସାଙ୍କ ଘରେ । ପ୍ରଚାର ସହିତ ସେ ମଉସାଙ୍କ ପାଇଁ ବିଛଣା ପାରିଦେଲା, ଠାକୁରଙ୍କ ପାଇଁ ଫୁଲ ସଜାଡ଼ିଦେଲା, ଖାଇବା ପାଇଁ ବାଢ଼ିଦେଲା, ବାସନ ଉଠାଇ ନେଇଗଲା । ମଉସା, ମାଉସୀଙ୍କୁ ଚିଠି ଲେଖନ୍ତି । ''ମୋର ପାଟି ବନ୍ଦ । ମନେ ହେଉଛି ଯେପରି ଆମ ବୁଢ଼ୀ (ମଉସାଙ୍କ ଝିଅ) ମୋ ପାଇଁ ସବୁକରି ଦେଉଛି । ମୁଁ କିଛି କହି ପାରୁନି ।'' ଜାତିଧର୍ମର ନିଗଡ଼ ଭାଙ୍ଗି ଯାଇଛି ସ୍ନେହ ଓ ବିଶ୍ୱାସ ଆଗରେ । କିନ୍ତୁ ଯେଉଁଠି ତାହା ନାହିଁ ବା ସ୍ନେହ ତଥା ବିଶ୍ୱାସକୁ ଆଘାତ କରି ସବୁପ୍ରକାର ସଂକୀର୍ଣ୍ଣତା ଦେଖାଯାଏ । ପ୍ରତିକ୍ରିୟାଶୀଳ ଶକ୍ତି ସେଇଥିରୁ ଆପଣାର ଫାଇଦା ଉଠାଏ ।

Digitized by srujan ka@gmail.com

ଆମେ ଗଂଜାମ ଜିଲ୍ଲାରେ ପହଞ୍ଚିଲୁ । ସେଠାରେ ''କଟକିଆ''ମାନଙ୍କ ସଂପର୍କରେ ଗୀତ ବୋଲାଯାଉଥାଏ–

''ଚାହାଖିଆ ମଉଜ ଆଉ ରହିବ ନାହିଁ ।
କଟକୀବାବୁ ଯେ ଗଂଜାମେ ପଶିଲେ
ମୁଢ଼ି ଜଳଖିଆ ଦେଲେ ଚଳାଇ ।''

ଗଂଜାମ ଜିଲ୍ଲାରେ ଦୋଷା, ଇଟଲି, ଉପମା ଖୁବ୍ ଶସ୍ତା ଥିଲା । ଚାହା ତ ସେତେବେଳେ ସେମାନଙ୍କର ଦୈନନ୍ଦିନ ଖାଦ୍ୟ, ଜଳଖିଆ ଏତେ ଶସ୍ତା ଯେ ଲୋକେ ପ୍ରାୟ ଘରେ ଜଳଖିଆ ଖାଆନ୍ତି ନାହିଁ । କାହିଁକି ଖାଇବେ ? ହୋଟେଲସବୁ ଏପଟର ହୋଟେଲ ଅପେକ୍ଷା ବେଶୀ ପରିଷ୍କାର । ପତରରେ ଖାଇଲେ ଧୋଇବା ସମସ୍ୟା ନାହିଁ ବା ତତ୍‌ସହିତ ସଂପୃକ୍ତ ସମସ୍ୟା ନାହିଁ । ତେଣୁ ସ୍ୱାସ୍ଥ୍ୟକର ଖାଇବା ''ମିଲସ ରେଡି'' (Meals Ready) ସାଇନ୍ ବୋର୍ଡ଼ ଟଙ୍ଗାଇ ଦିଆଯାଏ ''ଟିଫିନ ରେଡି'' (Tiffin Ready) ପରେ । ମିଲ୍ସ ମଧ୍ୟ ବେଶ୍ ଶସ୍ତା । କେବଳ ରାଗର ପରିମାଣ ହେତୁ ଖାଇବା ଆମ୍ଭମାନଙ୍କ ପକ୍ଷରେ ଖୁବ୍ କଷ୍ଟ । ଏପରିକି ଚହ୍ଲା ମଧ୍ୟ ।

ଗୀତ ଶୁଭେ :

''ଚାହା, ଚୁପୁଲି, ଚହ୍ଲା
ଏ ତିନୋଟି ନ ହେଲେ ଗଂଜାମି ମଲା ।''

ଚପଲ ରହିବା ଗୋଡ଼ରେ ନିଶ୍ଚୟ । ସେତେବେଳେ କଟକ-ପୁରୀ ଜିଲ୍ଲାରେ ଚପଲର ଏତେ ପ୍ରଚଳନ ନାହିଁ । ଖାଲି ଗୋଡ଼ ନଚେତ୍ ଯୋତା । କିନ୍ତୁ ଗଂଜାମରେ ଏକ ବିଚିତ୍ର ଡ୍ରେସ ! ପ୍ୟାଣ୍ଟ ଭିତରେ ସାର୍ଟ ଭର୍ତ୍ତିକରି ପିନ୍ଧିବାକୁ ଗର୍ବ ବା ସେମାନଙ୍କ ଭାଷାରେ ଟେମ୍ପର ବୋଲି ଧରାଯାଉଥିଲା । କିରେ ବାପା ବଡ଼ ଟେମ୍ପର । ସାର୍ଟ ଇନ୍ କରି ପିନ୍ଧିଛୁ ! ଆମକୁ ତାହାର ଶରବ୍ୟ ହେବାକୁ ପଡ଼ିଲା । ଫୁଲ ପ୍ୟାଣ୍ଟ, ସାର୍ଟ ଉପରେ ପଡ଼ିଛି, ଟାଇ ପିନ୍ଧା ହୋଇଛି କିନ୍ତୁ ଗୋଡ଼ ଖାଲି । ଏଭଳି ଡ୍ରେସ ପିନ୍ଧିବା ଲୋକ ବହୁତ । ଆମପାଇଁ ତାହା ହାସ୍ୟ ସୃଷ୍ଟି କରେ । କିନ୍ତୁ ଫୁଲପ୍ୟାଣ୍ଟର ପ୍ରଚଳନ ପ୍ରଚୁର । ଆମ ଏପଟର ଲୋକ ଧୋତି, ହାପ୍‌ପ୍ୟାଣ୍ଟ ପ୍ରାୟତଃ ପିନ୍ଧୁଥିଲେ । ଏପରିକି ମୁଁ ରେଭେନ୍ସା କଲେଜକୁ ଆସିଲାବେଳକୁ ଫୁଲପ୍ୟାଣ୍ଟ ପିନ୍ଧୁଥିବା ଛାତ୍ରଙ୍କ ସଂଖ୍ୟା ନଗଣ୍ୟ । ଧୋତି ନଚେତ୍ ହାପ୍‌ପ୍ୟାଣ୍ଟ । ଆମ କ୍ଲାସରେ ମୋର ସହପାଠୀ ଥିଲେ ଜେ. ବି. ପାସ୍କାଲ ସିଂ । ଆମଠାରୁ ବହୁତ ବଡ଼ ବୟସରେ । ସେ ପାଦ୍ରୀ । ତେଣୁ ସେଇ ଡ୍ରେସ ପିନ୍ଧି ଆସନ୍ତି । ତାଙ୍କୁ ଆମର ଇଂରାଜୀ ସାହିତ୍ୟ ଅଧ୍ୟାପକ ଭି.ରି. ଜନ୍ ''ଫାଦର୍'' ବୋଲି ସମ୍ବୋଧନ କରନ୍ତି । ଠିକ୍ ସେଇପରି ଆମର ଜଣେ ସହପାଠୀ ଥିଲେ ଯେ ଆମର ଦର୍ଶନ ଅଧ୍ୟାପକ ଗଣେଶ୍ୱର ମିଶ୍ରଙ୍କର ଏକଦା ସହପାଠୀ । ତାଙ୍କର ନାମ ମନେପଡୁ ନାହିଁ । ସେ ଯୁଦ୍ଧରେ ଯୋଗ ଦେଇଥିଲେ ଏବଂ ଯୁଦ୍ଧ ସରିଲାପରେ ପଢ଼ିବାକୁ ଆସିଥିଲେ ପୁଣି । ପଶ୍ଚିମ ଛାତ୍ରାବାସରେ ରହନ୍ତି ଏବଂ

Digitized by srujan ka@gmail.com

ସେତେବେଳେ ଅଧ୍ୟାପକ ଗଣେଶ୍ୱର ମିଶ୍ର ପଶ୍ଚିମ ଛାତ୍ରାବାସର ସୁପରିଟେଣ୍ଡେଣ୍ଟ । ଗଣେଶ୍ୱରବାବୁ ହଷ୍ଟେଲ ପରିଦର୍ଶନ କଲାବେଳେ ତାଙ୍କର ସହପାଠୀ ରହୁଥିବା ପାଞ୍ଚଜଣିଆ କୋଠରୀକୁ ସବାଶେଷରେ ଯାଆନ୍ତି ଏବଂ ସହପାଠୀଙ୍କ ଖଟ ଉପରେ ବସି ଗପ କରନ୍ତି କିଛି ସମୟ । ଫାଦର ପାସ୍କାଲ ସିଂ (ପରେ କ୍ୟାମ୍ପିଜ ସ୍କୁଲର ପ୍ରତିଷ୍ଠାତା) ଏବଂ ଉକ୍ତ ସାମରିକ ବାହିନୀରୁ ପ୍ରତ୍ୟାବର୍ତ୍ତନ କରିଥିବା ଛାତ୍ର ପ୍ରାୟ ଫୁଲପ୍ୟାଣ୍ଟ ପିନ୍ଧି ଆସନ୍ତି । ସେଇ ଦୁଇଜଣଙ୍କ ହାତରେ ଘଣ୍ଟା ଥାଏ । ଅନ୍ୟମାନଙ୍କ ଖାଲି ହାତ । ଏ ଦୁଇଜଣଙ୍କୁ ଆମେ ବିସ୍ମୟର ସହିତ ଅନଉ ।

ମୁଁ ଜାଣି ନ ଥିଲି ଯେ ମୋ ଭାଗ୍ୟରେ ବି ଦିନେ ସେଇଆ ଘଟିବ । ୧୯୫୪ ମସିହାର କଥା । ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସର ୪୭ ନମ୍ବର ରୁମ୍ । ପାଞ୍ଚଜଣଙ୍କ ଭିତରେ ଶରତ ଚନ୍ଦ୍ର ମିଶ୍ର (ପରେ ପୁଲିସ ବିଭାଗର ଡି.ଜି.) ରୁଦ୍ରପ୍ରସନ୍ନ ଜେନା, ଚତୁର୍ଥ ବ୍ୟକ୍ତି ହେଉଛନ୍ତି ପ୍ରଶାନ୍ତ ସିହ୍ନା, (ତାଙ୍କର ଖବର ସେତେବେଳେ ପାଇବା କଠିନ ଥିଲା ଏବଂ ଆଜି ମଧ ମୁଁ ଜାଣେନା ତାଙ୍କର ଠିକଣା) ଏବଂ ମୁଁ । ପଞ୍ଚମ ଛାତ୍ର ଆମର କନିଷ୍ଠ ଶ୍ରେଣୀର ତାଙ୍କ ନାମ ମୋର ମନେପଡୁନି । ଶରତବାବୁଙ୍କ ବଡ଼ଭାଇ ଗଣେଶ୍ୱର ମିଶ୍ର । ମୋ ଉପର ଶ୍ରେଣୀରେ ପଢୁଥିଲେ । ସେଇଯୋଗୁଁ ଶରତ ମୋତେ ଚିହ୍ନିଥିଲେ ଆଗରୁ । ରୁଦ୍ର କିନ୍ତୁ ମୋତେ ଜାଣି ନ ଥିଲେ । ମୁଁ କିଛି ବର୍ଷ ପଢ଼ା ଛାଡ଼ି ଦେଇଛି ଶୁଣି ସେ କାରଣ ପଚାରିଲେ । ମୁଁ କିଛି ନ କହିବାରୁ ସେ ଭାବିଲେ ଯେ ମୁଁ ବୋଧହୁଏ ଫେଲଫାଲ ହୋଇ ବୁଲୁଥିଲି । ରୁଦ୍ର ଜଣେ ଭଲ ଛାତ୍ର ଥିଲେ ଏମ.ଏ. ଫାଇନାଲ ପରୀକ୍ଷାରେ ସେ କିଛି ପେପର୍‌ରେ ଭଲ ହେଲା ନାହିଁ ବୋଲି ପରୀକ୍ଷା ଅଧାରୁ ଉଠି ଆସିଲେ । କିନ୍ତୁ ସେ କଣ ଜାଣିଥିଲେ ଯେ ଯାହାକୁ ସେ ଖରାପ ହୋଇଛି ଭାବି ଅଧାରୁ ଉଠି ଆସିଛନ୍ତି ସେଇତକରେ ସେ ଏପରି ଭଲ କରିଛନ୍ତି ସେ ପୂରା ପରୀକ୍ଷା ଦେଇଥିଲେ ପ୍ରଥମ ଶ୍ରେଣୀ ନିଶ୍ଚୟ ପାଇଥାନ୍ତେ ? ଉତ୍ତୀର୍ଣ୍ଣ ହେଲେ କିନ୍ତୁ ସ୍ୱାଭାବିକ କାରଣରୁ ଭଲ ଶ୍ରେଣୀ ମିଳିଲା ନାହିଁ । ଭଲ ଛାତ୍ର ହୋଇଥିବା ଯୋଗୁଁ ସେ ମୋ ସାଂଗରେ ଥଟ୍ଟା-ତାମସା ଟିକିଏ କଲେ । ମୁଁ କିଛି କହୁନାହିଁ ଦେଖି ଶରତ ବି ତାକୁ କିଛି କହିଲେ ନାହିଁ । ଶରତ ଭାରି ଉଇଟି ଏବଂ ଧୂର୍ତ୍ତ (witty) । ପାଠ ଯେପରି ଭଲ ପଢ଼ନ୍ତି ଚିମୁଟିବା ଗୁଣ ବି ସେମିତି ଥିଲା । ଏବେ ବି ସେପରି ଅଟୁଟ ରହିଛି । ତୀବ୍ର ସାଟାୟରରେ ସେ ଅପୂରନ୍ତ । ସେ କାହାକୁ ଛାଡ଼ନ୍ତି ନାହିଁ । ସଦାଶିବ ବାବୁ ପ୍ରିନ୍ସିପାଲ, ଆମର ଶିକ୍ଷକ ମଧ । ତାଙ୍କର ମଧ ସେଇପରି ଗୁଣ ଅଛି । ପିଲାମାନେ ଠିଆ ହୋଇ ଗପ କରୁଥିଲେ । ହଠାତ୍ ସଦାଶିବ ବାବୁ ଆସି ପହଞ୍ଚିଲେ, ପଚାରିଲେ କ'ଣ ହେଉଛି ? ପିଲାମାନେ ବାଟ ଭାଙ୍ଗି ଚାଲିଯିବାକୁ ଆରମ୍ଭକଲେ । କିନ୍ତୁ ଶରତ ଉତ୍ତର ଦେଲେ 'ଖରା' । ଖରା କ'ଣ ? ସଦାଶିବ ବାବୁ ପଚାରିଲେ । ଶରତ ଉତ୍ତର ଦେଲେ ଖରା ହେଉଚି । ସଦାଶିବ ବାବୁ କିଛି ନ କହି ଚାଲିଗଲେ । କ୍ଲାସରେ ପଢ଼ାଉଥିଲା ବେଳେ ଦିନେ ସଦାଶିବ ବାବୁ ମାର୍କେଟିଂ ପଢ଼ାଉଥିଲେ । ସାଧାରଣତଃ ବଡ଼ ଇଂରାଜୀ ଖବରକାଗଜମାନଙ୍କର ଷଷ୍ଠ ପୃଷ୍ଠାରେ ଥାଏ

Digitized by srujan ka@gmail.com

ମାର୍କେଟ ସଂବାଦ । ଅନେକ ଅର୍ଥନୀତି ଛାତ୍ର ମଧ୍ୟ ତାକୁ ପଢ଼ନ୍ତି ନାହିଁ, (ମୋ ସମେତ) କାରଣ ସେଥିରୁ ଅଧିକାଂଶ ବୁଝିହୁଏ ନାହିଁ । ସଦାଶିବ ବାବୁ ଚିମୁଟି ଦେଲାପରି କହିଲେ ତମେ ତ ସବୁ ଖବରକାଗଜ ପଢ଼ କିନ୍ତୁ ଷଷ୍ଠ ପୃଷ୍ଠା ତ ପଢ଼ନାହିଁ । ଶରତ ଉଠି କହିଲେ ମୁଁ ଇଷ୍ଟର୍ଣ୍ଣ ଟାଇମସ୍ ପଢ଼େ । ଇଷ୍ଟର୍ଣ୍ଣ ଟାଇମସ୍ ମାତ୍ର ଚାରି ପୃଷ୍ଠା । ସଦାଶିବ ବାବୁ ସାଂଗେ ସାଂଗେ କହିଲେ ମୁଁ ପରାଜୟ ସ୍ୱୀକାର କରୁଛି ( I admit defeat ) ।

ସର୍ବଭାରତୀୟ ପରୀକ୍ଷା ଦେଇଥିବା ଛାତ୍ରମାନଙ୍କର ମାର୍କସିଟ୍ ଯେ ଛପାହୁଏ ଏବଂ କିଣିବାକୁ ମିଳେ ଏହା ଖୁବ୍ କମ ଲୋକ ଜାଣନ୍ତି । ଶରତ କିନ୍ତୁ ସେଥିରୁ ଗୋଟାଏ ନିଶ୍ଚୟ ମଗାଇବେ ଏବଂ ସେଇଟିକୁ ଧରି କ୍ଲାସକୁ ଯିବେ । ଏବଂ ବହିଟିକୁ ଥୋଇଥିବେ ଟେବୁଲ ଉପରେ ଯେପରି ସମସ୍ତେ ଦେଖି ପାରିବେ । ଜଣେ ଇଂରାଜୀ ଅଧ୍ୟାପକ ପଢ଼ାଉଛନ୍ତି ଇଂରାଜୀ । ସେ ଟିକିଏ ଫୁଟାଣି ଦେଖାନ୍ତି ତାଙ୍କ ଜ୍ଞାନର । ସେ ପରୀକ୍ଷା ଦେଉଥିଲେ ଆଇ.ଏ.ଏସ୍. । ଶରତଙ୍କ ପାଖରେ ମାର୍କସିଟ୍‌ର ଛପା ବହି । ସେ ଅଧ୍ୟାପକ ଆଡଭାନ୍ସ ଇଂରାଜୀ ପେପରରେ ଶୂନ ପାଇଛନ୍ତି । ଠିକ୍ ସେଇପରି ଜଣେ ଇତିହାସ ଅଧ୍ୟାପକ ଇତିହାସରେ ପାଇଛନ୍ତି ମାତ୍ର ନଅ ନମ୍ବର । ଦେଖ embarassment ସେମାନଙ୍କର । କିନ୍ତୁ କଣ କହିବେ ବା କରିବେ ସେମାନେ ? ଶରତଙ୍କର ଏଇ ଅଭ୍ୟାସ ବର୍ତ୍ତମାନ ପର୍ଯ୍ୟନ୍ତ ଅତୁଟ ରହିଛି ଏବଂ ସେଇଯୋଗୁଁ ସେ ବେଶ ଜୀବନ୍ତ ଆଗ୍ରହ ସୃଷ୍ଟିକାରୀ । ଦିନେ ରୁଦ୍ରଙ୍କୁ ଭେଟିବା ପାଇଁ ତାଙ୍କର ଶିକ୍ଷକ ବୈଷ୍ଣବ ଆସିଲେ ହଷ୍ଟେଲକୁ । ସେ ମୋର ସହପାଠୀ ଥିଲେ ଏବଂ କମ୍ ବୟସରେ ଜେଲ ଯାଇଥିବା ଯୋଗୁଁ, ପଲ୍ଲାତକ ଜୀବନ ଯୋଗୁଁ ମୋ ପ୍ରତି ତାଙ୍କର ଦରଦ ଓ ଶ୍ରଦ୍ଧା ଥିଲା ପ୍ରଚୁର । ମୋତେ ଦେଖି ସେ କୁଣ୍ଢେଇ ପକାଇଲେ ଏବଂ ତାଙ୍କ ଆଖିରୁ ଲୁହ ଗଡ଼ିପଡ଼ିଲା । ବର୍ତ୍ତମାନ ଦେଖ ରୁଦ୍ରଙ୍କୁ ? ଯାହାକୁ ସେ ଗଲା କେତେଦିନ ହେଲା ହେୟ ଜ୍ଞାନ କରି ଆସୁଛନ୍ତି ସେ ମଣିଷଟାର କ'ଣ ଏପରି ଏକ ଚରିତ୍ର ? ସେ ଏତେ ଅପ୍ରତିଭ ହୋଇଗଲେ ଯେ କିଛିଦିନ ମୋ ସାଂଗରେ କଥା ବି କହିନାହାନ୍ତି । ଶରତଙ୍କ ଉପରେ ତାଙ୍କର ରାଗ ଦେଖ ! ସେ ତାଙ୍କୁ କାହିଁକି ମୋ ବିଷୟରେ କିଛି କହିନାହାନ୍ତି ! ଆଉ ଶରତ ତ ଏଇପରି ସୁବିଧା ଖୋଜନ୍ତି । ପରେ ରୁଦ୍ର ମୋର ଜଣେ ଘନିଷ୍ଠ ବଂଧୁ ହୋଇ ଉଠିଲେ ଏବଂ ନିର୍ବାଚନରେ ମୋର ଏକ ଦୃଢ଼ ପ୍ରଚାରକରେ ପରିଣତ ହେଲେ ।

ଗଂଜାମ ଜିଲ୍ଲା ସହିତ ମୋର ପ୍ରଥମ ପରିଚିତି ଏଭଳି ଏକ ସଂପର୍କ ପ୍ରତିଷ୍ଠା କଲା ଯାହା ମୋ ଜୀବନରେ ଏକ ସ୍ଥାୟୀ ପ୍ରଭାବରେ ପରିଣତ ହେବ ଏହା କଣ କିଏ ଜାଣିଥିଲା ? ଯେଉଁ ଭଦ୍ରଲୋକ ଆମ ପରିବାରକୁ ବସ୍‌ଷ୍ଟାଣ୍ଡରେ ଭେଟି ରହିବା ଚୋଲଟ୍ରି (chowltry)କୁ ନେଇଗଲେ ଏବଂ ପରେ ଆମ ଦୁଇ ଭାଇଙ୍କୁ ତାଙ୍କ ଘରକୁ ଖାଇବାକୁ ନେଇଗଲେ ସେ ଯେ ପରେ ମୋର ଶ୍ୱଶୁର ହେବେ ଏ କଥା କିଏ ଜାଣିଥିଲା ? ଉଦୟନାଥ ପଟ୍ଟନାୟକ ଆଉ ନାହାନ୍ତି । ୧୯୫୪ ମସିହାରେ ତାଙ୍କର ହଠାତ୍ ପରଲୋକ ହୋଇଯାଏ । ସେ ୰ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ

Digitized by srujan ka@gmail.com

ଭଣଜା କିନ୍ତୁ ଦକ୍ଷିଣରେ ମାମୁଁ ଝିଅ ଭଉଣୀକୁ ବିବାହ କରିବା ପ୍ରଥାକୁ ମାନି ସେ ବିବାହ କରିଥିବାରୁ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ଜ୍ୱାଇଁ ମଧ୍ୟ । ପିଲାଦିନରୁ ସେ ମାମୁଁଙ୍କ ପ୍ରଭାବରେ ଆସିଥିଲେ ଏବଂ ସ୍ୱାଭାବିକ ଭାବରେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ସେ ନିଜେ ବ୍ରାହ୍ମ ହୋଇ ନଥିଲେ ସତ୍ୟ କିନ୍ତୁ ହିନ୍ଦୁ ଧର୍ମର ନିଗଡ଼କୁ ପରିତ୍ୟାଗ କରିଥିଲେ । ଉପାସନା ଛଡ଼ା ତାଙ୍କ ଘରେ ଆଉ କୌଣସି ପର୍ବପର୍ବାଣୀ ନ ଥିଲା । ସେ ପରଲୋକ ଗମନ କରିବା ବେଳକୁ ତାଙ୍କର ବଡ଼ଝିଅ (ଇନ୍ଦୁ) ବିବାହ କରିଥାଏ । ବଡ଼ପୁଅ ବିନୟ କୁମାର ଆଲାହାବାଦରୁ କୃଷି ବିଜ୍ଞାନରେ ସ୍ନାତକ ଡିଗ୍ରୀ ଲାଭ କରି ଚାକିରି ଆରମ୍ଭ କରିଥାନ୍ତି ମାତ୍ର । ଗୋଟିଏ ଭାଇ (ହୃଦୟ କୁମାର, ଡାକନାମ ବାବୁ) କୁଆଡ଼େ ଚାଲିଯାଇଛି ୧୯୪୬-୪୭ ମସିହାରୁ । ତାର ଆଉ ପତ୍ତା ମିଳିନାହିଁ ଏ ପର୍ଯ୍ୟନ୍ତ । କେବେ କେବେ କୌଣସି ଏକ ବାବା ବା ସେଇପରି ଏକ ମଣିଷକୁ ସେଇ ଲୋକ ବୋଲି ଅନୁମାନ କରି ପରିବାର ଦୌଡ଼ୁଛନ୍ତି ତାଙ୍କୁ କାଳେ ଭେଟିପାରିବେ ଆଶାରେ କିନ୍ତୁ ସବୁ ଭୁଲ୍ ବୋଲି ପ୍ରମାଣିତ ହୋଇଛି । ହୃଦୟ କୁମାର ମୋର ସହପାଠୀ ଥିଲେ । ଏଭଳି କୌଣସି ଷ୍ଟ୍ରିକ (Strick) ବା ଧାରା ତାଙ୍କ ଭିତରେ ମୁଁ ଦେଖି ନ ଥିଲି ଯାହା ତାଙ୍କୁ ପଳାତକ କରି ପାରିଥିବ । କିନ୍ତୁ କିଛି କହି ହେବ ନାହିଁ । ମଣିଷର କେଉଁ ସୂକ୍ଷ୍ମ ତନ୍ତ୍ରୀରେ ଆଘାତ ଲାଗିଲେ ମଣିଷ ଘର ଛାଡ଼େ– ପଳାତକ ହୁଏ, ବାବାଜୀ ହୁଏ କିଏ କହିବ ? ମୁଁ ଆଗରୁ କହିଛି ଯେ ବାପାଙ୍କର ଜଣେ ଦାଦା ଯାଇଥିଲେ ଯୋଗନ୍ଦା ବୁଲି । ସେଇଠାରୁ ସେ ଫେରି ମାଗିଥିଲେ ନିଜ ଘରେ ଭିକ୍ଷା ।

ଗଞ୍ଜାମ ଜିଲ୍ଲା ସେତେବେଳେ ଥିଲା ଏକ ଉନ୍ନତ ଜିଲ୍ଲା । ମୋର ତତ୍‌କାଳୀନ କୋରାପୁଟ ଜିଲ୍ଲା ସହିତ ବିଶେଷ ପରିଚିତି ନାହିଁ । କେବଳ ପାରଳାଖେମୁଣ୍ଡି ସ୍କୁଲରେ ସ୍ୱଳ୍ପ ଦିନ ପଢ଼ିଥିଲି । ସେତେବେଳେ ପାରଳା ରାଜାଙ୍କ ପାଇଁ ସ୍ୱତନ୍ତ୍ର ରାସ୍ତାଥିଲା, ମୋର ସେତିକି ମନେଅଛି । କାରଣ ସେ ରାସ୍ତାରେ ନ ଯିବା ପାଇଁ ତାଗିଦ ମିଳିଥିଲା ଆମ ପରିବାରର ରହିବା ଆରମ୍ଭଦିନ ଠାରୁ । ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଭଞ୍ଜ ଦେଓ ଓଡ଼ିଆ ଭାଷାଭାଷୀ ପ୍ରଦେଶ ଗଠନ ଆନ୍ଦୋଳନର ମହାରଥୀ । ଅନ୍ୟମାନଙ୍କ ପରି ସେମାନଙ୍କୁ ମଧ୍ୟ (ରାଜା ହେଲେ ବି) ଅନ୍ୟ ଭାଷାମାନଙ୍କ ବଡ଼ଭାଇପଣିଆର ଶିକାର ହେବାକୁ ପଡୁଥିଲା ଏବଂ ସେମାନଙ୍କର ଆତ୍ମ-ଅଭିମାନକୁ ଆହତ କରିଥିଲା । ତା'ଛଡ଼ାର "ନିଜ" ରାଜ୍ୟରେ ମୁରବୀ ହେବାର ଗୌରବ ଏବଂ ଗର୍ବ କେତେ ବେଶି ?

ଆଗରୁ କହିଛି ଯେ ଗଞ୍ଜାମ ଜିଲ୍ଲାର ବିକାଶ ଅନ୍ୟ ଜିଲ୍ଲାମାନଙ୍କ ତୁଳନାରେ ବହୁତ ବେଶି । ଏହାର ରାସ୍ତା ବୋଧହୁଏ ଓଡ଼ିଶାର ସବୁଠାରୁ ଭଲ ରାସ୍ତା ଏବଂ ଯୋଜନାବଦ୍ଧ । ଗୋଟିଏ ଉଦାହରଣ ଦେଲେ ଚଳିବ । ଆସ୍କାକୁ କେନ୍ଦ୍ରବିନ୍ଦୁ ଭାବରେ ଧରାଗଲେ ରସେଲକୋଣ୍ଡା (ବର୍ତ୍ତମାନ ଭଞ୍ଜନଗର), ଧରାକୋଟ, ବ୍ରହ୍ମପୁର, ସୋରଡ଼ା ପ୍ରଭୃତି ସବୁ ୨୫ ମାଇଲ ଭିତରେ । ସେତେବେଳେ ପ୍ରାଇଭେଟ ବସ୍ ସର୍ଭିସ । ଗଞ୍ଜାମ ଜିଲ୍ଲାରେ ଖୋଲା ବସସବୁ । ସେପରି ବସ୍

Digitized by srujan ka@gmail.com

ଅନ୍ୟତ୍ର ନାହିଁ । ମୋର ମନେ ପଡୁଛି ଭଞ୍ଜନଗରରୁ ବ୍ରହ୍ମପୁରକୁ ଟିକଟ ଅଣାଏ ମାତ୍ର । କାରଣ ପ୍ରତିଯୋଗିତା ତୀବ୍ର । ଗଞ୍ଜାମ ଜିଲ୍ଲାରେ ବ୍ରହ୍ମପୁର-ଛତ୍ରପୁର ସହରକୁ ପାଣି ଯୋଗାଣ ତଥା ଗଞ୍ଜାମ ଜିଲ୍ଲାରେ ଜଳସେଚନ ପାଇଁ ଭଂଜନଗର ସୋରଡ଼ାର ଘାଇ ଏବଂ ରୁଷିକୁଲ୍ୟା ସମେତ ବିଭିନ୍ନ ନଦୀକୁ ନେଇ ଜଳସେଚନ ଯୋଜନା ପ୍ରକୃତରେ ଅଭିନବ । ଘାଇ, ଘାଇରୁ କେନାଲ, କେନାଲରୁ ନଈ, ପୁଣି କେନାଲ, ପୁଣି ଘାଇ ଏଇପରି ଏକ ଜଳସେଚନ ଯୋଜନା କମ ଖର୍ଚ୍ଚରେ କରାଯାଇଥିଲା ବ୍ରିଟିଶ ରାଜୁତି କାଳରେ । ଏଥିରେ ପାଣି ବେଶି ନଷ୍ଟ ହୁଏ ସତ୍ୟ କିନ୍ତୁ ଖର୍ଚ୍ଚ ଦୃଷ୍ଟିରୁ ଅନେକ କମ୍ । ଭଂଜନଗରରେ ଏଇ ଘାଇରୁ ବାଉଁଶପତିରି ନାମକ ଏକ ମାଛ ମିଳେ, ଯାହା ଓଡ଼ିଶାରେ ଅନ୍ୟତ୍ର ମିଳେନା । ବେଶ୍ ସୁସ୍ୱାଦୁ । ଭଂଜନଗର ଏହାର 'ବୋଦା' ମାଂସ (ଖାସି ନୁହେଁ) ପାଇଁ ପ୍ରସିଦ୍ଧ କାରଣ ଏଇ ବୋଦାମାନେ କେବଳ ସବୁଜପତ୍ର ଖାଇଥାଆନ୍ତି, ତେଣୁ ମାଂସ ଖୁବ୍ ଭଲ ।

ମୋର ମନେପଡୁଛି, ବାପା ଥାଆନ୍ତି ସମ୍ବଲପୁରରେ । ତାଙ୍କର ଚିଫ୍ କନଜରଭେଟର ଜେ.ଡବଲ୍ୟୁ. ନିକଲସନ ଆସିଥାଆନ୍ତି ବାର୍ଷିକ ଗସ୍ତରେ । ସେ ପଚାରିଲେ ବାପାଙ୍କୁ, ମିଷ୍ଟର ପଟ୍ଟନାୟକ, ଆପଣ ଏଠି ଛଅବର୍ଷ ରହିଲେଣି । ଏକ ଟ୍ରାନ୍ସଫର ସୂଚନା ବହନ କରୁଛି । ଆପଣ କେଉଁଠିକୁ ଯିବେ ? ରସେଲକୋଣ୍ଡା ନା ସୋରଡ଼ା । ସେତେବେଳକୁ "yours faithfully" ଯୁଗ ଆରମ୍ଭ ହୋଇ ନାହିଁ । ସେତେବେଳେ ଅଧସ୍ତନ କର୍ମଚାରୀମାନେ ଲେଖୁଥିଲେ "I beg to remain Sir, "Your most obedient servant"। ବାପା ଉତ୍ତର ଦେଲେ ''ଆପଣଙ୍କ ଇଚ୍ଛା ।''

ନିକଲ୍‌ସନ କହିଲେ ଯେ ଆପଣଙ୍କର ଦୁଇଟି ପିଲା ତେଣୁ ଆପଣ ଯିବା ଉଚିତ ସେଇ ଜାଗାକୁ ଯେଉଁଠି ସ୍କୁଲ ଥିବ ଏବଂ ଜଳବାୟୁ ଭଲଥିବ । ନୁହେଁ କି ? ଅଚ୍ଛା, ଆପଣ ରସେଲକୋଣ୍ଡା ଏବଂ ସୋରଡ଼ା ଭିତରୁ କେଉଁଟିକୁ ବାଛିବେ ? ବାପା ଉତ୍ତର ଦେଲେ– ''ମୁଁ ରସେଲକୋଣ୍ଡା ବାଛିବି ।'' ହସିଦେଇ ନିକଲସନ କହିଲେ ଯେ ''ମୁଁ କିନ୍ତୁ ଶୁଣିଲି ଯେ ଆଉ ରସେଲକୋଣ୍ଡାରେ ଭଲ ମାଂସ ମିଳୁନାହିଁ ବୋଲି । ଆଚ୍ଛା ! ଆପଣ ରସେଲକୋଣ୍ଡା ଯିବେ । ପିଲାମାନଙ୍କୁ ଏଠା ସ୍କୁଲରେ ଆଡମିଶନ କରାଇବେ ନାହିଁ । ତା'ପରେ ଟୁର୍ ରିପୋର୍ଟରେ ଲେଖିଲେ ଯେ ଏଇ ଫରେଷ୍ଟ ଅଫିସର ଜୁନ ୬ ତାରିଖରେ (୧୯୪୬) ମସିହାରେ ବଦଳିହେବେ ରସେଲକୋଣ୍ଡା । ସେ ପିଲାପିଲି ନେଇଯିବେ । ଯଦି ସରକାରୀ କ୍ୱାଟର ଖାଲି ହୋଇ ନ ଥାଏ ତା'ହେଲେ ସେ ଜଙ୍ଗଲ ବିଭାଗର ଡାକ ବଙ୍ଗଳାରେ ରହିବେ । ରସେଲକୋଣ୍ଡା ହାଇସ୍କୁଲରେ ତାଙ୍କର ଦୁଇ ପିଲାଙ୍କ ପାଇଁ ସ୍ଥାନ ସଂରକ୍ଷିତ ରହିବ । ଏଇଟା ହେଉଛି ୧୯୪୫ ମସିହା ଅକ୍ଟୋବର ମାସ କଥା । ଜୁନ୍, ୬, ୧୯୪୬ ଦିନକୁ ଆମେ ସବୁ ସମ୍ବଲପୁର ଛାଡ଼ି ସାରିଥିଲୁ । ବାଟରେ ରେଢ଼ାଖୋଲରେ ମଉସା ଥାଆନ୍ତି ଫରେଷ୍ଟ ଅଫିସର । ଆମେ ସେଇଠି କିଛି ଦିନ ରହିବୁ । ତା'ପରେ ବାପା

Digitized by srujan ka@gmail.com

(ଦାଦା ଆସିଥାନ୍ତି ସୁରଗୁଜା ରୁ) ଆଉ ଦାଦା ଆସି ଆମ ସାଙ୍ଗରେ ଯୋଗଦେବେ । ଜୁନ ମାସ ୬ ତାରିଖ ସକାଳୁ ଟ୍ରେନ ଆସିବ, ଡାକ ଆସିବ । ବାପା ଓ ତାଙ୍କର ରଲିଭର (୰ରଣଜିତ ମହାପାତ୍ର) ଅପେକ୍ଷା କରିଛନ୍ତି ତାଙ୍କୁ । ଅର୍ଡ଼ର ଆସିଲା ଏବଂ ବାପା ଫେରନ୍ତା ଗାଡ଼ିରେ ଉଠିଲେ ସମ୍ବଲପୁର ଦେଇ ରେଢ଼ାଖୋଲ ଯିବାକୁ । ଅକ୍ଟୋବର ମାସ ଅର୍ଡ଼ରରେ କିଛି ପରିବର୍ତ୍ତନ ହୋଇନାହିଁ । କେବଳ ଜୁନ୍ ମାସରେ ସବୁ ବଦଳି ହୁଏ । ସେଇଟା ଟ୍ରାନ୍ସଫର ସିଜିନ୍ । ପିଲାମାନଙ୍କର ଖରାଛୁଟି । ସେତିକିବେଳେ ହିଁ ବଦଳିହେଲେ ପିଲାମାନଙ୍କର ପଢ଼ିବାକୁ ସୁବିଧା ହୁଏ ଏବଂ ଟ୍ରାନ୍ସଫର ହୋଇ ଯାଉଥିବା ସରକାରୀ କର୍ମଚାରୀମାନଙ୍କ ପିଲାମାନଙ୍କ ପାଇଁ ସିଟ୍ ରିଜର୍ଭେଶନ ହୋଇଥାଏ । ଏଇଥିଲା ବ୍ରିଟିଶ ସରକାରଙ୍କର ନୀତି ।

ବର୍ତ୍ତମାନ ସେ ସବୁ ନାହିଁ । ପ୍ରତିଦିନ ଖବରକାଗଜ ପୃଷ୍ଠାରେ ସରକାରୀ କର୍ମଚାରୀମାନଙ୍କର ବଦଳି ଆଦେଶ ପ୍ରକାଶ ପାଉଛି ତାହା ପୁଣି ଗେଜେଟେଡ ଅଫିସର ମାନଙ୍କର । ଅଣ-ଗେଜେଟେଡ଼ କର୍ମଚାରୀମାନଙ୍କ କଥା ଛାଡ଼ ! ଯୁକ୍ତି କରାଯାଏ ଯେ ବର୍ତ୍ତମାନ ସରକାରୀ କର୍ମଚାରୀମାନଙ୍କ ସଂଖ୍ୟା ବହୁତ ବେଶି । ଏ ଯୁକ୍ତି ନିରର୍ଥକ । କାରଣ ଠିକ୍ ସେଇପରି ଟ୍ରାନ୍ସଫରିଙ୍ଗ ଅଥରିଟିମାନଙ୍କ ସଂଖ୍ୟା ବହୁତ ବେଶି ତ ! କିନ୍ତୁ ବିପଦ ହେଉଛି ଅନ୍ୟତ୍ର । ବର୍ତ୍ତମାନ ସବୁ ଦ୍ୱିତୀୟ ଶ୍ରେଣୀ କର୍ମଚାରୀମାନଙ୍କ ବଦଳି ପାଇଁ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ ଆବଶ୍ୟକ । ଓଡ଼ିଶାରେ ଲକ୍ଷାଧିକ ଦ୍ୱିତୀୟ ଶ୍ରେଣୀ କର୍ମଚାରୀ । ସେମାନଙ୍କୁ ମୁଖ୍ୟମନ୍ତ୍ରୀ ଜାଣନ୍ତି, ନା ଜାଣନ୍ତି ସେମାନଙ୍କର କାର୍ଯ୍ୟକାଳ, ନା ବଦଳିର ଆବଶ୍ୟକତା । ମାତ୍ର କିଛି ବର୍ଷତଳେ ଓଡ଼ିଶାର ବନ୍ୟବିଭାଗର ମୁଖ୍ୟ ଚିଫ୍ କନ୍‌ଜରଭେଟର ଦିନେ ଏକ ତାଲିକା ନେଇ ଉପସ୍ଥିତ ହେଲେ ତତ୍‌କାଳୀନ ବନ୍ୟବିଭାଗର ସେକ୍ରେଟାରୀଙ୍କ ପାଖରେ । ଦୁହେଁ ମୋର ପରିଚିତ । ତେଣୁ ମୁଁ ବସିଥିବା ସତ୍ତ୍ୱେ ସେମାନେ କଥାବାର୍ତ୍ତା ହେବାରେ ବାଧା ନ ଥିଲା । ପ୍ରାୟ ଦୁଇ ତିନି ଶହ ରେଞ୍ଜ ଅଫିସରଙ୍କ ବଦଳି ଆଦେଶ ହାତରେ ଧରିଛନ୍ତି ସେ । ସେକ୍ରେଟାରୀ ଜଣେ ନୀତିବାନ ଟାଣୁଆ ଲୋକ । ସେ ବିସ୍ମିତ ହୋଇ ପଚାରିଲେ ଯେ ଏସବୁ କ'ଣ ?

ଆପଣ ଏ ତାଲିକା ଧରି ମୋ ପାଖକୁ କାହିଁକି ଆସିଛନ୍ତି ? ମୋର କ'ଣ କାମ ଏଇଟା ? ଆପଣଙ୍କର କଣ କିଛି କାମ ନାହିଁ ? ଆପଣଙ୍କୁ ଏ କାମ କରିବାକୁ କିଏ କହିଲା ? ରେଞ୍ଜ ଅଫିସରମାନଙ୍କର ବଦଳି କନଜରଭେଟରମାନଙ୍କର କାମ । କେବଳ ଡିଭିଜନ ବାହାରକୁ ବଦଳି ଆଡମିନିଷ୍ଟ୍ରେଟିଭ୍ ଗ୍ରାଉଣ୍ଡରେ ବା ରିପ୍ରେଜେଣ୍ଟେସନ ଜରିଆରେ ହେବ । କେବଳ ସେତିକି ଆପଣ ସଂପୃକ୍ତ କନଜରଭେଟର ମାନଙ୍କ ସହିତ କଥାବାର୍ତ୍ତା କରିବେ । ଆପଣ ଏ ଲମ୍ବା ତାଲିକା ମୋ ପାଖକୁ କାହିଁକି ଆଣିଛନ୍ତି । ମୁଁ ବନ୍ୟବିଭାଗର ନୀତି ନିର୍ଦ୍ଧାରଣ କରିବି ନା ଫରେଷ୍ଟ ରେଞ୍ଜର, ଫରେଷ୍ଟରମାନଙ୍କ ବଦଳି ଦେଖିବି ?

Digitized by srujan ka@gmail.com

ବିନୀତ ଭାବରେ ଚିଫ୍ କନ୍‌ଜରଭେଟରର ଫରେଷ୍ଟରମାନଙ୍କର ଏକ ତାଲିକା ମଧ୍ୟ ବାହାର କଲେ ଏବଂ କହିଲେ ଯେ ମନ୍ତ୍ରୀ ତାଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଏ ତାଲିକା ପ୍ରସ୍ତୁତ କରି ଆପଣଙ୍କ ସହିତ ତାଙ୍କ ପାଖକୁ ଯିବା ପାଇଁ । କଥାଟାର ଗୁମର ଫିଟିଗଲା । ବିରକ୍ତ ହୋଇ ସେକ୍ରେଟେରୀ କହିଲେ ଯେ ମୁଁ ଏଠାରେ ସେକ୍ରେଟେରୀ ଥିବା ପର୍ଯ୍ୟନ୍ତ ଏଭଳି କାର୍ଯ୍ୟ କରିବି ନାହିଁ ଏବଂ ଆପଣଙ୍କୁ ବି କରିବାକୁ ଦେବି ନାହିଁ । କାରଣ ଏହାର ଅସଲ ଉଦ୍ଦେଶ୍ୟ ବଦଳି ନୁହେଁ । ଆଉ ଯାହା ତା' ଆପଣ ଜାଣନ୍ତି ।

ସେକ୍ରେଟେରୀଙ୍କ ବଦଳି ହୋଇଗଲା ତା' ପରଦିନ, ମନ୍ତ୍ରୀଙ୍କ ହସ୍ତକ୍ଷେପ ଫଳରେ । କାରଣ ମନ୍ତ୍ରୀ ଖୋଜୁଛନ୍ତି ପ୍ଲାଏବଲ (Pliable) ଅଫିସର ଏବଂ ଟ୍ରାନ୍ସଫର ପାଇଁ ହାତଗୁଞ୍ଜା । ଏହା ଖାଲି ବନ୍ୟ ବିଭାଗର କଥା ନୁହେଁ । ସବୁ ବିଭାଗରେ ସେଇପରି ।

ବିଗତ ଦଶନ୍ଧିରେ ମୋର ଜଣେ ବନ୍ଧୁ ଶିକ୍ଷାମନ୍ତ୍ରୀ ଥିଲେ । ସେ ପଇସା ଛୁଅନ୍ତି ନାହିଁ । ସେଗୁଡ଼ାକ ଯାହା ହୁଏ ସବୁ ତାଙ୍କ ପତ୍ନୀ, ପୁଅ ଏବଂ ବୋହୂଙ୍କ ଜରିଆରେ । ସେମାନଙ୍କ ପାଖରେ ଗୋଟାଏ ଛପା କାଗଜ ଥାଏ– ଲେକଚରର ପାଇଁ, ରିଡର ପାଇଁ, ଏବଂ ପ୍ରଫେସରମାନଙ୍କ ପାଇଁ ରେଟ୍ ଧାର୍ଯ୍ୟ ହୋଇଥାଏ । ଯିଏ ଗଲେ ତାକୁ ପଚରାଯାଏ– ତମେ ଲେକଚରର, ରିଡର, ନା ପ୍ରଫେସର ? ୟୁନିଭର୍ସର ଜଣେ କର୍ମୀ ସନ୍ତୋଷ କୁମାର ରାୟଚୌଧୁରୀଙ୍କୁ ଧରି ତାଙ୍କ ଭଉଣୀ ଥରେ ଯାଇଥିଲେ ବଦଳି ପାଇଁ ଏବଂ ଏହା ତାଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତା ।

ସମୟ ବଦଳି ଯାଉଛି । ଯିଏ କାମ କରାଇ ନେଇ ପାରିଲା ସେ ହେଉଛି ଏଫିସିଏଣ୍ଟ । କରପ୍ଟ ବଟ୍ ଏଫିସିଏଣ୍ଟ, (Corrupt but efficient) ଭ୍ରଷ୍ଟାଚାରୀ କିନ୍ତୁ ଧାର୍ମିକ (Corrupt but religious) ଇମିତି ଶବ୍ଦର ବ୍ୟବହାର ବହୁତ ବେଶୀ । ଆଗେ ଜଣେ ଅଫିସର ସସ୍‌ପେଣ୍ଡ ହୋଇଗଲେ ସେ ମୁଣ୍ଡ ତଳକୁ କରି ଚାଲୁଥିଲା । ବର୍ତ୍ତମାନ ଝିଅ ପାଇଁ ଇଞ୍ଜିନିଅର ଜୋଇଁ ଖୋଜିଲେ, ପଚରାଯାଉଛି କେତେଥର ସସ୍‌ପେଣ୍ଡ ହେଲଣି, କେତେଥର ଭିଜିଲାନ୍ସ ଚଢ଼ଉ ହେଲାଣି ? ଯେତେ ବେଶି ସସ୍‌ପେଣ୍ଡ, ଯେତେ ବେଶି ଚଢ଼ଉ, ସେତିକି ବିବାହ ବଜାରରେ ଜୋଇଁଙ୍କ ଦର ଚଢ଼ା । ଏମାନଙ୍କୁ ଦେଖିଲେ ବର୍ଣ୍ଣାଡ଼ ଶ ଙ୍କର ସେଣ୍ଟ ଜୋଆନ ଡ୍ରାମା ମନେପଡ଼େ ।

ଯେତିକି ବେଶି କରପ୍‌ସନ୍ ସେତିକି ବେଶି ଧାର୍ମିକ ଭାବନା । ମନେପଡ଼େ ଥରେ ବର୍ଟାଣ୍ଡ ରସେଲ କହିଥିଲେ ଯେ When a person says that he is religious, I immediately become suspicious. ପଣ୍ଡିତ ନୀଳକଣ୍ଠ ଦାସ ଏଇମାନଙ୍କୁ ଆଖ୍ୟା ଦେଇଥିଲେ 'ଭାକ୍ତିକ ଭାଣ୍ଡ' ବୋଲି, ଏମାନେ ସମସ୍ତଙ୍କୁ ଠକି ସାରିଲା ପରେ ଭଗବାନଙ୍କୁ ମଧ୍ୟ ଠକିବା ପାଇଁ ବାହାରିଛନ୍ତି ଏବଂ ତାଙ୍କ ନାଆଁରେ ଚାନ୍ଦା ଆଦାୟକରି, ମନ୍ଦିରଟିଏ କି ଧର୍ମାନୁଷ୍ଠାନଟିଏ ତୋଳି, ବା ଆଖିବୁଜି କଞ୍ଚା ମିଛ କହି ଖସିଯିବାକୁ ଚାହାନ୍ତି ।

Digitized by srujan ka@gmail.com

ମୋର ଜଣେ ସଂପର୍କୀୟ ଓଡ଼ିଶାର ଶାସନକଳରେ ଏକ ବିଶିଷ୍ଟ ଅଫିସର ଥିଲେ । ସେ ବର୍ତ୍ତମାନ ଜୀବିତ । ତେଣୁ ତାଙ୍କ ନାମ କହୁନାହିଁ । ସେ କୌଣସି ବାବାଙ୍କର ପ୍ରଚଣ୍ଡ ଭକ୍ତ । ସେ ବାବା ଯେ କୌଣସି ସ୍ଥାନରେ ଉଭା ହୋଇପାରନ୍ତି, ମାଟିରୁ ଫୁଟି ବାହାରି ପାରନ୍ତି ଏହାକୁ ସେ ସମସ୍ତଙ୍କ ଆଗରେ ବଖାଣନ୍ତି । ନିଜର ଜ୍ଞାନ ଯେ ସଂପୂର୍ଣ୍ଣ ଏଭଳି ଧାରଣା ମୋର ଆଦୌ ନାହିଁ ! କାରଣ ଜ୍ଞାନ ହେଉଛି ଅସୀମ । ଆଜି ଯାହା ସତ୍ୟ ତାହା କାଲିକି ମିଥ୍ୟା ହୋଇଯାଉଛି । ଆଜି ଯାହା ଧର୍ମ କାଲି ତାହା ଅଧର୍ମ ହୋଇଯାଉଛି । ଅନେକ ବିଷୟ, ଅନେକ କଥା ମୁଁ ଜାଣିନାହିଁ । ହୁଏତ କିଛି ଥାଇପାରେ ଯାହା ମୋତେ ଜଣା ନାହିଁ । ତେଣୁ ମୁଁ କାହାକୁ ନାହିଁ କରେ ନାହିଁ । ଭୂତ ପ୍ରେତରେ ମୋର ବିଶ୍ୱାସ ନାହିଁ । ଭୂତପ୍ରେତରେ ବିଶ୍ୱାସ କରୁଥିବା ଅନେକ ପ୍ରବକ୍ତାଙ୍କ ପାଖକୁ ଯାଇଛି, ନିମନ୍ତ୍ରଣ କରିଛି କହିବା ପାଇଁ ଏବଂ ଭୂତପ୍ରେତଙ୍କୁ ଦେଖାଇବା ପାଇଁ । କିନ୍ତୁ ଏ ପର୍ଯ୍ୟନ୍ତ ସଫଳ ହୋଇ ନାହିଁ । ଅନେକ ସମ୍ମତି ଦେଇଛନ୍ତି କିନ୍ତୁ ପରେ ପଛଘୁଞ୍ଚା ଦେଇଛନ୍ତି । ଏଇ ଭଳି ଜଣେ ବ୍ୟକ୍ତି ଥରେ ଆମ ଘରେ ପହଞ୍ଚିଲେ, ବୟସ ମୋ ଠାରୁ କମ । ସେ ଏଇପରି ଆଗତ ଭବିଷ୍ୟତ କଥା କହିଦେଇ ପାରନ୍ତି ବୋଲି ଦାବି କଲେ । ମୁଁ ସାତ ଆଠ ଜଣ ବିଭିନ୍ନ ବିଭାବର ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରିଥିଲି । ନାସ୍ତିକ (atheist), ଆଗ୍ନୋଷ୍ଟିକ (agnostic), ଭଗବଦ୍ ବିଶ୍ୱାସୀ, ବାବାଜୀମାନଙ୍କଉପରେ ବିଶ୍ୱାସୀ ଏଇପରି ବିଭିନ୍ନ ବିଭାବର ମଣିଷ । ସମସ୍ତେ ଚୌକିରେ ବସିଲେ କିନ୍ତୁ ଉକ୍ତ ଅଫିସର ତଳେ ବସିଲେ । ବାବାଙ୍କ ଆଗରେ ସେ ଧାର୍ମିକ ଲୋକ ଚଉକୀରେ ବସିବେ ! ବିଭିନ୍ନ ପ୍ରଶ୍ନର ତାଲିକା ହେଲା । ଉକ୍ତ ଅଫିସର ବନ୍ଧୁ ଦୁଇଟି ପ୍ରଶ୍ନ ଲେଖିଲେ (ପ୍ରଶ୍ନ ସବୁ ଗୁପ୍ତରେ କାଗଜରେ ଲେଖାଯାଏ) ପ୍ରଥମ ପ୍ରଶ୍ନ– ଭିଜିଲାନ୍ସ ଏନ୍‌କ୍ୱାରୀ କ'ଣ ହେବ ଏବଂ ଦ୍ୱିତୀୟ ପ୍ରଶ୍ନ– ପୁଅ ବିଷୟରେ କ'ଣ ହେବ ? ସଂସାର ନାହିଁ, ସମାଜ ନାହିଁ, ସମୂହର ପ୍ରଶ୍ନ ନାହିଁ, ଖାଲି ନିଜ ଉପରେ ପ୍ରଶ୍ନ ।

ମୋର ବନ୍ଧୁ ଜଣେ ଧାର୍ମିକ, ଖୁବ୍ କରପ୍ଟ । ଉଭୟ ବିଷୟରେ ତାଙ୍କର ଖ୍ୟାତି ଭାରତବ୍ୟାପୀ । ସେ ଆଖିବୁଜି ମିଛ କହିଯାଆନ୍ତି ଅନର୍ଗଳ । ବାଟରେ ଯାଉଥିଲେ ସେ । ହଠାତ୍ ଶ୍ରୀକୃଷ୍ଣଙ୍କ ସାଙ୍ଗରେ ଦେଖାହେଲା । ସେମାନେ ଦୁଇଜଣ ସାଙ୍ଗ ହୋଇ ଗପିଗପି ଚାଲିଲେ ଇତ୍ୟାଦି । ଏଭଳି ଗପ ଅନ୍ୟମାନେ ଶୁଣନ୍ତି, କିନ୍ତୁ ଗୋପନରେ ବିଦ୍ରୋହ ଜାତ ହୁଏ ।

ପାଗଳ ଓ ମଦୁଆ । ଏହା ଭିତରେ ମୋତେ ପାଗଳକୁ ବେଶି ଭୟ ଲାଗେ । ଠିକ୍ ସେଇପରି ଏଇପରି ଭାକ୍ତିକ ଭାଣ୍ଡମାନଙ୍କୁ ଦେଖିଲେ ମୋର କିମିତି ଆଲର୍ଜି ବୋଧହୁଏ । କିନ୍ତୁ ସମସ୍ତେ ତ ସିମିତି ନୁହନ୍ତି । ଯେପରି ମୋର ବନ୍ଧୁ ବିଶ୍ୱମ୍ଭର ସାମନ୍ତ । ତାଙ୍କୁ କେହି ଦୀକ୍ଷା ଦେଇନାହିଁ । ସେ ନିଜେ ଖୋଜିଛନ୍ତି ଏବଂ ପଢ଼ିଛନ୍ତି । ଖୋଜି ଏବଂ ପଢ଼ି ସେ ଶ୍ରୀ ଅରବିନ୍ଦଙ୍କ ଦର୍ଶନକୁ ଗ୍ରହଣ କରିଛନ୍ତି । ସେଥିପାଇଁ ଗେରୁଆ ବସ୍ତ୍ର ଧାରଣ କରିବାକୁ ହୋଇନାହିଁ, କମଣ୍ଡଳୁ ଧରିବାକୁ ହୋଇନାହିଁ କି ନିଜର ପ୍ରଚାର ପାଇଁ ମାଧମ ଆବଶ୍ୟକ ହୋଇନାହିଁ ।

Digitized by srujan ka@gmail.com

ସେ ଆସିଥିଲେ ରାଜବଂଶରୁ । କିନ୍ତୁ ସାମ୍ୟବାଦୀ ପାଲଟିଗଲେ । କୁଜଙ୍ଗର ଶେଷ ରାଜା ଷଣ୍ଢ ରାଜାଙ୍କର ଶେଷ କୁଳାଙ୍କୁର ସେ । କୁହାଯାଏ ତାଙ୍କର ପୂର୍ବ ପୁରୁଷ କେହି ଅଚ୍ୟୁତାନନ୍ଦ ଦାସଙ୍କୁ ଅପମାନ କରିଥିଲେ ଏବଂ ସେ ଅଭିଶାପ ଦେଇଥିଲେ ଯେ ତାଙ୍କ ବଂଶ ନିର୍ମୂଳ ହୋଇଯାଉ । ପରେ ତାଙ୍କର ରାଗ କୁଆଡ଼େ ଶାନ୍ତ ହୋଇଗଲା ଏବଂ ସେ କହିଲେ ଯେ ଏଇ ବଂଶରେ ଛଅ ପୁରୁଷ ପରେ ମୁଁ ଜନ୍ମ ହେବି । ସେଇଠାରୁ ଏଇ ବଂଶ ଲୋପ ପାଇଯିବ । ବିଶ୍ୱମ୍ଭର ସେଇ ପୁରୁଷର ପ୍ରତିଭ । ବିଶ୍ୱମ୍ଭର ଅବିବାହିତ, ଭଉଣୀ ଉମୁନୀ ଏବଂ ଭିଣୋଇ ମନୋଜ ପ୍ରାୟ ସନ୍ନ୍ୟାସୀ, ସବା ସାନ ଭଉଣୀ ବାଣୀ ତାଭ୍ରରାଣୀ । ସେ ମଧ୍ୟ ଅବିବାହିତା । ଅନେକ ଲୋକଙ୍କର ବିଶ୍ୱାସ ଯେ ବିଶ୍ୱମ୍ଭର ହେଉଛନ୍ତି ଅଚ୍ୟୁତାନନ୍ଦ । କୁଜଙ୍ଗ ଅଞ୍ଚଳରେ ତାଙ୍କୁ ଅନେକ ପୂଜା କରିବାର ଦେଖିଛି । ବିଶ୍ୱମ୍ଭର ମିଛ କହି ପାରନ୍ତି ନାହିଁ । କେବେ ଠିକ୍ ସତ୍ୟ ନ କହିଥିଲେ ପର ମୁହୂର୍ତ୍ତରେ ସେ ନିଜେ କହନ୍ତି, ''ତମେ କଥାଟାକୁ ବିଶ୍ୱାସ କରିଗଲ କି ? ସେଇଟା ସତ୍ୟ ବା ପୂରା ସତ୍ୟ ନୁହେଁ ।'' ଏଭଳି ମଣିଷ ମିଳିବା ବିଚିତ୍ର । ତାଙ୍କ ସହିତ ଏକମତ ନ ହେଲେ ବି ତାଙ୍କ ଡିସ୍-ଆର୍ମିଙ୍ଗ ବକ୍ତବ୍ୟର ପ୍ରତିବାଦ କରିବାକୁ ଇଚ୍ଛାହୁଏ ନାହିଁ ।

ଗଂଜାମ ଜିଲ୍ଲାରେ ସେତେବେଳେ ଗୌଡ଼ୀୟ-ବୈଷ୍ଣବ ପ୍ରଭାବ ବହୁତ ଥିଲା । ରସେଲକୋଣ୍ଡା ସହରରେ ଏକ ମଠ ଥିଲା ସେମାନଙ୍କର । ଗାଁ ଗାଁରେ ରାଧା ପ୍ରେମଲୀଳା ଗୋଷ୍ଠୀ ସବୁ ଥିଲେ । ପିଲାମାନଙ୍କୁ ସ୍କୁଲକୁ ନ ପଠାଇ ବାପାମାନେ ରାଧାପ୍ରେମଲୀଳା ନାଟ୍ୟ ଗୋଷ୍ଠୀରେ ଭର୍ତ୍ତି କରି ଦେଉଥିଲେ । କୁହାଯାଏ ଯେ ଶ୍ରୀଚୈତନ୍ୟ ରାମାନନ୍ଦ ପଟ୍ଟନାୟକଙ୍କୁ ଦେଖାକରିବା ପାଇଁ ରାଜମହେନ୍ଦ୍ରୀ ଯିବା ବାଟରେ ଯେଉଁ ସବୁ ଗ୍ରାମ ଦେଇ ଯାଉଥିଲେ ସେଇ ସବୁ ସ୍ଥାନରେ ରାଧାପ୍ରେମଲୀଳା ପ୍ରଭାବ ବେଶି ପଡ଼ିଥିଲା, ତାଙ୍କରି ଯୋଗୁଁ । ରସେଲକୋଣ୍ଡା ସହରରେ ଏଇ ବାବାଜୀମାନେ ମୋର ଜନ୍ମଦିନ ପାଳନ ଦିନ ଆମ ଘରେ କୀର୍ତ୍ତନ କରନ୍ତି । ସେମାନେ କୀର୍ତ୍ତନ କରି ନାଚନ୍ତି ଏକ ବିଶାଳ ବୃତ୍ତାକାର ସ୍ଥାନରେ । ସେଇ ବୃତ୍ତର ଗୋଟିଏ ସ୍ଥାନରେ ଏକ ଗଦି ପଡ଼ିଥାଏ । ସେମାନେ ଜଣକ ପରେ ଜଣେ ନାଚି ନାଚି ତାରି ଉପରେ ମୂର୍ଚ୍ଛା ହୋଇଯାଆନ୍ତି । ବିରାଟ ବୃତ୍ତ । ମାତ୍ର ଗୋଟିଏ ଜାଗାରେ ଗଦି ପଡ଼ିଛି । ସମସ୍ତେ ସେଠି ଖସି ପଡୁଛନ୍ତି କିମିତି !

ମୋତେ କିଏ ଶିଖାଇ ଦେଇଥିବ ନିଶ୍ଚୟ । ତେବେ ଟିକିଏ ଟିକିଏ ମନେପଡୁଛି, ବୋଧହୁଏ ୰ଦେବ ମହାପାତ୍ର । ଜଣେ ବିଶିଷ୍ଟ କୀର୍ତ୍ତନିଆ ସେଇ ଗଦି ପାଖକୁ ଗଲାବେଳକୁ ମୁଁ ପାଟିକରି ଉଠିଲି, ହଁ, ହଁ, ସେଇଠି ଗଦି ଅଛି, ସେଇଠି ଖସିପଡ଼ ! ସେ ତ ଆଉ ଖସି ପଡ଼ି ପାରିଲେ ନାହିଁ । ବେଶ୍ ଚାଞ୍ଚଲ୍ୟ ହୋ ହାଲ୍ଲା ହେବାର ମନେ ପଡୁଛି । ମୋ ଉପରେ ଗାଳି ବର୍ଷଣ ହେଲା, ମୁଁ ତଟସ୍ଥ ହୋଇ ଠିଆ ହୋଇଛି । ବାବାଜୀମାନେ କୀର୍ତ୍ତନ ବନ୍ଦ କରିଦେଲେଣି । ମୋ ଉପରେ ଅଭିଶାପ ବୃଷ୍ଟି ହେଲାଭଳି ମନେ ପଡୁଛି । ହଠାତ୍ ଶୁଣିଲି ମୋ ଦାଦା ଏବଂ

Digitized by srujan ka@gmail.com

ଦେବବାବୁଙ୍କ ଚିତ୍କାର । ସେମାନେ ମୋ ସପକ୍ଷରେ ଖୁବ୍ ଜୋରରେ ପାଟି କରିବାକୁ ଆରମ୍ଭ କଲେ । ପିଲା ମନକୁ ଯାହା ଅଖାଡୁଆ ଲାଗିଲା ସେ କହିଲା, ତା'ଉପରେ ଗାଳି କାହିଁକି ? ବାବାଜୀମାନଙ୍କର ଯଦି ମୂର୍ଚ୍ଛା ହୋଇଯିବାର କଥା ଅନ୍ୟ ଜାଗାରେ ମୂର୍ଚ୍ଛା ଗଲେନାହିଁ, ଠିକ୍ ସେଇ ଗଦି ଉପରେ କାହିଁକି ?

ଆଉ ଆମଘରେ ଜନ୍ମଦିନ ଉପଲକ୍ଷେ କୀର୍ତ୍ତନ ହୋଇନାହିଁ ଏବଂ ପିଲାଦିନରୁ ଏଇ କୀର୍ତ୍ତନିଆଙ୍କ ପ୍ରତି କିମିତି ଏକ ବିରାଗ ରହିଛି । ପରବର୍ତ୍ତୀ କାଳରେ ମୁଁ ଚୈତନ୍ୟ ଚରିତାମୃତ ପଢ଼ିଛି, ବୈଷ୍ଣବଧର୍ମ ଉପରେ ସଭାର ଆୟୋଜନ କରିଛି, ଜାଣିବା ପାଇଁ ଧର୍ମର ମହାତ୍ମ୍ୟ । 'ଚୈତନ୍ୟ ଚରିତାମୃତ' ପଢ଼ି ମୋର ଆଉ ଏକ ସନ୍ଦେହ ଉପୁଜିଛି । ଗୁରୁ କିଏ ? ଚୈତନ୍ୟ ନା ରାୟ ରାମାନନ୍ଦ ? ଚୈତନ୍ୟ ପଚାରୁଛନ୍ତି, ରାମାନନ୍ଦ ଉତ୍ତର ଦେଉଛନ୍ତି । କହିଲାବେଳେ ଅବଶ୍ୟ ରାମାନନ୍ଦ କହୁଛନ୍ତି ଯେ ତୁ ତ ସବୁ ଜାଣୁ, ତଥାପି ଶୁଣ ମୁଁ କହୁଛି । ଏଥିରୁ ଗୁରୁ କିଏ, ଶିଷ୍ୟ କିଏ ଠଉରାଇବା କଠିନ ।

ଏ ସଂପର୍କରେ ୰ମୋହନ ଦାସ ତାଙ୍କ ଜୀବନର ଅଭିଜ୍ଞତା କଥା କହୁଥିଲେ । ସେ କମ୍ୟୁନିଷ୍ଟ ପାର୍ଟିକୁ ଆସିବା ପୂର୍ବରୁ ଭାରତୀୟ ଜାତୀୟ କଂଗ୍ରେସର ଜଣେ ନେତା ଥିଲେ ଏବଂ ପୁରୀ ଜିଲ୍ଲା ବୋର୍ଡ଼ର ସଭାପତି ହୋଇଥିଲେ । ସେ ଥରେ କୋଣାର୍କ ଅଞ୍ଚଳକୁ ଯାଇଥିଲେ ସରକାରୀ ଗସ୍ତରେ । ସେତିକିବେଳେ ସେ ଅଞ୍ଚଳର ଜମିଦାର ଥିଲେ ଜଣେ ମହନ୍ତ । ଚିତାକଟା ମହନ୍ତ କିନ୍ତୁ ପ୍ରବଳ ଅତ୍ୟାଚାରୀ ଥିଲେ । ବ୍ରିଟିଶ ସରକାରର ରାଜୁତି ଦେଶରେ । ମହନ୍ତ ହେଉଛନ୍ତି ସେଇ ସରକାରର ଜଣେ ସ୍ତାବକ ଏବଂ ପୃଷ୍ଠପୋଷକ । ମୋହନ ଦାସ ଗୋଟିଏ ଯୋଜନା କଲେ । ଭାବିଲେ ଯେ ଏଇ ଅଞ୍ଚଳରେ ଗୋଟିଏ ସ୍କୁଲ ଖୋଲିବେ ଜିଲ୍ଲାବୋର୍ଡ଼ ତରଫରୁ । ସ୍କୁଲ ନ ଥିଲା ସେ ଅଞ୍ଚଳରେ । ସ୍କୁଲଟିଏ ହେଲେ ପିଲାଏ ପାଠ ପଢ଼ିବେ । ପାଠ ପଢ଼ିଲେ ଅନେକ କଥା ବଦଳିଯିବ । ଅଶିକ୍ଷିତ ଲୋକଙ୍କ ଉପରେ ଅତ୍ୟାଚାର କରିବା ସହଜ । ସ୍କୁଲଟିଏ ଖୋଲାହେଲା ଜିଲ୍ଲାବୋର୍ଡ଼ ତରଫରୁ । କିଛି ମାସ ପରେ ମୋହନ ଦାସ ଗଲେ ପୁଣି ସେ ଅଞ୍ଚଳକୁ । ସ୍କୁଲ କିମିତି ଚାଲିଛି ଦେଖିବାକୁ ଗଲା ବେଳକୁ ସ୍କୁଲ ଘରେ କୀର୍ତ୍ତନ ଚାଲିଛି । ପିଲା ପାଠ ପଢୁନାହାନ୍ତି । ବୁଝିଲା ବେଳକୁ ସ୍କୁଲ ଖୋଲିବା ଶୁଣି ଜମିଦାର ମହନ୍ତ ମହାରାଜ ସେଠାରେ ହାଜର । ଲୋକଙ୍କୁ କହିଲେ, ହଇରେ, ପାଠ ପଢ଼ି ଲାଭ କଣ ହେବ ? ସବୁ ସତ୍ୟାନାଶ ହୋଇଯିବ । ବରଂ ହରିନାମ ଜପ, ସେଥିରେ ମୁକ୍ତି ମିଳିଯିବ । ସ୍କୁଲ ପାଇଁ ପଇସାଟିଏ ଦେଇ ନ ଥିବା ମହନ୍ତ, ନିଜ ହାତରୁ ମୃଦଙ୍ଗ, ଗିନି କିଣି ଦେଲେ, ସ୍କୁଲ ପରିବର୍ତ୍ତରେ ସେଇଠି ଚାଲିଲା ମୃଦଙ୍ଗ ମାଡ଼ । ଧର୍ମ ବ୍ୟବହାର ହେଲା ଅତ୍ୟାଚାରକୁ ଜାରି ରଖିବା ପାଇଁ ।

ଏହା କେବଳ ଭାରତବର୍ଷରେ ଘଟିନାହିଁ ଏବଂ ଏପରି ଘଟଣା ବିରୁଦ୍ଧରେ ବିଦ୍ରୋହ ପୃଥିବୀରେ ସର୍ବତ୍ର ଦେଖା ଦେଇନି । ଦେଖାଯିବାକୁ ବାଧ । ପୋପ୍ ଯେତେବେଳେ କହିଲେ

Digitized by srujan ka@gmail.com

ଯେ ମୁଁ ହେଉଛି ରାଷ୍ଟ୍ର, ସେତେବେଳେ ତାଙ୍କ ବିରୁଦ୍ଧରେ ବିଦ୍ରୋହ ହୋଇଛି । ହିନ୍ଦୁ ଧର୍ମ ଯେତେବେଳେ ପୁରୋହିତବାଦର ନିଗଡ଼ରେ ବନ୍ଧା ପଡ଼ିଛି ସେତେବେଳେ ତା ବିରୁଦ୍ଧରେ ବିଦ୍ରୋହ ମୁଣ୍ଡ ଟେକିଛି । ବୁଦ୍ଧ, ମହାବୀର, ଜୈନଙ୍କ ଠାରୁ ଆରମ୍ଭକରି ବ୍ରାହ୍ମଧର୍ମ, ମହିମାଧର୍ମର ଅଭ୍ୟୁଦୟ ହୋଇଛି ଏବଂ ଏମାନେ ସମସ୍ତେ ହେଉଛନ୍ତି ବିଦ୍ରୋହର ଗୈରିକ ପତାକାବାହୀ ଶକ୍ତି ।

ମୋତେ ପିଲାଦିନରୁ ଏଇ ଧର୍ମର ନିଗଡ଼ତା ଆକୃଷ୍ଟ କରି ପାରିନାହିଁ । ସମାଜର କଲ୍ୟାଣ ଅପେକ୍ଷା ନିଜର ମୁକ୍ତି, ନିଜର ସ୍ୱାଚ୍ଛନ୍ଦ୍ୟ, ପ୍ରତିଷ୍ଠା ଏଇ ସବୁ ଧର୍ମମାନଙ୍କର ଆଧାର ପାଲଟିଛି । କଟକ ଚଣ୍ଡୀ ମନ୍ଦିରର (ବା ସେଇପରି ଯେକୌଣସି ଦେବାନୁଷ୍ଠାନର) ଯେତେ ଭକ୍ତ, ସେମାନଙ୍କ ଭିତରୁ କେତେଜଣ ସଂସାରର, ମାନବଜାତିର କଲ୍ୟାଣ କାମନା କରନ୍ତି ? ସମସ୍ତେ ଯାଆନ୍ତି ନିଜ ପାଇଁ, ନିଜର ପରିବାର ପାଇଁ, ଧନବୃଦ୍ଧି, ପ୍ରତିଷ୍ଠା ବୃଦ୍ଧି ପାଇଁ । ତାହା ପଛକେ ଅନ୍ୟମାନଙ୍କର ଧନ ବା ପ୍ରତିଷ୍ଠା ବିନିମୟରେ ହେଉ, ସେ ପ୍ରତି ସେମାନଙ୍କର ନିଘା ନ ଥାଏ । ଯଦି ଦେବ ବା ଦେବୀ ଭୋଗରୁ କିଛି ଖାଇ ଯାଆନ୍ତେ, ତା'ହେଲେ ଅନେକ ଲୋକ ଭୋଗ ଲଗାନ୍ତେ କି ନାହିଁ ମୋର ସନ୍ଦେହ ।

ମୋର ଏକ ଅଭିଜ୍ଞତା କଥା କହିବି । ମୁଁ ରାଜନୈତିକ କାର୍ଯ୍ୟରେ ସକ୍ରିୟ ଥାଏ । ମୋର ନିବିଡ଼ ବନ୍ଧୁ ଶ୍ରୀ ବିଶ୍ୱମ୍ଭର ସାମନ୍ତ ରାଜନୈତିକ ଜୀବନରୁ ବିଦାୟ ନେଇ ଶ୍ରୀ ଅରବିନ୍ଦ ଆଶ୍ରମ ପଣ୍ଡିଚେରୀରେ । ସେ ଆସିଥାଆନ୍ତି କଟକ । ଆମେ ସାଙ୍ଗହୋଇ ଗଲୁ ରମାଦେବୀଙ୍କୁ ଭେଟିବା ପାଇଁ । ନମସ୍କାର କଲାପରେ ସେ କହିଲେଯେ, ତୁମେ ଦୁହେଁ ସମାନ କାମ କଲ ପରିଶେଷରେ ନା ? ଆମେ ଆଶ୍ଚର୍ଯ୍ୟ ହେଲୁ । ବିଶ୍ୱମ୍ଭର ପଚାରିଲେ କିପରି ? ସେ କହିଲେ, ରାଜନୈତିକ ଦଳର କର୍ମୀମାନେ ନିଜ ସ୍ୱାର୍ଥ ପାଇଁ ବ୍ୟସ୍ତ ହେଲେ, ଦେଶକଥା ଭୁଲିଗଲେ । ତମେ ଯେଉଁମାନେ ବାବାଜୀ ହେଲ, ତମେମାନେ ବି କେବଳ ନିଜର ମୁକ୍ତିକଥା ଭାବିଲ । ଦେଶ କଥା ଭୁଲିଗଲ । ମଣିଷ ସମାଜ କଥା ଭୁଲିଗଲ । କଥାଟା ଆମ ଦୁହିଁଙ୍କ ମନକୁ ଘେନିଥିଲା । ସତରେ ତ ! ବିପ୍ଳବୀ ଓ ବାବାଜୀମାନେ ସମାନ, ଯଦିଓ ମନେହେବ ଯେ ଦୁହେଁ ଦୁଇ ବିପରୀତ ବିନ୍ଦୁର ବ୍ୟକ୍ତି ।

ମୋ ଜୀବନକାଳ ଭିତରେ ମୋତେ ପ୍ରଥମେ ଆକୃଷ୍ଟ କରିଛନ୍ତି ଭୀମଭୋଇ ଏବଂ ତାଙ୍କର ବାଣୀ– ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।'' ଦ୍ୱିତୀୟ ବ୍ୟକ୍ତି ହେଉଛନ୍ତି ବିବେକାନନ୍ଦ ଯେ କର୍ମ ଏବଂ ସେବାକୁ ଧର୍ମ ବୋଲି ବିଚାର କଲେ ଏବଂ ମଣିଷକୁ ଭଗବାନ ରୂପରେ ଗଣନା କଲେ । ମୋର ମନେହୁଏ ବିବେକାନନ୍ଦ ଆଉ କିଛି ଦିନ ବଞ୍ଚିଥିଲେ ସଂପୂର୍ଣ୍ଣ ସାମ୍ୟବାଦୀ ହୋଇଯାଇଥାନ୍ତେ । ସେ ହିଁ ରାମକୃଷ୍ଣ ମଠଛାଡ଼ି ରାମକୃଷ୍ଣ ମିଶନ ଗଠନ କଲେ । ଆଜି ସାରା ପୃଥିବୀରେ ରାମକୃଷ୍ଣ ମିଶନ ହିଁ ପରିଚିତ । ତୃତୀୟ ବ୍ୟକ୍ତି ହେଉଛନ୍ତି କାର୍ଲ ମାର୍କ୍ସ । ଏକ ସାମ୍ୟବାଦୀ ସମାଜର ପରିକଳ୍ପନା ଦେଲେ ମଣିଷକୁ ଏବଂ କହିଲେ ଯେ ଦାର୍ଶନିକମାନେ ଫେନମେନନ (Phenomenon) ବୟାନ କରିଛନ୍ତି କିନ୍ତୁ ତାହା ଯଥେଷ୍ଟ ନୁହେଁ । ତା'ର

Digitized by srujan ka@gmail.com

ପରିବର୍ତ୍ତନ କିପରି ହେବ ତାହା ହେଉଛି ଆମର କାମ । ଚତୁର୍ଥ ବ୍ୟକ୍ତି ହେଉଛନ୍ତି ଶ୍ରୀଅରବିନ୍ଦ, ଯେ ଏକ ଅତିମାନବର ପରିକଳ୍ପନା ଦେଲେ ଆମକୁ । ସେଇ କଳ୍ପିତ ସମାଜ ଆସିବ କି ନାଇଁ, କେବେ ଆସିବ ସେ ସଂପର୍କରେ ସନ୍ଦେହ ରହିଛି । କିନ୍ତୁ ଏକ ସୁଦୂରପ୍ରସାରୀ ଲକ୍ଷ୍ୟ ରହିଲେ ହିଁ ମଣିଷ ଉନ୍ନତ ହେବ, ସଭ୍ୟ ହେବ, ସଂକୁଚିତ ହେବ ନାହିଁ । ଠିକ୍ ସେଇପରି ମାର୍କ୍ସଙ୍କର କଳ୍ପିତ କମ୍ୟୁନିଜମ୍ । ତା' ଆସିବ କି ନାହିଁ, କେବେ ଆସିବ, କିପରି ଆସିବ, ସେଥିରେ ସନ୍ଦେହ ରହିଛି । କିନ୍ତୁ ଏକ ସୁଦୂର ପ୍ରସାରୀ ଲକ୍ଷ୍ୟ ବା Eldorado (ଏଲଡରାଡ଼ୋ) ହିଁ ମଣିଷକୁ ଜୀବନପଥରେ ସୃଜନଶୀଳ ଏବଂ ସଫଳ ହେବାପାଇଁ ସାହାଯ୍ୟ କରିବ, ଏଥିରେ କୌଣସି ସନ୍ଦେହ ନାହିଁ । ମୋର ଚତୁର୍ଥ ଗୁରୁ ହେଉଛନ୍ତି ଗୌତମବୁଦ୍ଧ । ମୋର ମନେହୁଏ ସେ ହେଉଛନ୍ତି ପୃଥିବୀର ଆଗ୍ନୋଷ୍ଟିକ ବା ନିରୀଶ୍ୱରବାଦୀ । ଯଦିଓ ପରବର୍ତ୍ତୀ କାଳରେ ତାଙ୍କୁ ଦଶ ଅବତାର ଭିତରେ ଗଣନା କରି ନେଉଛନ୍ତି ।

ତାହାହିଁ ହେଉଛି ଭାରତୀୟ ସଂସ୍କୃତିର ମହାନତା । ଏବଂ ଏଇ ଭାରତୀୟ ସଂସ୍କୃତି ହିଁ ମୋତେ ସବୁବେଳେ ଅନୁପ୍ରାଣିତ କରି ଆସିଛି । ତଥାକଥିତ ହିନ୍ଦୁଧର୍ମ ଠାରୁ ଏହା ବିଶାଳ । ଆସ୍ତିକ ମାନଙ୍କୁ ଏହା ଯେପରି ଗ୍ରହଣ କରିଛି, ନାସ୍ତିକମାନଙ୍କୁ ମଧ ସେଇପରି ଏହା ଆଦରି ନେଇଛି ଆପଣା ଭିତରେ । ଚାର୍ବାକ, ବୃହସ୍ପତି, ଚଣ୍ଡୀଦାସ, ବୁଦ୍ଧ, ଜୈନ ସମସ୍ତେ ହେଉଛନ୍ତି ଭାରତୀୟ ସଂସ୍କୃତିର ଆଧାର । ଅଥଚ ସେମାନେ ସମସ୍ତେ ହେଉଛନ୍ତି ନିରୀଶ୍ୱରବାଦୀ । ସିନ୍ଧୁ ନଦୀ ବା ସେଇ ନଦୀ କୂଳରେ ସଭ୍ୟତା ବା ସଂସ୍କୃତି ପରବର୍ତ୍ତୀ କାଳରେ ହିନ୍ଦୁଧର୍ମ ଭାବରେ ନାମିତ ହୋଇଛି । ପର୍ସିଆନ ଶବ୍ଦ ଶେଷରେ 'ସ' ବା 'ଶ' ବା 'ଷ' ନାହିଁ । ତେଣୁ ସେମାନେ ସିନ୍ଧୁ ନଦୀକୁ ହିନ୍ଦୁ ବୋଲି ଭାବିଲେ ଏବଂ ସେଇଥିରୁ ହିଁ ହିନ୍ଦୁ ଶବ୍ଦର ଉତ୍ପତ୍ତି ହେଲା । ଭାରତୀୟ ସଂସ୍କୃତି ତାହାଠାରୁ ବହୁ ବିଶାଳ ।

ଯେତେବେଳେ ଏଇ 'ରାଧାପ୍ରେମ' ଭକ୍ତିରେ ଜର୍ଜରିତ ଚୈତନ୍ୟ ରାୟ ରାମାନନ୍ଦଙ୍କୁ ସାକ୍ଷାତ କରିବା ପାଇଁ ଓଡ଼ିଶା ଆସିଲେ, ସେତେବେଳେ ଠିକ୍ ଏଇପରି ଏକ 'ପରକୀୟା ପ୍ରୀତି'ର ଦର୍ଶନ ଦକ୍ଷିଣ ଭାରତରେ ମଧ ଦେଖାଦେଇଥିଲା । ରାୟ ରାମାନନ୍ଦ ସେଇ 'ପରକୀୟା ପ୍ରୀତି'ର ଦର୍ଶନରେ ଚୈତନ୍ୟ ଦେବଙ୍କ ଦ୍ୱାରା ଦୀକ୍ଷିତ ହେଲେ ନା ଆପଣାର ସେଇ ଦର୍ଶନର ଧ୍ୱନି ସେ ଚୈତନ୍ୟଙ୍କ କଣ୍ଠରେ ଶୁଣିପାରିଲେ ଏବଂ ତାହା ହିଁ ତାଙ୍କ ଭିତରେ ମିଳନର ସୂତ୍ରପାତ କରି ପାରିଲା ?

ସେ ଦିନ ଉସକନ୍‌ର ଜଣେ ଅଷ୍ଟ୍ରେଲିଆର ଭକ୍ତ ଭାଷଣ ଦେଉଥିଲେ ଶ୍ରୀକୃଷ୍ଣ ଓ ରାଧାଙ୍କ ଉପରେ । ମହାଭାରତରେ ଶ୍ରୀକୃଷ୍ଣ ହେଉଛନ୍ତି ସଖା, କୂଟନୀତିଜ୍ଞ, ଦ୍ୱାରକାର ରାଜା । ସେଥିରେ ରାଧା ନାହାନ୍ତି କି ଗୋପୀ ନାହାନ୍ତି । ମହାଭାରତ ଲେଖା ହେବାର (ଲେଖା ସମୟକାଳ ସଂପର୍କରେ ମତଭେଦ ଥିବା ମଧ୍ୟେ ଏହା ଖ୍ରୀ.ପୂ. ପ୍ରାୟ ପାଞ୍ଚଶହ ପୂର୍ବର ବୋଲି ଅନୁମାନ)

Digitized by srujan ka@gmail.com

ବହୁ ଶହବର୍ଷ ପରେ ଭାଗବତ ଲେଖା ହୋଇଛି, ପ୍ରାୟ ଚତୁର୍ଥ ଶତାବ୍ଦୀରେ । ସେଥିରେ ଗୋପୀ ଅଛନ୍ତି, କିନ୍ତୁ ରାଧା ନାହାନ୍ତି । ରାଧା ଚରିତ୍ରର ଉଦ୍‌ଭବ ହେଲା ଚୈତନ୍ୟଙ୍କ ଦ୍ୱାରା ମାତ୍ର ପ୍ରାୟ ୪୦୦ ବର୍ଷ ତଳେ । ସେତେବେଳକୁ କ'ଣ ମହାଭାରତର ଶ୍ରୀକୃଷ୍ଣ ବା ଭାଗବତର ଶ୍ରୀକୃଷ୍ଣ ବଞ୍ଚିଥିଲେ ? ସେ ଦୃଷ୍ଟିରୁ ଶ୍ରୀକୃଷ୍ଣଙ୍କ ମଥୁରା ପର୍ବ ପ୍ରାୟ ଚତୁର୍ଥ ଶତାବ୍ଦୀର, ତା' ପୂର୍ବରୁ ନୁହେଁ । ସେଥିଯୋଗୁଁ ମୋ ମତରେ ଶ୍ରୀକୃଷ୍ଣ ଆମପାଇଁ ଏକ ବ୍ୟକ୍ତି ନୁହନ୍ତି, ଏହା ଏକ ଭାବଧାରା, ଏକ ସଂସ୍କୃତି, ଯାହା ଯୁଗଯୁଗ ଧରି ଆମକୁ ପ୍ରଭାବିତ କରି ଆସିଛି । ସେଇ ବିଶାଳ ଭାବଧାରାକୁ ଏକ ବ୍ୟକ୍ତିରେ ସୀମିତ କରିବା ଉଚିତ ନୁହେଁ । ଅଷ୍ଟ୍ରେଲିଆର ସେଇ ବୈଷ୍ଣବ ବକ୍ତା କିନ୍ତୁ ସେ ପ୍ରଶ୍ନର ଉତ୍ତର ଦେଲେ ନାହିଁ । ସେ କେବଳ କହି ଚାଲିଲେ ଶ୍ରୀକୃଷ୍ଣଙ୍କ ମହାତ୍ମ୍ୟ । କାହିଁକି ପାଠ ପଢୁଛ, କାହିଁକି ଚାକିରି କରିବ ? କିଛି ଦରକାର ନାହିଁ, କେବଳ କୀର୍ତ୍ତନ କର । ଏଇଭଳି ଭାଷଣ ସେଦିନ ଶ୍ରୋତାଙ୍କ ଭିତରେ ହାସ୍ୟରୋଳ ସୃଷ୍ଟି କରିଥିଲା । ପଣ୍ଡିତ ନୀଳକଣ୍ଠ ଥରେ ଶାଣିତ କଣ୍ଠରେ ଜୟଦେବଙ୍କ ଉପରେ ମନ୍ତବ୍ୟ ଦେଇ କହିଲେ ରାଧାମୋହନ ଗଡ଼ନାୟକଙ୍କୁ । ମୁଁ ସେଠାରେ ଉପସ୍ଥିତ ଥିଲି । ''ସେଉଟାକୁ ବଙ୍ଗାଳୀଏ ମାଗୁଛନ୍ତି, ତାଙ୍କୁ ଦେଇଦିଅ । ସେଇଟା ସଖା, କୂଟନୀତିଜ୍ଞ, ଦାର୍ଶନିକ ଶ୍ରୀକୃଷ୍ଣଙ୍କୁ କରିଦେଇଛି ନାରୀର କିଙ୍କର । ଦେଇଦିଅ ସେଉଟାକୁ ବଙ୍ଗାଳୀଙ୍କୁ ।''

ଜୟଦେବ ଓଡ଼ିଆ ନା ବଂଗାଳୀ ? ଏ ସଂପର୍କରେ ବିବାଦ ପ୍ରଚୁର । ବିଶିଷ୍ଟ କବି ସଚ୍ଚି ରାଉତରାୟ କହନ୍ତି ଯେ ଜୟଦେବ ବଙ୍ଗାଳୀ, ଠିକ୍ ସେଇପରି ଅନେକ ବଂଗୀୟ ଗବେଷକ ମତ ଦେଇଛନ୍ତି ସେ ଓଡ଼ିଆ ବୋଲି । ଏ ସଂପର୍କରେ ଡକ୍ଟର ହରିଶଚନ୍ଦ୍ର ଦାସଙ୍କ ସୌଜନ୍ୟରୁ ଆମ ପାଖରେ ପାଞ୍ଚୋଟି ନିବନ୍ଧ ସଂଗୃହୀତ ହୋଇଥିଲା । ସେଥିରେ ବଂଗଳାର ପାଞ୍ଚଜଣ ପ୍ରସିଦ୍ଧ ଗବେଷକ ଜୟଦେବ ଉତ୍କଳୀୟ ବୋଲି ପ୍ରମାଣିତ କରିଥିଲେ । ଏ ସଂପର୍କରେ ଏକ ସେମିନାର ଆୟୋଜନ ଆମ ପରିକଳ୍ପନାରେ ଥିଲା । ସେତିକିବେଳେ ଓଡ଼ିଶା ସରକାର ଜୟଦେବଙ୍କ ଉପରେ ଏକ ସେମିନାର ଆୟୋଜନ କରିବାର ଉଦ୍ୟମ କଲେ । ଡୁପ୍ଲିକେଟ କାମ ପାଇଁ ଉଦ୍ୟମ କରିବା ଉଚିତ ନୁହେଁ କି ହେବା ଉଚିତ ନୁହେଁ । ଆମ ପାଖରେ ଏଭଳି ନିବନ୍ଧ ଥିବା ଜାଣି ଓଡ଼ିଶା ସରକାରଙ୍କର ସଂସ୍କୃତି ବିଭାଗର କୌଣସି କର୍ମକର୍ତ୍ତା ସେଗୁଡ଼ିକୁ ଆମଠାରୁ ମାଗି ନେଇଗଲେ । କିନ୍ତୁ ଜୟଦେବଙ୍କ ପାଇଁ ସେମିନାରରେ ମାତ୍ର ତିନିଚାରିଜଣ ଯୋଗଦେଲେ କିନ୍ତୁ ସେ ନିବନ୍ଧଗୁଡ଼ିକ କୁଆଡ଼େ ହଜିଗଲା । ଆଉ ମିଳିଲା ନାହିଁ । ମାଗିଲେ ବି ଫେରେଇଲେ ନାହିଁ । କିନ୍ତୁ ''ସେମିନାର'' ପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା ବୋଲି ଶୁଣିଲୁ । ସେ ନିବନ୍ଧଗୁଡ଼ିକୁ ଆଉ ଠାବ କରାଯାଇ ପାରିଲା ନାହିଁ । ଏହା ଆମ ପାଇଁ କେତେ କ୍ଷତିକାରକ ତାହାର ବିଚାର କେହି କଲେ ନାହିଁ ।

୧୯୩୭ ମସିହା ନିର୍ବାଚନ । ସେତିକିବେଳେ ବୋଧହୁଏ ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଶାର କଂଗ୍ରେସ ଦଳର ନେତା । ନିର୍ବାଚନ ମୋର ମନେପଡୁଛି । ସେତେବେଳେ ନିର୍ବାଚନ

Digitized by srujan ka@gmail.com

ପ୍ରଚାର ଏବଂ ଭୋଟଗ୍ରହଣ ଏକା ସାଙ୍ଗରେ ଚାଲିବାର ସମୟ । ନିର୍ବାଚନ ଦୁଇ ଶିବିରରେ ବିଭକ୍ତ ହୋଇଯାଇଥିଲା । କଂଗ୍ରେସ ଦଳର ହଳଦିଆ ବାକ୍ସ । ବ୍ରିଟିଶ ସରକାରଙ୍କ ଦ୍ୱାରା ସମର୍ଥିତ ପ୍ରାର୍ଥୀମାନଙ୍କର ନାଲି ବାକ୍ସ । ଭୋଟ କାଗଜ ଗଲା ହେଉଥିଲା ବିଭିନ୍ନ ରଂଗର ବାକ୍ସରେ ।

ଓଡ଼ିଶାରେ କଂଗ୍ରେସ ଦଳର ବିପୁଳ ବିଜୟ ଘଟିଲା । ବ୍ରିଟିଶ ସରକାର ଦ୍ୱାରା ସମର୍ଥିତ ପ୍ରାର୍ଥୀମାନେ ଗାଡ଼ିଘୋଡ଼ାରେ ଭୋଟରମାନଙ୍କୁ ଆଣିଥିଲେ ଭୋଟକେନ୍ଦ୍ରକୁ । ଭୁରି ଭୋଜନରେ ସେମାନଙ୍କୁ ଅପ୍ୟାୟିତ କରାଯାଇଥିଲା । ସେମାନେ ସେ ସବୁ କଲେ । ଭୋଟ ଦେଲା ବେଳକୁ କିନ୍ତୁ ଦେଲେ ହଳଦିଆ ବାକ୍ସରେ । ପ୍ରଚାର ନିର୍ଦ୍ଧୂମ । ଭୋଟକେନ୍ଦ୍ର କମ୍ପୁଥିଲା ଭାଷଣମାନଙ୍କରେ ।

ଓଡ଼ିଶାରେ କଂଗ୍ରେସ ଦଳର ବିପୁଳ ବିଜୟ ଘଟିଲା । କେତୋଟି ଘଟଣା ପାଇଁ ଏହି ନିର୍ବାଚନ ମାଇଲଖୁଣ୍ଟ ପରି କାମ କଲା । ଜାତୀୟ କଂଗ୍ରେସ ସରକାର ଗଢ଼ିବ କି ନାହିଁ ତାହା ସ୍ଥିର କରିପାରିଲା ନାହିଁ । ତେଣୁ ଓଡ଼ିଶାରେ ପ୍ରଥମ ପ୍ରଧାନମନ୍ତ୍ରୀ ହେଲେ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି । ପରବର୍ତ୍ତୀ କାଳରେ ଯେତେବେଳେ ଜାତୀୟ କଂଗ୍ରେସ ସ୍ଥିରକଲା ସରକାର ଗଢ଼ିବା ପାଇଁ, ସେତେବେଳେ ସମସ୍ତେ ଭାବିଥିଲେ ଯେ ନୀଳକଣ୍ଠ ଦାସ ହିଁ ପ୍ରଧାନମନ୍ତ୍ରୀ ହେବେ । କିନ୍ତୁ ମହାତ୍ମା ଗାନ୍ଧୀ ବାଛିଲେ ବିଶ୍ୱନାଥ ଦାସଙ୍କୁ । ନୀଳକଣ୍ଠ ଦାସ ଏବଂ ତାଙ୍କର ଗୋଷ୍ଠୀ ବିରୁଦ୍ଧରେ ବିଦ୍ରୋହ ସେତେବେଳରୁ ଦାନା ବାନ୍ଧିଲାଣି । ଯୁବକ ଗୋଷ୍ଠୀ, ପ୍ରଗତିଶୀଳ ଗୋଷ୍ଠୀ ଏକାଠି ହେଲେଣି ତଥାକଥିତ ସତ୍ୟବାଦୀ ଗ୍ରୁପ୍ ବିରୁଦ୍ଧରେ । ଯଦିଓ ମୋ ମତରେ ନୀଳକଣ୍ଠ ଦାସ ସାମାଜିକ ଚିନ୍ତାରେ ବେଶ୍ ସଂସ୍କାରବାଦୀ ଏବଂ ପ୍ରଗତିଶୀଳ । ରାଜନୈତିକ ଚିନ୍ତାଧାରା ଏପରି କ୍ଷେତ୍ରରେ ବେଶି ନିୟାମକ ହୁଏ । ଏବଂ ତାହା ହିଁ ହୋଇଥିଲା । ଅବଶ୍ୟ କୁହାଗଲା ଯେ ବିଶ୍ୱନାଥ ଦାସଙ୍କର ମାନ୍ଦ୍ରାଜ ଲେଜିସ୍‌ଲେଟିଭ୍ କାଉନସିଲ୍‌ରେ ଅଭିଜ୍ଞତା ଯୋଗୁଁ ତାଙ୍କୁ ବଛାଯାଇଛି । ଏହା ତ ଅନ୍ୟ ରାଜ୍ୟମାନଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ହେଲା ନାହିଁ । କାହିଁକି ?

ମୋର ମନେହୁଏ ନୀଳକଣ୍ଠ ଦାସ ଏବଂ ତାଙ୍କ ଗୋଷ୍ଠୀ ସେଇଦିନଠାରୁ ଫିଡ଼ିକିବା ଆରମ୍ଭ କଲେ, ଯାହାର ପରିଣତି ହେଲା ଯେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଯେତେବେଳେ ସରକାରରୁ ଭାରତୀୟ ଜାତୀୟ କଂଗ୍ରେସ ଓହରି ଗଲା, ପାରଳା ମହାରାଜାଙ୍କ ନେତୃତ୍ୱରେ ସରକାର ଗଠନ ହେଲା ଏବଂ ସେଥିରେ ଗୋଦାବରୀଶ ମିଶ୍ର, ଅବଦୁସ୍ ଶୋଭାନ ଖାଁ ମନ୍ତ୍ରୀ ହେଲେ ।

କୁହାଯାଏ ଯେ ସେମାନଙ୍କର ସଂପର୍କ ଗଢ଼ିଉଠିଥିଲା ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ସହିତ ଏବଂ ତାଙ୍କରି ନିର୍ଦ୍ଦେଶରେ ସେମାନେ ସରକାର ଗଠନ କଲେ । କିନ୍ତୁ ଏହି ସଂପର୍କରେ କୌଣସି ଐତିହାସିକ ପ୍ରମାଣ ନାହିଁ ।

ଏହି ନିର୍ବାଚନ ମଧ୍ୟ ଭାରତବର୍ଷ ଭାଗ ଭାଗ ହେବାର ବାଟକୁ ଉନ୍ମୁକ୍ତ କରିଦେଲା ବୋଲି ମୋର ମତ । ଉତ୍ତର ପ୍ରଦେଶରେ ଏଇ ନିର୍ବାଚନରେ କଂଗ୍ରେସ ଓ ମୁସଲିମ ଲିଗ୍ ଏକାଠି

Digitized by srujan ka@gmail.com

ମେଣ୍ଟ କରି ନିର୍ବାଚନ ଲଢ଼ିଥିଲେ । କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିବା ହେତୁ ସେ ମୁସଲିମ୍ ଲିଗ୍ ସାଙ୍ଗରେ ମିଶି ସରକାର ଗଠନ କଲାନାହିଁ ଏବଂ ଏକାକୀ ସରକାର ଗଠନ କଲା । ମୁସଲିମ ଲିଗ୍‌ର ନେତାମାନେ ଏହାକୁ ପ୍ରତାରଣା ବୋଲି ଧରିଲେ ଏବଂ କଂଗ୍ରେସ ଉପରୁ ମୁସଲିମ ଲିଗ୍‌ର ନେତାମାନଙ୍କର ବିଶ୍ୱାସ ତୁଟିଗଲା । ଏଥିପାଇଁ ପଣ୍ଡିତ ଜବାହରଲାଲ୍ ନେହେରୁ ଦାୟୀ ବୋଲି ଅନେକଙ୍କର ମତ । ସେ ସାଂପ୍ରଦାୟିକତାବାଦର ତୀବ୍ର ବିରୋଧୀ ଥିଲେ ସତ୍ୟ, କିନ୍ତୁ ମୁସଲିମ ଲିଗ୍ ନେତା ଜିନ୍ନାଙ୍କ ସହିତ ତାଙ୍କର ବ୍ୟକ୍ତିଗତ ମତାନ୍ତର ଥିଲା ତୀବ୍ର । ଏହାକୁ ଇଂରାଜୀରେ କୁହାଯାଏ Clash of Ego। ସରୋଜିନୀ ନାଇଡୁ ଥିଲେ କଂଗ୍ରେସ ଏବଂ ମୁସଲିମ ଲିଗ ଭିତରେ ମୁଖ୍ୟ ଯୋଗସୂତ୍ର ରକ୍ଷାକାରୀ । ତାଙ୍କର ଜିନ୍ନାଙ୍କ ସହିତ ବ୍ୟକ୍ତିଗତ ସଂପର୍କ ଥିଲା ବେଶ୍ ନିବିଡ଼ ଏବଂ ଗାନ୍ଧିଜୀ ମଧ ଏହି ସଂପର୍କକୁ ବ୍ୟବହାର କରିଛନ୍ତି କଂଗ୍ରେସ ଓ ମୁସଲିମ ଲିଗ ଭିତରେ ମେଣ୍ଟ ପାଇଁ । ଜିନ୍ନା କଂଗ୍ରେସ ଛାଡ଼ି ଚାଲିଯିବାର ଧମକ ଦେଇ ସଭାଛାଡ଼ି ଚାଲିଯାଇଛନ୍ତି, ଏବଂ ସରୋଜିନୀ ନାଇଡୁ ତାଙ୍କୁ ଫେରାଇ ଆଣିଛନ୍ତି ।

ବ୍ୟକ୍ତିଗତ ସଂପର୍କ ସାମୂହିକ ନୀତିକୁ ପ୍ରଭାବିତ କରିବା ଉଚିତ ନ ହେଲେ ହେଁ ବ୍ୟକ୍ତିଗତ ସଂପର୍କ ଅନେକ ସମୟରେ ରାଜନୀତିକୁ ପ୍ରଭାବିତ କରିଛି । ଯେପରି ମୁଁ ଆଗରୁ କହିଛି ନୀଳକଣ୍ଠ ଦାସ ଏବଂ ପୁତ୍ର ଅଶୋକ ଦାସଙ୍କ ମଧରେ ମୋକଦ୍ଦମା ଓଡ଼ିଶାର ରାଜନୈତିକ ଆକାଶକୁ ଆଚ୍ଛନ୍ନ କରିଥିଲା । ସତ୍ୟବାଦୀ ଗୋଷ୍ଠୀକୁ ପୁରୁଣାକାଳିଆ, ପ୍ରତିକ୍ରିୟାଶୀଳ ଆଖ୍ୟା ଦେଇ ଯେଉଁ ଯୁବକ ଗୋଷ୍ଠୀ ବିଦ୍ରୋହ ଘୋଷଣା କଲେ ତାହାର ଅନ୍ୟତମ ନେତା ହେଲେ ଅଶୋକ ଦାସ । ଜାତୀୟ କଂଗ୍ରେସ ଛାଡ଼ିଲାପରେ ସୁଭାଷଚନ୍ଦ୍ର ବୋଷ 'ଫରୱାର୍ଡ଼ ବ୍ଲକ' ଗଠନ କଲେ । ପ୍ରଥମାବସ୍ଥାରେ କଲିକତାରେ ସେ ଭାଷଣ ଦେବାପାଇଁ ଉଦ୍ଦିଷ୍ଟ ସଭାପାଇଁ ନିବେଦକ ମିଳୁ ନ ଥିଲେ, କିନ୍ତୁ କୃତସଂକଳ୍ପ ସୁଭାଷ ବୋଷ ସେଥିରେ ଡରି ନ ଯାଇ ନିଜର ସଭାପାଇଁ ନିବେଦନ ପତ୍ରରେ ନିଜ ନାମକୁ ନିବେଦକ ବୋଲି ଘୋଷଣା କଲେ ।

''ଥରେ ଭଗବାନଙ୍କୁ ନାରଦ ପଚାରିଲେ, ଭଗବାନ ଆପଣଙ୍କୁ ସମସ୍ତେ ମାୟାବୀ କହନ୍ତି କିନ୍ତୁ ମୁଁ ତ କାଇଁ ଜାଣିପାରିଲି ନାଇଁ ଆପଣଙ୍କର ମାୟା । ଭଗବାନ କହିଲେ ନାରଦ, ମୋତେ ଭାରି ଶୋଷ କରୁଛି । ଗିଲାସେ ପାଣି ଦେଲ ମୋ ପାଇଁ । ଅଳ୍ପ ଦୂରରେ ବହି ଯାଉଥିଲା ଛୋଟିଆ ନଈଟିଏ କୁଳୁକୁଳୁ ହୋଇ । ନାରଦ ଧାଇଁଲେ ପାଣି ଆଣିବା ପାଇଁ ସେଇ ନଦୀ କୂଳକୁ । ହଠାତ୍ ଦେଖିଲେ ନଈ ଆରପଟେ ଗୋଟିଏ କୂଅ ଅଛି ଏବଂ ପାଣି କାଢୁଛି ଜଣେ ଅସାମାନ୍ୟା ସୁନ୍ଦରୀ ଯୁବତୀ । ନଦୀରୁ ପାଣି ନ ଆଣି ସେ ଚାଲିଲେ ସେ କୂଅ ପାଖକୁ । ପାଣି ଆଣିବେ କ'ଣ, ସେ ଯୁବତୀ ପ୍ରେମରେ ପଡ଼ିଗଲେ ନାରଦ । ତାକୁ ବିଭାହୋଇ ରହିଗଲେ ସେପଟରେ । ପାଣି ଆଣିବାକୁ ଭୁଲିଗଲେ । ସମୟ ବିତିଯିବା ସହିତ ତାଙ୍କର ପିଲାପିଲି ହେଲେ, ନାରଦ ହୋଇଗଲେ ଗୃହୀ । ଦିନେ ହଠାତ୍ ବର୍ଷା ହେଲା । ସେଇ ଛୋଟିଆ ନଈଟି କୂଳ ପ୍ଲାବିନୀ ପାଲଟିଲା ଏବଂ

Digitized by srujan ka@gmail.com

ଘରଦ୍ୱାର ସବୁ ଭସାଇ ନେଲା । ନାରଦ ପିଲାପିଲି ଧରି ବାହାରିଲେ ରକ୍ଷା ପାଇବା ପାଇଁ ସେ ବନ୍ୟାରୁ । କିନ୍ତୁ ରକ୍ଷା କି ମିଳେ ? ଗୋଟିକ ପରେ ଗୋଟିଏ ସନ୍ତାନ ଓ ପରିଶେଷରେ ସ୍ତ୍ରୀ ଭାସିଗଲେ ବନ୍ୟାରେ । ନାରଦ ଏକାକୀ ପହଁରି ପାର ହେବାକୁ ଚାହିଁଲେ ସେ ନଈକୁ । କିନ୍ତୁ ନାକରେ ପାଣି ପଶିଗଲା । ଏବଂ ନାକରେ ପାଣି ପଶିଗଲାପରେ ନାରଦଙ୍କର ଚୈତନ୍ୟୋଦୟ ହେଲା । ସେ ଡାକିଲେ ହେ ନାରାୟଣ ରକ୍ଷାକର । ନଦୀର ପାଣି ଶୁଖିଯାଉଥିଲା । ନାରଦ ଦେଖିଲେ ନାରାୟଣ ତାଙ୍କର ଅପେକ୍ଷାରତ ଏବଂ ମୁହଁରେ ତାଙ୍କର ସେଇ ମନୋଲୋଭା ହସର ରେଖା । ନାରାୟଣ ପଚାରିଲେ, ନାରଦ, ତୁମକୁ ପରା ପାଣି ଆଣିବା ପାଇଁ କହିଥିଲି, ତୁମେ ଗଲ କୁଆଡ଼େ ? ନାରଦ ବିନୀତ ଭାବରେ ହାତ ଯୋଡ଼ି ପ୍ରାର୍ଥନା କରି କହିଲେ ନାରାୟଣ, ମୁଁ ବୁଝିଗଲି ତୁମର ମାୟା !

ପଣ୍ଡିତ ନୀଳକଣ୍ଠ ଦାସ ବିଶାଳ ଜନ ସମାବେଶକୁ ଉଦ୍‌ବୋଧନ ଦେଇ କହିଲେ ଯେ ନାରଦଙ୍କର ସେଇ ଚୈତନ୍ୟୋଦୟ ପରି ଭାରତୀୟ ଜାତୀୟ କଂଗ୍ରେସରେ ସେଇ ଚୈତନ୍ୟୋଦୟ ହେଉଛନ୍ତି ସୁଭାଷଚନ୍ଦ୍ର ବୋଷ ।

ରାଜନୈତିକ ଚେତନା ଦୃଷ୍ଟିରୁ ଗଂଜାମ ଜିଲ୍ଲା ଥିଲା ବହୁ ଆଗରେ । ବ୍ରହ୍ମପୁର ସହରର ରାଜନୈତିକ, ସାଂସ୍କୃତିକ ଉଦ୍‌ବେଳନ ବେଶ୍ ଉତ୍ସାହଜନକ, ପ୍ରେରଣାଦାୟକ ଥିଲା ଅନ୍ୟମାନଙ୍କ ପାଇଁ । ସେଠାରେ ଥିଲା ସେତେବେଳେ ଏକାଧିକ ରେଡ଼ିଓ ପାର୍କ । ଅର୍ଥାତ ରେଡ଼ିଓରୁ ମାଇକ୍ରୋଫୋନ ମାଧମରେ ଶୁଣାଇ ଦିଆଯାଉଥିଲା ସମବେତ ବ୍ୟକ୍ତିମାନଙ୍କୁ । ଅନେକ ଛୋଟ ଲାଇବ୍ରେରୀ ଥିଲା ସହରରେ । ପାଠକ ସଂଖ୍ୟା ମଧ ବେଶ୍ ଏବଂ ସବୁ ବୟସର ଲୋକେ ଥିଲେ ପାଠକ । ଗଂଜାମ ଜିଲ୍ଲାରେ ସର୍ବତ୍ର ସାଇକେଲ ମିଳୁଥିଲା ଭଡ଼ାରେ, ପର୍ଯ୍ୟାପ୍ତ ପରିମାଣରେ । କେହି ସାଇକେଲ ଚୋରି କରିନେଇ ପଳାଉ ନ ଥିଲେ ବା ଭାଙ୍ଗି ଆଣି ଫେରାଉ ନ ଥିଲେ । ଏଭଳି ପ୍ରଥା ମୁଁ ଅନ୍ୟତ୍ର ଦେଖିନାହିଁ । ଗଂଜାମ ଜିଲ୍ଲାରେ ଜଳଖିଆ, ମିଲ୍ସ ବହୁତ ଶସ୍ତା ଏବଂ ସ୍ୱାସ୍ଥ୍ୟକାରକ ମଧ । କଦଳୀ ପତ୍ରରେ ଖାଇବାକୁ ଦିଆଯାଏ ଏବଂ ଯେଉଁମାନେ ପରଷନ୍ତି ସେମାନେ ବେଶ୍ ପରିଚ୍ଛନ୍ନ ।

କଟକରେ ୧୯୩୬ ମସିହାରେ ପ୍ରତିଷ୍ଠା ହୋଇଥିଲା ସାଉଥ୍ ଇଣ୍ଡିଆନ ହୋଟେଲ ଠିକ୍ ସେଇ ଅନୁରୂପରେ । ଏବଂ ପ୍ରାୟ ୫୦ବର୍ଷ କାଳ ଏହି ହୋଟେଲର ଖ୍ୟାତି ଥିଲା ପ୍ରଚୁର । ଭାଇମାନେ ଭାଗ ଭାଗ ହୋଇଯିବା ପରେ ଏବେ ଏହି ଗୋଷ୍ଠୀର ଏକମାତ୍ର ସନ୍ତକ ପରମେଶ୍ୱରନ ଖୋଲିଛନ୍ତି ''ବିଜୟା ହୋଟେଲ'' କଲେଜ ଛକରେ ।

ଏହି ହୋଟେଲ ସଂପର୍କରେ ଏକ କାହାଣୀ ମୋର ମନେ ପଡୁଛି । ଏଇ 'ସାଉଥ ଇଣ୍ଡିଆନ ହେଟେଲ'ର ଉପର ମହଲାରେ ରହିବା ପାଇଁ କିଛି କୋଠରୀ ଥିଲା । ପ୍ରାୟତଃ ଦକ୍ଷିଣ ଭାରତୀୟମାନେ ଏଇ ସବୁ କୋଠରୀକୁ ବ୍ୟବହାର କରୁଥିଲେ । ୧୯୫୧ ମସିହା ଜୁଲାଇ

Digitized by srujan ka@gmail.com

୧୯ ତାରିଖ ଦିନ ଦରମାବୃଦ୍ଧି ବିରୋଧୀ ଛାତ୍ର ଆନ୍ଦୋଳନ ପ୍ରବଳ ରୂପ ଧାରଣ କଲା । ମିଲିଟାରୀ ପୋଲିସ ଏବଂ ବିକ୍ଷୁବ୍ଧ ଛାତ୍ର-ଜନତା ଭିତରେ ସଂଘର୍ଷରେ ସମଗ୍ର କଲେଜ ଛକ ଅଞ୍ଚଳ ରଣକ୍ଷେତ୍ର ପାଲଟିଲା । ଏଇ ଛାତ୍ର ଆନ୍ଦୋଳନର କ୍ରିୟାନୁଷ୍ଠାନ କମିଟିରେ ନିଖିଳ ଭାରତ ଛାତ୍ରସଂଘର ଜଣେ ମାତ୍ର ସଦସ୍ୟ ଥିଲେ ୰ଅଖିଳ ମୋହନ ପଟ୍ଟନାୟକ, ଗାନ୍ଧିକ ଓ ବକ୍ତା । କାରଣ ଛାତ୍ର ସଂଘର ସବୁ କର୍ମୀ ଜେଲରେ ଥିଲେ ବା ପଳାତକ ଥିଲେ । ସେଇ ସମୟଟା କମ୍ୟୁନିଷ୍ଟ ପାର୍ଟିର ସଂକଟଜନକ ସମୟ । କମ୍ୟୁନିଷ୍ଟ ପାର୍ଟି ଆପଣାର ଦୁଃସାହସବାଦୀ ନୀତି ପରିହାର କରି ଫେରିବାକୁ ଆରମ୍ଭ କରିଛି ମାତ୍ର । ତେଣୁ ଛାତ୍ର ଆନ୍ଦୋଳନର ନେତୃତ୍ୱ ଏହା ହାତରେ ନ ଥିଲା । ଥିଲା ସୋସାଲିଷ୍ଟ ପାର୍ଟିର ଏବଂ କଂଗ୍ରେସ ଦଳର ଛାତ୍ର ନେତାମାନଙ୍କ ହାତରେ । ୰ବ୍ରଜବନ୍ଧୁ ମିଶ୍ର ସଦ୍ୟ ପୁରୀରୁ ଆସି କଟକରେ ଆଇନ କଲେଜରେ ନାମ ଲେଖାଇଥାନ୍ତି । ବିଶ୍ୱମ୍ଭର ସାମନ୍ତ ସେଇ ବର୍ଷ କଲେଜକୁ ଆସିଥାନ୍ତି କୁଚଙ୍ଗ ହାଇସ୍କୁଲରୁ ପାଶ୍ କରି । ଶିବାଜୀ ପଟ୍ଟନାୟକ ସଦ୍ୟ ପଳାତକ ଜୀବନର ପରିସମାପ୍ତି ଘଟାଇ ଖ୍ରୀଷ୍ଟ କଲେଜରେ ନାମ ଲେଖାଇ ଥାନ୍ତି । ଛାତ୍ରସଂଘର ବାକି କିଛି ଖୁଚୁରା କର୍ମୀ ହୁଏତ ଥିଲେ । ତେଣୁ ଆନ୍ଦୋଳନର ନେତୃତ୍ୱ ସେମାନଙ୍କ ହାତରେ ନ ଥିଲା । କିନ୍ତୁ ଆନ୍ଦୋଳନର ମୋଡ଼ ବଦଳିଗଲା ହଠାତ୍ । ଛାତ୍ର ନେତୃତ୍ୱର ଆପୋଷ ନୀତି ବିରୁଦ୍ଧରେ ସାଧାରଣ ଛାତ୍ର ବିଦ୍ରୋହ କଲେ ଏବଂ ହଠାତ୍ ନେତୃତ୍ୱକୁ ଆସିଗଲେ ସେଇମାନେ ଯେଉଁମାନେ କାଲି ହୁଏତ ଥିଲେ ଅପରିଚିତ । ଆନ୍ଦୋଳନ, ସଂଗ୍ରାମ ନୂତନ ନେତୃତ୍ୱ ତିଆରି କରେ । ଏହା ହିଁ ତାହାର ଧର୍ମ । କଂଗ୍ରେସର ଯୁବ ନେତା ପ୍ରବୀର ପାଲିତ ଏହି ସଂଗ୍ରାମରେ ନିଖିଳ ଭାରତ ଛାତ୍ର ସଂଘର ସଭ୍ୟ ହେଲେ ଏବଂ ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ପାର୍ଟିର ନେତା ହେଲେ । ଏହି ସଂଗ୍ରାମରେ ସତ୍ୟାଗ୍ରହ କରି ଜେଲବରଣ କରିଥିବା ଶ୍ରୀ ଗୋବିନ୍ଦ ଦାସ (ପରେ ବାରିଷ୍ଟର) ଶ୍ରୀ ରାଜେନ୍ଦ୍ର ପ୍ରସାଦ ଦାସ, ଶ୍ରୀ ସହଦେବ ମିଶ୍ର ଆମର ସାଥୀ ହେଲେ ଜେଲରେ । ସେମାନଙ୍କ ସାଙ୍ଗରେ ଥିଲେ ଶ୍ରୀ ଅକ୍ଷୟ ମହାନ୍ତି (ବର୍ତ୍ତମାନ ପରଲୋକଗତ) । ଜେଲରେ ଥିବାବେଳେ ଜଣାପଡ଼ିଲା ସେ କୁଷ୍ଠ ରୋଗାକ୍ରାନ୍ତ । ସେତେବେଳେ କୁଷ୍ଠ ଏକ ଦୁରାରୋଧ ମହାବ୍ୟାଧି । ହିନୋକର୍ପସ ଅଏଲ ଛଡ଼ା ତା'ର କୌଣସି ଔଷଧ ନ ଥିଲା । ଅକ୍ଷୟ ମହାନ୍ତି ଦୁଃଖରେ ଭାଙ୍ଗିପଡ଼ିଲେ । ତାଙ୍କୁ ଜେଲରୁ ଖଲାସକରି ଦିଆଗଲା । ସେ ସୋସାଲିଷ୍ଟ ଥିଲେ । ସୋସାଲିଷ୍ଟ ପାର୍ଟିର ହୁଏତ କ୍ଷତି ହେଲା କିନ୍ତୁ ପୃଥିବୀ ପାଇଲା ଏକ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କୁଷ୍ଠରୋଗ ବିଶେଷଜ୍ଞଙ୍କୁ । ସେ ଜେଲରୁ ଖଲାସ ହୋଇ ଚାଲିଲେ ସତାରା ଓ ପୁଣେକୁ ଏବଂ ସେଇଠି ଆମେରିକାନ୍ ବିଶେଷଜ୍ଞମାନଙ୍କ ଦ୍ୱାରା ଚିକିତ୍ସିତ ହେଲେ । 'ଆଜିର ରୋଗୀ କାଲିକି ବଇଦ' । ତାଙ୍କର ପୁନର୍ଜନ୍ମ ହେଲା ।

ଜୁଲାଇ ୧୯, ୧୯୫୧ । କମ୍ୟୁନିଷ୍ଟ ପାର୍ଟି ଅଣ୍ଡର ଗ୍ରାଉଣ୍ଡରୁ ଆସିବାକୁ ଆରମ୍ଭ କରିଛି ମାତ୍ର । ସାଙ୍ଗଠନିକ, ରାଜନୈତିକ ସବୁ ଶକ୍ତି ବିପର୍ଯ୍ୟସ୍ତ । ୰ବିଜୟ ଚନ୍ଦ୍ର ଦାସ, ଶ୍ରୀ ବୈଦ୍ୟନାଥ

Digitized by srujan ka@gmail.com

ରଥ ପ୍ରମୁଖ ବିଦ୍ରୋହ ଘୋଷଣା କରି ସାରିଛନ୍ତି କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ଓ ନୀତି ବିରୁଦ୍ଧରେ । କିନ୍ତୁ ଛାତ୍ର ଆନ୍ଦୋଳନର ଏଇ ନାଟକୀୟ ମୋଡ଼ରେ ଉଦ୍‌କ୍ଷିପ୍ତ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ସେ ଦିନ ରାତିରେ ରେଡ଼ିଓରେ ଘୋଷଣା କଲେ; ''ଗୋଟିଏ ଜଣାଶୁଣା ରାଜଦ୍ରୋହୀ, ଦେଶଦ୍ରୋହୀ ଦଳ ପ୍ରଚଳିତ ଶାସନ ବ୍ୟବସ୍ଥାକୁ ଭାଙ୍ଗିଦେବା ପାଇଁ ଷଡ଼ଯନ୍ତ୍ର କରୁଛି ଏବଂ ଏହାର ପ୍ରମାଣ ଆମ ହାତରେ ଧରା ପଡ଼ିଛି'' । ଏହା ଯେ କମ୍ୟୁନିଷ୍ଟ ପାର୍ଟି ପ୍ରତି ଉଦ୍ଦିଷ୍ଟ ଥିଲା ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ହାତରେ ସତରେ କଣ ପ୍ରମାଣ ଥିଲା ? ନବବାବୁ ଜଣେ ସୋସାଲିଷ୍ଟ ମନୋଭାବାପନ୍ନ ବ୍ୟକ୍ତି ଏବଂ ରାଜନୈତିକ ଦୃଷ୍ଟିରୁ ବେଶ୍ ଶାଣିତ । ସେ ଏମିତି କିପରି କହିପାରିଲେ ? ପରେ ତାଙ୍କୁ ମୁଁ ସେକଥା ପଚାରିଛି । ସେ ହସି ଉଡ଼େଇ ଦେଇଛନ୍ତି ।

ସେଇଦିନ ମାଡ୍ରାସ ରାଜ୍ୟର ବେଶ୍ କିଛି ନାମଜାଦା ପଳାତକ କମ୍ୟୁନିଷ୍ଟ ନେତା କଲିକତାରେ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ର କମିଟି ବୈଠକରେ ଯୋଗ ଦେବାପାଇଁ କଟକ ଦେଇ ଯାଉଥିଲେ ଏବଂ ସେମାନେ ସେ ଦିନ ଥିଲେ ସାଉଥ୍ ଉଣ୍ଡିଆନ ହୋଟେଲରେ ସେଇ କୋଠରୀମାନଙ୍କରେ । ସେ ସଂପର୍କରେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟି ହାତରେ କୌଣସି ଖବର ନ ଥିଲା । କାରଣ ସେମାନଙ୍କର ଯିବା ଆସିବା କାମ ମାଡ୍ରାଜ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ନିୟନ୍ତ୍ରିତ ହେଉଥିଲା । କିନ୍ତୁ ଦୈବାତ୍ ସେମାନେ ଧରାପଡ଼ି ଯାଇଥିଲେ କଣ ହୋଇଥାନ୍ତା ? କମ୍ୟୁନିଷ୍ଟ ପାର୍ଟିର ଷଡ଼ଯନ୍ତ୍ର ପାଇଁ ପ୍ରମାଣ ଆଉ ଅଧିକା କିଛି ଦରକାର ଥିଲା । ସେଇ ଦଳରେ ଥିଲେ କମ୍ୟୁନିଷ୍ଟ ପାର୍ଟିର ନେତା ୰ସୁନ୍ଦରାୟ, ୰ରାଜେଶ୍ୱର ରାଓ ପ୍ରଭୃତି । ସେମାନେ ହେଉଛନ୍ତି ଐତିହାସିକ ତେଲେଙ୍ଗାନା ଆନ୍ଦୋଳନର ପ୍ରବାଦ ପୁରୁଷ । ସେମାନେ ସେଦିନ ହୋଟେଲ ବାଲକୋନିରୁ ଦେଖିଛନ୍ତି ସେ ସଂଗ୍ରାମର ଦୃଶ୍ୟ । ଏବଂ ଆପଣାର ଅଜାଣତରେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ସମ୍ମାନ ବଢ଼ିଯାଇଛି ସେମାନଙ୍କ ଆଖିରେ ।

ସେଇ ରାତିରେ, କେନ୍ଦ୍ର ଗୁଇନ୍ଦା ବିଭାଗର ମୁଖ୍ୟ ୰ଦାମୋଦର ଦାସଙ୍କ କ୍ୟାଣ୍ଟନମେଣ୍ଟ ରୋଡ଼ (ବର୍ତ୍ତମାନ ଗିରନାର ହୋଟେଲ ପାଖ ଘରେ) ଘରେ ବସିଥିଲା ପୁଲିସ ମୁଖ୍ୟମାନଙ୍କର ସମ୍ମିଳନୀ । ମୁଖ୍ୟମନ୍ତ୍ରୀଙ୍କ ବେତାର ଭାଷଣ ପରେ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ କରାଯିବ କି ନାଇଁ ସେ ସଂପର୍କରେ ଆଲୋଚନା ଚାଲିଥିଲା । ସେଇଠି ହଠାତ୍ ପହଞ୍ଚିଗଲେ କମ୍ୟୁନିଷ୍ଟ ପାର୍ଟିର ନେତା ଶରତ ପଟ୍ଟନାୟକ । ସେ ଏସବୁ କାମ ପାଇଁ ଅସୀମ ଧୁରନ୍ଧର, ଏଥିରେ କୌଣସି ସନ୍ଦେହ ନାହିଁ । ଏକ ବନ୍ଧୁପତ୍ନୀଙ୍କ ଉପରେ ବଳାତ୍କାର ଅଭିଯୋଗରେ ସେ କମ୍ୟୁନିଷ୍ଟ ପାର୍ଟିରୁ ୧୯୪୮ ମସିହାରେ ବହିଷ୍କୃତ ହେଲାପରେ ସେ ରାଜନୈତିକ ଦୃଷ୍ଟିରୁ ସକ୍ରିୟ ନ ଥିଲେ ସତ୍ୟ କିନ୍ତୁ ସମାଜବାଦୀ ଚିନ୍ତାଧାରା ତାଙ୍କର ଅତୁଟ ଥିଲା । ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ପାର୍ଟିର ଗଭୀର ସଙ୍କଟ ସମୟରେ ତାଙ୍କର ଭୂମିକା ଥିଲା ପ୍ରଭୂତ । ସେ ସେଠାରେ ଯାଇ ପହଞ୍ଚିଯିବା ପରେ ଆଲୋଚନା ହେବାକୁ ବାଧା । କାରଣ ତାଙ୍କର ବ୍ୟକ୍ତିଗତ ପରିଚିତି ଥିଲା ଅନେକ ପୁଲିସ

Digitized by srujan ka@gmail.com

ଅଫିସରଙ୍କ ସହିତ । ବିଶେଷତଃ ପୁଲିସ ବିଭାଗର ପ୍ରବାଦ ପୁରୁଷ ଦାମୋଦର ଦାସଙ୍କ ସହିତ ।

ଦାମୋଦର ଦାସ ପୁଲିସ ବିଭାଗର ପ୍ରବାଦ ପୁରୁଷ । ଲିଟରାଲ କନଷ୍ଟେବଲରୁ ସେ ଉଠି ଉଠି ସେଣ୍ଟ୍ରାଲ ଇଣ୍ଟେଲିଜେନ୍ସ ଅଫିସର ପର୍ଯ୍ୟନ୍ତ ଯାଇଥିଲେ । ଏପରି ସୌଭାଗ୍ୟ ଖୁବ୍ କମ ବ୍ୟକ୍ତିଙ୍କର ଜୀବନରେ ଘଟିଛି, ତାଙ୍କର ନାକ, ତାଙ୍କର ଆଖି ଉଭୟ ତୀକ୍ଷ୍ଣ ଓ ଶାଣିତ । ଓଡ଼ିଶାର ଗଡ଼ଜାତ ରାଜା ଓ ରାଜ୍ୟମାନଙ୍କ ସଂପର୍କରେ ତାଙ୍କ ପାଖରେ ଥିଲା ଟିକିନିଖି ସମ୍ବାଦ ଏବଂ ସେ ତାହା ଯୋଗାଉଥିଲେ ସର୍ଦ୍ଦାର ପଟେଲ ଏବଂ ଭି.ପି. ମେନନ୍‌ଙ୍କୁ । ମେନନ୍ ସେତେବେଳେ ଭାରତର ସେକ୍ରେଟେରୀ ଅଫ ଷ୍ଟେଟ, ପରେ ସେ ଓଡ଼ିଶାର ରାଜ୍ୟପାଳ ମଧ୍ୟ ହୋଇଥିଲେ ।

ଭି.ପି. ମେନନ୍ ଥିଲେ ଏକ ବେକାର ଯୁବକ । ଚାକିରିର ସନ୍ଧାନରେ ସେ କେରଳରୁ ଯାଇ ପହଞ୍ଚିଲେ ଦିଲ୍ଲୀରେ ଏବଂ ଜଣେ ଦୋକାନଦାର ଘରେ ରହି ଚାକିରି ସନ୍ଧାନ କରୁଥିଲେ । ସେ ଥିଲେ ଟୁ ଫିଙ୍ଗର ଟାଇପିଷ୍ଟ ଏବଂ ପରେ ସର୍ଟହାଣ୍ଡ ଶିଖିଥିଲେ । ସେତିକିବେଳେ ଖରାଦିନ ହେତୁ ବଡ଼ଲାଟଙ୍କ ଦପ୍ତର ଉଠିଯାଉଥାଏ ସିମଳାକୁ । ସେତେବେଳେ ସେଇପରି ଅବସ୍ଥା ଥିଲା । ଓଡ଼ିଶାରେ ମଧ୍ୟ ସେଇ ଅବସ୍ଥା ଥିଲା । ଖରାଦିନେ ପୁରୀରୁ ହିଁ ଲାଟ ସରକାର ପରିଚାଳନା କରୁଥିଲେ । ବଡ଼ଲାଟଙ୍କ ବିରାଟ ଦପ୍ତର ଉଠିଯିବ ସିମଳାକୁ । ସେଇଯୋଗୁଁ ଅସ୍ଥାୟୀ ଚାକିରିଟିଏ ମିଳିଗଲା । ସେ ରହୁଥିବା ଦୋକାନୀଠାରୁ ତିରିଶ ଟଙ୍କା ଧାର ନେଇ ଚାଲିଗଲେ ସିମଳା । ଆପଣାର ଦକ୍ଷତା ଯୋଗୁଁ ସେଇ ତିନିମାସ ମଧ୍ୟରେ ସ୍ଥାୟୀ ମୁକରିର ହୋଇ ପାରିଥିଲେ । ସିମଳାରୁ ଫେରି ସେ ଯେତେବେଳେ ଉକ୍ତ ଦୋକାନୀକୁ ଧନ୍ୟବାଦ ସହ ତିରିଶ ଟଙ୍କା ଫେରାଇବାକୁ ଯାଆନ୍ତି, ସେ ତାହା ଗ୍ରହଣ ନ କରି କହିଲା ଯେ ତାଙ୍କ ଭଳି ଟଙ୍କା ଲୋଡ଼ୁଥିବା କୌଣସି ବ୍ୟକ୍ତିକୁ ସେ ଏଇ ଟଙ୍କା ଦେଇପାରନ୍ତି । ସେଇଦିନଠାରୁ ଯେତେବେଳେ କୌଣସି ବ୍ୟକ୍ତି ମେନନ୍‌ଙ୍କ ପାଖରେ ଆସି ପହଞ୍ଚିଛି ମେନନ୍ ତାକୁ ତିରିଶ ଟଙ୍କା ଦେଇଛନ୍ତି ନିଶ୍ଚିତ ଭାବରେ ଏବଂ ଏହା କ୍ରମାଗତ ଭାବରେ ଚାଲିଛି ଜୀବନସାରା । ମୁଁ ନିଜେ ଦିନେ ତାଙ୍କ ସହିତ କଥାବାର୍ତ୍ତା ହେଉଥିଲା ବେଳେ ଏଇପରି ଏକ ଘଟଣା ଘଟିଥିଲା । ମେନନ୍‌ଙ୍କ ଜୀବନରେ ସାୟଂକାଳ ଉପସ୍ଥିତ । ମୃତ୍ୟୁର ପୂର୍ବଦିନ ଏଇପରି ସାହାଯ୍ୟ ଲୋଡ଼ି ଜଣେ ଯୁବକ ତାଙ୍କ ଘରେ ଉପସ୍ଥିତ ହେଲେ ଏବଂ ମେନନ୍ ତାଙ୍କ ନାତୁଣୀକୁ ଡାକି ଆପଣାର ୱାଲେଟରୁ ତିରିଶ ଟଙ୍କା ବାହାର କରି ଉକ୍ତ ଯୁବକକୁ ଦେବାକୁ କହିଲେ ଏବଂ ଦୀର୍ଘଶ୍ୱାସ ଛାଡ଼ି କହିଲେ ଯେ, ''ଏଇ ବୋଧହୁଏ ମୋର ଶେଷ ଋଣ ପରିଶୋଧ'' । ସେଦିନ ମେନନ୍‌ଙ୍କ ସାଙ୍ଗରେ କଥାବାର୍ତ୍ତା ହେଲାବେଳେ ବୟସ ଥିଲା କଞ୍ଚା କିନ୍ତୁ ଗଭୀର ରେଖାପାତ କରିଥିଲା ଏଇ ଘଟଣା ।

ଜୀବନରେ ମୋର ବି ଏକ କଠୋର ସମୟ ପହଞ୍ଚିଲା । ପ୍ରାୟ ୧୫/୨୦ ବର୍ଷ କାଳ ଇଣ୍ଡିଆ ପ୍ରେସ ଏଜେନ୍ସି, ବ୍ଲିଜ ପ୍ରଭୃତିର ସାମୟିକ ପ୍ରତିନିଧିତ୍ୱରୁ କିଛି ଅର୍ଥ ଉପାର୍ଜନ କରୁଥିଲି ।

Digitized by srujan ka@gmail.com

କିନ୍ତୁ ତାହା କୁଳାନ ହେଉ ନ ଥିଲା । ଏଇ ସମୟରେ ୰ ନିଖିଳ ଚକ୍ରବର୍ତ୍ତୀ ଇଣ୍ଡିଆ ପ୍ରେସ ଏଜେନ୍ସି ବୁଝା ବୁଝି କରୁଥାନ୍ତି । ତାଙ୍କର ନେତୃତ୍ୱ ଓ ସାମ୍ବାଦିକତା ଭୁଲିବାର ନୁହେଁ । ପ୍ରତି ମାସରେ ଅନ୍ତତଃ ଦୁଇଥର ସେ ନିଶ୍ଚିତ ଭାବରେ ବ୍ୟକ୍ତିଗତ ଚିଠି ଲେଖିବେ ଏବଂ କିପରି ସମ୍ବାଦ ପଠାଯିବା ଉଚିତ୍, କିପରି ଲେଖାଯିବା ଉଚିତ ସେ ସଂପର୍କରେ ନିର୍ଦ୍ଦେଶ ଦେବେ । ଭାଷା ମୁଲାୟମ, କିନ୍ତୁ ତାହାରି ଭିତରେ ନିର୍ଦ୍ଦେଶ ବଳିଷ୍ଠ । ସେ କାମ ଛାଡ଼ି ଦେଲାପରେ ମୋର ତାଙ୍କ ସହିତ ଅନେକ ଥର ସାକ୍ଷାତ ହୋଇଛି । କମ୍ୟୁନିଷ୍ଟ ପାର୍ଟିରୁ ସେ ବିଦାୟ ନିଅନ୍ତି ନେତୃତ୍ୱ ସହିତ ମତଭେଦ ଯୋଗୁଁ ଏବଂ ପରବର୍ତ୍ତୀ କାଳରେ ସେ 'ମେନ୍‌ଷ୍ଟ୍ରିମ' (Mainstream) ନାମରେ ଏକ ମାଗାଜିନ୍ ପ୍ରକାଶ କରନ୍ତି । ଏହି ମେଗାଜିନ୍‌ର ଷ୍ଟାଣ୍ଡାର୍ଡ଼ ଏଭଳି ଉଚ୍ଚକୋଟିର ହେଲା ଯେ ଆଇ.ଏ.ଏସ୍. ପରୀକ୍ଷାରେ ଇଣ୍ଟରଭିଉ ଦେଉଥିବା ପ୍ରାର୍ଥୀମାନଙ୍କ ଭିତରୁ ଅଧିକାଂଶ ଏହି ମେଗାଜିନ୍‌କୁ ଆଧାର କରିଛନ୍ତି ବୋଲି ପ୍ରକାଶ କଲେ । ଜରୋରୀ ପରିସ୍ଥିତି ସମୟରେ ନିଖିଳ ଚକ୍ରବର୍ତ୍ତୀ ଏହି କାଗଜର ପ୍ରକାଶ ପାଇବାକୁ ଥିବା ଲେଖାକୁ ସେନସର ବୋର୍ଡ଼ ଆଗରେ ଉପସ୍ଥାପିତ କରିବାକୁ ସମ୍ମତ ହେଲେ ନାହିଁ । ଫଳତଃ ଏଇ କାଗଜ ବନ୍ଦ ହୋଇ ଯିବାର ଆଶଙ୍କା ଦେଖାଗଲା । କିନ୍ତୁ ଅନମନୀୟ ନିଖିଳ ଦା' ତାଙ୍କ କାଗଜରେ ଲେଖିଲେ ଯେ ମେନ୍‌ଷ୍ଟ୍ରିମ ବନ୍ଦ ହୋଇଯାଉଛି । ଜୀବନର ବହୁ ସ୍ରୋତ ଏଇଭଳି ବନ୍ଦ ହୋଇଯାଇଛି ରୁଦ୍ଧ ଅର୍ଗଳି ଭିତରେ । କିନ୍ତୁଏହା ଚିରଦିନ ବନ୍ଦ ହୋଇଯାଇ ନାହିଁ । ମନେପଡୁଛି ଯେ ଏଇଭଳି ଏକ ଲେଖା କର୍ତ୍ତୁପକ୍ଷଙ୍କ ଭିତରେ ଚେତନା ଉଦ୍ରେକ କରିଥିଲା ଏବଂ କାଗଜ ବନ୍ଦ ହୋଇ ନ ଥିଲା । ଇନ୍ଦିରା ଗାନ୍ଧୀଙ୍କ ସହିତ ତାଙ୍କର ପରିଚିତି ଥିଲା ନିବିଡ଼ । ତଥାପି ସେ ଥିଲେ ଅନମନୀୟ ଏବଂ ବ୍ୟକ୍ତିଗତ ବନ୍ଧୁତାର ବ୍ୟବହାର କରିବା ପାଇଁ ବା ସେଥିରୁ ଫାଇଦା ଉଠାଇବା ପାଇଁ ପ୍ରସ୍ତୁତ ନ ଥିଲେ । ବିଂଶ ଶତାବ୍ଦୀର ସମାପ୍ତି ଦେଖିବା ପାଇଁ ସେ ଜୀବିତ ନ ଥିଲେ । ଦୁରାରୋଧ କ୍ୟାନସର ରୋଗରେ ତାଙ୍କର ପରଲୋକ ହୋଇଯାଇଛି ।

କମ୍ୟୁନିଷ୍ଟ ପାର୍ଟିର ୧୯୪୮-୫୧ ମସିହାର ସଙ୍କଟ କାଳରେ ପାର୍ଟିର ଅଣ୍ଡରଗ୍ରାଉଣ୍ଡ ମେସିନାରୀ ଚଳାଇବାର ଦାୟିତ୍ୱ ଯେଉଁମାନଙ୍କ ଉପରେ ଅର୍ପିତ ହୋଇଥିଲା, ସେମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ତାଙ୍କର ସ୍ତ୍ରୀ ରେଣୁ ଚକ୍ରବର୍ତ୍ତୀଙ୍କ ପରଲୋକ ହୋଇଯାଇଥିଲା ଆଗରୁ । ରେଣୁ ବଙ୍ଗଳାର ମୁଖ୍ୟମନ୍ତ୍ରୀଙ୍କର ଝିଆରୀ । ଏହା ସତ୍ତ୍ୱେ ସେମାନେ ବାମପନ୍ଥୀ ହୋଇଯାଇଥିଲେ ବିଲାତରେ ପାଠ ପଢ଼ିବା ବେଳେ ।

ଏଇଭଳି ଦୁରାରୋଧ ପରିସ୍ଥିତି ଭିତରେ ଚଳିଲା ବେଳେ ଅନେକ ବ୍ୟକ୍ତି ଆର୍ଥିକ ସାହାଯ୍ୟ ଦେଇଛନ୍ତି, ରହିବା ପାଇଁ ସ୍ଥାନ ଦେଇଛନ୍ତି, ଧାର ଦେଇଛନ୍ତି ଟଙ୍କା । କିନ୍ତୁ ସମସ୍ତେ 'ଧାର' ଦେଉଥିବା ଅର୍ଥ ଫେରାଇ ନେବା ପାଇଁ ରାଜି ହୋଇନାହାନ୍ତି । ସେମାନଙ୍କ ଭିତରେ ଲକ୍ଷ୍ମଣ ପଟ୍ଟନାୟକଙ୍କ ଠାରୁ ଆରମ୍ଭ କରି କଲେଜଛକର ଏକଦା ଘଣ୍ଟା ଦୋକାନୀ (ବର୍ତ୍ତମାନ ଜୋତା ଦୋକାନୀ) ଗୁଲାମ, ଅଧ୍ୟାପକ ନାରାୟଣ ନାୟକ, ବନ୍ଧୁ ନରୋତ୍ତମ ସାହୁ ପ୍ରଭୃତି ଅନ୍ତର୍ଭୁକ୍ତ ।

Digitized by srujan ka@gmail.com

କିନ୍ତୁ ଏହାଫଳରେ ଦାରିଦ୍ର୍ୟ ପ୍ରତି ମୋର ଏକ ଅହେତୁକ ଦୁର୍ବଳତା ରହିଛି । କେହି ସାହାଯ୍ୟ ମାଗିବାକୁ ପହଞ୍ଚିଲେ ମୁଁ ମନାକରି ପାରିନାହିଁ । ଯଥାସମ୍ଭବ ଦେବାପାଇଁ ଚେଷ୍ଟା କରିଛି ।

ଭି.ପି. ମେନନ୍‌ଙ୍କ ସହିତ ଦାମୋଦର ଦାସଙ୍କ ପରିଚୟ ଥିଲା ପ୍ରଗାଢ଼ । ଓଡ଼ିଶାର ଗଡ଼ଜାତ ରାଜା ଏବଂ ରାଜ୍ୟମାନଙ୍କ ସଂପର୍କରେ ତାଙ୍କ ଦ୍ୱାରା ଯୋଗାଯାଉଥିବା ଖବର ଦ୍ୱାରା ସେ ନୀତି ନିର୍ଦ୍ଧାରଣ କରିବାକୁ ସାହାଯ୍ୟ କରୁଥିଲେ ସର୍ଦ୍ଦାର ପଟେଲଙ୍କୁ ।

ଦାମୋଦର ଦାସଙ୍କ ଆଖିରୁ କୌଣସି ବସ୍ତୁ ସହଜରେ ଏଡ଼ାଇ ଯାଇପାରେ ନାହିଁ । ସେ ଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ପଡ଼ୋଶୀ । ସନ୍ଧ୍ୟା ସମୟରେ ସେ ଆପଣାର ସାନ୍ଧ୍ୟ ଭ୍ରମଣରୁ ଫେରି ଦିନେ ବାରଣ୍ଡାରେ ଠିଆ ହୋଇଛନ୍ତି । ହଠାତ୍ ଜଣେ ମଣିଷର ଛାଇ ଦେଖିଲେ ସେ ଏବଂ ତାଙ୍କୁ ଦେଖି ସେ ଛାଇଟି ଅପସରି ଗଲା । ତାଙ୍କର ଆରମ୍ଭ ହେଲା ସନ୍ଦେହ । କାହାର ଛାଇ ? ମୋର ଆଖି ପଡ଼ିଲା କ୍ଷଣି ସେ ଛାଇଟି କାହିଁକି ହଜିଗଲା ? ଡକ୍ଟର ପରିଜାଙ୍କ ଘରକୁ ଆଜି କିଏ ଅତିଥି ଆସିଛନ୍ତି ? ସେ ଦିନ ୪ ଡକ୍ଟର ପରିଜାଙ୍କ ଘରକୁ ଆସିଛନ୍ତି ତାଙ୍କର ସାଢ଼ୁ ତତ୍‌କାଳୀନ ମୟୂରଭଂଜ କଲେକ୍ଟର ୪ ଅଦ୍ୱୈତ ପ୍ରସାଦ ମହାନ୍ତି । ତା' ହେଲେ ଏ ଛାଇ କ'ଣ ଦୁର୍ଗାଚରଣ ମହାନ୍ତିଙ୍କର ? ଦୁର୍ଗା ବାବୁଙ୍କ ବଡ଼ ଭାଇ ହେଉଛନ୍ତି ଅଦ୍ୱୈତ ବାବୁ । ଦୁର୍ଗାବାବୁ ସେତେବେଳେ ଯଦିଓ ପାର୍ଟି ସଂପାଦକ ନ ଥିଲେ କିନ୍ତୁ ପୋଲିସ ହାତରୁ ଅନେକଥର ଖସି ଯାଇଥିବାରୁ ତାଙ୍କୁ ପୋଲିସ ସବୁଠାରୁ ବେଶି ଖୋଜୁଥିଲା । ଦାମୋଦର ଦାସ ଅପେକ୍ଷା କଲେ ଅଦ୍ୱୈତ ବାବୁଙ୍କ ଆସିବାକୁ । ସେ ଆସିଲା ଦିନ, ଦେଖିଲେ ସେ ଛାଇକୁ ପୁଣି ଏବଂ ଦି' ଚାରିଥର ଭେରିଫାଇ କଲାପରେ ସେ ନିଶ୍ଚିତ ହେଲେ ଯେ ଏ ନିଶ୍ଚୟ ଦୁର୍ଗା ମହାନ୍ତି । କିନ୍ତୁ କିଏ ଆସୁଛି ସେତେବେଳେ ପରିଜାଙ୍କ ଘରକୁ ? ଜାଣିଲେ ଯେ କେବଳ ଅଦ୍ୱୈତବାବୁଙ୍କ ଶଳା ହାଡ଼ିବନ୍ଧୁ କାନୁନ୍‌ଗୋ ଆସୁଛନ୍ତି । ତା'ହେଲେ ହାଡ଼ିବନ୍ଧୁ କାନୁନ୍‌ଗୋ ହେଉଛନ୍ତି ଯୋଗସୂତ୍ର ? ସେ ରହୁଥିଲେ ମଙ୍ଗଳାବାଗରୁ ରାଣୀହାଟ ଗଲାବେଳକୁ ଡାହାଣପଟ ଯେଉଁ ବିରାଟ ଘଣ୍ଟାଟିଏ ଥିବା ଘଣ୍ଟା ଦୋକାନ ଅଛି ତାହାରି ପଛ ପଟ ଘରେ । ମୁଁ ସେଇ ବିରାଟ ଘଣ୍ଟାକୁ ଦେଖି ଆସୁଛି ଗଲା ୬୦ ବର୍ଷରୁ ଉର୍ଦ୍ଧ୍ୱ ହେଲା । ତାହା ଚାଲିଛି ଖରାପ ହୋଇନାହିଁ । କିନ୍ତୁ ସ୍ୱାଧୀନତା ପରେ ଯେତେବଡ଼ ଘଣ୍ଟା ଲାଗିଛି ବା ଲଗାଯାଇଛି ସବୁ ଖରାପ ହୋଇଯାଇଛି । କ୍ୟାପିଟାଲ ଥାନାଠାରୁ ଆରମ୍ଭକରି ମାର୍କେଟ ବିଲଡିଂ ପର୍ଯ୍ୟନ୍ତ । ବମ୍ବେ ବିଶ୍ୱବିଦ୍ୟାଳୟର ଘଡ଼ି ଚାଲିଛି ପ୍ରାୟ ଶହେ ବର୍ଷ ଧରି । ଯାନ୍ତ୍ରିକ ବିକାଶରେ ଆମେ ଆଗେଇଛୁ ନା ପଛେଇଛୁ ? ସେଇ ଘଣ୍ଟା ଦୋକାନ ପଛପଟରେ ଅଦ୍ୱୈତବାବୁଙ୍କର ଗୋଟିଏ ଘର ଥିଲା । ସେଇଠି ତାଙ୍କର ଶଳା ହାଡ଼ିବନ୍ଧୁ କାନୁନ୍‌ଗୋ ରହୁଥିଲେ । ଦାମୋଦର ବାବୁ ଲାଗିଥିଲେ ହାଡ଼ିବନ୍ଧୁଙ୍କ ପିଛା ! ତାଙ୍କୁ ଖାପଚାରେ ପକାଇଲେ ଏବଂ ଦୁର୍ଗା ମହାନ୍ତିଙ୍କ ପାଇଁ ଟ୍ରାପ ବା ଯନ୍ତା ବିଛାଗଲା । ସେ ଆସିବା ଦିନ ହାଡ଼ିବନ୍ଧୁ ପୁଲିସକୁ ଖବର ଦେବେ ଏବଂ ପୁଲିସ ଯନ୍ତା ବିଛାଇବ । ସମସ୍ତେ ଗଲେଣି ପ୍ରାୟ, ତେଣୁ ଲେଖିଲେ କିଛି ଅସୁବିଧା

Digitized by srujan ka@gmail.com

ହେବ ନାହିଁ । ସେ ଦିନ ଦୁର୍ଗା ମହାନ୍ତି ଓ ମୁଁ ଆସିଥିଲୁ ସେଠାକୁ, ଦୁର୍ଗାବାବୁ ଆସିଥିଲେ, ମୁଁ ଆସିଥିଲି ଗାଧୋଇବା ପାଇଁ । ସେତେବେଳେ ଆମର ଡେନ୍ କିପର ମଥୁରାନନ୍ଦ ନାଥ । ଶଗଡ଼ିଆ ସାହିରେ ତାଙ୍କ ଘରେ ରହୁଥିଲୁ ଆମେ । ସେଠାରେ ଗାଧୋଇବାର ସୁବିଧା ନ ଥିଲା । ତେଣୁ ଗାଧୋଇବା ନିହାତି ଦରକାର ପଡୁଥିଲା । ସେ ଆସିଥିଲେ ଅଦ୍ୱୈତବାବୁଙ୍କର ଅନ୍ୟତମ ସତ୍ତ୍ୱ ଯୋଗ୍ରାର ବିଶିଷ୍ଟ କଣ୍ଟ୍ରାକ୍ଟର ୰ ହାଡ଼ିବନ୍ଧୁ କାନୁନ୍‌ଗୋଙ୍କୁ ଭେଟିବା ପାଇଁ । ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ଅଣ୍ଡର ଗ୍ରାଉଣ୍ଡ କାର୍ଯ୍ୟକାରୀ କମିଟି କଟକରେ ବସିଥାଏ । ଅର୍ଥର ଘୋର ଅଭାବ । ଦୁର୍ଗାଚରଣ ମହାନ୍ତି ଥିଲେ ଷ୍ଟାର କଲେକ୍ଟର ବା ଅର୍ଥ ସଂଗ୍ରହକାରୀ । ତେଣୁ ଆମେ ଆସିଥିଲୁ ଅର୍ଥ ସଂଗ୍ରହ କରିବା ପାଇଁ । ହାଡ଼ିବନ୍ଧୁ କାନୁନ୍‌ଗୋ ଅନ୍ୟ ହାଡ଼ିବନ୍ଧୁ କାନୁନ୍‌ଗୋଙ୍କୁ ଖବର ଦେଇଥିଲେ କି ନାଇଁ ? ମୋର ମନେହୁଏ ଦେଇ ନ ଥିଲେ । କାରଣ ନିଜ ଭିଣୋଇକୁ ରକ୍ଷା କରିବାକୁ ସେ ଚାହିଁବା ସ୍ୱାଭାବିକ । ସେ ଯାହାହେଉ ଆମର ଆସିବା ବୃଥା ହେଲା । ତେଣୁ ଆମେ ଆଉ ରିସ୍କ ନ ନେଇ ଫେରିଯିବା ସ୍ଥିର କଲୁ । ଦାମୋଦର ଦାସ ନିର୍ଦ୍ଦେଶ ଦେଇଥିଲେ ଯେ ଯଦି ଦୁର୍ଗାମହାନ୍ତି ଆସନ୍ତି ତାଙ୍କୁ ନ ଧରି ତାଙ୍କ ପିଛା ଧରିବା ପାଇଁ । କିନ୍ତୁ ଗୋଟାଏ ଭାକୁର ଧରିବାକୁ ଯାଇ ବର୍ତ୍ତମାନ ତା ସାଙ୍ଗକୁ ଶେଉଳ ବା କେରାଣ୍ଡିଟାଏ ମିଳିଲାଣି । ଏ ଲୋଭ କଣ ପୁଲିସିବାଲା ସମ୍ବରଣ କରି ପାରନ୍ତି ? କିନ୍ତୁ ତା' ନ କରି ଯଦି ସେମାନେ ଦାମୋଦର ଦାସଙ୍କ ନିର୍ଦ୍ଦେଶ ମାନି ଥାଆନ୍ତେ ତା'ହେଲେ କଣ ହୋଇଥାନ୍ତା ତା' ଆଜି ବିଚାର କରି ଲାଭ ନାହିଁ । ଘରୁ ଦୁର୍ଗା ମହାନ୍ତି ବାହାରିବା ସଙ୍ଗେ ସଙ୍ଗେ ତାଙ୍କୁ ମାଡ଼ି ବସିଲେ ଏବଂ ତାଙ୍କ ପାଟିରେ, ପିଠିରେ ରିଭଲଭର ଦେଇ ତାଙ୍କୁ ନେଇଗଲେ । ଆଉ ମୁଁ ? ହଠାତ ହତବାକ ହୋଇ ପଛକୁ ଫେରି ଖୋଜିଲି ବାଟ ପଳାଇବା ପାଇଁ । ସେତେବେଳେ ମୋର ଗୋଟାଏ ଆଖି ଉପରେ ବ୍ୟାଣ୍ଡେଜ ବନ୍ଧା ହୋଇଥାଏ ଜାଣିଶୁଣି । ମୁଁ ପିନ୍ଧିଥିଲି ଏକ ହ୍ୟାପ୍ ପ୍ୟାଣ୍ଟ, ଦେହରେ କିଛି ନ ଥିଲା । ପଛକୁ ଫେରି ମୁଁ ପଶିଗଲି ତାଙ୍କ ବେଡ୍ ରୁମ୍‌ରେ । ସେଇଠି ତ୍ରସ୍ତ ଅବସ୍ଥାରେ ଠିଆହୋଇଥାଆନ୍ତି ତାଙ୍କର ସ୍ତ୍ରୀ, ଝିଅ ଏବଂ ପିଲାମାନେ । ସେମାନେ ସ୍ୱାମୀଙ୍କ କାରସାଦି ଜାଣି ନ ଥିବା ଭଳି ମନେ ହେଉଥିଲା । ମୁଁ ତାଙ୍କରି ଭିତରେ ରହିଗଲି । ପୁଲିସ ବାଲା ଥରେ ଫେରିଗଲେ କିନ୍ତୁ ଗୋପୀ ମହାନ୍ତି (ପରେ ଚାକିରି ଛାଡ଼ି ରାଉରକେଲାରେ ବ୍ୟବସାୟ କରୁଥିଲେ) ପୁଣି ଫେରି ଆସିଲେ ପୁଲିସ ବାହିନୀରୁ କିଛି ଲୋକଙ୍କୁ ନେଇ । ସେମାନଙ୍କ ହାତରେ ଥିଲା ସର୍ଚ୍ଚ ଲାଇଟ । ସେମାନେ ଥରେ ଖୋଜି ଫେରିଗଲେ କିନ୍ତୁ ପୁଣି ଫେରି ଆସିଲେ । ଏଥରକ ଧରା ପଡ଼ିଗଲି ତାଙ୍କ ହାତରେ । ପାଟିରେ ଏବଂ ପିଠିରେ ଦୁଇଟା ରିଭଲଭର ଦେଇ ସେମାନେ ନେଇଗଲେ ମଙ୍ଗଳାବାଗ ଥାନାକୁ । ସେଠାରେ ଅପେକ୍ଷା କରି ବସିଥିଲେ ୰ ରାଜଗୋବିନ୍ଦ ବୋଷ, ସେଣ୍ଟ୍ରାଲ ଏସ୍.ପି. । ଦାମୋଦର ବାବୁ ଆପଣାର ବିଚକ୍ଷଣ ବୁଦ୍ଧିରେ ଓଡ଼ିଶା ପୁଲିସକୁ ଏ ଖବର ଦେଇନଥିଲେ । କେବଳ ସଶସ୍ତ୍ର ପୁଲିସ ଯୋଗାଇ ଦେବା ଏବଂ ତାଙ୍କ ଅଫିସରଙ୍କୁ ଅନୁସରଣ କରିବା ଥିଲା କାମ । କାରଣ

Digitized by srujan ka@gmail.com

ଓଡ଼ିଶା ପୁଲିସରେ ଥିଲେ କମ୍ୟୁନିଷ୍ଟ ପାର୍ଟିର ଅନେକ ବନ୍ଧୁ । ମୋର ବୟସ ସେତେବେଳକୁ ଅଠର ବର୍ଷ ବି ହୋଇନାହିଁ । ଦାଢ଼ି ଉଠିନାହିଁ । ଏବେ ତ ମୋର ଚେହେରା ଚାଇନିଜ ଭଳି ଦେଖାଯାଏ ବୋଲି କହନ୍ତି । ସେଇଯୋଗୁଁ କାଳିନ୍ଦୀ ଚରଣ ପାଣିଗ୍ରାହୀ ମୋର ନାମ ଦେଇଥିଲେ ମାଓ ସେ ତୁଂ । ତେଣେ ଗୋଟାଏ ଆଖିରେ ବ୍ୟାଣ୍ଡେଜ୍ । ରାଜଗୋବିନ୍ଦ ବାବୁ ମୋତେ ଚିହ୍ନି ନ ଥିଲେ । ଚିହ୍ନିଥିଲେ ମୋ ବାପାଙ୍କୁ । ମୁଁ ଯାଇ ଥାନାରେ ହାଜର ହେଲା ବେଳକୁ ଦୁର୍ଗାବାବୁ ପହଞ୍ଚି ନାହାନ୍ତି । ତାଙ୍କୁ ଗୋଟାଏ ବୁଲାଣିଆ ରାସ୍ତାରେ ଅଣାଯାଇଥାଏ । ଏଇ ସମୟରେ ଦାମୋଦର ବାବୁ ଫୋନ କରି ଫଳାଫଳ ପଚାରିଲେ । ରାଜଗୋବିନ୍ଦ ବାବୁ ତ ମୋତେ ଚିହ୍ନ ନାହାନ୍ତି, ତେଣୁ ସେ କହିଲେ ଦୁର୍ଗା ମହାନ୍ତି ଏବଂ ଆଉ ଜଣଙ୍କୁ ଗିରଫ କରାଯାଇଛି । ସେ ବୋଧହୁଏ ସେ ପଟରୁ ପଚାରିଲେ ମୋର ନାମ ବା ପରିଚୟ । ରାଜଗୋବିନ୍ଦ ବାବୁ ମୋତେ କାହିଁକି କେଜାଣି ଇଂରାଜୀରେ ପଚାରିଲେ ମୋର ନାମ । ମୋତେ ମଉକା ମିଳିଗଲା । ମୁଁ ଉତ୍ତର ଦେଲି ଆପଣ ମୋର ନାମ ଜାଣି ନାହାନ୍ତି, ଅଥଚ ରିଭଲଭର ଦେଖାଇ ଗିରଫ କରିଛନ୍ତି ? ମୋର କଣ ଅପରାଧ ତା ମୁଁ ଜାଣିବାକୁ ଚାହେଁ । ସେ ପଟରୁ ପୁଣି ଫୋନ ଆସିଲା । ବର୍ତ୍ତମାନ ଉତ୍‌କ୍ଷିପ୍ତ ରାଜଗୋବିନ୍ଦ ବାବୁ କହିଲେ ଯେ ତମେ ମୋତେ ଠକି ପାରିବ ନାହିଁ । ମୁଁ ଜାଣିନେବି ତୁମର ପରିଚୟ । ମୁଁ ହସି ଦେଇ କହିଲି ମୁଁ ତ ଓଡ଼ିଶାର । ତେଣୁ ଜାଣିବାର କଣ ଅସୁବିଧା ? ଏତେବେଳକୁ ଦୁର୍ଗାବାବୁ ପହଞ୍ଚି ସାରିଲେଣି । ସେ ଜାଣିଲେଣି ଯେ ମୋତେ ସେମାନେ ଛାଡ଼ିବେ ନାହିଁ । ତେଣୁ ନାମ କହିଦେବା ପାଇଁ ଇଙ୍ଗିତ ଦେଲେ । କିନ୍ତୁ ମୁଁ ନ ଦିଏ । ଏକ ତ ବୟସ କମ, ପୁଲିସବାଲା ଚିହ୍ନିନାହାନ୍ତି, ଦେଖାଯାଉଛି ଚୀନା ଲୋକ ଭଳି । କଥା କହୁଛି ଇଂରାଜୀରେ । ମୋର ଉତ୍ତର ଶୁଣି କ୍ରୋଧାନ୍ୱିତ ରାଜଗୋବିନ୍ଦବାବୁ ଗର୍ଜି ଉଠିଲେ ଓ କହିଲେ ଯେ ମୋତେ ଠକି ପାରିବ ନାହିଁ । ମୁଁ ଜାଣେ foreign infiltration କଥା ଏବଂ ତମେ ଯେ ତା'ଭିତରୁ ଜଣେ ଏଥିରେ ସଂଦେହ ନାହିଁ । ନେଇଯାଅ ୟା'କୁ, ହାଜତକୁ ଏବଂ ପ୍ରସ୍ତୁତ କର । ପସ୍ତୁତ ହେବ Torture (ଅତ୍ୟାଚର)ର ଯନ୍ତ୍ର । ପିନ୍, ବୁଲବାଡ଼ି, କମ୍ବଳ ପ୍ରସ୍ତୁତ ହୋଇଗଲା । ଦାମୋଦର ବାବୁଙ୍କୁ ସେ foreign infiltration କଥା ଜଣାଇଦେଲେ । ଦାମୋଦର ବାବୁ ଓ ଗୋପୀନାଥ ଦାସ ଆସି ଥାନାରେ ହାଜର । ଗୋପୀବାବୁ ଆମ ଗାଁ ପାଖଲୋକ (ଅନୁଗୋଳ ଶିମିଳିଛୁଇଁ) । ସେ ମୋତେ ପିଲାଦିନରୁ ଜାଣନ୍ତି । ସେ ହିଁ ପ୍ରଥମେ ମୋତେ ଗିରଫ କରିଥିଲେ । ସେ ସି.ଆଇ.ଡି. ଇନ୍ସପେକ୍ଟର । ତାଙ୍କ ଭଳି ଚତୁର ଏବଂ politically equipped (ରାଜନୈତିକ ଦୃଷ୍ଟିରୁ ସଚେତନ) ଅଫିସର ମୁଁ ଖୁବ୍ କମ ଦେଖିଛି । ସେ ମୋର ପରିବାର ସହିତ ପରିଚିତ । ସେ ଆସି ପହଞ୍ଚିବା ମାତ୍ରେ ଚିହ୍ନଟ ହୋଇଗଲା ମୋର । ପୁଲିସ ମୋତେ ଖୋଜୁଥିଲା କିନ୍ତୁ ଯେହେତୁ ମୋର ଘର ଅନୁଗୋଳରେ ସେହି ହେତୁରୁ ମୁଁ ଢେଙ୍କାନାଳ-ଅନୁଗୋଳ ବାଟରେ ଥିବି ବୋଲି ପୁଲିସ ଧରି ନେଇଥିଲା ଏବଂ ଚଢ଼ଉ ଚାଲିଥିଲା ଗାଁରେ ମୋତେ ଖୋଜିବା ପାଇଁ । ଅତ୍ୟାଚାରର

Digitized by srujan ka@gmail.com

ଆଉ ଆବଶ୍ୟକ ପଡ଼ିଲା ନାହିଁ । ଆରମ୍ଭ ହେଲା ଆଲୋଚନା । ସହରମାନଙ୍କରେ ସଶସ୍ତ୍ର ଅଭ୍ୟୁତ୍‌ଥାନର ରଣନୀତି ପରିହାର କରି ପାର୍ଟି ଗ୍ରହଣ କରିଥାଏ "ଗ୍ରାମାଞ୍ଚଳରେ ଗରିଲା ସଂଗ୍ରାମ ଏବଂ ସହରରେ ଅଭ୍ୟୁତ୍‌ଥାନ"ର ରାଜେଶ୍ୱର ରାଓ ନୀତି । ଅଳ୍ପଦିନ ତଳ କଥା ହୋଇଥିଲେ ବି ପୁଲିସ ତାର ଦଲିଲ ପାଇ ସାରିଥିଲେ ବୋଲି ଗୋପୀ ବାବୁଙ୍କ କଥାରୁ ଜଣା ପଡ଼ିଲା । ପାର୍ଟି ଭିତରେ ମତଭେଦ ଅଛି କି ନାହିଁ ଏହା ଜାଣିବା ତାଙ୍କର ଉଦ୍ଦେଶ୍ୟ ଥିଲା । ଆମେ ଦୁଇଜଣ ଯଥା ସମୟରେ ଜେଲକୁ ପ୍ରେରିତ ହେଲୁ ।

ଦାମୋଦର ଦାସଙ୍କର ପୁଅ ନ ଥିଲା । ଝିଅଟିକୁ ବିବାହ କରିଛନ୍ତି ଶ୍ୟାମସୁନ୍ଦର ଦାସ (ଅବସରପ୍ରାପ୍ତ ଫରେଷ୍ଟ କଂଜରଭେଟର) । ସେ ମୋର ହାଇସ୍କୁଲ ସାଥୀ, ପୁଣି ବାପାଙ୍କ ସହକର୍ମୀ ଏବଂ ମୋର ଶାଳକ ବିନୟ କୁମାରଙ୍କ ବନ୍ଧୁ । ଦାମୋଦର ବାବୁ ଅବସର ନେଲା ପରେ ତୁଳସୀପୁର ମହାନଦୀ ରୋଡ଼ରେ ତାଙ୍କ ଘରେ ରହୁଥିଲେ । ଦିନେ ତାଙ୍କର Heart Attack ହେଲା । ପାଖରେ କଳିଙ୍ଗ ପ୍ରେସ । ମ୍ୟାନେଜର ଶ୍ରୀ ବୈଦ୍ୟନାଥ ରଥ, କମ୍ୟୁନିଷ୍ଟ ପାର୍ଟିର ପ୍ରାକ୍ତନ ନେତା । ଖବର ପାଇ ଆମେ ଦୌଡ଼ିଲୁ । ଅନେକ ଲୋକ ଉପସ୍ଥିତ ଥାଆନ୍ତି । ସେ ବୈଦ୍ୟନାଥ ବାବୁ ଓ ମୋତେ ଡାକି ଚୁପ୍‌ଚାପ କହିଲେ ଯେ ଦେଖ, ଯଦି ମୋର କିଛି ହୋଇଯାଏ ତା'ହେଲେ ମୋତେ ସ୍ୱର୍ଗଦ୍ୱାରକୁ ପଠାଇଦେବାର ଦାୟିତ୍ୱ ତୁମ ଦୁହିଁଙ୍କର । ସେ ସେଥରକ ବର୍ତ୍ତିଗଲେ । ତାଙ୍କୁ ମୁଁ ଦିନେ ପଚାରିଲି ଯେ ଆପଣ ତ ଜାଣନ୍ତି ଯେ ଆମେ ସ୍ୱର୍ଗଦ୍ୱାରରେ ବିଶ୍ୱାସ କରୁନା, ସେଇଠି ଦାହ ହେଲେ ମଣିଷ ସ୍ୱର୍ଗକୁ ଯିବ ଏ ବିଶ୍ୱାସ ଆମର ନାହିଁ । ସେ ଦିନ ସେଠାରେ ଏତେ ଲୋକ ଥାଉଁ ଥାଉଁ ଆପଣ ଆମଭଳି "ନାସ୍ତିକ"ଙ୍କୁ ଏ ଦାୟିତ୍ୱ କାହିଁକି ଦେଲେ ? ସେ ହସି ହସି କହିଲେ ସେ କଥା କଣ ମୁଁ ଭୁଲିଯାଇଥିଲି । ତମ ଦୁଇଜଣଙ୍କୁ ଦାୟିତ୍ୱ ଦେବାର କାରଣ ହେଉଛି ତମେ କଥାଦେଲେ ନିଶ୍ଚୟ ରଖିବ । ଅନ୍ୟମାନେ ଭୁଲିଯିବେ । ସେଇଯୋଗୁଁ ସେ ଦାୟିତ୍ୱ ଦେଇଥିଲି ତୁମ ଦୁହିଁଙ୍କ ଉପରେ । ଶ୍ୟାମ (ଜୋଇଁ) ଆସି ନ ଥିଲା ସେତେବେଳକୁ । ତା'ର ବେଶ୍ କିଛି ବର୍ଷ ପରେ ଦାମୋଦର ବାବୁଙ୍କର ପରଲୋକ ହୋଇଗଲା । ସେତେବେଳକୁ ବୈଦ୍ୟନାଥ ବାବୁ ଗଲେଣି ଚାଲି କଟକରୁ ଗାଁକୁ (ପଟିଆ, କଳାସାହାଙ୍ଗ) ଆମେ ଚାଲି ଆସିଲୁଣି ତୁଳସୀପୁର ଛାଡ଼ି ରାଷ୍ଟ୍ରଭାଷା ରୋଡ଼କୁ । କିନ୍ତୁ ପରଲୋକ ସଂବାଦ ପାଇଁ ଯିବାକୁ ହେଲା ଦେଖିବାପାଇ ଯେ ତାଙ୍କର ମରଦେହ ଗଲା ସ୍ୱର୍ଗଦ୍ୱାରକୁ ।

ଗଂଜାମ ଜିଲ୍ଲାରେ ଥିଲାବେଳେ ମନେ ପଡୁଛି, ଓଡ଼ିଶାର ପ୍ରଥମ ନିର୍ବାଚନ । ଯଦିଓ ଏହା ସୀମିତ ଲୋକମାନଙ୍କ ଭିତରେ ସୀମାବଦ୍ଧ ଥିଲା ଏହାର ପ୍ରଭାବ ଥିଲା ଜନସାଧାରଣଙ୍କ ଉପରେ ବିପୁଳ ଭାବରେ । କଂଗ୍ରେସ ଦଳର ପ୍ରଚାରକମାନେ ସମବେତ ଗୀତ ଗାଇ ଗାଇ (ଖୋଳ, କରତାଳ ସହିତ) ବୁଲୁଥିଲେ ସାଇକୁ ସାଇ ଘରକୁ ଘର । ସେମାନେ ଯେତିକି ଲୋକ ନ ଥିଲେ ତାଙ୍କ ସାଙ୍ଗରେ ବୁଲିବାକୁ ବାହାରି ପଡୁଥିଲେ ବହୁତ ଯୁବକ ଏବଂ ଯୁବତୀ ମଧ୍ୟ ।

Digitized by srujan ka@gmail.com

ଗଭୀର ଉନ୍ମାଦନା ସୃଷ୍ଟି କରୁଥିଲା ତାହା ଲୋକଙ୍କ ମଧ୍ୟରେ । ଅପରପକ୍ଷରେ ବ୍ରିଟିଶ ସରକାରଙ୍କର ପ୍ରତିନିଧି ହୋଇ ଠିଆ ହୋଇଥିବା ବ୍ୟକ୍ତିମାନେ ଗାଡ଼ି, ମଟର. ଭୋଜି ପ୍ରଭୃତିରେ ମନୋନିବେଶ କରିଥିଲେ । ଯଦୁମଣି ମଙ୍ଗରାଜ ଜଣେ ବିଚକ୍ଷଣ ବକ୍ତା । ସେ ହାସ୍ୟରସରେ ଆପଣାର ଭାଷଣକୁ ରସାଣିତ କରୁଥିଲେ । ତାଙ୍କର ଭାଷଣ ମୋର ଟିକିଏ ମନେ ପଡୁଛି—

''ଭାତ, ତେଲ, ଲୁଣ, ହାଣ୍ଡି
ଖା ପଇସା, ମାର......''

ଓଡ଼ିଶା ତମାମ ସେଇ ଏକା ଅବସ୍ଥା । ବ୍ରିଟିଶ ସରକାରଙ୍କ ପ୍ରତିନିଧିମାନଙ୍କ ବାକ୍ସ ଥିଲା ନାଲି, କଂଗ୍ରେସ ଦଳର ଥିଲା ହଳଦିଆ । ଜବାହରଲାଲ୍ ଏହି ସମୟରେ ଓଡ଼ିଶାରେ ତାଙ୍କର ଚାରିଦିନିଆ ତୋଫାନୀ ଗସ୍ତ କରି ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଯେ କଂଗ୍ରେସର ପ୍ରାର୍ଥୀ ଗୋଟିଏ ବତୀଖୁଣ୍ଟ ହେଲେ ବି ଆପଣମାନେ ତାକୁ ହିଁ ଭୋଟ ଦେବେ । କାରଣ ତାହା ହେଉଛି ଭାରତୀୟ ଜନତାର ପ୍ରତୀକ । ସେତେବେଳେ ଜବାହରଲାଲ ହେଉଛନ୍ତି ଭାରତୀୟ ଯୁବ ସମାଜର ନୟନପିତୁଳା । ତାଙ୍କର ଲୁଗା ପ୍ୟାରିସ ସହରକୁ ଯାଏ ଧୁଆ ହେବାପାଇଁ । ଏଭଳି ମଣିଷ ଆମ ପାଇଁ ଓହ୍ଲାଇ ଆସିଛନ୍ତି ଭାରତମାତାର ମୁକ୍ତିପାଇଁ । ଏଇଭଳି ଗଳ୍ପ ପ୍ରଚାରହୁଏ ବେଶ୍ । ମହାତ୍ମାଗାନ୍ଧୀ ସୃଷ୍ଟି କରୁଥିଲେ ଭକ୍ତି, ଜବାହରଲାଲ ସୃଷ୍ଟି କରୁଥିଲେ ଉଦ୍‌ବେଳନ ।

ଏଇ ନିର୍ବାଚନ ସମୟରେ ଜଗତସିଂହପୁରରୁ ପ୍ରାର୍ଥୀ ହୋଇଥିଲେ ପ୍ରସିଦ୍ଧ କଂଗ୍ରେସ ନେତା ଭାଗିରଥୀ ମହାପାତ୍ର । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ପ୍ରସିଦ୍ଧ ଓକିଲ (ପରେ ଓଡ଼ିଶା ହାଇକୋର୍ଟର ପ୍ରଥମ ମୁଖ୍ୟ ବିଚାରପତି) ବୀରକିଶୋର ରାୟ । ନିର୍ବାଚନ ହେଲା କୋଡ଼ିଏ ତାରିଖରେ (ମାସ ମନେହେଉ ନାହିଁ) ସେତେବେଳେ ନିର୍ବାଚନ ଫଳ ପ୍ରକାଶ ପାଇ ଯାଉଥିଲା ସେଇଦିନ ବା ପରଦିନ, ଅନ୍ୟ ନିର୍ବାଚନ ମଣ୍ଡଳୀର ଭୋଟକୁ ଅପେକ୍ଷା ନ କରି ।

ବୀରବାବୁଙ୍କ ଅମାନତ ଉଡ଼ିଗଲା ।

ଆରମାସ ପହିଲା ଦିନ ଥିଲା କଟକ ସହର ନିର୍ବାଚନ । ପ୍ରସିଦ୍ଧ ନାରୀ ନେତ୍ରୀ ସରଳା ଦେବୀ ଥିଲେ କଂଗ୍ରେସ ପ୍ରାର୍ଥୀ । (ସେ ଭାଗିରଥୀ ମହାପାତ୍ରଙ୍କ ପତ୍ନୀ) ଏବଂ ତାଙ୍କ ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ବୀରକିଶୋର ରାୟଙ୍କ ପତ୍ନୀ ଲତିକା ଦେବୀ ।

''ନିଆଁଖୁଣ୍ଟା'' ଖବରକାଗଜ ସେଦିନ ଲେଖିଲା—

''ଆଜି ରଣେ ପ୍ରାଣପ୍ରିୟ ହୋଇଲେ ନିହତ,
ପ୍ରାଣପ୍ରିୟେ ବଂଚିଛନ୍ତି ପହିଲା ପର୍ଯ୍ୟନ୍ତ''

କହିବା ବାହୁଲ୍ୟ ଯେ ପହିଲା ତାରିଖ ନିର୍ବାଚନରେ ଲତିକା ଦେବୀଙ୍କ ଅମାନତ ଉଡ଼ିଗଲା ।

Digitized by srujan ka@gmail.com

ବୀରକିଶୋର ରାୟ ଜଣେ ପ୍ରସିଦ୍ଧ ଆଇନଜ୍ଞିବୀ ଥିଲେ । ତାଙ୍କର ବର୍ଣ୍ଣନା ଶୈଳୀ ବା presentation ଥିଲା ଖୁବ ମନଛୁଆଁ । ବିଚାରପତିମାନଙ୍କ ମନକୁ କିଣିନେବାର ଦକ୍ଷତା ଥିଲା ପ୍ରଭୂତ ।

ମନମୋହନ ମିଶ୍ର ପୁରୀରୁ ଗିରଫ ହୋଇ ଥାଆନ୍ତି । ବୋଧହୁଏ ପୁରୀ ମାହାର (ମେହେନ୍ତର) ଧର୍ମଘଟରେ । ଏହି ଧର୍ମଘଟର ନେତା ଥାଆନ୍ତି ନରସିଂହ ତ୍ରିପାଠୀ, ଗୋପୀ ବ୍ରହ୍ମଚାରୀ ଏବଂ ବୋଧହୁଏ ଗୌରହରି ଦାସ । ନରସିଂହ ତ୍ରିପାଠୀ ମନମୋହନବାବୁଙ୍କ ଠାରୁ ବୟସରେ ସାନ । କିନ୍ତୁ ସ୍କୁଲରେ ପଢ଼ିବା ବେଳୁ ସେ ନେତା ହୋଇ ସାରିଥିଲେ । ଓଜସ୍ୱିନୀ ଭାଷଣ ଦେବାରେ ସେ ଥିଲେ ଧୁରନ୍ଧର । ତାଙ୍କର ଭାଷଣ ପାଇଁ ମାଇକ୍ରୋଫୋନ ଦରକାର ହୁଏନା । ସେ ମନମୋହନ ବାବୁଙ୍କୁ ଡାକି ଆଣିଲେ ସଭାକୁ ଭାଷଣ ଦେବାପାଇଁ । ମନମୋହନ ବାବୁ ବକ୍ତୃତା ଦେବାରେ ଜଣେ ପ୍ରବାଦ ପୁରୁଷ । ତାଙ୍କୁ ଟିକିଏ ବ୍ରିଫିଙ୍ଗ କରିଦେଲେ ସେ ଏଭଳି ବକ୍ତୃତା ଦେଇପାରନ୍ତି ଏବଂ ତାହା ସହିତ ଗୀତ ଗାଆନ୍ତି ଏତେ ମନୋମୁଗ୍ଧକର ଯେ ଓଡ଼ିଶାରେ ସେଭଳି ବ୍ୟକ୍ତି ବିରଳ । ମନମୋହନ ବାବୁଙ୍କୁ ''ଖେଚଡ଼'' କରିଦେବା ପାଇଁ ନରସିଂହ ତ୍ରିପାଠୀ ଦାୟୀ ବୋଲି ମନମୋହନ ବାବୁଙ୍କ ମାଆ ସବୁବେଳେ ଅଭିଯୋଗ କରୁଥିଲେ ।

ମନମୋହନବାବୁଙ୍କୁ ଜାମିନ ମିଳିଲା କିନ୍ତୁ କୌଣସି ସଭା ସମିତିରେ ଭାଷଣ ଦେବାପାଇଁ ନିଷେଧ କରାଗଲା । ସେ କିନ୍ତୁ ଖଲାସ ହୋଇ ବକ୍ତୃତା ଦେବା ଆରମ୍ଭ କଲେ । ସଭାର ଆଇନଗତ ବିଶ୍ଳେଷଣ ହେଉଛି ଯେ ''ସଭାମାନେ, ଜଣେ ନିର୍ବାଚିତ ସଭାପତି ଥିବ ଏବଂ ବକ୍ତା ଠିଆ ହୋଇ ଭାଷଣ ଦେଉଥିବ'' । ମନମୋହନ ବାବୁ ବିନା ସଭାପତିତ୍ୱରେ ସଭାମାନଙ୍କରେ ଭାଷଣ ଦେଲେ ।

ଜାମିନ ନାକଚ କରିବା ପାଇଁ ଆବେଦନ କରାହେଲା ଉପର କୋର୍ଟରେ । ବୀରବାବୁ ସରକାରୀ ଓକିଲ ଭାବରେ କହିଲେ ଯେ ''ମାନନୀୟ ବିଚାରପତି ମହୋଦୟ, ଏଇ ବ୍ୟକ୍ତି ଭାଷଣ ଦେଉଛନ୍ତି ଏବଂ ସବୁ ସରକାରୀ କର୍ମଚାରୀମାନଙ୍କୁ ବ୍ରିଟିଶ ସରକାରର କୁକୁର ବୋଲି କହୁଛନ୍ତି । କହୁଛନ୍ତି ଚୌକିଦାର କୁକୁର, ପୁଲିସ କୁକୁର ଏବଂ କହୁଛନ୍ତି ଯେ ଯେଉଁମାନେ ବିଚାର କରୁଛନ୍ତି ସେମାନେ.....'' ବିଚାରପତି କଥାଟାକୁ ସେଇଠି ବନ୍ଦ କରି ଆଦେଶ ଦେଲେ ଯେ ଜାମିନ ନାକଚ ।

ବୀରବାବୁଙ୍କ ଦ୍ୱିତୀୟ ପତ୍ନୀ ହେଉଛନ୍ତି ଲତିକା ଦେବୀ । ତାଙ୍କ ଠାରୁ ବୟସରେ ବହୁତ ସାନ । ବୀରବାବୁଙ୍କ ଚାରିପୁଅ । ସମସ୍ତେ ପ୍ରତିଷ୍ଠିତ କିନ୍ତୁ ବାପାଙ୍କ ସହିତ ବୋଧହୁଏ ଏହି ବିବାହ ଯୋଗୁଁ କାହାରି ଭଲ ପଡୁ ନ ଥିଲା । ତାଙ୍କର ପରଲୋକ ହୋଇଗଲା ତାଙ୍କର ପୁରୀଘାଟ ବାସଭବନରେ । ହଠାତ୍ ଦେଖାଗଲା ଉପର ମହଲାରୁ ଆସି ଲତିକା ଦେବୀ ସେଠାରେ ପହଞ୍ଚିଛନ୍ତି । ବିବାହ ପାଟ ଦେହରେ, ଅଳଙ୍କାର ନାଦି ହୋଇଛି ଦିହରେ । ଠିଆ ହୋଇ ସେ

Digitized by srujan ka@gmail.com

ନାଟକୀୟ ଭଙ୍ଗୀରେ କହିଲେ– Thou was a king, Thou hath made me a queen and now that Thou have departed everything is Thine । ଏହା କହି ବିବାହ ପାଟ ଶାଢ଼ୀଟିକୁ ଖୋଲି ରଖିଦେଲେ ଶବ ଉପରେ । ଜିଦ୍ ଧରି ବସିଲେ ଯେ ତାଙ୍କର ବିଶାଳ ତୈଳଚିତ୍ର ଯିବ ଶବର ମୁଣ୍ଡ ପାଖରେ ରଖାହୋଇ । ଗଲା ମଧ୍ୟ । ଏକ ପଳିତ କେଶ ବୃଦ୍ଧର ଶବର ମୁଣ୍ଡ ପାଖରେ, କିଏ ଏହି ତନ୍ୱୀ ଯାହାଙ୍କ ବିଶାଳ ତୈଳଚିତ୍ର ଯାଉଛି ? ଶ୍ମଶାନରେ ପହଞ୍ଚିଲୁ । ଖାନନଗର, ସେଠାରେ ପହଞ୍ଚିଲା ପରେ ହଠାତ୍ ଲତିକା ଦେବୀ ସେଠାରେ ହାଜର । କଣ ନା, ମୁଁ ସତୀ ଯିବି । ଚାଞ୍ଚଲ୍ୟ ଖେଳିଗଲା ସମସ୍ତଙ୍କ ଭିତରେ । ପୁଅମାନେ ବସିଛନ୍ତି ନିର୍ବିକାର ଚିତ୍ତରେ । କେବଳ ଜୋଇଁ ୰ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ କିଛି ପରିମାଣରେ ସକ୍ରିୟ । ପରିଶେଷରେ ଜଣାଇଲେ ଯେ ସେ ନିଜେ ସତୀ ଯିବେ ନାହିଁ, ସେଇ ବିରାଟ ତୈଳଚିତ୍ର ତାଙ୍କ ପାଇଁ ପୋଡ଼ା ହେବ । ତୈଳଚିତ୍ର ବହୁଦିନ ୍ର ପ୍ରେମ ହୋଇଛି । ସହଜରେ ନ ପୋଡ଼େ । ଏଣେ ତାକୁ ଭାଙ୍ଗିଦେବା ପାଇଁ ସେ ପ୍ରସ୍ତୁତ ନୁହନ୍ତି । ସେ ଯାହାହେଉ ସତୀପର୍ବ ଶେଷ ହେଲା ପରେ ସେ ଆଉ ବିଧବା ହେଲେ ନାହିଁ । କାରଣ ତାଙ୍କ ମତରେ ସେ ସତୀ ଯାଇଥିବା ହେତୁ ବୈଧବ୍ୟର ଆବଶ୍ୟକତା ପଡ଼ିଲା ନାହିଁ ।

ଲତିକା ଦେବୀଙ୍କର ନିର୍ବାଚନ ପ୍ରଚାରରେ ଜଣେ ମୁଖ୍ୟ ବ୍ୟକ୍ତି ଥିଲେ ରଘୁ ରାଉତ । ସେ ବର୍ତ୍ତମାନ ଏକ ବିସ୍ମୃତ ଚରିତ୍ର । କିନ୍ତୁ ''ସତକଥା'' ନାମକ ଏକ ସାପ୍ତାହିକୀର ସଂପାଦକ ଭାବରେ ସେ ଦିନେ କଟକ ସହରରେ ଥିଲେ ବେଶ୍ ଜଣାଶୁଣା । ଧୋବ ଫରଫର ଧୋତି ଓ ପଂଜାବୀ ପରିହିତ ରଘୁରାଉତ କଟକ ମ୍ୟୁନିସପାଲ କାଉନସିଲର ଥିଲେ । ତାଙ୍କର ଭଲଗୁଣ ହେଉଛି ଯେ କୌଣସି କଥା ଲୁଚାନ୍ତି ନାହିଁ । ସେ ମଦ୍ୟପାନ କରନ୍ତି ଏବଂ କୁସଙ୍ଗ ହେତୁ ତାଙ୍କର ଗୋଟାଏ ଗୋଡ଼ ଅଚଳ, ସେ ବ୍ରିଟିଶ ସରକାରଙ୍କର ସ୍ତାବକ । କୌଣସି କଥା ସେ ଆବରଣ ଦେଇ ଢାଙ୍କିବାକୁ ଚେଷ୍ଟା ବି କରିନାହାନ୍ତି । ଦୁଇଟା (ନା ତିନିଟା ଠିକ୍ ମନେ ପଡୁନି) ନିର୍ବାଚନରେ ସେ କଟକ ସହରରୁ ପ୍ରାର୍ଥୀ ବି ହୋଇଥିଲେ । ତାଙ୍କ କଥା ଉଲ୍ଲେଖ କରିବାର ଗୋଟାଏ କାରଣ ଅଛି । ଥରେ ଗାନ୍ଧିଜୀଙ୍କର ଜନ୍ମ କି ମୃତ୍ୟୁ ଦିବସ ପାଳିତ ହେଉଥାଏ କଟକ ଟାଉନହଲରେ । ମୋ ଭଳିଆ ଗାନ୍ଧୀ 'ଭକ୍ତ'ଙ୍କୁ ମିଶାଇ ଆମେ ସାତଜଣ ଥିଲୁ ସଭାରେ ଉପସ୍ଥିତ । ସେମାନଙ୍କ ଭିତରେ ରଘୁ ରାଉତ ବି ଥିଲେ । ସଭାପତି, ବକ୍ତା, ନିବେଦକବୃନ୍ଦ କେହି ନାହାନ୍ତି । ସଭାରେ ଶେଷକୁ ରଘୁ ରାଉତଙ୍କୁ ସଭାପତି କରାଗଲା । ସେ ସଭାପତି ଅଭିଭାଷଣରେ ଯାହା କହିଲେ ତାହା ମୋତେ ମୁଗ୍ଧ କରିଥିଲା । ସେ କହିଲେ, ଏ ଦେଶର ଭାଗ୍ୟ ଇମିତି ହେଲା ଯେ ଶେଷକୁ ମୋ ଭଳି ଲୋକକୁ ଗାନ୍ଧୀ ସ୍ମୃତି ସଭାରେ ସଭାପତିତ୍ୱ କରିବାକୁ ପଡ଼ିଲା । ଆମେ ସବୁ ଥିଲୁ ବ୍ରିଟିଶରାଜର ସମର୍ଥକ । କଂଗ୍ରେସ ପ୍ରାର୍ଥୀମାନଙ୍କ ବିରୁଦ୍ଧରେ ବ୍ରିଟିଶ ସରକାରର ପ୍ରାର୍ଥୀମାନଙ୍କ ନାଲି ବାକ୍ସରେ ଭୋଟ ଗେଞ୍ଜିବା ପାଇଁ ଆମେ ଲୋକଙ୍କୁ ମତାଉଥିଲୁ । ହେଲେ ବିବେକ କହୁଥିଲା

Digitized by srujan ka@gmail.com

ଯେ ଗାନ୍ଧୀ ବୁଢ଼ା ଠିକ୍ କହୁଛି । କିନ୍ତୁ ଆମର ବିବେକ କଣ ଥିଲା ଯେ ? ପଇସା ମିଳିଲା ତ ଆମେ ଚାଲିଲୁ । ଆଜି କିନ୍ତୁ କଣ ହେଲା ? ସେ ବିବେକୀ ଲୋକଗୁଡ଼ାକ ଗଲେ କୁଆଡ଼େ ? ମୋ କଥା ଶୁଣିବା ହେଉ । ଗାନ୍ଧୀ ବୁଢ଼ା ମଲାଣି । ମଲା ଘୋଡ଼ାର ଟାଙ୍କ କେହି ଗଣିବେ ନାହିଁ । ଗାନ୍ଧୀକଥା ଗାନ୍ଧୀବାଲା ଭୁଲି ଗଲେଣି । କିଏ କେଉଁଠି କାଁ ଭାଁ ଥିବେ ଅବା । ସେଇଯୋଗୁଁ ଗୋଟିଏ କଥା କର । ଏଣିକି ମଦ ବେପାରୀ, ଚୋରା ବଜାରୀ, ସିମେଣ୍ଟ ଏଜେଣ୍ଟଙ୍କ ଜନ୍ମଦିବସ ପାଳନ କର । ସେଥିରେ ପଇସା ମିଳିବ ଲୋକେ ବି ଆସିବେ । ଆଉ ତା ନକରି ପାରିଲେ ଏଇ ଦିନକୁ ଗାନ୍ଧୀସଭା ସହିତ ସେମାନଙ୍କ ଭିତରୁ କାହାର ଜନ୍ମ ଦିବସ ମିଶାଇ ପାଳନ କର । ଗାନ୍ଧୀବାଦୀମାନେ ଯେପରି ଚୋରାବେପାରୀ, ମଦ ବେପାରୀ, ସିମେଣ୍ଟ ଏଜେଣ୍ଟଙ୍କ ପାଲରେ ପଡ଼ି ଗାନ୍ଧୀଙ୍କୁ ଖାଇ ସାରିଲେଣି । ସେମାନେ ଏଭଳି ମିଳିତ କାର୍ଯ୍ୟକ୍ରମରେ ଖୁସିହେବେ । ''ହେ ଗାନ୍ଧୀ, ତୁମେ ଏ ଦେଶକୁ ରକ୍ଷାକର ।'' ସେ ଆଖିରୁ ଲୁହ ପୋଛିଲେ ।

ଅନେକ ଦିନର କଥା ହେଲାଣି । କିନ୍ତୁ ମୁଁ ତାହା ଭୁଲି ନାହିଁ । ଆମ ସମସ୍ତଙ୍କ ଆଖି ଲୁହରେ ଛଳ ଛଳ ହୋଇଯାଇଥିଲା ସେ ଦିନ ।

୧୯୩୭ ମସିହା ନିର୍ବାଚନ ହେଲା ଯୁଗାନ୍ତକାରୀ ନିର୍ବାଚନ । ଏହି ନିର୍ବାଚନର ଫଳାଫଳ ଯେପରି ମୁକ୍ତିକାମୀ ଭାରତୀୟ ଜନତାର ରାୟକୁ ଅଭ୍ରାନ୍ତ ଭାବରେ ପ୍ରମାଣିତ କରିଥିଲା, ଠିକ୍ ସେଇପରି ଉତ୍ତର ପ୍ରଦେଶ ନିର୍ବାଚନ ପରେ କଂଗ୍ରେସ ଦଳର ଟାକ୍ଟିକାଲ (Tactical) ବା କୌଶଳଗତ ଭୁଲ୍ ଯୋଗୁଁ ଦେଶ ବିଭାଜନ ପାଇଁ ରାସ୍ତା ଖୋଲିଯାଇଥିଲା । କାରଣ ତା'ପରେ ମୁସଲିମ୍ ଲିଗ୍ ଆଉ କଂଗ୍ରେସ ସହିତ ସମଝୋତା କରିବା ପାଇଁ ରାଜି ହେଲାନାହିଁ । ଏଥିପାଇଁ ଅନେକ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଦାୟୀ କରନ୍ତି । ଜବାହରଲାଲ ହୁଏତ ଏହି ମତର ପୃଷ୍ଠପୋଷକ । ଜିନ୍ନାଙ୍କ ସହିତ ତାଙ୍କର ବ୍ୟକ୍ତିଗତ ବିଦ୍ୱେଷ ବା ବୈରତା ହୁଏତ ଏଥିପାଇଁ ଦାୟୀ ବା ତାଙ୍କର ସାମ୍ପ୍ରଦାୟିକତାବାଦ ବିରୋଧୀ ଉତ୍କଟ ବିରୋଧଭାବ ଏହାକୁ ନିୟନ୍ତ୍ରିତ କରି ଥାଇପାରେ । କିନ୍ତୁ ୧୯୩୭ ମସିହାରେ କଣ ଜବାହରଲାଲ ଏଭଳି ଶକ୍ତିଶାଳୀ ଥିଲେ କଂଗ୍ରେସରେ ଯେ ସେ ତାଙ୍କର ମତକୁ କାର୍ଯ୍ୟକାରୀ କରାଇ ନେଇ ପାରିଲେ ? ମହାତ୍ମା ଗାନ୍ଧୀ, ସର୍ଦ୍ଦାର ପଟେଲ, ଖାଁ ଅବଦୁଲ ଗଫୁର ଖାଁ, ବି. ଜି. ଖେର, ଆଚାର୍ଯ୍ୟ କ୍ରିପଲାନୀ ପ୍ରଭୃତି ବହୁ ବ୍ୟକ୍ତି ଥିଲେ । ସେମାନେ ଏହାକୁ କିପରି ଗ୍ରହଣ କରିନେଲେ ? ମହାତ୍ମା ଗାନ୍ଧୀ ବହୁ ସମୟରେ ଆପଣାର ଭିଟୋ ପ୍ରୟୋଗ କରିଛନ୍ତି, କେତେକ ସମୟରେ ଅନଶନ ଦ୍ୱାରା । ସେ କିପରି ଏହାକୁ ଗ୍ରହଣ କଲେ ? ସେତେବେଳର ଉତ୍ତର ପ୍ରଦେଶରେ ପଣ୍ଡିତ ମଦନମୋହନ ମାଲବ୍ୟ, ପୁରୁଷୋତ୍ତମ ଦାସ ଟଣ୍ଡନ ପ୍ରଭୃତି ନେତା ଥିଲେ । ସେମାନେ କିପରି ଏହାକୁ ଗ୍ରହଣ କରିନେଲେ ? ଖାଲି ପଣ୍ଡିତ ନେହେରୁ କ'ଣ ଏଥିପାଇଁ ଦାୟୀ ?

Digitized by srujan ka@gmail.com

ସେତେବେଳେ ରସେଲକୋଣ୍ଡା ସହରର ନାମ ଭଞ୍ଜନଗର ହୋଇ ନ ଥିଲା । ମୋର ମନେ ପଡ଼ୁଛି ସେତିକିବେଳେ ଡେଲାଙ୍ଗରେ ସମ୍ମିଳନୀ । ମୋର ଦାଦା ସେଥିରେ ଯୋଗଦେବାକୁ ଗଲେ । ସେତେବେଳେ ଆମର ପଡ଼ୋଶୀ ଥାଆନ୍ତି ୰ ଗୋଲକ ଚନ୍ଦ୍ର ପଟ୍ଟନାୟକ, ଫରେଷ୍ଟ ରେଞ୍ଜର । ତାଙ୍କର ବଡ଼ ପୁଅଙ୍କୁ ଦେଖିଲି । ମୋଟାମୋଟି ମଣିଷ, ପତଳା ନୁହନ୍ତି । ଖଦଡ଼ ପିନ୍ଧନ୍ତି । ସେ ରେଭେନ୍ସା କଲେଜରୁ ଆସନ୍ତି ଛୁଟିରେ ପ୍ରାୟ ସବୁ ସମୟରେ ମୋର ଦାଦା ୰ ବିରଞ୍ଚି ନାରାୟଣ ପଟ୍ଟନାୟକଙ୍କ ସହିତ କଟାନ୍ତି । ତାଙ୍କର ନାମ ବନମାଳୀ ପଟ୍ଟନାୟକ । ଗମ୍ଭୀର ପ୍ରକୃତିର ଲୋକ ଥିଲେ । ବନମାଳୀ ପଟ୍ଟନାୟକ ପରେ କଂଗ୍ରେସ ଦଳର ଜଣେ ତୁଙ୍ଗ ନେତା ହେଲେ । କଂଗ୍ରେସ କମିଟିର ସଭାପତି ହେଲେ, ମନ୍ତ୍ରୀ ବି ହେଲେ । ଆମେ ସବୁ ତାଙ୍କୁ ଭାଇ ଡାକି ଆସିଛୁ ପିଲାଦିନୁ । ତାଙ୍କର ସାନ ଭାଇ ୰ ଶଶି ଭୂଷଣ (ମୋର ବାପାଙ୍କର ନାମ ଶଶି ଭୂଷଣ । ସେଇଯୋଗୁଁ ତାଙ୍କୁ ମୈତ୍ର ବୋଲି ମୋ ବାପା ଡାକନ୍ତି) ମୋର ସହପାଠୀ ଥିଲେ । ବନମାଳୀ ବାବୁଙ୍କର ତିନି ଭାଇ ଯାକ ପ୍ରାୟ ଗୋଟିଏ ବର୍ଷରେ ଡକାଡକି ହୋଇ ଚାଲିଗଲେ, ସେଇ ହୃଦରୋଗରେ । ମୋର ମନେହୁଏ ଗୋଟାଏ କିଛି Congenital ରୋଗ ଥିଲା ସେମାନଙ୍କର । ଦାଦାଙ୍କ ସଙ୍ଗେ ମୁଁ ଜିଦ୍ ଧରିଲି ଡେଲାଙ୍ଗ ଯିବାପାଇଁ । ବନମାଳୀବାବୁ ବି ଯାଉଥାନ୍ତି । କଥା ହେଲା ଯେ ମୋତେ ନେବେ କିନ୍ତୁ ଦିନକ ପରେ ପୁଣି ଛାଡ଼ିଦେଇ ଯିବେ । କିନ୍ତୁ ତାହା ହୋଇପାରିଲା ନାହିଁ, ମୋର ହଠାତ୍ ଅସୁସ୍ଥତା ଯୋଗୁଁ ।

ଭଞ୍ଜନଗରରେ ଆମେ ଥିଲାବେଳେ ହଠାତ୍ ଆସ୍କାରେ ଏକ ବ୍ୟାଙ୍କରେ ମର୍ଡ଼ର ଏବଂ ଲୁଟ ହୋଇଗଲା । ତାହା ରାଜନୈତିକ ଚାଞ୍ଚଲ୍ୟ ସୃଷ୍ଟିକଲା । କାରଣ ଏହି ବ୍ୟାଙ୍କ ମର୍ଡ଼ର ଏକ ରାଜନୈତିକ ମର୍ଡ଼ର ବୋଲି ପ୍ରଚାର ହେଲା । ମୋର କିଛି ମନେ ନ ଥାନ୍ତା କିନ୍ତୁ ଦାଦାଙ୍କ ଠାରୁ ବୁଝିବା ପାଇଁ ପୁଲିସର ବାରମ୍ବାର ଆଗମନ (ଅବଶ୍ୟ ସେ ପୁଲିସ ଅଫିସରମାନେ ବାପା ଦାଦାଙ୍କ ପରିଚିତ ଲୋକ) ସେ ଘଟଣାକୁ ଏପର୍ଯ୍ୟନ୍ତ ସଜାଗ କରି ରଖିଛି । ହୁଏତ ମର୍ଡ଼ର କରିଥିବା ବ୍ୟକ୍ତିମାନଙ୍କର କିଛି କିଛି ରାଜନୈତିକ ଗନ୍ଧ ଥିଲା । ଏବଂ ସେମାନେ କିଛି ରାଜନୈତିକ ନେତାମାନଙ୍କୁ ବେଶ୍ ଭଲଭାବରେ ଜାଣିଥିଲେ ।

ଏହି ଲୁଟ୍ ଏବଂ ମର୍ଡ଼ର ହେବା ଦିନ ୰ ବିଜୟ ଚନ୍ଦ୍ର ଦାସ ଆସ୍କାରେ ଥିଲେ । ହୁଏତ ମର୍ଡ଼ର କରିଥିବା ବ୍ୟକ୍ତିମାନଙ୍କୁ ସେ ଜାଣିଥିଲେ କିନ୍ତୁ ମର୍ଡ଼ର ସହିତ ସେ ଆଦୌ ସଂପୃକ୍ତ ନ ଥିଲେ । କାରଣ ମର୍ଡ଼ର ଥିଲା ବ୍ୟକ୍ତିଗତ ।

ବିଜୟବାବୁ ଲୁଟ ଓ ମର୍ଡ଼ର ସଂବାଦ ପାଇଲା ପରେ ସନ୍ଦେହ କରିଥିଲେ ଯେ ତାଙ୍କୁ ହୁଏତ ଏଥିରେ ଫସାଇ ଦିଆଯାଇପାରେ । କାରଣ କମ୍ୟୁନିଷ୍ଟ ହେବା ପୂର୍ବରୁ ତାଙ୍କର ଏକ ସଂତ୍ରାସବାଦୀ ପୃଷ୍ଠଭୂମି ଥିଲା, ଯଦିଓ ତାହା ଥିଲା ସଂକ୍ଷିପ୍ତ । ତେଣୁ ଯଥେଷ୍ଟ ସର୍କୁମଷ୍ଟାନସିଆଲ ଏଭିଡେନ୍ସ (Circumstantial Evidence) ଛାଡ଼ି ଆସିଥିଲେ ନିଜର ସୁରକ୍ଷା ପାଇଁ । ତଥାପି

Digitized by srujan ka@gmail.com

ତାଙ୍କ ପଂଜାବୀରେ ଏକ ରକ୍ତ ରଂଗର ଦାଗ ଦେଖି ତାଙ୍କୁ ସନ୍ଦେହ କରାଯାଇଥିଲା । କିନ୍ତୁ ପରେ ଜଣା ପଡ଼ିଲା ଯେ ପଂଜାବୀରେ ଥିଲା ଚା' ଦାଗ, ଚା' ଦାଗ ଉପରେ ସେ ହାତରେ ଧରିଥିବାର ଲାଲ କଭର୍ ଥିବା Problems of Leninism ବହି ଲାଗିଯାଇ ତାହା ରକ୍ତବର୍ଣ୍ଣ ହୋଇଯାଇଥିଲା । ବିଜୟବାବୁ ସନ୍ଦେହର ନାଗଫାଶରୁ ମୁକୁଳିଥିଲେ । କିନ୍ତୁ ମନମୋହନ ମିଶ୍ରଙ୍କ ପିଛା ଏହି ଅଭିଯୋଗ ଲାଗିଥିଲା ଅନେକ ଦିନ ଧରି । ଏ ସଂପର୍କରେ ବିଧାନସଭାରେ ଅନେକ ପ୍ରଶ୍ନ ମଧ ଉତ୍ଥାପିତ ହୋଇଛି । କାରଣ କହିପାରିବି ନାହିଁ । ଏପରିକି ମୋର ରାଜନୈତିକ ଜୀବନର ପ୍ରାରମ୍ଭରେ ମୁଁ ଏଇ ଅଭିଯୋଗ ତାଙ୍କ ସଂପର୍କରେ ଶୁଣିଥିଲି, ଯଦିଓ କୌଣସି ପ୍ରମାଣ ନ ଥିଲା । କିନ୍ତୁ ମନମୋହନ ବାବୁଙ୍କ ସହିତ ସେଇ ମର୍ଡ଼ର କରିଥିବା ଲୋକଙ୍କ ଭିତରୁ କିଛି ଲୋକଙ୍କ ପରିଚିତି ଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । କାରଣ ବହୁ ବର୍ଷପରେ ମନମୋହନ ବାବୁ ଯେତେବେଳେ ''କଳିଙ୍ଗ'' ପତ୍ରିକାର ସଂପାଦକ ଥିଲେ ସେତେବେଳେ କଟକ ସହରର ସାଆନ୍ତ ସାହିରେ ଜଣେ ବ୍ୟକ୍ତି ଆସି ଭଡ଼ାରେ ରହିଲେ । ମନମୋହନ ବାବୁ ଥରେ ମୋତେ ତାଙ୍କ ସହିତ ପରିଚୟ କରାଇ ଦେଇଥିଲେ ଏବଂ କହିଥିଲେ ଯେ ଏଇ ବ୍ୟକ୍ତି ଆସ୍କା ବ୍ୟାଙ୍କ ମର୍ଡ଼ର ସହିତ ସଂପୃକ୍ତ । ମୋର ମନେପଡୁଛି, ଡକ୍ଟର ରାଧାନାଥ ରଥ ମଧ ସେଦିନ ଉପସ୍ଥିତ ଥିଲେ । ଗୁରୁଚରଣ ପଟ୍ଟନାୟକ ମଧ ଉକ୍ତ ବ୍ୟକ୍ତିଙ୍କୁ ଦେଖିଥିଲେ ମନମୋହନ ବାବୁଙ୍କ ଘରେ । ମନମୋହନ ବାବୁ କମ୍ୟୁନିଷ୍ଟ ପାର୍ଟିରୁ ଗଲାପରେ କିଛି ''ବନ୍ଧୁ'' କହିବାର ଶୁଣିଛି ଯେ ଉକ୍ତ ବ୍ୟାଙ୍କ ଡକାୟତିରୁ ମନମୋହନ ବାବୁଙ୍କୁ ହାରଟିଏ ମିଳିଥିଲା । କିନ୍ତୁ ଅଭିଯୋଗ ବନ୍ଧୁମାନେ ଆଗରୁ କାହିଁକି କଲେ ନାହିଁ ବୋଲି ପଚାରିବାରୁ କୌଣସି ଉତ୍ତର ମିଳି ନ ଥିଲା । ତେବେ ଅନେକ ସମୟ ଅତିକ୍ରାନ୍ତ ହୋଇ ସାରିଥିଲା ସେତେବେଳକୁ ।

ଆଗରୁ ଉଲ୍ଲେଖ କରିଛି ଯେ ବିଜୟବାବୁ ଆପଣାକୁ ନିର୍ଦ୍ଦୋଷ ପ୍ରମାଣ କରିବା ପାଇଁ Circumstantial evidence ଅନେକ ଛାଡ଼ି ଆସିଥିଲେ ।

ଏଇକଥା ମନେପଡ଼ିଲେ, ସେ ସଂପର୍କରେ ମୋର ଦୁଇଟି କାହାଣୀ ମନେପଡ଼େ ।

୧୯୩୮ ମସିହାର କଥା । ରଣପୁର ସେତେବେଳେ ଏକ ଗଡ଼ଜାତ । ରାଜ ଅତ୍ୟାଚାର ଭୟାନକ ଏବଂ ତା' ବିରୁଦ୍ଧରେ ବିଦ୍ରୋହ ମଧ ପ୍ରବଳ । ସେତିକିବେଳେ ତତ୍କାଳୀନ ପଲିଟିକାଲ ଏଜେଣ୍ଟ ବେଜେଲ୍‌ଗେଟ୍ ଯାଇଥାନ୍ତି ରଣପୁର ଗସ୍ତରେ । ତାଙ୍କୁ ଏକ ସ୍ମାରକ ପତ୍ର ଦେବାଲାଗି ଆହ୍ୱାନ କରାଯାଇଥାଏ ଏକ ବିରାଟ ଜନସମାବେଶ । ତତ୍କାଳୀନ କଂଗ୍ରେସ ନେତା ପ୍ରଜାମଣ୍ଡଳ ନେତା ହରେକୃଷ୍ଣ ମହତାବ ସେ ସଭାରେ ଭାଷଣ ଦେବେ ଏବଂ ଏକ ସ୍ମାରକପତ୍ର ପ୍ରଦାନ କରିବାର କଥା ଘୋଷିତ ହୋଇଥାଏ । ସେଠାରେ ଏକ ଆକସ୍ମିକ ଦୁର୍ଘଟଣା ଘଟିଗଲା ଏବଂ ତତ୍କାଳୀନ ପଲିଟିକାଲ ଏଜେଣ୍ଟ ବେଜେଲଗେଟ୍ ନିହତ ହେଲେ ।

Digitized by srujan ka@gmail.com

ମହତାବ ବାବୁ ରଣପୁର ଯିବାବାଟରେ ଟାଙ୍ଗୀଠାରେ ପହଞ୍ଚି ଶୁଣିଲେ ଏଇ ଖବର । ସେ ରଣପୁର ନ ଯାଇ ଗୋଟିଏ ବାର୍ତ୍ତା ପଠାଇଲେ । ରଣପୁରକୁ ଖାଲିକରି ସମସ୍ତେ ପାଖ ମୋଗଲବନ୍ଦୀ ଅଞ୍ଚଳକୁ ପଳାଅ ଏବଂ ସବୁ ରାସ୍ତାଘାଟ ଭାଙ୍ଗିଦିଅ । ସେ ଜାଣିପାରିଥିଲେ ପଲଟିକାଲ ଏଜେଣ୍ଟଙ୍କ ମୃତ୍ୟୁ ଏକ ଗୁରୁତର ଘଟଣା ଏବଂ ସାମରିକ ବାହିନୀ ଆସିବେ ରଣପୁରବାସୀଙ୍କୁ ଦମନ କରିବାପାଇଁ, ଫଳରେ ଅତ୍ୟାଚାର ବହୁତ ହେବ ।

ଏହାପରେ ସେ ନିକଟସ୍ଥ ଟାଙ୍ଗୀ ଥାନାକୁ ଯାଇ ନିଜେ ଏଫ୍.ଆଇ.ଆର. (First Information Report) ଦେଲେ ଏବଂ ସେ ସେଇ ସମୟରେ ରଣପୁରରେ ନୁହେଁ, ଟାଙ୍ଗୀରେ ଉପସ୍ଥିତ ଅଛନ୍ତି ଏହାର ପ୍ରମାଣ ଦେଲେ । ବାଟରେ ଫେରି ସେ ଖୋର୍ଦ୍ଧା, ଭୁବନେଶ୍ୱର ଥାନାରେ ମଧ ସେଇପରି ଅନୁରୂପ ଏଫ.ଆଇ.ଆର. ଦାୟର କରି ରାଜଭବନକୁ ଗଲେ । ସେତେବେଳେ ବର୍ତ୍ତମାନର ଶିଶୁଭବନ ଥିଲା ରାଜ୍ୟପାଳଙ୍କ କୋଠି । ସେଠାରେ ପହଞ୍ଚି ସେ ଡକାଇ ପଠାଇଲେ ପ୍ରଧାନମଂତ୍ରୀ (ସେତେବେଳେ ମୁଖ୍ୟମନ୍ତ୍ରୀମାନଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) ବିଶ୍ୱନାଥ ଦାସଙ୍କୁ । ସେମାନେ ଘଟଣାର ବିଚାର ବିମର୍ଷ କଲେ ଏବଂ ସ୍ଥିର ହେଲା ଯେ ସାଙ୍ଗେ ସାଙ୍ଗେ କଟକର ରାଜରାସ୍ତା ଉପରେ ଓଡ଼ିଶା ମିଲିଟାରୀ ପୁଲିସ ଫ୍ଲାଗମାର୍ଚ୍ଚ କରି ରଣପୁର ଅଭିମୁଖେ ଯାତ୍ରା କରିବେ । କାରଣ ସେପଟରୁ ମିଲିଟାରୀ ଆସିବା ପୂର୍ବରୁ ଭାରତ ସରକାର ନିଶ୍ଚିତ ଭାବରେ ଓଡ଼ିଶା ମିଲିଟାରୀ ପୁଲିସକୁ ରଣପୁର ପଠାଇବା ପାଇଁ ନିର୍ଦ୍ଦେଶ ଦେବେ । ସତକୁ ସତ ବେତାର ଯୋଗେ ସେଇ ଆଦେଶ ଆସିଗଲା । ଫ୍ଲାଗମାର୍ଚ୍ଚ ପରେ ମିଲିଟାରୀ ପୁଲିସ କାଠଯୋଡ଼ି ନଦୀକୁ ଖରାଦିନିଆ ରାସ୍ତାରେ ଅତିକ୍ରମ କରି ''ବିଶ୍ରାମ'' ନେଲେ । ତେଣେ ଏହାଫଳରେ ଭାରତ ସରକାର ଖୁସ୍, ଓଡ଼ିଶାର ଲାଟ୍ ସାହେବ ମଧ ଖୁସ୍ । ନିଷ୍ପତ୍ତି ହେଲା ଯେ ମୋଗଲବନ୍ଦୀ ଅଞ୍ଚଳକୁ ପଳାଇ ଯାଇଥିବା କିଛି ରଣପୁରବାସୀଙ୍କୁ ଗିରଫ କରିନେଇ ଜେଲରେ ରଖାଯିବ, ଭଲ ଖାଇବା ପିଇବାକୁ ଦେଇ । କାରଣ ଭାରତ ସରକାର ଜାଣିବେ ଯେ ଓଡ଼ିଶା ସରକାର ମେଳିଆମାନଙ୍କୁ ଗିରଫ ବି କରୁଛନ୍ତି । ଓଳସିଂ ଗ୍ରାମର ଦାଶରଥି ପଟ୍ଟନାୟକଙ୍କ ଘରେ କିଛି ରଣପୁର ଲୋକେ ଆଶ୍ରୟ ନେଇଥିଲେ । ଦାଶରଥି ପଟ୍ଟନାୟକ ପ୍ରସିଦ୍ଧ ଚରଣ ପଟ୍ଟନାୟକଙ୍କ ବଂଶଧର ଏବଂ ବ୍ରିଟିଶ ସରକାରଙ୍କ ଅନୁଗତ । ତାଙ୍କ ଘରେ ତାଙ୍କର ବନ୍ଧୁବାନ୍ଧବ, ସଂପର୍କୀୟ, ପରିଚିତ କିଛି ରଣପୁରବାସୀ ଆଶ୍ରୟ ନେଇଥିଲେ ଯେଉଁମାନଙ୍କର ମେଳି ସହିତ କିଛି ସଂପର୍କ ନ ଥିଲା । କେବଳ ଆସନ୍ନ ସାମରିକ ଅତ୍ୟାଚାର ଭୟରେ ସେମାନେ ଆଶ୍ରୟ ଖୋଜିଥିଲେ । କିନ୍ତୁ ସେମାନଙ୍କୁ ''ଆଶ୍ରୟ'' ଦେଇଥିବା ଅପରାଧରେ ଦାଶରଥି ପଟ୍ଟନାୟକ ସମେତ ପ୍ରାୟ ଶତାଧିକ ଲୋକ ଓଳସିଂରୁ ଗିରଫ ହେଲେ, ରାଜନୈତିକ କାରଣରୁ ନୁହେଁ ପାରିବାରିକ ବୈରତା ଯୋଗୁଁ ।

ବେଜେଲ୍‌ଗେଟ୍‌ଙ୍କ ହତ୍ୟାପରେ ଗୁର୍ଖା ଏବଂ ଘରଓ୍ୱାଲି ରେଜିମେଣ୍ଟ ପହଞ୍ଚିବା ପୂର୍ବରୁ ରଣପୁର ଖାଲି ହୋଇଯାଇଥିଲା । ତେଣୁ ସାମରିକ ଅତ୍ୟାଚାର ସମ୍ଭବପର ହୋଇପାରି ନ ଥିଲା ।

Digitized by srujan ka@gmail.com

ମୋକଦ୍ଦମା ଆରମ୍ଭ ହେଲା । ସ୍ୱାଭାବିକ ଭାବରେ ମହତାବବାବୁ ହେଲେ ପ୍ରଥମ ଅଭିଯୁକ୍ତ ବ୍ୟକ୍ତି । ଏଭଳି ପ୍ରସିଦ୍ଧ ଲୋକଙ୍କୁ ଆଇଡିଣ୍ଟିଫାଇ (identify) ବା ଚିହ୍ନଟ କରିବା ମଧ୍ୟ ସାକ୍ଷୀମାନଙ୍କ ପାଇଁ କଷ୍ଟକର ହୋଇ ନ ଥିଲା । ତେଣୁ ସମସ୍ତେ ଧରି ନେଇଥିଲେ ଯେ ମହତାବବାବୁ ଫାଶି ଚଢ଼ିବେ ।

ସରକାରୀ ଓକିଲ ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ (ପରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି) ଦୀର୍ଘକାୟ, ମୋଟା ମଣିଷ, ଢିମା ଢିମା ଆଖି । କଥା କହିଲେ ମେଘ ଗର୍ଜିଲା ପରି ମନେହୁଏ । ପୁରୁଣାକାଳିଆ ଓକିଲ । ଟେବୁଲ ଉପରେ ବିଧାମାରି ସାକ୍ଷୀକୁ ଜେରା କରନ୍ତି । ତାଙ୍କ ଚେହେରା, ପାଟି, ଟେବୁଲବାଡ଼ିଆରେ ସାକ୍ଷୀମାନେ ପରିସ୍ତ୍ରା କରି ପକାନ୍ତି ।

ଅନ୍ୟପଟରେ ଓକିଲ ଦୀନବନ୍ଧୁ ସାହୁ (ପରେ ଆଡ଼ଭୋକେଟ ଜେନେରାଲ, ମନ୍ତ୍ରୀ) । ବାଙ୍ଗରା ମଣିଷ, ତରୁଣ । ଧୀରେ ଧୀରେ କଥା କହନ୍ତି । ଦୁହେଁ କଣ୍ଟ୍ରାଷ୍ଟ କ୍ୟାରେକ୍ଟର (Contrast Character) ବା ବିପରୀତ ଚରିତ୍ରର ବ୍ୟକ୍ତି ।

ଚିନ୍ତାମଣିବାବୁ ମୋକଦ୍ଦମାର ପୂରା ତଦ୍‌ବିର କରି ବହୁ ସାକ୍ଷୀଙ୍କୁ ଆଣି ଥୋଇଲେ ମିସଲ ଉପରେ । ସେମାନେ ସମସ୍ତେ "ଚାକ୍ଷୁସ ପ୍ରମାଣ" ଦେଲେ ଯେ ହରେକୃଷ୍ଣ ମହତାବ ସଭାରେ ଉପସ୍ଥିତ ଥିଲେ କେବଳ ନୁହେଁ, ବେଜେଲଗେଟ୍‌କୁ ମାରିବା ପାଇଁ ଲୋକଙ୍କୁ ଉସକାଇ ଥିଲେ ।

ପ୍ରସିକ୍ୟୁସନ କାମ ସରିଲା । ଦୀନବନ୍ଧୁ ସାହୁ ବିଚାରପତିଙ୍କ ପାଖରେ ନିବେଦନ କଲେ– ମାନ୍ୟବର ବିଚାରପତି ମହୋଦୟ, ପ୍ରସିକ୍ୟୁସନ ସରିଲା । ଏହା ପରେ ଆପଣ ଆଉ କୌଣସି ସାକ୍ଷ୍ୟ ନେବେ ନାହିଁ, ପ୍ରସିକ୍ୟୁସନ ତରଫରୁ ? ମାନ୍ୟବର ବିଚାରପତିଙ୍କ ସମ୍ମତି ପରେ ଦୀନବନ୍ଧୁ ବାବୁ ପକେଟରୁ ବାହାର କଲେ ଗୋଟିକ ପରେ ଗୋଟିଏ ଏଫ.ଆଇ.ଆର. । ଯଦି ମହତାବ ଏକ ନିର୍ଦ୍ଦିଷ୍ଟ ସମୟରେ ଟାଙ୍ଗୀ, ଖୋର୍ଦ୍ଧା, ଭୁବନେଶ୍ୱର ଏବଂ କଟକରେ ଉପସ୍ଥିତ ଥିଲେ, ତା'ହେଲେ ସେ ସେଇ ସମୟରେ କିପରି ଉପସ୍ଥିତ ଥିଲେ ରଣପୁରରେ ? ପ୍ରସିକ୍ୟୁସନ ତ ଆପଣାର ସାକ୍ଷ୍ୟ ସମାପ୍ତି କରିଛି । ଆଉ ବାଟ କ'ଣ ?

ଚିନ୍ତାମଣି ଆଚାର୍ଯ୍ୟ ଉତ୍‌କ୍ଷିପ୍ତ ହୋଇ ଗର୍ଜିଉଠିଲେ ଏବଂ ଦୀନବନ୍ଧୁ ସାହୁଙ୍କୁ ଲକ୍ଷ୍ୟକରି କହିଲେ ଯେ You pigmy boy. I can keep you in my pocket.

ଦୀନବନ୍ଧୁ ଧୀର କଣ୍ଠରେ କହିଲେ Then the intelligence of your pocket will be more than your brain.

ପ୍ରସିକ୍ୟୁସନ ଫେଲ ମାରିଲା ସତ୍ୟ କିନ୍ତୁ ରଘୁଦିବାକରଙ୍କୁ ଫାଶି ଦିଆଗଲା ଭାଗଲପୁର ଜେଲରେ । ସେମାନେ ପ୍ରଜାମଣ୍ଡଳର ନେତା ଥିଲେ । ତେଣୁ ସେମାନଙ୍କୁ ଚିହ୍ନଟ କରିବା 'ସାକ୍ଷୀ' ମାନଙ୍କ ପାଇଁ ସହଜ ଥିଲା । ସେମାନେ ନିଜେ ସେଠାରେ ଉପସ୍ଥିତ ଥିଲେ କି ନାହିଁ, ଲୋକମାନଙ୍କୁ ଉସକାଉଥିଲେ କି ନାହିଁ ସେ ପ୍ରଶ୍ନ ବିଚାର କରାଯାଇ ନ ଥିଲା । ଫାଶି ଦେଇ ଲୋକଙ୍କୁ ଶିକ୍ଷା

Digitized by srujan ka@gmail.com

ଦେବାକୁ ହେବ, ତେଣୁ ଫାଶି ଦିଆଗଲା । କିନ୍ତୁ ଏହା ସମସ୍ତେ ଜାଣିଥିଲେ ଯେ ବେଢ୍ଢେଲଗେଟ୍‌ଙ୍କ ମୃତ୍ୟୁ ଏକ ଆକସ୍ମିକ ଘଟଣା ମାତ୍ର, କେହି କାହାକୁ ଉସକାଇ ନାହାନ୍ତି ।

ଠିକ୍ ଅନୁରୂପ ଘଟଣା ଘଟିଥିଲା ଲକ୍ଷ୍ମଣ ନାୟକଙ୍କର ମୃତ୍ୟୁ ଦଣ୍ଡ କ୍ଷେତ୍ରରେ । ଫରେଷ୍ଟ ଗାର୍ଡ଼ ମରିଗଲା ମଦ ପିଇ । କିନ୍ତୁ ଅଭିଯୋଗ ହେଲା ଯେ ଲକ୍ଷ୍ମଣ ନାୟକ ତାକୁ ହତ୍ୟା କରିଛନ୍ତି । ଆଦିବାସୀମାନଙ୍କ ଭିତରେ ଜମି ଉଠୁଥିବା ଅସନ୍ତୋଷ ଏବଂ ବିଦ୍ରୋହକୁ ପାନେ ଶିକ୍ଷା ଦେବାକୁ ହେବ । ଲକ୍ଷ୍ମଣ ନାୟକଙ୍କୁ ଫାଶି ହେବ ଉଚିତ ଶିକ୍ଷା । ଶ୍ରୀ ଭି. ରାମନାଥନ ଥିଲେ ବିଚାରପତି । ପରବର୍ତ୍ତୀ କାଳରେ ରାମନାଥନ୍ କଂଗ୍ରେସ ନେତାମାନଙ୍କର ବେଶ୍ ପ୍ରିୟ ଭାଜନ ହୋଇଥିଲେ । ଇତିହାସର ଏହା ହେଉଛି କ୍ରୁର ପରିହାସ ।

ଏ ସଂକ୍ରାନ୍ତରେ ଅନୁଗୋଳରେ ୧୯୫୦ ମସିହାରେ ଘଟିଥିବା ଏକ ଜମି ବିବାଦକୁ ନେଇ ମାଜିଷ୍ଟ୍ରେଟ ଦୋଳଗୋବିନ୍ଦ ମହାନ୍ତିଙ୍କୁ ହତ୍ୟା କରାଯାଇଥିବା ଘଟଣା ମନେପଡ଼େ । ଏକ ପୋଖରୀ ବା ଘାଇକୁ ନେଇ ବିବାଦ ଥିଲା ଦୁଇ ଗାଁ ଭିତରେ । ମାଜିଷ୍ଟ୍ରେଟ ଯାଇଥିଲେ ସରଜମିନ ତଦନ୍ତ ପାଇଁ । ଘାଇ କାଟିବାକୁ ଆସିଛନ୍ତି ଭାବି ଗୋଟିଏ ଗାଁର ଲୋକେ ତାଙ୍କୁ ପିଟି ମାରିଦେଲେ । ମୋକଦ୍ଦମା ହେଲା । ଅଭିଯୁକ୍ତ ଆସାମୀ ମାନଙ୍କ ଭିତରୁ ଦୁଇଜଣଙ୍କୁ ଫାଶି ହେଲା । କିନ୍ତୁ ତା' ଭିତରୁ ଜଣେ ସେଦିନ ତାଙ୍କ ଓକିଲଙ୍କ ପାଖରେ କଟକରେ ଥିଲେ । କିନ୍ତୁ ସେ ଜଣେ ସର୍ଦ୍ଦାର ଥିବାରୁ ତାଙ୍କୁ 'ଚିହ୍ନଟ' କରିବାରେ କିଛି ଅସୁବିଧା ହେଲାନି । ସେ ବା ତାଙ୍କର ଓକିଲ କୌଣସି ମତେ ପ୍ରମାଣ କରିପାରିଲେ ନାହିଁ ତାଙ୍କର ସେଇ ସମୟରେ କଟକରେ ରହିବାର କଥା । ସେଇ ଓକିଲ ପରେ ବିଚାରପତି ହେଲେ ଏବଂ ସେ ନିଜେ ମୋତେ କହୁଥିଲେ ଯେ ମୁଁ କୌଣସି ଲୋକଙ୍କୁ ଫାଶି ଆଦେଶ ଦେଇପାରି ନାହିଁ । କାରଣ ସେଇ ଘଟଣା ମୋ ଆଖି ଆଗରେ ସବୁବେଳେ ଝଲସି ଯାଉଛି । ''କାଳେ ସେ ନ ଥିବେ କି ? ଏଇ ପ୍ରଶ୍ନ ମୋତେ ଘାରିଛି ।'' ଏବଂ ଫାଶି ଆଦେଶ ଦେଇପାରି ନାହିଁ ।

ମୋ ନିଜ ଜୀବନରେ ଏଇପରି ଏକ ଘଟଣା ମୋର ଜୀବନର ଗତିପଥକୁ ବଦଳାଇ ଦେଇଛି । ମୁଁ ଓକିଲାତି ଆରମ୍ଭ କରିବାକୁ ସ୍ଥିର କରି ଶ୍ରୀ ଗଙ୍ଗାଧର ରଥଙ୍କ ଜୁନିଅର ଭାବରେ କାର୍ଯ୍ୟ ଆରମ୍ଭ କଲି । ଗଙ୍ଗାଧର ବାବୁ ପ୍ରଥମ ଦିନରୁ ହିଁ ତାଲିମ ଦେବା ଆରମ୍ଭ କଲେ । ଏହାର ମଧ୍ୟ କାରଣ ଥିଲା । ତାଙ୍କ ସହିତ ବ୍ୟକ୍ତିଗତ ସଂପର୍କ ବହୁକାଳର । ଏକଦା ଆମେ ସବୁ ତରୁଣ ଗୋଷ୍ଠୀ ତାଙ୍କ ପରିବାରର ଅନ୍ତର୍ଭୁକ୍ତ ଭଳି ମନେ ହୋଇଛି ।

ସେତିକିବେଳେ ପ୍ରଥମ ମୋକଦ୍ଦମା ମୋ ଭାଗ୍ୟକୁ ପଡ଼ିଲା ଶାନ୍ତିଲତା ହତ୍ୟା ମୋକଦ୍ଦମା । ଏହା ସମଗ୍ର ଓଡ଼ିଶାରେ ଚାଞ୍ଚଲ୍ୟ ଖେଳାଇଥାଏ । ତେଲେଙ୍ଗା ବଜାରର ଏକ ନଦୀକୂଳ ଘରେ ଶାନ୍ତିଲତା ତାର ସ୍ୱାମୀ ସହିତ ରହୁଥାଏ ଏବଂ ସେ ଥାଏ ଅନ୍ତଃସତ୍ତ୍ୱା । ଅଭିଯୋଗ ହେଲା ଯେ ସାତଜଣ ପ୍ରତିଷ୍ଠିତ ପରିବାରର ଯୁବକ ତା' ଉପରେ ବଳାତ୍କାର କରି ଧର୍ଷଣ କରିଛନ୍ତି

Digitized by srujan ka@gmail.com

ଏବଂ ଫଳରେ ତାହାର ମୃତ୍ୟୁ ହୋଇଛି । ଏକ ପଟରେ ସାତୋଟି ପ୍ରତିଷ୍ଠିତ ପରିବାରର ସାତଜଣ ଯୁବକ ଏବଂ ସେମାନଙ୍କ ପାଇଁ କଟକ ବାରର୍ ସବୁ କ୍ରିମ୍ (Cream) ଆଡଭୋକେଟ । ଆରପଟରେ ସରକାରୀ ଓକିଲ ଗଙ୍ଗାଧର ରଥ ଏବଂ ତାଙ୍କର ଜୁନିଅର ମୁଁ ।

ଗଙ୍ଗାଧରବାବୁ ପ୍ରଥମରୁ ମନାକରିଦେଲେ କୌଣସି ସାକ୍ଷୀକୁ ମିଛ ସାକ୍ଷ୍ୟ ଦେବାପାଇଁ । ମୋକଦ୍ଦମାଟି ନିର୍ଭର କରୁଛି ସାରକ୍ୟୁମଷ୍ଟାନସିଆଲ ଏଭିଡେନ୍ସ ଉପରେ । କେହି ତ ଦେଖିନାହାନ୍ତି ଧର୍ଷଣ ବା ହତ୍ୟାର ! ଏଣେ ସବୁ ସାକ୍ଷୀଙ୍କୁ ଗଙ୍ଗାଧର ବାବୁ କହିଲେ ଯେ ମୁଁ ତୁମମାନଙ୍କୁ ମିଛ ସାକ୍ଷୀ ଦେବାକୁ କହୁନାହିଁ । ଯାହା ସତ୍ୟ ତାହା ହିଁ କହିବ । କାରଣ ମିଛ ସାକ୍ଷୀ ଦେଇ ମୁଁ ମୋକଦ୍ଦମା ଜିତିବାକୁ ଚାହେଁନାହିଁ କି ନିର୍ଦ୍ଦୋଷ ଦଣ୍ଡ ପାଉ ବୋଲି ମଧ୍ୟ ଚାହେଁ ନାହିଁ । ସମସ୍ତେ ସାକ୍ଷ୍ୟ ଦେଇଗଲେ, ଯାହା ସକାଳେ କହିଥିଲେ, ତାର ଠିକ ଓଲଟା । କାରଣ ସ୍ପଷ୍ଟ ! କେତେ ସାକ୍ଷୀଙ୍କୁ ''ହୋଷ୍ଟାଇଲ'' ଘୋଷଣା କରି ପୁଣି ଜେରା କରାଯାଇ ପାରିବ ? ତା'ର ତ ଗୋଟାଏ ସୀମା ଅଛି । ଧୋବା, ପୁଲିସ, ଡାକ୍ତର, ଦିଅର ଏପରିକି ସ୍ୱାମୀ କେହି ବାଦ ପଡ଼ିଲେ ନାହିଁ ।

କେଶ୍ ଆରମ୍ଭରେ ଜଜ୍ ଆରମ୍ଭ କରିଥିଲେ ମୋକଦ୍ଦମା ଏଇପରି ଭାବରେ– "The allegations are that a married pregnant woman has been raped to death. Man is called the best creation of God. If this is proved then it will be regarded that the man has reduced himself less than the beast, because no animal never rapes a pregnant animal."

ମୋକଦ୍ଦମାରେ ସମସ୍ତେ ଖଲାସ ହୋଇଗଲେ ଏବଂ ମୋର ଓକିଲାତିର ମଧ୍ୟ ସମାପ୍ତି ଘଟିଲା ।

୧୯୩୯ ମସିହା । ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା । ଗୋଟାଏ ପଟରେ ବ୍ରିଟେନ, ଫ୍ରାନ୍ସ ପ୍ରଭୃତି ମିତ୍ରଶକ୍ତି ନାମରେ ପରିଚିତ । ଏବଂ ଆର ପଟରେ ଜର୍ମାନୀ, ଇଟାଲୀ ଏବଂ ଜାପାନ ଅକ୍ଷଶକ୍ତି (axis) ନାମରେ ପରିଚିତ । ହିଟଲର ତାଙ୍କର କୁଖ୍ୟାତ ପ୍ରଚାରମନ୍ତ୍ରୀ ଗବେଲସଙ୍କ ନେତୃତ୍ୱରେ ବିଟିଶ ସାମ୍ରାଜ୍ୟ ଅଧିନସ୍ଥ ଦେଶମାନଙ୍କରେ (ଉପନିବେଶୀୟ ଦେଶମାନଙ୍କରେ) ପ୍ରବଳ ପ୍ରଚାର ଆରମ୍ଭ କରିଥିଲେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ । ସତେ ଯେପରି ସେମାନେ ଯୁଦ୍ଧରେ ବିଜୟୀ ହେଲେ ଏଇ ସବୁ ଦେଶମାନଙ୍କୁ ସ୍ୱାଧୀନତା ମିଳିଯିବ । ଏହା ଏକ ନିଛକ ମିଥ୍ୟା ପ୍ରଚାର । ଯୁଦ୍ଧ ହେଉଥିଲା ପୃଥିବୀକୁ ପୁଣି ଥରେ ବଣ୍ଟୁଆରା କରିବା ପାଇଁ । କାରଣ ଇଂଲଣ୍ଡ, ଫ୍ରାନ୍ସ ପ୍ରଭୃତି ସାମ୍ରାଜ୍ୟବାଦୀ ଶକ୍ତିମାନେ ପୃଥିବୀର ବହୁ ଦେଶକୁ ଆପଣାର ଉପନିବେଶ କରି ସାରିଥିଲେ । ଜର୍ମାନୀ, ଜାପାନ, ଇଟାଲୀ ଚାହୁଁଥିଲେ ତାର ପୁନର୍ବଣ୍ଟନ । ପ୍ରଥମ ମହାଯୁଦ୍ଧରେ କ୍ଷୁବ୍ଧ ଜର୍ମାନୀରେ ଉଗ୍ର ଜାତୀୟତାବାଦ ମୁଣ୍ଡ ଟେକିଥିଲା । କିନ୍ତୁ ଜର୍ମାନୀର ଶିଳ୍ପବିକାଶ ଏବଂ ଶକ୍ତିଶାଳୀ ତଥା ରାଜନୈତିକ ସଚେତନ ଶ୍ରମିକଶ୍ରେଣୀ ଦେଖି କାର୍ଲମାର୍କ୍ସ କଳନା କରିଥିଲେ ଯେ ଜର୍ମାନୀରେ ହିଁ ସାମ୍ୟବାଦ ପ୍ରଥମେ ପ୍ରତିଷ୍ଠିତ ହେବ । କିନ୍ତୁ

Digitized by srujan ka@gmail.com

ସେଇଠି ଜନ୍ମଲାଭ କଲା ପୁଂଜିବାଦର ବିକାର ଫାସିବାଦ । ପ୍ରସିଦ୍ଧ ଜର୍ମାନ ଦାର୍ଶନିକ ନିତ୍‌ସେଙ୍କର ଅତି-ମାନବର ପରିକଳ୍ପନାରେ ଜର୍ମାନୀରେ ହିଟଲର ଶାସନ ପ୍ରଚାର ଆରମ୍ଭ କଲା ଯେ ସେମାନେ ଏବଂ ଭାରତୀୟମାନେ ହେଉଛନ୍ତି ଆର୍ଯ୍ୟ, ଏକ ସୁପରିଅର ରେସ୍ । ହିଟଲର କ୍ଷମତାକୁ ଆସିବାବେଳକୁ ଜର୍ମାନୀରେ କମ୍ୟୁନିଷ୍ଟ ଏବଂ ସୋସାଲିଷ୍ଟମାନେ ବେଶ୍ ଶକ୍ତିଶାଳୀ ଥିଲେ । କିନ୍ତୁ ଇତିହାସର ଦୁର୍ଭାଗ୍ୟ ଯେ ସେମାନେ ଏକତ୍ରିତ ହୋଇପାରିଲେ ନାହିଁ ଫାସିବାଦ ବିରୁଦ୍ଧରେ । ସୋସାଲିଷ୍ଟମାନଙ୍କର ସୁଧାରନୀତି ଏବଂ କମ୍ୟୁନିଷ୍ଟମାନଙ୍କର ଡଗ୍‌ମାଟିଜ୍‌ମ କାଳହେଲା ଦେଶ ପାଇଁ । ପୃଥିବୀକୁ ରକ୍ତସ୍ନାତ ହେବାକୁ ପଡ଼ିଲା । ଫାସିବାଦର ଅଭ୍ୟୁଦୟ ଏବଂ ବିଜୟପାଇଁ ତତ୍‌କାଳୀନ ଜର୍ମାନୀର ଆହତ ନେସନାଲିଜମ ଯେପରି ଦାୟୀ କମ୍ୟୁନିଷ୍ଟ ଏବଂ ସୋସାଲିଷ୍ଟମାନଙ୍କ ମଧ୍ୟରେ ବିଭେଦ ସେତିକି ଦାୟୀ । ଏଥିପାଇଁ ସ୍ପେନରେ ବହୁମୂଲ୍ୟ ଦେବାକୁ ପଡ଼ିଛି ଏବଂ ସ୍ପେନ ରିପବ୍ଲିକାନ ସରକାରକୁ ବଳପୂର୍ବକ ଭାଙ୍ଗି ଶାସନକ୍ଷମତା ଅଧିକାର କରିଛନ୍ତି ଜେନେରାଲ ଫ୍ରାଙ୍କୋ ଏବଂ ତାଙ୍କର ମୃତ୍ୟୁପରେ ହିଁ ସ୍ପେନରେ ଏକଛତ୍ରବାଦର ବିଲୋପ ହେଲା । ବହୁ ଏକଛତ୍ରବାଦୀଙ୍କ କ୍ଷେତ୍ରରେ ଏହାର ଉଦାହରଣ ଦେଖିବାକୁ ମିଳେ । ଆପଣାର ଜୀବଦ୍ଦଶା ଭିତରେ ଖୁବ୍ କମ ଏକଛତ୍ରବାଦୀଙ୍କର ପରାଜୟ ହୋଇଛି ।

ହିଟଲର କ୍ଷମତାକୁ ଆସିଥାନ୍ତି । ସମଗ୍ର ଜର୍ମାନୀର ଯୁବସମାଜ ଭିତରେ ଇଉଫୋରିଆ ବା ଉନ୍ମାଦନା । ପ୍ରଥମେ ଇହୁଦୀ, ତା'ପରେ କମ୍ୟୁନିଷ୍ଟମାନଙ୍କୁ, କନସେନଟ୍ରେସନ କ୍ୟାମ୍ପମାନଙ୍କ ଭିତରେ ସଢ଼ିବାକୁ ହେଲା ବା ସେମାନେ ପଳାତକ ସାଜିଲେ । ଲକ୍ଷ ଲକ୍ଷ ମଣିଷ ବଳି ପଡ଼ିଲେ ଏଇ ନରସଂହାରରେ ।

ଏଇ ସମୟରେ ଜର୍ମାନୀରେ ଏକ ହକି ଖେଳ ହେଉଥାଏ ଜର୍ମାନୀ ଭାରତ ମଧ୍ୟରେ । ଭାରତବର୍ଷର ଜଣେ ଖେଳାଳୀ ୧୮ଟି ଗୋଲ ଦେଲେ ଜର୍ମାନୀ ବିରୁଦ୍ଧରେ । ପ୍ରଶଂସାରେ ମୁଖର ହିଟଲର ପଚାରିଲେ ତାଙ୍କୁ ଯେ ସେ ଭାରତରେ କଣ କାମ କରନ୍ତି । ହିନ୍ଦୀ ଦୋଭାଷୀ ବା interpreter ସେ ପ୍ରଶ୍ନ ପଚାରିଲେ ଖେଳାଳୀଙ୍କୁ । ସେ କହିଲେ ଯେ ଭାରତୀୟ ସୈନ୍ୟବାହିନୀରେ ନାଏକ (Naik) କାମ କରନ୍ତି । ଦୋଭାଷୀ ଅନୁବାଦ କରି ହିଟଲରଙ୍କୁ କହିଲେ ଯେ ସେ ସୈନ୍ୟବାହିନୀର ସବୁଠାରୁ ନିମ୍ନ ର୍‌ୟାଙ୍କରେ ଚାକିରି କରନ୍ତି । ହିଟଲର ପଚାରିଲେ ଯେ ସେ ଉକ୍ତ ଖେଳାଳୀଙ୍କୁ ଜର୍ମାନୀ ସୈନ୍ୟବାହିନୀର ମେଜର ଜେନେରାଲ ପଦବୀରେ ନିଯୁକ୍ତ କରିବାକୁ ଚାହାନ୍ତି ଏବଂ ସେ ତାହା ଗ୍ରହଣ କରିବାକୁ ପ୍ରସ୍ତୁତ କି ?

ଦୃପ୍ତ ଖେଳାଳୀ ଉତ୍ତର ଦେଲେ ଯେ ମୁଁ କେବଳ ହକି ଖେଳେ ନାହିଁ, ହିନ୍ଦୁସ୍ଥାନ ପାଇଁ ମଧ୍ୟ ଖେଳେ । ତେଣୁ ଏଭଳି ପ୍ରସ୍ତାବ ଗ୍ରହଣ କରିବା ପାଇଁ ମୁଁ ପ୍ରସ୍ତୁତ ନୁହେଁ । ହିଟଲର ସ୍ତବ୍ଧ, ଚକିତ କିନ୍ତୁ ପ୍ରଶଂସା ମୁଖର ମଧ୍ୟ । ସେ ହେଉଛନ୍ତି ହକିର ପ୍ରବାଦପୁରୁଷ ଧ୍ୟାନଚାନ୍ଦ ।

Digitized by srujan ka@gmail.com

ଧ୍ୟାନଚାନ୍ଦଙ୍କୁ ଭୈରବବାବୁ ଆଣିଥିଲେ ଓଡ଼ିଶା । ସେ ଓଡ଼ିଶାରେ ହକି କୋଚିଙ୍ଗ ଦେଉଥିଲେ । ସେ ବାରବାଟୀ ଷ୍ଟାଡିଅମରେ ରହୁଥିଲେ । ଭାରତବର୍ଷରେ ବୋଧହୁଏ ପ୍ରଥମେ ଓଡ଼ିଶାରେ ହିଁ ଧ୍ୟାନଚାନ୍ଦଙ୍କ ଜୀବନୀ ପଢ଼ାଯାଉଥିଲା ସ୍କୁଲ ପିଲାମାନଙ୍କର ପାଠ୍ୟ ପୁସ୍ତକରେ । ଜାତୀୟକରଣ ହୋଇଥିବା ପାଠ୍ୟ ପୁସ୍ତକର ଏହା ହେଉଛି ଅବଦାନ । ସେତେବେଳେ ମୋ ପୁତୁରା ପଢୁଥିଲା ସ୍କୁଲରେ । ବାବୁ (ପ୍ରିୟଦର୍ଶୀ) ବର୍ତ୍ତମାନ ଯୁବକ ଏବଂ ବିଜୁ ଜନତାଦଳର ଜଣେ ଜଣାଶୁଣା ଯୁବନେତା । ସେ ଦିନେ ପଢୁଥିଲା ଧ୍ୟାନଚାନ୍ଦଙ୍କ ଜୀବନୀ । ମୁଁ ତାଙ୍କୁ ସାଙ୍ଗରେ ନେଇଗଲି ଷ୍ଟାଡିୟମକୁ । ସାଙ୍ଗରେ ସେ ନେଉଥିଲା ଉକ୍ତ ବହି । ଧ୍ୟାନଚାନ୍ଦ ଆମ ଅଫିସର ପାଖଘରେ ବୋଧହୁଏ ରହୁଥିଲେ ସେତେବେଳକୁ । ତାଙ୍କୁ ଡକାଇ ପଠାଇଲି ଏବଂ ସେ ଆସିବା ପରେ ପୁତୁରାକୁ କହିଲି ଧ୍ୟାନଚାନ୍ଦଙ୍କ ଜୀବନୀ ପଢ଼ିବା ପାଇଁ, ସେ ପଢ଼ିବାକୁ ଲାଗିଲା । ଧ୍ୟାନଚାନ୍ଦ ଟିକିଏ ଟିକିଏ ଓଡ଼ିଆ ବୁଝୁଥିଲେ । କିନ୍ତୁ ନିଜର ନାମର ବାରମ୍ବାର ଉଚ୍ଚାରଣ ଏବଂ କିଛି କିଛି ଜଣାଶୁଣା ଶବ୍ଦ, ହିଟଲର, ଜର୍ମାନୀ ଛଡ଼ା ଆଉ କିଛି ବୁଝିପାରିଲେ ନାହିଁ । ସେ ଖାଲି ଆଶ୍ଚର୍ଯ୍ୟ ହୋଇ ଅନେଇଲେ । ପରେ ସେ ଛପାହୋଇଥିବା ବହିଟିକୁ ନେଇ ଏପଟ ସେପଟ କଲେ । କଥା କ'ଣ ? ମୁଁ ତାଙ୍କୁ କହିଲି ଯେ ଏହା ହେଉଛି ଆମର ସ୍କୁଲ ପିଲାଙ୍କର ପାଠ୍ୟପୁସ୍ତକ ଯେଉଁଥିରେ ଆପଣଙ୍କ ଜୀବନୀ ପଢ଼ନ୍ତି ପିଲାମାନେ ।

ତାଙ୍କ ଆଖିରୁ ଝରିପଡ଼ିଲା ଦୁଇଧାର ଲୁହ । ଓଡ଼ିଶାର ପାଠ୍ୟପୁସ୍ତକ ତାଙ୍କୁ ଏଇ ସମ୍ମାନ ଦେଇଛି ଜାଣି ଖୁସି ହେଲେ ଏବଂ ସେ ବହିରୁ ଦୁଇଟି କପି କିଣିବାକୁ ଚାହିଁଲେ । ମୁଁ ତାଙ୍କୁ ପରେ ଦୁଇଟି ବହି ଉପହାର ଦେଲି । ସେ କହିଲେ ଯେ ଏହାକୁ ସେ ସାଇତି କରି ରଖିବେ ।

ସେ ପ୍ରାୟ ଦୁଇବର୍ଷ ଏଠାରେ ଥିଲେ । ବିଦାୟ ନେଲାବେଳେ ସେ ଭୈରବବାବୁଙ୍କୁ କହିଲେ ଯେ ଦୁଇଟି କାରଣ ଯୋଗୁଁ ସେ ବିଦାୟ ନେଉଛନ୍ତି ଏଠାରୁ । ପ୍ରଥମ କାରଣ ହେଲା ବୟସ ହୋଇଛି । ଦ୍ୱିତୀୟ କାରଣ ହେଉଛି ଯେ ଖେଳାଳୀମାନଙ୍କୁ ଶିଶୁ ଅବସ୍ଥାରୁ ହିଁ ତାଲିମ ଦେବା ଉଚିତ । କିନ୍ତୁ ତାହା ହୋଇପାରି ନାହିଁ ଏଇଠି । ଏଠାରେ catch them young ନୁହେଁ catch them old ହେଉଛି କ୍ରୀଡ଼ାର ଦର୍ଶନ ।

ଏଇ ଲେଖା ଲେଖିଲା ବେଳକୁ ଭାରତ ଏବଂ ପାକିସ୍ଥାନରେ କ୍ରିକେଟ ସ୍କାମର ଭୂମିକମ୍ପ ଆରମ୍ଭ ହୋଇଛି । ଏହା କେବେ ଏବଂ କିପରି ସରିବ ତାହା କହିହେବ ନାହିଁ । କାରଣ ଅର୍ଥ ଏବଂ କ୍ଷମତାର ଚାପ ଏଇ ଭୂଖଣ୍ଡରେ ପ୍ରଭୂତ । କିଏ, କିଏ ଦୋଷୀ ତାହା ବାହାର କରିବାକୁ ଯାଇ ଆଳୁ ଖୋଳୁ ଖୋଳୁ ମହାଦେବ ବାହାରିଲା ପରି ଘଟଣା ହେଲାଣି । ଅବଶ୍ୟ ଦକ୍ଷିଣ ଆଫ୍ରିକା ଖେଳାଳୀ ହାନ୍ସି କ୍ରୋନିଏଙ୍କ ପାଖରୁ ଏହାର ଆରମ୍ଭ ହେଲା । ସେ ଜଣେ ଖୁବ୍ ଧର୍ମବିଶ୍ୱାସୀ ଯୀଶୁ ଭକ୍ତ । ଏଇ 'ଧାର୍ମିକ' ଲୋକମାନଙ୍କୁ ଦେଖିଲେ ମୋର ବର୍ଟାଣ୍ଡ ରସେଲଙ୍କ ଉକ୍ତି ମନେପଡ଼େ ବୋଲି ମୁଁ ଆଗରୁ କହିଛି, ଏଇ ଧାର୍ମିକ ବ୍ୟକ୍ତିମାନଙ୍କର କିନ୍ତୁ ଦୁଇ ତିନୋଟି

Digitized by srujan ka@gmail.com

ସୁବିଧା ଅଛି । ଯେଉଁ ସୁବିଧା ଆମ ଭଳି ଆଗ୍ନୋଷ୍ଟିକ ବା ନିରୀଶ୍ୱରବାଦୀମାନଙ୍କ ପାଇଁ ନାହିଁ । ପ୍ରଥମ ସୁବିଧା ହେଉଛି, ଈଶ୍ୱରବାଦୀମାନେ ଭଲକାମ ପାଇଁ କ୍ରେଡିଟ ନିଅନ୍ତି । କିନ୍ତୁ ଖରାପ କାମ ପାଇଁ ଈଶ୍ୱରଙ୍କ ଉପରେ ଦାୟିତ୍ୱ ଲଦି ଦିଅନ୍ତି । ସେମାନଙ୍କୁ ସାନ୍ତ୍ୱନା ମିଳିଯାଏ ।

''ତ୍ୱୟା ହୃଷିକେଶ ହୃଦି ସ୍ଥିତେନ, ଯଥା ନିଯୁକ୍ତୋଷି ତଥା କରୋମି'' ।

ଆମ୍ଭମାନଙ୍କୁ ସେ ସାନ୍ତ୍ୱନା ମିଳେ ନାଇଁ । ଦ୍ୱିତୀୟ ସୁବିଧା ହେଲା । ନିଜର କୁକର୍ମ ପାଇଁ ସେମାନେ ଭଗବାନଙ୍କ ପାଖରେ ମାଫି ମାଗିନେଇ ଯାଆନ୍ତି ରାତିରେ । ସକାଳୁ ପୁଣି ସେଇ କାମ କରନ୍ତି । କିନ୍ତୁ ରାତିରେ ନିଦ ହୋଇଯାଏ । ଖରାପ କାମଟିଏ କଲେ ଆମକୁ ରାତିରେ ନିଦ ହୁଏ ନାହିଁ । ତୃତୀୟ ସୁବିଧା ହେଲା ଠାକୁରଙ୍କ ପାଖରେ ଦି'ଚାରି ପଇସା ଭୋଗ ଲଗାଇ ଦେଇ ସେମାନେ ଅନ୍ୟମାନଙ୍କ ସହିତ ଭଗବାନଙ୍କୁ ମଧ ଠକି ସନ୍ତୁଷ୍ଟ କରି ହୋଇପାରନ୍ତି । ଆମେ ସବୁ କାହାକୁ କହିବୁ ? ନିଜକୃତ କାର୍ଯ୍ୟ ପାଇଁ ନିଜେ ହିଁ ଦାୟିତ୍ୱ ନେବାକୁ ବାଧ ।

ଅବଶ୍ୟ ଏହା ବିପକ୍ଷରେ ମଧ ଅନେକ ଯୁକ୍ତି ଅଛି ଯେପରି

''ମନ୍ଦିର, ମସ୍‌ଜିଦ୍, ଗୀର୍ଜା ସବୁ ମିଥ୍ୟାର ସମ୍ଭାର
ଦେଖିଛି ମୁଁ ଏଇ ସତ୍ୟ ଯବନିକା ଉନ୍ମୋଚିତ କରି''

ବା

''ଓଟ ଛୁଞ୍ଚିମୁନ କଣାରେ ଗଳିଯାଇ ପାରେ କିନ୍ତୁ ପାପୀ ସ୍ୱର୍ଗଦ୍ୱାର ଦେଇ ଗଳିଯାଇ ପାରିବ ନାହିଁ'' । କବୀରଙ୍କର ଏଇପରି ଉକ୍ତି ମୋତେ ମୁଗ୍ଧ କରିଛି ।

କିନ୍ତୁ ଏଇ ସବୁ ଆପ୍ତବାଣୀ ସତ୍ତ୍ୱେ ଯାହା ଘଟେ ତାହା ହିଁ ମୁଁ କହୁଛି । ଥରେ ପଳାତକ ଜୀବନଯାପନ କଲାବେଳେ କଲିକତାରେ ପହଞ୍ଚିଥିଲି ।

ହଠାତ୍ ବାହାରେ କିଏ ଗୋଟାଏ ଲୋକ ଡାକ ଛାଡ଼ିଛି ''ଖଟମଲ ଖାଓ୍ୟାବେ, ଖଟମଲ ଖାଓ୍ୟାବେ'' । ଟିକିଏ ଆଗ୍ରହ ହେଲା କ'ଣ ଡାକୁଛି ଦେଖିବା ପାଇଁ । ଦେଖିଲି, ଜଣେ ଲୋକ ଗୋଟିଏ ହାଲୁକା ଛୋଟ ଦଉଡ଼ିଆ ଖଟକୁ କାନ୍ଧରେ ପକାଇ ଏଇଭଳି ଡାକ ଛାଡ଼ିଛି ଆଉ ପାଖ ଘରୁ ସବୁ ବାହାରି ଆସୁଛନ୍ତି ମୋଟୀମୋଟୀ ସ୍ତ୍ରୀ ଲୋକ । ପେଟରେ ମେଦ ଓହଳି ପଡ଼ିଛି । ମେହେନ୍ଦୀ ଗନ୍ଧରେ ନାକ ଫାଟି ପଡୁଛି । ଜଣେ ଜଣେ ସେ ଲୋକଟିକୁ ଆଠଅଣା ପଇସା ବଢ଼ାଇ ଦେଉଛନ୍ତି । ଆଠଣା ପଇସା ପାଇଲା ପରେ ଲୋକଟି ଶୋଇ ପଡୁଚି ଖଟ ଉପରେ ଏବଂ ସାଙ୍ଗେ ସାଙ୍ଗେ ଖଟରୁ ବାହାରି ଆସୁଛନ୍ତି ହଜାର ହଜାର ଓଡ଼ଶ ବା ଛାରପୋକ । ଲୋକଟିକୁ ଦଶମିନିଟ ଖଣ୍ଡେ ଖାଇ ରକ୍ତ ଶୋଷିଲା ପରେ ସେ ଉଠି ପଡୁଚି ଖଟରୁ । ବର୍ତ୍ତମାନ ଆଉ ଜଣଙ୍କର ପାଳି ।

ଦେହ ଶୀତେଇ ଉଠିଲା । କାରଣ ପ୍ରଥମତଃ ମୁଁ ନିଜେ ପଟାଖଣ୍ଡେ ବା ମାଟି ସିମେଣ୍ଟ ଚଟାଣ ଉପରେ ଶୋଇ ପାରିବି କିନ୍ତୁ ଦିହରେ ଗୋଟିଏ ଛାରପୋକ କାମୁଡ଼ିଲେ ଆଉ ରାତିରେ

Digitized by srujan ka@gmail.com

ନିଦ ହେବ ନାହିଁ, ଦେହ ପୋଡ଼ିବ । ମଶା ବା ପିମ୍ପୁଡ଼ି କାମୁଡ଼ିଲେ ବି ସେଇ ଅବସ୍ଥା ।

ମୋର ମନେ ପଡୁଚି । ମୁଁ ଯାଇଥାଏ ଶଳା ବିନୟବାବୁଙ୍କର ଘରକୁ । ସେ କୃଷି ବିଭାଗରେ କାମ କରୁଥିଲେ ଏବଂ ରଙ୍ଗେଇଲୁଣ୍ଡା କୃଷି ବିଦ୍ୟାଳୟରେ ଇନଷ୍ଟ୍ରକ୍ଟର ଥିଲେ । ବାପାଙ୍କ ପରଲୋକ ପରେ, ନାବାଳକ ଭାଇ ଭଉଣୀମାନଙ୍କର ଦାୟିତ୍ୱ ପଡ଼ିଥିଲା ତାଙ୍କ ଉପରେ । ଭାଇ ଭଉଣୀମାନଙ୍କର ଶିକ୍ଷାର ସୁବିଧା ପାଇଁ ସେ ରହୁଥିଲେ ପଥରା ଗାଁରେ କାରଣ ରଙ୍ଗେଇଲୁଣ୍ଡାରେ ସାଧାରଣ ସ୍କୁଲ ନ ଥିଲା । ସେ ପାହାନ୍ତିଆରୁ ଯାଆନ୍ତି ପ୍ରତିକୂଳ ସମୁଦ୍ର ପବନରେ ସାଇକେଲ ଠେଲି ରଙ୍ଗେଇଲୁଣ୍ଡା, ଫେରନ୍ତି ସନ୍ଧ୍ୟାକୁ । ତାଙ୍କ ସାନ ଭଉଣୀ (ଟିକି) ରୋଷେଇ କରି ଦେଇଥାଏ ସେତେବେଳକୁ । ସନ୍ଧ୍ୟା ପରେ ପୁଣି ସାଇକେଲ ଠେଲି ଯାଆନ୍ତି ବ୍ରହ୍ମପୁରକୁ । କୃଷି ଉପରେ ଲେଖିଥିବା ବିଭିନ୍ନ ପୁସ୍ତକର ମୁଦ୍ରଣ ଦେଖି ଫେରନ୍ତି ରାତି ଦଶଟାରେ । ନିଜର ଭାଇ ଭଉଣୀମାନଙ୍କ ପାଇଁ ଏଇ ପ୍ରକାର କୃଚ୍ଛ୍ର ସାଧନା ତାଙ୍କର ଚାଲିଥିଲା ଅନ୍ୟୁନ ପାଞ୍ଚବର୍ଷ । ତାଙ୍କ ଘରେ ପ୍ରବଳ ଓଡ଼ଶ । କାନ୍ଥ, ବାଡ଼, ବିଛଣା ମଶାରୀ ସବୁଥିରେ ଓଡ଼ଶ ଭରା । ପ୍ରବଳ କ୍ଳାନ୍ତି ଯୋଗୁଁ ସେ ଜାଣି ପାରନ୍ତି ନାହିଁ ଓଡ଼ଶଙ୍କ ଉତ୍ପାତ । ମୁଁ ଯାଇ ପହଞ୍ଚିଲି । କାର୍ଯ୍ୟକ୍ରମ ଥାଏ ସାତ ଦିନ ରହିବା ପାଇଁ । କିନ୍ତୁ ଗୋଟିଏ ରାତି କଟିଲା ପରେ ମୋର ଅବସ୍ଥା ସାଂଘାତିକ । ପର ରାତିଟି ମୁଖ ଲଜ୍ଜା ଭିତରେ କଟିଗଲା । ତା'ପରେ ମୁଁ କି ଆଉ ରହେ ? ଫେରି ବାପାଙ୍କୁ କହିଲି, ବାପା ଥିଲେ ସରଳିଆ ମଣିଷ । ସେ ସେଇକଥା ଲେଖିଦେଲେ ଚିଠିରେ ବିନୟବାବୁଙ୍କୁ । ଦେଖ ତାଙ୍କର ତଥା ମୋର ଅବସ୍ଥା !

ମୋର ଥରେ ଦୁଇଥର ଇମିତି ଅବସ୍ଥା ହୋଇଥିଲା ପଳାତକ ଜୀବନରେ । ଥରେ କୌଣସି ଏକ ଗାଁରେ ମୁଁ ଥାଏ । ହଠାତ୍ ଦିନଟାରେ ପୁଲିସ ଚଢ଼ାଉ କଲେ ସେ ଗାଁ ଉପରେ । ସାଧାରଣତଃ ପୁଲିସ ଚଢ଼ଉ ରାତିରେ କରେ । ଗାଁବାଲା ମୋତେ ଗୋଟାଏ ନଡ଼ାଗଦା ଭିତରେ ରଖିଦେଇ ମୋ ଉପରେ ନଡ଼ା ଘୋଡ଼ାଇ ଦେଲେ । କିନ୍ତୁ ସେ ନଡ଼ା ଗଦାରେ ଦୈବାତ୍ ଥିଲେ ହଜାର ହଜାର ପିମ୍ପୁଡ଼ି । ସେମାନେ କି ଜାଣନ୍ତି ତାହା ? ସେମାନେ ତ ଚାଲିଗଲେ । ବର୍ତ୍ତମାନ ମୁଁ ଯାଏ କୁଆଡ଼େ ? ନା ବାହାରି ପାରୁଚି, ନା ରହି ପାରୁଚି । ହଜାର ହଜାର ପିମ୍ପୁଡ଼ି ମୋତେ କାମୁଡ଼ିବାକୁ ଲାଗିଲେ । ମୁଁ ବାଧ ହୋଇ ଦୁଇ ପାପୁଲିରେ କେବଳ ଆଖି, କାନ ଦୁଇଟିକୁ ଚାପି ଧରି ଶୋଇ ରହିଲି । ବେଶ୍ କିଛି ସମୟ ଅତିକ୍ରାନ୍ତ ହେଲାପରେ ସେମାନେ ଯେତେବେଳେ ମୋତେ ଆସି ନଡ଼ା ଉଠାଇ ବାହାରକୁ ଆଣିବାକୁ ଚେଷ୍ଟା କଲେ ସେତେବେଳକୁ ମୁଁ ପ୍ରାୟ ଅଚେତ । ସମଗ୍ର ଦେହ ଫୁଲି ଲାଲ୍ ହୋଇଯାଇଛି ଏବଂ ଘା' ହୋଇ ଯାଇଛି । ପ୍ରାୟ ସାତଦିନ ଲାଗିଲା ମୋତେ ଭଲହେବା ପାଇଁ ।

ଠିକ୍ ସେଇପରି ଆଉ ଗୋଟିଏ ଘଟଣା ଘଟିଥିଲା । କେଶବ (କେଶବାନନ୍ଦ ଦାସ) ଓ ମୁଁ ରହୁଥିଲୁ ଏକ ଗାଁରେ । ଉଭୟ ପଳାତକ । ପୁଲିସ ଚଢ଼ଉ ହେଲା । ଆମ ଦୁହିଁଙ୍କୁ ଏକ ଧାନ

Digitized by srujan ka@gmail.com

ଅମାର ଥିବା ଘରେ ଭାଡ଼ିତଳେ ରଖିଦେଇ ଲୋକେ ସମଗ୍ର ଘରଟାକୁ ଧାନ ମାରେଇରେ ଭର୍ତ୍ତି କରିଦେଲେ ଏବଂ ଆମକୁ ଭୋଗ କରିବାକୁ ହେଲା ଅସଂଖ୍ୟ ଧାନପୋକର ଦଂଶନ ଦିନସାରା । କେଶବ ମୋ ଠାରୁ ବୟସରେ ବଡ଼ । ଭାଇ ଭଳି ସଂପର୍କ ରହିଆସିଛି ପିଲାଦିନରୁ ଏ ପର୍ଯ୍ୟନ୍ତ । ସେ ମୋତେ ଖାଲି ଆଉଁସୁ ଥାଏ ।

ଓଡ଼ଶ ପ୍ରତି ମୋର ଭୟ ସେ ଦିନ ମୋ ପାଇଁ ଯେତିକି ଶିହରଣ ସୃଷ୍ଟି କରି ନ ଥିଲା, ତା'ଠାରୁ ବେଶି ଶିହରଣ ହେଲା ଯେତେବେଳେ ମୁଁ ଦେଖିଲି ଯେ ଗୋଟାଏ ଲେଖାଁ ଗିନାରେ ଚିନି ଧରି ସେଇ ବେପାରୀମାନଙ୍କ ସ୍ତ୍ରୀମାନେ କାନ୍ଥରେ ଥିବା ପିମ୍ପୁଡ଼ି ଗାତମାନଙ୍କରେ ଚିନି ଦେଉଛନ୍ତି, ଜୀବେଦୟା ପାଇଁ । ଜାଣି ପାରିଥିଲି ଯେ ଏଇସବୁ ସ୍ତ୍ରୀ ହେଉଛନ୍ତି ଜୈନ ଧର୍ମାବଲମ୍ବୀ ଏବଂ ଜୀବମାନଙ୍କ ପ୍ରତି ଦୟା ସେମାନଙ୍କର ''ଧର୍ମକାର୍ଯ୍ୟ''ର ଏକ ଅଂଶ ।

ପରବର୍ତ୍ତୀ କାଳରେ ଯେତେବେଳେ ଜଣାଗଲା ମହାବୀର ଜୈନଙ୍କ ଅହିଂସା ଧର୍ମରେ ଦୀକ୍ଷିତ ଏଇପରି କିଛି ବ୍ୟବସାୟୀ ''ଗାଈ ମାଂସର ଚର୍ବି'' (Beef tallows)କୁ ବନସ୍ପତି ଘିଅରେ ମିଶାଇ ବିକ୍ରୀ କରୁଛନ୍ତି, ସେତେବେଳେ ମନେହେଲା ମହାବୀର ନିଶ୍ଚିତ ଭାବରେ ଏମାନଙ୍କୁ ଦେଖି କବର ଭିତରେ କର ଲୋଉଟାଉଥିବେ ଅତିଷ୍ଠ ହୋଇ । ଧର୍ମର ମହାନ୍ ତତ୍ତ୍ୱକୁ କିଭଳି କିଛି ଲୋକ ଭ୍ରଷ୍ଟାଚାରରେ ପରିଣତ କରନ୍ତି ଏହା ଥିଲା ତା'ର ଏକ ଜ୍ୱଳନ୍ତ ଉଦାହରଣ । କାହିଁ ମହାବୀର ଜୈନ ଏବଂ ତାଙ୍କର ଆପ୍ତବାଣୀ ଏବଂ କାହିଁ ସେ ମହାନ ନୀତିର ଭ୍ରଷ୍ଟାଚାର !

ମୁଁ ଏକଦା ଏକ କଂପାନୀରେ ଚାକିରିଟିଏ କରୁଥିଲି । ସ୍ୱାସ୍ଥ୍ୟହାନି ହେତୁ ଏହି ଚାକିରିର ଆବଶ୍ୟକତା ଥିଲା କିଛି କାଳ ପାଇଁ । କିନ୍ତୁ ଜୀବନ ଶ୍ୱାସରୁଦ୍ଧ ହେଲାଭଳି ମନେହେଲା ଏବଂ ଚାକିରି ଛାଡ଼ିଦେଲି ।

ସେଇ ସମୟରେ ହଠାତ୍ ଗୋଟାଏ ଚିଠି ପହଞ୍ଚିଲା । ସେଥିରେ ଲେଖାଥିଲା ଯେ ''ଆମର ଆକାଉଣ୍ଟାଣ୍ଟ ଶ୍ରୀ .......... ମିଶ୍ର ଯାଉଛନ୍ତି । ସେ ଜଣେ ବିଶିଷ୍ଟ ଲୋକର ଗେଷ୍ଟ ହାଉସରେ ରହିବେ । ତାଙ୍କୁ ଭେଟିବ ଏବଂ ଯତ୍ନ ନେବ ।'' ଚିଠି ଡେରିରେ ଆସି ପହଞ୍ଚିଲା । ସେ କଂପାନୀର ନିୟମ ଥିଲା ଯେ ଚିଠି ସହିତ ଆସିଥିବା ଡାକ ଲଫାପା ମଧ ଗୁନ୍ଥା ହୋଇ ରହିବ ଫାଇଲରେ । ଏ ନିୟମ ମାନିବା ଦେଖିଚି ମୁଁ ରାଧାନାଥ ରଥଙ୍କ ପାଖରେ । ଆଶ୍ଚର୍ଯ୍ୟ ହୋଇଥିଲି । କଣ ଦରକାର ରଖିବା ବ୍ୟବହୃତ ଲଫାପାକୁ ? କିନ୍ତୁ ପରେ ମୁଁ ବୁଝିଲି ଏହାର କାରଣ । ସାଧାରଣ ଡାକରେ ଆସିଥିବା ଚିଠିର ଲଫାପା ଥିଲେ ପ୍ରକୃତରେ ଚିଠିଟି କେଉଁଦିନ ଆସିଚି ଜଣାପଡ଼ିବ ।

ମୁଁ ଯାଇ ସେ ଗେଷ୍ଟ ହାଉସରେ ପହଞ୍ଚିଲି । ସେତେବେଳକୁ ସେ ତା' ପୂର୍ବଦିନଠାରୁ ଆସି ପହଞ୍ଚିଗଲେଣି । ମୋତେ ଅପେକ୍ଷା କରିଛନ୍ତି । ମୁଁ ନମସ୍କାର କରି ତାଙ୍କୁ ଯେତେବେଳେ ମିଶ୍ରଜୀ କହି ସମ୍ବୋଧନ କରେ ସେତେବେଳେ ସେ ମୋତେ କହିଲେ ଯେ ମୋତେ ସମସ୍ତେ

Digitized by srujan ka@gmail.com

ପଣ୍ଡିତଜୀ ବୋଲି ଡାକନ୍ତି । ତେଣୁ ଆପଣ ମୋତେ ସେଇଭଳି ସମ୍ବୋଧନ କରନ୍ତୁ । ମୁଁ ତାଙ୍କର ହାବଭାବ ସଂପର୍କରେ ସଚେତନ ହୋଇ ତାଙ୍କୁ ପଚାରିଲି ଯେ ଆପଣଙ୍କର ବୟସ କେତେ ? ସେ ହସି ହସି ପଚାରିଲେ, ଆପଣ କୁହନ୍ତୁ ତ ? ତାଙ୍କୁ ସେତେବେଳକୁ ପ୍ରାୟ ଅଶୀବର୍ଷ ହେବଣି । ମୁଁ ଜାଣି ଜାଣି କହିଲି ଯେ କେତେ ହେବ, ପଞ୍ଚାବନ ଷାଠିଏ ! ସେ ତୃପ୍ତ ହୋଇଗଲେ ଏବଂ ମୋତେ ନେଇ ସାଙ୍ଗରେ ଭୁବନେଶ୍ୱର ବୁଲି ବାହାରିଲେ । ଲିଙ୍ଗରାଜ ମନ୍ଦିର ଦର୍ଶନ ପରେ ସେ ରାଜରାଣୀ ମନ୍ଦିର ଦେଖିଲେ ସତ୍ୟ କିନ୍ତୁ ଆଗ୍ରହ ପ୍ରକାଶ କଲେ ନାହିଁ । ତା' ପରେ କହିଲେ ଯେଉଁଠି ଦେବାଦେବୀ ଅଛନ୍ତି ସେଇଠାକୁ ଯିବା । ଅର୍ଥାତ ସ୍ଥାପତ୍ୟ କଳା ପାଇଁ ତାଙ୍କର ଆଗ୍ରହ ନାହିଁ । ମନ୍ଦିର ପୂଜା ସରିଲା ପରେ ମୁଁ ତାଙ୍କୁ ପଚାରିଲି ନନ୍ଦନକାନନ, ସେକ୍ରେଟେରିଏଟ, ବିଧାନସଭା, ପଦାର୍ଥ ବିଜ୍ଞାନ ଇନଷ୍ଟିଚ୍ୟୁଟ ଯିବା ? ସେ ନାହିଁ କଲେ, କହିଲେ ସେଥିରୁ ମୋତେ କ'ଣ ମିଳିବ ? କଟକ ଯିବାର ପରିକଳ୍ପନା ହେଲା । ସେ ହଠାତ୍ ମୋତେ କହିଲେ ଚାଲନ୍ତୁ ଆପଣଙ୍କ ଅଫିସରେ ବସି କଟକ ଯିବାର ଯୋଜନା କରିବା । ସେଠାରେ ପହଞ୍ଚି ସେ ମୋତେ କହିଲେ ଆପଣ ପରା ମୋ ଆସିବା ଚିଠି ପାଇଛନ୍ତି । ଦେଖି ସେ ଚିଠିଟାକୁ ? ମୁଁ ଫାଇଲରୁ ଚିଠି ଏବଂ ତା' ସହିତ ସଂଲଗ୍ନ ଲଫାପାଟିକୁ ଦେଲି । ସେ ଖୁସି ହୋଇଗଲେ ଏବଂ ସେ ଲଫାପାଟିକୁ ଓଲଟାଇ ପଲଟାଇ ଦେଖିଲେ । ମୁଁ ଦସ୍ତଖତ କରିଛି ସେଇ ଦିନର, ଲଫାପାରେ ବି ମୋହର ଅଛି । କିନ୍ତୁ ଗୋଟାଏ କଥା ତାଙ୍କୁ ବାଧିଲା ପରି ମନେହେଲା । ଚିଠିଟିରେ ଲେଖାଅଛି ''ଆମ ଆକାଉଣ୍ଟାଣ୍ଟ ଶ୍ରୀ .......... ମିଶ୍ର ଯାଉଛନ୍ତି'' । ଓଠକୁ ନେଫଡାଇ ସେ ବିଦ୍ରୁପ କରି କହିଲେ ଯେ ହଁ ମୁଁ ତ ସାମାନ୍ୟ ଜଣେ ଆକାଉଣ୍ଟାଣ୍ଟ । ତେଣୁ ଚିଠି ଡେରିରେ ପକାଯାଇଛି । ମୋର ସେତେବେଳକୁ ସନ୍ଦେହ ହେଲାଣି । ସେ ମୋତେ ପଚାରି ଚାଲିଲେ, ଆମର ପରା ଏକ ଦାତବ୍ୟ ଅନୁଷ୍ଠାନ ଗଢ଼ା ହୋଇଛି । ଆପଣ ମାଲିକଙ୍କୁ ପଚାରିଲେଣି ଯେ କାହାର ପତନ ଲୋଡ଼ା ? ଖାଲି ବିଜୁ ପଟ୍ଟନାୟକଙ୍କର ନା ସମଗ୍ର ମନ୍ତ୍ରିମଣ୍ଡଳର ? ସେତେବେଳକୁ ମୋର ଉକ୍ତ ସଂସ୍ଥାର ମାଲିକଙ୍କ ସହିତ ଦେଖା ବି ହୋଇ ନ ଥାଏ । ତେଣୁ ମନା କଲି । ତାଛଡ଼ା କଣ ସଂପର୍କ ଏଇ ଦାତବ୍ୟ ଅନୁଷ୍ଠାନ ସହିତ ବିଜୁ ପଟ୍ଟନାୟକଙ୍କ ପତନର ? ତା'ପରେ ମୋର ଯେପରି ଦିବ୍ୟଚକ୍ଷୁ ଉନ୍ମୋଚିତ ହୋଇଗଲା । ତା'ହେଲେ କ'ଣ ଏଇ ଯେତେସବୁ ମନ୍ଦିର, ଦାତବ୍ୟ ଅନୁଷ୍ଠାନ, ଲାବରେଟରୀ ସବୁ ଏଇ ଭଦ୍ରଲୋକ ତିଆରି କରିଛନ୍ତି, ସେ ସବୁ କୌଣସି ନା କୌଣସି ବ୍ୟକ୍ତିର ଉତ୍ଥାନ, ପତନ ସହିତ ଜଡ଼ିତ ? ଏବଂ ଏସବୁ ଦାତବ୍ୟ ଅନୁଷ୍ଠାନ ନୁହେଁ । ଏ ସବୁ ହେଉଛି ବଳିଖୁଣ୍ଟ !

ମୋର ମନେପଡ଼ିଲା ଏକ କାହାଣୀ । ବଙ୍ଗଳାରେ ଡଃ ପ୍ରଫୁଲ୍ଲ ଘୋଷ ଥିଲେ ମୁଖ୍ୟମନ୍ତ୍ରୀ । ଶେଠ ଘନଶ୍ୟାମ ଦାସ ବିରଳା ଚାହିଁଲେ ଯେ ତାଙ୍କର ପ୍ରତିନିଧି ଆଇ.ଡି. ଜଲାନଙ୍କୁ ମନ୍ତ୍ରୀ କରାଯାଉ । ଜଣେ ଅଣବଙ୍ଗାଳୀ, ବିଶେଷତଃ ବ୍ୟବସାୟୀ ଗୋଷ୍ଠୀର ବ୍ୟକ୍ତିକୁ ମନ୍ତ୍ରୀ କରିବା

Digitized by srujan ka@gmail.com

ପାଇଁ ପ୍ରଫୁଲ୍ଲ ଘୋଷ ରାଜିହେଲେ ନାହିଁ । ଏବଂ ଦୁଇଟି କଳା ଆମ୍ବାସାଡ଼ର ଗାଡ଼ି ବୁଲିଲା ଦସ୍ତଖତ ସଂଗ୍ରହ କରିବା ପାଇଁ, ସପ୍ତାହକ ଭିତରେ ପ୍ରଫୁଲ୍ଲ ଘୋଷ ଅନାସ୍ଥା ଭୋଟରେ ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ହେଲେ । ଏବଂ ଠିକ୍ ସେତିକିବେଳେ ବିରଳା ପ୍ଲାନିଟୋରିୟମ କୁଆଡ଼େ ତିଆରି ହେଲା ।

ସେ ଯାହାହେଉ ଉକ୍ତ ଭଦ୍ରଲୋକ ଏବଂ ମୁଁ କଟକ ବାହାରିଲୁ । କଟକରେ ତାଙ୍କର ବ୍ୟବସାୟଜନିତ ସାକ୍ଷାତ ଥିଲା ତିନି ଚାରୋଟି ଜାଗାରେ । କାହା ପାଖରେ କେତେ ଟଙ୍କାର କାମ ଏବଂ ପ୍ରତି କାମ ପାଇଁ କାମ ପରିମାଣ ଅନୁଯାୟୀ କେତେ କମିଶନ ଦିଆହେବ ତା' ସେ ଗଣି ଗଣି ସ୍ଥିର କଲେ । କଟକର କାମ ଭିତରେ କଟକ ଚଣ୍ଡୀ ମନ୍ଦିର ଦର୍ଶନ ବି ଅନ୍ତର୍ଭୁକ୍ତ ଥିଲା । ସ୍ୱାଭାବିକ ଭାବରେ ମୁଁ କଲେଜ ଛକ ପଟରୁ ତାଙ୍କର କାର୍ଯ୍ୟକ୍ରମ ତିଆରି କଲି । ଲିଙ୍କରୋଡ଼ ସେତେବେଳକୁ ହୋଇନାଇଁ । ସେ କାର୍ଯ୍ୟକ୍ରମ ଅନୁଯାୟୀ ଚଣ୍ଡୀମନ୍ଦିର ଦର୍ଶନ ଥିଲା ତୃତୀୟ କାର୍ଯ୍ୟକ୍ରମ । ସେ କିନ୍ତୁ ଟିକିଏ କ୍ଷୁବ୍ଧ ହୋଇ ମୋତେ ନିର୍ଦ୍ଦେଶ ଦେଲେ ଯେ ଆପଣଙ୍କର ଧର୍ମ ବିଶ୍ୱାସ ନାହିଁ କି ? ମୁଁ ନାହିଁ କହିବାରୁ ସେ ମୋତେ ବିସ୍ଫାରିତ ଆଖିରେ ଅନେଇଲେ । ତୋ ଆପ୍ ନାସ୍ତିକ ହୈ । ମୁଁ ନାହିଁ କଲି । ତବ୍ ? ମୁଁ ଆଗ୍ନୋଷ୍ଟିକ । ସେ ଏପରି ଶବ୍ଦ ଶୁଣି ନ ଥିଲେ । ତେଣୁ କିଛି କହିଲେ ନାହିଁ । କଟକ ଚଣ୍ଡୀ ମନ୍ଦିରରେ ପହଞ୍ଚି ସେ ପୁଣି ହିସାବ କଲେ ଏବଂ ଟଙ୍କା କମ ପାଇଁ ବୋଧହୁଏ ଟଙ୍କାଏ କି ଆଠଅଣା ରେଟ୍‌ରେ ଭୋଗ କିଣିଲେ । ସେ ମନ୍ଦିରକୁ ଗଲେ । ମୁଁ ଗଲି ସିଗାରେଟ୍ କିଣିବା ପାଇଁ । ସେତେବେଳେ ମୁଁ ବେଶ୍ ସିଗାରେଟ୍ ଖାଉଥିଲି । ସେ ଫେରିଲେ ଭୋଗତକ ଧରି । ଆପଣ ଭୋଗ ନିଅନ୍ତୁ କହି ସେ ମୋ ହାତକୁ ଦୁଇ ଚାରିଟା ମିଠା ବଢ଼ାଇ ଦେଲେ । ମୁଁ ଖାଇଦେଲି ଦେଖି ସେ ମୋତେ ରହସ୍ୟ କରି ପଚାରିଲେ ଯେ ମନ୍ଦିରକୁ ଗଲାବେଳକୁ ଭଗବାନ ବିଶ୍ୱାସ ନାହିଁ, ଆଉ ମିଠା ଖାଇଲାବେଳକୁ ବିଶ୍ୱାସ ଅଛି । ମୁଁ ମଧ ହସି ଉତ୍ତର ଦେଲି ଯେ ମୋର ମିଠା ଉପରେ ଗଭୀର ବିଶ୍ୱାସ । କିନ୍ତୁ ଆପଣ କଣ ସତରେ ବିଶ୍ୱାସ କରନ୍ତି ଯେ ଚଣ୍ଡୀ ସମସ୍ତଙ୍କ ଉପରେ ସବୁଠାରୁ ଶକ୍ତିଶାଳୀ ? ସେ ହାତଟେକି, ଆକାଶକୁ ପ୍ରଣାମ କରି କହିଲେ ନିଶ୍ଚୟ । ମୁଁ ତାଙ୍କୁ ପଚାରିଲି ଯେ ତା'ହେଲେ ଆପଣ ସବୁଠାରୁ କମ କମିଶନ ଏଇ ସବୁଠାରୁ ଶକ୍ତିଶାଳୀଙ୍କୁ ଦେଲେ କିପରି ଏବଂ ତା ମଧ ସେ ଖାଇଲେ ନାହିଁ । ଆପଣ, ମୁଁ, ଡ୍ରାଇଭର ମିଶି ଖାଇଗଲେ ! ସେତେବେଳକୁ ଟିକିଏ ଅଜା-ନାତି ସଂପର୍କ ଗଢ଼ି ଉଠିଲାଣି । ସେ ମୋ ପିଠିରେ ହାତ ଥାପୁଡ଼େଇ କହିଲେ ଯେ— ତୁମ୍ ଏକ ଖତରନାକ୍ (ବିପଦଜନକ) ଲଡ଼କା ହୋ । ଭୟରୁ ଭଗବାନ ସୃଷ୍ଟ । ହୁଏତ ଏକ ସ୍ରଷ୍ଟା ଥାଇପାରନ୍ତି କିନ୍ତୁ ସେ କାହିଁକି ଆପଣଙ୍କ ବିଷୟରେ ଚିନ୍ତିତ ହେବେ । ଆପଣଙ୍କ ପରି କୋଟି କୋଟି ଜୀବ ଯଦି ତାଙ୍କ ଦ୍ୱାରା ସୃଷ୍ଟ ଆପଣଙ୍କର ସବୁ କଥା ପାଇଁ ତାଙ୍କର ସମୟ କାହିଁ ଏବଂ କାହିଁକି ବା ସମୟ ଦେବେ ସେ ? ଆପଣଙ୍କର ଭଗବାନଙ୍କ ସହିତ ସାକ୍ଷାତ ହୋଇନାହିଁ, ମୋର ବି ହୋଇନାହିଁ । ଯଦି କେବେ ହୁଏ ସେ ମୋ ଉପରେ ଖୁସି ହେବେ । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, କିପରି ? ସେ ମୋତେ

Digitized by srujan ka@gmail.com

ବୁଦ୍ଧି, ଆଖି, କାନ, ହାତଗୋଡ଼ ସବୁ ଦେଇଛନ୍ତି କାମ କରିବା ପାଇଁ । ମୁଁ ସେ ସବୁ ବ୍ୟବହାର କରିଛି, ତାଙ୍କୁ ପ୍ରତ୍ୟେକ କଥାରେ ହଇରାଣ କରିନାହିଁ, ଡିଷ୍ଟର୍ବ କରିନାହିଁ । ସେ ହସିଲେ ଏବଂ କହିଲେ, ଆପଣଙ୍କୁ ପାରିହେବ ନାହିଁ ।

ଦିନଯାକ ତାଙ୍କ ସାଙ୍ଗରେ ବୁଲି ବୁଲି ମୁଁ କ୍ଳାନ୍ତ । ତାଙ୍କୁ ତାଙ୍କର ଉଦ୍ୟାନ ବାଟିକାରେ ବିଦାୟ ଦେଲି । ସେ କହିଲେ ଯେ କାଲି ବସ୍‌ରେ ବା ଟାକ୍ସିରେ ସେ ଯିବେ ପୁରୀ– ସେଠାରେ ଦୁଇଦିନ ରହିବେ ଜଗନ୍ନାଥ ଧାମରେ । ମୋର ଆଉ କିଛି ବ୍ୟସ୍ତ ହେବାର ନାହିଁ । ମୁଁ ଫେରିଲି ଆମ ଅଫିସକୁ, ଟିକିଏ ଧୁଆଧୋଇ ହୋଇ ଚା' ଖାଇ ଫେରିବି କଟକ । ଆଜି କଟକରୁ ଯିବା ଆସିବା ଦୁଇଥର ହେଲାଣି । ମୁଁ ଅଫିସରେ ପହଞ୍ଚିଲା ବେଳକୁ ଆମ କଂପାନୀର ଜଣେ ଅଫିସର ଶ୍ରୀ .......... ପଣ୍ଡା ପହଞ୍ଚିଛନ୍ତି । ମୋର କଟକ ଫେରିବାରେ ଏତେ ବିଳମ୍ବର କାରଣ ପଚାରିବାରୁ ମୁଁ ସେ ପଣ୍ଡିତଜୀ ଆକାଉଣ୍ଟାଣ୍ଟଙ୍କ କଥା କହିଲି, ଖୁବ୍ କାଳୁଆଲି । କାରଣ ମୋର ସେ ଭଦ୍ରଲୋକଙ୍କ ଉପର କୌଣସି ଜ୍ଞାନ ନ ଥିଲା । କିନ୍ତୁ ସେ ପଣ୍ଡିତଜୀଙ୍କ ନାମ ଶୁଣି ସେ ଚମକି ଉଠିଲେ । ତାଙ୍କ ମୁହଁ ଉପରେ ଉଦ୍‌ବେଗ ଓ ଆତଙ୍କର ଛାୟା । ସେ କୁଆଡ଼େ ଆସିଛି ? କାହା ଚାକିରି ଖାଇବାକୁ ଆସିଛି ? ତମେ ତାଙ୍କ ରହିବା ଖାଇବା ଯିବା ଆସିବା ପାଇଁ କ'ଣ ସବୁ ବନ୍ଦୋବସ୍ତ କରିଛ ବୋଲି ମୋତେ ପଚାରିଲେ । ଏବଂ ମୋତେ ନେଇ ପୁଣି ଚାଲିଲେ ସେ ରହୁଥିବା ଉଦ୍ୟାନ ବାଟିକାକୁ । ତାଙ୍କୁ ଦେଖିଲାକ୍ଷଣି ପଣ୍ଡାବାବୁ ସିଧା ସାଷ୍ଟାଙ୍ଗ ପ୍ରଣିପାତ କଲେ ଏବଂ ମୁଁ ତାଙ୍କୁ ଚିହ୍ନି ନ ଥିବା ହେତୁ ସେ ମୋ ତରଫରୁ ମାଫି ମାଗିନେଲେ । ସେ ପୁରୀ ଯିବାପାଇଁ ତିନୋଟି ଗାଡ଼ିର ବନ୍ଦୋବସ୍ତ ହେଲା । ରେଳବାଇ ହୋଟେଲରେ ରୁମ୍ ରିଜର୍ଭେସନ ହେଲା । ଆମେ ଦୁହେଁ ପଣ୍ଡିତଜୀଙ୍କୁ ଛାଡ଼ିବାକୁ ଗଲୁ ପୁରୀ ।

ଏବଂ ତା' ପରେ ପଣ୍ଡାବାବୁ ମୋତେ ଦେଲେ ପଣ୍ଡିତଜୀଙ୍କ ପରିଚୟ ।

ସେ ହେଉଛନ୍ତି କଂପାନୀ ମାଲିକଙ୍କର ଚିଫ୍ ଅକାଉଣ୍ଟାଣ୍ଟ । ସେ ମାଲିକଙ୍କର ଗୃହ ଶିକ୍ଷକ । ସେ ବୁଢ଼ା ହୋଇଯିବାରୁ ଯେତେବେଳେ ଅବସର ନେବାକୁ ଚାହିଁଲେ ବାବୁ (ମାଲିକ) ତାଙ୍କୁ କହିଲେ ଯେ "ଆପ୍ ଆରାମ କିଜିୟେ" । ସେ ଆରାମ କରୁଛନ୍ତି ମାସକୁ ବାର ହଜାର ଟଙ୍କା ଦରମାରେ । ସେ ମାଲିକଙ୍କର ସବୁଠାରୁ ବିଶ୍ୱସ୍ତ ଲୋକମାନଙ୍କ ମଧ୍ୟରେ ଜଣେ । ସେ ଯାହା ବିରୁଦ୍ଧରେ ଲେଖିଦେବ ତା'ର ଚାକିରି ଗଲା ନିଶ୍ଚୟ । ଥରେ ମାଲିକଙ୍କ ଘର ଉପରେ ଇନ୍‌କମ୍ ଟାକ୍ସ ବାଲା ଚଢ଼ଉ କଲେ । ସବୁ ଦ୍ୱାର ଅବରୁଦ୍ଧ । ରାତିବେଳ, ଘର ଘେରଉ ହୋଇଛି ।ଂଡିର୍ଲା ଅଛନ୍ତି ଘରେ । ତେଣୁ ସକାଳୁ ପୋଲିସ ଘର ଭିତରକୁ ଯିବେ ।

ଗୋଟାଏ ବଡ଼ କଳା ବାକ୍ସରେ ଗୁପ୍ତ ଆକାଉଣ୍ଟର ଫାଇଲ ସବୁ ଭର୍ତ୍ତି ହୋଇ ରହିଛି । ସମସ୍ତଙ୍କ ଭିତରେ ଆତଙ୍କ । ନିଶ୍ଚୟ ଧରା ପଡ଼ିଲା ସବୁ ଗୁପ୍ତ ଫାଇଲ । ନିଆଁ ବି ଲଗାଇ ହେବ ନାହିଁ । କାରଣ ନିଆଁ ଲଗାଇଲେ ଜଣା ପଡ଼ିଯିବ । ପଣ୍ଡିତଜୀ ସେଇ ଘରେ ବିଦ୍ୟମାନ । ସେ

Digitized by srujan ka@gmail.com

କହିଲେ ଯେ ମୋତେ ଏକୁଟିଆ ଏଇ ଘରେ ଛାଡ଼ିଦିଅ, ମୁଁ ବୁଝିବି । ବାବୁଙ୍କର ବିଶ୍ୱସ୍ତ ଲୋକ । ତେଣୁ ସମସ୍ତେ ମାନିଲେ ।

ସକାଳ ପାହିଲା ବେଳକୁ ଦେଖାଗଲା ଯେ ଗୁଡ଼ାଏ ଚୋବା ହୋଇଥିବା କାଗଜ ଗଦା ହୋଇ ପଡ଼ିଛି । ସମସ୍ତେ ତାଜୁବ୍ । ଫାଇଲ ସବୁ କାହିଁ ? ପଣ୍ଡିତଜୀ ରାତିଯାକ ବସି ସବୁ ଫାଇଲ ଚୋବାଇଛନ୍ତି, ଶବ୍ଦ ନାହିଁ, ନିଆଁ ନାହିଁ, ଟ୍ରଙ୍କ ଯାକର ଫାଇଲକୁ ସେ ଚୋବାଇଛନ୍ତି ବସି ବସି । ଯାହା ଗିଳି ହୋଇଯାଇଛି ବାକି ସବୁ ଚୋବା ହୋଇ ଗଦା ହୋଇଛି ।

ତାଙ୍କ ସାଙ୍ଗରେ ମୋର ଆଉ ଦେଖା ହୋଇନାହିଁ । କିନ୍ତୁ ସେ ଦିନ ଜଗନ୍ନାଥଙ୍କ ପାଖରେ ତାଙ୍କୁ ମୁଣ୍ଡିଆ ମାରି ଘଣ୍ଟାକରୁ ଊର୍ଦ୍ଧ୍ୱ ଶୋଇରହିବା ଦେଖିଚି ।

କିନ୍ତୁ ଧର୍ମ କଣ ଖାଲି ଏଇଆ ? ନୁହେଁ । ଯ ଧାରୟତି ସେ 'ଧର୍ମ' । ପିଲାଦିନେ 'ସୁବର୍ଣ୍ଣଲେଖା' ନାମକ କବିତା ବହିଟିଏ ଥିଲା ଆମର କୋର୍ସରେ । ଲେଖକ ରାମକୃଷ୍ଣ ପାଢ଼ୀ । ସେଥିରେ ହୃଦୟତୀର୍ଥ ନାମକ ମନଛୁଆଁ କବିତାଟିଏ ଥିଲା । ହରିହରପୁର ବୋଲି ଗାଁ ଟିଏ । ସେଥିରେ ଗୋଟିଏ ଅଶୀବର୍ଷର କାଳି ବୁଢ଼ୀ ଥିଲା । ତାକୁ ସମସ୍ତେ ରାଧିନାନୀ ବୋଲି ଡାକନ୍ତି, ପିଲା ବୁଢ଼ୀ ସମସ୍ତେ ।

ନଅବର୍ଷର ରୋହିଣୀ କନ୍ୟା ଭାବରେ ସେ ଆସିଥିଲା ଏଇ ଗାଁ ବୋହୂ ହୋଇ । ଛଅମାସ ପରେ ତା'ର ସ୍ୱାମୀ ମରିଗଲା । ତାକୁ ସତର ବର୍ଷ ହେବା ପର୍ଯ୍ୟନ୍ତ ନଣନ୍ଦଟିଏ ଥିଲା । ସେ ମଧ ମରିଗଲା, ତା'ପରେ ଆଉ ତା'ର ତିନି କୁଳରେ କେହି ନାହାନ୍ତି । ସେ ଘର ଛାଡ଼ି କୁଆଡ଼େ ଯାଏ ନାହିଁ । ଆପଣାର କୋଳିଗଛ, ପୋଇଲତାକୁ ଜଗିଥାଏ । ଦି ପହରରେ ଗାଁର ଝିଅମାନେ ଆସନ୍ତି । ସେମାନଙ୍କୁ ଅଳତା ଲଗାଇବା, ସୁନ୍ଧା ପାରିବା, ମୁରୁଜ ଦେବା, ବଡ଼ି ପାରିବା ଶିଖାଇଁ ଦିଏ । ସନ୍ଧ୍ୟାବେଳେ ପିଲାମାନେ ଆସି ଜୁଟନ୍ତି । ସେମାନଙ୍କୁ ସେ କଲୁରୀବେଣ୍ଟ, ଅବୋଲକରା ଗଳ୍ପ, ବୁଢ଼ୀ ଅସୁରୁଣୀ ଗଳ୍ପ ଶୁଣାଏ ।

ଦିନ ଗଡ଼ିଚାଲେ । ସେ ବର୍ଷ ପୁରୀରେ ନବ କଳେବର ହେଉଥାଏ । ଉମାଶଖୀ ନାମରେ ଝିଅଟିଏ ଆସି ରାଧିନାନୀକୁ କହିଲା, ନାନୀ, ଜୀବନଯାକ ତ ଖଟିଖଟି ମହାପାପ ଅର୍ଜନ କରିଛ, ପୁଣ୍ୟ, ଧର୍ମ କିଛି କରି ନାହଁ । ଏ ବର୍ଷ ଚାଲ ପୁରୀରେ ରଥ ଉପରେ ଜଗନ୍ନାଥଙ୍କୁ ଦର୍ଶନ କରି ଆସିବ ।

ରାଧିନାନୀ କହିଲା ମୁଁ ତ ଜୀବନ ଦେଖି ନାହିଁ । ପାପ ପୁଣ୍ୟ କେମିତି ଜାଣିବି ? ମୁଁ ତ ଏଇ ଘର ଛାଡ଼ି, କୋଳିଗଛ, ପୋଇଲତା ଛାଡ଼ି କୁଆଡ଼େ ଯାଇନାହିଁ । ପାପ କାହାକୁ କହନ୍ତି ଜାଣିଲେ ସିନା ପୁଣ୍ୟ କରିବାକୁ ଚେଷ୍ଟା କରିବି । ପୁଣ୍ୟ କାହାକୁ ଜାଣିଲେ ସିନା ପାପ କାମ କରିବି ନାହିଁ । ଆଉ ମୁଁ ଏ କୋଳିଗଛ,ପୋଇଲତା ଛାଡ଼ି ଯିବି କୁଆଡ଼େ ?

Digitized by srujan ka@gmail.com

ପରିଶେଷରେ ରାଧିନାନୀ ପୁରୀ ଯାଇଛି । ରଥ ଉପରେ ଜଗନ୍ନାଥ ବିଜେ ହେଲେ । ରାଧିନାନୀ ଚାହିଁ ଦେଖୁଛି ଯେ ତା' କୋଳିଗଛ ପୋଇଲତା ଯାଇ ରଥରେ ବେଢ଼ିଛନ୍ତି, ତା'ରି ଭିତରେ ତାର କୁଡ଼ିଆ ଏବଂ ଜଗନ୍ନାଥ ସେଇଠି ବିରାଜମାନ । ରାଧିନାନୀ ଜଗନ୍ନାଥଙ୍କୁ ପଚାରୁଛି ତମେ ତ ମୋ କୁଟୀରରେ ଅଛ, ମୁଁ ତୁମକୁ କାହିଁକି ଅନ୍ୟତ୍ର ଖୋଜୁଛି । କବିତାର ଶେଷ ପାରାଟି ଏଇପରି–

''ହାୟରେ ଅବୋଧ ଜୀବ
ବୃଥା ଜଗତର ପଥେ ଘାଟେ ବୁଲି
ବୃଥା ସିନା ଖୋଜୁ ଶିବ ।
ନାହିଁ ଯେ ଧୂପେ ଓ ଝୁଣାର ଗନ୍ଧେ,
ବେଦେ ଓ କୋରାଣେ ବାଣୀର ଛନ୍ଦେ
ବୁଦ୍ଧ ଯୀଶୁର ଦ୍ୱିଧା ଓ ଦ୍ୱନ୍ଦ୍ୱେ,
ନାହିଁ କାହିଁ ଜଳେ ସ୍ଥଳେ
ସେ ଯେ ମାନବର ପରାଣଦେବତା
ରହିଛି ପରାଣ ତଳେ''

ଏଇ କବିତା ମୋତେ ସାରା ଜୀବନ ମୁଗ୍ଧ ଓ ଅନୁପ୍ରାଣିତ କରିଛି ।

ସ୍ରଷ୍ଟା ଯଦି ବି କେହି ଥାଏ, ସେ ନିର୍ଗୁଣ, ସେ ଅଲେଖ, ସେ ନିରଞ୍ଜନ ଏବଂ ତାହା ମଣିଷର ପ୍ରାଣରେ ହିଁ ବିଦ୍ୟମାନ । ଗୀତା, ଭାଗବତ, ବାଇବେଲ, କୋରାନରେ ନୁହେଁ, ମନ୍ଦିର ମସ୍‌ଜିଦ, ଗୀର୍ଜାରେ ନୁହେଁ । ଅନନ୍ତ ସ୍ରଷ୍ଟା ପାଇଁ ଏଇ ନିବେଦନ ମୋତେ ପ୍ରେରଣା ଦେଇଛି । ଆଖିବୁଜି ଭଗବାନଙ୍କୁ ଖୋଜ ନାହିଁ, ଆଖି ଖୋଲି ଦେଖ, ଆଗରେ ଯିଏ ଠିଆ ହୋଇଛି ସେ ହେଉଛି ଭଗବାନ, ତାର ସେବା ହିଁ ଭଗବତ ସେବା । ବିବେକାନନ୍ଦଙ୍କ ଏହି ବାଣୀ ମୋତେ ପୂଜାପାଠ ଆରାଧନା ଅପେକ୍ଷା ବେଶୀ ଅନୁପ୍ରାଣିତ କରିଛି ।

ଗୀର୍ଜାର ଘଣ୍ଟି, ମସ୍‌ଜିଦ୍‌ର ଆଜାନ, ମନ୍ଦିରର ଶଙ୍ଖଧ୍ୱନି ମୋତେ ସୃଷ୍ଟିର ଅନନ୍ତ ପ୍ରତି ମୋ ପାଇଁ ହୋଇଛି ଅନନ୍ତର ଆହ୍ୱାନ । କିନ୍ତୁ କୀର୍ତ୍ତନ, ପୂଜାପାଠ ପ୍ରଭୃତି ପଦ୍ଧତି ପ୍ରତି ମୋର କିପରି ଏକ ବିତୃଷ୍ଣା ଜନ୍ମିଛି ।

ଏହି ''ହୃଦୟତୀର୍ଥ'' ନାମକ କବିତା କେବଳ ମୋତେ ମୁଗ୍ଧ କରିନାହିଁ, ଏହାର ଲେଖକ ରାମକୃଷ୍ଣ ପାଢ଼ୀଙ୍କୁ ମୁଁ କେବଳ ଖୋଜି ନାହିଁ । ତତ୍‌କାଳୀନ ଅନେକ ଛାତ୍ର ଖୋଜିଛନ୍ତି । ସେମାନଙ୍କ ମଧ୍ୟରେ ମୋର ବନ୍ଧୁ ୰ ଦୁର୍ଗାମାଧବ ମିଶ୍ର ଅନ୍ୟତମ । ସେ ମୋର ଉପର ଶ୍ରେଣୀର ଛାତ୍ର ଥିଲେ ଏବଂ ତାଙ୍କ ବାପା ଚନ୍ଦ୍ରଶେଖର ମିଶ୍ର ଥିଲେ ମୁଁ କଲେଜକୁ ଆସିଲା ବେଳକୁ କଲେଜ ଅଫିସରେ ହେଡ଼କ୍ଲର୍କ । ସେ ଖୋଜି ଖୋଜି ନ ପାଇ ଦିନେ ତାଙ୍କର ଆଇ.ଜି. ପୁଲିସ ବିଭାଗର

Digitized by srujan ka@gmail.com

ପ୍ରବାଦ ପୁରୁଷ ୰ ଆର. କେ. ପାଢ଼ୀଙ୍କୁ ପଚାରିଲେ ଯେ ସେ କଣ ଏଇ କବିତାର ଲେଖକ ? ଆର.କେ. ପାଢ଼ୀ ଭାରି ହ୍ୟୁମରସ୍ । ଆଇ. ପି.ଏସ୍. ପରୀକ୍ଷାରେ ମୌଖିକ ପରୀକ୍ଷାରେ ସେ ସର୍ବୋଚ୍ଚ ନମ୍ବର ରଖିଥିଲେ । ସେଇ ପ୍ରକାର ହ୍ୟୁମରସ୍ ଛଟା ତାଙ୍କର ପର ପୀଢ଼ି ପୁଲିସ ଅଫିସର ଶରତଚନ୍ଦ୍ର ମିଶ୍ର ପାଖରେ ଦେଖିବାକୁ ମିଳେ । ସେ ଆଖିକୁ ଚରାଟି ଉତ୍ତର ଦେଲେ Me, police & poetry ? Only P is common and thus ends the similarity. ଦୁର୍ଗାମାଧବ ମିଶ୍ରଙ୍କର ହଠାତ୍ ପରଲୋକ ହୋଇଗଲା ଭୁବନେଶ୍ୱରର ତାଙ୍କ ଘରେ । ତାଙ୍କ ପାଇଁ ପ୍ରକାଶିତ ସ୍ମରଣିକାରେ ମୁଁ ଏଇ କବି ରାମକୃଷ୍ଣ ପାଢ଼ୀଙ୍କୁ ଆଜି ପର୍ଯ୍ୟନ୍ତ ଆମେ ପାଉନାହୁଁ ବୋଲି ଉଲ୍ଲେଖ କରିଥିଲି । ତାକୁ ପଢ଼ି ମୋର ବନ୍ଧୁ ଯାଜପୁର ରୋଡ଼ର ଓକିଲ ଚନ୍ଦ୍ରମଣି ପଣ୍ଡା, ସେଇ ଲେଖକ ରାମକୃଷ୍ଣ ପାଢ଼ୀଙ୍କ ପରିଚୟ ଜଣାଇଥିଲେ । ସେ ସେଇ ଯାଜପୁର ଅଞ୍ଚଳର ଲୋକ, କିନ୍ତୁ ସେ ବି ଆଉ ନାହାନ୍ତି । କିଛି ବର୍ଷ ତଳେ ତାଙ୍କର ପରଲୋକ ହୋଇଯାଇଛି ।

ଦୁର୍ଗାମାଧବବାବୁ ଆଉ ନାହାନ୍ତି, କିନ୍ତୁ ମୁଁ ତାଙ୍କୁ ଭୁଲିପାରିବି ନାହିଁ । ମୁଁ ମୋର ବନ୍ଧୁ ଉମେଶଚନ୍ଦ୍ର ନାୟକ କଲିକତାରେ ଥାଉ ସେଇଦିନ ଯେଉଁଦିନ ଇନ୍ଦିରାଗାନ୍ଧୀଙ୍କର ପରଲୋକ ହେଲା । ସକାଳୁ ଆମେ ଯାଇ ପହଞ୍ଚିଲୁ ଜର୍ମାନ କନସୁଲେଟରେ । ହଠାତ୍ ସେଠାରେ ସମ୍ବାଦ ପହଞ୍ଚିଲା ତାଙ୍କର ରାଷ୍ଟ୍ରଦୂତାବାସ ତରଫରୁ–

Indira Gandhi shot down dead by her security staff. Close the consulate and withdraw all vehicles. ——

ଆମେ ଆଚମ୍ବିତ ହୋଇ ଫେରି ଆସିଲୁ ପାର୍କ ଷ୍ଟ୍ରିଟରେ ଆମେ ରହୁଥିବା ସ୍ଥାନକୁ । ଠିକ୍ ତା'ରି ଆଗରେ ଥିଲା ଚେକୋସ୍ଲୋଭାକିଆ କନସୁଲେଟ । ସେଠାରେ ବୁଝିବାକୁ ଗଲୁ । ସେଇଠି ବି ସେଇ ପ୍ରକାର ସମ୍ବାଦ ।

ଦୋକାନ ବଜାର ସବୁ ବନ୍ଦ ହୋଇଗଲା । ଠାଏ ଠାଏ ନିଆଁ ଜଳିଲା । ରାସ୍ତା ଉପରକୁ ଆସିଗଲେ ମିଲିଟାରୀ ପୋଲିସ । ୧୪୪ ଧାରା ଏବଂ ପରବର୍ତ୍ତୀ ସମୟରେ ସାନ୍ଧ୍ୟ ଆଇନ ଜାରି ହୋଇଗଲା । ସେ ଦିନଟା କେଣସି ମତେ କଟିଗଲା । ଉମେଶ ଯାଇ କୌଣସି ମତେ କିଛି ଖାଦ୍ୟ ଆଣିଲା ରାତି ପାଇଁ । ତା' ପରଦିନ ଆମେ ଫେରିବାର କଥା । ଶୁଣିଲୁ ଟ୍ରେନ ଯାଉଛି । କିନ୍ତୁ ଷ୍ଟେସନ ଯିବୁ କେମିତି ? କନ୍‌ସୁଲେଟ ମାନଙ୍କର ଗାଡ଼ି ବାହାରୁ ନାହିଁ । ବ୍ୟକ୍ତିଗତ ବନ୍ଧୁମାନଙ୍କୁ ଫୋନ କରି ଚାଲିଲୁ କିନ୍ତୁ ସବୁଠି ଏକ ଅବସ୍ଥା । ରାସ୍ତାକୁ ଗାଡ଼ି ବାହାରିପାରୁ ନାହିଁ । କିଛି ପେଟ୍ରୋଲ ପମ୍ପରେ ନିଆଁ ଲଗାଇ ଦିଆଯାଇଛି । କିଛି ଶିଖ୍‌ମାନଙ୍କ ଉପରେ ଆକ୍ରମଣ ହୋଇଛି, କିନ୍ତୁ କାଁ ଭାଁ, ଆଶ୍ଚର୍ଯ୍ୟ ହେଲି ଯେ ସେ ଅପରାହ୍ନ ପର୍ଯ୍ୟନ୍ତ ଶାସନରେ ଥିବା ସି.ପିଏମ୍., ସି.ପି.ଆଇ., ଫରୱାର୍ଡ଼ ବ୍ଲକ କ୍ୟାଡ଼ର ପଠାଇ ନାହାନ୍ତି ରାସ୍ତା ଉପରକୁ ଶାନ୍ତି ଶୃଙ୍ଖଳା ରକ୍ଷାକରିବା ପାଇଁ । ମୋତେ ଏହା ଟିକିଏ ଆଶ୍ଚର୍ଯ୍ୟ କଲା । କାରଣ ଏଇ କଲିକତାରେ ମୁଁ ଦେଖିଛି ଶିଖ୍ ହିନ୍ଦୁ

Digitized by srujan ka@gmail.com

ସଂଘର୍ଷ ସମୟରେ ବାମପନ୍ଥୀମାନଙ୍କର ଭୂମିକା । ସେ ଦିନ ଦେଖିଥିଲି କଲିକତାର ରାଜରାସ୍ତା ଉପରେ ପ୍ରବଳ ଉତ୍ତେଜନା ସତ୍ତ୍ୱେ 'ଗ୍ରନ୍ଥ ସାହେବ' କୁ ମୁଣ୍ଡରେ ଧରି ଜ୍ୟୋତି ବସୁ ଏବଂ ବିଶ୍ୱନାଥ ମୁଖର୍ଜୀଙ୍କ ଯାତ୍ରା ବିଶାଳ ଜନସମାବେଶରେ । ମୁଁ ଦେଖିଛି ଓଡ଼ିଆ ବଙ୍ଗାଳୀ ସଂଘର୍ଷ ସମୟରେ ଜ୍ୟୋତି ବସୁଙ୍କର ଭୂମିକା । କଟକ ଓ କଲିକତା ଉଭୟ ସ୍ଥାନରେ ଓଡ଼ିଆ-ବଂଗାଳୀ ସଂଘର୍ଷ ଲଗାଇବା ପାଇଁ କୌଣସି କୌଣସି ଗୋଷ୍ଠୀର ବେଶ୍ ଆଗ୍ରହ ।ଆଜି କ'ଣ ହେଲା ବାମପନ୍ଥୀ ନେତୃତ୍ୱର ? ଶିଖ୍‌ମାନଙ୍କୁ ରକ୍ଷା କରିବା ପାଇଁ, ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା କରିବା ପାଇଁ କୁଆଡ଼େ ଗଲେ ଶୃଙ୍ଖଳିତ କ୍ୟାଡ଼ର ? ସେମାନେ ମଧ ରହିଗଲେ କନଫ୍ୟୁଜନ୍‌ରେ ଦୁଇ ଦିନ ।

ସେତେବେଳକୁ ଦୁର୍ଗାମାଧବ ମିଶ୍ର ସି.ଆର.ପି.ଏଫ.ର ମୁଖ୍ୟ କଲିକତାରେ । ମୁଁ ତାଙ୍କୁ ଟେଲିଫୋନରେ ଖୋଜିଲି । ସେ ତ ରାଜରାସ୍ତାରେ, field operation ରେ । ବହୁ ବହୁ ଚେଷ୍ଟା ପରେ ପାଇଲି । ତାଙ୍କୁ ମୁଁ ଅବସ୍ଥା କଥା କହି ସାହାଯ୍ୟ ଲୋଡ଼ିଲି । ସେ ମୋ କଣ୍ଠସ୍ୱର ଶୁଣି ଆଶ୍ଚର୍ଯ୍ୟ ହେଲେ ଏବଂ କହିଲେ ଯେ ଟ୍ରେନସବୁ ଚାଲିଛି । କିନ୍ତୁ ଅବସ୍ଥା ଖରାପ ହେବାକୁ ଯାଉଛି । ଆପଣ ଷ୍ଟେସନରେ ଶୀଘ୍ର ପହଞ୍ଚିବା ଦରକାର । କେତେବେଳେ ଆପଣ ବାହାରି ପାରିବେ ? ମୁଁ କହିଲି ସାଙ୍ଗେ ସାଙ୍ଗେ । ସେ କହିଲେ ଯେ ଆମର ଫୋର୍ସ ପଠାଉଛି । ସେ ଆପଣଙ୍କୁ ନେଇଯିବେ ହାବଡ଼ା ଷ୍ଟେସନକୁ । ଆମେ ରହୁଥାଉ ଆମ୍ବାସଡର ଆପାର୍ଟମେଣ୍ଟରେ, ପାର୍କ ଷ୍ଟ୍ରୀଟ୍‌ରେ । ସେଇଟି ବନ୍ଧୁ ✓ ବିନି ମିଶ୍ରଙ୍କର ଥିଲା କଳିଙ୍ଗ ଟ୍ରାନ୍ସଫର୍ମର କଂପାନୀ ଗେଷ୍ଟ ହାଉସ । କିନ୍ତୁ ତାହା ପ୍ରକୃତରେ ଥିଲା ଚନ୍ଦ୍ରମାଧବ ମିଶ୍ର (ଚନ୍ଦ୍ର ଭାଇନା) ଏବଂ ସୀତାକାନ୍ତ ମିଶ୍ର (ବାବୁ) ଙ୍କ କର୍ତ୍ତୃତ୍ୱରେ । ଗେଷ୍ଟହାଉସ ଖାଲିଥିଲେ ଆମେ ସେଇଠି ରହୁ । କପିଳ ବୋଲି ଜଣେ କେୟାର ଟେକର୍ ରକ୍ଷଣାବେକ୍ଷଣ କରେ, ଚା' କରିଦିଏ । ଖାଇବା ବାହାରେ । ବନ୍ଧୁ ବିନି ମିଶ୍ର ଥିଲେ ପାରିବାରିକ ବନ୍ଧୁ । ଆଇ.ଆର.ଟି. ଖଡ଼ଗପୁରରୁ ପାଶ୍ କରିସାରି ସେ ଚାକିରି ନ କରି ବ୍ୟବସାୟରେ ମନ ଦେଇଥିଲେ ଏବଂ ଉତ୍ପାଦନ କରୁଥିଲେ କଳିଙ୍ଗ ଟ୍ରାନ୍ସଫର୍ମର । ଏହାର ମାର୍କେଟ ଓଡ଼ିଶାରେ କମ୍ ଥିଲା, ଥିଲା ବେଶି ପଂଜାବ, ହରିଆନା ପ୍ରଭୃତିରେ । ତାଙ୍କର ଓ ବନ୍ଧୁ ଅଜୟ ଭୂୟାଁଙ୍କର ପରଲୋକ ହୋଇଯାଏ ଏକ କାର ଦୁର୍ଘଟଣାରେ କଟକ-ଭୁବନେଶ୍ୱର ରାସ୍ତାରେ । ଏହି ରାସ୍ତା ଏକ ମୃତ୍ୟୁ ଯନ୍ତା । ବହୁ ବିଶିଷ୍ଟ ବ୍ୟକ୍ତି ଏହି ରାସ୍ତାରେ ଦୁର୍ଘଟଣାରେ ପ୍ରାଣ ହରାଇଛନ୍ତି । ସେମାନଙ୍କ ଭିତରେ ପ୍ରସିଦ୍ଧ ମୃତ୍ତିକା ବିଶେଷଜ୍ଞ ଏବଂ ଜାତୀୟତାବାଦୀ ସ୍ୱାଧୀନତା ସଂଗ୍ରାମୀ ଶ୍ୟାମାନନ୍ଦ ପଟ୍ଟନାୟକ ଅନ୍ୟତମ । ବିନି ସେ ଦିନ ଯାଉଥିଲେ କୌଣସି କେନ୍ଦ୍ର ମନ୍ତ୍ରୀଙ୍କୁ ଭେଟିବା ପାଇଁ । ମୋ ସ୍ତ୍ରୀ କମଳକୁମାରୀ ଠିକ୍ ସେଇଦିନ ଯୋଗ ଦେଇଥାନ୍ତି ଚାକିରିରେ ଅଢ଼େଇବର୍ଷ ଛୁଟିରେ ରହିସାରିଲା ପରେ । ବିନିବାବୁଙ୍କ ଝିଅ ସେଇଦିନ ଆପଣା ପରୀକ୍ଷାରେ ଶତକଡ଼ା ୯୩ ନମ୍ବର ରଖି ପାଶ୍ କରିଥାଏ । ବିନିବାବୁ ଗଲାବେଳେ କହିଗଲେ ଫେରି ଆସିଲେ ଆଜି ଦୁହିଁଙ୍କ ପାଇଁ ସେ ଖାଇବାକୁ ଦେବେ । ସେ କିନ୍ତୁ ଆଉ ଫେରିଲେ ନାହିଁ,

Digitized by srujan ka@gmail.com

ଫେରିଲା ତାଙ୍କର ମୃତ ଦେହ ଆମ ସମସ୍ତଙ୍କୁ ସ୍ତମ୍ଭୀଭୂତ କରି । ସେ ଭଳି ବନ୍ଧୁଟିଏ ପାଇବା ବିରଳ । ୟୁନିଭର୍ସ ଗଢ଼ିବା ପାଇଁ ତାଙ୍କର ଅବଦାନ ମୋ ପାଇଁ ଚିରକାଳ ଅଶ୍ରୁଳ ସ୍ମୃତି ସହିତ ଅତୁଟ ରହିବ ।

ତାଙ୍କର ଗେଷ୍ଟ ହାଉସ ଥାଏ ଆମ୍ବାସାଡର ଆପାର୍ଟମେଣ୍ଟରେ । ସେଇ ଘରର ଅନ୍ୟାନ୍ୟ ଫ୍ଲାଟମାନଙ୍କରେ କିଏ ରହନ୍ତି ତାହା ମୁଁ ଜାଣି ନାହିଁ ବା ଜାଣିବାର ଅବକାଶ ନାହିଁ ।

ବର୍ତ୍ତମାନ ଦୁର୍ଗାମାଧବବାବୁ ପଠାଇଲେ ଦୁଇଟି ସାଞ୍ଜୁଆ ଜିପ୍ । ସେଥିରେ ତାଙ୍କର ବାହିନୀ ହାତରେ ଷ୍ଟେନଗନ ଧରି । ସେମାନେ ଯେତେବେଳେ ସେଠାରେ ପହଞ୍ଚି ଆମକୁ ଖୋଜିଲେ ସୈନ୍ୟବାହିନୀ ଦେଖି ଚାଞ୍ଚଲ୍ୟ ଖେଳିଗଲା ସେ ଘରର ବାସିନ୍ଦାମାନଙ୍କ ଭିତରେ । ଇନ୍ଦିରା ଗାନ୍ଧୀଙ୍କ ହତ୍ୟାକାରୀ କେହି ଧରା ପଡ଼ିଛି କି ଆଉ ? ଲୋକ ଜମା ହୋଇଗଲେ । ସେମାନଙ୍କ ଭିତରେ ଦି'ଚାରିଟା ଚଳଚିତ୍ର ନାୟକ, ନାୟିକା ଥିଲେ । ଫିଲ୍ମଷ୍ଟାରଙ୍କୁ ଦେଖିବା ପାଇଁ ଏବଂ ଆମକୁ ଦେଖିବା ପାଇଁ ବିରାଟ ଭିଡ଼ ଜମିଗଲା । ଘରର କେୟାର ଟେକର କପିଳକୁ ସମସ୍ତେ ପଚାରୁଛନ୍ତି ଏମାନେ କିଏ ? ଇନ୍ଦିରା ଗାନ୍ଧୀଙ୍କ ହତ୍ୟାକାରୀ ନା ସେଇ ଷଡ଼ଯନ୍ତ୍ରକାରୀମାନଙ୍କ ମଧ୍ୟରୁ କେହି ? କପିଳ ବୁଝାଇଦେଲା ଯେ ନା ଏମାନେ ହେଉଛନ୍ତି ଘର ମାଲିକର ଗେଷ୍ଟ । ତାଙ୍କୁ ଷ୍ଟେସନକୁ ନିରାପଦରେ ନେଇଯିବା ପାଇଁ ଆସିଛନ୍ତି ଆଇ.ପି.ଏସ୍. ଅଫିସରଙ୍କ ନେତୃତ୍ୱରେ ସି.ଆର.ପି.ଏଫ. । ଭିଡ଼ ଆହୁରି ଜମିଗଲା । ଯେତେବେଳେ କୌଣସି ପ୍ରୋଟେକ୍ସନ ନାହିଁ କେଉଁଠି ସେତେବେଳେ ଯେଉଁମାନଙ୍କୁ ଏସକର୍ଟ କରି ନେଇଯିବା ପାଇଁ ଏତେ ସିନିଅର ଅଫିସର ଏବଂ ସୈନ୍ୟବାହିନୀ ଆସିଛନ୍ତି ସେମାନେ ନିଶ୍ଚୟ ଖୁବ୍ ବଡ଼ ଲୋକ ହୋଇଥିବେ !

ସେ ଦୃଶ୍ୟ ଭୁଲିବାର ନୁହେଁ । ତା ସହିତ ଦୁର୍ଗାମାଧବବାବୁଙ୍କୁ ମଧ୍ୟ ଭୁଲିହେବ ନାହିଁ । ରାଜରାସ୍ତା ଉପରେ ଆସିଲାବେଳେ ଦେଖିବାକୁ ମିଳିଲା ଅନେକ ଜାଗାରେ ଅଗ୍ନି ଜଳୁଛି । ଲୋକେ ସବୁ ବିଭିନ୍ନ ସ୍ଥାନରେ ଉପରକୁ ହାତ ଟେକି ଯାଉଛନ୍ତି । ହାଓଡ଼ା ଷ୍ଟେସନରେ ପହଞ୍ଚିଲୁ ଏବଂ ତା'ପରେ କଟକ ।

କିନ୍ତୁ ସେ ଦିନ କ'ଣ ଘଟିଲା ଦିଲ୍ଲୀ, କାନପୁର ତଥା ଅନ୍ୟ ଜାଗାମାନଙ୍କରେ । ମୋର ସଢୁ ସରୋଜ ସେତେବେଳେ କାନପୁର ଅର୍ଡ଼ନାନ୍ସ ଫାକ୍ଟ୍ରିର ଜେନେରାଲ ମ୍ୟାନେଜର । ଶୁଣିଛି ଯେ ଶହ ଶହ ଶିଖଙ୍କୁ ବନ୍ଧୁକ ତିଆରି ମେସିନ ଭିତରେ ଭର୍ତ୍ତି କରି ଦିଆଯାଇଥିଲା ଏବଂ ଦିଲ୍ଲୀ ତଥା ଅନ୍ୟ ସ୍ଥାନ ମାନଙ୍କରେ ଶିଖ ହତ୍ୟାର ନେତୃତ୍ୱ ନେଇଥିଲେ କିଛି କଂଗ୍ରେସ ନେତା । ଏଥିରେ କୌଣସି ସନ୍ଦେହ ନାହିଁ । ଅପରେଶନ ବ୍ଲୁ ଷ୍ଟାର, ପଂଜାବରେ ଆମ ସୈନ୍ୟବାହିନୀ ଦ୍ୱାରା ନିରୀହ ଲୋକଙ୍କୁ ହତ୍ୟା ଏବଂ ଇନ୍ଦିରାଗାନ୍ଧୀଙ୍କୁ ହତ୍ୟା ପରେ ଶିଖମାନଙ୍କର ହତ୍ୟା ଶିଖମାନଙ୍କ ଭିତରେ ଏଭଳି ଏକ କ୍ଷତ ସୃଷ୍ଟି କରିଛି ଯାହା ଦୂର ହେବା ପାଇଁ ବହୁ ସମୟ ଲାଗିବ । ହିନ୍ଦୁ ବ୍ରାହ୍ମଣ-

Digitized by srujan ka@gmail.com

ପୁରୋହିତମାନଙ୍କ ଉପରେ ଆକ୍ରମଣର ପ୍ରତିବାଦରେ ଗୁରୁ ତେଗ୍ ବାହାଦୂର ଆତ୍ମୋତ୍ସର୍ଗ କରନ୍ତି । ମୋଗଲ ସମ୍ରାଟ ଆଉରଙ୍ଗଜେବ ତାଙ୍କୁ ହତ୍ୟା କଲେ । ତାହାର ପ୍ରତିଶୋଧ ନେବାପାଇଁ ଗୁରୁ ଗୋବିନ୍ଦ ସିଂ ଶପଥ ନିଅନ୍ତି ଏବଂ ଜନ୍ମଲାଭ କରେ ଶିଖ ସମ୍ପ୍ରଦାୟ । ହିନ୍ଦୁ ପରିବାରର ଗୋଟିଏ ପୁଅକୁ ଶିଖ କରାଯାଏ । ସେ ସାମରିକ ଯୋଦ୍ଧା ପାଲଟିଯାଏ ଅତ୍ୟାଚାର ଅନାଚାର ବିରୁଦ୍ଧରେ ।

''ପଞ୍ଚ ନଦୀର ତୀରେ,
ବେନି ପାକାଇଆ ଶିରେ,
ଜାଗିଆ ଉଠିଲ ଶିଖ୍,
ନିର୍ମମ, ନିର୍ଭୀକ'' (ରବୀନ୍ଦ୍ରନାଥ)

ମନେପଡୁଛି ଇତିହାସ । ଜନ୍ମମାଟିର ମୁକ୍ତିପାଇଁ ସେମାନଙ୍କର ବଳିଦାନ । ଭଗତ୍ ସିଂଙ୍କ ଠାରୁ ଆରମ୍ଭ କରି ଉଦାମ ସିଂଙ୍କ ପର୍ଯ୍ୟନ୍ତ । ମନେ ପଡୁଛି ଜାଲିଆନୱାଲାବାଗ୍ ଠାରୁ ଆରମ୍ଭ କରି ଗଦ୍ଦର ପାର୍ଟିର ଗଠନ ପର୍ଯ୍ୟନ୍ତ କାହାଣୀ ।

୧୯୪୫ ମସିହାର କଥା । ଲସ୍ ଏଞ୍ଜେଲସରେ ମିଳିତ ଜାତିସଂଘର ପ୍ରଥମ ଅଧିବେଶନ । ଭାରତବର୍ଷ ତଥାପି ପରାଧୀନ । କିନ୍ତୁ ଦ୍ୱିତୀୟ ମହାଯୁଦ୍ଧପରେ ଯେ ପୁରୁଣା ସାମ୍ରାଜ୍ୟ ରହିପାରିବ ନାହିଁ ଏହା ସମସ୍ତେ ଜାଣିଗଲେଣି । ଯେଉଁ ହଜାର ହଜାର ବ୍ରିଟିଶ ଯୁବକ, ଯୁଦ୍ଧକ୍ଲାନ୍ତ ଯୁବକ, ଫେରିଲେ ଯୁଦ୍ଧ କ୍ଷେତ୍ରରୁ, ସମ୍ମୁଖ ରଣପ୍ରାନ୍ତରରୁ, ସେମାନେ ଫେରିଲେ ଏଇ ଅଭିଜ୍ଞତା ନେଇ । ପ୍ରବଳ ପରାକ୍ରମୀ ଉଇନଷ୍ଟନ ଚର୍ଚ୍ଚିଲ ଯୁଦ୍ଧରେ ବିଜୟୀ ହେଲେ କିନ୍ତୁ ଆପଣା ଦେଶର ନିର୍ବାଚନରେ ପରାଜିତ ହେଲେ । ଇତିହାସ ଏଇପରି ରାୟ ଦିଏ । ମିଳିତ ଜାତିସଂଘର ଅଧିବେଶନରେ ଯୋଗଦେବା ପାଇଁ ଗିରିଜା ଶଙ୍କର ବାଜପେୟୀ ଏବଂ ବୋଧହୁଏ ବଦରୁଦ୍ଦିନ ତୟାବଜୀଙ୍କ ନେତୃତ୍ୱରେ ଏକ ''ଭାରତୀୟ-ପ୍ରତିନିଧି'' ଦଳ ଗଲେ ସେ ଅଧିବେଶନରେ ଯୋଗ ଦେବା ପାଇଁ । ଆମେରିକାର, ବିଶେଷତଃ ଲସ୍ ଏଞ୍ଜେଲସ୍‌ର ଶିଖ୍‌ମାନଙ୍କୁ ଏହା ବାଧିଲା । ସେମାନେ ନିବେଦନ କଲେ ଭାରତୀୟ ଜାତୀୟ କଂଗ୍ରେସକୁ ଏକ ପ୍ରତିନିଧି ଦଳ ପଠାଇବା ପାଇଁ । ଭାରତୀୟ ଜାତୀୟ କଂଗ୍ରେସ ସେତେବେଳେ ଧନୀ ପାଲଟିବା ପାଇଁ ଅନେକ ଦିନ ବାକି ଅଛି । ତେଣୁ ସେମାନେ ଆପଣା ଭିତରେ ଚାନ୍ଦା ଆଦାୟକରି ଏକ ୧୨/୧୩ ଜଣ ଭାରତୀୟ ପ୍ରତିନିଧିଦଳଙ୍କୁ ନେଲେ ଉଡ଼ାଜାହାଜରେ ଭାରତବର୍ଷରୁ ଏବଂ ସେମାନଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ହଜାର ହଜାର ଶିଖ୍ ଉଦ୍ୟତ କୃପାଣ ହାତରେ ଧରି ବିକ୍ଷୋଭ କଲେ ଲସ୍‌ଏଞ୍ଜେଲସ୍‌ରେ । ସେ ଅଭିନବ ଦୃଶ୍ୟ ଆନ୍ତର୍ଜାତିକ ସ୍ତରରେ ଉଦ୍‌ବେଳନ ସୃଷ୍ଟିକଲା । ଏହି ଭାରତୀୟ ପ୍ରତିନିଧି ଦଳର ନେତା ଥିଲେ ପଣ୍ଡିତ ନେହେରୁଙ୍କର ଭଉଣୀ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ।

Digitized by srujan ka@gmail.com

କ'ଣ ହେଲା ଏଇ ଶିଖ୍‌ମାନଙ୍କର ? କାହିଁକି ସେମାନେ ଦୂରେଇଗଲେ ଭାରତୀୟ ମହାସ୍ରୋତରୁ ? ଅକାଳୀ ଦଳ ଧର୍ମ, ଗୁରୁଦ୍ୱାର କାମରେ ଆପଣାକୁ ନିୟୋଜିତ କରି ରଖିଥିଲା । ରାଜନୀତିଠାରୁ ସେମାନେ ଥିଲେ ଦୂରରେ । କିଏ ଏବଂ କାହିଁକି ସେମାନଙ୍କୁ ଟାଣି ଆଣିଲା ରାଜନୀତିର ବିଷାକ୍ତ ଜାଲ ଭିତରକୁ ? କ୍ଷଣିକ ରାଜନୈତିକ ସୁବିଧା ପାଇଁ, କ୍ଷମତାରେ ରହିବା ପାଇଁ ତାତ୍‌କାଳିକ ସୁବିଧା ସକାଶେ ଯେଉଁମାନେ ଏହା କଲେ, ତାହାରି ଫଳ ଦେଶକୁ ଭୋଗିବାକୁ ହେଲା । ପଂଜାବ ହେଲା ରକ୍ତସ୍ନାତ । ସେଦିନ ଓଡ଼ିଶା ପୁଲିସ ବିଭାଗ ଆନୁକୂଲ୍ୟରେ "ଟେରରିଜମ" (ସନ୍ତ୍ରାସବାଦ) ଉପରେ ଏକ ସେମିନାରରେ ଯୋଗଦେଇ ପଂଜାବରେ ପୁଲିସ ବାହିନୀର ମୁଖ୍ୟ ଭାବରେ କାମ କରିଥିବା ଶ୍ରୀ ବିୟୋତକେଶ ତ୍ରିପାଠୀ ଯେଉଁ ଭୟାନକ କାହାଣୀ ଉପସ୍ଥାପନା କଲେ ତାହା ପ୍ରମାଣିତ କଲା ଯେ ପଂଜାବବାସୀ ଗୋଟାଏ ପଟରେ ଆତଙ୍କବାଦୀ ଏବଂ ଆରପଟରେ ଭାରତୀୟ ପୁଲିସ, ଉଭୟଙ୍କର ଉଲଗ୍ନ ଆକ୍ରମଣର ଶରବ୍ୟ ହୋଇଥିଲେ ।

ଠିକ୍ ଯେପରି ଆଜି ଘଟୁଛି ଭୂସ୍ୱର୍ଗ କାଶ୍ମୀରରେ । କାଶ୍ମୀର ବୁଡ଼ି ରହିଛି ଲୁହ ଓ ଲହୁରେ । ମନେହେଉଛି ଯେପରି ଏଇ କାଶ୍ମୀର ସମସ୍ୟାର ସମାଧାନ ନ ହେବା ପର୍ଯ୍ୟନ୍ତ ଭାରତ ପାକିସ୍ଥାନ ମଧ୍ୟରେ ଶାନ୍ତି ପ୍ରତିଷ୍ଠା ସମ୍ଭବ ନୁହେଁ । କିନ୍ତୁ କାଶ୍ମୀର କାରଣ ନା ଆଳ । କାରଣ ଆଳ ହୋଇଥିଲେ କାଲିକୁ ଆଉ ଏକ ଆଳ ବାହାରିବ । ମୋର ମନେହୁଏ ଦେଶର ଅର୍ଥନୈତିକ, ରାଜନୈତିକ ସଂକଟରୁ ଲୋକଙ୍କ ମୁହଁ ଫେରାଇବା ସକାଶେ ପାକିସ୍ଥାନ ଶାସକ ଗୋଷ୍ଠୀର କାଶ୍ମୀର ହେଉଛି ଗୋଟାଏ ଆଳ । କାରଣ ପାକ୍ ଅଧିକୃତ କାଶ୍ମୀରରେ ଲୋକଙ୍କ ଅବସ୍ଥା ସଂଘାତିକ । ତେଣୁ ଏକ "ସ୍ୱାଧୀନ" ବା ଆତ୍ମ-ନିୟନ୍ତ୍ରଣ ଥିବା କାଶ୍ମୀର ପାଇଁ ଜନମତ ମୁଣ୍ଡ ଟେକୁଛି । ଏହା ହେବା ସ୍ୱାଭାବିକ ମଧ୍ୟ । ପର୍ଯ୍ୟଟନ ଶିଳ୍ପ ହେଉଛି କାଶ୍ମୀରର ସବୁଠାରୁ ବଡ଼ ଜାତୀୟ ଆୟ । ସେ ଘର 'ଶୂନ' ହୋଇ ଯାଇଛି । ଏବଂ କାଶ୍ମୀରର ଶିକାରାରେ ମଣିଷ ରହିଛି ଭୋକ ଉପାସରେ । ତେଣୁ ଖାଲି ତତ୍ତ୍ୱ ବଖାଣିଲେ ଲାଭ କ'ଣ ?

ଶିଖ୍ ସଂପ୍ରଦାୟ ଯେ ଜାତୀୟ ମହାସ୍ରୋତରୁ ଅଲଗା ହୋଇଗଲା ଏବଂ ଶିଖ ଯୁବକ ଉପରେ ଭାରତବର୍ଷ ଅପେକ୍ଷା ଧର୍ମର ପ୍ରଭାବ ବେଶି ହେଲା, ଏହା ହେଉଛି ଆମର ରାଜନୈତିକ ପରାଜୟ ।

ଭାରତବର୍ଷ ଭାଗ୍ୟରେ ଇମିତି ମଧ୍ୟ ଏ ସଂକଟର ଦିନ ଥିଲା, ଯେତେବେଳେ ଭାରତବର୍ଷକୁ ଧର୍ମ ଭିତ୍ତିରେ ବିଭକ୍ତ କରି ଦିଆଗଲା । ଦେଶ ବିଭକ୍ତ ହେବା ଉଚିତ ଥିଲା କି ନାଇଁ । କ'ଣ କରିଥିଲେ କ'ଣ ହୋଇଥାନ୍ତା ତାହା ଉପରେ ଅନେକ ଚର୍ବିତ ଚର୍ବଣ କରାଯାଇପାରେ । କିନ୍ତୁ ମନେପଡ଼େ ରାଜଗୋପାଳଚାରୀଙ୍କ କଥା । ସେ ଭାରତ ବିଭାଜନ ସପକ୍ଷରେ ମତ ଦେଇ ଭାରତୀୟ ଜାତୀୟ କଂଗ୍ରେସରୁ ବିଦାୟ ନେଇଥିଲେ । ସେ ବହୁକାଳରୁ ଘୋଷଣା କରିଥିଲେ ଯେ "ଲୁଗା ମଝିରୁ ଚିରି ଗଲାଣି । ତାକୁ ଦୁଇଖଣ୍ଡ କରିଦେଲେ

Digitized by srujan ka@gmail.com

ପିନ୍ଧିହେବ ।'' ସେ କଂଗ୍ରେସ ଛାଡ଼ିଥିଲେ କିନ୍ତୁ ତାଙ୍କର ଭବିଷ୍ୟତ ବାଣୀ ସତ୍ୟ ବୋଲି ପ୍ରମାଣିତ ହେବାରୁ ତାଙ୍କୁ ଭାରତର ଶେଷ ଭାରତୀୟ ଗଭର୍ଣ୍ଣର ଜେନେରାଲ କରାଯାଇଥିଲା ।

ସେତିକିବେଳେ ଯେଉଁ ଭୟାନକ ପରିସ୍ଥିତି ଉପୁଜିଲା ତାହାର ବିଷରେ ସମଗ୍ର ଭାରତବର୍ଷ ଜର୍ଜରିତ ହୋଇଗଲା । ମୋର ମନେପଡୁଛି । ଆମେ ରେଙ୍ଗାଲି ନାମକ ସ୍ଥାନରେ ଥାଉ । ସେଇଟା ଗୋଟାଏ ଗାଁ ଥିଲା । ହୀରାକୁଦ ବନ୍ଧ ନିର୍ମାଣ ପରେ ଏହା ଏକ ସହର ପାଲଟି ଗଲାଣି । ସେଇଠି ଏକ ଦୁର୍ଗାପୂଜା ମୋ ବାପା ଓ ରେଙ୍ଗାଲି ରେଳବାଇ ଷ୍ଟେସନର ଷ୍ଟେସନ ମାଷ୍ଟର ଶ୍ରୀ ଫନି ଭୂଷଣ ସାନ୍ୟାଲ କରୁଥିଲେ । ସଭାପତି ଥିଲେ ଜଣେ ମୁସଲିମ । ସେ ପୂଜା ମଣ୍ଡପକୁ ଆସନ୍ତି କିନ୍ତୁ ଭିତରକୁ ଆସନ୍ତି ନାହିଁ । ବାହାରେ ବସନ୍ତି ଚକାମାଲି ପକାଇ । ତାଙ୍କୁ ଦେଖିଲେ ପୁରୋହିତ ଛାନିଆ ହୁଅନ୍ତି । କାରଣ ସବୁ ପୂଜା ପଦ୍ଧତି ତାଙ୍କୁ ମାଲୁମ । ଟିକିଏ ପୂଜା ଭୁଲ ଭଟକା ହୋଇଗଲେ ସେ ପଚାରିବେ ''ପଣ୍ଡିତେ ମହାଶୟ, ଏହା କ'ଣ ଠିକ୍ ହେଲା ?''

ଏଇପରି ଏକ ସ୍ଥାନରେ ମୁସଲିମ ଲିଗ୍ ଓ ହିନ୍ଦୁ ମହାସଭା ଉଭୟ ତରଫରୁ ଚାଲିଲା ବିଷାକ୍ତ ପ୍ରଚାର । ''ଏକ ମୁସଲିମ୍ ମରନେ ପହିଲେ ଏକ ଶୋ ହିନ୍ଦୁକୁ ମାରେଗା, ତବ୍ ମରେଗା'' ଠିକ୍ ସେଇପରି ଚାଲିଲା ପ୍ରଚାର ''ମୁସଲମାନ ନେହିଁ ରହେଗା ହିନ୍ଦୁସ୍ଥାନ ମେ । ପାକିସ୍ଥାନ ଯାଓ ନଚେତ କତଲ କରେଗା'' । କିନ୍ତୁ କେହି ତ ରାୟ ମାଗିଲେ ନାହିଁ, ଭାରତରେ ରହୁଥିବା ମୁସଲମାନଙ୍କ ଠାରୁ— ସେମାନେ ପାକିସ୍ଥାନ ଚାହାନ୍ତି ନା ନାଇଁ, ପାକିସ୍ଥାନ ଯିବେ ନା ଭାରତବର୍ଷରେ ରହିବେ ? ଗଣଭୋଟ ହୋଇଥିଲା ସିଲହଟ୍‌ରେ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ । ଭାରତରେ ଜନ୍ମ ହୋଇଥିବା, ବଢ଼ିଥିବା ଏହି ମାଟିର ମୁକ୍ତିପାଇଁ ବଳିଦାନ ଦେଇଥିବା ମୁସଲିମମାନଙ୍କୁ କିଏ କେଉଁଦିନ ପଚାରିଲା ସେମାନଙ୍କର ରାୟ ? ଏହା ସତ୍ତ୍ୱେ, ସେମାନେ କୁଆଡ଼େ ଭାରତବର୍ଷ ପ୍ରତି ଅନୁଗତ ରହିବେ କି ନାଇଁ ସେମାନଙ୍କୁ ସେ ''ପ୍ରମାଣ'' ଦେବାକୁ କୁହାଗଲା । କେଉଁ ଗୁଣରେ ସେମାନେ ଆମଠାରୁ କମ୍ ଭାରତୀୟ ? ଭାରତବର୍ଷ କ'ଣ କେବଳ ହିନ୍ଦୁଙ୍କର ନା ସବୁ ଭାରତୀୟଙ୍କର, ଦଳମତ ଗୋଷ୍ଠୀ ନିର୍ବିଶେଷରେ ? ଭାରତୀୟ ସଂସ୍କୃତି କ'ଣ କେବଳ ହିନ୍ଦୁ ସଂସ୍କୃତି ନା ସବୁ ଧର୍ମର ସମନ୍ୱୟ ଭାରତୀୟ ସଂସ୍କୃତି ? ଆଉ ଅନେକଙ୍କୁ ମୁଁ ପଚାରିଛି ଏଇ ହିନ୍ଦୁ ଶବ୍ଦର ଉତ୍ପତ୍ତି ବିଷୟରେ । ସନାତନ ଧର୍ମ ତ ହିନ୍ଦୁଧର୍ମ ନୁହେଁ । ସିନ୍ଧୁ ନଦୀ କୂଳର ସଭ୍ୟତାକୁ ପାରସୀୟମାନେ ଠିକ୍ ଉଚ୍ଚାରଣ କରି ନ ପାରି ସିନ୍ଧୁ ଶବ୍ଦ ଅପଭ୍ରଂଶ ହୋଇ ହିନ୍ଦୁରେ ପରିଣତ ହୋଇଛି । ଏହାର ହିନ୍ଦୁ ନାମକରଣ ତେଣୁ ଖୁବ୍ ବେଶୀ ପ୍ରାଚୀନ ନୁହେଁ । ଆଜି ଉତ୍ତରପ୍ରଦେଶ, ଦିଲ୍ଲୀ ପ୍ରଭୃତି ରାଜ୍ୟରେ ଲୋକେ ହିନ୍ଦୀ କହନ୍ତି ବା ହିନ୍ଦୁସ୍ଥାନୀ କୁହନ୍ତି ? ମୋର ମନେପଡୁଛି ମୋର ବନ୍ଧୁ ଶ୍ରୀ ପ୍ରେମ ସାଗର ଗୁପ୍ତ ଏକ ଭାଷଣ ଦେଉଥିଲେ ଦିଲ୍ଲୀର ଏକ ନିର୍ବାଚନ ସଭାରେ । ସଭାପରେ ତାଙ୍କୁ ମୁଁ ପଚାରିଲି ପ୍ରେମସାଗରଜୀ, ଆପଣ ଆଜି ତ ହିନ୍ଦୀ କହିଲେ ନାହିଁ, ଏହା ଉର୍ଦ୍ଦୁ ମିଶା ହିନ୍ଦୀ, ନା ହିନ୍ଦୀ ମିଶା ଉର୍ଦ୍ଦୁ । ସେ ହସିଦେଇ କହିଲେ ଯେ ଏହାଠାରୁ ବେଶି ହିନ୍ଦୀ କ'ଣ ତାଙ୍କୁ ନା ଶ୍ରୋତାମାନଙ୍କୁ ମାଲୁମ ଅଛି ?

Digitized by srujan ka@gmail.com

ମୋ ଜାଣିବାରେ ଓଡ଼ିଶାରୁ ଦୁଇଜଣ (ଖୁବ୍ ହେଲେ ଆଉ ଜଣେ ଦୁଇଜଣ ଅଧିକା ହୋଇପାରନ୍ତି) କିନ୍ତୁ ସେମାନଙ୍କର ପଳାୟନ ପାକିସ୍ଥାନକୁ ନା ସେମାନଙ୍କର ଜାଲିଆତି ଯୋଗୁଁ ଗିରଫ ହେବା ଭୟରେ ? ସୁବିଧା ଥିଲେ ସେମାନେ ଅନ୍ୟ କୌଣସି ଦେଶକୁ ବି ପଳାୟନ କରିଥାନ୍ତେ । ଏହା କେବଳ ସେଇ ମୁସଲମାନମାନଙ୍କ ପାଇଁ ପ୍ରଯୁଜ୍ୟ ନା ବହୁ ମୁସଲମାନ, ହିନ୍ଦୁ ପୋଲିସ ଡ୍ରାଗନେଟକୁ ଠକି ଚାଲିଯାଇଛନ୍ତି ବିଦେଶକୁ ପାକିସ୍ଥାନ ଠାରୁ ଦୁବାଇ, ଇଂଲଣ୍ଡ ଠାରୁ ଆମେରିକା ପର୍ଯ୍ୟନ୍ତ ?

ଆମ ଘର ଚାରିପଟରେ ଥିଲା ମୁସଲମାନ ବସତି । ଅନେକ କାଠ, ତଲେଇ କଣ୍ଟ୍ରାକ୍ଟର । ଠିକ୍ ସେଇପରି ଥିଲେ ବିହାରୀ ଓ ଉତ୍ତର ପ୍ରଦେଶର ଲୋକ । ସେମାନଙ୍କର ଭିତରେ ବ୍ୟବସାୟିକ ବିବାଦ ହେଲେ ତାକୁ ହିନ୍ଦୁ ମୁସଲମାନ ବିବାଦର ରୂପ ଦିଆଯାଉଥିଲା ।

ମୋର ମନେପଡୁଛି । ହାଜୀ ଲତିଫ ଅବଦୁଲ୍ଲା ଥିଲେ ଏକ ବିରାଟ କେନ୍ଦୁପତ୍ର ଠିକାଦାର । ସେ ମୁସଲିମ ଲିଗ୍ ପ୍ରତି ଅନୁରକ୍ତ ଥିଲେ । ସିତମଙ୍ଗଲଅପସ୍ତି ନାମରେ ଥିଲେ ଜଣେ ଆଉ ଏକ ବିରାଟ କେନ୍ଦୁପତ୍ର ଠିକାଦାର । ସେ ହିନ୍ଦୁ ମହାସଭା ପ୍ରତି ଅନୁରକ୍ତ ଥିଲେ । ସେମାନଙ୍କ ଭିତରେ ବ୍ୟବସାୟଗତ ପ୍ରତଦ୍ୱନ୍ଦ୍ୱିତା ହିନ୍ଦୁ-ମୁସଲିମ ବିବାଦରେ ରୂପାନ୍ତରିତ ହୋଇଥିଲା ।

ଆମେ କିନ୍ତୁ କେବେ ଆପଣାକୁ ବିପଦାପନ୍ନ ମନେ କରିନାହୁଁ । କାରଣ ଆମ ପରିବାର ସାମ୍ପ୍ରଦାୟିକତାର ବିଷରୁ ସବୁବେଳେ ଉର୍ଦ୍ଧ୍ୱରେ ରହି ଆସିଛି ।

ପାକିସ୍ଥାନ ସହିତ କ୍ରିକେଟ ମ୍ୟାଚରେ ପାକିସ୍ଥାନ ଜୟଲାଭ କଲେ କୁଆଡ଼େ ସବୁ ମୁସଲମାନ ଖୁସି ହୁଅନ୍ତି ବୋଲି ସାଧାରଣ ଅଭିଯୋଗର ଉତ୍ତର ମୁଁ ଦେଖାଇଛି ମୋର ପଡ଼ୋଶୀ ବନ୍ଧୁ ଏବଂ ବାନ୍ଧବ ଦାଉଦର୍ ରହେମାନଙ୍କୁ । ପାକିସ୍ଥାନ ବିରୁଦ୍ଧରେ ଭାରତର ବିଜୟରେ କି ଉଲ୍ଲସିତ ସେମାନେ ?

ସେମାନଙ୍କୁ ଦେଖାଇଛି କଟକ ଚଣ୍ଡୀମନ୍ଦିର ସାମନାରେ ଥିବା ଗ୍ୟାରେଜର ମୁସଲମାନ ମାଲିକକୁ (ସେ ଗ୍ୟାରେଜ ଏବେ ସେଠାରେ ନାହିଁ) ଯେ ମୋତେ ଗୁରୁବାର ଦିନ ମରାମତି ସଂପୂର୍ଣ୍ଣ ହୋଇଥିବା ଗାଡ଼ି ଦେବା ପାଇଁ ନାରାଜ ଏବଂ କଟକ ଚଣ୍ଡୀ ମନ୍ଦିରରେ ପୂଜା ନ କରି ଗାଡ଼ି ଦେବା ପାଇଁ ମଧ ନାରାଜ !

ଦେଖାଇଛି କଳାହାଣ୍ଡିର ସେଇ ମୁସଲମାନ ଝିଅକୁ (ସାହାନାବାଜ) ଯେ ହାତରେ ଶଙ୍ଖା ସିନ୍ଦୂର ନାଇ ସୀମନ୍ତରେ ସିନ୍ଦୂର ନାଇ, କଟକ ଚଣ୍ଡୀମନ୍ଦିରରେ ଭୋଗକରି, ମୋତେ ମୁଣ୍ଡିଆ ମାରିଚି ଆପଣା ସ୍ୱାମୀ ସାଥୀରେ ।

ମୋର ମନେ ପଡୁଛି । ଦୁଇ କେନ୍ଦୁପତ୍ର କଣ୍ଟ୍ରାକ୍ଟର ଭିତରେ ସଂଘର୍ଷକୁ କିଭଳି ରୂପାୟିତ କରିବାକୁ ଚେଷ୍ଟା କରାଯାଇଛି ହିନ୍ଦୁ ମୁସଲମାନ ସଂଘର୍ଷ ଭାବରେ । ମୋ ବାପା ଭାରି ସୁଧାର ପ୍ରକୃତିର । ସହଜରେ ରାଗନ୍ତି ନାହିଁ । ଥରେ ଜଣେ କଣ୍ଟ୍ରାକ୍ଟର ଆସି ବାପାଙ୍କୁ କିଛି ଅର୍ଥ ଯାଚିଲା

Digitized by srujan ka@gmail.com

(ବେଶ୍ ମୋଟା ଅର୍ଥ) ଏବଂ ଜଣେ ହିନ୍ଦୁ ଭାବରେ ହିନ୍ଦୁ କଣ୍ଟ୍ରାକ୍ଟରକୁ ସାହାଯ୍ୟ କରିବା ପାଇଁ ନିବେଦନ କଲା । ବାପା ତାକୁ ଜୋତାରେ ମାରି ମାରି ଗେଟ୍ ବାହାରକୁ ବାହାର କରିଦେଇ ଆସିବା ଦେଖିଛି ।

ଥରେ ଆମ ପଡ଼ୋଶୀ ଜଣେ ମୁସଲମାନ ଠିକାଦାର କଣ୍ଟ୍ରାକ୍ଟରଙ୍କ ଘରକୁ ଯାଇଥିଲି ମୁଁ । ସେ ମୋତେ ବଢ଼ିଆ ଚାହା କରି ପିଇବାକୁ ଦେଲେ । ଚା' ପିଇବା ସେତେବେଳେ ଆମ୍ଭମାନଙ୍କର ଘରେ ବିଶେଷ ନ ଥିଲା । କିନ୍ତୁ ଗଂଜାମରେ କିଛି ବର୍ଷ କଟାଇଥିବା ହେତୁ ଚାହା ଆସେଇ ଯାଇଥିଲା ଆମପାଇଁ । ତେଣୁ ଚାହା ପିଉଛି, ଏଇ ସମୟରେ ବାପା ଡକାଇ ପଠାଇଲେ ମୋତେ ଖାଇବା ପାଇଁ । ଯେଉଁ ପିଅନ ଡାକିବାକୁ ଗଲା, ସେ ଦେଖିଲା ମୁଁ ଚାହା ପିଉଛି । ଆଉ ଡାକିବ କ'ଣ, ଦୌଡ଼ି ଫେରି ଆସି କାନ୍ଦି କାନ୍ଦି ଚିତ୍କାର କଲା– ମା' ବାବୁଙ୍କର କ'ଣ ହୋଇଗଲା, କ'ଣ ହୋଇଗଲା । ସମସ୍ତେ ଦୌଡ଼ି ଆସିଲେ, କଣ ଦୁର୍ଘଟଣା ଘଟିଗଲା କି ଆଉ ! କ'ଣ ହେଲା ବୋଲି ପଚାରିବାରୁ ସେ କାନ୍ଦି କାନ୍ଦି କହିଲା ଯେ ସେ ମୁସଲମାନ ଘରେ ସାନବାବୁ ଚାହା ପିଉଛନ୍ତି । ଆଉ କ'ଣ ବଂଚିବେ ନା କ'ଣ ? ଅର୍ଥାତ ଚାହାରେ ନିଶ୍ଚିତ ଭାବରେ ବିଷ ମିଶାଇ ଦିଆଯାଇଥିବ । ବାପା, ତା କାନକୁ ଧରି ଦୁଇ ଚାପୁଡ଼ା ଦେଇ କାନ ଧରି ଧରି ଆଣିଲେ ମୁଁ ଚାହା ପିଉଥିବା ସ୍ଥାନକୁ । ସେ କଣ୍ଟ୍ରାକ୍ଟର ଘରେ ଥିବା ବାକି ଚାହାକୁ ସେ ନିଜେ ପିଇଲେ ଏବଂ ସେ ପିଅନକୁ ପିଇବାକୁ ଦେଲେ । ସେ କଣ୍ଟ୍ରାକ୍ଟର ଘଟଣା କ'ଣ ଜାଣି ନ ଥିଲା । ଜାଣି ସାରିଲା ପରେ, ହଠାତ୍ ନମାଜରେ ବସି ଆଲ୍ଲାଙ୍କୁ ପ୍ରାର୍ଥନା କଲା । ହେ ଆଲ୍ଲା, ଦେଶରେ ସଦ୍‌ବୁଦ୍ଧି ହେଉ ।

ଯୁଦ୍ଧ ଆରମ୍ଭ ହୋଇଛି । ଦ୍ୱିତୀୟ ମହାଯୁଦ୍ଧ । ଦେଶରେ ପ୍ରଚଣ୍ଡ ସାମ୍ରାଜ୍ୟବାଦ ବିରୋଧୀ ମନୋଭାବ । ସରକାରୀ କାର୍ମଚାରୀମାନେ ପାଟିରେ ତୁଣ୍ଡି ବାନ୍ଧିଛନ୍ତି କିନ୍ତୁ ସେମାନଙ୍କ ପିଲାମାନେ ? ସେଇଯୋଗୁଁ ଅନେକ ହାତଲେଖା ଚିତ୍ର, କାର୍ଟୁନ ସରକାରୀ କର୍ମଚାରୀମାନଙ୍କ ଘର ଦୁଆରରେ ଟଙ୍ଗା ହୋଇଥାଏ, ଯେଉଁଥିରେ ଚିତ୍ରିତ ଥାଏ ବ୍ରିଟିଶମାନଙ୍କର ଦୁରବସ୍ଥା । ବାପାମାନଙ୍କର କି ଏମ୍ବାରାସମେଣ୍ଟ !

ବାପାଙ୍କର ବଦଳି ହୁକୁମ ଆସିଲା ସମ୍ବଲପୁରକୁ । ବାପାଙ୍କର ଚାକିରି ଜୀବନରେ ବଦଳି ହୋଇଛି ଅନୁଗୋଳରୁ ରସେଲକୋଣ୍ଡା, ରସେଲକୋଣ୍ଡାରୁ ବୌଦ ପ୍ରତ୍ୟେକ ଥର ପ୍ରମୋଶନରେ । ଏହା ଥିଲା ପରାଧୀନ ଭାରତର କାହାଣୀ । ଟ୍ରାନ୍ସଫର ହୋଇ 'ସିଜନ୍'ରେ (ଜୁନ ମାସରେ) ଆମର ପାଠପଢ଼ା ତାଙ୍କର ସରକାରୀ କାମ କିଛି ବ୍ୟାହତ ହୋଇନାହିଁ । ଆମର ଖରାଛୁଟି, ବାପାଙ୍କର ଜୁନ୍ ୧୫ରୁ ଅଫ୍-ସିଜନ । ସରକାରୀ କ୍ୱାଟର୍ସ ପାଇବାରେ ଅସୁବିଧା ହୋଇନାହିଁ । ଆମ ପାଇଁ ସିଟ ରିଜର୍ଭ ରହିଛି, ସରକାରୀ ଆଦେଶରେ ।

Digitized by srujan ka@gmail.com

ସ୍ୱାଧୀନ ଭାରତରେ ତାହା ହୋଇ ନାହିଁ । ଏବେ ଟ୍ରାନ୍ସଫର ଚାଲିଛି ବର୍ଷ ତମାମ । ୧୯୫୦ର ନବ କଳେବର ଦୁର୍ଘଟଣା ପରେ, ୧୯୫୫ରେ ଦଳେଇଘାଇ ବିପର୍ଯ୍ୟୟ ପରେ ସରକାର କମିଶନମାନଙ୍କର ସୁପାରିଶ ଗ୍ରହଣ କରିଛନ୍ତି ଯେ ପୁରୀ କଲେକ୍ଟରଙ୍କୁ ରଥଯାତ୍ରାର ଅନ୍ତତଃ ଛଅମାସ ପୂର୍ବରୁ ଏବଂ କଟକ କଲେକ୍ଟରଙ୍କୁ ବର୍ଷାଋତୁର ଛଅମାସ ପୂର୍ବରୁ ବଦଳି ହୋଇଥିବା ଉଚିତ । କିନ୍ତୁ ଏହା କିଛି କାଳ କାର୍ଯ୍ୟକାରୀ ହେଲାପରେ ପୁଣି ସେଇ ପାଲା ଚାଲିଛି ଏପରିକି ନେତ୍ରୋତ୍ସବ ଦିନ ମଧ୍ୟ ପୁରୀ କଲେକ୍ଟରଙ୍କୁ ବଦଳି କରାଯାଇଛି । ଏହାର ଅନ୍ୟତମ କାରଣ ହେଉଛି ଟ୍ରାନ୍ସଫର ସବୁ କେନ୍ଦ୍ରୀଭୂତ ହୋଇଯାଇଛି । ବର୍ତ୍ତମାନ ଯେକୌଣସି ୨ୟ ଶ୍ରେଣୀ କର୍ମଚାରୀଙ୍କୁ ବଦଳି କରିବାକୁ ହେଲେ ମୁଖ୍ୟମନ୍ତ୍ରୀଙ୍କର ସମ୍ମତି ଆବଶ୍ୟକ । ମୁଖ୍ୟମନ୍ତ୍ରୀ ସେମାନଙ୍କୁ ଆଦୌ ଜାଣନ୍ତି ନାହିଁ, ସେମାନଙ୍କର ଚଳନ୍ତି ପୋଷ୍ଟିଂ ସମ୍ପର୍କରେ ଜାଣନ୍ତି ନାହିଁ । ଜାଣିବା ପାଇଁ ତାଙ୍କର ସମୟ ବି ନାହିଁ । ତଥାପି ଏହା ଚାଲିଛି । ସବୁଠାରୁ ମଜାର କଥା ହେଉଛି ଯେ ବିରୋଧୀ ଦଳରେ ଥିଲାବେଳେ ଯେଉଁମାନେ ଏହି ବ୍ୟବସ୍ଥାର ବିରୋଧୀ ଥିଲେ ସେମାନେ କ୍ଷମତାକୁ ଯିବାପରେ ତାକୁ ଆହୁରି ଜାବୋଡ଼ି ଧରୁଛନ୍ତି ।

ଏହି ବ୍ୟାଧି କ୍ରମଶଃ ବଢ଼ି ବଢ଼ି ଚାଲିଛି । ଏହା ଯେ ବର୍ତ୍ତମାନ ବି ଚାଲି ନାହିଁ ତା' ନୁହେଁ ଏବଂ ସବୁ ଡିପାର୍ଟମେଣ୍ଟରେ, ସବୁ ସ୍ତରରେ ଚାଲିଛି । ଏବେ ପରା ଖବରକାଗଜରେ ପ୍ରକାଶିତ ହୋଇଛି ଏକ ଓଡ଼ିଆ ସ୍ଲୋଗାନ–

''ଖାଅ, ଦିଅ, ନଚେତ୍ ମାଲକାନଗିରି ଯାଅ ।''

ଟ୍ରାନ୍ସଫର ହୋଇଯାଇଛି ଏକ ଆୟୁଧ । ପଇସା ଆଦାୟ କରିବା ପାଇଁ, ଯିଏ ନ ମାନିଲା ତାକୁ ଦଣ୍ଡ ଦେବାପାଇଁ ।

ଆମ ଓଡ଼ିଶା ସରକାରଙ୍କର ଏକ ଏଜେନ୍ସି ଏରିଆ (Agency Area) ଥିଲା, ଯେଉଁଥିରେ ମ୍ୟାଲେରିଆ, ବ୍ଲାକ ୱାଟର ଫିଭରର ପ୍ରାଦୁର୍ଭାବ ଭୟାନକ । ସେଇ ଅଞ୍ଚଳରେ ଜଣେ ଅଫିସର ଦୁଇବର୍ଷ କାମ କରିବା ପାଇଁ ବାଧ୍ୟ । ତେଣୁ ସରକାରୀ କର୍ମଚାରୀମାନେ ନୂଆ ନୂଆ ଚାକିରି କଲାବେଳେ ସେଇ ଏଜେନ୍ସି ଏରିଆର କାମ ସାରିଦେବାକୁ ଚାହାନ୍ତି । ସରକାର ମଧ୍ୟ ସେଇ ନୀତି ଅନୁସରଣ କରନ୍ତି । ନୂଆ ନୂଆ ଚାକିରି, ଅନେକ ବିବାହ କରି ନ ଥାନ୍ତି, ଘରର ଦାୟିତ୍ୱ ନ ଥାଏ ବେଶି । ତେଣୁ ଦୁଇ ବର୍ଷ ଏଜେନ୍ସି ଏରିଆରେ କାମ କରି ଆସିବାକୁ କେହି କୁଣ୍ଠିତ ହୁଅନ୍ତି ନାହିଁ । କିନ୍ତୁ ଦୁଇବର୍ଷ ମାନେ ଦୁଇବର୍ଷ । ଏବଂ ଥରେ ଏଜେନ୍ସି ଏରିଆରେ କାମ ସାରିଦେଲେ ଆଉ ସେ ଏରିଆରେ ପୋଷ୍ଟିଂ ହୁଏ ନାହିଁ ।

କିନ୍ତୁ ଏବେ ମୋର ନିଜ ଅଭିଜ୍ଞତାରୁ ଜାଣିଛି ଯେ ଅନେକ କ୍ଷେତ୍ରରେ ଏଜେନ୍ସି ଏରିଆକୁ ଯାଇଥିବା ବ୍ୟକ୍ତିମାନେ ଫେରିପାରି ନାହାନ୍ତି, ଦୁଇବର୍ଷ ବହୁ ଦିନରୁ ଅତିକ୍ରାନ୍ତ ହୋଇଥିଲେ ବି ।

Digitized by srujan ka@gmail.com

ମୋଟୁ ହେଉଛି ମଧ୍ୟପ୍ରଦେଶ ସୀମାନ୍ତରେ ଥିବା ଶେଷ ଓଡ଼ିଆ ଗାଁ, ଥରେ ମୁଁ ଦୁର୍ଭାଗ୍ୟକୁ ସେଇଠି ପହଞ୍ଚିଲି । ସେଠାରେ ଜଣେ ବିଶେଷଜ୍ଞ ଡାକ୍ତରଙ୍କୁ ଦେଖିଲି । ଡାକ୍ତରଖାନା ଘର ନାହିଁ, ଔଷଧ ନାହିଁ କିନ୍ତୁ ଡାକ୍ତର ଅଛନ୍ତି । ସେଠାରୁ ସେ ବଦଳି ହୋଇପାରୁ ନାହାନ୍ତି, କାରଣ ତାଙ୍କୁ କେହି ରିଲିଭ କରିବାକୁ ଯାଉନାହାନ୍ତି । ଯାହାର ବଦଳି ହେଉଛି, ସେ ଛୁଟି ନେଇ ପଳାଉଛି । ବାଲିଗୁଡ଼ାରେ ଦେଖିଥିଲି ଜଣେ ବ୍ୟକ୍ତିଙ୍କୁ । ସେ ୧୩ ବର୍ଷ ରହି ସାରିଲେଣି କିନ୍ତୁ ରିଲିଭର ନାହାନ୍ତି ବୋଲି ସେ ରିଲିଭ ହୋଇପାରୁ ନାହାନ୍ତି ।

ମୋର ମନେ ପଡୁଛି ୧୯୫୭ ମସିହାର କଥା । ମୁଁ କୋରାପୁଟ ଯାଇଥାଏ ବନ୍ଧୁ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ନିର୍ବାଚନ ପ୍ରଚାରରେ । ସେତେବେଳେ ସମଗ୍ର କୋରାପୁଟ ଘନ ଅରଣ୍ୟରେ ଭରା । ପ୍ରକୃତି ବୁଦ୍ଧିକରି ଠିଆ ହୋଇଛି । ଅନେଇଲେ ଖାଲି ଦେଖାଯାଏ ପାହାଡ଼ର ତୀଖ, ଯୁବତୀର ସ୍ତନାଗ୍ର ଭଳି । ଆଉ ନିବୁଜ ନିରନ୍ଧ୍ର ଅରଣ୍ୟ ଭିତରେ ଗୋଟାଏ ପାହାଡ଼ର ଚୂଡ଼ା ପାର ହୋଇ ସୂର୍ଯ୍ୟ ଉଦୟ ହୁଏ, ଆଉ ପାହାଡ଼ ଚୂଡ଼ାରେ ସେ ବୁଡ଼ିଯାଏ, ପୁଣି ପରଦିନ ଉଦୟ ହେବାପାଇଁ । କୁତ୍ରା ଡାକେ, ଗଂଜା ଡାକେ, ବାଘ ହୁଙ୍କାଳ ମାରେ । କ୍ୟାଲେଣ୍ଡର, ଦିନ, ତାରିଖ, ମାସ ହଜିଯାଏ ସବୁ । ଆମେ ବୁଲୁଛୁ ଗାଁ କୁ ଗାଁ, ଏ ଗାଁରୁ ସେ ଗାଁ । ଆଜିର ତାରିଖ, ବାର କିଛି ମନେ ନାହିଁ, ମନେ ପଡୁନି । କେତେଦିନ ହେଲା ଆମେ ଆସିଲୁଣିଟି ? ସାଙ୍ଗରେ ରାମଚନ୍ଦ୍ର ବକ୍ସିପାତ୍ର ଏବଂ ୰ ରାମଚନ୍ଦ୍ର ଷଡ଼ଙ୍ଗୀ । ଗାଁ କୁ ଗାଁ । ଖବରକାଗଜ ନାହିଁ, ରେଡ଼ିଓ ନାହିଁ । ପାହାଡ଼ ଆରପଟରେ ଥିବା ପୃଥିବୀ ସଂପର୍କରେ କୌଣସି ଖବର ନାହିଁ । ଭାରତବର୍ଷ ବ୍ୟାପୀ ସାଧାରଣ ନିର୍ବାଚନ ହେଉଛି । ଅନେକ ସ୍ଥାନରେ ଫଳ ଘୋଷଣା ହୋଇ ସାରିବଣି । କିଛି ଖବର ଆମ ପାଖରେ ନାହିଁ । ନିକଟତମ ସହର ଜୟପୁର, ୭୦/୮୦ ମାଇଲ ବାଟ ବୋଲି ମନେ ପଡୁଛି । ଆମେ ଯାଇ ପହଞ୍ଚିଲୁ ପାଡିଆଣିଳ ନାମକ ଏକ ଗ୍ରାମରେ । ଶୁଣିଲୁ ସେଠାରେ ଜଣେ ରିଫ୍ୟୁଜି ବଙ୍ଗାଳୀ ଡାକ୍ତର ଅଛନ୍ତି ଏବଂ ତାଙ୍କ ଘରେ ଏକ ବ୍ୟାଟେରୀ ପରିଚାଳିତ ରେଡ଼ିଓ ଅଛି । ସବୁ କ୍ଲାନ୍ତ ଭୁଲି ହୋଇଗଲା । କିଛି ସମ୍ବାଦ ମିଳିବ ତ ! ଆମେ ଚାଲିଲୁ ଡାକ୍ତରଙ୍କୁ ଭେଟିବା ପାଇଁ । ଯାଇ ପହଞ୍ଚିଲୁ । ଯୋଡ଼ିଏ ଯୁବତୀ ପିଜୁଳି ଗଛରେ ଚଢ଼ି ପିଜୁଳି ଖାଉଛନ୍ତି । ଆଉ ଯୋଡ଼ିଏ ଯୁବକ ମଇଁଷି ପିଠିରେ ବସି ସେଇମାତ୍ର ଓହ୍ଲାଇଲେ ସେଇ ଘରେ । ବେଶଭୂଷା ଚେହେରା ସବୁ ପ୍ରାୟ ଆଦିବାସୀଙ୍କ ପରି, ତେବେ ପୂରା ନୁହନ୍ତି । ଆମେ ଡାକ୍ତରଙ୍କୁ ଖୋଜୁଛୁ ଜାଣି ସେ ତାଙ୍କୁ ଡାକିବାକୁ ଗଲେ ଭିତରକୁ । ଯେଉଁ ଲୋକ ଘରୁବାହାରି ଆସି ଆମକୁ ଜିଜ୍ଞାସା କଲେ ସେ ଡାକ୍ତର ବୋଲି ଆଗରୁ ଜାଣି ନ ଥିଲେ ଆମେ ଭାବିଥାନ୍ତୁ ନିଶ୍ଚୟ ଘରର ଚାକର । ନମସ୍କାର କରି ଆସିବାର ଅଭିପ୍ରାୟ ଜଣାଇବାରୁ ସେ କହିଲେ ଯେ ବସନ୍ତୁ ! କିନ୍ତୁ ଚାରିଜଣ ପାଇଁ ବସିବା ଜାଗା ନାହିଁ ଆଉ ଯାହା ବି ଅଛି ତାହା ସବୁ ଭଙ୍ଗା । ମନେହେଉଛି ଯେପରି ଏକ ବିରାଟ ଭଙ୍ଗାଭଙ୍ଗିର ସଂସାର ଭିତରେ ଆମେ ପହଞ୍ଚି ଯାଇଛୁ ।

Digitized by srujan ka@gmail.com

ସେ କହିବାକୁ ଲାଗିଲେ । କିଛି ବଙ୍ଗାଳୀ, କିଛି ଓଡ଼ିଆ କିଛି ଆଦିବାସୀ ଭାଷା ମିଶ୍ରଣରେ ଏକ କିମ୍ଭୁତକିମାକାର ଭାଷା । ଠିକ୍ ବୁଝି ହୁଏନା । ପରେ ଆମେ ଦେଖିଚୁ ଏଇ ପ୍ରକାର ଭାଷା ରେଙ୍ଗୁନ ସହରରେ । ଓଡ଼ିଆମାନଙ୍କ ଭିତରେ, ଯେଉଁମାନେ ପୁରୁଷ ପୁରୁଷ ଧରି ସେଇଠି ରହି ଯାଇଛନ୍ତି ବା ଅନେକ ଦିନ ଧରି ଘରକୁ ଆସିନାହାନ୍ତି । ସେମାନଙ୍କର ଭାଷା ବିକୃତ ହୋଇଯାଇଛି ଓଡ଼ିଆ, ହିନ୍ଦୀ, ବର୍ମାର ଭାଷାର ଏକ ଖେଚୁଡ଼ି ଭାଷା । ଠିକ୍ ବୁଝି ହୁଏନା ସେ ଭାଷା ଆମପାଇଁ । କିନ୍ତୁ ସେମାନେ ବୁଝନ୍ତି ।

ଡାକ୍ତର କହିଲେ, ଦେଖନ୍ତୁ ରେଡ଼ିଓ ଅଛି । କିନ୍ତୁ ବ୍ୟାଟେରୀ ଖୁବ୍ ଡାଉନ୍ । ଜୟପୁର ଅନେକ ବାଟ । ତା'ଛଡ଼ା କ'ଣ ମିଳିବ ମୋର ସେ ସଂବାଦରୁ ? ମୋର ତ ଟ୍ରାନ୍ସଫର ହେବ ନାହିଁ । ତଥାପି ଦେଖେ କ'ଣ ହେଉଛି ?

ରେଡ଼ିଓ ଆସିଲା । ସତକୁ ସତ ବ୍ୟାଟେରୀ ଖୁବ୍ ଡାଉନ୍ । ଭଦ୍ରଲୋକ ରେଡ଼ିଓକୁ ଟ୍ୟୁନିଙ୍ଗ କରୁ କରୁ କହିଚାଲିଲେ, ଆପଣାର ଦୁଃଖଭରା କାହାଣୀ । ଘର ପୂର୍ବବଙ୍ଗରେ । ୧୯୪୫ ମସିହାର ଶେଷ ଭାଗରେ ସେ ଆସିଥିଲେ ଓଡ଼ିଶାକୁ ବାସ୍ତୁହରା ହୋଇ । ଦୁଇଟି ପୁଅ, ଦୁଇଟି ଝିଅ । ଆପଣ ତ ଦେଖିଛନ୍ତି ସମସ୍ତଙ୍କୁ । ଯେଉଁ ଝିଅ ଯୋଡ଼ିକ ପିଚୁଳି ଗଛରେ ଚଢ଼ିଥିଲେ ସେଇ ଝିଅ ଦୁଇଟି ହେଉଛନ୍ତି ତାଙ୍କର ଝିଅ, ଆଉ ଯେଉଁ ପିଲା ଦୁଇଟି ଆସୁଥିଲେ ପୋଡ଼ ଉପରେ, ସେ ଦୁଇଟି ହେଉଛନ୍ତି ତାଙ୍କର ପୁଅ । ପାଠପଢ଼ା କାହାରି ହୋଇପାରିଲା ନାହିଁ, କିମିତି ଘର କରିବେ, କିମିତି ବିଭାହେବେ ? ଯଦି ବାହାହେବେ ତା'ହେଲେ ଏଇ ଆଦିବାସୀମାନଙ୍କ ଭିତରୁ କାହାକୁ ବାହା ହେବା ଛଡ଼ା ଉପାୟ କ'ଣ ? ଟ୍ରାନ୍ସଫର ତ ହେଲାନାହିଁ । କେହି ଶୁଣିବାକୁ ନାହାନ୍ତି । ରେଡ଼ିଓର ଶବ୍ଦକ୍ଷୀଣ । ସେ କାନ ଦେଇ ଶୁଣିବେ ଏବଂ କହିବେ ଆମକୁ । ତା' ଛଡ଼ା ଉପାୟ ନାହିଁ ।

ମହାଶୟ ଜିନେଛେ, ଜିନେଛେ । ଆମେ ଉତ୍କଣ୍ଠାର ସହିତ ଚାହିଁ ରହିଲୁ । କିଏ ଜିତିଲା କେଉଁଠୁ ? ତାହା ତ ଶୁଣାଗଲା ନାହିଁ । ବ୍ୟାଟେରୀ ଖୁବ୍ ଡାଉନ୍ । ତେବେ ଯିଏ ଜିତୁ, ଯେଉଁଠୁ ଜିତୁ । ମୋର ତ ଟ୍ରାନ୍ସଫର ହେବ ନାହିଁ । ଟ୍ରାନ୍ସଫର ପାଇଁ କି ବିକଳ କାମନା !

ଆମେ ଫେରିଲୁ, କିଛି ତ ଶୁଭିଲା ନାହିଁ । ଖାଲି ଶୁଭୁଥିଲା— ମୋର ତ ଆଉ ଟ୍ରାନ୍ସଫର ହେବନାହିଁ ।

ସେ ଆମକୁ ବିଦାୟ ଦେଇ ନମସ୍କାର କଲେ ଏବଂ ହାତ ହଲାଇଲେ । ମନେହେଲା ଯେପରି ମହାକାଳ ହାତରେ ଏକ ଅସହାୟ କ୍ରୀଡ଼ନକ ହାତ ହଲଉଛି ଆମକୁ ।

ଟ୍ରାନ୍ସଫର ସିଜନ୍ ଆଜିକାଲି ନାହିଁ । ବର୍ତ୍ତମାନ ତାଲିକା ହେଉଛି ଏବଂ ଦେବା ନେବା ମଧ୍ୟ ସ୍ଥିର ହେଉଛି । ସେଥିପାଇଁ ରେଟ ମଧ୍ୟ ସ୍ଥିର ହୋଇଛି । ଫୁଟପାଥରେ ଯେପରି ଡ୍ରେସର ନିଲାମ ହୁଏ ସେଇପରି ମୂଲଚାଲ ବି ଚାଲିଛି ।

Digitized by srujan ka@gmail.com

ବାପାଙ୍କର ବଦଳି ହେବ ରସେଲକୋଣ୍ଡାରୁ ସମ୍ବଲପୁର । ବଦଳିର ସମୟ ଜାଣିଲେଣି ବହୁଦିନରୁ । ବାପା ସିଧା ଯିବେ ସମ୍ବଲପୁର ଏବଂ ବୋଉ ମୁଁ ଦୁଇଭାଇ, ମାମୁଁ ଦାଦା ଆମେ ଯିବୁ ଅନୁଗୋଳ ମୋର ବଡ଼ବାପା ପୁଅ ଭାଇ (୰ ଗୋପବନ୍ଧୁ ପଟ୍ଟନାୟକ)ଙ୍କ ବାହାଘରରେ ଯୋଗ ଦେବାପାଇଁ । ପୁରୁଣାଗଡ଼ରେ ପହଞ୍ଚିବାର ଦୁଇଦିନ ପରେ ଘରେ ଖବର ପହଞ୍ଚିଲା ଯେ ମୋର ଅଜା (ବୋଉର ବାପା)ଙ୍କ ପରଲୋକ ହୋଇଯାଇଛି । ବୋଉ ସଙ୍ଗେ ସଙ୍ଗେ ଗଲା ତାର ବାପଘରକୁ । ମୁଁ ଗଲି ଖୋର୍ଦ୍ଧା ମାର୍କୁଣ୍ଡି ହୋଇ । ମୋର ମନେ ପଡୁଛି । କିଛି ଗଉଡ଼ ସବାରୀ ବୋହିବାକୁ ନାରାଜ ହେଲେ । ଦେଖ ମୋ ଜେଜେବାପା, ବଡ଼ବାପାଙ୍କ କ୍ରୋଧ । ସେମାନଙ୍କର ଚଉଦପୁରୁଷ ଉଦ୍ଧାର କରି ମୋର ଆଉ ଜଣେ ବଡ଼ବାପା ଘୋଡ଼ା ପିଠିରେ ଗଉଡ଼ ସାହିକୁ ଗଲେ । ଆଉ ସେ ଘୋଡ଼ା ଚାବୁକରେ ସେମାନଙ୍କୁ ପିଟି ପିଟି ଆଣିଲେ ସବାରୀ ବୋହିବା ପାଇଁ । ଜାତିରେ ଗଉଡ଼, ଏତେ ଆସ୍ପର୍ଦ୍ଧା ! ମୋ ଦେହରେ ଯେପରି ଏକ ବିଦ୍ୟୁତ ସକ୍ । ସେ ମାଡ଼ ଦେଖି ମୁଁ ଅଚେତ ହୋଇଗଲି ପ୍ରାୟ । ରକ୍ତାକ୍ତ ଅବସ୍ଥାରେ ସେ ଗଉଡ଼ମାନେ ବୋହି ଚାଲିଲେ ସବାରୀ... .

ହୁଁ ମେରା ହୁଁ,

ପରେ ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କର କବିତା ପଢ଼ିଛି ।

ପାଲିକି ଚାଲେ, ପାଲିକି ଚାଲେ
ଗଗନ ତଲେ ।

ଏ ଥିଲା ବିପ୍ଳବର ପାଲିକି । କିନ୍ତୁ ୧୯୪୦ରେ ସେଦିନ ପାଲିକି ଥିଲା ଅତ୍ୟାଚାର, ସାମନ୍ତବାଦୀ ଅତ୍ୟାଚାରର ପାଲିକି । ଅବସ୍ଥା କିଛି ବିଶେଷ ବଦଳି ନ ଥିଲା ୧୯୪୩ ବେଳକୁ, ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ କବିତା ବେଳକୁ । କେବଳ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମର ଝଲକ ହୁଏତ ଆରମ୍ଭ ହୋଇଥିଲା ମାତ୍ର !

ଆମେ ଯାଇ ଖୋର୍ଦ୍ଧାରେ ପହଞ୍ଚିଲୁ । ସେଦିନ ଗୋଟିଏ କଥା ମୋର ମନେଅଛି । ସେଇଟି ହେଉଛି କନ୍ୟା ପକ୍ଷରୁ ବଣ୍ଟାଯାଇଥିବା ଏକ ପ୍ରୀତି ଉପହାର କାଗଜ । ସାଧାରଣତଃ ଗୀତ, କବିତା ଲେଖି ବଣ୍ଟାଯାଇଥାଏ । କିନ୍ତୁ ସେମାନେ ବାଣ୍ଟୁଥିଲେ ଏକ ଅଭିନବ ପ୍ରୀତି ଉପହାର । 'ସମାଜ' କାଗଜ ସାଇଜର 'ସମାଜ' ବୋଲି ଲେଖାଯାଇଥିବା ଏକ କାଗଜ । ବିବାହର ବିଭିନ୍ନ ବିଭାବକୁ ସମ୍ବାଦ, ଛୋଟ କବିତା, କାର୍ଟୁନ, ହ୍ୟୁମରରେ ଛାପାଯାଇଛି । ଯେକୌଣସି ପାଠକର ଜନ୍‌ମ୍ୟୁଜନ କିଛି ସମୟପାଇଁ ହୋଇଯିବାକୁ ବାଧ । ଏଭଳି ନୋଭେଲ ଆଇଡିଆର ପ୍ରୀତି ଉପହାର ମୁଁ ଆଉ କେଉଁଠି ଦେଖି ନାହିଁ ।

ପରେ ଦେଖିଛି କବି ଅନନ୍ତ ପଟ୍ଟନାୟକ ଓ ନୀରଦପ୍ରଭା ପଟ୍ଟନାୟକଙ୍କର ବିବାହ ଗୀତିକା । ହାତ ତିଆରି କାଗଜରେ ଛପା । କାଳିନ୍ଦୀ ଚରଣ ପାଣିଗ୍ରାହୀ, ମନମୋହନ ମିଶ୍ର,

Digitized by srujan ka@gmail.com

ଗୁରୁଚରଣ ପଟ୍ଟନାୟକ ପ୍ରଭୃତି ବହୁ ବିଶିଷ୍ଟ ଲେଖକଙ୍କ କବିତାରେ ଏହା ସମୃଦ୍ଧ । କିନ୍ତୁ ମୂଲ୍ୟ ଲେଖାଯାଇଥିଲା ବୋଧହୁଏ ଏକଅଣା । ଏହାଥିଲା ଯୁଦ୍ଧର କରାମତି । କାଗଜ ମିଳୁ ନ ଥିଲା, ତେଣୁ ହାତ ତିଆରି କାଗଜ । ସେତେବେଳେ ମଧ୍ୟ ନିୟମ ଥିଲା ଯେ କୌଣସି ସାମଗ୍ରୀ ବିନାମୂଲ୍ୟରେ ଛପାଯାଇ ପାରିବ ନାହିଁ । ଅର୍ଥାତ ବଣ୍ଟନ ନିଷେଧ । ତେଣୁ ମୂଲ୍ୟ ରଖାଯାଇଥିଲା ପ୍ରୀତି ଉପହାରର ।

ନୂଆବୋଉକୁ ନେଇ ଆମେ ଟ୍ରେନରେ ଫେରିଲୁ ମେରାମୁଣ୍ଡଳୀ ଦେଇ ଅନୁଗୋଳ । ମୁଁ ଏବଂ ଦାଦା ଓହ୍ଲାଇଗଲୁ ରାଜ ଆଠଗଡ଼ ଷ୍ଟେସନରେ ମାମୁଁ ଘରକୁ ଯିବାପାଇଁ । ଅଜାଙ୍କର ଶୁଦ୍ଧିକ୍ରିୟା ସାରି ଆମେ ଗଲୁ ସିଧା ସମ୍ବଲପୁରକୁ । ନୂଆବୋଉଙ୍କ ସାଙ୍ଗରେ ମୋର ଆଉ ଦେଖା ହୋଇନାହିଁ । ଗୋଟାଏ ଝିଅ ଜନ୍ମ କଲାବେଳେ ତାଙ୍କର ମୃତ୍ୟୁ ହୋଇଗଲା । ସେ ଝିଅଟି (ବୁଢ଼ୀ) କିନ୍ତୁ ବଞ୍ଚିଗଲା ।

ଏଇଠି ପୁଣି ମନେପଡ଼େ ଏକ ଭୂତର କାହାଣୀ । ୧୯୪୮ ମସିହାରେ ବାପା ବୋଉ ପ୍ରଭୃତି ଆସିଥାନ୍ତି କଟକ । ଏଇଠି ମୋର ସାନଭାଇର ହେଲା ଟାଇଫଏଡ଼ । ଡାକ୍ତରଖାନାରେ ଭର୍ତ୍ତି ହେଲା । ବୋଉ ଏବଂ ୰ ସିଦ୍ଧେଶ୍ୱର ରଥଙ୍କ ସ୍ତ୍ରୀ ଥିଲେ ନିବିଡ଼ ବନ୍ଧୁ । ବିଭୂତି ଭୂଷଣ ତ୍ରିପାଠୀ କଟକ ବଡ଼ ଡାକ୍ତରଖାନାରେ ଡାକ୍ତର । ସେଇଦିନଠାରୁ ସେ ଆମର ପାରିବାରିକ ବନ୍ଧୁ । ସିଦ୍ଧେଶ୍ୱର ବାବୁଙ୍କ ପୁଅ ବିଭୂତି ଭୂଷଣ ରଥ ଓକିଲଙ୍କୁ ଆମେ ଭାଇ ବୋଲି ଡାକୁ । ଏଇଠି ରୋଗର ଚିକିତ୍ସା ଚାଲିଲା ପ୍ରାୟ ଦୁଇମାସ । ଭଲ ହେଲାପରେ ଭାଇକୁ ନେଇ ବୋଉ ଓ ଦାଦା ଗଲେ ଅନୁଗୋଳ । ବାପା ଥାଆନ୍ତି ବୌଦରେ ଡି.ଏଫ୍.ଓ.ରେ, ଧନସୀଲାଲ (କଟକ କଲେଜ ଛକରେ ଥିବା ଶିଉଜୀ ଏଣ୍ଡ କୋ. ର ତତ୍‌କାଳୀନ ମାଲିକଙ୍କ ଶ୍ୱଶୁର) ନାମକ ଜଣେ କଣ୍ଟ୍ରାକ୍ଟରଙ୍କ ଏକ ଫୋର୍ଡ଼ ଗାଡ଼ି ବୋଉ ଓ ସାନଭାଇକୁ ଅନୁଗୋଳରୁ ନେଇଯିବ ବୌଦ ଟିକରପଡ଼ା ଦେଇ । ଦାଦା ଚାଲିଯିବ ରାୟଗଡ଼ (ମଧ୍ୟପ୍ରଦେଶ) ତାର ଚାକିରି ସ୍ଥାନକୁ । ସେମାନେ ସକାଳେ ଟ୍ରେନରେ ଗଲେ । ହଠାତ୍ ସନ୍ଧ୍ୟାରେ କ'ଣ ମନେହେଲା ମୋର, ମୁଁ ସନ୍ଧ୍ୟା ଟ୍ରେନରେ ଗଲି ଅନୁଗୋଳ । ରାତି ଅଧରେ ବସ୍ ପହଞ୍ଚିଲା ଅନୁଗୋଳରେ । ନିଛାଟିଆ ରାସ୍ତା, ଘୋର ଅନ୍ଧକାର । ମୁଁ କିନ୍ତୁ ଯାଇ ଘର କବାଟ ବାଡ଼େଇଲି ବଡ଼ବାପାଙ୍କ ଘରେ ଏବଂ ଦାଦାକୁ ଡାକିଲି । ଦାଦା ଗୋଟିଏ ଘରେ ଶୋଇଥିଲେ । ଦ୍ୱିତୀୟ ଘରେ ବୋଉ ଓ ସାନଭାଇ ଶୋଇଥିଲେ । ଆଉ ଖଞ୍ଜାର ତଳପଟ ଘରେ ବଡ଼ବାପାଙ୍କ ପୁଅ ଦୁଃଖଭାଇ, ତାଙ୍କ ମା', ଭାଇଭଉଣୀମାନଙ୍କ ସହିତ ଶୋଇଥିଲେ । ସମସ୍ତେ ଶୁଣିଛନ୍ତି କିନ୍ତୁ କେହି ଆସୁନାହାନ୍ତି, ପୁଣି କବାଟ ବାଡ଼େଇଲି । ଦାଦା ଆସି କବାଟ ଖୋଲିଲା ଏବଂ ଆଶ୍ଚର୍ଯ୍ୟ ହୋଇ ପଚାରିଲା ଯେ ତୁ କେତେବେଳେ ଆସିଲୁ, ଏଇନା ନା ଆଗରୁ ? ମୁଁ ଉତ୍ତର ଦେଲି ଏଇନା । କାହିଁକି ବୋଲି ପଚାରିବାରୁ ସେ କହିଲା ଯେ ନାଇଁ ଆଗରୁ ଗୋଟାଏ କିଏ ବାଟ ବାଡ଼େଇଲା ପରି ମନେହେଲା ଯେ ! ଆମେ ଶୋଇବାକୁ ଗଲୁ, ହଠାତ୍ କବାଟଟା

Digitized by srujan ka@gmail.com

ପିଟିହୋଇ ଠିଆମେଲା ହୋଇଗଲା । ବୋଧହୁଏ କିଳିଣି ଠିକ୍ ଦିଆ ଯାଇ ନ ଥିଲା ବୋଲି ଭାବିଲି ମୁଁ । ଦାଦାର କିନ୍ତୁ ସନ୍ଦେହ ହୋଇଛି । ଯାହା ହେଉ କିଳିଣି ଦେଇ ଆମେ ଶୋଇବାକୁ ଗଲୁ । ପୁଣି ଥରେ ସେଇ ଅବସ୍ଥା । ଏଥର ହାଉଳିଖାଇ ଉଠିଲେ ଦୁଃଖଭାଇ, ତାଙ୍କ ମା', ଭାଇଭଉଣୀ ସମସ୍ତେ । ନୂଆବୋଉ ଆସିଛନ୍ତି ପାକୁ (ମୋତେ) କୁ ଦେଖିବା ପାଇଁ କିନ୍ତୁ କବାଟ ଆଉ ଖୋଲି ନାହିଁ ରାତିରେ ।

ସକାଳୁ ଆମେ ବାହାରିଲୁ ବୌଦ । ଦାଦା ଯିବ ରାୟଗଡ଼ । ଟିକରପଡ଼ା ଆଉ ୨୦ କି.ମି. ଦୂରରେ । ଏକ ଘାଟୀ ରାସ୍ତାରେ ଆମେ ତଳକୁ ଗଡ଼ୁଛୁ । ଏକ ବାଙ୍କ ବୁଲିଲାବେଳକୁ ଗାଡ଼ିର ବ୍ରେକ ଫେଲ କଲା । ତା'ପରେ ଯାହା ହୁଏ । ଗଡ଼ାଣି ମଝିରେ ଏକ ଝରଣା । ଉପର ପଟଟା ଅଳ୍ପ ଖାଲ । କିନ୍ତୁ ତଳପଟଟା ଏକଦମ ଖାଲ ଏବଂ ପଥୁରିଆ । ଗାଡ଼ି ପ୍ରଥମେ ଧକ୍କା ମାରିଲା ପୋଲର ଖୁଣ୍ଟିକୁ । ସେଇ ମାଡ଼ରେ ବୋଉ ଆଘାତପ୍ରାପ୍ତ ହେଲା ଏବଂ ଫୋର୍ଡ଼ ଗାଡ଼ିର ଉପର କନା ହୁଡ଼ ଭାଙ୍ଗି ତା ଆଖିରେ ପଶିଗଲା । ତା'ପରେ ଗାଡ଼ି ଧକ୍କା ମାରିଲା ଦ୍ୱିତୀୟ ଖୁଣ୍ଟିକୁ । କିନ୍ତୁ ଜୋରରେ ଗାଡ଼ି ଗଡ଼ୁଥିବା ହେତୁ ସେ ଖୁଣ୍ଟି ବି ଉଡ଼ିଗଲା । ଷ୍ଟିଅରିଂରେ ବାଜି ଡ୍ରାଇଭରର ନାକ ମୁହଁ ସବୁ ରକ୍ତାକ୍ତ । ଗାଡ଼ି ପୋଲ ତଳକୁ ଖସି ପଡ଼ିଲା କିନ୍ତୁ ଆଉ ଟିକିଏ ଗଡ଼ି ଯାଇଥିଲେ ଯେଉଁ ପଥର କାଳ ହୋଇଥାନ୍ତା ସେଇ ପଥରରେ ଗୋଟାଏ ଚକ ଅଟକିଯାଇ ଗାଡ଼ି ଅଧା ଓଲଟି ରହିଗଲା । ସାନ ଭାଇ ତ ରୋଗୀ, ଟାଇଫଏଡ଼ରୁ ସଦ୍ୟ ମୁକ୍ତ । ସେ କ'ଣ କରିପାରିବ ? କେବଳ ଅକ୍ଷତ ମୁଁ ।

ବେଳ ଗଡ଼ିବାକୁ ବସିଲାଣି । ଗଭୀର ଅରଣ୍ୟ, ଶୀତ ମାଡ଼ି ଆସିଲାଣି । ବାଧ ହୋଇ ଚାଲିଲି ରାସ୍ତାରେ । କିଛି ଦୂରରେ ଗାଁ । ଗାଁ ମାନେ ଏକ କ୍ଷୁଦ୍ର ଶଅର ସାଇ । ସେଇଠି ଗୋଟିଏ ଲୋକ ସହିତ ଦେଖାହେଲା ଏବଂ ସେ ଏକ ପ୍ରକାର ଶବ୍ଦ କଲା । ସେ ଶବ୍ଦକୁ ଶୁଣି ଜଙ୍ଗଲ ଭିତରକୁ ଯାଇଥିବା କିଛି ଲୋକ ଦୌଡ଼ି ଆସିଲେ । ଏଇଟା କୁଆଡ଼େ ବିପଦ ସଂକେତ ଦେବାର ଡାକ । ସେମାନେ ଆସି ଗାଡ଼ିଟିକୁ ଟେକି ରାସ୍ତା ଉପରକୁ ଖାଲି ଆଣିଲେ ନୁହେଁ ଏକ ପ୍ରକାର ଦଉଡ଼ି ଆଣି ଭଙ୍ଗା ସ୍ପ୍ରିଙ୍ଗକୁ ବାନ୍ଧିଦେଲେ । ଗାଡ଼ିର ଇଞ୍ଜିନ ଠିକ୍ ଥିଲା । ଗାଡ଼ି ଚାଲିଲା । ଆହତ ବୋଉ ଓ ଭାଇକୁ ନେଇ ପୁରୁଣାକୋଟ୍‌ରେ ପହଞ୍ଚିଲୁ । ସେଠାରେ କୃଷ୍ଣଚନ୍ଦ୍ର କର୍ଣ୍ଣ ଥିଲେ ଫରେଷ୍ଟ ରେଞ୍ଜର । ସେ ବାପାଙ୍କର ଜୁନିଅର ଓ ସହକର୍ମୀ । ସେ ସାଙ୍ଗେ ସାଙ୍ଗେ ଡାକ୍ତରୀ ଚିକିତ୍ସାର ବନ୍ଦୋବସ୍ତ କଲେ । ଷ୍ଟିଚ ହୋଇଗଲା ମଧ୍ୟ ଆଖି ପତା ଉପରକୁ । (ପରେ ତାଙ୍କର ଝିଅ ଶ୍ରୀ ଶ୍ରୀଧର ବିଶ୍ୱାଳଙ୍କୁ ବିବାହ କଲେ । ଶ୍ରୀଧର ଓ ମୁଁ ବି.ଏ. ପଢ଼ିଲାବେଳେ ମୋର ସହପାଠୀ ଏବଂ ସତ୍ୟସାଇବାବାଙ୍କର ପରମ ଭକ୍ତ) ସେଠାରେ ମୋ ବୋଉର ପିଉସୀ ପୁଅ ଭାଇ ୰ଗଣେଶ୍ୱର ପଟ୍ଟନାୟକ ଥିଲେ ତହସିଲଦାର । ତାଙ୍କ ଘର ଖୁଣ୍ଟକଟା । ସେ ଭାରି ମଜାଳିଆ ଲୋକ । ଦୁଇବର୍ଷ ତଳେ ତାଙ୍କର ପରଲୋକ ହୋଇଗଲା ପାରାଦ୍ୱୀପରେ, ତାଙ୍କ ପୁଅ ଡାକ୍ତର ଅରୁଣ ପଟ୍ଟନାୟକଙ୍କ ଘରେ ।

Digitized by srujan ka@gmail.com

ଗାଡ଼ିର ଇଞ୍ଜିନ ଚାଲୁଥିଲା, ତେଣୁ ଡ୍ରାଇଭର କହିଲା ଯେ ଗାଡ଼ି ଚାଲିଯିବ ବୌଦ । ସ୍ପ୍ରିଙ୍ଗରେ ଦଉଡ଼ି ବନ୍ଧା ହୋଇଛି । ସାହସ ବାନ୍ଧି ଚାଲିଲୁ, ତା ପରଦିନ ସକାଳୁ । ପହଞ୍ଚିଗଲୁ ଦି' ପହର ସୁଦ୍ଧା । ସେଠାରେ ଥିଲେ ଡାକ୍ତର ୰ କ୍ଷୀତିନ କର । ଆମର ପାରିବାରିକ ବନ୍ଧୁ । ସେ ଆସି ପହଞ୍ଚିଲେ ଏବଂ ଚିକିତ୍ସା କଲେ । କ୍ଷୀତିନବାବୁ ଆଉ ନାହାନ୍ତି । ସେ ଯାଜପୁର ରୋଡ଼ରେ ଚାକିରିରୁ ଅବସର ଗ୍ରହଣକରି ସେଇଠି ପ୍ରାକ୍‌ଟିସ କରୁଥିଲେ । ସେଇଠାରେ ହିଁ ତାଙ୍କର ପରଲୋକ ହୋଇଗଲା ।

ଆମେ ବୌଦରେ ପହଞ୍ଚିଲୁ । ମୋର ବାପାଙ୍କ ସହିତ ସେଇ ସାକ୍ଷାତ ପରେ ଆଉ ୧୯୫୨ ମସିହା ପର୍ଯ୍ୟନ୍ତ ଦେଖା ହୋଇନାଇଁ, କାରଣ ବୌଦରୁ ଫେରି ମୋର ଆରମ୍ଭ ହେଲା ଜେଲ ଜୀବନ, ପଳାତକ ଜୀବନ ଏବଂ ଜେଲଜୀବନ ।

ବୌଦରେ ଥିଲାବେଳେ ଏକ ନାଟକ ଦେଖିବାର ସୁଯୋଗ ମିଳିଥିଲା । ଆଗରୁ ଗୀତାଭିନୟ ଦେଖିଚି । ଦେଖିଚି ଅନ୍ନପୂର୍ଣ୍ଣା ଏ ଗ୍ରୁପର ନାଟକ ସବୁ । ମୋର ନାଟକ ମାନଙ୍କର ନାମ ମନେ ପଡୁନି କିନ୍ତୁ ଏହାର ମ୍ୟାନେଜର ୰ ବାଉରୀବନ୍ଧୁ ମହାନ୍ତିଙ୍କ କଥା ମନେଅଛି ।

ଏଇ ନାଟକ ଥିଲା 'ଅଗଷ୍ଟ ନଅ' । ଦଳେ ଯୁବକ ଏହା ମଞ୍ଚସ୍ଥ କରୁଥିଲେ । ଏହାର ଲେଖକ ମନୋରଂଜନ ଦାସ ସେତେବେଳକୁ ଜଣେ ସମାଜବାଦୀ ସହଯୋଦ୍ଧା ଏବଂ ନାଟକ ଲେଖକ ଭାବରେ ଜଣାଶୁଣା । ପାଠପଢ଼ା ସହିତ ରାଜନୈତିକ କାର୍ଯ୍ୟକଳାପ ଭିତରେ ନାଟକ ଦେଖିବା ପାଇଁ ସମୟ କରିଥାନ୍ତି ସେ ।

ମନୋରଂଜନ ବାବୁଙ୍କ ସହିତ ସଂପର୍କ କ୍ରମଶଃ ନିବିଡ଼ ହୋଇଛି । ସାଫଲ୍ୟର ସିଡ଼ି ଚଢ଼ି ଚଢ଼ି ସେ ଉପରକୁ ଉଠିଛନ୍ତି ଜୀବନରେ । ତଥାପି ତାଙ୍କର ଚିନ୍ତା ମଳିନ ପଡ଼ିନାହିଁ । ଏହି ନିୟମ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ନୁହେଁ । ଅନେକ ସାଫଲ୍ୟର ସିଡ଼ିରେ ଚଢ଼ି ଆଉ ତଳକୁ ଦେଖିବା ପାଇଁ ଶ୍ରେୟ ମନେ କରିନାହାନ୍ତି । କେବଳ ସେଇମାନଙ୍କୁ ମନେ ରଖିଛନ୍ତି ଯେଉଁମାନଙ୍କୁ ସେମାନେ ବ୍ୟବହାର କରି ପାରିବେ ଆଉ ଉପରକୁ ଯିବା ପାଇଁ । ଯେଉଁ ବାଉଁଶରେ ଚଢ଼ିଛନ୍ତି ସେଇ ବାଉଁଶକୁ ଆଉ ଅନାଇ ନାହାନ୍ତି । ସାଫଲ୍ୟ ପ୍ରତିଷ୍ଠାର ତାହା ହିଁ ନିୟାମକ ।

ମନୋରଂଜନ ବାବୁ ସେ ଧାରାର ନୁହନ୍ତି । ଏକ ନିର୍ଦ୍ଦିଷ୍ଟ ସୀମାରେଖା ସେ ଟପିବାକୁ ଚାହିଁ ନାହାନ୍ତି ବା କାହାକୁ ଅବହେଳା କରି ନାହାନ୍ତି ।

ଶ୍ରୀ ମନୋରାଂଜନ ଦାସଙ୍କ ପରିଚିତି କଲେଜ ଜୀବନର ପ୍ରାରମ୍ଭରୁ । ସେତେବେଳକୁ ସେ ଯୁବ ସୋସାଲିଷ୍ଟଭାବରେ ପରିଚିତ ହୋଇ ସାରିଲେଣି । କ୍ଲାସରେ ଚାରିପାଞ୍ଚ ବର୍ଷ ଉପର କ୍ଲାସର ଛାତ୍ର । ଜଣେ ନାଟ୍ୟକାର ଭାବରେ ମଧ ସେ ସେତେବେଳକୁ ପରିଚିତ ହୋଇ ସାରିଲେଣି । ଏହା ମଧରେ ପଚାଶ ବର୍ଷର ଉର୍ଦ୍ଧ୍ୱ ସମୟ ବିତିଗଲାଣି । ମନୋରଂଜନ ବାବୁ ବର୍ତ୍ତମାନ କେବଳ ପ୍ରସିଦ୍ଧ ନାଟ୍ୟକାର ଭାବରେ ପରିଚିତ ନୁହନ୍ତି, ଅଧୁନାତନ ନାଟ୍ୟକାରମାନଙ୍କ

Digitized by srujan ka@gmail.com

ଭିତରେ ସେ ଜଣେ ଅଥରିଟି । ବହୁ ନାଟ୍ୟକାର ଅଛନ୍ତି, ଅନେକ ସେଥିରୁ ସଫଳ ନାଟ୍ୟକାର ମଧ୍ୟ । ଅଶ୍ୱିନୀ କୁମାର ଘୋଷ, କାଳୀଚରଣ ପଟ୍ଟନାୟକ, ଗୋପାଳ ଛୋଟରାୟ, ରାମଚନ୍ଦ୍ର ମିଶ୍ର, ଭଂଜକିଶୋର ପଟ୍ଟନାୟକ ମନେପଡ଼ନ୍ତି ହଠାତ୍ । କିନ୍ତୁ ମନୋରଂଜନ ବାବୁଙ୍କର ବିଶେଷତ୍ୱ କେଉଁଠି ? କ'ଣ ତାଙ୍କର ସ୍ୱାତନ୍ତ୍ର୍ୟ ଏଇ ପ୍ରଶ୍ନ ମନରେ ଉଠେ ।

ମୋ ମତରେ ମନୋରଂଜନ ବାବୁ ପ୍ରଥମେ ନାଟ୍ୟକାର ନୁହନ୍ତି । ପ୍ରଥମେ ସେ ଜଣେ ଅଙ୍ଗୀକାରବଦ୍ଧ ଦେଶପ୍ରେମୀ ମଣିଷ ଏବଂ ନାଟକ ହେଉଛି ଏକ ମାଧ୍ୟମ ତାଙ୍କ ପାଇଁ । ନିଜର ଅଙ୍ଗୀକାରକୁ ରୂପଦେବା ପାଇଁ ସମାଜର ବିକାଶ ପାଇଁ ଏକ ଆୟୁଧ ଭାବରେ ତାଙ୍କର ନାଟକ କାର୍ଯ୍ୟକରେ । ନାଟକ ତାଙ୍କ ପାଇଁ ଖାଲି ନାଟକ ନୁହେଁ । ଏହା ଏକ ଆୟୁଧ ମାତ୍ର । ତେଣିକି ସେ ଆୟୁଧକୁ କିପରି ପ୍ରଭାବଶାଳୀ କରାଯାଇ ପାରିବ, ଦର୍ଶକମାନଙ୍କର ମନକୁ ତୋଳିପାରିବ ସେଥିପାଇଁ ବିଭିନ୍ନ ପରୀକ୍ଷା ନିରୀକ୍ଷା । ମନୋରଂଜନ ବାବୁ ତାଙ୍କର ବିଭିନ୍ନ ନାଟକରେ ବିଭିନ୍ନ ପ୍ରକାରର ଏକ୍ସପେରିମେଣ୍ଟ କରିଛନ୍ତି । ନୂଆ ନୂଆ ଶୈଳୀ ରୂପ ପାଇଛି । ଏବଂ ସେଥିପାଇଁ ତାଙ୍କୁ ସାହାଯ୍ୟ କରିଛି ପାଶ୍ଚାତ୍ୟ ନାଟକ ଉପରେ ଅଧ୍ୟୟନ । ଇବ୍‌ସନଙ୍କ ଠାରୁ ବର୍ଣ୍ଣାଡ଼ ଶ, ଓ'ନୀଲଙ୍କ ଠାରୁ ଆରମ୍ଭ କରି ବ୍ରେଖଟ୍ (Brecht)ଙ୍କ ପର୍ଯ୍ୟନ୍ତ ବହୁ ନାଟକର ଝଲକ ତାଙ୍କର ନାଟକମାନଙ୍କରେ ଦେଖିବାକୁ ମିଳେ । କଣ୍ଟେଣ୍ଟ ବା ବସ୍ତୁ ତାଙ୍କର, ଶୈଳୀ ଏବଂ ଫର୍ମ ବହୁ ନାଟ୍ୟକାରଙ୍କ ଦ୍ୱାରା ପ୍ରଭାବିତ । ସେଇଯୋଗୁଁ ତାଙ୍କ ନାଟକରେ ଷ୍ଟେଜ ସେଟିଙ୍ଗ ଖୁବ୍ କମ୍, ସରଳ । ଡାଇଲଗ୍ ଏବଂ ଅଭିନୟ ହେଉଛି ବେଶୀ ଗୁରୁତ୍ୱପୂର୍ଣ୍ଣ । 'ଅଗଷ୍ଟ ନଅ'ରୁ ଆରମ୍ଭ କରି 'ନନ୍ଦିକା କେଶରୀ' ପର୍ଯ୍ୟନ୍ତ ସବୁ ନାଟକର ଏକ ସାମାଜିକ ଲକ୍ଷ୍ୟ ରହିଛି । ଫର୍ମ କଣ୍ଟେଣ୍ଟକୁ ଯେପରି ଖାଇ ନ ଯାଏ । ଯେପରି ଘଟୁଛି ବର୍ତ୍ତମାନ । କଣ୍ଟେଣ୍ଟ ବିହୀନ ଓ ଫର୍ମ (Form) ସର୍ବସ୍ୱ ନାଟକ ତାଙ୍କର ନୁହେଁ ।

ବୟସ ଅତିକ୍ରାନ୍ତ ହୋଇଛି । ବୟସ, ଆଖି ଓ କଲମ ସବୁ ପାକଳ ହୋଇଛି । ପୃଥିବୀର ବିଭିନ୍ନ ଦେଶ ବୁଲି ସେ ନାଟକ, ନାଟ୍ୟକାର ଏବଂ ଦର୍ଶକଙ୍କୁ ଭେଟିଛନ୍ତି । କଲେଜରେ ପାଠ ପଢ଼ିବା, ବିଶେଷତଃ ଇଂରାଜୀ ସାହିତ୍ୟ ଓ ନାଟକ ପଢ଼ିବାର ସୁଯୋଗକୁ ସେ ହାତଛଡ଼ା କରି ନାହାନ୍ତି ।

ସେ ସୋସାଲିଷ୍ଟ ବା ସମାଜବାଦୀ । ସାମ୍ୟ, ଶାନ୍ତିର ଡାକ ତାଙ୍କୁ ଉଦ୍‌ବୁଦ୍ଧ କରିଛି । ମୁକ୍ତିର ମହାମନ୍ତ୍ର ତାଙ୍କୁ ଯେପରି ଉନ୍ମାଦିତ କରିଛି, ସାମ୍ୟର ମହାମନ୍ତ୍ର ବି ସେଇପରି । ତେଣୁ ତାଙ୍କର ନାଟକଗୁଡ଼ିକୁ ଅଙ୍ଗୀକାରବଦ୍ଧ ନାଟକ ଭାବରେ ଗଣନା କରାଯିବ ।

ପରିଣତ ବୟସରେ ବର୍ତ୍ତମାନ ସେ ଉପନୀତ । ଦେହ ବି ଭଲ ରହୁନାହିଁ । ତଥାପି କଲମ ଚାଲିଛି, ଖାଲି ନାଟକ ଲେଖିବା ପାଇଁ ନୁହେଁ ଆଗାମୀ ପୀଢ଼ିକୁ ଆପଣାର ଅଭିଜ୍ଞତା, ସ୍ୱପ୍ନରେ ପରିଚାଳନା କରିବା ପାଇଁ ମଧ୍ୟ ।

Digitized by srujan ka@gmail.com

ମନୋରଂଜନବାବୁ ଏକ ରେଳବାଇ ଷ୍ଟେସନ । ଆଗ ପହଞ୍ଚିବା ଗାଡ଼ି ପରେ ଛାଡ଼େ, ପରେ ପହଞ୍ଚିବା ଗାଡ଼ି ଆଗେ ଛାଡ଼େ । ଷ୍ଟେସନରେ ବିଭିନ୍ନ ଯାତ୍ରୀ ଓହ୍ଲାନ୍ତି, ଚଢ଼ନ୍ତି । କେତେପ୍ରକାର ଫିଲିଙ୍ଗ (feeling) ସେ ଯାତ୍ରୀମାନଙ୍କର ? ଯାତ୍ରୀ ଯେମିତି ଅସୁମାରୀ, ସେମାନଙ୍କର ହୃଦୟ ଆନନ୍ଦ, ଚିନ୍ତା, ଦୁଃଖ, କଳ୍ପନା, ସ୍ୱପ୍ନ ସବୁ ମଧ୍ୟ ଅସୁମାରୀ । ସେମାନେ ଆସନ୍ତି, ଯାଆନ୍ତି । ଷ୍ଟେସନ କିନ୍ତୁ ସବୁ ଆହରଣ କରେ, ଧରିରଖେ । କିନ୍ତୁ ତାର ନିଜସ୍ୱ ସେଇପରି ଅଟୁଟ ।

ମନୋରଂଜନବାବୁ ଠିକ୍ ସେଇପରି । ନାଟକ ତାଙ୍କୁ ପିଲାଦିନୁ ଭଲ ଲାଗିଥିଲା । ଅନୁପ୍ରାଣିତ କରିଥିଲା ଜାତୀୟ ଆନ୍ଦୋଳନ । ସମାଜବାଦୀ ଚିନ୍ତାଧାରା ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ବିଭିନ୍ନ ଦେଶ ବୁଲିଛନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ନାଟ୍ୟକାରମାନଙ୍କ ନାଟକ ପଢ଼ିଛନ୍ତି । ଦେଖିଛନ୍ତି ଫର୍ମରେ ବିଭିନ୍ନ ପ୍ରକାର ଏକ୍ସପେରିମେଣ୍ଟ । ସବୁ ତାଙ୍କୁ ଛୁଇଁ ଯାଇଛି କିନ୍ତୁ ସେ ରହିଛନ୍ତି ସଂପୂର୍ଣ୍ଣ ନିଜସ୍ୱ ।

ତାଙ୍କର ଆତ୍ମଜୀବନୀ ପ୍ରକାଶିତ ହୋଇଛି । ବହୁ କଟାକଟି, ଚିରାଚିରି, ବହୁ ନୋଟଖାତାରୁ ଟିପିଟାପି, ବହୁ ସ୍ମୃତିକୁ ଉଖାରି, ପଖାଳି ଯେଉଁ ବହି ପ୍ରକାଶିତ ହେଲା ପରିଶେଷରେ, ତାହା କ'ଣ ଏକ ଜୀବନୀ ନା ଜୀବନର ବିଭାବ, ଇତିହାସର ଏକ ଅଧ୍ୟାୟ । ନଈର ବହୁ ଧାର ପରି ବୋହିଯାଇଥିବା ସଂସ୍କୃତିର ଧାରା ଉପରେ ଆଲୋକପାତ ? ମନୋରଂଜନ ଦାସ ତା'ର ଏକ ରେକର୍ଡ଼ କିପର ବା ଓ୍ୱକ୍ତ କି ଆଓ୍ୱାଜ ?

କଟକରୁ ବଇଆଳିଶମୌଜା, ସେଠାରୁ କୁଜଙ୍ଗ ପରେ କଟକ ତାଙ୍କର ବାସଭୂମି ପାଲଟିଛି । ସେଦିନର ଉଦିତ ସୂର୍ଯ୍ୟ ଆଜି ଅପରାହ୍ଣରେ । ଛାଇ ଲେଉଟା ବେଳ । ଛାଇ ଲମ୍ୱା ହେଲାଣି, କିନ୍ତୁ ସେ ରହିଛନ୍ତି, ନାଟକ ଏବଂ ନାଟକର ଏକ୍ସପେରିମେଣ୍ଟର ପ୍ରତୀକ ଭାବରେ । ସେ ବ୍ୟକ୍ତି ନୁହନ୍ତି । ସେ ପରିଚୟ ହଜି ହଜି ଯାଇଛି ।

ତାଙ୍କର ନାଟକ 'ନନ୍ଦିକା କେଶରୀ'ର ନନ୍ଦିକା ରାଜାର କନ୍ୟା ନୁହେଁ, ସେ ହେଉଛି ଦୁଇ ଯୁଯୁତ୍ସୁ ଶକ୍ତି ଭିତରେ ଶାନ୍ତିର ବାବହୂକ । ମନୋରଂଜନ ଦାସ ସେଇପରି ଏକ ବ୍ୟକ୍ତି ନୁହନ୍ତି, ସେ ଏକ ପ୍ରତୀକ ।

ତେବେ ଶ୍ରୀ ମନମୋହନ ମିଶ୍ରଙ୍କ ଦ୍ୱାରା ଲିଖିତ କ୍ୟାବିନେଟ ମିଶନ ଦେଖିଥିଲି କଲେଜରେ । ନନ୍ଦିନୀ ଶତପଥୀ ପ୍ରମୁଖ ଅନେକ ନାରୀକୁ ମଞ୍ଚ ଉପରେ ଦେଖିବାକୁ ମିଳିଥିଲା । ଆଗରୁ ବୋଧହୁଏ ରେଭେନ୍ସା କଲେଜରେ ନାରୀମାନେ ଅଭିନୟ କରୁ ନ ଥିଲେ । ସେଇଟା ପ୍ରଥମ ।

ପରବର୍ତ୍ତୀ ବର୍ଷ ଅଧ୍ୟାପକ ରାଜକିଶୋର ରାୟ ନିଜେ ଅଭିନୟ କରିବାକୁ ଚାହିଁଲେ, ଏହା ମଧ୍ୟ ସର୍ବପ୍ରଥମ । କାଳୀ ଚରଣ ପଟ୍ଟନାୟକଙ୍କର ନାଟକ 'ଅଭିଯାନ' ମଞ୍ଚସ୍ଥ ହେଲା । ପୁରୁଷୋତ୍ତମ ଭୂମିକାରେ ରାଜକିଶୋର ରାୟ ଏବଂ ପଦ୍ମା ଭୂମିକାରେ ତାଙ୍କର ଜଣେ ଛାତ୍ରୀ

Digitized by srujan ka@gmail.com

ଅଭିନୟ କଲେ । ଆଗେ ରେଭେନ୍ସା କଲେଜରେ ନାଟକ ହେଉଥିଲା ଚାରିଦିନ । ପ୍ରଥମ ଦିନ- ପ୍ରଥମ ବାର୍ଷିକ ଛାତ୍ର ପିଲାମାନଙ୍କ ପାଇଁ, ଦ୍ୱିତୀୟ ଦିନ ଦ୍ୱିତୀୟ ବାର୍ଷିକ ଛାତ୍ରମାନଙ୍କ ପାଇଁ, ତୃତୀୟ ଦିନ ତୃତୀୟ ବାର୍ଷିକ ଓ ଚତୁର୍ଥ ବର୍ଷ ପିଲାମାନଙ୍କ ପାଇଁ, ଚତୁର୍ଥ ଦିନ ନିମନ୍ତ୍ରିତ ଅତିଥି, ଶିକ୍ଷକ ଓ ପୋଷ୍ଟ ଗ୍ରାଜୁଏଟ ଛାତ୍ରମାନଙ୍କ ପାଇଁ ବୋଲି ମନେପଡୁଛି ।

ପ୍ରଥମ ରାତ୍ରରୁ ହିଁ ଗଣ୍ଡଗୋଳର ସୂତ୍ରପାତ ହେଲା । ରାଜକିଶୋର ରାୟ ଧୂରୀଣ ଅଭିନେତା, ଅଭିନୟକୁ ସେ ଜୀବନ୍ତ କରି ତୋଳନ୍ତି ।

ମୋର ମନେ ପଡୁଛି । ''ତୁମର ସେଇ ଦୁଇ ନୀଳ, ନୀଳ ଆଖି ପଦ୍ମ.....'' ଆରମ୍ଭ ହେଲା ଗଣ୍ଡଗୋଳ । ପ୍ରଥମ ଦିନ, କିଛି କିଛି । ତା'ପରେ ବଢ଼ି ଚାଲିଲା । ଚତୁର୍ଥ ଦିନ ସେତିକି ବେଳେ ଲାଇଟ୍ ଅଫ୍ ପଚାକମଳା, ପଚା ଅଣ୍ଡା ମାଡ଼ ଇତ୍ୟାଦି ଇତ୍ୟାଦି ।

'ନିଆଁଖୁଣ୍ଟା' ଲେଖିଲା--

ଆଉ ଦିନେ କେଉଁ ଏକ ବାସର ଲଗନେ,
ଶୁଷ୍କ ଏକ ମାଳା କାଢ଼ି ପକେଟୁ ଯତନେ,
ଚିରଦିନ ତୁମେ ମୋର ହୃଦୟରେ ଲେଖା
ମୁହିଁ ଅଧ୍ୟାପକ, ତୁମେ ମୋର ଚିତ୍ରଲେଖା ।

ଅଧ୍ୟାପକ ରାଜକିଶୋର ରାୟ କିଛି ଦିନ ପରେ ବଦଳି ହୋଇଗଲେ । ଜୀବନରେ ସେ ଆଉ ରେଭେନ୍ସା କଲେଜ ମାଡ଼ି ନାହାନ୍ତି । ଆହତ ଅଭିମାନରେ ସେ ସବୁ ନିମନ୍ତ୍ରଣ ଉପେକ୍ଷା କରିଛନ୍ତି । ମୋର ମନେ ପଡୁଛି । ପ୍ରାୟ କୋଡ଼ିଏ ବର୍ଷ ପରେ, ରେଭେନ୍ସା କଲେଜ ଆଗରେ ଥିବା ଏକ ଦୋକାନରେ ହଠାତ୍ ରାଜକିଶୋର ରାୟଙ୍କ ସହ ସାକ୍ଷାତ । ସେଇଠି ଥିଲେ ମୋର ବନ୍ଧୁ ଶ୍ରୀ ବିପିନ ବିହାରୀ ଖମାରୀ (ବର୍ତ୍ତମାନ ଅବସରପ୍ରାପ୍ତ ସମବାୟ ବିଭାଗର ଅଫିସର) ରାଜକିଶୋର ରାୟ ଆମକୁ କହିଲେ, ''ରେଭେନ୍ସା କଲେଜର ଅଧ୍ୟାପକ ବନ୍ଧୁମାନଙ୍କୁ ମୋର ସୁଦୂର ନମସ୍କାର ଜଣାଇଦେବ'' ।

ଅଧ୍ୟାପକ ରାଜକିଶୋର ରାୟଙ୍କ ଜୀବନ ହେଉଛି ଅଭିନୟ । ତାଙ୍କୁ ଦେଖିଲେ ମୋର ସେକ୍ସପିଅରଙ୍କୁ ମନେପଡ଼େ ।

"All the world a stage
where men are actors and
women are actresses"

ତାଙ୍କର କଥାବାର୍ତ୍ତା, ଚାଲିଚଳଣ, ହାବଭାବ ସବୁ ହେଉଚି ଡ୍ରାମାଟିକ । ବୟସ ତାଙ୍କ ଆଗରେ ହାର ମାନିଥିଲା । ସଂପୂର୍ଣ୍ଣ ପରିଣତ ବୟସରେ ସେ 'ଆକାଶବାଣୀ'ରେ କହିଲେ ଯେ ''ନାରୀ ମୋତେ ସର୍ବଦା ଆକୃଷ୍ଟ କରିଛି ଏବଂ ପ୍ରେରଣା ଦେଇଛି'' ଦୈବାତ୍ ସେଇଦିନ ଆକାଶବାଣୀ ଷ୍ଟୁଡିଓରେ ମୋର ତାଙ୍କ ସହିତ ସାକ୍ଷାତ ହୁଏ ।

Digitized by srujan ka@gmail.com

ସେ ମୋର ଖାଲି କଲେଜରେ ଶିକ୍ଷକ ନୁହନ୍ତି, ସ୍କୁଲରେ ମଧ ଶିକ୍ଷକ । ଓଡ଼ିଆ ସାହିତ୍ୟରେ ଅଧାପକ ହେବା ପୂର୍ବରୁ ସେ ଥିଲେ ମୋର ଇଂରାଜୀ ଶିକ୍ଷକ ସମ୍ବଲପୁର ଜିଲ୍ଲା ସ୍କୁଲରେ । ସେ ପ୍ରଥମ ଦିନ ଆମକୁ ବୋଧହୁଏ ଏକ ଚିଠି ଲେଖିବାକୁ ଦେଇଥିଲେ । କିଛି ବହି ଅର୍ଡ଼ର ଦେଇ କୌଣସି ବହି ଦୋକାନୀକୁ ଲେଖ ଏକ ଚିଠି । ମୁଁ ଲେଖିଥିଲି ଠିକ୍ । କିନ୍ତୁ ପଦସବୁ ଏପଟ ସେପଟ ହୋଇଯାଇଥିଲା ।

ସେ ମୋତେ ଦୁଇଟି ଇଂରାଜୀ ବାକ୍ୟ ଲେଖି ତା ଭିତରେ ଫରକ କ'ଣ କହିବାକୁ କହିଥିଲେ ।

"Send salary in an Envelope with the cook".

"Send salary with the cook in an Envelope".

ଏହା ମୋର ଏପର୍ଯ୍ୟନ୍ତ ମନେଅଛି ଅଧାପକ ରାୟଙ୍କର ଡ୍ରାମାଟିକ ଷ୍ଟାଇଲ ଯୋଗୁଁ ।

ସାରଙ୍କୁ ମୁଁ ନମସ୍କାର କରେ ନାହିଁ, ମୁଣ୍ଡିଆ ମାରେ । ସେଦିନ ବି ମୁଣ୍ଡିଆ ମାରିଲି । ସାର୍ ତ ସଦ୍ୟ ଆପଣାର ଭାଷଣ ସାରି ମୁଡ଼ରେ ଥାଆନ୍ତି । କହିଲେ ବୁଝିଲ ଗିରିଜା, ତମେ ମୋର ବକ୍ତବ୍ୟକୁ ପାଖ ରୁମରୁ ଶୁଣୁଥିଲ ମୁଁ ଦେଖିଚି । କିନ୍ତୁ ଏଇ ମୁଣ୍ଡିଆଟିଏ ମାରି ତମେ ମୋତେ ବୁଢ଼ା କରିଦେଲ, ମୋର ଯୌବନର ସ୍ପିରିଟ ଟା କମିଗଲା ହଠାତ୍ । ମୁଣ୍ଡିଆ ମାରନ୍ତି ବୁଢ଼ାମାନଙ୍କୁ । ମୁଁ କଣ ବୁଢ଼ା ? ଆପଣଙ୍କୁ ତ ସବୁବେଳେ ମୁଣ୍ଡିଆ ମାରି ଆସିଚି, କେବେ ତ ମନାକରି ନ ଥିଲେ । ଆଜି କାହିଁକି ? ସେ ମୋର ପିଠି ଥାପୁଡ଼େଇ ଦେଇ କହିଲେ ତମେ ପରା ଶୁଣିଚ ମୋର ବକ୍ତବ୍ୟ । ନାରୀ ମୋତେ ଚିରକାଳ ଯୁବକ କରି ରଖିଚି । ସେଇ କଥା ସ୍ମରଣ କରି ଷ୍ଟୁଡ଼ିଓରୁ ବାହାରିଲା ମାତ୍ରେ ତମେ ମୋର ଉଦ୍ଦାମତାକୁ ବ୍ୟାହତ କରିଦେଲ ।

Digitized by srujan ka@gmail.com

# ଅନେକ ରାସ୍ତା ଅନେକ କାହାଣୀ

ସମ୍ବଲପୁରରେ ପହଞ୍ଚିବାର ଠିକ୍ ପରଦିନ ସକାଳେ ବାପା ମୋତେ ନେଇ ସେ ଇତି ମଧ୍ୟରେ କରିଥିବା ବଗିଚା ଦେଖାଉଥିଲେ । ହଠାତ୍ ସେଇଠି ଝିଅଟିଏ ଆସି ପହଞ୍ଚିଲା ଏବଂ ତା'ର ମାଆକୁ ଡାକିଲା ପରି ପାଟିକରି କହିଲା– ''ଏ ମା' ଏ ଭୁଗାଟୀ ନେବି କ୍ୟା ?'' ସମ୍ବଲପୁରୀ ଭାଷାର ଏଇ ମୋର ପ୍ରଥମ ପରିଚିତି । ମନେଅଛି, କାରଣ ମୁଁ ଚମକି ପଡ଼ିଲି । ବୁଝି ବି ପାରିଲି ନାହିଁ, ସେ କ'ଣ କହିଲା । ସେ ତା'ର ମାଆକୁ ପଚାରୁଛି 'ଏଇ ଟୋକେଇଟା ନେବି କି ?'

ମୋତିଝରଣ । କେବେ ମୋତି ଝରୁଥିଲା କି ନାଇଁ କହିପାରିବି ନାହିଁ । ତେବେ ମୋତିଝରଣକୁ ଯିବା ପୂର୍ବରୁ ଏକ ବିଶାଳ ପଡ଼ିଆ ପଡ଼େ, ସେଇ ପଡ଼ିଆର ମଝିରେ ବୋହି ଯାଉଥିଲା ଏକ କ୍ଷୁଦ୍ର ସ୍ରୋତ । ସେଇଯୋଗୁଁ ଏହି ପାହାଡ଼ର ନାମ ଥିଲା ବ୍ରୁକସ ହିଲ୍ (Brooks Hill) । ସେ ଝରଣା ଶୁଖିଗଲା ଆମେ ଥିବା ଭିତରେ । ପ୍ରକୃତି ଉପରେ ମଣିଷର ଅତ୍ୟାଚାର ଯୋଗୁଁ । ସେ ଲଣ୍ଡା ପାହାଡ଼ ଉପରେ ଚାରୋଟି ବଙ୍ଗଳା । ଗୋଟିକରେ ସମ୍ବଲପୁର ଡି.ଏଫ.ଓ., ଗୋଟିକରେ ବାରପାହାଡ଼ ଡି.ଏଫ.ଓ, ମଝିଟିରେ ଇଷ୍ଟର୍ଣ୍ଣ ଷ୍ଟେଟସ ଏଜେନ୍ସିର ଫରେଷ୍ଟ ଆଡଭାଇଜର ଜଙ୍ଗଲ ବିଭାଗର ପ୍ରବାଦ ପୁରୁଷ ଡକ୍ଟର ଏଚ.ଏଫ.ମୁନି । ସେ ଥିଲେ ଆଇରିସ୍ । ତେଣୁ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ପ୍ରତି ତାଙ୍କର ଥିଲା ଦରଦ । ସେ ସେତେବେଳେ ବିଲାତରୁ ଉଦ୍‌ଭିଦ ବିଜ୍ଞାନ ଉପରେ ଡକ୍ଟରେଟ କରିଥିଲେ । ତାଙ୍କ ଦ୍ୱାରା ଲିଖିତ Flora of Bihar & Orissa (ଠିକ୍ ନାମଟା ମନେ ପଡୁନି) ଏ ପର୍ଯ୍ୟନ୍ତ ବନ୍ୟବିଭାଗର ବାଇବେଲ୍ । ଏ ବହି ଭଳି ବହି ଏ ପର୍ଯ୍ୟନ୍ତ ବିହାର ଏବଂ ଓଡ଼ିଶାର ଅରଣ୍ୟ ଉପରେ ଲେଖାଯାଇ ନାଇଁ । ସେ ପ୍ରକୃତରେ ଥିଲେ ପ୍ରବାଦ ପୁରୁଷ । ସେତେବେଳେ ବସ୍‌ଗାଡ଼ିର ଚଳପ୍ରଚଳ ବିରଳ । ଥରେ ଚନ୍ଦୁଆରେ ତାଙ୍କ ଗାଡ଼ି ଖରାପ ହୋଇଗଲା । ସେ ପାଦରେ ଚାଲି ଆସିଲେ ଉଦ୍ରଖ ପର୍ଯ୍ୟନ୍ତ । ଚତୁର୍ଥ ବଙ୍ଗଳାରେ ହେଉଛି ଇଷ୍ଟର୍ଣ୍ଣ ଷ୍ଟେଟସ ଏଜେନ୍ସିର ଶିକ୍ଷା ପରାମର୍ଶଦାତା ଶ୍ରୀ ବହୁଗୁଣା । ତାଙ୍କ ପୁଅ ପ୍ରେମ ବହୁଗଣା (ଶିଳ୍ପୋଦ୍ୟୋଗୀ) ମୋର ପାରିବାରିକ ବନ୍ଧୁ ଏବଂ କଲେଜ ଜୀବନରେ ମୋର ସମସାମୟିକ । ପରେ ଶ୍ରୀ ବହୁଗୁଣାଙ୍କ ସ୍ଥାନରେ ଆସିଲେ ଓଡ଼ିଶାର ପ୍ରସିଦ୍ଧ କବି ଡକ୍ଟର ମାୟାଧର ମାନସିଂ । ସେ ଇଂଲଣ୍ଡରୁ ଡକ୍ଟରେଟ କରି ଆସି ପ୍ରଥମେ ଆଠଗଡ଼ ହାଇସ୍କୁଲରେ ହେଡ୍‌ମାଷ୍ଟର ହେଲେ । ସେ କାଳିଦାସ ଏବଂ ସେକ୍ସପିଅରଙ୍କ ଉପରେ ତୁଳନାତ୍ମକ ନିବନ୍ଧ ଲେଖି ଡକ୍ଟରେଟ ପାଇଥିଲେ । ଆମର ଯେତେ ଅଧ୍ୟାପକ ଡକ୍ଟରେଟ କରିବାକୁ ଯାଇଛନ୍ତି ଇଂଲଣ୍ଡ ବା ଆମେରିକା ପ୍ରାୟ ସମସ୍ତେ ଏକ ଭାରତୀୟ ବିଷୟକୁ ଆପଣାର ଗବେଷଣାର

Digitized by srujan ka@gmail.com

ବିଷୟବସ୍ତୁ ଭାବରେ ବାଛିଥାନ୍ତି ବା ଆପଣା ପାଠ୍ୟ ବିଷୟ ଉପରେ ଗବେଷଣା କରିଥାନ୍ତି । ସାହିତ୍ୟ, ଦର୍ଶନ, ପ୍ରଭୃତି ବିଷୟରେ କେହି ଇଂଲଣ୍ଡର ସାହିତ୍ୟିକ ବା ଦାର୍ଶନିକଙ୍କର ବାଛନ୍ତି ନାହିଁ । କାରଣ ସେମାନେ ଖୁବ୍ ରକ୍ଷଣଶୀଳ । ଖୁବ୍ ଉଚ୍ଚକୋଟୀର ନ ହେଲେ କଦାପି ଡକ୍ଟରେଟ ମିଳେ ନାହିଁ । ମୁଁ ଜାଣିବାରେ ମାୟାଧର ମାନସିଂ ତାର ଏକ ବ୍ୟତିକ୍ରମ । ପରବର୍ତ୍ତୀ କାଳରେ ଅଧ୍ୟାପକ ଡକ୍ଟର ଗଣେଶ୍ୱର ମିଶ୍ର ବ୍ରାଡଲେ ଏବଂ ଶଙ୍କରଙ୍କ ଉପରେ ଆପଣାର ନିବନ୍ଧ ଲେଖି ଇଂଲଣ୍ଡରୁ ଡକ୍ଟରେଟ ପାଇଥିଲେ । ଅଧ୍ୟାପକ ବ୍ରହ୍ମାନନ୍ଦ ମିଶ୍ର ତାଙ୍କର ଗବେଷଣାର ବସ୍ତୁଭାବରେ ନେଇଥିଲେ ଏକ କଠୋର ବିଷୟ । ଶବ୍ଦ, ଆଲୋକକୁ ଯେପରି ଷ୍ଟୁଡିଓରୁ ମହାକାଶକୁ ପଠାଇ ରେଡିଓ ବା ଟି.ଭି.ରେ ସଂପ୍ରସାରିତ କରାଯାଇ ପାରୁଛି ଠିକ୍ ସେଇପରି ମଣିଷ ବା କୌଣସି ଜୀବକୁ ମଧ ମହାକାଶକୁ ପଠାଇ ଅଣାଯାଇ ପାରିବ କି ? ମୋର ମନେପଡୁଚି ଯେ ତାଙ୍କର ଗବେଷଣା କାଳରେ ଏହି ସଂବାଦ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଏବଂ ତାଙ୍କର ନାମ ନୋବେଲ ପ୍ରାଇଜ୍ ପାଇଁ ଥରେ ଦୁଇଥର ସୁପାରିଶ ବି ହୋଇଥିଲା । କିନ୍ତୁ ଏହାକୁ ସହଜରେ ବୈଜ୍ଞାନିକମାନେ ଗ୍ରହଣ କଲେନାହିଁ ଏବଂ ଏହାକୁ ଅବାସ୍ତବ, ଅସମ୍ଭବ ବୋଲି କହିଥିଲେ । ଦୀର୍ଘ ଗବେଷଣା ପରେ ତାଙ୍କର ଗାଇଡ ଏହାକୁ ସଂପୂର୍ଣ୍ଣଭାବେ ନାକଚ କରିଦେଲେ । ଇଂଲଣ୍ଡରେ ଥିସିସ୍‌ର ବିଚାର ପୂରାପୂରି ଗାଇଡର ଅଧିକାରଭୁକ୍ତ, ଆମେରିକା ଭଳି ଏହା ଏକ କୋର୍ସ ନୁହେଁ । ତାଙ୍କର ଗାଇଡ ଥିସିସ୍‌କୁ ନାକଚ କରିଦେବା ହେତୁ ବ୍ରହ୍ମାନନ୍ଦ ବାବୁ ପାଗଳପ୍ରାୟ ହୋଇଗଲେ, କାରଣ ଦୁଇଟି ଦୁଃଖ । ପ୍ରଥମରେ ଗବେଷଣା ସ୍ୱୀକୃତି ନାସ୍ତି ଏବଂ ଡିଗ୍ରୀ ବି ନାସ୍ତି । ସେ ଉଦ୍‌ଭ୍ରାନ୍ତ ଭାବରେ ଟେମସ୍ ନଦୀ କୂଳରେ ହେ ଭଗବାନ, ହେ ଭଗବାନ କହି ବୁଲୁଥିଲେ । ସେଇ ବାଟ ଦେଇ ଏକ ବ୍ରିଟିଶ ଦଂପତ୍ତି ଯାଉଥିଲେ । ହଠାତ୍ ସେ ଭଦ୍ରଲୋକ ତାଙ୍କୁ ଡାକିଲେ ଏବଂ ପଚାରିଲେ, ତୁମେ କେଉଁଠୁ ଆସିଛ ? ଅଧ୍ୟାପକ ବ୍ରହ୍ମାନନ୍ଦ ମିଶ୍ର ଉତ୍ତର ଦେଲେ, 'ଭାରତରୁ' । ତାଙ୍କୁ ବିସ୍ମିତ କରି ଉକ୍ତ ଭଦ୍ରଲୋକ କହିଲେ ଯେ ମୁଁ ତାହା ଜାଣିପାରୁଛି । କିନ୍ତୁ ଓଡ଼ିଶାର କେଉଁଠୁ ତମେ ଆସିଚ ଏବଂ ତୁମର ନାମ କ'ଣ ? ବ୍ରହ୍ମାନନ୍ଦ ବାବୁ ଭାବିଲେ ଯେ ଓଡ଼ିଶାରେ ଚାକିରି କରିଥିବା କୌଣସି ବ୍ରିଟିଶ ଅଫିସର ବୋଧହୁଏ ଓଡ଼ିଆଭାଷା ଜାଣିଥିବା ହେତୁ ଏପରି ପଚାରୁଛନ୍ତି । ସେ ଉତ୍ତରଦେଲେ, ମୋର ନାମ ନାରାୟଣ ମିଶ୍ର ଏବଂ ମୋର ଘର ହେଉଛି କଟକ ଜିଲ୍ଲାର ଖଣ୍ଡସାହୀ । ବ୍ରହ୍ମାନନ୍ଦ ବାବୁ ସ୍ମୃତିଚାରଣ କରି କହନ୍ତି ଯେ ତା'ପରେ ଭଦ୍ରଲୋକ ଯେତେବେଳେ ତାଙ୍କର ଡାକ ନାମରେ ସମ୍ବୋଧନ କରି କହିଲେ କିରେ, ବୁଢ଼ା (ବୋଧହୁଏ, ମୋର ଠିକ ମନେ ପଡୁନି) ତୁ ଏଇଠି । ମୋତେ ଦେଖା କରିନୁ ? ସେତେବେଳେ ମୋର ପାଗଳାମି ବଢ଼ିଗଲା ଡାକ ନାମରେ ସମ୍ବୋଧନ ଶୁଣିଲା ପରେ ।

ଏଇ ଭଦ୍ରଲୋକ ହେଉଛନ୍ତି ସୁରଦ୍ ଅଲ୍ଲୀ ଓରଫ ବଂଶୀଧର ମିଶ୍ର । ସେ ଥିଲେ ଉତ୍କଳ କଂଗ୍ରେସ କମିଟିର ଅଫିସ ସେକ୍ରେଟେରୀ । ତାଙ୍କ ନାମରେ ଗିରଫଦାରୀ ପରଓ୍ୱାନା ଜାରୀ

Digitized by srujan ka@gmail.com

ହେଲା । ସେ ଚାଲିଗଲେ କଲିକତା । ସେଇଠି ଶ୍ରମିକ ସଂଗଠନ ଗଢ଼ିଲେ, ଏକ ପତ୍ରିକା ମଧ ପ୍ରକାଶ ପାଇଲା । ପୁଣି ଗିରଫଦାରୀ ପରୱାନା । ସେ ଚାଲିଗଲେ ରେଙ୍ଗୁନ । ସେତେବେଳେ ବର୍ମା ଭାରତର ଅନ୍ତର୍ଭୁକ୍ତ ଥିଲା । ତେଣୁ ପାସପୋର୍ଟ, ଭିସାର ଆବଶ୍ୟକତା ନ ଥିଲା ।

ଗଂଜାମ ଓ କଟକ ଜିଲ୍ଲାର ବହୁବ୍ୟକ୍ତି ଏଇପରି ଭାବରେ ବର୍ମା ଯାଇଛନ୍ତି ଏବଂ ଅନେକ ସ୍ଥାୟୀ ଭାବରେ ବସବାସ କରି ମଧ ରହିଯାଇଛନ୍ତି । ମୋର ସ୍ତ୍ରୀଙ୍କର ଜଣେ ଦାଦା ଓ ଅଜା (ବିଜୁ ପଟ୍ଟନାୟକଙ୍କର ଜଣେ ଭାଇ) ବର୍ମା ଯାଇ ଫେରିନାହାନ୍ତି । ସେମାନଙ୍କର ଆଉ କୌଣସି ପତ୍ତା ବି ମିଳିନାହିଁ । ପରେ ବର୍ମା ସ୍ୱାଧୀନ ରାଷ୍ଟ୍ରରେ ପରିଣତ ହୋଇଛି । ଏବଂ ବିଂଶ ଶତାବ୍ଦୀ ପଞ୍ଚ ଦଶକରେ ସେଠାରୁ ବିଦେଶୀମାନଙ୍କୁ ବହିଷ୍କାର କରି ଦିଆଯାଏ । ନାଗରିକ ହୁଅ କିମ୍ବା ଦେଶ ଛାଡ଼ । ଶହ ଶହ ଓଡ଼ିଆ ବର୍ମା ଛାଡ଼ି ପଳାଇ ଆସନ୍ତି । ସେମାନଙ୍କ ମଧରୁ ଅଧିକାଂଶ ହେଉଛନ୍ତି ପାଇପ୍ ମରାମତି ଶ୍ରମିକ । କିନ୍ତୁ ସେମାନଙ୍କ ମଧରେ କିଛି ବେଶ୍ ଧନାଢ଼୍ୟ ବ୍ୟକ୍ତି ମଧ ଥିଲେ । ମୋର ମନେ ପଡୁଚି ଶ୍ରୀ ବ୍ରହ୍ମାନନ୍ଦ ବେହେରାଙ୍କ କଥା । ସେ ମୋ' ଠାରୁ ତିନିବର୍ଷ ଉପରେ ପଢୁଥିଲେ । ସେ ଶ୍ରୀ ପ୍ରାଣକୃଷ୍ଣ ମିଶ୍ର (ଅବସରପ୍ରାପ୍ତ ଆଇ.ଏ.ଏସ.) ଶ୍ରୀ ଲୋକନାଥ ଚୌଧୁରୀ (କମ୍ୟୁନିଷ୍ଟ ପାର୍ଟିର ନେତା) ଏବଂ ଶ୍ରୀ ନଳିନୀକାନ୍ତ ପଣ୍ଡା (ଅବସରପ୍ରାପ୍ତ ଆଇ.ଏ.ଏସ.)ଙ୍କର ସହପାଠୀ ।

ବଂଶୀଧର ମିଶ୍ର ବର୍ମାରେ ପହଞ୍ଚିଲେ ଏବଂ ସେଠାରେ ମଧ ଶ୍ରମିକ ସଂଗଠନ ଗଢ଼ିବା ସହିତ ଖବରକାଗଜ ପ୍ରକାଶ କଲେ । ପୁଣି ଗିରଫଦାରୀ ପରୱାନା । ବର୍ତ୍ତମାନ ସେ ନିଜ ନାମକୁ ବଦଳାଇ ସୁରତ ଅଲ୍ଲୀ ନାମରେ ଚାଲିଗଲେ ଇଂଲଣ୍ଡ । ସେଇ ନାମରେ ହିଁ ସେ ଏଣିକି ପରିଚିତ ହେଲେ । ସେ ବ୍ରିଟିଶ ଶ୍ରମିକ ପାର୍ଟିର ଉପସଭାପତି ବା କାର୍ଯ୍ୟକାରୀ କମିଟିର ସଭ୍ୟ (ଠିକ୍ ମନେ ପଡୁନି) ହେଲେ ଏବଂ ପରେ ବ୍ରିଟିଶ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକାରୀ କମିଟି ସଭ୍ୟ ହେଲେ । ବ୍ରିଟିଶ ନୌବହର ସେତେବେଳେ ସବୁଠାରୁ ଶକ୍ତିଶାଳୀ ନୌବହର । ସେଇ British Overseas Naval Federation ରେ ସଂପାଦକ ବା ସଭାପତି ହେଲେ । ମୋର ମନେ ପଡୁଚି ୰ ରମାରାଣୀ ରାୟ ଯାଇଥିଲେ ଇଂଲଣ୍ଡ ପାଠ ପଢ଼ିବା ପାଇଁ । ସେ ଲେଖିଥିଲେ ଚିଠି ଡାକ୍ତର ନିରୁପମା ରଥଙ୍କୁ ଯେ ଏଇଠି ଅଛନ୍ତି ସୁରତ ଅଲ୍ଲୀ ନାମକ ବ୍ୟକ୍ତି ଯାହାଙ୍କଠାରୁ ଏକ ସୁପାରିଶ ନେଇଗଲେ ଇଂଲଣ୍ଡରେ ଯେକୌଣସି ବ୍ୟକ୍ତି ପାଖରେ ଥିବା କାମ ହୋଇପାରିବ । ସୁରତ ଅଲ୍ଲୀ ଭାରତର ସ୍ୱାଧୀନତା ପାଇଁ ବିଦେଶରେ ବିପୁଳ ଅବଦାନ ଦେଇଯାଇଛନ୍ତି । ଇଂଲଣ୍ଡ, ଇଉରୋପରେ ଭାରତର ସ୍ୱାଧୀନତା ପାଇଁ ତାଙ୍କର ଭୂମିକା ଚିର ସ୍ମରଣୀୟ । ମୋର ମନେ ପଡୁଚି; ସ୍ୱତନ୍ତ୍ର ପାର୍ଟିର ନେତା ଭାବରେ ପ୍ରଫେସର ଏନ.ଜି. ରଙ୍ଗା ଆସଥିଲେ ଓଡ଼ିଶା । ଟାଉନ ହଲରେ ବକ୍ତୃତା ଦେଉଥିଲେ । ଜଣେ ଖଦଡ଼ ଧୋତି, ପଂଜାବୀ ପିନ୍ଧିଥିବା ପାକୁଆପାଚି ଭଦ୍ରଲୋକ ଉଠି ତାଙ୍କୁ ପ୍ରଶ୍ନ ପଚାରିଲେ । କହିଲାବେଳେ ସେ ଅଧାପକ ରଙ୍ଗାଙ୍କୁ କେବଳ ରଙ୍ଗା ବୋଲି ସମ୍ବୋଧନ

Digitized by srujan ka@gmail.com

କଲେ । ସେ ଆଶ୍ଚର୍ଯ୍ୟ ହେଲେ, କାରଣ ସମସ୍ତେ (ଏପରିକି ପଣ୍ଡିତ ନେହେରୁ ମଧ) ତାଙ୍କୁ ଅଧାପକ (ବା ପ୍ରଫେସର) ରଙ୍ଗା ବୋଲି ଡାକନ୍ତି । ତତ୍‌କାଳୀନ ଚଳନ୍ତି ସମୟରେ ତାଙ୍କୁ ଖାଲି ରଙ୍ଗା ବୋଲି ସମ୍ବୋଧନ କରିବା ବ୍ୟକ୍ତି କେହି ନାହାନ୍ତି । କିଏ ଏଇ ବ୍ୟକ୍ତି ? ସେ ପଚାରିଲେ ଜଣଙ୍କୁ । ସେ କହିଲେ ଯେ ପଚାରିଥିବା ବ୍ୟକ୍ତି ହେଉଛନ୍ତି ବଂଶୀଧର ମିଶ୍ର । ସେଇଠି ଥିଲେ କମ୍ୟୁନିଷ୍ଟ ପାର୍ଟିର ନେତା ଶରତ ପଟ୍ଟନାୟକ । ସେ କହିଲେ ଯେ ଅଧାପକ ରଂଗା ଆପଣ ତାଙ୍କୁ ଜାଣନ୍ତି । କିନ୍ତୁ ଜାଣନ୍ତି ସୁରତ ଅଲ୍ଲୀ ନାମରେ । ଚମକିଲା ପରି ସେ ପଚାରିଲେ କେଉଁ ସୁରତ ଅଲ୍ଲୀ ? ଶରତବାବୁ ତାଙ୍କୁ କହିଲେ ଇଂଲଣ୍ଡରେ ଆପଣ ଯେଉଁ ସୁରତ ଅଲ୍ଲୀଙ୍କୁ ଭେଟିଥିଲେ, ଏ ହେଉଛନ୍ତି ସେଇ ସୁରତ ଅଲ୍ଲୀ । ସେ ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ ସେ ସୁରତ ଅଲ୍ଲୀ କ'ଣ ଓଡ଼ିଶାର ଲୋକ, ସେ ବଂଚିଛନ୍ତି ଏ ପର୍ଯ୍ୟନ୍ତ । ଆମେ ତ କେହି ଜାଣିନୁ । ଏହା କହି ସେ ସଭାସ୍ଥଳ ଛାଡ଼ି ତାଙ୍କ ପାଖକୁ ଦୌଡ଼ିଲେ ଏବଂ କୋଳାଗ୍ରତ କରି ତାଙ୍କୁ ନେଇ ଆସିଲେ ମଞ୍ଚ ଉପରକୁ । କହିଲେ ଯେ ମୋର ସୌଭାଗ୍ୟ ଯେ ମୁଁ ଏଇ ବନ୍ଧୁକୁ ଭେଟିଲି । କାରଣ ଗଲା ବହୁ ବର୍ଷ ହେଲା ତାଙ୍କ ସହିତ ମୋର ଭେଟ ହୋଇ ନାହିଁ । ସେ ଯେ ଓଡ଼ିଶାର ଏବଂ ସେ ଯେ ଏ ପର୍ଯ୍ୟନ୍ତ ଜୀବିତ ତା' ବି ମୋର ଜଣାତରେ ନଥିଲା । ତାଙ୍କ ସହିତ ମୋର ମତଭେଦ ଯେତିକି ମତୈକ୍ୟ ବି ସେତିକି । କିନ୍ତୁ ମୁଁ ଆଜି ସମସ୍ତଙ୍କ ସମ୍ମୁଖରେ କହିବାକୁ ଚାହେଁ ଯେ ଭାରତର ସ୍ୱାଧୀନତା ପାଇଁ ସୁରତ ଅଲ୍ଲୀଙ୍କ ଅବଦାନ ଅବିସ୍ମରଣୀୟ । ସେ ନ ଥିଲେ ଭାରତବର୍ଷ ସ୍ୱାଧୀନତା ପାଇବାର ହୁଏତ ଆହୁରି ବିଳମ୍ବ ହୋଇଯାଇଥାନ୍ତା । ବ୍ରିଟିଶ ଲେବର ପାର୍ଟି, ବ୍ରିଟିଶ ଜନସାଧାରଣ, ତଥା ଇଉରୋପୀୟ ମହାଦେଶରେ ଜନମତକୁ ଭାରତର ସ୍ୱାଧୀନତା ପାଇଁ ଅନୁକୂଳ କରିବାରେ ତାଙ୍କର ଅବଦାନ ବିପୁଳ ।

ସନ ୧୯୫୦ ମସିହାର କଥା । ଭାରତର ସବୁ ମୁଖ୍ୟ ଖବରକାଗଜମାନଙ୍କରେ ଖବର ପ୍ରକାଶ ପାଇଲା ଯେ ସୁରତ ଅଲ୍ଲୀ ଭାରତ ଫେରୁଛନ୍ତି, କଣ ହେବ ରାଜନୈତିକ ବିନ୍ୟାସ ଭାରତବର୍ଷରେ ? ଏଭଳି ସଂବାଦ ମାସାଧିକ କାଳ ପ୍ରକାଶ ପାଇଲା ଭାରତର ସବୁ ମୁଖ୍ୟ ଖବରକାଗଜମାନଙ୍କରେ । ସେ ଆସିଲେ । ତାଙ୍କର ବୈଦେଶିକ ସ୍ତ୍ରୀ ମଧ ରହିଗଲେ ସେଇଠି । ସେ ଫେରିଲେ ଖଣ୍ଡସାହୀ ଗ୍ରାମକୁ । ପାଠ ପଢ଼ାଇଲେ ପିଲାଙ୍କୁ । ନୂଆ ଧରଣର ପାଇଖାନା ତିଆରି କଲେ । ଖଦଡ଼ ପିନ୍ଧିଲେ । ଅନେକ ଦିନ ତଳେ ଛାଡ଼ି ଯାଇଥିବା ସ୍ତ୍ରୀଙ୍କ ସହିତ ତାଙ୍କର ପୁନର୍ମିଳନ । ଝିଅ ସଂଘମିତ୍ରା ଓଡ଼ିଆ ଅଧାପିକା, ଜୋଇଁ ଡାକ୍ତର ଜଗନ୍ନାଥ ମହାପାତ୍ର । ତା'ପରେ ଗାଁ ଛାଡ଼ି ଆସିଲେ କଟକ ସହରକୁ । ଦରଘାବଜାର ମାତୃଭୂମି ପ୍ରେସ ସାମନା ଶ୍ରୀ ଗଣେଶ ଦାସଙ୍କ ତଳ ଘରେ ଭଡ଼ାରେ ରହିଲେ । ନିଜର ଅତୀତ ବିଷୟରେ କିଛି, କେଉଁଠି କହିଲେ ନାହିଁ ।

Digitized by srujan ka@gmail.com

ପରଲୋକ ହୋଇଗଲା ଭୁବନେଶ୍ୱରରେ । ଖବରକାଗଜରୁ ଦେଶ ଜାଣିଲା ତାଙ୍କର ମୃତ୍ୟୁ ସଂବାଦ । ଯେଉଁ ଛ'ସାତ ଜଣ ସେଦିନ ଶ୍ମଶାନରେ ଉପସ୍ଥିତ ଥିଲେ ସେମାନଙ୍କ ମଧ୍ୟରେ ଶ୍ରୀ ହରିହର କରଣ ଥିଲେ ଅନ୍ୟତମ । ଯାହାର ଉଦାତ୍ତ ଆହ୍ୱାନ ବ୍ରିଟିଶ ସାମ୍ରାଜ୍ୟରେ ଭୂକଂପନ ସୃଷ୍ଟି କରୁଥିଲା ସେଇ ମଣିଷ ଆଖି ବୁଜିଦେଲା ଅଜଣା ଅଶୁଣା ମଣିଷ ଭଳି ।

ଠିକ୍ ଏଇପରି ଅବସ୍ଥା ମୁଁ ଦେଖିଛି ୰ ପାନାଲାଲ ଦାସଗୁପ୍ତଙ୍କ ପାଖରେ । ବିପ୍ଳବୀ କମ୍ୟୁନିଷ୍ଟ ପାର୍ଟିର ନେତା ପାନାଲାଲ ଦାସଗୁପ୍ତ । ୧୯୨୧ ରୁ ୧୯୭୬ ମସିହା ପର୍ଯ୍ୟନ୍ତ ସେ ଜେଲରେ ବନ୍ଦୀ, ନଚେତ ପଳାତକ । ବଙ୍ଗଳା ବୈପ୍ଳବିକ ଆନ୍ଦୋଳନରେ ପ୍ରବାଦ ପୁରୁଷ । ପାନାଲାଲ ଦାସଗୁପ୍ତ ଯେଉଁଦିନ ଗିରଫ ହେଲେ ସେଦିନ ବିପୁଳ ସଂଖ୍ୟାରେ ସୈନ୍ୟବାହିନୀକୁ ମୁତୟନ କରାଯାଇଥିଲା, ସେ ରହୁଥିବା ଘରକୁ ଘେରଉ କରି ତାଙ୍କୁ ବନ୍ଦୀ କରିବା ପାଇଁ । ପାଞ୍ଚଫୁଟ ଉଚ୍ଚତାର ପାନାଲାଲ କଥା କହନ୍ତି ଖୁବ୍ ଧୀରେ ଧୀରେ । ୧୯୭୬ ମସିହାରେ ହଠାତ୍ ତାଙ୍କର ବୈପ୍ଳବିକ ଜୀବନର ସମାପ୍ତି ଘଟିଥାଏ ଏବଂ ସେ ନିର୍ବାଚନରେ ଠିଆ ହୋଇ ବୋଲପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୁଅନ୍ତି ବିଧାନସଭାକୁ ସ୍ୱାଧୀନ ପ୍ରାର୍ଥୀ ଭାବରେ । ଏବଂ ତା'ପରେ ସେ ଜୀବନର ମଧ୍ୟ ପରିସମାପ୍ତି ଘଟେ । ସେ ଜୀବନର ଅବଶିଷ୍ଟ ଦିନଗୁଡ଼ିକୁ ଅତିବାହିତ କରନ୍ତି ଦଣ୍ଡକାରଣ୍ୟ ଶରଣାର୍ଥୀମାନଙ୍କ ଥଇଥାନ କରିବା ପାଇଁ । ସେ ଟାଗୋର ସୋସାଇଟି ନାମକ ଏକ ସଂସ୍ଥା ଗଠନ କରନ୍ତି । ବନ୍ଧୁ ପ୍ୟାରୀମୋହନ ମହାପାତ୍ର ସେ ସଂସ୍ଥା ସହିତ ସଂପୃକ୍ତ ହୁଅନ୍ତି । ସରକାରୀ କଳର ନିର୍ଦ୍ଦେଶାନୁଯାୟୀ ପ୍ୟାରୀମୋହନ ଦଣ୍ଡକାରଣ୍ୟର ଅଧକ୍ଷ ଭାବରେ ବନବାସ କଟାଉଥିବା ସମୟରେ ଏଇ ସଂସ୍ଥା ସହିତ ଜଡ଼ିତ ହୁଅନ୍ତି । ପାନାଲାଲବାବୁ ତାଙ୍କର ପରିଣତ ବୟସରେ ବି କଲିକତାରୁ ଦଣ୍ଡକାରଣ୍ୟ ଜିପ୍‌ରେ ଯିବା ଦେଖିଛି । ତାଙ୍କର କାମ ପାଇଁ ନିଷ୍ଠା ଓ ପରିଶ୍ରମ ଯେ କୌଣସି ଯୁବକକୁ ପ୍ରେରଣା ଦେବ, ଉତ୍ସାହିତ କରିବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ପୁରୁଣା ଦିନ କଥା ପଚାରିଲେ ସେ ହୁଏତ ନୀରବ ରହିବେ ବା କଥାଟାକୁ ଏଡ଼ାଇ ଦେଇଯିବେ । ତାଙ୍କର ଅନେକ ପୁରୁଣା ଭକ୍ତ ତାଙ୍କୁ ପଚାରନ୍ତି ତାଙ୍କର ଜୀବନ କାହାଣୀ କିନ୍ତୁ କୌଣସି ଉତ୍ତର ମିଳେ ନାହିଁ ।

ଏଇ ବିପ୍ଳବୀମାନଙ୍କର (ବିଶେଷତଃ ସଂତ୍ରାସବାଦୀ ବିପ୍ଳବୀମାନଙ୍କର) ଏକ ବିଚିତ୍ର ଜୀବନର ଢଙ୍ଗ । ବଂଗଳାର ଅନେକ ପ୍ରାକ୍ତନ ବିପ୍ଳବୀମାନଙ୍କୁ ମୁଁ ଦେଖିଛି ବିଭିନ୍ନ କମ୍ପାନୀମାନଙ୍କର ବିଭିନ୍ନ ପଦବୀରେ । ସମୟ ସମୟରେ ବେଶ୍ ଉଚ୍ଚ ପଦବୀରେ । ସେମାନେ ଆଉ ନିଜର ପୂର୍ବ ପରିଚୟ ଦେବାକୁ ନାରାଜ ବା ସେ ସଂପର୍କରେ କିଛି କହିବା ପାଇଁ ମଧ ନାରାଜ ମନେହୁଏ । ସତେ ଯେପରି କ୍ଲାନ୍ତ ହୋଇପଡ଼ିଛନ୍ତି ଥରେ ସେ ଜୀବନରୁ ନିଷ୍କ୍ରାନ୍ତ ହୋଇଗଲା ପରେ । ଆଉ ତାକୁ ଜାବୋଡ଼ି ଧରି ରହିବାକୁ ଚାହିଁ ନାହାନ୍ତି ବା ସେଥିରୁ ଲାଭ ଉଠାଇବାକୁ ଚାହିଁ ନାହାନ୍ତି ।

Digitized by srujan ka@gmail.com

ଡାକ୍ତର ଜର୍ଜ ପଟ୍ଟନାୟକ ଓ ବିଜୁ ପଟ୍ଟନାୟକଙ୍କର ଜଣେ ମାଉସୀ ପୁଅ ଭାଇ ଆନନ୍ଦ ଗୁପ୍ତ ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନର ବିପ୍ଳବୀମାନଙ୍କର ଅନ୍ତର୍ଭୁକ୍ତ ଥିଲେ । ତାଙ୍କୁ କୋଡ଼ିଏ ବର୍ଷ ନିର୍ବାସନ କାରାଦଣ୍ଡ ହୋଇଥିଲା ଏବଂ ସେ ଜୀବନର ପ୍ରାୟ ୧୮ ବର୍ଷକାଳ ଆଣ୍ଡାମାନର ସେଲୁଲିଆର ଜେଲରେ ନିର୍ବାସିତ ଜୀବନ ଯାପନ କରିଥିଲେ । ସେ ପ୍ରଚଣ୍ଡ ଶ୍ୱାସ ରୋଗରେ ଆକ୍ରାନ୍ତ ଥିଲେ ଏବଂ ସାମୁଦ୍ରିକ ଜଳବାୟୁ ତାଙ୍କୁ ସୁହାଉ ନ ଥିଲା । ଭାରତର ସ୍ୱାଧୀନତା ପାଇବାର ଉପକଣ୍ଠରେ ତାଙ୍କୁ ସେଲ୍‌ରେ ପଚରାଗଲା । ଅବଶିଷ୍ଟ କାରାବାସ ସମୟ ତମେ ଭାରତବର୍ଷରେ କଟାଇବାପାଇଁ ତୁମକୁ ସୁଯୋଗ ଦିଆଯିବ । ତମେ କେଉଁଠାକୁ ଯିବାକୁ ଚାହଁ ? ଅଠର ବର୍ଷ କଟିଗଲାଣି ନିର୍ଜନ କାରାବାସରେ । ତାଙ୍କର ସ୍ମରଣଶକ୍ତି କ୍ଷୀଣ ହୋଇଗଲାଣି । ସେ କେବଳ ମନେ ପକାଇ କହିଲେ 'ଜର୍ଜ ପଟ୍ଟନାୟକ, କଟକ' । ଜର୍ଜ ପଟ୍ଟନାୟକ କଟକରେ ଦାନ୍ତ ଡାକ୍ତର, ଫୁଟବଲ ଖେଳାଳୀ, ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ପୁଅ, ବିଜୁ ପଟ୍ଟନାୟକଙ୍କ ଭାଇ ବୋଲି ପରିଚିତ । ଆନନ୍ଦ ଗୁପ୍ତଙ୍କୁ ପ୍ରଥମେ କଟକ ଜେଲକୁ ଅଣାଗଲା ଏବଂ ପରବର୍ତ୍ତୀ କାଳରେ ତାଙ୍କୁ ଅନ୍ତରୀଣ ବନ୍ଦୀ ଭାବରେ 'ଆନନ୍ଦ ଭବନ'ରେ ରଖାଗଲା, ଆଜି ଯେଉଁଠି ଡାକ୍ତର ଜର୍ଜ ପଟ୍ଟନାୟକଙ୍କ ଘର, ସେଇ କୋଠା ସେତେବେଳେ ଏକ ମହଲା ଥିଲା । ଓଡ଼ିଶାର ପ୍ରଥମ ବ୍ୟାଙ୍କ 'ଓଡ଼ିଶା ବ୍ୟାଙ୍କ' ସେଇଠି ପ୍ରତିଷ୍ଠା ହୋଇଥିଲା । ସେଇଘରେ ଆନନ୍ଦ ଗୁପ୍ତ ରହିଲେ ବେଶ୍ କିଛି କାଳ । ଆନନ୍ଦ ଭବନକୁ ଯିବା ଆସିବା ପାଇଁ ନାଲି ଓ ହଳଦିଆ ପାସ୍ ଦିଆଯାଉଥିଲା । ନାଲି ପାସ୍ ସ୍ଥାୟୀ ପାସ୍ ଓ ହଳଦିଆ ପାସ୍ ଅସ୍ଥାୟୀ ପାସ୍ । ପରେ ଆନନ୍ଦ ଗୁପ୍ତଙ୍କୁ ଖଲାସ କରି ଦିଆଗଲା । ସେ ଜର୍ମାନୀ ଚାଲିଗଲେ ଏକ ମେଡ଼ିସିନ କଂପାନୀର ପ୍ରତିନିଧି ଭାବରେ ଏବଂ ସେଇଠି ବର୍ତ୍ତମାନ ବ୍ୟବସାୟରେରତ । କେବଳ କିଛିବର୍ଷ ତଳେ ଜର୍ଜ ପଟ୍ଟନାୟକଙ୍କ ପରଲୋକ ଦିନ, ତାଙ୍କର ପୁଅ ଏବଂ ଶ୍ରୀ ତୁଷାର ଗାନ୍ଧୀ (ମହାତ୍ମାଗାନ୍ଧୀଙ୍କ ନାତି)କୁ ଦେଖିବାକୁ ମିଳିଥିଲା କଟକରେ ।

କିନ୍ତୁ ଏଇ ପ୍ରାକ୍ତନ ବିପ୍ଳବୀମାନଙ୍କର ଦରଦ ବହୁତ ପୁରୁଣା ସହକର୍ମୀମାନଙ୍କ ପାଇଁ । ଯେକୌଣସି ବିପ୍ଳବୀ (ସେ ଯେଉଁ ଦଳର ହେଉନା କାହିଁକି) ପାରିବାରିକ କାରଣରୁ ହେଉ, ମତଭେଦ ଯୋଗୁଁ ହେଉ ବା ସ୍ୱାସ୍ଥ୍ୟ ଦୃଷ୍ଟିରୁ ହେଉ ସକ୍ରିୟ ରାଜନୀତିରୁ ଯଦି ବିଦାୟ ନିଏ ତା' ହେଲେ ସେ 'ସହଯୋଦ୍ଧା' ପାଇଁ ଆପଣାର କଂପାନୀରେ ଚାକିରିଟିଏ ଦେବାରେ ସେମାନେ ମୁକ୍ତହସ୍ତ । ବଙ୍ଗଳାର ବହୁ କଂପାନୀ (ବିଶେଷତଃ ମେଡ଼ିସିନ କଂପାନୀ)ମାନଙ୍କର ପରିଚାଳକ, ମାଲିକ, ଉଚ୍ଚପଦସ୍ଥ କର୍ମଚାରୀ ହେଉଛନ୍ତି ଏଇ ପ୍ରାକ୍ତନ ବିପ୍ଳବୀମାନେ । ଏଇ କଂପାନୀମାନଙ୍କରେ ମଧ୍ୟ ଅନେକ କର୍ମଚାରୀ ହେଉଛନ୍ତି ପ୍ରାକ୍ତନ ବିପ୍ଳବୀ ।

ଦିନେ ଏଇପରି କଟକର ରାଜରାସ୍ତାରେ ହଠାତ୍ ଦେଖାହୁଏ ଶ୍ରୀ କୁମୁଦ ବିଶ୍ୱାସଙ୍କୁ । ସେ ଥିଲେ ବଙ୍ଗଳା କମ୍ୟୁନିଷ୍ଟ ପାର୍ଟିର କଲିକତା ସିଟି କମିଟିର ସଂପାଦକ । 'ହେଡ଼ମାଷ୍ଟର'

Digitized by srujan ka@gmail.com

ନାମରେ ଖ୍ୟାତ କୁମୁଦ ବିଶ୍ୱାସ ତାଙ୍କର କଠୋର ଶୃଙ୍ଖଳା ଜ୍ଞାନ ପାଇଁ ପରିଚିତ । ବାପା ଥିଲେ ବେଶ୍ ଉଚ୍ଚପଦସ୍ଥ ବ୍ୟକ୍ତି । ହାଓଡ଼ାରେ ତାଙ୍କର ଏକ ବିରାଟ ଦୋ' ମହଲା ଘର । ସେଇ ଘରର ଏକ ଫ୍ଲାଟରେ କୁମୁଦବାବୁ ରହୁଥିଲେ ବର୍ତ୍ତମାନ ସେଇଟି ବୋଉ ଦି, ଶ୍ରୀ ଶଚି ବିଶ୍ୱାସ ଓ ପୁଅ ଟୁଟୁ ରହନ୍ତି । ବାପାଙ୍କର ସାନପୁଅ କୁମୁଦବାବୁ ବିଲାତ ଯିବେ ଏବଂ ବାରିଷ୍ଟର ହେବେ ଏଇ ସ୍ୱପ୍ନ ଥିଲା ତାଙ୍କ ବାପାଙ୍କର । ନିଜର ଜମାଖାତାରେ ସେ ୪ ଲକ୍ଷ ଟଙ୍କା ଏଥିପାଇଁ ସ୍ୱତନ୍ତ୍ର ରଖିଥିଲେ । ଆଇନର ଯିଏ ସ୍ରଷ୍ଟା ହେବାର ସ୍ୱପ୍ନ ଦେଖିବ, ସେ କିପରି ହେବ ତା'ର କ୍ରୀଡ଼ନକ ? କୁମୁଦବାବୁ ହେଲେ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ, ରହିଲେ ପାର୍ଟି କମ୍ୟୁନରେ ଏବଂ ବିବାହ କଲେ ଏକ ସହଯୋଦ୍ଧାଙ୍କୁ । ଜୀବନ କଟିଲା ଗାଈ ମାଂସ ଏବଂ ରୁଟି ଖାଇ । ବଂଗଳା ଦେଶରେ ମନ୍ୱନ୍ତର ଏବଂ ଦ୍ୱିତୀୟ ମହାଯୁଦ୍ଧ ସୃଷ୍ଟି କରିଥିଲା ଭୟାନକ ପରିସ୍ଥିତି ଓ ଖାଦ୍ୟାଭାବ । ସେଇ ଭିତରେ ବର୍ଦ୍ଧିତ କୁମୁଦ ବିଶ୍ୱାସ ଜୀବନଯୁଦ୍ଧରେ ଶାଣିତ ହୋଇଥିଲେ ଏବଂ ଜେଲଖାନା ଭିତରେ ପାଠ ପଢ଼ିଥିଲେ ଏମ୍.ଏ. ପର୍ଯ୍ୟନ୍ତ । ବଙ୍ଗଳା ଦେଶରେ ବନ୍ଦୀମାନେ ଜେଲଖାନା ଭିତରେ ରହି ପରୀକ୍ଷା ଦେବାର ସୁଯୋଗ ସୃଷ୍ଟି କରି ଯାଇଥିଲେ ୰ ଆଶୁତୋଷ ମୁଖର୍ଜୀ । କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟ ତାହା ଦେବାପାଇଁ ବହୁ ଯୁଗ ଲାଗିଗଲା । ମୋର ମନେପଡୁଚି । ଦେଶ ସ୍ୱାଧୀନ ହେଲା । ତଥାପି ମୋତେ ୧୯୫୧ ମସିହାରେ ଜେଲରେ ରହି ପରୀକ୍ଷା ଦେବାପାଇଁ ଅନୁମତି ମିଳିଲା ନାହିଁ । ଏବେ ତାହା ମିଳିଲାଣି ବୋଲି ଶୁଣିଛି ମାତ୍ର ।

ବାପାଙ୍କର ପରଲୋକ ପରେ କୁମୁଦବାବୁ ଚାହିଁଲେ ମିଳିଥିବା ଅର୍ଥ ଏବଂ ଘରଟିକୁ କମ୍ୟୁନିଷ୍ଟ ପାର୍ଟିକୁ ଦାନ କରିଦେବା ପାଇଁ । କିନ୍ତୁ ମୁଜଫର ଅହମ୍ମଦ (କାକାବାବୁ) ଆଦୌ ରାଜିହେଲେ ନାହିଁ । ଅର୍ଥତକ ନେଲେ କିନ୍ତୁ ଘରର ଦଲିଲ ଫେରାଇ ଦେଲେ । ସେଇତକ ରହିଯାଇଥିଲା ବୋଲି କୁମୁଦବାବୁଙ୍କର ରହିବା ପାଇଁ ଜାଗା ଥିଲା । କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ସହିତ ମତଭେଦ ଯୋଗୁଁ ସେ ଆଉ ସଦାବେଳିଆ କର୍ମୀ ହେଲେ ନାହିଁ । ଇଷ୍ଟ ଇଣ୍ଡିଆ ଫାର୍ମାସ୍ୟୁଟିକାଲ କଂପାନୀର କଟକ ଡିପୋ ମ୍ୟାନେଜର ଭାବରେ କଟକରେ ଅବସ୍ଥାପିତ ହେଲେ ।

ହଠାତ ବାଟରେ ଦେଖା । ଆଗରୁ ତାଙ୍କୁ ବାଟରେ ଠାବ କରିଥିଲେ ଶ୍ରୀ ବୈଦ୍ୟନାଥ ରଥ । ଆମେ ସବୁ ଏଇଠି କାମ ଆରମ୍ଭ କଲୁ ଏକା ସାଙ୍ଗରେ । ୧୯୬୦ ମସିହାର ବନ୍ୟା ସମୟ । ସେତିକିବେଳେ ଏକ ପିପୁଲସ ରିଲିଫ କମିଟି ଗଠନ କରିବାର ଏକ ମୁଖ୍ୟ ଭୂମିକା ସେ ଗ୍ରହଣ କରିଥିଲେ । ଡାକ୍ତର ଜର୍ଜ ପଟ୍ଟନାୟକ ଏହାର ସମ୍ପାଦକ ଥିଲେ । ନାନା କାରଣରୁ ଏହି ରିଲିଫ କମିଟି ବେଶି ଦିନ ଚାଲିପାରି ନ ଥିଲା ଏବଂ ଏହାର କୋଷାଧ୍ୟକ୍ଷଙ୍କ ପାଇଁ । ପବ୍ଲିକ ଫଣ୍ଡକୁ କିପରି ବ୍ୟବହାର କରାଯାଏ ତାହାର ନିୟମ ଏ ପର୍ଯ୍ୟନ୍ତ ଆମେ ଶିଖି ପାରିଲୁ ନାହିଁ । ଏହା ଜଣକ ଉପରେ ନିର୍ଭର କରେ ନାହିଁ । ଯେଉଁମାନେ ସଂଗଠନ ଦାୟିତ୍ୱ ବହନ କରନ୍ତି,

Digitized by srujan ka@gmail.com

ସମସ୍ତଙ୍କୁ ଏହି ନିୟମ ମାନିବାକୁ ପଡ଼େ । କିନ୍ତୁ ଥରେ କାର୍ଯ୍ୟର ଉଷ୍ମତା ଭାଙ୍ଗିଗଲେ କାମ ପ୍ରତି ଢିଲା ମନୋଭାବ ଧରିଯାଏ ।

ଗୋପବନ୍ଧୁ ଦାସଙ୍କ ଭଳି ପ୍ରତିଷ୍ଠିତ ସମାଜସେବୀ ମଧ ଏହାର ଶିକାର ହୋଇଛନ୍ତି । ମୋତେ ଥରେ ନରସିଂହ ତ୍ରିପାଠୀ କହୁଥିଲେ ଯେ ସେ ଖାଇବାରେ ଅଧିକା ଚାରିଅଣା ଖର୍ଚ୍ଚ କରି ଦେଇଥିଲେ ବୋଲି ଗୋପବନ୍ଧୁ ଦାସ ଓ ରାଧାନାଥ ରାଥଙ୍କ ଠାରୁ ଗାଳି ଶୁଣିଥିଲେ ଏବଂ ସେମାନେ ଆଖିରୁ ଲୁହ ଗଡ଼ାଇଥିଲେ ଚାରିଅଣା ଅଧିକା ଖର୍ଚ୍ଚ ହୋଇଯାଇଛି ବୋଲି ।

କୁମୁଦ ବିଶ୍ୱାସ ଚାକିରି ଛାଡ଼ି ଚାଲିଗଲେ କଲିକତା । ଇଚ୍ଛାଥିଲା ପୁଣି ରାଜନୈତିକ କାର୍ଯ୍ୟ ଆରମ୍ଭ କରିବା ପାଇଁ । କିନ୍ତୁ ଅନେକ ପାଣି ବୋହି ଯାଇଥିଲା ଏହା ଭିତରେ, ରାଜନୀତିରେ ମଧ । ପୁଲିସ ବିଭାଗର ଡି.ଜି. ଥିଲେ ଶ୍ରୀ ବିଜୟ ପାଣିଗ୍ରାହୀ । ଜଣେ ସାଧୁ ସଚ୍ଚୋଟ ଅଫିସର ଭାବରେ ତାଙ୍କର ଖ୍ୟାତି ଥିଲା । ସେ ଅବସର ନେବା ପରେ ଥରେ ମୋତେ କହୁଥିଲେ ଗଭୀର ମର୍ମବେଦନାରେ, ''ମୁଁ ଚାକିରିକାଳ ଭିତରେ ଯାହାକୁ ଯେତିକି ସାହାଯ୍ୟ କରିବାର କଥା, କରିଛି । କିନ୍ତୁ ସମସ୍ତଙ୍କର ସବୁକାମ କ'ଣ କରିପାରିବା ସମ୍ଭବ ? ଜଣେ ଲୋକର ଦଶଟା କାମ ହୁଏ ତ ହୋଇଛି । ତାକୁ ସିଏ ମନେ ରଖିନି । କିନ୍ତୁ ତା'ର ଯେଉଁ ଗୋଟାଏ କାମ ମୁଁ କରିପାରି ନାହିଁ ସେଇଟାକୁ ସେ ମନେ ରଖିଛି । କ'ଣ କରିବେ କହିଲେ ଏଇ ପରିସ୍ଥିତିରେ ?'' ରାଜନୀତି କ୍ଷେତ୍ରରେ ମଧ ତାହା ପ୍ରଯୁଜ୍ୟ । ତମେ କାମକରି ଚାଲିଛ । ସେଇ ଭିତରେ ଅନେକ ଲୋକ ତମ ପ୍ରତି ଯେପରି ସନ୍ତୁଷ୍ଟ, କିଛି ଲୋକ ସେଇପରି ଅସନ୍ତୁଷ୍ଟ ହେବାକୁ ବାଧ୍ୟ । ଥରେ ତମେ ସକ୍ରିୟ ଦୃଶ୍ୟପଟରୁ ଟିକିଏ ନିଷ୍କ୍ରାନ୍ତ ହୋଇଗଲେ, ଆଉ କ'ଣ ସେଇ ଧାରାକୁ ଫେରିବା ସହଜ ? କୁମୁଦବାବୁଙ୍କ କ୍ଷେତ୍ରରେ ତାହା ହିଁ ଘଟିଲା । ସେ କଲିକତା ଫେରିଗଲେ ସତ୍ୟ କିନ୍ତୁ ରାଜନୀତିର ଧାରା ଭିତରକୁ ଆଉ ଯାଇପାରିଲେ ନାହିଁ । 'ହେଡ୍ ମାଷ୍ଟର'ଙ୍କ ଭୟରେ ଆତଙ୍କିତ, ଅସନ୍ତୁଷ୍ଟ କ୍ୟାଡ଼ରମାନେ ବର୍ତ୍ତମାନ ନେତୃତ୍ୱରେ । ସେମାନେ ଆଉ ଚାହିଁବେ ଏଇ ପ୍ୟୁରିଟାନ ମଣିଷକୁ ? କଲିକତା ଫେରି ସେ କିଛିକାଳ, ''ସୋଭିଏତ୍ ଦେଶର'' ସର୍କୁଲେଶନ ମ୍ୟାନେଜର ହେଲେ । ସେଠାରେ ମଧ ସେ ରହିପାରିଲେ ନାହିଁ । ଘରେ ଏକୁଟିଆ ବସିରହିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ସେ ନିଃସଙ୍ଗ ହୋଇଗଲେ ଏବଂ ସେଇ ଅବସ୍ଥାରେ ହିଁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଓଡ଼ିଶାର ବହୁ ବନ୍ଧୁଙ୍କୁ ସେ ଆପଣେଇ ନେଇଥିଲେ । ତାଙ୍କ ସହିତ ଆମର ଏକ ଚୁକ୍ତି ଥିଲା । ସେ ଓଡ଼ିଆରେ କହିବେ ଏବଂ ଆମେ ସବୁ ବଂଗଳାରେ କହିବୁ । ସେ କଦାପି ଆମ ସାଙ୍ଗରେ ବଂଗଳାରେ କଥାବାର୍ତ୍ତା କରନ୍ତି ନାହିଁ । ଏଇଠି ମୋର ଏକ କାହାଣୀ ମନେପଡ଼େ । କମ୍ୟୁନିଷ୍ଟ ପାର୍ଟିର ବର୍ତ୍ତମାନ ସବୁଠାରୁ ବର୍ଷୀୟାନ ନେତା ଗୋକୁଳ ମୋହନ ରାୟ ଚୂଡ଼ାମଣି । ବୟସ ୯୦ ବର୍ଷ । ଖୋର୍ଦ୍ଧାରେ ସେ ରହୁଛନ୍ତି । ଆଖିକୁ ଆଉ ଭଲ ଦେଖାଯାଉ ନାହିଁ । ସେ

Digitized by srujan ka@gmail.com

ବଂଗାଳୀ, କିନ୍ତୁ ଓଡ଼ିଶାର ଅନେକ ବଂଗାଳୀ ଭଲ ବଂଗଳା କହି ପାରନ୍ତି ନାହିଁ । ଯେପରି ବୀରେନ ମିତ୍ର, ସେଇପରି ଗୋକୁଳ ଦା । ଥରେ କମ୍ୟୁନିଷ୍ଟ ପାର୍ଟିର ଏକ କର୍ମୀ ବୈଠକରେ ଯୋଗ ଦେଇଥାନ୍ତି ପ୍ରସିଦ୍ଧ ବାଗ୍ମୀ କମ୍ୟୁନିଷ୍ଟ ପାର୍ଟିର ନେତା ୰ ବିଶ୍ୱନାଥ ମୁଖର୍ଜୀ । କାଳେ ସେ ଓଡ଼ିଆ ବୁଝି ପାରିବ ନାହିଁ ସେଥିପାଇଁ ଗୋକୁଳ ଦା' ଆରମ୍ଭ କଲା ବଂଗଳାରେ କହିବା ପାଇଁ । କିଛି ସମୟ ପରେ ତାକୁ କହିବାରେ ବାଧାଦେଇ ଦାଦା ବିଶ୍ୱନାଥ ମୁଖର୍ଜୀ କହିଲେ ବଙ୍ଗଳାରେ ଦାଦା, ତୁମେ ଓଡ଼ିଆରେ କୁହ ମୁଁ ବୁଝି ପାରିବି । କିନ୍ତୁ ତମେ ଯେଉଁ ବଙ୍ଗଳାରେ କହୁଛନା ସେଥିରୁ ମୁଁ କିଛି ବୁଝିପାରୁନି । ଦେଖ ଅବସ୍ଥା ଗୋକୁଳ ଦା'ର !

କୁମୁଦବାବୁ ଚାଲିଗଲା ପରେ ଓଡ଼ିଶା ପ୍ରକୃତରେ ଏକ ବନ୍ଧୁଙ୍କୁ ହରାଇଛି । ଓଡ଼ିଆ ଜାତି, ଏହାର ପରମ୍ପରା, ଇତିହାସ ପ୍ରତି ଖୁବ କମ ବ୍ୟକ୍ତିଙ୍କର ଏଭଳି ଦରଦ ଥାଏ । କୁମୁଦବାବୁ ଯେପରି ଆଉ ଥରେ ଭଙ୍ଗା ତାରକୁ ଯୋଡ଼ି ପାରିଲେ ନାହିଁ ଠିକ୍ ସେଇପରି ହେଲା ଶ୍ରୀ ବୈଦ୍ୟନାଥ ରଥଙ୍କର । ସେ ବର୍ତ୍ତମାନ ଏକ ବିସ୍ମୃତ ଚରିତ୍ର । ରହୁଛନ୍ତି ଭୁବନେଶ୍ୱରରେ ପୁଅ ପାଖରେ । ପ୍ରାୟ ଅନ୍ଧ ହୋଇଯାଇଛନ୍ତି, ଡାକ୍ତରଙ୍କ ଅବହେଳା ଯୋଗୁଁ । ଗୋଟାଏ ଆଖି ଖରାପ ଥିଲା । ଯାଇଥିଲେ ଶଙ୍କର ନେତ୍ରାଳୟକୁ ମାଡ୍ରାସ । ସେଠାରେ ଠିକ୍ ଥିବା ଆଖିରେ ଭୁଲରେ ଲେଜରବିମ୍ ପଡ଼ିଲା । ସେ ଅନ୍ଧ ହୋଇଗଲେ । ପଢ଼ିବା ଯାହାଙ୍କର ନିଶା, ସେଇଭଳି ବ୍ୟକ୍ତିଙ୍କୁ ଅନ୍ଧ ହୋଇଯିବା ଦେଖିଲେ ମନ ଦବିଯାଏ । କିନ୍ତୁ ଏହା ସତ୍ତ୍ୱେ ତାଙ୍କର ମନୋବଳ ଅତୁଟ ରହିଛି ଏବଂ ବୁଦ୍ଧି ମଧ ସେଇପରି ତୀକ୍ଷ୍ଣ ରହିଛି ।

୧୯୪୫ ମସିହା ଶେଷ ଭାଗରେ ହୋଇଥିବା ନିର୍ବାଚନରେ ସେ ଶ୍ରମିକ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ ପ୍ରସିଦ୍ଧ କଂଗ୍ରେସ ନେତା ମହମ୍ମଦ ହନିଫଙ୍କୁ ପରାଜିତ କରି । ସାରା ଭାରତରେ ଏହା ଏକ ଚମକ ସୃଷ୍ଟି କରିଥିଲା । ସେ ୧୯୪୯ ମସିହା ବିଫଳ ହୋଇଥିବା ରେଳବାଇ ଧର୍ମଘଟ ପରେ ପଳାତକ ହୋଇଥିଲେ । ତାଙ୍କ ନାମରେ ଗିରଫଦାରୀ ପରୱାନା ଜାରି ହୋଇଥିଲା । ରେଳବାଇ ଧର୍ମଘଟର ବିଫଳତା ପରେ ତାଙ୍କର କମ୍ୟୁନିଷ୍ଟ ପାର୍ଟିର ତତ୍‌କାଳୀନ ନୀତି ସହିତ ମତଭେଦ ସୃଷ୍ଟି ହେଲା ।

କିନ୍ତୁ ପାର୍ଟିର ଶୃଙ୍ଖଳା ମାନି ସେ ପଳାତକ ହେଲେ । ପଳାତକ ଅବସ୍ଥାରେ ଥିଲାବେଳେ ନେତୃତ୍ୱ ସହିତ ତାଙ୍କର ମତଭେଦ ତୀବ୍ର ହେଲା । ଏବଂ ଆମେସବୁ ଶୁଣିବାକୁ ପାଇଲୁ ଯେ ତାଙ୍କୁ ମାରି ଦିଆଯିବା ପାଇଁ ଆୟୋଜନ ହୋଇଥିଲା । କିନ୍ତୁ ତାହା ସଫଳ ହୋଇନାହିଁ । ଏହା ଅସ୍ୱାଭାବିକ ମନେହେଲା ନାହିଁ କାରଣ ସେତେବେଳେ ଏପରି ଘଟଣା ଘଟୁଥିଲା । ମୋହନ କୁମାର ମଙ୍ଗଲମ୍ ତେଲେଙ୍ଗାନା ସଶସ୍ତ୍ର ସଂଗ୍ରାମର ଏକ ଯୋଦ୍ଧା ଥିଲେ କିନ୍ତୁ ଏହି ସଂଗ୍ରାମ ସଫଳ ହେବ ନାହିଁ ବୋଲି ତାଙ୍କର ମତ ହେଲା । କିନ୍ତୁ ସେ ମତଭେଦକୁ ତେଲେଙ୍ଗାନା ଭିତରେ ପ୍ରକାଶ କରିବାକୁ ସାହସ କରିପାରିଲେ ନାହିଁ । ମତଭେଦ ଅର୍ଥ ମୃତ୍ୟୁ । ସେ ଯୋଗାଡ଼ଯନ୍ତ୍ର କରି କୌଣସିମତେ ସେ ଅଂଚଳରୁ ଖସି ଆସିଲା ପରେ ନିଜର ମତଭେଦକୁ ପ୍ରକାଶ କଲେ ।

Digitized by srujan ka@gmail.com

ମୋର ମନେ ପଡ଼ୁଚି । ସାରା ଭାରତରୁ ବିଭିନ୍ନ ପ୍ରଦେଶରୁ ବାମପନ୍ଥୀ ବିପ୍ଳବୀ ବନ୍ଦୀମାନଙ୍କୁ ନିଆଯାଇଥିଲା ଦିଲ୍ଲୀକୁ । ସେମାନଙ୍କୁ ବନ୍ଦୀ କରାଯାଇଥିଲା ନିର୍ଦ୍ଦିଷ୍ଟ ଅଭିଯୋଗ ଉପରେ ନୁହେଁ, ନିରାପତ୍ତା ଆଇନ ବଳରେ ଅଟକ ରଖାଯାଇଥିଲା । ପ୍ରାୟ ପାଞ୍ଚହଜାର ବନ୍ଦୀ ଯାଇଥିଲେ ଦିଲ୍ଲୀ । ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ବିପ୍ଳବୀ ସୋସାଲିଷ୍ଟ ପାର୍ଟି, ବିପ୍ଳବୀ କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧିମାନେ ସେଥିରେ ଅନ୍ତର୍ଭୁକ୍ତ ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ମୋହନ କୁମାର ମଙ୍ଗଲମ ତାଙ୍କର ଭାଇ ପି.ପି. କୁମାର ମଙ୍ଗଲମ୍, ବ୍ରିଗେଡିୟର ସେନା ବାହିନୀରେ (ପରେ ଭାରତୀୟ ସେନାବାହିନୀର ସେନାଧ୍ୟକ୍ଷ) ଏବଂ ବାପା ଡକ୍ଟର ପି. ସୋବରାୟନ ଇଦୋନେସିଆରେ ଭାରତର ରାଷ୍ଟ୍ରଦୂତ । ସେ କେନ୍ଦ୍ରରେ ବି ମନ୍ତ୍ରୀ ଥିଲେ । ଭାରତୀୟ କ୍ରିକେଟ କଣ୍ଟ୍ରୋଲ ବୋର୍ଡ଼ର ସଭାପତି ଭାବରେ ସେ ଏକ ଐତିହାସିକ ବିବୃତି ଦେଇଥିଲେ । ''କୌଣସି ଦେଶର କ୍ରୀଡ଼ା, ରାଜନୀତିରୁ ମୁକ୍ତ ରହି ପାରିବ ନାହିଁ । ସୁସ୍ଥ ରାଜନୀତି ସୁସ୍ଥ କ୍ରୀଡ଼ା ସୃଷ୍ଟି କରିବ, ପଙ୍କିଳ ରାଜନୀତି ପଙ୍କିଳ କ୍ରୀଡ଼ା ସୃଷ୍ଟି କରିବ ।'' ମୁଁ ଏହା ଲେଖୁଚି ୨୦୦୦ ମସିହା ଅଗଷ୍ଟ ମାସରେ । କ୍ରିକେଟ ସ୍କାମରେ କେବଳ ଭାରତବର୍ଷ ନୁହେଁ, ବହୁ ଦେଶର ବାୟୁମଣ୍ଡଳ ବିଷାକ୍ତ । କ୍ରିକେଟ ତାରକାମାନେ ଗଲାକାଲି ଆରାଧ୍ୟ ଦେବତା ଭଳି ଥିଲେ, ହେଲେ ଆଜି ସେମାନେ ଖସି ପଡ଼ୁଛନ୍ତି ମାଟିର ପିତୁଳା ପରି । ଯେଉଁମାନେ କାଲି ଜାତୀୟତାର ଡିଣ୍ଡିମ ପିଟୁଥିଲେ ଆଜି ସେମାନେ ଚୋରାଅର୍ଥ ପାଇଁ ନିଜର ବିବେକ, ଜାତୀୟ ସ୍ୱାଭିମାନକୁ ବିକ୍ରୀ କରିଦେଇଛନ୍ତି ବୋଲି ଅଭିଯୋଗରେ ଅଭିଯୁକ୍ତ !

ଡକ୍ଟର ସୋବରାୟନ ଲେଖିଥିଲେ ଏକ ଚିଠି ମୋହନ କୁମାରଙ୍କୁ ଜେଲଖାନାକୁ । ସେ ଚିଠିଟି ୪ ସାଥୀ ରାମଚନ୍ଦ୍ର ମିଶ୍ରଙ୍କ ବହି ଭିତରେ ଚାଲି ଆସିଥିଲା ।

ସେ ଚିଠିରେ ଯାହା ଲେଖିଥିଲେ ତାହା ମୋର ଅଦ୍ୟାପି ସ୍ମରଣ ଅଛି । ମୋହନ କୁମାର ମଙ୍ଗଲମ ପୁଲିସ ଗୁଳିରେ ନିହତ ହୋଇଛନ୍ତି ବୋଲି ଖବରକାଗଜମାନଙ୍କରେ ପ୍ରକାଶ ପାଇଲା । ଏ ସଂବାଦ ରେଡ଼ିଓ ଓ ଖବରକାଗଜରୁ ପାଇ ବିକ୍ଷୁବ୍ଧ ମୋହନକୁମାରଙ୍କ ମାଆ ଏକ ଚିଠି ଲେଖିଲେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କୁ । ସେଥିରେ ସେ ଲେଖିଥିଲେ ଯେ ଭାରତ ସରକାର ଓ ଭାରତର ଜନତାର ପ୍ରତିନିଧି ଭାବରେ ମୁଁ ମୋର ସ୍ୱାମୀ ଇଦୋନେସିଆରେ ଥିଲାବେଳେ ସମ୍ବାଦ ପାଇଲି ଯେ ମୋହନ ଆଉ ନାହିଁ । ପୁଲିସ ଗୁଳିରେ ତା'ର ମୃତ୍ୟୁ ଘଟିଛି । ମୋ ପୁଅ ରାଜନୈତିକ ମତବାଦ ଆମଠାରୁ ଭିନ୍ନ । କିନ୍ତୁ ଦେଶପ୍ରେମରେ ସେ ତ ଆମ ସମସ୍ତଙ୍କଠାରୁ ଆଗରେ । ଜୀବନର ସବୁ ସମ୍ଭୋଗକୁ ବର୍ଜନ କରି ସେ ଜୀବନକୁ ବାଜି ଲଗାଇ ଦେଇଛି ସାଧାରଣ ମଣିଷର ସ୍ୱାର୍ଥ ପାଇଁ, ଏବଂ ଆମର ପରିବାରର ଦେଶପ୍ରେମ କେଉଁ ଗୁଣରେ ଅନ୍ୟମାନଙ୍କଠାରୁ କମ୍ ? (ପ୍ରକୃତରେ ଡକ୍ଟର ସୋବରାୟନଙ୍କର ଦୁଇପୁଅ ବ୍ରିଗେଡିଅର ପି.ପି. କୁମାରମଙ୍ଗଲମ୍, ସାନ ପୁଅ ମୋହନ କୁମାରଙ୍କ ଛଡ଼ା ଝିଅ ଓ ଜୋଇଁ ପାର୍ବତୀ କ୍ରିଷ୍ଣନ ଏବଂ ତାଙ୍କର ସ୍ୱାମୀ ଏନ.କେ.

Digitized by srujan ka@gmail.com

କ୍ରିଷ୍ଣନ ଉଭୟ ଇଂଲଣ୍ଡରେ ଉଚ୍ଚଶିକ୍ଷା ପରେ ଆସି କମ୍ୟୁନିଷ୍ଟ ପାର୍ଟିରେ ଯୋଗଦିଅନ୍ତି ଏବଂ ପାର୍ଟିର କେନ୍ଦ୍ର କମିଟିର ସଭ୍ୟ ହୁଅନ୍ତି । ଠିକ୍ ସେଇପରି ବୋହ୍ରା ମଧ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ । ଏନ୍.କେ. କ୍ରିଷ୍ଣନ ଆଇ.ସି.ଏସ. ଛାଡ଼ି ଯୋଗ ଦିଅନ୍ତି ରାଜନୀତିରେ । ଏହା ସତ୍ତ୍ୱେ ଆପଣ ମୋହନର ବାପା ଓ ମାଆଙ୍କୁ ମୋହନର ମୃତ୍ୟୁ ସଂବାଦ ଜଣାଇ ନାହାନ୍ତି ? ଏହା ଶୁଣିବା ମୋ ପାଇଁ ଅସହ୍ୟ ।

ଉତ୍ତରରେ ସର୍ଦ୍ଦାର ପଟେଲ ତାଙ୍କୁ ଯେଉଁ ଚିଠି ଲେଖିଥିଲେ ତାହା ଗୁନ୍ଥା ଯାଇଥିଲା ଉକ୍ତ ଚିଠିରେ ।

ସେ ଲେଖିଥିଲେ ଯେ ମୋହନର ମୃତ୍ୟୁ ସଂବାଦ ଯେହେତୁ ଅସମର୍ଥିତ ଥିଲା ସେହି ହେତୁ ଏକ ଅସମର୍ଥିତ ସଂବାଦ ମୁଁ ଆପଣଙ୍କୁ ଜଣାଇବା ପାଇଁ ସାହସ କରି ପାରି ନ ଥିଲି । ସୁଖର କଥା, ସେ ସଂବାଦ ଭୁଲ ବୋଲି ପରେ ଜଣାପଡ଼ିଲା । ମୋହନର ରାଜନୈତିକ ମତବାଦ ଭିନ୍ନ ହୋଇପାରେ କିନ୍ତୁ ଦେଶପ୍ରେମ ବା ଆପଣଙ୍କ ପରିବାରର ଦେଶପ୍ରେମକୁ ନ୍ୟୁନ କରିବାର ପ୍ରଶ୍ନ ଉଠୁଛି କେଉଁଠୁ ?

ପରିଶେଷରେ ସୋବରାୟନ ଲେଖିଥିଲେ ଯେ ''ହଙ୍ଗେରୀରେ ବୈଦେଶିକ ମନ୍ତ୍ରୀ ଏବଂ ମୋର ସହପାଠୀ ବନ୍ଧୁ ଡକ୍ଟର କ୍ଲିସେଣ୍ଟିସଙ୍କୁ ଦେଶଦ୍ରୋହ ଅପରାଧରେ ଫାଶି ଦିଆଯାଇଥିବା ସଂବାଦ ମୋତେ ବ୍ୟଥିତ କରିଛି ।'' ସେ ଅକ୍ସଫୋର୍ଡ଼ରେ ମୋର ସହପାଠୀ ଥିଲେ । ତାଙ୍କ ଭିତରେ ମୁଁ ଦେଖିଥିଲି ଦେଶପ୍ରେମର ପ୍ରଜ୍ୱଳିତ ବହ୍ନି । ସାମ୍ରାଜ୍ୟବାଦ ଓ ଫାସିବାଦ ବିରୁଦ୍ଧରେ ତୀବ୍ର ଘୃଣା । ତାଙ୍କର କାର୍ଯ୍ୟ ସମସାମୟିକ ଆମ ସମସ୍ତଙ୍କୁ ଅନୁପ୍ରାଣିତ ଓ ମୁଗ୍ଧ କରିଥିଲା । ଏଭଳି ଜଣେ ବ୍ୟକ୍ତି ଯେ ଦେଶଦ୍ରୋହୀ ହୋଇପାରେ ଏହା ଭାବିବା ମୋ ପାଇଁ ବେଦନାଦାୟକ ଓ ଅସମ୍ଭବ । ସେ ପ୍ରକୃତରେ ଦେଶଦ୍ରୋହୀ ନା ଏହା ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରର ଏବଂ ସେଇ ଷଡ଼ଯନ୍ତ୍ର ସେ ଶିକାର କି ନୁହନ୍ତି ଏହି ପ୍ରଶ୍ନ ମୋତେ ଉଦ୍‌ବେଳିତ କରୁଛି ।

ପ୍ରକୃତରେ କିଛି ବର୍ଷ ପରେ ସେହି ହଙ୍ଗେରୀ ସରକାର ଏକ ଉଦ୍‌ବେଳନ ପରେ ସ୍ୱୀକାର କଲେ ଯେ ଡକ୍ଟର କ୍ଲିସେଣ୍ଟିସ ଥିଲେ ନିର୍ଦ୍ଦୋଷୀ ଏବଂ ତାଙ୍କୁ ଭୁଲ୍‌ରେ ଫାଶି ଦିଆ ହୋଇଯାଇଛି ।

ଠିକ୍ ସେଇପରି ସୋଭିଏଟ ୟୁନିଅନ, ଚେକୋସ୍ଲୋଭାକିଆ, ରୁମାନିଆ, ପୋଲାଣ୍ଡରେ ମଧ ଘଟିଛି । ଏହା ଉକ୍ତ ଦେଶମାନଙ୍କରେ ସ୍ୱୀକାର କରାଯାଇଛି ।

ମତଭେଦ ଦେଶଦ୍ରୋହ ନୁହେଁ, କମ୍ୟୁନିଷ୍ଟମାନେ ଏହା ସ୍ୱୀକାର କରୁ ନ ଥିଲେ ଏବଂ ସେଇ କାରଣରୁ କମ୍ୟୁନିଷ୍ଟ ପାର୍ଟିରୁ ମତଭେଦ ଜନିତ ବା ଅନ୍ୟ କୌଣସି କାରଣରୁ ବାହାରି ଯାଇଥିବା ବ୍ୟକ୍ତିମାନଙ୍କୁ କମ୍ୟୁନିଷ୍ଟମାନେ ଶତ୍ରୁ ବୋଲି ବିଚାର କରି ଆସିଛନ୍ତି ।

ଚୀନା କମ୍ୟୁନିଷ୍ଟ ପାର୍ଟି ଭିତରେ ହତ୍ୟା ହୋଇନାହିଁ, ଫାଶି ଦିଆଯାଇ ନାହିଁ, କିନ୍ତୁ ହଇରାଣ, ଅପମାନ ଦିଆଯାଇଛି ପ୍ରଭୃତ । କୁହାଯାଏ ଚୀନା ପ୍ରଧାନମନ୍ତ୍ରୀ ଚାଉ ଏନ ଲାଇ ବା

Digitized by srujan ka@gmail.com

ଚୀନା କମ୍ୟୁନିଷ୍ଟ ପାର୍ଟିର ତାତ୍ତ୍ୱିକ ଲିଓ ସାଓ ଚୀଙ୍କୁ ବିଷ୍ଠା ବୋହିବା ପାଇଁ ମଧ ବାଧ କରାଯାଇଛି । ସେମାନଙ୍କର ମୃତ୍ୟୁକୁ ତାହା ତ୍ୱରାନ୍ୱିତ କରିଛି । କମ୍ୟୁନିଷ୍ଟ ପାର୍ଟିର ଶୃଙ୍ଖଳା ପାଇଁ ସେମାନେ ସର୍ବଜନବିଦିତ । କିନ୍ତୁ ସେମାନଙ୍କ ସହିତ ମତଭେଦ ହେଲେ, ସେମାନେ ତୁମକୁ ଶତ୍ରୁ ଶିବିରରେ ଭର୍ତ୍ତି କରିବା ପର୍ଯ୍ୟନ୍ତ ନେଇଯାଆନ୍ତି । ସେଇ ଯୋଗୁଁ ଡାର୍କନେସ ଆଟ ନୁନ (Darkness at noon)ର ଲେଖକ ଆର୍ଥର କୋଏସଲର ଲେଖିଛନ୍ତି The future war of liberation will not be between communists and anti communists but will be between communists and ex-communists. ଯେଉଁମାନେ Animal Farm ବହି ପଢ଼ିଥିବେ ସେମାନେ ମଧ ଏହି ପ୍ରାକ୍ତନ କମ୍ୟୁନିଷ୍ଟମାନଙ୍କର ଭବିଷ୍ୟତ ବାଣୀ କଥା ଜାଣିଥିବେ ।

ଏଇ ଲେଖକମାନେ କମ୍ୟୁନିଷ୍ଟ ବିରୋଧୀ ଉଦ୍‌ଗୀରଣରେ ଆକ୍ରାନ୍ତ ସତ୍ୟ, କିନ୍ତୁ ଅନ୍ତର୍ନିହିତ ସତ୍ୟକୁ ବି ତ ଏଡ଼ାଇ ଦିଆଯାଇ ପାରିବ ନାହିଁ !

ବୈଦ୍ୟନାଥ ରଥ ଫେରିଥିଲେ । ଦୁଇବର୍ଷ ପାଇଁ ରାଜ୍ୟସଭାର ସଭ୍ୟ ଥିଲେ ଏବଂ ବେଶ ସୁନାମ ଅର୍ଜନ ମଧ କରିଥିଲେ । ସେ ପ୍ରଥମ କିସ୍ତିରେ ବ୍ୟାଲଟ ଆଉଟ ହୋଇ ଯାଇଥିଲେ । କିନ୍ତୁ ସେ ବିଦାୟ ନେବାର ଅନେକ ବର୍ଷ ପରେ ସାର ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଓଡ଼ିଶା ଗସ୍ତରେ ଆସିଥିଲେ । ତାଙ୍କ ସାଙ୍ଗରେ minister in-attendance ଭାବରେ ଆସିଥିଲେ ୰ ରାଧାକୃଷ୍ଣ ବିଶ୍ୱାସରାୟ । ସେ ବର୍ତ୍ତମାନ ବସ୍ଥୁତ । କିନ୍ତୁ କୋରାପୁଟ ଜିଲ୍ଲାର ରାଧାକୃଷ୍ଣ ବିଶ୍ୱାସରାୟ ଏକଦା କେବଳ ଓଡ଼ିଶାର ମନ୍ତ୍ରୀ ନ ଥିଲେ, ଥିଲେ ତତ୍‌କାଳୀନ ପ୍ରଦେଶ କଂଗ୍ରେସ କମିଟିର ସଭାପତି । ହୀରାକୁଦ ବନ୍ଧ ଦେଖିଲାବେଳେ ହଠାତ ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ ପଚାରିଲେ ଶ୍ରୀ ବିଶ୍ୱାସରାୟଙ୍କୁ । ବୈଦ୍ୟନାଥ ରଥଙ୍କ ଘର କେଉଁଠି ତମେ ଜାଣ ? କେତେ ବାଟ ଏଠାରୁ ? ଦୂରବାଟ ବୋଲି ଶୁଣିଲା ପରେ ସେ କହିଲେ ଯେ ପାଖ ବାଟ ହୋଇଥିଲେ ତାଙ୍କୁ ଦେଖିବାକୁ ଯାଇଥାନ୍ତି । ରାଧାକୃଷ୍ଣ ବିଶ୍ୱାସରାୟ ପଚାରିଲେ ବୈଦ୍ୟନାଥ ବାବୁ ତ ମାତ୍ର ଦୁଇବର୍ଷ ପାର୍ଲ୍ୟାମେଣ୍ଟ ସଭ୍ୟ ଥିଲେ । ଆପଣ ତାଙ୍କୁ କିମିତି ମନେ ରଖିଛନ୍ତି । ତାଙ୍କୁ ଆଶ୍ଚର୍ଯ୍ୟ କରି ସର୍ବପଲ୍ଲୀ ରାଧାକ୍ରିଷ୍ଣନ କହିଲେ ଯେ ସେ ପ୍ରତ୍ୟେକ ବିଷୟ ଉପରେ ହୋମ-ଓ୍ୱାର୍କ (Home work) କରି ଆସନ୍ତି । ବିନା ପ୍ରସ୍ତୁତିରେ ସେ କେବେ କିଛି କହନ୍ତି ନାହିଁ, ଏବଂ ସେ ପଣ୍ଡିତ ନେହେରୁଙ୍କୁ ଭୟ କରନ୍ତି ନାହିଁ ଯଦିଓ ସମସ୍ତେ ତାଙ୍କୁ ଭୟ କରନ୍ତି । ଏଭଳି ନିର୍ଭୀକ ମଣିଷ ଖୁବ୍ କ୍ୱଚିତ୍ ମିଳନ୍ତି ।

ସମ୍ବଲପୁରରେ ପହଞ୍ଚିଲୁ । ରହିବା ପାଇଁ କ୍ୱାଟର୍ସ ହେଉଛି ସମ୍ବଲପୁର ସହର ଉପକଣ୍ଠରେ ଥିବା ମୋତିଝରଣ ଜଙ୍ଗଲ ଭିତରେ । ଗୋଟିଏ ରେଞ୍ଜ ଅଫିସରଙ୍କ ଘର, ଗୋଟିଏ ତାଙ୍କର ଅଫିସ ଘର, ଦୁଇଟି ଫରେଷ୍ଟ ଗାର୍ଡ଼ ରହିବା ଘର ଏବଂ ଚତୁର୍ଥଟି ହେଉଛି ଫରେଷ୍ଟରଙ୍କ ରହିବା ଘର । ଆମେ ସବୁ ପହଞ୍ଚିଲାବେଳକୁ ସେ ଘରଟି ଖାଲିଥାଏ । ସେଇ ଘରେ କୁଆଡ଼େ ଭୂତ ଅଛି । ସେଇଯୋଗୁଁ କେହି ରହୁ ନ ଥାନ୍ତି । ଥରେ ସମ୍ବଲପୁରରେ କଲେରା ବ୍ୟାପିଲା । ଭୟାନକ

Digitized by srujan ka@gmail.com

କଲେରା । ସେତେବେଳେ ସମ୍ବଲପୁରର ଜନସାଧାରଣ ପିଇବା ପାଣି ପାଇଁ 'ରାମ ସାଗର' ପୋଖରୀ, ପଲଟଣ କୁଆଁ (ବର୍ତ୍ତମାନ ଚନ୍ଦ୍ରଶେଖର ଜିଲ୍ଲା ସ୍କୁଲ ସାମନା ସମ୍ବଲପୁରକୁ ପାଣି ଯୋଗାଇବା ପାଇଁ ପଲଟନ୍ ଅର୍ଥାତ ସୈନ୍ୟବାହିନୀଙ୍କୁ ଲୋଡ଼ା ଯାଇଥିଲା କୁଅଟିଏ ଖୋଳିବା ପାଇଁ) ବା ମହାନଦୀ ବେଡ଼୍‌ର ଚୁଆ ଉପରେ ନିର୍ଭର କରୁଥିଲେ । କଲେରା ବ୍ୟାପିବା ସହିତ ବାଲିରେ ଥିବା ଚୁଆ ଏବଂ ରାମସାଗର ବିଷାକ୍ତ ହୋଇଗଲା । କେବଳ ବାକି ରହିଲା ପଲଟନ୍ କୂଅ ! ସେତେବେଳେ ମୋତିଝରଣ ଜଙ୍ଗଲ ଭିତରେ ଥିଲା ଦୁଇଟି କୂଅ ଏବଂ ଗୋଟିଏ ପୋଖରୀ । ପ୍ରତିଦିନ ସେଠାରେ ଶହ ଶହ ଲୋକ ଜମାହୁଅନ୍ତି ପିଇବା ପାଣି ପାଇଁ । ତାର ବାଡ଼ ଦେଇ ସେ ଦୁଇଟି କୂଅକୁ ଘେରା ଯାଇଥାଏ । କାହାରିକୁ ବାଲଟି ବା ଗରା ବୁଡ଼ାଇବାକୁ ଦିଆଯାଏନା, ସଂକ୍ରମଣର ଭୟରେ । ଜଣେ ଫରେଷ୍ଟ ଗାର୍ଡ଼ କେବଳ ପାଣିଦେବା ପାଇଁ ନିଯୁକ୍ତ ଥାଏ ।

ସମ୍ବଲପୁରରେ ଅସହ୍ୟ ଗରମ, ସେ ଉତ୍ତାପରୁ ରକ୍ଷା ପାଇବା ପାଇଁ ସମ୍ବଲପୁର ଉପକଣ୍ଠରେ ଦୁଇଟି ପ୍ରାକୃତିକ ଜଙ୍ଗଲକୁ ସୁରକ୍ଷିତ କରି ରଖାଯାଇଥିଲା, ମୋତିଝରଣ ଓ ବୁଢ଼ାରଜା ପାହାଡ଼ । ବୁଢ଼ାରଜା ବର୍ତ୍ତମାନ ସଂପୂର୍ଣ୍ଣ ଲଣ୍ଡା ପାହାଡ଼, ମଣିଷର ଦୟାରୁ ମୋତିଝରଣ କିଛି ଏ ପର୍ଯ୍ୟନ୍ତ ଅଛି । ତାକୁ ନଷ୍ଟକରିବା ଉଚିତ ହେବ ନାହିଁ, ସମ୍ବଲପୁରର ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ।

ମୋତିଝରଣ ଜଙ୍ଗଲ ବେଶ୍ ଗହଳିଆ ଜଙ୍ଗଲ । ଶାଳ, ମହୁଲ, ପିଆଶାଳ ଗଛରେ ଭରା । ଚାରକୋଳି, କଣ୍ଟେଇ କୋଳି ପ୍ରଚୁର । ପ୍ରତି ଗଛ ମୂଳରେ ଗୋଟିଏ ହୁଙ୍କା ଏବଂ ପ୍ରତି ହୁଙ୍କାରେ ମେଞ୍ଚା ମେଞ୍ଚା ସାପ । ନାଗ, ଗୋଖର, କଲୈଦ୍ ବହୁ ବିଷଧର ସର୍ପ । ସେଇଯୋଗୁଁ ପ୍ରତି ଘର ଚାରିପଟରେ ସର୍ପଗନ୍ଧା ଗଛ । ତଥାପି ସାପକୁ ଦେଖିବାକୁ ମିଳେ ଘର କାନ୍ଥରେ, ଗୁହାଳ ଘରେ, ପାଇଖାନା ତଳେ ।

ସମ୍ବଲପୁରରେ ରହିଛି ଅନେକ ବର୍ଷ । ପରେ ବି ଯାଇଛି ଅନେକଥର । କେବେ କୌଣସି ଠାରେ ଅସୂୟା ଭାବ ଦେଖିନାହିଁ । ସମ୍ବଲପୁରରେ କେବେ ଏଇ 'କଟକିଆ ବିରୋଧୀ' ମନୋଭାବ ଜନ୍ମହେଲା କହିପାରିବି ନାହିଁ । ଥଟ୍ଟାରେ କିଏ କେଉଁଠି କହିଥିବ ସେଇଟା ତ ସାଧାରଣ ମନୋଭାବ ନୁହେଁ । ସେମିତି କ'ଣ ଗଞ୍ଜାମରେ ବା ବାଲେଶ୍ୱରରେ ଦେଖାଯାଇ ନାହିଁ ? ସମ୍ବଲପୁରରେ ଆମେ ପହଞ୍ଚିଲା ବେଳକୁ ସୁବୋଧ ପଟ୍ଟନାୟକ, ଗୋକୁଳାନନ୍ଦ ପଟ୍ଟନାୟକ (କବିରାଜ) ସମ୍ବଲପୁରର ଅଧିବାସୀ ବା ସ୍ଥାୟୀ ବାସିନ୍ଦା । ସେମାନେ ବେଶ୍ ପ୍ରତିଷ୍ଠିତ ଏବଂ ସମ୍ମାନିତ ବ୍ୟକ୍ତି । ପରେ ଜାଣିବାକୁ ପାଇଲି ଯେ ଅନେକ ବ୍ରାହ୍ମଣ ପୁରୀ ଅଞ୍ଚଳରୁ ଯାଇ ସେଠାରେ ବସତି ସ୍ଥାପନ କରିଛନ୍ତି ଏବଂ ପ୍ରତିଷ୍ଠିତ ମଧ୍ୟ ହୋଇଛନ୍ତି । ସବୁ ଉତ୍କଳୀୟ ବ୍ରାହ୍ମଣ ଯାଇଛନ୍ତି ଏ ପଟରୁ । ସେମାନଙ୍କ ଭିତରୁ ଅନେକ ସାମର୍ଥ୍ୟ ହୋଇଚନ୍ତି, ପ୍ରତିଷ୍ଠିତ ହୋଇଛନ୍ତି । ସେମାନେ ଆପଣାକୁ

Digitized by srujan ka@gmail.com

''ସମ୍ବଲପୁରିଆ'' କହି ଯେଭଳି ଗର୍ବିତ ମନେ କରିଛନ୍ତି, ସମ୍ବଲପୁର ସେମାନଙ୍କୁ ନେଇ ସେଇପରି ଗର୍ବିତ ହୋଇଛି ।

ସମ୍ବଲପୁରକୁ ଉତ୍କଳ ସମ୍ମିଳନୀର ଜନ୍ମପୀଠ ବୋଲି କୁହାଯାଏ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି କରିବା ପାଇଁ ଯେଉଁମାନେ ପାଇଓନିଅର ସେମାନଙ୍କ ଭିତରେ ସମ୍ବଲପୁରର ଚନ୍ଦ୍ରଶେଖର ବେହେରା, ଗଙ୍ଗାଧର ମେହେର ପ୍ରମୁଖ ଅନ୍ୟତମ । କେବଳ ସେତିକି ନୁହେଁ ଭାରତବର୍ଷର ବହୁ ବିଶିଷ୍ଟ ବ୍ୟକ୍ତି ମଧ୍ୟ ସମ୍ବଲପୁରରେ ରହି ଆପଣାର କୃତି ପ୍ରକାଶନ କରିଛନ୍ତି । ସେମାନଙ୍କ ମଧ୍ୟରେ ପ୍ରସିଦ୍ଧ ଅହମୀୟ କବି ବ୍ରଜନାଥ ବେଜ୍‌ବରୁଆ ଅନ୍ୟତମ ।

ସେ ସମ୍ବଲପୁରରେ ଏକ କାଠ କଣ୍ଟ୍ରାକ୍ଟର ପାଖରେ କାମ କରୁଥିଲେ । ସମ୍ବଲପୁର ହେଉଛି ପଲିଟିକାଲ ଏଜେଣ୍ଟଙ୍କ ରହଣୀ ସ୍ଥାନ । ସେ ହେଉଛନ୍ତି ବିହାର, ଓଡ଼ିଶା, ମଧ୍ୟପ୍ରଦେଶ ଗଡ଼ଜାତମାନଙ୍କ ପାଇଁ ନିଯୁକ୍ତ ପଲିଟିକାଲ ଏଜେଣ୍ଟ ଏବଂ ବହୁ ବିଶିଷ୍ଟ ବ୍ୟକ୍ତିମାନେ ଏଇ ପଲଟିକାଲ ଏଜେଣ୍ଟ ପଦବୀ ମଣ୍ଡନ କରିଛନ୍ତି । ମୋର ମନେ ଥିବା ଭିତରେ ସାର ଇସକନ୍ଦର ମିର୍ଜା ଅନ୍ୟତମ, ଯେ ପରେ ପାକିସ୍ଥାନର ରାଷ୍ଟ୍ରପତି ହୋଇଥିଲେ ।

ମୋର ମନେପଡୁଛି । ଜଙ୍ଗଲ ଭିତରେ ଫରେଷ୍ଟ ଅଫିସରମାନଙ୍କର କ୍ଷମତା ଅସୀମ । ସମ୍ବଲପୁରରେ ରହନ୍ତି ପଲିଟିକାଲ ଏଜେଣ୍ଟ । କିନ୍ତୁ ନିକଟତମ ଗଡ଼ଜାତ ହେଉଛି ବାମଣ୍ଡା । ଆଖପାଖର ସବୁ ଜଙ୍ଗଲ ସରକାରୀ ଜଙ୍ଗଲ । ଥରେ ୧୯୪୩-୪୪ ମସିହାର କଥା । ଠିକ୍ ବର୍ଷ ମନେ ପଡୁନାହିଁ । ଆମେ ରେଙ୍ଗାଲିରେ ଥାଉଁ । ହଠାତ୍ ରାତିରେ ପାଖ ପରପାଟି ପାହାଡ଼ର ଜଙ୍ଗଲରେ ବନ୍ଧୁକ ଗୁଳିର ଶବ୍ଦ ହେଲା । ନିଶ୍ଚୟ ଜନ୍ତୁ ଦେହରେ ବାଜିଛି । କାରଣ ବନ୍ଧୁକ ଗୁଳିର ଶବ୍ଦ ଲମ୍ବି ଯାଇ ନାହିଁ । ଠକ୍ କରି ବନ୍ଦ ହୋଇ ଯାଇଛି । ବାପା ତାଙ୍କର ଦୁର୍ଦ୍ଧର୍ଷ ଫରେଷ୍ଟର କାଳୀଚରଣ ଶତପଥୀଙ୍କୁ ପଠାଇଲେ ଜଙ୍ଗଲକୁ । ସେ ଦଳବଳ ନେଇ ପହଞ୍ଚିଲା ବେଳକୁ ଏକ ମିରିଗ ଶିକାର ହୋଇ ଗାଡ଼ିରେ ଲୋଡ଼୍ କରାଯାଉଛି । ସେ ସମସ୍ତଙ୍କୁ ବାନ୍ଧି ଆଣିଲେ । ଏତେ ଲୋକ ଦେଖି ସେମାନେ ଡରି ଯାଇଥିଲେ କିନ୍ତୁ ବନ୍ଧୁକ ଉଠାଇବା ପାଇଁ ସେମାନେ ସୁଯୋଗ ପାଇ ନ ଥିଲେ ।

ସକାଳୁ ହଇଚଇ କାଣ୍ଡ । ପଲିଟିକାଲ ଏଜେଣ୍ଟ କାଲି ରାତିରେ ଶିକାରକୁ ଯାଇଥିଲେ, ଫେରି ନାହାନ୍ତି । ବାପା ବା କାଳୀଚରଣ କି ଜାଣନ୍ତି ଯେ କାହାକୁ ବାନ୍ଧି ଆଣିଛନ୍ତି ବୋଲି । ଖବର ପାଇ ସମସ୍ତେ ଦୌଡ଼ିଲେ । ଡି.ଏଫ.ଓ., କଲେକ୍ଟର, ଡକ୍ଟର ମୁନି ସମସ୍ତେ । ଲାଜରେ ପଲିଟିକାଲ ଏଜେଣ୍ଟ ପରିଚୟ ଦେଇନାହାନ୍ତି । ପାଞ୍ଚଶହ ଟଙ୍କା ଜୋରିମାନା ଦେଇ ମୁକୁଳିଲେ ସେ । ସେତେବେଳକୁ ସମ୍ବଲପୁରରୁ ବଡ଼ ବଡ଼ ହାକିମ ସବୁ ପହଞ୍ଚି ସାରିଛନ୍ତି । ବର୍ତ୍ତମାନ କାଳୀଚରଣ ଓ ବାପାଙ୍କର କ'ଣ ହେବ ? ଯଥା ସମୟରେ କଞ୍ଜରଭେଟର ନିକଲସନ୍ ମଧ୍ୟ ଏ ଖବର ପାଇଲେ । କାଳୀଚରଣ ପ୍ରମୋଶନ ପାଇଲେ ଏବଂ କମେଣ୍ଡେସନ୍ ପାଇଲେ ବାପା ।

Digitized by srujan ka@gmail.com

ସେଥିପାଇଁ ପୁଣି ଏଚ.ଏଫ.ମୁନି ସୁପାରିଶ କରିଥିଲେ ଯେ ସେମାନେ କର୍ତ୍ତବ୍ୟ କରିଛନ୍ତି ।

ଠିକ୍ ସେଇପରି ଆଉ ଏକ ଘଟଣା । ସମ୍ବଲପୁରରେ କମିଶନର ଥାଆନ୍ତି ନୀଳମଣି ସେନାପତି । ପ୍ରବଳ ପ୍ରତାପୀ ଏବଂ ଦକ୍ଷ । ସେ ଏକ ଦକ୍ଷ ଶିକାରୀ ବି ଥିଲେ ଏବଂ ଜନ୍ତୁ (ବିଶେଷତଃ ବାଘ) ଉପରେ ବିଶେଷଜ୍ଞ ଥିଲେ । ତାଙ୍କ ରଚିତ ବହି ଓ ନିବନ୍ଧାବଳୀ ଜନ୍ତୁମାନଙ୍କ ଉପରେ ଅନେକ ଆଲୋକପାତ କରିଛି ।

ନୀଳମଣି ସେନାପତି ଜଣେ ଦକ୍ଷ ଅଫିସର ଥିଲେ । ତାଙ୍କର 'କନ୍ୟା' ହେଉଛନ୍ତି ଡଲି ସେନାପତି । ସେ ପ୍ରକୃତରେ ତାଙ୍କର କନ୍ୟା ନୁହନ୍ତି । ସମୟର ବାତଚକ୍ରରେ ସେ ତାଙ୍କର 'ପାଳିତା କନ୍ୟା' ହୋଇଥିଲେ । ଏଇପରି ଘଟଣା ମଧ ଘଟିଛି ମଧୁସୂଦନ ଦାସଙ୍କ କ୍ଷେତ୍ରରେ । ଶୈଳବାଳା ଓ ସୁଧାଂଶୁବାଳା ତାଙ୍କର ତଥାକଥିତ 'ପାଳିତା କନ୍ୟା' । ପାରିବାରିକ ଦୁର୍ଘଟଣା ଯୋଗୁଁ ବିପତ୍ନୀକ ମଧୁସୂଦନଙ୍କର ସେମାନେ ହେଲେ 'ପାଳିତା କନ୍ୟା' । ଏବଂ ମୋ ଭଳି ବହୁ ଲୋକଙ୍କର ମତ ଯେ ଏହି ପାଳିତା କନ୍ୟାମାନଙ୍କ ଯୋଗୁଁ ହିଁ ଓଡ଼ିଆ ଭାଷା ଓ ଜାତିର ମଉଡ଼ମଣି ମଧୁସୂଦନ ବଙ୍ଗଳା ଭାଷାରେ କଥାବାର୍ତ୍ତା କରୁଥିଲେ ଏବଂ ଓଡ଼ିଶା ଛାଡ଼ି ଆଉ ବାହାରକୁ ଗଲେ ନାହିଁ । ଏଇ ବିଶାଳ ବହୁମୁଖୀ ପ୍ରତିଭା ଓଡ଼ିଶା ଭିତରେ ହିଁ ସୀମିତ ହୋଇ ରହିଗଲା ।

ନୀଳମଣି ସେନାପତି 'ସାହେବ' ଥିଲେ । ବର୍ତ୍ତମାନ ପୁରୁଣା ସର୍କିଟ ହାଉସ ଥିଲା ତାଙ୍କର ସରକାରୀ ନିବାସ । ତାଙ୍କର ବାପା ଖାଲି ଗେଞ୍ଜିଟିଏ ପିନ୍ଧି ବାହାରକୁ ଚାଲି ଆସିବାରୁ ସେ ତାଙ୍କୁ ପିଟି ପିଟି ଦେଇ ରାଜରାସ୍ତା ଉପରେ ଛାଡ଼ି ଦେଇ ଆସିଲେ । ତାଙ୍କର ପାରିବାରିକ ସଂପର୍କୀୟମାନେ ରହୁଥିଲେ ମଙ୍ଗଳାବାଗ ଥୋରିଆ ସାହିରେ (ବର୍ତ୍ତମାନ ପଟ୍ଟନାୟକ କଲୋନୀ ପାଖ) । ସେ ଯାଇ ସେଇଠି ଆଶ୍ରୟ ନେଲେ । ମୃତ୍ୟୁ ପର୍ଯ୍ୟନ୍ତ ସେ ଆଉ ପୁଅ ମୁହଁ ଚାହିଁ ନାହାନ୍ତି ।

ନୀଳମଣିବାବୁଙ୍କର ଶିକାର ଏବଂ ବାଘ ଉପରେ ଅଭିଜ୍ଞତା ଅନେକ କାହାଣୀ ଆମକୁ ଦେଇଛି । ଆଠମଲ୍ଲିକରେ ଏକ ବାଘ ମାତିଥିଲା । ସେ କେବଳ କୁଆଁରୀ ଝିଅମାନଙ୍କୁ ହିଁ ଖାଉଥିଲା ! କିମିତି ସେ ଜାଣୁଥିଲା କୁଆଁରୀ ଝିଅ ବୋଲି ? ଠିକ୍ ସେଇପରି ଆଉ ଏକ ବାଘ କେବଳ ଖାଉଥିଲା ପୋଷ୍ଟ ପିଅନମାନଙ୍କୁ । ଡ୍ରେସରେ ଥିବା ପୋଷ୍ଟପିଅନମାନେ ଥିଲେ ତାର ଶରବ୍ୟ । ତେଣୁ ପୋଷ୍ଟ ପିଅନମାନେ ସେଇ ରାସ୍ତାରେ ଆଉ ଡ୍ରେସ ପିନ୍ଧି ଗଲେ ନାହିଁ ।

ନୀଳମଣିବାବୁ ଥିଲେ ସମ୍ବଲପୁରର କମିଶନର । ସମ୍ବଲପୁର ବି ଥିଲା ନନ୍-ରେଗୁଲେଟେଡ୍ ଅଞ୍ଚଳ । ସୁତରାଂ କ୍ଷମତା ଅପରିସୀମ । ସେତେବେଳେ ମହାନଦୀରେ ରେଳ ବା ଅନ୍ୟ କିଛି ପୋଲ ହୋଇନାଇଁ । କିନ୍ତୁ ଖରାଦିନେ ଫେୟାର ୱେଦର ରୋଡ଼ ଥାଏ ।

ଦିନେ କମ୍‌ଗାଁ ବୋଲି ଗୋଟିଏ ସ୍ଥାନରେ ଅମୃତଲାଲ ବାନାର୍ଜୀ ନାମକ ଜଣେ ବ୍ୟକ୍ତି ଫରେଷ୍ଟ ରେଞ୍ଜ ଅଫିସର ଥିଲେ । ସେ ଘର ବାରଣ୍ଡାରେ ଶୋଇଥାନ୍ତି । ହଠାତ୍ ସେଇ ବାଟ ଦେଇ ଗୋଟିଏ କାର୍ ଗଲା । ସେତେବେଳେ କାର୍‌ମାନଙ୍କର ସଂଖ୍ୟା ହାତ ଗଣନ୍ତା । କାହା

Digitized by srujan ka@gmail.com

ଗାଡ଼ି ଗଲା ଫରେଷ୍ଟ ରୋଡ଼ରେ, ପୁଣି ରାତିରେ ? ଅମୃତଲାଲଙ୍କ ସନ୍ଦେହ ହେଲା ଏବଂ ସେ ନିଜ ଖଟଟିକୁ ନେଇଗଲେ ରାସ୍ତା ଉପରକୁ । ପାଖରେ ଥିଲା କାଠର ଏକ ପୋଲ । ସେଥିରୁ ପଟା କାଢ଼ିଦେଇ ଅମୃତଲାଲ ଖଟଟିକୁ ତାରି ଉପରେ ଥୋଇ ଶୋଇ ପଡ଼ିଲେ ଏବଂ ପାଖରେ କିଛି ଲୋକଙ୍କୁ ଲୁଚି ରହିବାକୁ ନିର୍ଦ୍ଦେଶ ଦେଲେ । ଯଥା ସମୟରେ ଗାଡ଼ିଟି ପହଞ୍ଚିଲା ଏବଂ ବାଧ ହୋଇ ଅଟକି ଗଲା । ପଛ ଟ୍ରଲରରେ ପଡ଼ି ରହିଛି ଏକ ଗୁଳିବିଦ୍ଧ ମୃଗ । ଆପଣାର ପୁଲିସ ପାୱାର ପ୍ରୟୋଗ କରି ସେ ଗାଡ଼ିରେ ବସିଥିବା ବ୍ୟକ୍ତିଙ୍କୁ ବାନ୍ଧି ପକାଇଲେ, ଡ୍ରାଇଭରକୁ ନିର୍ଦ୍ଦେଶ ଦେଲେ ଗାଡ଼ି ସମ୍ବଲପୁର ନେବା ପାଇଁ । ଗାଡ଼ି ଯଥା ସମୟରେ ବାରପାହାଡ଼ ପାଖରେ ପହଞ୍ଚିଲା । ତା ପରେ ଫେୟାର ୱେଦର ରୋଡ୍ ଏବଂ ଆଉ ପଟରେ ସମ୍ବଲପୁର ସହର । ହଠାତ୍ ବନ୍ଧା ହୋଇଥିବା ଗାଡ଼ିର ମାଲିକ କହିଲେ, ଗାଡ଼ି ଏଇଠି ରଖ । ତା'ପରେ ସେ କହିଲେ ଯେ ମୁଁ ସମ୍ବଲପୁର କମିଶନର ନୀଳମଣି ସେନାପତି । ମୋତେ ଏଇପରି ଅବସ୍ଥାରେ ସମ୍ବଲପୁର ନିଅ ନାହିଁ । ମୋତେ ଯାହା ଜୋରିମାନା କରୁଛ କର । ମୋ ଡ୍ରାଇଭର ଯାଇ ଘରୁ ଟଙ୍କା ନେଇ ଆସିବ । ପାଞ୍ଚଶହ ଟଙ୍କା ଜୋରିମାନା ଦେଇ ସେ ସେଥିରୁ ମୁକୁଳିଲେ । ସେ ରିପୋର୍ଟ କଲେ ଏବଂ ଅମୃତଲାଲ ବାନାର୍ଜୀ ବି ଘଟଣା ସଂପର୍କରେ ରିପୋର୍ଟ କଲେ ।

କ'ଣ ହେଲା ଅମୃତଲାଲ ବାନାର୍ଜୀଙ୍କର ? ସେ ପ୍ରମୋଶନ ପାଇଲେ ଆପଣାର କର୍ତ୍ତବ୍ୟ ସୁଚାରୁରୂପେ ତୁଲାଇଥିବା ଯୋଗୁଁ । ସେ ହିଁ ଓଡ଼ିଶା ବନ୍ୟବିଭାଗର ଏକମାତ୍ର ବ୍ୟକ୍ତି ଯେ ଫରେଷ୍ଟ ଗାର୍ଡ଼ ପଦବୀରୁ ଉଠି ଡି.ଏଫ.ଓ. ହୋଇ ପାରିଥିଲେ । ନୀଳମଣି ବାବୁ ସମ୍ବଲପୁରରୁ ବିଦାୟ ନେଲେ ବଦଳି ହୋଇ ।

୧୯୫୩-୫୪ ମସିହାର କଥା ବୋଲି ମନେପଡୁଛି । ଅନୁଗୋଳର ଟିକରପଡ଼ା ଜଙ୍ଗଲ ଅଭୟାରଣ୍ୟ ଭାବରେ ଘୋଷିତ ହୋଇ ସାରିଥାଏ । ସେତେବେଳେ ସେ ଜଙ୍ଗଲରେ ଏକ ବିରାଟ ବାଇସନ୍ ବା ଗୟଳ ବୁଲୁଥାଏ । କାହାରିକୁ କିଛି କରେ ନାହିଁ । ଠିଆ ହୋଇ ରହେ । ଲୋଭନୀୟ ଚେହେରା, ବେଶ୍ ମାଜେଷ୍ଟିକ୍ । ବିଶାଳ ଶିଙ୍ଗ, ଅନେକ ଦର୍ଶକ ଯାଆନ୍ତି ତାକୁ ଦେଖିବା ପାଇଁ ।

ଅନୁଗୋଳରେ ହେଉଥାଏ ବନ୍ୟବିଭାଗ ଅଫିସରମାନଙ୍କର ଏକ ସମ୍ମିଳନୀ । ଉଦ୍‌ବୋଧନ ଦେଉଥାନ୍ତି ଜଙ୍ଗଲ ବିଭାଗ ମନ୍ତ୍ରୀ ଜଣେ ପୂର୍ବତନ ରାଜା । ବନ୍ୟଜନ୍ତୁ ସଂରକ୍ଷଣ ଉପରେ ଭାଷଣ ଦେଇ ସାରିଲା ପରେ ମନ୍ତ୍ରୀ କହିଲେ ଅନୁଗୋଳ ଡି.ଏଫ.ଓ.ଙ୍କୁ, ମୁଁ କାଲି ଦେଖିଲି ସେ ବାଇସନଟିକୁ । ମୁଁ ତାକୁ ମାରି ତାର ମୁଣ୍ଡ ଓ ଶିଙ୍ଗକୁ ରଖିବାକୁ ଚାହୁଁଛି ମୋର ପ୍ରାସାଦରେ । ସମସ୍ତେ ତଟସ୍ଥ । ତତ୍‌କାଳୀନ ଡି.ଏଫ.ଓ. ହେଉଛନ୍ତି ମୁରାରୀ ମୋହନ ଦାସ । ସେ କିନ୍ତୁ ଉତ୍ତର ଦେଲେ, ତା' କେମିତି ହେବ ? ଟିକରପଡ଼ା ଅଭୟାରଣ୍ୟ । ସେ ଗୟଳ ହେଉଛି ପ୍ରାଇଜ୍ ଆଟ୍ରାକ୍ସନ । କ୍ରୁଦ୍ଧ ମନ୍ତ୍ରୀ ପଚାରିଲେ ତମେ କାହାକୁ କହୁଛ ଏହା ତମେ ଜାଣିଛ ? ସେ କିନ୍ତୁ ଉତ୍ତର ଦେଲେ ଯେ ଆପଣ ବି ଯାହାକୁ କହୁଛନ୍ତି ସେ କିଏ ତା'ବି ଆପଣ ଜାଣନ୍ତି । ମୁଁ

Digitized by srujan ka@gmail.com

ଏଠାରେ ଥିଲା ପର୍ଯ୍ୟନ୍ତ ତାହା ସମ୍ଭବ ହୋଇପାରିବ ନାହିଁ । ତା'ପର ଦିନ ମୁରାରୀ ବାବୁଙ୍କ ବଦଳି ହୋଇଥିଲା ଏବଂ ଉକ୍ତ ଗୟଳକୁ ମାରି ତା'ର ମୁଣ୍ଡ ଓ ଶିଙ୍ଗକୁ ନେଇଗଲେ ଉକ୍ତ ମନ୍ତ୍ରୀ ହୋଇଥିବା ରାଜା ଆପଣାର ଉଆସର ଶୋଭାବର୍ଦ୍ଧନ ପାଇଁ । ସେ ରାଜା କିନ୍ତୁ ବେଶି ଦିନ ରହିଲେ ନାହିଁ ସଂସାରରେ ସେ ଶୋଭାକୁ ଉପଭୋଗ କରିବା ପାଇଁ । ସୁଇଜରଲାଣ୍ଡ ଯାଇଥିଲେ ଓଜନ କମାଇବା ପାଇଁ । ଫେରିଲା ପରେ ହଠାତ୍ ହୃଦଯନ୍ତ୍ର ବନ୍ଦ ହୋଇଗଲା ତାଙ୍କର ।

ଏଇ ଲେଖା ଲେଖିଲାବେଳକୁ ନନ୍ଦନକାନନ ପାଇଁ ଚାଲିଛି ଖୋଳତାଡ଼ । ଜଙ୍ଗଲ, ଜନ୍ତୁଙ୍କୁ ଭଲ ନ ପାଉଥିବା ବ୍ୟକ୍ତିମାନେ କର୍ତ୍ତା ପାଲଟିଗଲେ ଯାହା ହୁଏ ତାହା ହିଁ ଘଟିଛି । ଅଭୟାରଣ୍ୟ ଭିତରେ ବଣଭୋଜୀ କରୁଛନ୍ତି କାଠ ଚୋରମାନେ ଏବଂ ସେଥିରେ ସମସ୍ତେ ଯୋଗ ଦେଉଛନ୍ତି । ରକ୍ଷକ ଯଦି ଭକ୍ଷକ ପାଲଟେ ତା'ହେଲେ ହବ କଅଣ ? ଆଜିର 'ମଦଚୋର' କାଲିକି 'କାଠଚୋର' ପାଲଟୁଛି । ସେମାନେ ହେଉଛନ୍ତି ଦେଶର ମାଲିକ, ଦେଶର ନିୟାମକ । ସେମାନଙ୍କ ପେ' ରୋଲରେ ଅଛନ୍ତି ବହୁ କର୍ମକର୍ତ୍ତା । ଜଙ୍ଗଲ ରକ୍ଷାହେବ କିପରି ? ଖାଲି ଯଦି ଟାକ୍ସଫୋର୍ସ ଗଠନ କଲେ ସବୁ ଚୋରୀ ଏବଂ ଚୋର ଧରା ପଡ଼ିଯାଆନ୍ତେ ତା ହେଲେ କ'ଣ ବୀରାପ୍ପାନ ଧରାପଡ଼ି ନ ଥାନ୍ତା ଏ ପର୍ଯ୍ୟନ୍ତ ?

ଏକଦା କଳାହାଣ୍ଡି ଥିଲା ଅରଣ୍ୟ ପାଇଁ ପ୍ରସିଦ୍ଧ । ଆଫ୍ରିକା ପରି ଥିଲା ଏହାର ଘନ ଅରଣ୍ୟ । କିନ୍ତୁ ସେଇ ଆଫ୍ରିକାର ଇଥୋପିଆ ପରି କଳାହାଣ୍ଡି ପାଲଟିଛି ବର୍ତ୍ତମାନ ମରୁଭୂମି, କାହାପାଇଁ ?

ସମ୍ବଲପୁରରେ ପହଞ୍ଚି ସାରିଲା ପରେ ଆମେ ଦୁଇଭାଇ ନାମ ଲେଖାଇଲୁ ପଟ୍ଟନାୟକ ପଡ଼ା ମାଇନର ସ୍କୁଲରେ । ତାହାରି ଆଗରେ ଚାହା ଦୋକାନ ଖୋଲିଥାନ୍ତି ଲକ୍ଷ୍ମଣ ପୁଝାରୀ । ସେଇଠାରେ ପିଲାଙ୍କ କଥା ଯେପରି ବୁଝନ୍ତି, ପିଲାମାନଙ୍କୁ ବୁଝାନ୍ତି ସେଇପରି ଲକ୍ଷ୍ମୀନାରାୟଣ ମିଶ୍ର, ଦୟାନନ୍ଦ ଶତପଥୀ, ଦୁର୍ଗା ନାୟକ ପ୍ରଭୃତି ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ସଂପର୍କରେ ଓ ସମାଜବାଦ ସଂପର୍କରେ । ସେମାନଙ୍କର ସହିତ ପରିଚିତି ସେଇଦିନରୁ । ସେମାନେ ପିଲାଙ୍କୁ ବୁଝାନ୍ତି ସ୍ୱାଧୀନତା ଆନ୍ଦୋଳନର ଆବଶ୍ୟକତା ଓ ସାମ୍ୟବାଦର ମୂଳମନ୍ତ୍ର ।

ଯୁଦ୍ଧ ଆରମ୍ଭ ହୋଇଯାଇଥିଲା ୧୯୩୯ ମସିହାରୁ । ହିଟଲର ବଢ଼ିଥିଲା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଦ୍ୱାରା । ଭର୍ସେଲି ଚୁକ୍ତିର ଥିବା ସର୍ତ୍ତମାନଙ୍କୁ ଉଲଂଘନ କରି ଚାଲିଥିଲା ଆହତ ଜର୍ମାନୀ ସ୍ୱାଭିମାନର ପ୍ରତୀକ ଭାବରେ । ୧୯୧୪-୧୮ ମସିହାର ପ୍ରଥମ ମହାଯୁଦ୍ଧ ହୋଇଥିଲା ପୃଥିବୀର ପୁନର୍ବଣ୍ଟନ ପାଇଁ, ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଭିତରେ । କିନ୍ତୁ ତା ଭିତରୁ ଜନ୍ମନେଲା ସୋଭିଏଟ୍ ୟୁନିଅନ । ସୋଭିଏଟ୍ ୟୁନିଅନ ଭାଙ୍ଗିଯିବା ପରେ ଅନେକ ବିତଣ୍ଡା ଯୁକ୍ତି କରାଯାଇ ପାରେ କିନ୍ତୁ ଏହାର ଜନ୍ମ ସାମ୍ରାଜ୍ୟବାଦୀମାନଙ୍କ ଭିତରେ ଯେ ଆତଙ୍କ ସୃଷ୍ଟି କରିଥିଲା, ଏଥିରେ ସନ୍ଦେହ ନାହିଁ । ତେଣୁ ହିଟଲରର ଜନ୍ମ ଓ ବୃଦ୍ଧିକୁ ସାମ୍ରାଜ୍ୟବାଦୀମାନେ ଉତ୍ସାହିତ କରିଥିଲେ ସୋଭିଏଟ୍

Digitized by srujan ka@gmail.com

ୟୁନିଅନ ବିରୁଦ୍ଧରେ । ହିଟଲର ସାମ୍ରାଜ୍ୟ ବିସ୍ତାର ଅଭିଲିପ୍ସାକୁ ସେମାନେ ମୁହାଁଇବାକୁ ଚାହିଁଥିଲେ ସୋଭିଏଟ୍ ୟୁନିଅନ ଆଡ଼କୁ । କିନ୍ତୁ କୂଟନୀତି ଓ ପ୍ରେମରେ କୌଶଳ ଏବଂ ବିଜୟ ହିଁ ଏକମାତ୍ର ନିୟାମକ । ଲେନିନ୍ ଏବଂ ପରେ ଷ୍ଟାଲିନ ଆପଣାର ଚତୁର ବୁଦ୍ଧି ପ୍ରୟୋଗ କରି ପ୍ରଥମେ କାଇଜର ସାଙ୍ଗରେ ଏବଂ ପରେ ହିଟଲର ସାଙ୍ଗରେ ଅନାକ୍ରମଣ ଚୁକ୍ତି ସ୍ୱାକ୍ଷର କଲେ କେବଳ ନୁହେଁ ଲିଥୁଆନିଆ ପ୍ରଭୃତି ତିନୋଟି ରାଜ୍ୟକୁ ସୋଭିଏଟ ୟୁନିଅନର ଅନ୍ତର୍ଭୁକ୍ତ କରିନେଲେ । ପଶ୍ଚାଦ୍‌ବଲୋକନ କଲେ ଏହି ନୀତିର ନିର୍ଭୁଲତା ଉପରେ ନାନା ଯୁକ୍ତି କରାଯାଇ ପାରେ । ଯେପରି ଭାରତ ବିଭାଜନ ପାଇଁ ସମ୍ମତ ହେବା ଉଚିତ ହେଲା କି ନାଇଁ ସେ ସଂପର୍କରେ ପଚାଶବର୍ଷ ଅତିକ୍ରମ କଲାପରେ ଏକାଡେମିକାଲି ବା ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କରିବା ସ୍ୱତନ୍ତ୍ର କଥା କିନ୍ତୁ ଯେଉଁ ପରିସ୍ଥିତିରେ ଏଥିପାଇଁ ନେତୃବୃନ୍ଦ ସମ୍ମତି ଦେଲେ ତାହାର ବିଚାର କ'ଣ ପଚାଶ ବର୍ଷ ପରେ ଠିକ୍ ହୋଇପାରେ ?

ସେ ଯାହା ହେଉ ଯୁଦ୍ଧ ଆରମ୍ଭ ହେଲା ଏବଂ ବ୍ରିଟିଶ ସାମ୍ରାଜ୍ୟବାଦୀ ଶକ୍ତିର କ୍ରମାଗତ ପରାଜୟ ବ୍ରିଟିଶ ସାମ୍ରାଜ୍ୟରେ ଥିବା ଭାରତ ସମେତ ସବୁ ଦେଶର ଜର୍ମାନୀ ସପକ୍ଷରେ ପ୍ରବଳ ଉତ୍ସାହ ସୃଷ୍ଟି କରିଥିଲା । ପିଲାମାନେ ବାପାମାଆମାନଙ୍କର ବାରଣ ସତ୍ତ୍ୱେ ଘର ଆଗରେ କାର୍ଟୁନ ସବୁ ମାରୁଥିଲେ ବ୍ରିଟିଶ ପରାଜୟର ସଙ୍କେତ ବହନ କରି । ହିଟଲରର ''ପ୍ରବାଦ ପୁରୁଷ'' ପ୍ରଚାରମନ୍ତ୍ରୀ ଗବେଲସ୍ ପ୍ରତିଦିନ ତୁହାକୁ ତୁହା ପ୍ରଚାର ଛାଡୁଥିଲେ ଭାରତବାସୀଙ୍କ ସମର୍ଥନ ପାଇଁ । ଭାରତୀୟମାନେ ଆର୍ଯ୍ୟ ଏବଂ ଜର୍ମାନମାନେ ଆର୍ଯ୍ୟ ବାକି ସମସ୍ତେ ହେଉଛନ୍ତି ଅନାର୍ଯ୍ୟ, ଏଇ ପ୍ରଚାର ଚାଲିଥିଲା । ରେଡ଼ିଓ ସଂଖ୍ୟା ବହୁତ କମ୍ । ପ୍ରତିପତ୍ତିଶାଳୀ ଲୋକ ଏବଂ ବିଶିଷ୍ଟ ସରକାରୀ ଅଫିସରମାନଙ୍କ ଘରେ ଥିଲା ରେଡ଼ିଓ । ତଥାପି ସେଇ ରେଡ଼ିଓରେ ପ୍ରଚାରିତ ହେଉଥିବା ସଂବାଦ ବିଚ୍ଛୁରିତ ହୋଇ ଯାଉଥିଲା ସବୁଆଡ଼େ ଅନେକ ସମୟରେ ଅତିରଞ୍ଜିତ ହୋଇ । ଏହା ହେଉଥିଲା ମୁଖ୍ୟତଃ ପ୍ରଗଲ୍ଭ ଅଫିସରମାନଙ୍କ ଦ୍ୱାରା ବା ସେମାନଙ୍କର ସ୍ତ୍ରୀ ଏବଂ ପୁଅଝିଅମାନଙ୍କ ଦ୍ୱାରା । ଅନେକ ଅଫିସରଙ୍କ ପୁଅ ଝିଅମାନେ ଇଂରେଜ ଶାସନର ବିରୋଧୀ ଥିଲେ ଏବଂ କେତେକ ଅଫିସର ମଧ୍ୟ ଇଂରେଜ ଶାସନର ବିରୋଧୀ ଥିବା ଯୋଗୁଁ ଏହା ପ୍ରଚାରିତ ହେଉଥିଲା ଦ୍ରୁତଗତିରେ ।

ଏତିକିବେଳେ କଲିକତା ପ୍ରଭୃତି ଅଂଚଳରେ ସାମ୍ପ୍ରଦାୟିକ ଦଙ୍ଗା ଆରମ୍ଭ ହୋଇଥିଲା । ଅବସ୍ଥା ଗୁରୁତର ଧାରଣ କରିଥିଲା ବଂଗଳାଦେଶରେ ଦୁର୍ଭିକ୍ଷ ଯୋଗୁଁ । ଯେଉଁ ବଙ୍ଗବାସୀମାନଙ୍କର କେହି ବନ୍ଧୁବାନ୍ଧବ ସମ୍ବଲପୁର ଅଂଚଳରେ ଥିଲେ ବା କାହାରି ରହିବାର ସୁବିଧା ଥିଲା (ବା ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା) ସେମାନେ ସବୁ ପଳାଇ ଆସୁଥିଲେ ସମ୍ବଲପୁରକୁ । ସେମାନେ ପ୍ରଚଣ୍ଡ ସାମ୍ରାଜ୍ୟବାଦ ବିରୋଧୀ ମନୋଭାବ ନେଇ ଆସିଥିଲେ ସାଙ୍ଗରେ । ତେଣୁ ସମ୍ବଲପୁର ସଂତ୍ରାସବାଦୀମାନଙ୍କର ଏକ ପୀଠରେ ପରିଣତ ହୋଇଥିଲା ।

Digitized by srujan ka@gmail.com

ଏନିକିବେଳେ ହୁଏ କୁଜଙ୍ଗ ବୋମାମାଡ଼ । ବଙ୍ଗୋପସାଗର ଦେଇ ଯାଉଥିବା ଏକ ବ୍ରିଟିଶ ନୌବହରକୁ କୁଜଙ୍ଗ ପାଖରେ ବିଧ୍ୱସ୍ତ କରିଦେଲେ ଜାପାନୀମାନେ । ଶହ ଶହ ସୈନିକଙ୍କର ଶବ ଲାଗିଲା କୁଜଙ୍ଗ ପାଖରେ । ଶହ ଶହ ଆହତ ସୈନିକ (ତା'ଭିତରେ ଥିଲେ ଅନେକ ମାର୍କିନ ସୈନିକ) ଚିକିତ୍ସିତ ହେବାକୁ ଆସିଲେ ବଡ଼ ଡାକ୍ତରଖାନା କଟକକୁ । ସେଇ ମାର୍କିନ ସୈନ୍ୟମାନଙ୍କ ଭିତରୁ କିଛି କଟକ ସହର ବୁଲିଲାବେଳେ ବ୍ରିଟିଶ ଅନୁଗତ କିଛି ନାଗରିକଙ୍କ ଗୃହ ଆଗରେ ଟଙ୍ଗା ଯାଇଥିବା ବ୍ରିଟିଶ ପ୍ରଧାନମନ୍ତ୍ରୀ ଉଇନଷ୍ଟନ ଚର୍ଚ୍ଚିଲଙ୍କର ବିଶାଳକାୟ ଫଟୋମାନଙ୍କୁ ଟାଣି ଆଣି ରାସ୍ତାରେ ଆପଣା ବୁଟରେ ଦଳିଦେଲେ । ଯେଉଁ ଅବସ୍ଥା ସୃଷ୍ଟିହେଲା ତାହା ସହଜେ ଅନୁମେୟ । ବାପାଙ୍କର ଦାନ୍ତ ଉପୁଡ଼ା ପାଇଁ ଆମେ ସବୁ ସପରିବାର ଆସିଥାଉ କଟକ । ଡାକ୍ତର ଜର୍ଜ ପଟ୍ଟନାୟକଙ୍କର ବକ୍ସି ବଜାରରେ ଥାଏ ଦାନ୍ତ କ୍ଲିନିକ । ଆମେ ସବୁ ସେଇଠି ବସିଥିବା ବେଳେ ଇମିତି ଏକ ଘଟଣା ଘଟିଗଲା ବକ୍ସି ବଜାର ଛକ ଉପରେ । ଲୋକେ ଜମା ହୋଇଗଲେ । ବ୍ରିଟିଶ ସରକାର ମୁର୍ଦ୍ଦାବାଦ ଉଇନଷ୍ଟନ ଚର୍ଚ୍ଚିଲ ମୁର୍ଦ୍ଦାବାଦ ଧ୍ୱନିରେ ପ୍ରକମ୍ପିତ ହୋଇ ଉଠିଲା ବକ୍ସିବଜାର । ମୁଁ ପଢୁଥାଏ ସେତେବେଳେ ଅଷ୍ଟମ ଶ୍ରେଣୀରେ ।

ପୁରୀରେ ସଦ୍ୟ ସରିଥାଏ ପ୍ରଦେଶ ସ୍କାଉଟ ମେଳା । ଅନେକ ସେ ସ୍କାଉଟ ମେଳାରେ ଯୋଗ ଦେଇ ନ ଥାନ୍ତି ପ୍ରତିବାଦରେ । ଏଇ ପରିପ୍ରେକ୍ଷୀରେ ମୋର ମନେ ରହିଗଲା ଏଇ ଘଟଣାଟି ।

ଶୁଣିଚି ଏଇ ସମୟରେ ଘଟିଥିବା ଘଟଣା । କଟକରେ ଜିଲ୍ଲାପାଳ ଥାଆନ୍ତି ଶ୍ରୀ ଏଲ୍.ପି. ସିଂ । ମାତ୍ର ଦୁଇବର୍ଷ ତଳେ ତାଙ୍କର ପରଲୋକ ହୋଇଯାଇଛି ଦିଲ୍ଲୀରେ । ସେ ବିହାରର ବାସିନ୍ଦା । ହଠାତ୍ ତାଙ୍କ ପାଖରେ ଉପସ୍ଥିତ ହେଲେ ଭାରତବର୍ଷର ପ୍ରଥମ ଦଶଜଣ ଧନୀମାନଙ୍କ ଭିତରେ ଥିବା ଇସ୍‌ପାହାନୀ । ସେ ପ୍ରଥମ ଦଶଜଣ ଧନୀ ଭିତରେ ଏକମାତ୍ର ମୁସଲିମ । ସେ ଥିଲେ ମହମ୍ମଦ ଅଲ୍ଲୀ ଜିନ୍ନା ତଥା ମୁସଲିମ ଲିଗର ଜଣେ ପୃଷ୍ଠପୋଷକ । ସେ ବଙ୍ଗଳାର ପ୍ରଧାନମନ୍ତ୍ରୀ ସୁରାବର୍ଦ୍ଦିଙ୍କ ପାଖରୁ ଏକ ଚିଠି ନେଇ ଆସିଥିଲେ ଓଡ଼ିଶାରୁ ଚାଉଳ ବଙ୍ଗଳାଦେଶକୁ ରପ୍ତାନି କରିବାର ଅନୁମତି ପାଇଁ । ଇସ୍‌ପାହାନୀଙ୍କୁ ସିଧାସଳଖ ମନା କରିଦେଲେ କଲେକ୍ଟର । ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଥିବା ହେତୁ ଚାଉଳ ରପ୍ତାନି ପାଇଁ ଅନୁମତି ଦେବାକୁ ସେ ଅକ୍ଷମତା ପ୍ରକାଶ କରିଥିଲେ । ମୁସଲିମ୍ ଲିଗ ସେତେବେଳେ ବ୍ରିଟିଶ ସରକାରଙ୍କର ଏକାନ୍ତ ସହଯୋଗୀ । ଇସ୍‌ପାହାନୀଙ୍କ ହାତରେ ବି କୁଆଡ଼େ ଥିଲା ଭାଇସ୍‌ରାୟଙ୍କ ଚିଠି ମଧ୍ୟ । (ତେବେ ଏହା କେତେଦୂର ସତ୍ୟ ମୁଁ ଜାଣେନା) । ଇସ୍‌ପାହାନୀ ନଛୋଡ଼ ବନ୍ଧା । କଲେକ୍ଟରଙ୍କୁ ପଚାରିଲେ ଯେ ସେ କ'ଣ କାଲି ପର୍ଯ୍ୟନ୍ତ ଉତ୍ତର ପାଇଁ ଅପେକ୍ଷା କରିବେ ? କିନ୍ତୁ ରହିବେ କେଉଁଠି ? କଟକରେ ତ ଭଲ ହୋଟେଲ ନାହିଁ । କଲେକ୍ଟର ବେଲ ଟିପିଲେ ଏବଂ ପି.ଏ.ଙ୍କୁ ନିର୍ଦ୍ଦେଶ ଦେଲେ ଯେ ଇସ୍‌ପାହାନୀଙ୍କୁ ନେଇଯାଅ କଟକ ଜେଲକୁ । କାଲି ତାଙ୍କୁ ଭେଟିବା ପାଇଁ ନେଇ ଆସ ।

Digitized by srujan ka@gmail.com

ଯ ପଳାୟତି, ସ ଜୀବତି । ଇସ୍‌ପାହାନୀ ଖସି ପାର୍ । ଆଉ ଆସିନାହାନ୍ତି କି ଚାଉଳ ରପ୍ତାନି ହେଲା ନାହିଁ ।

କିନ୍ତୁ ସେ କଲେକ୍ଟରଙ୍କର ବଦଳି ହୋଇନାହିଁ । କିନ୍ତୁ ଆଜି କ'ଣ ହୋଇଥାନ୍ତା କିଏ କହିବ ?

ଜୟପ୍ରକାଶ ନାରାୟଣ ସେତେବେଳେ ପ୍ରସିଦ୍ଧ ସମାଜବାଦୀ ବିପ୍ଳବୀ । ସେ ଯେତେବେଳେ ଆସନ୍ତି ରହନ୍ତି ତାଙ୍କର ବାଲ୍ୟବନ୍ଧୁ ବଳଭଦ୍ର ପ୍ରସାଦଙ୍କ ଘରେ । ସେ ଥାଆନ୍ତି ଅଧ୍ୟାପକ ରେଭେନ୍ସା କଲେଜରେ, ରସାୟନ ବିଭାଗରେ । ରହୁଥାନ୍ତି ପିଲଗ୍ରୀମ ରୋଡ଼ରେ ଏକ ନାଲି କୋଠାରେ । ପରେ ସେଠାରେ ରେଭେନ୍ସା କଲେଜର ମହିଳା ହଷ୍ଟେଲ ହୋଇଥିଲା । ବଳଭଦ୍ର ପ୍ରସାଦ ଜୟପ୍ରକାଶ ଏକା ଗାଁର ଲୋକ ଏବଂ ସହପାଠୀ । କାଳେ ବଳଭଦ୍ର ବାବୁଙ୍କର କିଛି ଅସୁବିଧା ହେବ ସେଇଯୋଗୁଁ ଥରେ ସେ କହିଲେ ଯେ ଏଣିକି ସେ କଟକକୁ ଆସିଲେ ଅନ୍ୟତ୍ର ରହିବେ । ବଳଭଦ୍ର ପ୍ରସାଦ ଏଥିରେ ଏକମତ ହେଲେ ନାହିଁ । ସେ କହିଲେ ଯେ ତୁ ମୋର ସହପାଠୀ, ବନ୍ଧୁ, ପୁଣି ତୋ ସାଙ୍ଗରେ ତୋର ସ୍ତ୍ରୀ ପ୍ରଭାମୟୀ ଦେବୀ, ସେଥିରେ ତୁ ଅନ୍ୟତ୍ର କଦାପି ରହିପାରିବୁ ନାହିଁ । ସବୁବେଳେ ରହିବୁ ମୋ ପାଖରେ । ଜୟପ୍ରକାଶ ସେ'ଯା କଲେ । ୧୯୪୨ ଅଗଷ୍ଟ ମାସ ପୂର୍ବରୁ ସେ ଆସିଥିଲେ କଟକ ଏବଂ ରହିଗଲେ ବଳଭଦ୍ର ପ୍ରସାଦଙ୍କ ଘରେ । 'ଭାରତଛାଡ଼' ଆନ୍ଦୋଳନର ପ୍ରସ୍ତୁତିପର୍ବ । ସେ ଆସି ରହିଛନ୍ତି କଟକରେ । ଉପରୁ ଜରୋରୀ ବାର୍ତ୍ତା ଆସିଲା କଲେକ୍ଟରଙ୍କ ପାଖକୁ ।

କୈଫିୟତ ମାଗ ବଳଭଦ୍ର ପ୍ରସାଦଙ୍କୁ ଯେ ସେ କାହିଁକି ଜୟପ୍ରକାଶଙ୍କୁ ଅତିଥି କରିଛନ୍ତି । କଲେକ୍ଟର ଦେଖିଲେ ବାର୍ତ୍ତାଟିକୁ ଏବଂ ତୁରନ୍ତ ଉତ୍ତର ଦେଲେ ଯେ, ''ମୋର ଯେହେତୁ ଅଧିକା ବାଥ୍‌ରୁମ୍ ନାହିଁ ସେଇଯୋଗୁଁ ମୁଁ ଜେ.ପି.ଙ୍କୁ ଅତିଥି କରିବା ପାଇଁ ବଳଭଦ୍ର ପ୍ରସାଦଙ୍କୁ କହିଛି ।''

କଥାଟା ସେତିକିରେ ରହିଲା । କଲେକ୍ଟରଙ୍କ ବଦଳି ହୋଇନାହିଁ ।

ମୋର ମନେପଡୁଚି ଅସୁସ୍ଥ ପ୍ରସିଦ୍ଧ ନକ୍ସଲବାଦୀ ନେତା ନାଗଭୂଷଣ ପଟ୍ଟନାୟକଙ୍କୁ ଅତିଥି କରିବା ପାଇଁ ତାଙ୍କର ଜଣେ ବନ୍ଧୁ ଡାକ୍ତରଙ୍କୁ କି କଷ୍ଟ କରିବାକୁ ପଡ଼ିଛି ଏବଂ ବିପ୍ଳବୀ କବି ରବି ସିଂଙ୍କୁ ଅତିଥି କରିବା ପାଇଁ ତାଙ୍କୁ କି କଷ୍ଟ ଭୋଗ ନ କରିବାକୁ ପଡ଼ିଛି ।

ସେଇ ଏଲ.ପି.ସିଂ ଥାଆନ୍ତି କଲେକ୍ଟର କଟକରେ । ପ୍ରସିଦ୍ଧ ବିପ୍ଳବୀ ରାମନନ୍ଦନ ମିଶ୍ର ଭାରତଛାଡ଼ ଦିବସ ପରେ ପଳାତକ ହୁଅନ୍ତି । ତାଙ୍କୁ ଧରିବା ପାଇଁ ୱାରେଣ୍ଟ ବାହାରିଥାଏ । ସମଗ୍ର ଭାରତବର୍ଷ ବ୍ୟାପୀ ତାଙ୍କୁ ଖୋଜା ଚାଲିଥାଏ । ପୁଲିସ ଖବର ପାଇଲା ଯେ ସେ କଟକରେ ଅଛନ୍ତି । କିନ୍ତୁ କଟକରେ ଅଛନ୍ତି କେଉଁଠି ? ଯେଉଁ ଜାଗାର ସନ୍ଧାନ ସେମାନେ ପାଇଲେ ସେଠାକୁ ଯିବା ପାଇଁ ତାଙ୍କର ସାହସ କୁଳାଇଲା ନାହିଁ । ପରିଶେଷରେ ଦିନେ ସନ୍ଧ୍ୟାରେ ରାମନନ୍ଦନ ମିଶ୍ର ସେ ଘରୁ ବାହାରି ମଙ୍ଗଳାବାଗ ଆସୁଥିଲାବେଳେ (ଛଦ୍ମବେଶରେ) ପୁଲିସ ତାଙ୍କୁ ଗିରଫ

Digitized by srujan ka@gmail.com

କଲା । ତାହା ହେଉଛି ଖୋଦ୍ ଏଲ୍.ପି. ସିଂହଙ୍କ ଘର । ବର୍ତ୍ତମାନ ଯେଉଁଠି କ୍ୟାନସର ଇନଷ୍ଟିଚ୍ୟୁଟ ଆଉଟ୍‌ଡୋର, ସେଇ ଥିଲା ତାଙ୍କର ରହିବା କୋଠି ।

ତଥାପି ତାଙ୍କର ବଦଳି ହୋଇ ନ ଥିଲା । ବର୍ତ୍ତମାନ ହୋଇଥିଲେ ?

୧୯୦୦ ମସିହାରେ ବେଙ୍ଗଲ ନାଗପୁର ରେଲବାଇ କଲିକତାରୁ ମାଡ୍ରାସ ପର୍ଯ୍ୟନ୍ତ ରେଳ ଚଳାଚଳ ଆରମ୍ଭ କଲେ । ଏହା ତା ପୂର୍ବର କଥା । ରେଳ ଲାଇନ କେଉଁ ବାଟରେ ଯିବ ? କଟକର ପୂର୍ବ ପାଖରେ ଗଲେ କୁଆଖାଇ, କାଠଯୋଡ଼ି ଏବଂ ମହାନଦୀ, ବିରୂପାରେ ଚାରୋଟି ବ୍ରିଜ କରିବାକୁ ପଡ଼ିବ । ବହୁତ ଖର୍ଚ୍ଚ ହେବ ଭାବି ସେମାନେ ସେଇ ଲାଇନ କରିବାକୁ ଚାହିଁଲେ ନରାଜ ପଟରେ, ଯେଉଁ ବାଟଦେଇ ବର୍ତ୍ତମାନ ଏକ ରେଳ ଲାଇନ ହୋଇଛି, କଟକକୁ ଏଡ଼ାଇ ଦେଇ । ତତ୍‌କାଳୀନ କଲେକ୍ଟର ନିର୍ଦ୍ଦେଶ ଦେଲେ ରେଳଲାଇନ ପୂର୍ବ ପଟରେ ହିଁ ହେବ । କାରଣ କଟକ ସହର ବଢ଼ିବ ସେଇ ପଟକୁ । କମ୍ପାନୀ କାମ ବନ୍ଦ କରି ଗଲେ ତାଙ୍କର ବିଲାତ ଅଫିସକୁ । ସେମାନେ ସିଧାସଳଖ ମହାମହିମ ବ୍ରିଟିଶ ସରକାରଙ୍କ ଠାରୁ ଅନୁମତି ପାଇ କାମ ଆରମ୍ଭ କଲେ ନରାଜ ପଟରେ । ଯଥା ସମୟରେ କଲେକ୍ଟର ଏ ଖବର ପାଇଲେ ଏବଂ ଆଦେଶ ଦେଲେ ନରାଜରେ ୧୪୪ ଧାରା ଜାରିକରିବା ପାଇଁ ଏବଂ ତୁରନ୍ତ ପୂର୍ବ ପଟରେ କାମ ଆରମ୍ଭ ନ କଲେ କଂପାନୀର ସବୁ ଅଫିସରଙ୍କୁ ଗିରଫ କରି କଟକ ଜେଲରେ ଭର୍ତ୍ତି କରିବା ପାଇଁ । ଏ ଆଦେଶ ପାଇଁ ତତ୍‌କ୍ଷଣାତ୍ ନରାଜ ପଟର ସବୁ କାମ ବନ୍ଦ ହୋଇଗଲା ଏବଂ ପୂର୍ବ ପଟର କାମ ଆରମ୍ଭ ହେଲା । ସ୍ୱାଧୀନ ସରକାର ସମୟରେ କିନ୍ତୁ ତାହା ହୋଇପାରିଲା ନାହିଁ । ବହୁ ଗୁରୁତ୍ୱପୂର୍ଣ୍ଣ ଟ୍ରେନ ବର୍ତ୍ତମାନ କଟକକୁ ଏଡ଼ାଇ ଦେଇ ଯିବାଆସିବା କରୁଛି ନରାଜ ବାଟରେ ।

ସେ କଲେକ୍ଟର କିନ୍ତୁ ରହିଲେ ସେଇପରି ।

ମନେପଡୁଛି । ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଡକ୍ଟର ହରେକୃଷ୍ଣ ମହତାବ ଗିରଫ ହେଲେ ଇମରୋରୀ ପରିସ୍ଥିତି ସମୟରେ । ଶ୍ରୀ ବନମାଳୀ ପଟ୍ଟନାୟକ ଫୋନ କରି ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କଲେ, ''ମହତାବ ବାବୁ ସବୁ ପରିସ୍ଥିତିକୁ ସମ୍ଭାଳି ପାରିବେ । ନବବାବୁ କିନ୍ତୁ ଭାରି ସେନ୍‌ସିଟିଭ । ତାଙ୍କୁ ଖବରକାଗଜ, ବହି ମନା କରିବ ନାହିଁ । କିଛି ସିଗାରେଟ୍ ବି ତାଙ୍କୁ ଦେବ । ଏଇ ତମକୁ ଅନୁରୋଧ ।'' ନବବାବୁ ଗରମ ସହି ପାରନ୍ତି ନାହିଁ । ତଥାପି ତାଙ୍କୁ ବାରିପଦା ଜେଲକୁ ପଠାଗଲା । ଗୋଟିଏ ବାତାନୁକୂଳ କୋଠରୀ ଯୋଗାଇ ଦିଆଗଲା ନାହିଁ । ଖବରକାଗଜ, ବହି କିଛି ବି ସେ ପାଇଲେ ନାହିଁ । ନବବାବୁଙ୍କ ସେଇଠାରେ ଯେଉଁ ଦେହ ଖରାପ ହେଲା ସେଥିରୁ ସେ ମୁକ୍ତି ପାଇ ପାରିଲେ ନାହିଁ । ମହତାବ ବାବୁ ଗଲେ ଭଂଜନଗର ଜେଲକୁ । ପରେ ଆସିଲେ ଭୁବନେଶ୍ୱର ଜେଲକୁ । ତାଙ୍କୁ ପାରୋଲରେ ଆଣିବା ପାଇଁ କେବଳ ଶ୍ରୀ ନରସିଂହ ତ୍ରିପାଠୀ ଯାଇଥିଲେ ଏବଂ ପାରୋଲ ପରେ ତାଙ୍କୁ ଛାଡ଼ିବା ପାଇଁ ମଧ୍ୟ ସେ ଏକୁଟିଆ ଯାଇଥିଲେ । ନବବାବୁଙ୍କ ଚିକିତ୍ସା ପାଇଁ ଶ୍ରୀ ନରସିଂହ ତ୍ରିପାଠୀଙ୍କୁ ବହୁ ଡାକ୍ତରଙ୍କୁ ଖୋସାମତ କରିବାକୁ ପଡ଼ିଛି ।

Digitized by srujan ka@gmail.com

ଡରରେ କେହି ରାଜି ହେଲେ ନାହିଁ । ସେ କାହାଣୀ ଭୁଲିବାର ନୁହେଁ । ଅଥଚ ଯେତେବେଳେ ଜରୋରୀକାଳୀନ ପରିସ୍ଥିତିରେ ଚନ୍ଦ୍ରଶେଖର ଦିଲ୍ଲୀ ଜେଲରେ ଥିଲେ, ସେତେବେଳେ ଭାରତ ସରକାରଙ୍କର ପ୍ରତାପୀ ମନ୍ତ୍ରୀ ଥିଲେ ବଂଶୀଲାଲ । ସେ ଖବରଦେଲେ ଚନ୍ଦ୍ରଶେଖରଙ୍କୁ ଯେ ତାଙ୍କର ଯଦି କିଛି ଆପତ୍ତି ନ ଥାଏ, ତା'ହେଲେ ସେ ତାଙ୍କ ସେଲରେ ଗୋଟାଏ ଏୟାର କଣ୍ଡିସନର ଲଗାଇବାକୁ ଚାହାନ୍ତି । ଅବଶ୍ୟ ଚନ୍ଦ୍ରଶେଖର ତାଙ୍କର ସ୍ୱଭାବସୁଲଭ ରସିକତାରେ ସେ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି କହିଲେ ଯେ ତାଙ୍କର ସେ ବିଳାସ ଦରକାର ନାହିଁ । ତାଙ୍କ ପାଖ ସେଲ୍‌ଟି ଖାଲି ପଡ଼ିଛି । ସେଠାରେ ଏକ ବାତାନୁକୂଳ ଯନ୍ତ୍ର ଲଗାଯାଉ । କାରଣ ପରବର୍ତ୍ତୀ ସମୟରେ ବଂଶୀଲାଲଙ୍କୁ ସେଠାରେ ରହିବାକୁ ପଡ଼ିପାରେ । ଆଗରୁ କରିଦେଲେ ସେ ସେଇଠାରେ ରହିପାରିବେ ବିନା ଅସୁବିଧାରେ ।

ଆଉ ଗୋଟିଏ କଥା ମନେପଡୁଛି । ସାର୍ ହଥୋର୍ଣ୍ଣ ଲୁଇ ଆସିଥାନ୍ତି ଓଡ଼ିଶାର ଗଭର୍ଣ୍ଣର ହୋଇ । ସେ ସମ୍ବଲପୁର ଗସ୍ତରେ ଯିବାର କାର୍ଯ୍ୟକ୍ରମ ଥାଏ । ଆଗରୁ ସେ ଥିଲେ ସମ୍ବଲପୁରରେ କଲେକ୍ଟର । ବହୁ ପୁରୁଷ ଓ ମହିଳାମାନଙ୍କ ସହିତ ତାଙ୍କର ପରିଚିତି ଥିଲା । ସେ ଥିଲେ ନିଜେ ଜଣେ ଚିତ୍ରଶିଳ୍ପୀ । ସେ ଜାଣିଥିଲେ ପ୍ରସିଦ୍ଧ ଚିତ୍ରଶିଳ୍ପୀ ଗୋପାଳ କାନୁନଗୋଙ୍କୁ । ଗୋପାଳ କାନୁନଗୋ ଥାଆନ୍ତି ଡ୍ରଇଂ ଶିକ୍ଷକ ସମ୍ବଲପୁର ଜିଲ୍ଲା ସ୍କୁଲରେ । ଲୁଇ ଦେଖାକରିବାକୁ ଚାହିଁଲେ ଗୋପାଳ କାନୁନଗୋଙ୍କୁ ସମ୍ବଲପୁର ଗସ୍ତ ସମୟରେ । ଚିଠିଟିଏ ଜିଲ୍ଲାପାଳଙ୍କ ଜରିଆରେ ପହଞ୍ଚିଲା ଗୋପାଳ କାନୁନଗୋଙ୍କ ପାଖରେ ।

ଯେଉଁ ଦିନଟି ଗଭର୍ଣ୍ଣର ସ୍ଥିର କରିଥାନ୍ତି ସେ ଦିନଟି ହେଉଛି ରବିବାର । ସେଦିନ ଗୋପାଳବାବୁ ଚିତ୍ର ଆଙ୍କନ୍ତି ମୋତିଝରଣ ଜଙ୍ଗଲ ଭିତରେ ।

ଗୋପାଳବାବୁ ବିନମ୍ର ଭାବରେ ଉତ୍ତରଟିଏ ଗଭର୍ଣ୍ଣରଙ୍କୁ ଲେଖି, ସେଇଟିକୁ ଗଭର୍ଣ୍ଣରଙ୍କ ପାଖକୁ ପଠାଇଦେବା ପାଇଁ ପହଞ୍ଚିଲେ ଜିଲ୍ଲା କଲେକ୍ଟରଙ୍କ ପାଖରେ (ବୋଧହୁଏ ଆଢ଼ଫର ଥିଲେ ଜିଲ୍ଲାପାଳ ବୋଲି ମୋର ଟିକିଏ ହେତୁ ହେଉଛି) ଚିଠିଟିରେ ଗଭର୍ଣ୍ଣରଙ୍କୁ କୃତଜ୍ଞତା ଜଣାଇ ସେ ଲେଖିଥିଲେ ଯେ ମାନ୍ୟବର ଗଭର୍ଣ୍ଣର ମୋତେ ମନେ ରଖିଥିବା ପାଇଁ ଧନ୍ୟବାଦ । କିନ୍ତୁ ଏଇ ଚିତ୍ରଶିଳ୍ପୀ ରବିବାର ଦିନ ମୋତିଝରଣ ଜଙ୍ଗଲରେ ଚିତ୍ର ଆଙ୍କେ ବୋଲି ଆପଣ ଜାଣନ୍ତି । ଆପଣଙ୍କ ସହିତ ସେଇଠି ଦେଖା ହୋଇପାରିଲେ ମୁଁ କୃତଜ୍ଞ ହୁଅନ୍ତି । ସେଇଠି ବସି ଚିତ୍ର ଆଙ୍କନ୍ତି । ଆପଣ ସମ୍ମତି ଦେଲେ ମୁଁ ଆପଣଙ୍କ ଲାଗି ଚଉକିଟିଏ ରଖିଥିବି ଏବଂ ରଖିଥିବି ଗରମ ଚା' ।

ଜିଲ୍ଲା କଲେକ୍ଟର ଚିଠିଟିକୁ ଦେଖି ଖେପିଗଲେ ଚିତ୍ରଶିଳ୍ପୀଙ୍କ ଉପରେ । ସାମାନ୍ୟ ଡ୍ରଇଁ ଶିକ୍ଷକ, ତମର ସାହସ ହେଲା ଗଭର୍ଣ୍ଣରଙ୍କୁ ଇମିତି ଚିଠି ଲେଖିବା ପାଇଁ ସେ ତୁମ ପାଖକୁ, ପୁଣି ମୋତିଝରଣ ଜଙ୍ଗଲକୁ ଯିବେ ଭେଟିବା ପାଇଁ ? ତମର ଆସ୍ପର୍ଦ୍ଧା ତ ବହୁତ । ବିନୀତ କିନ୍ତୁ ଦୃଢ଼ କଣ୍ଠରେ ଶିଳ୍ପୀ ଉତ୍ତର ଦେଲେ ମୁଁ ଶିକ୍ଷକ ଭାବରେ ନୁହେଁ, ଏକ ଶିଳ୍ପୀର ଆଉ ଏକ ଶିଳ୍ପୀକୁ

Digitized by srujan ka@gmail.com

ଚିଠିଟି ଲେଖିଚି । ଆପଣ କେବଳ ତାକୁ ପଠାଇଦେବେ । ଅଧିକ କ୍ରୋଧାନ୍ୱିତ ହୋଇ ଜିଲ୍ଲା କଲେକ୍ଟର ଉତ୍ତର ଦେଲେ ମୁଁ କ'ଣ ତମର ମେସେଞ୍ଜର (Messenger) ବା ପତ୍ରବାହକ ? ଶିଳ୍ପୀ ଉତ୍ତର ଦେଲେ ସେ ଆସ୍ପର୍ଦ୍ଧା ମୋର କାହିଁ ? ଆପଣ ଯେପରି ଭାବରେ ସେ ଚିଠିଟିକୁ ପଠାଇଥିଲେ ସେଇପରି ଭାବରେ ଚିଠିର ଉତ୍ତରଟି ପଠାଇଦେବା ପାଇଁ ମୋର ନିବେଦନ ମାତ୍ର ! ଦେଖ ରାଗ କଲେକ୍ଟରଙ୍କର ଶିଳ୍ପୀଙ୍କ ଉପରେ ! ହଉ, ଫଳ ଭୋଗ କରିବ ତମେ, ମୁଁ ନୁହେଁ ।

ବିକ୍ଷୁବ୍ଧ ଶିଳ୍ପୀ ଫେରିଥିଲେ । କିନ୍ତୁ ସେଦିନ ହଥୋର୍ଣ୍ଣ ଲୁଇ ଆସିଥିଲେ ସେଇ ମୋତିଝରଣକୁ । ଆଗରୁ କହିଛି ଯେ ସେଇ ଜଙ୍ଗଲ ଭିତରେ ଗୋଟିଏ ସରକାରୀ କ୍ୱାଟର୍ସ ଥିଲା ଏବଂ ମାତ୍ର ଜଣେ ଅଫିସର ଥିଲେ । ବାପାଙ୍କୁ କହି ସେ ଦୁଇଟି ଚଉକି ମଗାଇଥିଲେ ଏବଂ ଆଉ ଗୋଟିଏ ଫ୍ଲାସ୍କରେ ଚାହା ଭର୍ତ୍ତି କରି ମଗାଇ ନେଇଥିଲେ ଆମଘରୁ । ଯଥା ସମୟରେ ଗଭର୍ଣ୍ଣର ହଥୋର୍ଣ୍ଣ ଲୁଇ ସେଠାରେ ପହଞ୍ଚିଲେ । ଦୁଇଟି ଚଉକି ମାତ୍ର ! ଲୁଇ ବସିଲେ ଗୋଟିଏ ଚଉକିରେ ଏବଂ ଆର ଚଉକିରେ ଶିଳ୍ପୀଙ୍କୁ ବସିବାକୁ ଅନୁରୋଧ କଲେ । କଥାବାର୍ତ୍ତା ପରେ ଚିତ୍ର ଆଙ୍କିବା ଆରମ୍ଭ ହେଲା ଏବଂ ଦୁହେଁ ଚିତ୍ର ଆଙ୍କିଲେ କିଛି ଘଣ୍ଟା ଧରି । ଜିଲ୍ଲା ମାଜିଷ୍ଟ୍ରେଟ, ଏସ୍.ପି. ସମସ୍ତେ ଠିଆ ହୋଇଛନ୍ତି । ଉପାୟ କ'ଣ ? ଆଗରେ ଖୋଦ୍ ଗଭର୍ଣ୍ଣର ପାଟି ଫିଟାଇବ କିଏ ? ବେଶ୍ କିଛି ଘଣ୍ଟା ସେଠାରେ କଟିଲା । ବିଦାୟ ନେଇ ଗଲାବେଳେ ଲୁଇ ତାଙ୍କୁ ନିମନ୍ତ୍ରଣ କରିଗଲେ ରାତ୍ରିଭୋଜନ କରିବା ପାଇଁ ତାଙ୍କ ସହିତ ।

ଗୋପାଳ କାନୁନଗୋ କେବଳ ଡ୍ରଇଁ ଶିକ୍ଷକ ନ ଥିଲେ । ଦୁଇ ମହଲା ଘର । ଦୋନଗଳରୁ ସେନପାର୍କ ପର୍ଯ୍ୟନ୍ତ ରାସ୍ତାରେ । ତଳ ମହଲାରେ ସେ ରହନ୍ତି । ଉପର ମହଲାରେ ଚିତ୍ର ଆଙ୍କନ୍ତି ଏବଂ ରାତିରେ ଛାତ୍ରମାନଙ୍କୁ ସ୍ୱାଧୀନତା ଆନ୍ଦୋଳନ, ସମାଜବାଦୀ ଦର୍ଶନ, ରୁଷ ବିପ୍ଲବ ବିଷୟରେ ବକ୍ତୃତା ଦିଅନ୍ତି । ଯେଉଁଠି ଚାକିରି କରିଛନ୍ତି ସେଇଆ ହୋଇଛି ।

ମୁଁ ଜାଣିବାରେ ବନମାଳୀ ଦାସ ଏବଂ ଗଙ୍ଗାଧର ରଥଙ୍କୁ ସେ ଏଇ ପ୍ରକ୍ରିୟାରେ ତାଲିମ ଦେଇଛନ୍ତି । ମୁଁ ସେ ଭିତରେ ଜଣେ ହୋଇଥିବାରୁ ଆପଣାକୁ ଗର୍ବିତ ମନେ କରୁଛି । ତାଙ୍କର ଜୀବନର ଅପରାହ୍ନ ଖୁବ୍ ଦୁଃଖରେ କଟିଛି । ତାଙ୍କର ଏକମାତ୍ର ପୁତ୍ର ଚିତ୍ତରଂଜନ (ମୋର ସହପାଠୀ) ଯୋଗୁଁ ସେ ଦାରୁଣ ମାନସିକ ଏବଂ ଆର୍ଥିକ ଦୁର୍ବିପାକର ସମ୍ମୁଖୀନ ହୋଇଥିଲେ ଏବଂ ତାଙ୍କର ଜୀବନଦୀପ ଲିଭି ଯାଇଥିଲା ଅକାଳରେ । ସେ ଜଣେ ପ୍ରତିଷ୍ଠିତ ଲେଖକ ମଧ୍ୟ ଥିଲେ । ତାଙ୍କର ମୃତ୍ୟୁ ଓଡ଼ିଶାର କଳା ସାହିତ୍ୟ ଜଗତକୁ ଦରିଦ୍ର କରିଦେଲା । ସିଲହଟ ଚିତ୍ର ଆଙ୍କିବାରେ ସେ ଥିଲେ ପାଇଓନିଅର । କାଳିନ୍ଦୀ ଚରଣ ପାଣିଗ୍ରାହୀ ଥିଲେ ତାଙ୍କର ବ୍ୟକ୍ତିଗତ ବନ୍ଧୁ । ତାଙ୍କର 'ମାଟିର ମଣିଷ' ବହି ପାଇଁ ସେ ଚିତ୍ର ଆଙ୍କିଥିଲେ 'ସିଲହଟ' ଚିତ୍ର ।

Digitized by srujan ka@gmail.com

ମୋର ମନେ ପଡୁଛି ଆଉ ଏକ ଘଟଣା । କେନ୍ଦ୍ରାପଡ଼ା ଜିଲ୍ଲାରେ ମହାନଦୀ କୂଳରେ ଗାଁ ଟିଏ । ନାମ ହେଉଛି 'ପାଟଲିପଙ୍କ' । ଭୂତମୁଣ୍ଡେଇ ପୋଲଠାରୁ ନଈବନ୍ଧରେ ତିନି କିଲୋମିଟର ଗଲେ ସେଇ ଗାଁ ଟି ପଡ଼େ । ଏଇ ଅଂଚଳ ଥିଲା ଏକ ଦୁରାରୋଧ ଅଞ୍ଚଳ । ଏକ୍ସପ୍ରେସ ହାଇୱେ ଗଢ଼ା ହେଲା ପରେ ମଧ, ଏଇ ଅଞ୍ଚଳ ଥିଲା ଅଗମ୍ୟ, ନଈବନ୍ଧ ରାସ୍ତା । ଅସରାଏ ବର୍ଷା ହୋଇଗଲେ ଯିବା ଭାରି କଠିନ । ତିନି କିଲୋମିଟର ଦୂରରେ ଏକ୍ସପ୍ରେସ ହାଇୱେ । କିନ୍ତୁ ଯିବାକୁ ରାସ୍ତା ନାହିଁ । ଦଶ କିଲୋମିଟର ଦୂରରେ ପାରାଦ୍ୱୀପରେ ଆଲୁଅ ଜଳୁଛି । କିନ୍ତୁ ଏଇ ଆଖପାଖ ଗ୍ରାମମାନଙ୍କରେ ବିଜୁଳି ଆଲୁଅ ନାହିଁ । ମହାନଦୀରେ ପାଣି ପ୍ରଚୁର । କିନ୍ତୁ ପିଇବା ପାଣି ନାହିଁ । Water, water everywhere, not a drop to drink.

ବିଜୁ ପଟ୍ଟନାୟକ ତଥାପି ଏ ଅଞ୍ଚଳର ଆରାଧ ଦେବତା । କାରଣ ଏକ୍ସପ୍ରେସ ହାଇୱେ ଏଇ ପାଟକୁରା-କେନ୍ଦ୍ରାପଡ଼ା ଅଞ୍ଚଳର କେବଳ ଭୌଗୋଳିକ ମାନଚିତ୍ରକୁ ବଦଳାଇ ନାହିଁ, ବଦଳାଇ ଦେଇଛି ଅର୍ଥନୈତିକ ମାନଚିତ୍ରକୁ । ଏ ଅଂଚଳରେ ଏଭଳି ବ୍ୟକ୍ତି ଅନେକ ଅଛନ୍ତି ଯେଉଁମାନଙ୍କ ପାଖରେ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ କିଛି କହିଲେ ସେମାନେ ପିଟିଦେବେ ବା ହାତରେ କୁରାଢ଼ୀ ବା ଟାଙ୍ଗିଆ ଥିଲେ ତାହା ମଧ ବ୍ୟବହାର କରିଦେବେ ।

ମୋର ଏକ ପ୍ରତ୍ୟକ୍ଷ ଅଭିଜ୍ଞତା କଥା କହିବି । ଏଇ ପାଟଲିପଙ୍କ ଗ୍ରାମରେ ଏକ ବୃଦ୍ଧ ଥିଲେ । ତାଙ୍କ ସହିତ ମୋର ଦିନେ ଦେଖାହେଲା । କଥାବାର୍ତ୍ତା ଆରମ୍ଭ ପୂର୍ବରୁ ମୋତେ ତାଙ୍କ ନାତୁଣୀ ଚୁପକରି ଡାକି ତାଗିଦ କରିଦେଲେ ଯେ– ଦେଖନ୍ତୁ, ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ କିଛି କହିବେ ନାହିଁ । କହିଲେ ହଠାତ୍ ସେ ଠେଙ୍ଗାରେ ଆପଣଙ୍କୁ ପିଟି ଦେଇପାରନ୍ତି । ଯଦିଓ ବିଜୁ ପଟ୍ଟନାୟକ ଆପଣଙ୍କର ଆତ୍ମୀୟ ବୋଲି ସେ ଜାଣନ୍ତି ।

ମୁଁ ଏହାକୁ ଗ୍ରହଣ କରିପାରିଲି ନାହିଁ । ମୁଁ କଥାବାର୍ତ୍ତା କରୁ କରୁ ବିଜୁ ପଟ୍ଟନାୟକଙ୍କ ଉପରେ କହିବାକୁ ଆରମ୍ଭ କଲି । କ'ଣ ଆପଣମାନେ ବିଜୁ ପଟ୍ଟନାୟକଙ୍କୁ ଏଇ ନିର୍ବାଚନ ମଣ୍ଡଳୀରୁ ସାତଥର ନିର୍ବାଚିତ କଲେଣି । ଅଥଚ ଏଇ ଗ୍ରାମମାନଙ୍କୁ ରାସ୍ତା ନାହିଁ, ଆଲୁଅ ନାହିଁ..... ଦେଖିଲି ବୃଦ୍ଧ, ଅଶୀ ବର୍ଷ ବୟସ୍କ ବୃଦ୍ଧ ଥରିବାକୁ ଆରମ୍ଭ କଲେଣି ଏବଂ ଓଠ କାମୁଡ଼ି ହାତରେ ଥିବା ବାଡ଼ିଟି ଉପରେ ହାତ ପକାଇଲେଣି । ତାଙ୍କ ନାତୁଣୀ ବାଡ଼ିଟି ଉପରେ ଗୋଡ଼ ପକାଇ ଠିଆହୋଇ ମୋତେ ଟାଣି ଆଣିଲା ତାଙ୍କ ପାଖରୁ ।

ସେ ଗର୍ଜି ଉଠିଲେ, ବିଜୁ ପଟ୍ଟନାୟକଙ୍କୁ ଓଡ଼ିଶାର, ଭାରତର ନେତା ହେବାକୁ ପଠାଇଛୁ, କେବଳ ଏଇ ଅଞ୍ଚଳ ପାଇଁ ନୁହେଁ । ସେ ନେତା ସାରା ଦେଶର । ମାନଚିତ୍ର କେମିତି ବଦଳି ଯାଇଛି ଦେଖୁନାହାନ୍ତି । କିନ୍ତୁ ଏଇ ନିର୍ବାଚନମଣ୍ଡଳୀ ଉପରେ ଆଖି ପକାଇବାକୁ ତା'ର ବେଳ କାଇଁ ? ଆଉ ତା'ର ଚାମଣ୍ଡାମାନେ ତ ସେ କଥା ତାକୁ ନ କହି ଖାଲି ତେଲ ମାରୁଛନ୍ତି ନିଜ ପାଇଁ !

Digitized by srujan ka@gmail.com

ସେଇ ପାଟଲିପଙ୍କ ଗ୍ରାମରେ ଆମେ ଏକ ମହିଳା ସମିତି ଗଠନ କଲୁ । ନାମ ଦିଆଗଲା ଲୁଥେରାନ ମହିଳା ସମିତି । 'ସମାଜ' ସଂପାଦକ ରାଧାନାଥ ରଥ ଆଶୀର୍ବାଦ ଦେଲେ । ଶ୍ରୀମତୀ ମନୋରମା ମହାପାତ୍ର ତାଙ୍କ ତରଫରୁ ସେ ଗାଁକୁ ଗଲେ । କୁମାରୀ ପ୍ରମିଳା ତ୍ରିପାଠୀ ତାହାର ହେଲେ ସଭାନେତ୍ରୀ । ଏକ ଛୋଟ କୁଡ଼ିଆ ଘରେ କାମ ଆରମ୍ଭ ହେଲା । ସେଠାରେ ଯାଇ ପହଞ୍ଚିଲେ ତତ୍‌କାଳୀନ ବୋର୍ଡ଼ ଅଫ ରେଭେନ୍ୟୁର ସଦସ୍ୟ ଶ୍ରୀ ବିଘ୍ନରାଜ ପଟେଲ, କମିଶନର ଶ୍ରୀ ବିନୋଦ ଝା ଏବଂ ମୋର ସହପାଠୀ କଲେକ୍ଟର ଶ୍ରୀ ଅକ୍ଷୟ ଦାସ । ବସିବେ କେଉଁଠି ? ପଟେଲ ସାହେବ ଭାରି ଅମାୟିକ । ସେ ବାଉଁଶବୁଦା ଛାଇରେ ଏକ ମସିଣା ପକାଇବାକୁ କହି ସେଇଠି ବସିଲେ । ବିନୋଦ ଝା ଏବଂ ଅକ୍ଷୟ ଦାସ ମଧ ସେଇଆ କଲେ । ବାଧ ହୋଇ ଅନ୍ୟ ସମସ୍ତେ ବି ବସିଲେ । କାମ ଆରମ୍ଭ ହେଲା ।

ସେଇ ଝିଅ ପ୍ରମିଳା (ପମି) ବିବାହ କରିନାହିଁ, କରିପାରିଲା ନାହିଁ । ସେଇ ମହିଳା ସମିତିଟି ସହେ ଯେପରି ସେ ବିଭା ହୋଇପଡ଼ିଲା । ବର୍ତ୍ତମାନ ତାହା ଏକ ମହୀରୁହରେ ପରିଣତ ହୋଇଛି । ଚାରି ଏକର ସ୍ଥାନ ଉପରେ ଗଢ଼ି ଉଠିଛି ଲୁଥେରାନ ମହିଳା ସମିତି ଏବଂ ନିବେଦିତା ହୋମ ଅନାଥ ପିଲାମାନଙ୍କ ପାଇଁ । ଗର୍ବର ସହିତ ପ୍ରମିଳା ତ୍ରିପାଠୀ କହନ୍ତି ଯେ "ମୁଁ ସିନା ବିଭା ହୋଇନାହିଁ । କିନ୍ତୁ ମୋର ତ ଦୁଇଶହ ପିଲା, କେଉଁ ମା'ର ଗର୍ବଠାରୁ ମୋର ଗର୍ବ ଊଣା ?"

ମତଲୁବ ଅଲ୍ଲୀ ମନ୍ତ୍ରୀ ଥିଲାବେଳେ ସେ ଗ୍ରାମମାନଙ୍କୁ ବିଜୁଳି ଲାଇନ ଯାଇଛି, ନଳିନୀ ମହାନ୍ତି ମନ୍ତ୍ରୀ ଥିଲାବେଳେ ସେ ଗ୍ରାମମାନଙ୍କରେ ନଳକୂଅ ବସିଛି । ବିଜୟ ମହାପାତ୍ର ମନ୍ତ୍ରୀ ଥିଲାବେଳେ ନଈବନ୍ଧ ଉପରେ ପକ୍କାରାସ୍ତା ପାଇଁ ଅନୁଦାନ ମିଳିଛି (କିନ୍ତୁ ହୋଇପାରି ନାହିଁ ଗ୍ରାମୀଣ କନ୍ଦଳ ଯୋଗୁଁ) ଦୁରାରୋଧ ଅଞ୍ଚଳ । ତଥାପି ସାହାଯ୍ୟ ମିଳିଛି ବିଭିନ୍ନ ଦେଶରୁ, ବିଭିନ୍ନ ରାଜ୍ୟରୁ । ନିନ୍ଦା ଗାଳି ଅପମାନ ପ୍ରମିଳା ଶୁଣି ଶୁଣି ନୀଳକଣ୍ଠ ପାଲଟି ଯାଇଛନ୍ତି । ପ୍ରଶଂସା, ସୁନାମ ତାଙ୍କୁ ବିଭ୍ରାନ୍ତ କରିପାରି ନାହିଁ । ବୟସ ବଢ଼ିଛି, ଶରୀର ଅସୁସ୍ଥ ହେବାକୁ ଆରମ୍ଭ କରିଛି, ସେ କ୍ଳାନ୍ତ ହୋଇ ନାହାନ୍ତି । ଯେଉଁମାନେ ଦିନେ ନିନ୍ଦାରେ ମୁଖର ଥିଲେ, ସେଇମାନେ ଫେରିଛନ୍ତି ଜାନୁପାତି, ନତମସ୍ତକରେ । କଠୋର ପରିଶ୍ରମ, ନିଷ୍ଠା ଆଗରେ ଯେ କୌଣସି ନିନ୍ଦା ତିଷ୍ଠିପାରେ ନାହିଁ, ତାହା ହିଁ ପ୍ରମାଣିତ ହୋଇଛି ।

ଆଗରୁ କହିଛି ଯୁଦ୍ଧର ଏକ ଭୟାବହ ପ୍ରଭାବ ସାରା ପୃଥିବୀ ଉପରେ ପଡ଼ିଛି । ପଶ୍ଚିମ ଓଡ଼ିଶା ଏଥିରୁ ମୁକ୍ତ ହୋଇ ରହିବ କେମିତି ? ଏହାର ନିରନ୍ଧ୍ର ଅରଣ୍ୟ ଥିଲା ଏହାର ସଂପଦ ! ମୋର ମନେ ପଡୁଛି ଅଧ୍ୟାପକ ଏ.ଏଲ୍. ବାସାମଙ୍କ କଥା– "Orissa has been invaded many times, conquered less, and administered much less. The inpregnable forests, the turbulent rivers, the elephantine forces and the heroic people fought even against the emperor Ashoka & to turn him as Dharmasoka" (ଆନ୍ତର୍ଜାତିକ ସେମିନାରର ବକ୍ତୃତା) ।

Digitized by srujan ka@gmail.com

ପଶ୍ଚିମ ଓଡ଼ିଶାର ସେଇ ଅରଣ୍ୟର ପ୍ରଥମ ଅବକ୍ଷୟ ଆରମ୍ଭ ହୋଇଛି ଦ୍ୱିତୀୟ ମହାଯୁଦ୍ଧ ସମୟରୁ । ଯୁଦ୍ଧ ପାଇଁ ଆବଶ୍ୟକ ହେଇଚି ବିପୁଳ କାଠ । ପଶ୍ଚିମ ଓଡ଼ିଶା ଯୋଗାଇଛି ତାହା । ଫଳରେ ନିର୍ବିଚାର କାଠକଟା ଆରମ୍ଭ ହୋଇଛି ଏବଂ ପରେ କାଠଚୋରମାନଙ୍କର ଏହା ପାଲଟିଛି ସ୍ୱର୍ଗ । କାଠଚୋରମାନେ ପରବର୍ତ୍ତୀ କାଳରେ ରାଜନୈତିକ ଶକ୍ତି ଆହରଣ କରିଛନ୍ତି ଏବଂ ଫଳରେ କଳାହାଣ୍ଡି ଭଳି ନିବିଡ଼ ଜଙ୍ଗଲ ଭରା ରାଜ୍ୟ ଇଥୋପିଆ ପରି ମରୁଭୂମି ପାଲଟିଛି ।

ଏଇ ସମୟରେ କୁଜଙ୍ଗ ବୋମାମାଡ଼ ପରେ ପରେ ଓଡ଼ିଶାର ରାଜଧାନୀ କଟକରୁ ଉଠିଯାଏ ସମ୍ବଲପୁରକୁ । ବର୍ତ୍ତମାନ ଏହା ଅନେକ ଲୋକଙ୍କୁ ଜଣା ନାହିଁ ଯେ ଓଡ଼ିଶା ହେଉଛି ଭାରତର ଏକମାତ୍ର ପ୍ରଦେଶ ଯାହାର ରାଜଧାନୀ ଉଠି ଯାଇଥିଲା ଯୁଦ୍ଧ ସମୟରେ ।

ସମ୍ବଲପୁରର ମାନଚିତ୍ର ବଦଳିବାକୁ ଆରମ୍ଭ କଲା । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନର ନେତାସବୁ ଗିରଫ ହୋଇଗଲେ । କେବଳ ମୋର ଯାହା ମନେପଡୁଛି ଶ୍ରୀ ଭାନୁଶଙ୍କର ଯୋଶୀ ହିଁ ଏକମାତ୍ର ବ୍ୟକ୍ତି ଯେ ଗିରଫ ନ ହୋଇ ବେଶ୍ କିଛିଦିନ ପଳାତକ ହେଲେ ।

ବ୍ରୁକ୍ସହିଲ୍ (ଯେଉଁଠି ବର୍ତ୍ତମାନ ଷ୍ଟାଡିୟମ ତିଆରି ହୋଇଛି), ସମ୍ବଲପୁର ଜିଲ୍ଲା କଲେକ୍ଟରଙ୍କ ଅଫିସ ପାଖରେ ଥିବା ପଳାସ ବଣ, ବୁଢ଼ାରଜା ପାହାଡ଼ ତଳ ଶ୍ମଶାନ (ଯେଉଁଠି ବର୍ତ୍ତମାନ ଗଙ୍ଗାଧର ମେହେର ଟ୍ରଷ୍ଟ ଫଣ୍ଡ କଲୋନୀ ଅଛି)ରେ ଘର ତିଆରି ଆରମ୍ଭ ହେଲା । ଦିନ ରାତି କାମ ଆରମ୍ଭ ହେଲା । ସେତେବେଳକୁ ମୁଁ ଜିଲ୍ଲା ସ୍କୁଲର ଛାତ୍ର (ବର୍ତ୍ତମାନ ଯାହା ଗଙ୍ଗାଧର ମେହେର କଲେଜ) ସେଇ ହତାରେ ସ୍କୁଲ ପାଇଁ ଘର ତିଆରି ହେଲା । ସବୁ ଘରର ତଳ ସିମେଣ୍ଟ, ତଲେଇ ଉପରେ ଚୂନ ଲିପା କାନ୍ଥରେ ତିଆରି ଏଇ ଚାଳଘର । ଜିଲ୍ଲା ସ୍କୁଲ ସେଇଠି ହେଲା ଏବଂ ସ୍କୁଲ ଥିବା ଘରେ ହେଲା ଓଡ଼ିଶା ସେକ୍ରେଟେରିଏଟ । ବଲାଙ୍ଗୀର ରାଜାଙ୍କର ଏକ ବିଶାଳ ଘର ଥିଲା, ସମ୍ବଲପୁର ସହରରେ । ସେଇ ଘରେ ଆର୍.ଡି.ସିଙ୍କ ଅଫିସ ହେଲା । ସମଗ୍ର ଓଡ଼ିଶା ପାଇଁ ସେତେବେଳେ ଥିଲା ଗୋଟିଏ ଆର୍.ଡି.ସି. ।

ଆଗରୁ କହିଛି ଯେ ସମ୍ବଲପୁର ଉଦ୍‌ବେଳିତ ହେବାକୁ ଲାଗିଥିଲା । କିନ୍ତୁ କେଉଁଠି ''କଟକିଆ''ମାନଙ୍କ ପ୍ରତି ବୈରତା ନ ଥିଲା । କେତେକ ହ୍ୟୁମର ଯେ ନ ଥିଲା ନୁହେଁ । ହଠାତ୍ ସମ୍ବଲପୁରରେ ମହାନଦୀରୁ ଇଲିସି ମାଛ ମିଳିଲା । ଇଲିସି ପ୍ରାୟତଃ ସମୁଦ୍ର ବା ସମୁଦ୍ର ମୁହାଣରେ ମିଳେ । କଟକରେ କେବେ କେବେ ମିଳେ । କିନ୍ତୁ ହଠାତ୍ ସମ୍ବଲପୁରରେ ଇଲିସି ମାଛ ! ''କଟକିଆମାନେ ଆଇଲେ, ସେମାନେ ନେଇ ଆସିଛନ୍ତି ଇଲିସି ମାଛ ତାଙ୍କ ସାଙ୍ଗରେ । ଜଣେ ଅଫିସର ପହଞ୍ଚିଲେ ସମ୍ବଲପୁରରେ । ଦୁଇଦିନ ପରେ ପଡ଼ିଲା ଏକାଦଶୀ । ସେ ଏକାଦଶୀ ଉପବାସ କରନ୍ତି । ସେ ପିଅନକୁ ନିର୍ଦ୍ଦେଶ ଦେଲେ ପାଞ୍ଚ ଟଙ୍କାର ଛେନା ଆଣିବା ପାଇଁ । ପିଅନ ଆଶ୍ଚର୍ଯ୍ୟ ହେଲା । କିନ୍ତୁ ହୁକୁମ ଅବମାନନା କରିବାର ଶକ୍ତି ତା'ର ଆସିବ କେଉଁଠୁ ? ନିର୍ଜଳା

Digitized by srujan ka@gmail.com

ଉପବାସ କରି ଅଫିସର ବସିଛନ୍ତି । ଛେନା ଆସିଲେ ଖାଇବେ । ଯଥା ସମୟରେ ଗୋଟିଏ ଭାର ଘସି ଧରି ଉପସ୍ଥିତ ହେଲା ପିଅନ । ଭାରରେ ବୋହି କରି ଆଣିଛି ସାଙ୍ଗରେ ଗୋଟିଏ ଲୋକ । ସେ ବିନୀତ ଭାବରେ ଆସି କହିଲା ଯେ ପାଞ୍ଚଟଙ୍କାର ଛେନା ଗଣ୍ଡା ସାହିରେ ମିଳିଲା ନାହିଁ । ତେଣୁ ଦୁଇଟଙ୍କାର 'ଛେନା' ଆଣିଛି । ବାକି ଛେନା ପାଇଁ ଅର୍ଡ଼ର ଦେଇ ଆସିଛି । ସମ୍ବଲପୁରରେ ଘସିକୁ ଛେନା କହନ୍ତି । ଅଫିସର ତାଜୁବ୍ । ନା ହସି ପାରୁଛନ୍ତି, ନା ରାଗି ପାରୁଛନ୍ତି ।

ଇମିତି ଅନେକ କାହାଣୀ ଗଳ୍ପ କରାଯାଏ ।

ମହାଯୁଦ୍ଧର ବିଭୀଷିକା ବଢ଼ିଲା ଏବଂ ତା'ସହିତ ଗଳ୍ପ ମଧ୍ୟ ବଢ଼ିଲା । ଝାରସୁଗୁଡ଼ାରୁ ସମ୍ବଲପୁର ରାସ୍ତା ବାଟ ଦେଇ ଟ୍ୟାଙ୍କ ଚାଲିବ । ରାତିଦିନ ଲାଗି କାମ ଚାଲିଲା । ରେଙ୍ଗାଲି ପାଖରେ ଏକ ରପ୍ଟା ବା Causeway ତିଆରି ଆରମ୍ଭ ହେଲା । ୰ ମଦନ ମୋହନ ଭଞ୍ଜ (କବି ସଚ୍ଚି ରାଉତରାୟଙ୍କର ଭିଣୋଇ) ଥାଆନ୍ତି ପୂର୍ତ୍ତ ବିଭାଗ ଅଫିସର ସେଇ ରପ୍ଟା ତିଆରି ଚାର୍ଜରେ । ରେଙ୍ଗାଲିରେ ଏକ ଫରେଷ୍ଟ ରେଞ୍ଜ ଅଫିସ କମ୍ପ୍ଲେକ୍ସ ତିଆରି ହେଉଥାଏ ବାପାଙ୍କର ଦାୟିତ୍ୱରେ । ସେ ଇଞ୍ଜିନିଅର ନୁହନ୍ତି । ତେଣୁ ମଦନବାବୁଙ୍କର ସାହାଯ୍ୟ ଲୋଡ଼ା ପଡ଼େ । ମଦନବାବୁ ଆମର ଆତ୍ମୀୟ । ସେ ଆମରି ବସାରେ ରହନ୍ତି ବେଳେବେଳେ । ଦିନେ ବାପା ତାଙ୍କୁ ପଚାରିଲେ, ''ମଦନ, ତମେ ପଇସା ଖାଅ କି ନାଇଁ ?'' ବାପାଙ୍କୁ ଆଶ୍ଚର୍ଯ୍ୟ କରି ସେ କହିଲେ ଯେ ''ଖାଏ । କିନ୍ତୁ ମୋର ଖାଇବାରେ ଏକ ସ୍ୱାତନ୍ତ୍ର୍ୟ ରହିଛି ।'' ସେ ବାପାଙ୍କୁ ଡାକି ନେଇଗଲେ କାମ କରିବା ସ୍ଥାନକୁ । ଘର ଅରଣ୍ୟ ଭିତରେ ରପ୍ଟା କାମ ତିଆରି ଚାଲିଛି । ରପ୍ଟାର ଚାରିକୋଣରେ ଚାରିଟା ଘର ତିଆରି ହୋଇଛି ଅସ୍ଥାୟୀ ଚାଳ ଘର । ଗୋଟାକରେ ପୂର୍ତ୍ତ ବିଭାଗର ଅଫିସର, ଗୋଟାକରେ ତାଙ୍କର ସବୁ ଜୁନିଅର ମାନେ । ଗୋଟାକରେ ପୁରୁଷ କୁଲି ଏବଂ ସବା ଶେଷରେ ରେଜା (ମହିଳା) କୁଲି ରହୁଛନ୍ତି । ଦିନରାତି କାମ ଚାଲିଛି । ରାତ୍ରିରେ ପେଟ୍ରୋମାକ୍ସ ଆଲୁଅରେ କାମ ହେଉଛି । ବନ୍ଧୁକଧାରୀ ଦୁଇଜଣ ଅଛନ୍ତି– ଚୋର ଏବଂ ଜନ୍ତୁଜାନ୍ତାଙ୍କ ପାଇଁ । ମଦନବାବୁ ବାପାଙ୍କୁ କହିଲେ ସାର୍, ଏଇପରି କାମ ଚାଲିଲେ, କାମ ଠିକ୍ ହେବ ଏବଂ ଏଷ୍ଟିମେଟ ହୋଇଥିବା ଟଙ୍କାରୁ କିଛି ବଳିଯିବ । ସେଇତକ ମୁଁ ଏବଂ ଅନ୍ୟମାନେ ବାଣ୍ଟିନେବୁ ।

ଏଇ ଘଟଣାର ଯଥାର୍ଥ ପ୍ରମାଣିତ ହେଲା ଯେତେବେଳେ ସେଇ ରାସ୍ତା ସଳଖ ହେଲା, ଗୁମୁଲୋଇ ଯିବା ରାସ୍ତାକୁ ବାଦ ଦେଇ ରାସ୍ତା ସଳଖ ହେବ । ସମ୍ବଲପୁରରୁ ଝାରସୁଗୁଡ଼ା ଯିବାର ରାସ୍ତା । ସେ ପୋଲ ବା ରପ୍ଟାକୁ ଭାଙ୍ଗିବାକୁ ଗଲାବେଳେ ତାହା ଆଦୌ ଭାଙ୍ଗିଲା ନାହିଁ । ବାଧ୍ୟ ହୋଇ ସେ ରପ୍ଟା ସେମିତି ରହିଲା ।

ଏଇଠି ମୋର ମନେ ପଡୁଛି ଆଉ ଏକ ଘଟଣା । ୧୯୬୭ ମସିହାରେ ଆମେ ଆସିଲୁ ରହିବା ପାଇଁ ରାଷ୍ଟ୍ରଭାଷା ରୋଡ଼ରେ ଥିବା କଲୋନୀରେ । ଏଇ ସବୁ ଘର ସମେତ କ୍ୟାଣ୍ଟନମେଣ୍ଟ ରୋଡ଼, ମେଡିକାଲ ଏବଂ ରେଭେନ୍ସା କଲେଜ ହତାରେ ଥିବା କିଛି କ୍ୱାଟର୍ସ ତିଆରି ହୋଇଥିଲା

Digitized by srujan ka@gmail.com

ଯୁଦ୍ଧ ସମୟରେ ସାମରିକ ଅଫିସରମାନେ ରହିବା ପାଇଁ । ପୁରୁଣା ସେକ୍ରେଟେରିଏଟ ମଧ୍ୟ ତିଆରି ହେଲା ସେଇ ସମୟରେ ସୈନ୍ୟବାହିନୀ ପାଇଁ । ପନ୍ଦର ଦିନ ଭିତରେ କ୍ୱାର୍ଟର୍ସ ସବୁ ତିଆରି ହେବା ପାଇଁ ଥିଲା ଆଦେଶ । ମୁଖ୍ୟ କଣ୍ଟ୍ରାକ୍ଟର ଥିଲେ ୰ ନରେନ୍ଦ୍ର ସୁର (ଶେଖ୍‌ବଜାର) ଏଇ ସବୁ ଘରର କାନ୍ଥସବୁ ଥିଲା କମ ଉଚ୍ଚର । ବାହାର ଲୋକେ ଯେପରି ହତା ଭିତରେ ଥିବା ବଗିଚା ଓ ଫୁଲକୁ ଉପଭୋଗ କରି ପାରିବେ । ସମୟ ବଦଳିଗଲା, ପାଚେରୀ ଡେଇଁ ଲୋକେ ଫୁଲ ତୋଳିଲେ, ଗଛ ଭାଙ୍ଗିଲେ ।

ମୁଁ ଯାଇ ପହଞ୍ଚିଲି ଚିଫ୍ ଇଞ୍ଜିନିଅର ୰ ମମତାଜ ଅଲ୍ଲୀଙ୍କ ପାଖରେ । ଆମେ ଏକା ସ୍କୁଲର ଛାତ୍ର । ସେ ସିନିଅର । ସେ ଥିଲେ ବାଦଶାହୀ ମିଜାଜ୍‌ର ଲୋକ । ସାଙ୍ଗେ ସାଙ୍ଗେ ଆଦେଶ ଦେଲେ ପାଚେରୀ ସବୁ ଉଚ୍ଚ କରିବା ପାଇଁ । ଆଦେଶ ସିନା ଦେଲେ କିନ୍ତୁ ପାଚେରୀ ଭାଙ୍ଗି ହେଉନାହିଁ ଆଦୌ । ସେତିକିବେଳେ ଓଡ଼ିଶା ହାଇକୋର୍ଟର ଛାତ ଉପର ଗମ୍ବୁଜ ସବୁ ତିଆରି ହେଉଥାଏ ଚିଫ୍ ଜଷ୍ଟିସ୍ ଶ୍ରୀ ବର୍ମନଙ୍କ ନିର୍ଦ୍ଦେଶରେ । ସେଠି ବି ସେଇ ଅବସ୍ଥା ! ବାଧ ହୋଇ ତତ୍‌କାଳୀନ ପୂର୍ତ୍ତବିଭାଗ ଅଫିସର ଶ୍ରୀ ପତି (ପୂରାନାମ ମନେ ପଡୁନାହିଁ କିନ୍ତୁ ସେ ସମ୍ବଲପୁରର ଲୋକ) ଫେରାଦ ହେଲେ ଚିଫ୍ ଇଂଜିନଅରଙ୍କ ପାଖରେ । ସେ ଆସିଲେ ଦେଖିବା ପାଇଁ । ତାଙ୍କ ସାଙ୍ଗରେ ବହୁ ପୂର୍ତ୍ତବିଭାଗର ଅଫିସର, କଣ୍ଟ୍ରାକ୍ଟର । ଶ୍ରୀ ପତି ପୁଣି ଥରେ ସବୁ କଥା ଅବତାରଣା କଲେ । ମମତାଜ ଅଲ୍ଲୀ ହସି ହସି କହିଲେ କେମିତି ଭାଙ୍ଗିବ ? ଡମର ୫% ବା ମୋଠ ୩% ସେତେବେଳେ ନ ଥିଲା । ସିମେଣ୍ଟ ନ ଥିଲା, ଚୂନରେ କାମ ହୋଇଛି ତଥାପି ଭାଙ୍ଗୁନାହିଁ । ବୁଝିଲେ ତ ? ଏକଦମ ଖୋଲାଖୋଲି ଷ୍ଟେଟମେଣ୍ଟ । ସମସ୍ତେ ମୁଣ୍ଡ ପୋତି ଠିଆହେଲେ । କାନ୍ଥକୁ ଶାବଳ ମାରି ମାରି ଭଙ୍ଗାଗଲା ଏବଂ କାନ୍ଥ ଉଚ୍ଚ ହେଲା । ଆଜି ବି ଏ ଘରମାନଙ୍କ କାନ୍ଥରେ କଣ୍ଟା ଫୁଟେ ନାହିଁ ।

କିନ୍ତୁ ନୂଆ ତିଆରି ହୋଇଥିବା ଘର, ପୋଲ ଭୁଷୁଡ଼ି ପଡ଼ିବା ବର୍ତ୍ତମାନ ନୈମିତ୍ତିକ କଥା । ମମତାଜ୍ ଅଲ୍ଲୀ ଆଉ ନାହାନ୍ତି । କିନ୍ତୁ ତାଙ୍କ କଥା ମୋର ମନେଅଛି ।

ଆଗରୁ କହିଛି ଯେ ସମ୍ବଲପୁର ଏକ ସ୍ୱର୍ଣକାତର ଅଞ୍ଚଳ ପାଲଟିଥିଲା । ଦ୍ୱିତୀୟ ମହାଯୁଦ୍ଧ, ସମ୍ବଲପୁରକୁ ରାଜଧାନୀ ସ୍ଥାନାନ୍ତରୀକରଣ, ସାମ୍ପ୍ରଦାୟିକ ବିଦ୍ୱେଷ ଏଥିପାଇଁ ଖୋରାକ ଯୋଗାଇଥିଲା । ମନେ ପଡୁଛି ଯେଉଁଦିନ କଟକରୁ ସମ୍ବଲପୁରକୁ ରାଜଧାନୀ ଉଠିଯିବା କଥା ଘୋଷଣା କରାଗଲା ସେଇଦିନ ଜାପାନ ରେଡ଼ିଓରୁ ପ୍ରଚାରିତ ହେଲା ଜାପାନର ବୋମାମାଡ଼ରୁ ସମ୍ବଲପୁର ବଞ୍ଚିପାରିବ ନାହିଁ । ସମ୍ବଲପୁର ସହରର ଉପକଣ୍ଠରେ ଥିବା ମୋତିଝରଣରେ ଜାପାନୀ ପାରାସୁଟ ବାହିନୀ ଅବତରଣ କରିବେ । ମହାଭାରତକୁ ଆଉ କେହି ନ ଶୁଣନ୍ତୁ, ଶୁକଦେବ ଶୁଣିପାରିଲା ପରି, ବାପାଙ୍କର ବଡ଼ ଅଫିସରମାନେ ତାହା ଶୁଣିପାରିଲେ ଆପଣାର ରେଡ଼ିଓରୁ । କାରଣ ରେଡ଼ିଓ ସଂଖ୍ୟା ଥିଲା ସ୍ୱଳ୍ପ । ଆମେ ହିଁ ଏକମାତ୍ର ପରିବାର ଥାଉ ସେଇ ମୋତିଝରଣ

Digitized by srujan ka@gmail.com

ଭିତରେ । ତେଣୁ ଆମକୁ ପଳାଇବାକୁ କୁହାଗଲା । ଆମେ ଯାଇ ଦୁଇମାସ ରହିଲୁ କତରବଗା ନାମକ ଗ୍ରାମରେ । କିନ୍ତୁ ଆମ ଦୁଇ ଭାଇଙ୍କର ପଢ଼ିବାରେ ଅସୁବିଧା ହେବାରୁ ଆମେ ପୁଣି ଫେରିଲୁ ମୋତିଝରଣ ।

ଏଇ ସମୟରେ ଆମେ ଦୁଇଭାଇ ଯାଉ ସ୍କୁଲକୁ, ବର୍ତ୍ତମାନ ଷ୍ଟାଡିଅମ ହୋଇଥିବା, ସେତେବେଳର ପଡ଼ିଆ ଟପି । ମଝିରେ ଗୋଟିଏ ଝରଣା, ସେଇଠି ପଳାଶଗଛରେ ଫୁଟେ ଅପର୍ଯ୍ୟାପ୍ତ ଫୁଲ । ଆକାଶରେ ରଙ୍ଗଲାଗେ, ବ୍ରୁକ୍‌ସିଲ ଟପି ଆମେ ଯାଉ ଥାନା ପଛପାଖକୁ । ଆଜି ସେଠି ଭୀଷଣ ଭିଡ଼ । ସେତେବେଳେ ଥାନା ଏବଂ ଥାନା ଆଗରେ ଏକ ରାଜାଙ୍କର ସମ୍ବଲପୁର ନିବାସ ଛଡ଼ା ଆଉ କିଛି ନ ଥିଲା । ନିକାଞ୍ଚନ ରାସ୍ତା । ସେଇ ପୁଲିସ୍ ଥାନା ଛକରୁ ଫାଟକ ।

ଜଣେ ଲୋକ ସେଇଠି ଆମକୁ ଭେଟେ । ସେ ବକ୍ତୃତା ଶୁଣାଏ ଆମକୁ ଜାତୀୟ ଆନ୍ଦୋଳନ ସଂପର୍କରେ ଅଗ୍ନିଗର୍ଭା ଭାଷଣ । କିନ୍ତୁ ସବୁ ବୁଝିବାକୁ ବୟସ ହୋଇ ନ ଥାଏ । ଯଦିଓ ସ୍କୁଲରେ ଶିକ୍ଷକକୁଳର ପ୍ରବାଦ ପୁରୁଷ ମନମୋହନ ପଟ୍ଟନାୟକ ପଢ଼ାନ୍ତି ଫାସିବାଦ ସଂପର୍କରେ, ମର୍ଚାଣ୍ଟ ଅଫ୍ ଭେନିସ୍‌ରେ ଇହୁଦୀ ଚରିତ୍ର (ସାଇଲକ୍ ଦି ଜିଉ)ରୁ । ଆଉ ସନ୍ଧ୍ୟାରେ ଚିତ୍ରଶିଳ୍ପୀ ଗୋପାଳ କାନୁନଗୋ ପଢ଼ାନ୍ତି ସାମ୍ୟବାଦ ଏବଂ ସାମ୍ରାଜ୍ୟବାଦ ଉପରେ । କିନ୍ତୁ ଏଇ ଯେଉଁ ମଣିଷଟି ଆମକୁ ପ୍ରତିଦିନ ଭେଟେ ସେ ହେଉଛି ବଙ୍ଗାଳୀ । ତାଙ୍କ ନାମ ମୋର ମନେ ନାହିଁ, ସେ ନାମଟା ମଧ ଠିକ୍ କି ନୁହେଁ କହିପାରିବି ନାହିଁ । ମୋର ଯାହା ମନେ ପଡୁଛି ସମ୍ବଲପୁରର ସବୁ ନେତା ଗିରଫଦାର ହୋଇ ଯାଇଥିଲେ କିନ୍ତୁ ଭାନୁଶଙ୍କର ନାମକ ଜଣେ ସ୍ୱାଧୀନତା ସଂଗ୍ରାମୀ ପଳାତକ ହୋଇଥିଲେ ଏବଂ ତାଙ୍କୁ ଖୋଜି ଗିରଫ କରିବା ପାଇଁ ହୁଲିଆ ଜାରି କରାଯାଇଥିଲା । ସେଇ ବଙ୍ଗାଳୀ ବିପ୍ଳବୀ ଆମ ଫେରନ୍ତା ବାଟରେ ଆମ ଦୁଇଭାଇ ଏବଂ ଆମ ସାଙ୍ଗରେ ସ୍କୁଲକୁ ଯାଉଥିବା ତତ୍‌କାଳୀନ ସିଭିଲ ସର୍ଜନଙ୍କ ପୁଅ, ତିନିଜଣଙ୍କୁ ସେଇ ମୋତିଝରଣର ପଳାଶଗଛ ଛାଇରେ ବକ୍ତୃତା ଦିଅନ୍ତି । ସେ ପିଲାଟି, ଡାକ ନାମ କାନୁ, ମରିଗଲା ସମୁଦ୍ରରେ ବୁଡ଼ି ପୁରୀଠାରେ । ତୁମକୁ ବି କିଛି କରିବାକୁ ହେବ, କରିବାକୁ ହେବ.... । ଏଇଥିଲା ତାଙ୍କର ଉଦାତ୍ତ ଆହ୍ୱାନ । ଆଜି ମଧ ସେ କଣ୍ଠ ମୋର କାନରେ ଧ୍ୱନିତ ହୁଏ । ''ଉଠ ଜାଗ....'' କହି ସେ ଆପଣାର ବକ୍ତୃତା ଶେଷ କରନ୍ତି । ଗଭୀର ରେଖାପାତ ହୁଏ ଶିଶୁ ମନରେ ।

ଦିନେ ସେ ମୋତେ କହିଲେ ତୁମକୁ ଗୋଟିଏ ଛୋଟିଆ କାମ କରିବାକୁ ପଡ଼ିବ, ଦେଶ ମାତୃକା ପାଇଁ । କ'ଣ ପାରିବ ନାହିଁ ? ତୁମେ ତ ଗୋଟିଏ ବ୍ୟାଗରେ ବହି ନେଇ ଯାଉଛ, ମୁଁ ସେଇ ବ୍ୟାଗ ସାଙ୍ଗରେ ଆଉ ଗୋଟିଏ ଛୋଟିଆ ବ୍ୟାଗ ଦେବି । ତୁମକୁ ମୁଁ ସ୍କୁଲ ପାଖରେ ସେଇଟିକୁ ଦେବି । ଏବଂ ତୁମ ଠାରୁ ନେଇଯିବି ଦାନଗଦୀ ପାଖରେ । ଏଇ ପୋଲିସମାନେ ହେଉଛନ୍ତି ବ୍ରିଟିଶ ସରକାରଙ୍କର ଏଜେଣ୍ଟ । ସେମାନେ ଯେପରି ଏହାର ଟେର ନ ପାଆନ୍ତି ।

Digitized by srujan ka@gmail.com

ମୁଁ ଓ ମୋର ଭାଇ କିଛି ଥର ସେଇପରି କଲୁ । କିନ୍ତୁ ଧୀରେ ଧୀରେ ସେ ବ୍ୟାଗଟିର ଓଜନ ବଢ଼ିଲା । ଦିନେ ମୁଁ ଏକୁଟିଆ ସ୍କୁଲରୁ ଫେରୁଛି । ମୋର ସାନଭାଇ ସେଦିନ ସ୍କୁଲକୁ ଯାଇନି । ସବୁଦିନ ପରି ସେଦିନ ମଧ ମୋ ବ୍ୟାଗଟା ବେଶ୍ ଓଜନିଆ ହୋଇଗଲା, ଆଉ ବ୍ୟାଗଟା ଭର୍ତ୍ତି ହେବା ପରେ ।

ଥାନା ଛକରୁ ବ୍ରୁକ୍‌ସିଲ ପର୍ଯ୍ୟନ୍ତ ଆସିବା ବାଟରେ ହଠାତ୍ ସେଇ ବ୍ୟାଗଟା ମୋ ହାତରୁ ଖସି ପଡ଼ିଲା ଏବଂ ପ୍ରଚଣ୍ଡ ଶବ୍ଦ ହେଲା । ମୋର ବାମ ପଟ ହାତଟା ପୂରା ରକ୍ତାକ୍ତ ହୋଇଗଲା । ଆଙ୍ଗୁଠି ଗୁଡ଼ାକର ହାଡ଼ ଦିଶିଲା । ଭୀଷଣ ଶବ୍ଦ । ସେ ଲୋକଟି ମୋତେ ଦୂରରୁ ଦେଖୁଥିଲା । ସେ ଦୌଡ଼ିଆସି ସବୁ ଜିନିଷପତ୍ର ଗୋଟାଇ ନେଇ ମୋତେ କାନ୍ଧରେ ପକାଇ ଦୌଡ଼ିଲା ଏବଂ ଦାନଗଦୀ ପାଖରେ (କିଏ କହୁଥିଲା ପରେ ସେଇଟା ସମ୍ବଲପୁରର ବିଶିଷ୍ଟ ବ୍ୟକ୍ତି ବ୍ରଜେନ କରଙ୍କ ଘର) ଗୋଟାଏ ଘରେ ପଶିଗଲା । ପୁଲିସ କୁଆଡ଼େ କିଛି ପରେ ଶବ୍ଦର ସୁରାକ ପାଇ ଆସି ପହଞ୍ଚିଛନ୍ତି । ଏଇ ଥାନାବାବୁମାନେ ଲାଞ୍ଚନେବା ଛଡ଼ା ଅନ୍ୟ ସବୁ କାର୍ଯ୍ୟରେ ଡେରିରେ ପହଞ୍ଚନ୍ତି । ୧୯୫୦ ମସିହାରେ କାଳିଆବୋଦାର ଲୋକେ ଖବରଦେଲେ ପୁଲିସକୁ ଯେ ଦଳେ ଡକାୟତଙ୍କୁ ସେମାନେ ଘେରଉ କରିଛନ୍ତି । ସେଇଟା ଥିଲା ପ୍ରକୃତରେ କମ୍ୟୁନିଷ୍ଟ ପାର୍ଟିର ପଳାତକମାନଙ୍କର ଗୋଟାଏ ଡେନ (Den) ବା ଆଶ୍ରୟସ୍ଥଳୀ । ସେଠାରେ ସେଦିନ ରହିଥିଲୁ ୰ ଦୁର୍ଗାଚରଣ ମହାନ୍ତି, ୰ ମନମୋହନ ମିଶ୍ର, ୰ ମାଧବ ସିଂ, କେଶବାନନ୍ଦ ଦାସ ଏବଂ ମୁଁ । ପୁଲିସ ଏତେ 'ଶୀଘ୍ର' ପହଞ୍ଚିଲା ଯେ ଆମେ ସବୁ ଖସି ଯାଇପାରିଲୁ ସେମାନେ ପହଞ୍ଚିବା ପୂର୍ବରୁ ।

ସେ ଲୋକଟି ଥିଲା କିନ୍ତୁ ବିଚକ୍ଷଣ । ସବୁ ରକ୍ତ ସେ ପୋଛି ଦେଇଥିଲା ତାର ଲୁଗାକୁ ଚିରି । ରକ୍ତ ଯେପରି ବାଟରେ ନ ପଡ଼େ, ତାହା ମଧ କରିଥିଲା ତାର ଚଦରକୁ ମୋ ଦେହରେ ସଂପୂର୍ଣ୍ଣ ଗୁଡ଼ାଇ । ପୁଲିସ ପହଞ୍ଚିଲା ଶବ୍ଦ ଶୁଣି । ଥାନାର ଏକଦମ ପାଖରେ । କିନ୍ତୁ କୌଣସି ଟେର ପାଇଲା ନାହିଁ । ଏଣେ ସେଇ ସାହିରେ ଥିବା ୰ ଡକ୍ଟର ଜଲାଲୁଦ୍ଦିନ ଅହମ୍ମଦଙ୍କୁ ଡକାଇ ପଠାଗଲା । ସେ ମୋର ପାରିବାରିକ ବନ୍ଧୁ । ସେ ଆସି ବ୍ୟାଣ୍ଡେଜ୍ ପ୍ରଭୃତି କରିଦେଲେ ଏବଂ ମୋର ଦାଦା ବିରଞ୍ଚିନାରାୟଣଙ୍କୁ ଖବରଦେଲେ । ସେ ସେତେବେଳେ ସେଇଠି ଥାଆନ୍ତି । ସୁରଗୁଜା ଗଡ଼ଜାତର ପ୍ରସିଦ୍ଧ ପ୍ରଜାମେଳିର ସର୍ଦ୍ଦାର ଭାବରେ ସେଠାକାର ଫରେଷ୍ଟ ଅଫିସର ବିରଞ୍ଚିନାରାୟଣ ବୋଲି ଜଣା ପଡ଼ିବା ପରେ ସେ ସୁରଗୁଜାରୁ ପଳାଇ ଆସନ୍ତି ରାତାରାତି ସବୁ ଜିନିଷ ଛାଡ଼ି । ଆଗରୁ କହିଛି ଯେ ଇଷ୍ଟର୍ଣ୍ଣ ଷ୍ଟେଟସର ଫରେଷ୍ଟ ଆଡ଼ଭାଇଜର ଏଚ୍.ଏଫ. ମୁନିଙ୍କ କଥା । ସେ ଦାଦାଙ୍କୁ ଛୁଟିରେ ଯିବାକୁ କହି ସେଇ ସମ୍ବଲପୁରରେ ରହିବାକୁ କହନ୍ତି । ସେଇ ରାତିରେ ବାପାଙ୍କର ଜଣେ ବନ୍ଧୁ ୰ ନଗେନ ଚୌଧୁରୀଙ୍କ ମୋଟର ଗାଡ଼ିରେ ଆମେ ସବୁ ଚାଲିଯାଉ ଗୁମୋଲୋଇ ଡାକବଂଗଳାକୁ । ପୁଲିସ ପରେ ସୁରାକ ପାଇ ତନାଘନା କରେ । କିନ୍ତୁ କିଛି ଫଳ ହୁଏନା । ଫଳରେ କେବଳମାତ୍ର ଗୋଟିଏ ପଢ଼ାବର୍ଷ ନଷ୍ଟହୁଏ ।

Digitized by srujan ka@gmail.com

ପରେ ମୁଁ ଜାଣିଲି ଯେ ମୁଁ ଯାହାସବୁ ନେଉଥିଲି ତାହା ଥିଲା ସଂତ୍ରାସବାଦୀମାନଙ୍କର ବୋମା । କିନ୍ତୁ ଏତିକିଛଡ଼ା ମୁଁ ଆଉ ବିଶେଷ କିଛି ଜାଣି ନାହିଁ । ଏହିଥିଲା ମୋର କ୍ଷୁଦ୍ର ଦାନ ସ୍ୱାଧୀନତା ଆନ୍ଦୋଳନ ପାଇଁ ଏବଂ ଏହାକୁ ଭିତ୍ତିକରି ସଂଗ୍ରାମୀ ଭତ୍ତା ପାଇବାକୁ ଅନେକ ମୋତେ କହିଛନ୍ତି । କିନ୍ତୁ ମୁଁ ତାହା କରିପାରି ନାହିଁ; ଯଦିଓ ମୁଁ ଜାଣିବାରେ ଅନେକ ଲୋକଙ୍କୁ ଜେଲ ନ ଯାଇ ଭତ୍ତା (ଯଦିଓ ଅନ୍ୟୁନ ୬ ମାସ ଜେଲଦଣ୍ଡ ବରଖାସ୍ତ କରିବାର ଏକ ସର୍ବନିମ୍ନ ସର୍ତ୍ତ) ପାଇବାର ଦେଖିଛି । ସେମାନଙ୍କ ଭିତରେ ବହୁ ରାଜନୈତିକ ଦଳମାନଙ୍କର କର୍ମୀମାନେ ଅନ୍ତର୍ଭୁକ୍ତ । ଠିକ୍ ସେଇପରି ବହୁ 'ପ୍ରଖ୍ୟାତ' ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ତିନିଶହ ଟଙ୍କାରୁ ପାଞ୍ଚଶହ ଟଙ୍କା ନେଇ ଜାଲ ସାର୍ଟିଫିକେଟ ଦେବାର ଦେଖିଚି, ଜାଣିଛି । ସ୍ୱାଧୀନତା ପରେ ଯେତେବେଳେ ଦରିଦ୍ର ଭାରତରେ ଏମ.ଏଲ.ଏ., ଏମ.ପି. ନାମ ଗୋଷ୍ଠୀ ତିଆରି ହେଲା ଏବଂ ସେମାନେ ଅନେକ ସୁବିଧା, ସୁଯୋଗ, ପେନସନ୍ ପାଇବା ପାଇଁ ସକ୍ଷମ ହେଲେ ଯେତେବେଳେ ଅନ୍ୟମାନେ ମଧ ଆପଣାର ତ୍ୟାଗର ବିନିମୟରେ ଭତ୍ତା ପାଇବାକୁ ଉଦ୍ୟମ କଲେ ଏବଂ ମୋହଗ୍ରସ୍ତ ହେଲେ ଏବଂ ତା'ର ଫାଇଦା ଉଠାଇ ୰ ଇନ୍ଦିରା ଗାନ୍ଧୀ ଏଇ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ପେନସନ୍ ଅବସ୍ଥା ପ୍ରଚଳନ କଲେ । ମୋର ମନେ ପଡୁଛି, ସେ ଦିନର ସଭା । ସ୍ୱାଧୀନତା ସଂଗ୍ରାମୀମାନେ ଭତ୍ତା ପାଇବା ପରେ ପ୍ରଥମ ସମ୍ମିଳନୀ ହେଉଥାଏ । ସ୍ୱାଧୀନତା ସଂଗ୍ରାମୀମାନେ ଖୁବ୍ ଜୋରରେ ଘୋଷଣା କଲେ ଯେ ସେମାନେ ଅବସର ନେଇ ନାହାନ୍ତି । ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ସେମାନେ ପ୍ରସ୍ତୁତ । ଦେଶକୁ ଦାରିଦ୍ର୍ୟରୁ ମୁକ୍ତ କରିବା ପାଇଁ, ସମସ୍ତଙ୍କର ସମାନ ଅଧିକାରକୁ ରୂପାୟିତ କରିବା ପାଇଁ ସେମାନ ପ୍ରସ୍ତୁତ । କିନ୍ତୁ ସେ ଗର୍ଜନ କେବଳ ଗର୍ଜନରେ ହିଁ ରହିଗଲା । ଅଧିକ ଭତ୍ତା, ଅଧିକ ସୁଯୋଗ ପାଇଁ କେବଳ ଦାବି ହେଲା । ଏହା ଫଳରେ ସେମାନଙ୍କର ମୂଲ୍ୟ କମିଗଲା । ସମ୍ମାନ କମିଗଲା । ସେମାନେ କେବଳ "ଭତ୍ତାଧାରୀ" ହୋଇ ରହିବା ସାର ହେଲା । ଅବଶ୍ୟ ସମସ୍ତେ ଏଥିରେ ଅନ୍ତର୍ଭୁକ୍ତ ନୁହନ୍ତି । କିନ୍ତୁ ବେଶ କିଛି ଲୋକଙ୍କ ପାଇଁ ସମସ୍ତଙ୍କୁ ଏହା ଭୋଗ କରିବାକୁ ପଡୁଛି ।

ସମ୍ବଲପୁରକୁ ସେକ୍ରେଟେରିଏଟ୍, ରେଭିନ୍ୟୁ କମିଶନରଙ୍କ ଅଫିସ ଉଠିଗଲା ପରେ ଗୁଜବର ସହର ପାଲଟିଗଲା ସମ୍ବଲପୁର । ଅମୁକ ଜାଗାରେ ଲମ୍ବା ଲମ୍ବା ଲୋକଙ୍କୁ ଦେଖିବାକୁ ମିଳିଲା, ଅମୁକ ଜାଗାରେ ଚାରିଟା ମୋଟର ସାଇକେଲ ସହିତ ଆକାଶରୁ ଖସିବା ଦେଖାଗଲା ଗୋରା ଲୋକମାନଙ୍କୁ । ତେଣେ ମିତ୍ର ଶକ୍ତିର ପରାଜୟ ଘଟୁଛି ଇଉରୋପ ଏବଂ ଏସିଆରେ । ଗୋଟିକ ପରେ ଗୋଟିଏ ଘାଟୀ ଖସିପଡୁଛି ଶତ୍ରୁ ସୈନ୍ୟଙ୍କ ହାତରେ । ଏତିକିବେଳେ ପ୍ରସିଦ୍ଧ ବ୍ରିଟିଶ ଜାହାଜ ପ୍ରିନ୍ସ ଅଫ୍ ୱେଲସ ଏବଂ ଆର୍କରଏଲକୁ ବୁଡ଼ାଇ ଦିଅନ୍ତି ଶତ୍ରୁପକ୍ଷ । ପ୍ରିନ୍ସ ଅଫ ୱେଲସ ଜାହାଜ ଉପରେ ଏକ ଆସ୍ତରଣ ଥିଲା । ଯାହା ଉପରେ ବୋମା ପକାଇଲେ ମଧ ତାହାକୁ ବିଚ୍ଛୁରିତ କରିଦିଆଯାଇ ପାରୁଥିଲା । କିନ୍ତୁ କୌଣସି ଏକ ଜାପାନୀ ତରୁଣୀ ଏକ ଆତ୍ମ-

Digitized by srujan ka@gmail.com

ବିଧ୍ୱଂସୀ ଉଡ଼ାଜାହାଜରେ ତାହାର ବିଶାଳ ଚିମିନି ଦେଇ ପଶିଗଲେ ଏବଂ ଆପଣାର ଜୀବନ ସହିତ ଧ୍ୱଂସ ପାଇଗଲା ଏଇ ଜାହାଜ । ବିଲାତର ପ୍ରଧାନମନ୍ତ୍ରୀ ତାହା ପୂର୍ବରୁ ଘୋଷଣା କରିଥିଲେ ଯେ ପ୍ରିନ୍ସ ଅଫ ୱେଲସ ଥିବା ପର୍ଯ୍ୟନ୍ତ ମିତ୍ରଶକ୍ତି ଅଜେୟ । କିନ୍ତୁ ଏହା ପରାହତ ହେଲା ।

ସମ୍ବଲପୁରରେ ଥିବା ସମୟରେ ମୁଁ ଦେଖିବାକୁ ଯାଇଥିଲି ହୁମ୍ମା ମନ୍ଦିର । ସମ୍ବଲପୁରଠାରୁ ୨୨ ମାଇଲ ଦୂରରେ ଏହା ଅବସ୍ଥିତ । ବାପା କିଛି ସମୟ ପାଇଁ ହୁମ୍ମା ରେଞ୍ଜ ଅଫିସର ଦ୍ୱୈତ ଦାୟିତ୍ୱରେ ଥିଲେ । ଇଟାଲୀର ପିସାଟାୱାର ଯଦି ପୃଥିବୀର ଅଷ୍ଟମ ଆଶ୍ଚର୍ଯ୍ୟ ଭାବରେ ଗଣତି ହୁଏ, ତା'ହେଲେ ହୁମ୍ମାର ମନ୍ଦିର, ଲିଙ୍ଗ, ପାଚିରୀ କାହିଁକି ପୃଥିବୀର ନବମ ଆଶ୍ଚର୍ଯ୍ୟ ଭାବରେ ସ୍ଥାନ ପାଇବ ନାହିଁ ? କାହିଁକି ସ୍ଥାନ ପାଇବ ନାହିଁ ଫୁଲବାଣୀର ଚକାପାଦ ? ମୋତେ ଏଇ ପ୍ରଶ୍ନ ଘାରିଛି ସେଇଦିନଠାରୁ ।

ମୋର ମନେ ପଡୁଛି, ବନ୍ଧୁ ଶ୍ରୀକାନ୍ତ ଜେନା କେନ୍ଦ୍ରରେ ମନ୍ତ୍ରୀ ଥାଆନ୍ତି । ସେ ତତ୍‌କାଳୀନ ପର୍ଯ୍ୟଟନ ମନ୍ତ୍ରୀଙ୍କୁ ସାଙ୍ଗରେ ଆଣି (ନାମ ମନେ ପଡୁନାହିଁ) ଏକ ସମ୍ମିଳନୀ ଡାକିଥାନ୍ତି ଓଡ଼ିଶା ସେକ୍ରେଟେରିଏଟ୍ କନଫରେନ୍ସ ହଲରେ, ଓଡ଼ିଶାରେ ପର୍ଯ୍ୟଟନର ସମ୍ଭାବନା ସଂପର୍କରେ । ମୁଁ ଏଇ ହୁମ୍ମା, ଏବଂ ଚକାପାଦ କଥା ଉଠାଇଥିଲି ଏବଂ କହିଥିଲି ଯେ ଏପର୍ଯ୍ୟନ୍ତ କେହି ଏହାକୁ ଆଣିନାହାନ୍ତି ପର୍ଯ୍ୟଟନ ବିଭାଗ ଦୃଷ୍ଟିକୁ ।

ମୋର ମନେ ପଡୁଚି । ମୁଁ ଥାଏ ମଙ୍ଗୋଲିଆ ପରିଭ୍ରମଣରେ । ମଙ୍ଗୋଲିଆ ଏକ ଯାଯାବର ଦେଶ । ଆକାରରେ ଭାରତବର୍ଷଠାରୁ ବଡ଼ କିନ୍ତୁ ଲୋକଙ୍କ ସଂଖ୍ୟା ମାତ୍ର କିଛି ଲକ୍ଷ । ରାଜଧାନୀ ଉଲାନ୍‌ବାଟୋର ଠାରୁ ସବୁ ଦର୍ଶନୀୟ ସ୍ଥାନ ବହୁ ଶହ କିଲୋମିଟର ଦୂରରେ । ମଙ୍ଗୋଲିଆ ହେଉଛି ତମ୍ବୁ (Tent)ର ଏବଂ ଅଶ୍ୱର ଦେଶ । ମୁଁ ସେଇଠି ଲେଖିଲି ଏକ ଚିଠି ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟଙ୍କୁ । ଏହି ଦେଶ କେବଳ ଘୋଡ଼ା ଏବଂ ତମ୍ବୁ ପାଇଁ ପ୍ରସିଦ୍ଧ । ତଥାପି ପର୍ଯ୍ୟଟନ ଗଢ଼ି ଉଠିଛି ସେଇ ଦୁଇଟିକୁ ଭିତ୍ତିକରି । କିନ୍ତୁ ଓଡ଼ିଶାର ପର୍ଯ୍ୟଟନ ପାଇଁ ଏକ କର୍ପୋରେଶନ ଗଢ଼ା ହୋଇପାରି ନାହିଁ ।

ନୀଳମଣିବାବୁ ମୋର ପାରିବାରିକ ବନ୍ଧୁ । ତାଙ୍କର ସ୍ତ୍ରୀ ମରୁତୀର୍ଥର ସଂପାଦିକା ଶ୍ରୀମତୀ ନଳିନୀ ଦେବୀ ରାଉତରାୟ ମୋର ଏକାନ୍ତ ଆତ୍ମୀୟା ।

ମୁଁ ଫେରିଲା ବେଳକୁ ନୀଳମଣିବାବୁ ଅର୍ଡ଼ର ଦେଇଛନ୍ତି ଯେ ଗରିଜା ଭୂଷଣ ପଟ୍ଟନାୟକ ଦେଇଥିବା ପ୍ରସ୍ତାବ ଅନୁଯାୟୀ ରାଜ୍ୟରେ ଏକ ପର୍ଯ୍ୟଟନ କର୍ପୋରେଶନ ଗଢ଼ାଯିବା ଉଚିତ ଏବଂ ଶ୍ରୀ ଅକ୍ଷୟ ବିଶ୍ୱାଳ ଆଇ.ଏ.ଏସ. ଗିରିଜା ଭୂଷଣ ପଟ୍ଟନାୟକଙ୍କ ସହଯୋଗରେ ଏଇ କର୍ପୋରେଶନ ପ୍ରତିଷ୍ଠା ପାଇଁ ଆବଶ୍ୟକ ପଦକ୍ଷେପ ନେବେ ।

ରାଜ୍ୟ ପର୍ଯ୍ୟଟନ କର୍ପୋରେଶନ ଗଠିତ ହେଲା । ଶ୍ରୀ ଅକ୍ଷୟ ବିଶ୍ୱାଳ ଏହାର ସମ୍ବିଧାନ ପ୍ରଣୟନ କଲେ । ନୀଳମଣିବାବୁ ଚାହିଁଥିଲେ ଯେ ମୁଁ ତାହାର ଚେୟାରମାନ୍ ହୁଏ । କିନ୍ତୁ ମୁଁ

Digitized by srujan ka@gmail.com

ସେଥିରେ ରାଜି ହେଲି ନାହିଁ । କାରଣ ସେଇଟା ସୁନ୍ଦର ହୋଇ ନ ଥାନ୍ତା ଏବଂ ଦ୍ୱିତୀୟତଃ ଗଢ଼ା ହେବା ସମୟରେ ଜଣେ ପୂରା ସମୟ ଚେୟାରମ୍ୟାନ୍‌ର ଖର୍ଚ୍ଚ ଲଦିଦେଲେ କର୍ପୋରେଶନ ଲାଭବାନ ହୋଇ ପାରିବ ନାହିଁ ।

ତେଣୁ ମୁଁ ପର୍ଯ୍ୟଟନ କର୍ପୋରେଶନଠାରୁ ଆରମ୍ଭ କରି କଳିଙ୍ଗ ହସ୍‌ପିଟାଲ ପର୍ଯ୍ୟନ୍ତ କୌଣସି ଅନୁଷ୍ଠାନରୁ ଡାଇରେକ୍ଟର ଭାବରେ ମଜୁରୀ ବା ଫିସ୍ ନେଇ ନାହିଁ । କେବଳ ହସ୍ତତନ୍ତ କର୍ପୋରେଶନର ଡାଇରେକ୍ଟର ଭାବରେ ଗାଡ଼ିଭଡ଼ା ନେଇଛି, ମୋ ପାଇଁ ନୁହେଁ ତିନିଜଣ ଡାଇରେକ୍ଟର ଏବଂ ତିନିଜଣ ଅଫିସରଙ୍କର ସମବେତ ଗାଡ଼ିଭଡ଼ା ମୋ ନାମରେ ଦରଜ ହୋଇଛି । ହସ୍ତତନ୍ତ କର୍ପୋରେଶନର ଅବସ୍ଥା ଥିଲା ସାଙ୍ଘାତିକ । ମୁସ୍ତାଫିଜ ଅହମ୍ମଦ ଏହି ବିଭାଗର ମନ୍ତ୍ରୀ ହେଲାବେଳେ ନୂଆ ବୋର୍ଡ଼ ଗଢ଼ିଲେ ଏବଂ ତହିଁରେ ମୋତେ ସଭ୍ୟ କରିନେଲେ ।

ସେତେବେଳକୁ କର୍ପୋରେଶନର ଅବସ୍ଥା ସାଂଘାତିକ । ସାରା ଓଡ଼ିଶାରେ ବ୍ରାଞ୍ଚ ଖୋଲାଯାଇଛି କିନ୍ତୁ କର୍ପୋରେଶନ ଚାଲିଛି କ୍ଷତିରେ । ଏପରିକି ଏକ ସାମଗ୍ରୀ ବିକ୍ରୀ କରିବା ପାଇଁ ଗଠିତ ତିନୋଟି ଅନୁଷ୍ଠାନ, ଓଡ଼ିଶା ହସ୍ତତନ୍ତ କର୍ପୋରେଶନ, ଓଡ଼ିଶା ହାଣ୍ଡିକ୍ରାଫ୍ଟସ କର୍ପୋରେଶନ ଏବଂ ସମ୍ବଲପୁରୀ ବସ୍ତ୍ରାଳୟର ଦୋକାନ ଠିଆ ହୋଇଛି ମୁହାଁମୁହିଁ ଛୋଟ ଛୋଟ ସହରରେ । ଦୋକାନ ଘର ନିଆଯାଇଛି ବିଭିନ୍ନ ଚାପରେ ଅପନ୍ତରା ଜାଗାରେ, ବିଚିତ୍ର ବ୍ୟକ୍ତି ସବୁ ନିଯୁକ୍ତ ହୋଇଛନ୍ତି ଯୋଗ୍ୟତା ଓ ଆବଶ୍ୟକତା ନ ଥାଇ । ବଡ଼ ବଡ଼ ରାଜନୈତିକ ନେତା, ଅଫିସରମାନେ ହଜାର ହଜାର ଟଙ୍କାର ସାମଗ୍ରୀ ନେଇ ଯାଇଛନ୍ତି, ମୂଲ୍ୟ ଦେଇ ନାହାନ୍ତି । ସବ୍‌ସିଡ଼ିରେ ମିଳୁଥିବା ସୂତାକୁ ପରିଧାନରେ ପରିଣତ ନ କରି ବିକ୍ରୀ ହୋଇଯାଇଛି ଚୋରାରେ । କେଉଁଠି କେତେ ଷ୍ଟକ ରହିଛି ତାର ମଧ୍ୟ ହିସାବ ନାହିଁ । ପ୍ରଦର୍ଶନୀ ପାଇଁ ସାମଗ୍ରୀ ଯାଇଛି କର୍ପୋରେଶନରୁ, ତା ସାଙ୍ଗରେ ଯାଇଛି ଚୋରାରେ ନେତା, ଅଫିସରମାନଙ୍କର ସହଧର୍ମିଣୀମାନଙ୍କ ଦ୍ୱାରା ପଠାଯାଉଥିବା ସାମଗ୍ରୀ । କର୍ପୋରେଶନର ସାମଗ୍ରୀ ବିକ୍ରୀ ହୋଇନାହିଁ ବା ବିକ୍ରୀ କମ ହୋଇଛି । ତା ଜାଗାରେ ବିକ୍ରୀ ହୋଇଛି ଚୋରାରେ ଯାଇଥିବା ସାମଗ୍ରୀ ।

ଏଥିପାଇଁ ଆବଶ୍ୟକ ହେଲା ସାରା ଓଡ଼ିଶାବ୍ୟାପୀ ବିଭିନ୍ନ ସ୍ଥାନକୁ ଯାତ୍ରା, ବିଭିନ୍ନ ଉତ୍ପାଦନ କେନ୍ଦ୍ର, ବିକ୍ରୟ କେନ୍ଦ୍ର ତଦାରଖ କରିବା । ସେତେବେଳେ କର୍ପୋରେଶନର ମାତ୍ର ଗୋଟିଏ ଗାଡ଼ି, ସେଇଟି ପୁଣି ଖରାପ । ତେଣୁ ଭଡ଼ା ଗାଡ଼ିରେ ଯିବାର କଥା । ଖର୍ଚ୍ଚ କମାଇବା ପାଇଁ ଆମେ ସିଦ୍ଧାନ୍ତ କଲୁ । ତିନିଜଣ ଡାଇରେକ୍ଟର, ଜଣେ ଅଫିସରଙ୍କୁ ନେଇ ଗୋଟିଏ ଗାଡ଼ିଯିବ । ଦୁଇବର୍ଷ ଭିତରେ ସେ ବାବଦରେ ଖର୍ଚ୍ଚ ହେଲା ମାତ୍ର ୧୬ ହଜାର ଟଙ୍କା ଏହା ମୋ ନାମରେ ପଡ଼ିଥିଲା । କାରଣ ମୁଁ କଟକରୁ ଯାଉଥିଲି । କିନ୍ତୁ କର୍ମଚାରୀମାନଙ୍କ ଗୋଟିଏ ଗୋଷ୍ଠୀ ଏହାକୁ ମୁଁ ନେଇଛି ବୋଲି କହି ପ୍ରଚାରପତ୍ର ବାଣ୍ଟିଲେ । ଯଦିଓ ମୁଁ ଜଣେ ଟ୍ରେଡ ୟୁନିଅନିଷ୍ଟ ବୋଲି ସେମାନେ ଜାଣିଥିଲେ କିନ୍ତୁ ସେମାନଙ୍କୁ ମୁଁ ଡାଇରେକ୍ଟର ହେଲାବେଳେ ସ୍ପଷ୍ଟ କହିଥିଲି

Digitized by srujan ka@gmail.com

ଯେ ମୁଁ ସେମାନଙ୍କ ନ୍ୟାଯ୍ୟ ଦାବି ପାଇଁ ସଂଗ୍ରାମ କରିବି କିନ୍ତୁ ମୁଁ ଚୋରି ବା କାର୍ଯ୍ୟରେ ଅବହେଳାକୁ ସମର୍ଥନ କରିପାରିବି ନାହିଁ । ଏବଂ ମୁଁ ତାହା ହିଁ କରି ଆସିଛି । କିନ୍ତୁ ଯେଉଁମାନେ କର୍ପୋରେଶନର ଲୁଟ ସହିତ ସଂପୃକ୍ତ ସେମାନଙ୍କର ବିରାଗଭାଜନ ହେବା କିଛି ଅସମ୍ଭବ ନୁହେଁ ।

କାମ କଲେ ଅନେକ କଥା ଶୁଣିବାକୁ ପଡ଼େ । କାମ କଲେ ଭୁଲ୍ ବି ହୁଏ । ତେଣୁ ଆମ ଦେଶରେ ସାଧାରଣତଃ ଲୋକେ ହଲିଲା ପାଣିକୁ ଗୋଡ଼ ବଢ଼ାନ୍ତି ନାହିଁ । ମାନେ କିଛି କରନ୍ତି ନାହିଁ ।

ମୋର ମନେ ପଡୁଚି । ଥରେ ମୁଁ ଯାଇଥାଏ ଇରାନ ଦେଶର ରାଷ୍ଟ୍ରଦୂତଙ୍କୁ ଭେଟିବା ପାଇଁ । ଆଗରୁ ସାକ୍ଷାତ ସମୟ ସ୍ଥିର ହୋଇଛି । ଥରେ ସାକ୍ଷାତ ସମୟ ସ୍ଥିର ହୋଇଥିଲେ ସାକ୍ଷାତ ପାଇଁ କୌଣସି ଅସୁବିଧା ହୁଏନି । ତାଙ୍କର ଅଫିସବାଲା ଅପେକ୍ଷା କରିଥିବେ ।

ଆମେ ଦୁଇଜଣ ପହଞ୍ଚିଲା ବେଳକୁ ସେଠାରେ ଭାରି ଭିଡ଼ ଭାରତୀୟଙ୍କର । ଇରାନ ଯିବା ପାଇଁ ଭିସା ସକାଶେ ଭିଡ଼, ଚାକିରି ପାଇଁ ଯାଉଛନ୍ତି ସେମାନେ । ସେମାନଙ୍କୁ ଠେଲି କ୍ୟୁ ବା ଧାଡ଼ିରେ ଠିଆ କରାଯାଉଛି । ଆମ ଦୁହିଁଙ୍କୁ ବି ଜଣେ କେହି ଠିଆ ହେବାକୁ କହିଲା । ଆମର ପ୍ରତିବାଦ ଶୁଣି ସେଇ ତଳିଆ କର୍ମଚାରୀ ଟିକିଏ ଘାବରେଇ ଗଲା ଏବଂ ଆମର ପରିଚୟ ଦେବାରୁ କ୍ଷମା ମାଗି, ପାଛୋଟି ନେଇଗଲା ରାଷ୍ଟ୍ରଦୂତଙ୍କ ପାଖକୁ ।

ଚାକିରି ପାଇଁ ଏଇ ଭାରତୀୟ ଯାଉଛନ୍ତି ଜାଣି ମୁଁ ରାଷ୍ଟ୍ରଦୂତଙ୍କୁ ପଚାରିଲି, ଏତେ ଲୋକ କିପରି ନିଯୁକ୍ତି ପାଉଛନ୍ତି ? ସେ କହିଲେ ଯେ ଭାରତ ସରକାରଙ୍କର ଗୋଟିଏ ବିଭାଗ ଅଛି Director of Personnel. ସେଇ ବିଭାଗ ଏମାନଙ୍କୁ ପଠାଏ । ସେତେବେଳେ ଓଡ଼ିଶାର ଉଦୟଚାନ୍ଦ ଅଗ୍ରବାଲ ଥାଆନ୍ତି Director of Personnel. ତାଙ୍କୁ ଯାଇ ସାକ୍ଷାତ କଲି । ଓଡ଼ିଆ ଲୋକ କଣ ବୈଦେଶିକ ନିଯୁକ୍ତିର ସୁଯୋଗ ପାଇବେ ନାହିଁ ? ସେ ଆଗ୍ରହର ସହିତ କହିଲେ ଯେ ଏଥିପାଇଁ ଓଡ଼ିଶା ସରକାର ଏକ ସ୍ୱତନ୍ତ୍ର ବିଭାଗ ବା ସେଲ୍ ଗଠନ କରିବେ କିମ୍ବା କୌଣସି କର୍ପୋରେଶନକୁ ଦାୟିତ୍ୱ ଦେବେ । ସେମାନେ ରେଜିଷ୍ଟ୍ରି କରି ଆମକୁ ପଠାଇବେ ।

ନୀଳମଣିବାବୁ ଥାଆନ୍ତି ମୁଖ୍ୟମନ୍ତ୍ରୀ । ମୁଁ ତାଙ୍କୁ ଚିଠି ଲେଖିଲି ଦିଲ୍ଲୀରୁ । ଫୋନ ବି କଲି । ସେ ତୁରନ୍ତ ରାଜି ହେଲେ ଏବଂ ଆଦେଶ ଦେଲେ ଯେ ବର୍ତ୍ତମାନ ପାଇଁ ଇପିକଲ ଏଇ ରେଜିଷ୍ଟ୍ରି ଆରମ୍ଭ କରିବ । କିନ୍ତୁ ସରକାରୀ କଳ କ'ଣ ସହଜରେ କାମ କରେ ? କାମଟା କିମିତି ଏଡ଼ାଇ ଦିଆଯାଇ ପାରିବ ତାହା ପାଇଁ ଆମର ସରକାରୀ କଳ ତତ୍ପର । କାରଣ କାମ ଆବୋରିଲେ ବୋଝ ବଢ଼ିବ, ଦାୟିତ୍ୱ ବଢ଼ିବ । କିଏ କରୁଚି ଏତେ କଥା ? ନ କଲେ ଗଲା ।

ଆମେ କିନ୍ତୁ ନ ଛୋଡ଼ ବନ୍ଧା । ଦିଲ୍ଲୀରୁ ଫେରି ନୀଳମଣିବାବୁଙ୍କୁ ଭେଟିଲି ଏବଂ କହିଲି ଯେ ଇପିକଲ୍ ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ୟୁନିଭର୍ସ ସେ ଦାୟିତ୍ୱ ନେବାକୁ ପ୍ରସ୍ତୁତ । ଆମେ ଖବରକାଗଜ ମାଧ୍ୟମରେ ବିବୃତି ଦେଇ ରେଜେଷ୍ଟ୍ରି ଆରମ୍ଭ କରୁଚୁ । ସାଙ୍ଗରେ ଆମେ ଦିଲ୍ଲୀରୁ

Digitized by srujan ka@gmail.com

ଆଣିଚୁ ଫର୍ମାଟ । ଆମେ ତାକୁ ଭର୍ତ୍ତି କରି ଇପିକଲକୁ ପଠାଇବୁ, ସେମାନେ ତାକୁ ପଠାଇବେ ଦିଲ୍ଲୀ । ନୀଳମଣିବାବୁ ରାଜି ହେଲେ ଏବଂ ରାଧାନାଥବାବୁ 'ସମାଜ' କାଗଜରେ ତାକୁ ବଡ଼ ହରପରେ ଛାପିଦେଲେ ବାରମ୍ବାର ।

ପ୍ରାୟ ଆଠ ହଜାର ଲୋକଙ୍କ ନାମ ରେଜିଷ୍ଟ୍ରି ହୋଇ ପଠାଗଲା ଇପିକଲ୍‌କୁ । ସେମାନେ ଯିବେ କୁଆଡ଼େ ? ଆମେ ତରତର ଥିଲୁ କାରଣ ଆଫ୍ରିକା ଏବଂ ଆରବ ଦେଶମାନଙ୍କରେ ବହୁତ ନିଯୁକ୍ତି ଆବଶ୍ୟକ ବୋଲି ଆମକୁ ସୁରାକ ଦିଆଯାଇଥିଲା । ପରେ ଇପିକଲ୍ ସେ ଦାୟିତ୍ୱ ଗ୍ରହଣ କଲା ।

ତା'ର କିଛି ମାସ ପରେ । ଦିନେ ମୁଁ ଓ ଆମର ଅନ୍ୟତମ କର୍ମକର୍ତ୍ତା ଉମେଶ ଚନ୍ଦ୍ର ନାୟକ ଯାଇଥିଲୁ ଇପିକଲ୍‌ର ମ୍ୟାନେଜିଂ ଡାଇରେକ୍ଟର ବିବେକାନନ୍ଦ ପଟ୍ଟନାୟକଙ୍କୁ ଦେଖାକରିବା ପାଇଁ । ସେ ଜଣେ ଭାରି କଡ଼ା ଅଫିସର ନାମରେ ଖ୍ୟାତ ଥିଲେ । ମୁଁ ଯାଇ ପହଞ୍ଚିଲା ବେଳକୁ ତାଙ୍କର ପି.ଏ. ଭୀତ କଣ୍ଠରେ କହିଲେ ଯେ ସେ ଭାରି ଉଦ୍‌କ୍ଷିପ୍ତ ଅଛନ୍ତି । ଏଇନା ଦେଖା ନ କଲେ ଚଳନ୍ତା ନାହିଁ ? କାହିଁକି ଉଦ୍‌କ୍ଷିପ୍ତ ଅଛନ୍ତି ବୋଲି କହି ମୁଁ କବାଟ ଠେଲି ପଶିଲା ବେଳକୁ ବିବେକ ଭାରି ବିବ୍ରତ ଜଣା ପଡୁଛନ୍ତି । କାରଣ କ'ଣ ବୋଲି ପଚାରିବାରୁ ସେ କହିଲେ ଯେ ନାଇଜେରିଆକୁ ଓଡ଼ିଶାର ୩୫ ଜଣଙ୍କୁ ପଠା ହୋଇଥିଲା । କାଲି ନାଇଜେରିଆରେ ଏକ କୁପ୍ ହୋଇଯାଇଛି । ସେ ଲୋକମାନଙ୍କର କ'ଣ ହେଲା ଜାଣିବା ପାଇଁ ଆମର ପ୍ରଚେଷ୍ଟା ସଫଳ ହୋଇପାରୁ ନାହିଁ । ତେଣୁ କ'ଣ କରାଯିବ । ସେଇଆ ଆମକୁ ବିବ୍ରତ କରୁଛି ।

ମୁଁ ତାଙ୍କ ଫୋନରେ ୟୁନିଭର୍ସକୁ ଫୋନ କଲି ଏବଂ ଆମ ପାଖରେ ଦୁଇଟି ବହି Diplomatic list ଏବଂ Our Representative Abroad ବହି ଦୁଇଟିରୁ ନାଇଜେରିଆରେ ଥିବା ଆମ ଦୂତାବାସର ଅଫିସରମାନଙ୍କର ତାଲିକା, ସେମାନଙ୍କର ଫୋନ ନମ୍ବର, ଠିକଣା ଏବଂ ଭାରତରେ ଥିବା ନାଇଜେରିଆ ଦୂତାବାସର ଅଫିସରମାନଙ୍କ ନାମ, ଠିକଣା, ଟେଲିଫୋନ ନମ୍ବର ସବୁ ଦେଇଦେଲି । ବିବେକଙ୍କ ମୁହଁରେ ହସ ଖେଳିଗଲା ଏବଂ ତାଙ୍କ ଅଫିସରମାନଙ୍କୁ ଡାକି କହିଲେ, ଦେଖୁଚ, ଆମେ ଗଲା ଦୁଇଦିନ ଧରି ସବୁ ଚେଷ୍ଟା କରି ଯାହା କରିପାରି ନ ଥିଲୁ, ଏକ ସ୍ୱେଚ୍ଛାସେବୀ ସଂସ୍ଥା ତାହା କରିପାରିଲା କିପରି ?

ଓଡ଼ିଶାରୁ ବାହାରକୁ ଲୋକ ଯିବା ଆରମ୍ଭ ହେଲା କିନ୍ତୁ ବନ୍ଦ ହୋଇଗଲା ବିବେକ ପଟ୍ଟନାୟକ ଇପିକଲରୁ ଗଲାପରେ । ଏକ ପଟରେ ସରକାର ଯେପରି କୌଣସି ଅଫିସରଙ୍କୁ ଆରମ୍ଭ କରିଥିବା କାର୍ଯ୍ୟକ୍ରମକୁ ସେଟ୍ କରିବାକୁ ସମୟ ଦିଅନ୍ତି ନାହିଁ ଠିକ୍ ସେଇପରି ଜଣେ ଅଫିସର ବଦଳି ହୋଇଗଲେ ଆସିବା ଅଫିସରଙ୍କ ପ୍ରଥମ କାମ ହେଲା ବସିବା ଟେବୁଲ ଚୌକିର ଦିଗ ପରିବର୍ତ୍ତନ କରିବା ବା ନୂଆ ଫର୍ଣ୍ଣିଚର ଆଣିବା ଏବଂ ସେ ଆରମ୍ଭ କରିଥିବା କାମକୁ ବନ୍ଦ କରିବା ବା ସେଥିରେ ବାଧା ସୃଷ୍ଟି କରିବା । ଏଇ କାରଣରୁ ଓଡ଼ିଶାରେ କୌଣସି ନୂଆ କଥା ସମ୍ଭବ ହୋଇପାରି ନାହିଁ, ହେଲେ ବି ତାହା ବନ୍ଦ ହୋଇଯାଇଛି ଅଧାରୁ ।

Digitized by srujan ka@gmail.com

ବିବେକ ପଟ୍ଟନାୟକ କିଛି ବର୍ଷପରେ ଅବସ୍ଥାପିତ ହେଲେ ଭାରତ ସରକାରଙ୍କ ବେସାମରିକ ବିମାନ ଚଳାଚଳ ବିଭାଗର ସେକ୍ରେଟେରୀ ଭାବରେ । ମୋ ପୁଅ ଯାଉଥିଲା ରୁଷକୁ ପାଠ ପଢ଼ିବା ପାଇଁ । ମୁଁ ଏବଂ ମୋର ବନ୍ଧୁ ଉମେଶ ଯାଇଥିଲୁ ତାକୁ ଛାଡ଼ିବା ପାଇଁ । ବିବେକ ସାଙ୍ଗରେ ଦେଖାହେଲା ଦିଲ୍ଲୀରେ । ବିଭାଗୀୟ ସେକ୍ରେଟେରୀ କହିଦେଲେ ଏୟାରପୋର୍ଟରେ ଟିକିଏ ସୁବିଧା ମିଳେ । ସେ କହିଲେ ଯେ ମୁଁ ଫୋନ କରିଦେବି । ଫୋନ କଲେ କିନ୍ତୁ ସେଥି ସହିତ ଇନଷ୍ଟ୍ରକସନ ଦେଲେ No Passes. ତାଙ୍କୁ ପାସ ପାଇଁ ଅନୁରୋଧ ଆମେ କରି ନ ଥିଲୁ । ତେଣୁ ଏତକ କହିବାର କୌଣସି କାରଣ ନ ଥିଲା । ନ ଲେଖିଥିଲେ ଚଳିଥାନ୍ତା । କିନ୍ତୁ ଏତକ କହି ଲାଭ ମିଳିବ କ'ଣ ହଇରାଣ ହେବା ସାର ହେଲା । କାରଣ ଯାହା ପାଇଁ No Pass ବୋଲି ଲେଖାଯାଇଛି ସେ ନିଶ୍ଚୟ ସଂପୂର୍ଣ୍ଣ ବିଶ୍ୱାସୀ ନୁହେଁ । ମୋର 'ବାମପନ୍ଥୀ' ଗନ୍ଧ ତଥାପି ଛାଡ଼ିନାହିଁ ବୋଲି ମନେ ହେଲା । ଏହା ଛାଡ଼ିନାହିଁ ବିଶେଷତଃ ସେଇମାନଙ୍କଠାରୁ ଯେଉଁମାନେ ଭାବନ୍ତି ଯେ ଏକଦା ସେମାନଙ୍କ ଦେହରେ ଏଇ ଗନ୍ଧ କିଛି ବାଜିଥିଲା ଏବଂ ସେମାନେ ତାକୁ ଛାଡ଼ି ସାରିଲେଣି ଅନେକ ଦିନରୁ । କିନ୍ତୁ ସେମାନେ ମୋର ଲୟାଲ ଦାନ ଦି କିଙ୍ଗ ନ୍ୟାୟରେ, ଆମ ପାଇଁ ବେଶ୍ ସତର୍କ ! ଅସୁବିଧା ହେଲା କିନ୍ତୁ ରୂପେୟା କ୍ୟା ନ କରେ କାମ୍ । ସବୁ ପ୍ରତିବନ୍ଧକ ଦି'ଚାରିଟା ନୋଟ୍‌ରେ ଶେଷ । ଖାଲି ଅସୁବିଧା ହେଲା ଯେ ମୋ ପାଖରେ ଏତେ ଟଙ୍କା ନ ଥିଲା ସେଦିନ । ଏୟାରପୋର୍ଟରୁ ଫେରିଲାବେଳେ ଅସୁବିଧା ହେଲା ।

Diplomatic List ଏବଂ Our Representative Abroad ଛପା ହୁଏ ପ୍ରୋଟୋକଲ ବିଭାଗ ଦ୍ୱାରା ପ୍ରତିବର୍ଷ । ସବୁ ପାର୍ଲ୍ୟାମେଣ୍ଟ ସଭ୍ୟ, ସବୁ ସରକାରୀ ଅଫିସରଙ୍କୁ ଏହା ବଣ୍ଟାଯାଏ । ଆମେ ସେଇଠାରୁ ସଂଗ୍ରହ କରୁ । ସେ ଥରକ କୌଣସି ପାର୍ଲ୍ୟାମେଣ୍ଟ ସଭ୍ୟ ନ ଥିଲେ ଦିଲ୍ଲୀରେ । ତେଣୁ ବିବେକ ପଟ୍ଟନାୟକଙ୍କୁ କହିଥିଲି ସେଥିରୁ ଖଣ୍ଡେ ଲେଖାଏଁ ଆମପାଇଁ ଯୋଗାଡ଼ କରିବା ପାଇଁ । କାରଣ ଏଗୁଡ଼ିକ ବାହାରେ ସେତେବେଳେ ମିଳୁ ନ ଥିଲା । ଏବେ ମିଳୁଛି । ହଠାତ୍ ସେ ମୋତେ କହିଲେ ଯେ ଏହି ବହିଗୁଡ଼ିକ ତ କନ୍‌ଫିଡେନ୍‌ସିଆଲ ବା ଗୁପ୍ତ ତେଣୁ ଦେବା କଠିନ ହେବ ! ଏହାକୁ ହିଁ କହନ୍ତି ଭାଗ୍ୟର ବିଡ଼ମ୍ବନା ! ଦିନେ ଏହି ବହି ସାହାଯ୍ୟରେ ମୁଁ ତାଙ୍କୁ ବିବ୍ରତ ଅବସ୍ଥାରୁ ଉଦ୍ଧାର କରିଥିଲି ଏବଂ ଆଜି ସେ ହିଁ କହୁଛନ୍ତି ଯେ ଏହା 'ଗୁପ୍ତ' ।

ସମ୍ବଲପୁରରେ ଥିଲାବେଳେ ଯାଇଥିଲେ ନୃସିଂହନାଥ ଏବଂ ହରିଶଙ୍କର ।

ପରେ ମୁଁ ବହୁବାର ହରିଶଙ୍କର, ନୃସିଂହନାଥ ଯାଇଛି. କିନ୍ତୁ କି ଅବକ୍ଷୟ ଘଟି ଯାଇଛି ଏହା ଭିତରେ । କୋଡ଼ିଏ ଫୁଟ ରାସ୍ତା ପାଇଁ ଶହେ ଫୁଟ ମାଟି ତଡ଼ା ଯାଇଛି ଏବଂ ବାକି ଅଶୀ ଫୁଟର କେହି ବାପା ମାଆ ଥିଲା ଭଳି ମନେ ହୋଇ ନାହିଁ । ନୃସିଂହନାଥ ତଳେ ଥିଲା ଏକ ଅରଣ୍ୟ । ଥରେ ମୁଁ ସେଠାରେ ପହଞ୍ଚିଲି । ପହଞ୍ଚିଲାବେଳକୁ ଅରଣ୍ୟ ତଡ଼ା ହୋଇ କାମ ଜରାମାରଣ୍ଡି ବଗିଚା କରିବା ପାଇଁ. ବଗିଚା କରିବା ପାଇଁ ତ ସ୍ଥାନ ଅଛି ପ୍ରଚୁର । ଏଥିପାଇଁ ଏଇ

Digitized by srujan ka@gmail.com

ପ୍ରାକୃତିକ ଜଙ୍ଗଲକୁ ନଷ୍ଟକରିବାର ଆବଶ୍ୟକତା କେଉଁଠି ? ସେତେବେଳେ ମୋର ବନ୍ଧୁ ଲକ୍ଷ୍ମଣ ମଲ୍ଲିକ କୃଷି ମନ୍ତ୍ରୀ । ତାଙ୍କୁ ମୁଁ ସେଇଠାରୁ ଏକ ଟେଲିଗ୍ରାମ କଲି କାମ ବନ୍ଦ କରିବା ପାଇଁ । କାମ ବନ୍ଦ ହୋଇଥିଲା ।

ସେତେବେଳେ ମନ୍ତ୍ରୀମାନେ ସମ୍ବେଦନଶୀଳ ଥିଲେ, ମହାପୁରୁଷ ଥିଲେ ବୋଲି କହୁନାହିଁ । କିନ୍ତୁ ଗୋଟାଏ କିଛି ସାମୂହିକ କଥା କହିଲେ ଶୁଣୁଥିଲେ । ଚିଠି ଲେଖିଲେ ଉତ୍ତର ମିଳୁଥିଲା । କିନ୍ତୁ ଏବେ ଚିଠି ପି.ଏ.ଙ୍କ ଫାଇଲ ଟପି ଯାଇ ପାରୁନାହିଁ । ସାକ୍ଷାତ ପାଇଁ ସମୟ ମାଗିଲେ, ଉତ୍ତର ଆସୁନାହିଁ । ଧସେଇ ପଶିବା ବୟସ ଆଉ ନାହିଁ ।

ଲକ୍ଷ୍ମଣ ମଲ୍ଲିକ ମନ୍ତ୍ରୀତ୍ୱରୁ ଗଲାପରେ ପୁଣି ସେଇ କଥା ହେଲା । ଏବେ ଶୁଣିଲି ଯେ ସେ ବଗିଚା କାମ ଫେଲ୍ ମାରିଚି । ଜଙ୍ଗଲ ଯାଇଛି । ଏବେ 'ସାମାଜିକ ବନ ପ୍ରକଳ୍ପ' କୁଆଡ଼େ ହେଉଛି । ତାହା ''ସାମାଜିକ ବନ ପ୍ରକଳ୍ପ'' ନୁହେଁ, ଅସାମାଜିକ ନିଜ ପ୍ରକଳ୍ପ ।

ମୋର ମନେପଡୁଛି ।

''ମଣିଷ ଓ ଅରଣ୍ୟ'' ଉପରେ ଏକ ଆନ୍ତର୍ଜାତିକ ସେମିନାର ହେଉଥାଏ ଦିଲ୍ଲୀରେ । ଓଡ଼ିଶାରେ ଏହି ପ୍ରକଳ୍ପର ମୁଖ୍ୟ ଭାବରେ ମୋ ଉପରେ ଏହାର ଦାୟିତ୍ୱ ପଡ଼ିଲା ଉକ୍ତ ସେମିନାରକୁ ଉଦ୍‌ଘାଟନ କରିବା ପାଇଁ । ମୋର ଭାଷଣ ସରିଲାପରେ ମୋର ଅନତି ଦୂରରେ ବସିଥିବା ଜଣେ ବ୍ୟକ୍ତି ମୋତେ ପଚାରିଲେ ଯେ ଆପଣ ଓଡ଼ିଶାରୁ ଆସିଛନ୍ତି ? କ'ଣ ଅବସ୍ଥା ହେଲା, ଓଡ଼ିଶାର ସାମାଜିକ ବନ ପ୍ରକଳ୍ପର ? ଏହାର ମୁଖ୍ୟଙ୍କ ରହିବା ଘରେ ବାରଟା ଶୀତତାପ ନିୟନ୍ତ୍ରଣ ଯନ୍ତ୍ର ଲାଗିବାର ଆବଶ୍ୟକତା କେଉଁଠି ? ସେ କହିଲେ ଓଡ଼ିଶା ସଂପର୍କରେ ଆମର ଅନୁଧ୍ୟାନର ଫଳ ଅତ୍ୟନ୍ତ ନୈରାଶ୍ୟଜନକ । ମୁଁ କିଛି କିଛି ଜାଣିଥିଲି । କରପ୍ସନର ବର୍ତ୍ତମାନ ବିକେନ୍ଦ୍ରୀକରଣ ହୋଇଯାଇଛି । ଏହାର ଜାତୀୟକରଣ ହୋଇ ସାରିଛି । ଏବଂ ଏହାକୁ ଆଉ କେହି ନିନ୍ଦା କରୁନାହାନ୍ତି । ଏହା ପାରିବାରପଣିଆରେ ପରିଣତ ହୋଇଛି । ସତେ ଯେପରି ପଇସା ଖାଇଯିବା ଆମର ମୌଳିକ ଏବଂ ଗଣତାନ୍ତ୍ରିକ ଅଧିକାର ! ପଚାରିଲେ କହୁଛନ୍ତି ଯେ କିଏ ନ ଖାଉଛି ଯେ ଆମେ ଖାଇବାଟା ପଡ଼ିଯାଉଛି ଆଖିରେ ! ତଳ କର୍ମଚାରୀଙ୍କୁ ପଚାରିଲେ କହୁଛନ୍ତି ଯେ ଉପରବାଲାଙ୍କୁ ପଚାରୁନାହାନ୍ତି । ଆଗ କିଛି ଲୋକ ଭ୍ରଷ୍ଟାଚାର କରୁଥିଲେ, ବର୍ତ୍ତମାନ କିଛିଲୋକ କରୁନାହାନ୍ତି ।

ମୁଁ ବେଶ୍ କିଛି ବର୍ଷ କଟକ ଶ୍ରୀରାମଚନ୍ଦ୍ର ମେଡିକାଲ କଲେଜ ଗଭର୍ଣ୍ଣି ବୋର୍ଡ଼ର ସଭ୍ୟ ଥିଲି । ମନ୍ତ୍ରିମଣ୍ଡଳ ବଦଳିଯାଇଛି କିନ୍ତୁ ମୋର ସଭ୍ୟପଦ ସେଇପରି ଥିଲା । କେହି ତାହାକୁ ବଦଳାଇ ନ ଥିଲେ । କାରଣ ମୁଁ ଥିଲି ଏକ ସକ୍ରିୟ ସଭ୍ୟ । ବନ୍ଧୁ ଡାକ୍ତର ସନାତନ ରଥ ଖୋଲାଖୋଲି ସଭାରେ କହୁଥିଲେ ତାଙ୍କୁ ଆମର ଭରି ଭାୟ । ସେ ଆସିବା ମାନେ ଆମେ ଥରିବାକୁ ଆରମ୍ଭ କରୁ । ସେ ସବୁ କାଗଜପତ୍ର ଧରି ପ୍ରସ୍ତୁତ ହୋଇ ଆସନ୍ତି । ଥରେ ମୋର

Digitized by srujan ka@gmail.com

କନିଷ୍ଠ ପୁତ୍ରଲ (ନିରଞ୍ଜନ ପଟ୍ଟନାୟକ) ସ୍ୱାସ୍ଥ୍ୟ ମନ୍ତ୍ରୀ ଥିଲେ । ତାଙ୍କୁ ମୁଁ କହିଲି ବୈଠକର ଘଣ୍ଟାକ ପୂର୍ବରୁ ଆସିବା ପାଇଁ । ସେ ଆସିଲେ ଏବଂ ମେଡ଼ିକାଲ ଭିତରେ ଚାଲି ଚାଲି ବୁଲିଲୁ । ଗୋଟାଏ ଅରଖ ନୂଆ ଘର ତିଆରି ହୋଇଥାଏ ଏବଂ ସମଗ୍ର କାନ୍ଥ ଫାଟି ଆଁ କରିଥାଏ । ଦୈବାତ୍ ସେ କଣ୍ଟ୍ରାକ୍ଟର ସେଠାରେ ଥିଲା ସେଦିନ । କ୍ରୋଧରେ ନିରଞ୍ଜନ ପଟ୍ଟନାୟକ ପଚାରିଲେ, ଏ ଘର ନୂଆ ତିଆରି ହୋଇଛି । ଫାଟିଲା କେମିତି ? ସେ ନିରଞ୍ଜନଙ୍କୁ ଚିହ୍ନି ନ ଥିଲା । ସେ ଉତ୍ତର ଦେଲା ଆଜ୍ଞା, ମୁଁ କ'ଣ କରିବି ? ମୋତେ କହିଲେ ଉପନିର୍ବାଚନ ହେଉଛି । ଲକ୍ଷେ ଟଙ୍କା ଦେ । ମୁଁ ଦେବାକୁ ମଧ ବାଧ ହେଲି । ସେଥିରେ ଘର ଯେପରି ହେବା କଥା ହେଲା ।

ନିରଞ୍ଜନଙ୍କର ଚେହେରା ଗୁଲୁଗୁଲିଆ । ସେ ଗମ୍ଭୀର ପ୍ରକୃତିର ମଧ ନୁହନ୍ତି । ତେଣୁ ତାଙ୍କୁ ମନ୍ତ୍ରୀ ବୋଲି ଜାଣିବା କଠିନ । ଥରେ ସେ ଆସିଲେ ସିଟି ହସପିଟାଲକୁ । ୧୮ ନା ୧୯ ଡାକ୍ତରଙ୍କ ଭିତରୁ ମାତ୍ର ୫ ଜଣ ଉପସ୍ଥିତ ଥିଲେ । ସେ ଅନୁପସ୍ଥିତ ସମସ୍ତଙ୍କୁ ସସ୍‌ପେଣ୍ଡ କରିଦେଲେ । ଚାରିଦିନ ପରେ ସବୁ ସସ୍‌ପେନସନ୍ ଉଠିଗଲା, ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ । ମୁଁ ଦେଖିଛି ଯେ ବସନ୍ତମଂଜରୀ ଦେବୀଙ୍କୁ ବାଦଦେଲେ ତା' ପରବର୍ତ୍ତୀ ପ୍ରାୟ ସବୁ ସ୍ୱାସ୍ଥ୍ୟମନ୍ତ୍ରୀ ଯଦିଓ ସ୍ୱାଧୀନ ପୋର୍ଟଫୋଲିଓଧାରୀ କିନ୍ତୁ ପ୍ରାୟତଃ ମୁଖ୍ୟମନ୍ତ୍ରୀମାନଙ୍କର ସେମାନେ ଡେପୁଟି ମିନିଷ୍ଟର । କାରଣ ଓଡ଼ିଶାର ଶାସନକଳରେ ସ୍ୱାସ୍ଥ୍ୟବିଭାଗରେ ବୋଧହୁଏ ସବୁଠାରୁ ବେଶୀ ହସ୍ତକ୍ଷେପ ହୁଏ । କାରଣ ନାରୀ, ଡାକ୍ତର ଏବଂ ଓକିଲ ଏ ତିନୋଟି ପ୍ରତି ମଣିଷର ଦୁର୍ବଳତା ସ୍ୱାଭାବିକ । ତା' ସହିତ ଅର୍ଥ ମିଶିଗଲେ ଯାହା ହୁଏ, ସ୍ୱାସ୍ଥ୍ୟବିଭାଗରେ ପ୍ରାୟ ସେଇ ଅବସ୍ଥା । ସବୁ ବିଭାଗରେ ଡିଲିଂ ଆସିଷ୍ଟାଣ୍ଟ, ସବୁଠାରୁ ଶକ୍ତିଶାଳୀ । କାରଣ ସେ ହେଉଛି ସ୍ଥାୟୀ, ବାକି ସମସ୍ତେ ଅସ୍ଥାୟୀ । ଫାଇଲ ଯେପରି ଭାବରେ ପୁଟ୍‌ଅପ୍ ହୋଇଛି, ଅର୍ଡ଼ର ସେମିତି ହେବ । ଖୁବ୍ କମ ଅଫିସର ଅଛନ୍ତି, ଯେଉଁମାନେ ଫାଇଲକୁ ତନ୍ନତନ୍ନ କରି ଦେଖନ୍ତି । ସେଥିପାଇଁ ବାଥରୁମ, ବ୍ରେକଫାଷ୍ଟ, ପୂଜା, ମିଟିଂ, ତା'ପରେ ଲଞ୍ଚ (ଇଟିଙ୍ଗ) ଏବଂ ତା'ପରେ ନାହାନ୍ତି, ଏଇତକରେ ତ ସମୟ କଟେ । ତେଣୁ ଡିଲିଂ ଆସିଷ୍ଟାଣ୍ଟ ବେଶ୍ ଶକ୍ତିଶାଳୀ ।

ମୋର ଜଣେ ବନ୍ଧୁ କ୍ଷେତ୍ରବାସୀ ବେହେରା (କେଉଁଝର) ଏକଦା ଥିଲେ ଜଣେ ଉଚ୍ଚଶିକ୍ଷିତ ବ୍ୟବସାୟୀ । ଅନେକ ଆଇ.ଏ.ଏସ. ଅଫିସରଙ୍କ ଏବଂ ସେମାନଙ୍କ ପରିବାର ସହିତ ଥିଲା ତାଙ୍କର ଗଭୀର ଆତ୍ମୀୟତା । ଥରେ ତାଙ୍କର ଏକ ମୋଟା ଅଙ୍କର ବିଲ ଅଟକି ଯାଇଥିଲା ଏକ ବିଭାଗରେ । ସେ ସିଧାସଳଖ ଯାଇ ସେକ୍ରେଟେରୀଙ୍କ ପାଖରୁ ଅର୍ଡ଼ର କରାଇ ଆଣିଲେ । ସେ ବିଭାଗର ଡିଲିଂ ଆସିଷ୍ଟାଣ୍ଟକୁ ମୁଁ ଜାଣିଥିଲି ରେଭେନ୍ସା କଲେଜରେ ପାଠ ପଢ଼ାବେଳରୁ । ସେ ଉକ୍ତ ଫାଇଲଟିକୁ ଦେଖି କହିଲେଯେ ହେଉ, ସେକ୍ରେଟେରୀ ତ ଆଦେଶ ଦେଲେଣି ! କିନ୍ତୁ ବିଲ୍ ଟଙ୍କା ନ ମିଳେ ! ବାଧ ହୋଇ ସେ ମୋତେ ଦିନେ କହିଲେ ଉକ୍ତ ଆସିଷ୍ଟାଣ୍ଟକୁ କହିବା ପାଇଁ । ମୁଁ ଯାଇ ତାଙ୍କୁ କହିଲି । ସେ ହସିଲେ ଏବଂ କହିଲେ ଯେ ଆପଣ ତ ଆମର ପ୍ରେସିଡେଣ୍ଟ ଥିଲେ ।

Digitized by srujan ka@gmail.com

ମୁଁ କଣ ମନା କରିପାରିବି ଆପଣଙ୍କୁ ? କିନ୍ତୁ ସେ ସେକ୍ରେଟେରୀଙ୍କ ପାଖରୁ ସିଧା ଅର୍ଡ଼ରଟା ନେଇ ଆସିଲେ କିପରି ? ଇମିତି ଆଣିଲେ କ'ଣ ଟଙ୍କା ମିଳିଯାଏ ? କୁହାବୋଲା କରାଗଲା ପରେ ସେ 'ଅନୁକୂଳ' ନୋଟ ତିଆରି କଲେ ଏବଂ ପୁଟଅପ୍ କଲେ । ବିଲ୍ ପାଶ୍ ହୋଇଗଲା ।

କିନ୍ତୁ ସ୍ୱାସ୍ଥ୍ୟ ବିଭାଗରେ ଡିଲିଂ ଆସିଷ୍ଟାଣ୍ଟମାନେ ପ୍ରବଳ ଶକ୍ତିଶାଳୀ ! ଅନେକ ପ୍ରଫେସର ରିଡରଙ୍କୁ ଦେଖିଛି ମୁଣ୍ଡ କୁଣ୍ଡାଇ ଠିଆ ହେବାର ଡିଲିଂ ଆସିଷ୍ଟାଣ୍ଟଙ୍କ ପାଖରେ ଘଣ୍ଟା ଘଣ୍ଟା ଧରି ।

କିନ୍ତୁ ଯେଉଁ ମନ୍ତ୍ରୀ ବା ଅଫିସର ନିଜେ ଗୋଟାକ ଯାକ ଫାଇଲ ଦେଖନ୍ତି ସେମାନଙ୍କ ପାଖରେ ପି.ଏ. ବା ଡିଲିଂ ଆସିଷ୍ଟାଣ୍ଟମାନଙ୍କ ଭୂମିକା ଗୌଣ ହୋଇଯାଏ । ମୋର ମନେପଡୁଚି । ମୋର ବନ୍ଧୁ ସୋମନାଥ ରଥ ଥାଆନ୍ତି ସ୍ୱାସ୍ଥ୍ୟମନ୍ତ୍ରୀ, ବନ୍ଧୁ ଚନ୍ଦ୍ରମଣି ନାୟକ ଭଂଜନଗରରେ ଥିଲେ ଏସ୍.ଡି.ଓ । ତେଣୁ ତାଙ୍କ ସହିତ ସୋମନାଥ ବାବୁଙ୍କ ସଂପର୍କ ଖୁବ୍ ଘନିଷ୍ଠ । ଚନ୍ଦ୍ରମଣି ଜଣେ ସଚ୍ଚୋଟ, ଦକ୍ଷ ଅଫିସର ଭାବରେ ଖ୍ୟାତ । ସୋମନାଥବାବୁ ଖୋଜିଥିଲେ ଜଣେ ଦକ୍ଷ ପି.ଏ. ଏବଂ ଆମ ଦୁହିଁଙ୍କର କମନ ବନ୍ଧୁ ଗୋପବନ୍ଧୁ ଦାସଙ୍କ ନାମ ସେ ସୁପାରିଶ କରିଥିଲେ । ମୋର ମନେପଡୁଚି ଥରେ ତତ୍‌କାଳୀନ ସ୍ୱାସ୍ଥ୍ୟବିଭାଗର ସେକ୍ରେଟେରୀ ବନ୍ଧୁ ସୀତାକାନ୍ତ ମହାପାତ୍ର ଗୋଟିଏ ଫାଇଲରେ ଦେଇଥିବା ନିଷ୍ପତ୍ତିକୁ ସୋମନାଥବାବୁ ଗ୍ରହଣ କଲେ ନାହିଁ । କାରଣ ଗୋପବନ୍ଧୁ ଦାସ ମଧ ସେଥିରେ ଏକମତ ନ ଥିଲେ । ସୋମନାଥବାବୁଙ୍କ ପାଟିରୁ କଥାଟା କିମିତି ଖସିଗଲା ଯେ ଗୋପବନ୍ଧୁ ଏହି ନିଷ୍ପତ୍ତି ସହ ଏକମତ ନୁହନ୍ତି । ସୀତାକାନ୍ତବାବୁ କିଛି ସମୟ ପରେ (ମନ୍ତ୍ରୀ ଅନୁପସ୍ଥିତ ଥିଲାବେଳେ) ଗୋପବାବୁଙ୍କ ପାଖକୁ ଯାଇ ହସି ହସି କହିଲେ, ''ଗୋପ, ତା'ହେଲେ ଏଇ ଫାଇଲ ସଂପର୍କରେ ତମ ସାଙ୍ଗରେ ଆଗ କଥାବାର୍ତ୍ତା ହୋଇଯାଉ ।'' ଗୋପବାବୁ ଅପ୍ରତିଭ ହେଲେ । କାରଣ ଯା'ହେଲେ ବି ସୀତାକାନ୍ତ ସିନିଅର ଅଫିସର ।

ସୀତାକାନ୍ତ କଥା ଆରମ୍ଭ କରିବା ପୂର୍ବରୁ ମୁଁ କହିଲି ଯେ ସୀତାକାନ୍ତ, ଗୋଟିଏ ଗପ ଶୁଣ । ପଣ୍ଡିତ ନେହେରୁଙ୍କର ଥିଲେ ଜଣେ ପ୍ରାଇଭେଟ ସେକ୍ରେଟେରୀ, ଆଇ.ଏ.ଏସ. କ୍ୟାଡ଼ରର । ଥରେ ତତ୍‌କାଳୀନ ଘରୋଇମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ପାଖରୁ ଏକ ଫାଇଲ ଆସିଥିଲା ପ୍ରଧାନମନ୍ତ୍ରୀଙ୍କ ପାଖକୁ । ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟେରୀ ଉକ୍ତ ଫାଇଲକୁ ପଢ଼ି ପଟେଲଙ୍କ ନିଷ୍ପତ୍ତିର ପ୍ରତିକୂଳ ମତ ଏବଂ ତା'ର କାରଣ ଦର୍ଶାଇ ଫାଇଲଟିକୁ ପଠାଇଦେଲେ ପ୍ରଧାନମନ୍ତ୍ରୀଙ୍କ ପାଖକୁ । ଏହା ଲେଖା ଥିଲା ସବା ଉପର ପୃଷ୍ଠାରେ । ପ୍ରଧାନମନ୍ତ୍ରୀ ତାଙ୍କର ସେକ୍ରେଟେରୀ ଦେଇଥିବା ମତକୁ ଗ୍ରହଣ କରି ଏବଂ ସର୍ଦ୍ଦାର ପଟେଲଙ୍କ ନିଷ୍ପତ୍ତିକୁ ଗ୍ରହଣ ନ କରି ଦସ୍ତଖତ କରିଦେଲେ ସେଇ ପୃଷ୍ଠାରେ । ଫାଇଲ ଫେରିଗଲା ସର୍ଦ୍ଦାର ପଟେଲଙ୍କ ପାଖକୁ । ଉକ୍ତ ଫାଇଲକୁ ଦେଖି ସର୍ଦ୍ଦାର ପଟେଲ କ୍ଷୁବ୍ଧ ଏବଂ ବିରକ୍ତ ହୋଇ ତାଙ୍କର ସେକ୍ରେଟେରୀଙ୍କୁ ପଚାରିଲେ ଯେ ଏ ବାଳକ କିଏ, ଯେ ପଣ୍ଡିତ ନେହେରୁଙ୍କ ପାଖରେ ଅଛି ବୋଲି ସେ ମୋର ନିଷ୍ପତ୍ତି ଉପରେ ଆପଣାର ପ୍ରତିକୂଳ ମନ୍ତବ୍ୟ ଦେବାର ସାହସ କଲା ? ତାଙ୍କର ସେକ୍ରେଟେରୀ ଆତଙ୍କ ଗଣିଲେ

Digitized by srujan ka@gmail.com

କାରଣ ଘରୋଇମନ୍ତ୍ରୀ ହେଉଛନ୍ତି ସବୁ ଆଇ.ଏ.ଏସ. ଅଫିସରମାନଙ୍କ ମାଲିକ । ପଟେଲଙ୍କ ସେକ୍ରେଟେରୀ ଏକଥା ପଣ୍ଡିତ ନେହେରୁଙ୍କ ସେକ୍ରେଟେରୀଙ୍କୁ କହିଲେ ଏବଂ ତାଙ୍କୁ ପଟେଲଙ୍କୁ ସାକ୍ଷାତ କରିବା ପାଇଁ ଉପଦେଶ ଦେଲେ । ପଣ୍ଡିତ ନେହେରୁଙ୍କ ସେକ୍ରେଟେରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କୁ ଦେଖା କଲେ ଏବଂ ସ୍ପଷ୍ଟ ଭାବରେ କହିଲେ ଯେ ''ଆପଣ ହିଁ ମୋତେ ନିଯୁକ୍ତି ଦେଇଛନ୍ତି ଏବଂ ଦେଇଛନ୍ତି ପ୍ରଧାନମନ୍ତ୍ରୀଙ୍କୁ ମୋର ସୁଚିନ୍ତିତ ମତ ଉପସ୍ଥାପିତ କରିବା ପାଇଁ, ତାଙ୍କର ନିଷ୍ପତ୍ତି ସକାଶେ । ଘରୋଇ ବିଭାଗରୁ ଯାଇଥିବା ଫାଇଲରେ ମୁଁ ସେଇ କାମ କରିଛି ମାତ୍ର । କିନ୍ତୁ ପ୍ରଧାନମନ୍ତ୍ରୀଙ୍କ ଉଚିତ ଥିଲା ଯେ ସେ ଯଦି ମୋର ମତଗ୍ରହଣ କଲେ ତା'ହେଲେ ମୋର ମତଥିବା ପ୍ରଥମ ପୃଷ୍ଠାଟି ଫାଇଲରୁ ଚିରିଦେଇ ତାଙ୍କର ନିଷ୍ପତ୍ତି ଲିପିବଦ୍ଧ କରିଥାଆନ୍ତେ । ତାହା ସେ କରିନାହାନ୍ତି । ଯେଉଁଥିରୁ ମନେହେବ ଯେ ସେ ମୋର ମତଦ୍ୱାରା ପରିଚାଳିତ ହେଲେ ବୋଲି ।'' ସର୍ଦ୍ଦାର ପଟେଲ ସନ୍ତୁଷ୍ଟ ହେଲେ ତାଙ୍କର ଉତ୍ତରରେ ଏବଂ ପରବର୍ତ୍ତୀ ସମୟରେ ସେ ସର୍ଦ୍ଦାର ପଟେଲଙ୍କ ଅଧୀନରେ କାମ ମଧ୍ୟ କଲେ ।

ସୀତାକାନ୍ତ, ଗୋପବାବୁ ସମସ୍ତେ ହସିଲେ ଏବଂ କଥାଟାର ସମାପ୍ତି ଘଟିଲା ସେତିକିରେ ।

କେତେଜଣ ଦେଖିଛନ୍ତି ଶେରଗଡ଼, ବୁଦ୍ଧଖୋଲ, ଗଂଜାମ ଜିଲ୍ଲାରେ କେତେଜଣ ଦେଖିଛନ୍ତି ପ୍ରଧାନପାଟ, ବା ହୁମ୍ମା ବା ବଡ଼ରମାର ଅଭୟାରଣ୍ୟ ? ସାତକୋଶିଆରୁ ବଡ଼ମୂଳ ପର୍ଯ୍ୟନ୍ତ ଯାଇଛନ୍ତି ନୌକାରେ ? କେତେଜଣ ଦେଖିଛନ୍ତି ଖିଚିଂ ଏବଂ ଗୁପ୍ତ ବୈତରଣୀ ବା ସିତାବିଞ୍ଜିର ଚିତ୍ର ବା ଦେଖିଚନ୍ତି ଫୁଲବାଣୀର ଚକାପାଦ ?

ସେମାନେ କେବଳ ଗଲ୍ଫ କୋର୍ସ, ଲଞ୍ଚ ବା ସପ୍ତତାରକା ହୋଟେଲରେ ଆପଣାର ପର୍ଯ୍ୟଟନଗୁଡ଼ିକୁ ସୀମିତ କରି ରଖିଛନ୍ତି । ସେଥିରେ କ'ଣ ପର୍ଯ୍ୟଟନର ବିକାଶ ହୁଏ ?

ଓଡ଼ିଶାର ବୈଚିତ୍ର୍ୟମୟ ଟୁରିଷ୍ଟ ସ୍ପଟ (Tourist Spot)ର ସନ୍ଧାନ ନେଇ, ସ୍ୱତନ୍ତ୍ର ଯୋଜନା ସୃଷ୍ଟିକରିବାକୁ ପଡ଼ିବ । ବେଶ୍ କିଛିବର୍ଷ କଟକ-ଭୁବନେଶ୍ୱରରୁ ରଥଯାତ୍ରା ପାଇଁ ସ୍ୱତନ୍ତ୍ର ବସ ଏବଂ ଆନୁସଙ୍ଗିକ ଅବସ୍ଥା କରାଯାଉଥିଲା । ତାହା ଲାଭଜନକ ବି ଥିଲା, କିନ୍ତୁ ବନ୍ଦ ହୋଇଗଲା କାହିଁକି ? ସେ ବ୍ୟବସ୍ଥାକୁ ଓଡ଼ିଶାର ଅନ୍ୟ ସ୍ଥାନକୁ ବି ସମ୍ପ୍ରସାରିତ କରାଯାଇ ପାରିଥାନ୍ତା । ଓଡ଼ିଶାର ଟୁରିଷ୍ଟ ସ୍ପଟ ସବୁ ବିଛୁରିତ । ଏହାର ଅସୁବିଧା ଯେତିକି, ସୁବିଧା ବି ସେତିକି । ଓଡ଼ିଶାର ଲୋକେ ତ ଓଡ଼ିଶା ଦେଖିନାହାନ୍ତି, ଅନ୍ୟ ଲୋକମାନଙ୍କ କଥା କହିବା କ'ଣ ?

ବରଗଡ଼ର ଧନୁଯାତ୍ରା, ବ୍ରହ୍ମପୁରର ଠାକୁରାଣୀ ଯାତ, ଫୁଲବାଣୀ ବା କଳାହାଣ୍ଡିର କରମା ନାଚ କେତେ ଲୋକ ଦେଖିଚନ୍ତି ? ଏପରିକି କ୍ଷୀରଚୋରା ଗୋପୀନାଥଙ୍କୁ ଦେଖିଛନ୍ତି କେତେଜଣ ? ଶିମିଳି ପାହାଡ଼ଠାରୁ ଆରମ୍ଭ କରି ବଡ଼ରମାର ଅଭୟାରଣ୍ୟ ଦେଖିବା ପାଇଁ କଣ କିଛି ସଂଗଠିତ ଯାତ୍ରା ଅଛି ?

Digitized by srujan ka@gmail.com

ଆମେ କେବଳ ମାତିଛୁ ପଞ୍ଚତାରକା ହୋଟେଲ ପଛରେ । ଏହାର ଆବଶ୍ୟକତା ଯେ ନାଇଁ ତା'ନୁହେଁ, କିନ୍ତୁ ବର୍ତ୍ତମାନର ସମ୍ଭାବ୍ୟ ଟୁରିଷ୍ଟମାନଙ୍କୁ ନେଇ ପରିକଳ୍ପନା କାଇଁ ?

ଏଇ ପର୍ଯ୍ୟଟନ ସହିତ ଓଡ଼ିଶାର ହସ୍ତକର୍ମ, ହସ୍ତତନ୍ତ ଶିଳ୍ପ, ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଏବଂ ପର୍ଯ୍ୟଟନ, ହସ୍ତତନ୍ତ ଶିଳ୍ପ ଏବଂ ହସ୍ତକର୍ମ ଶିଳ୍ପ ଗୋଟିଏ ମନ୍ତ୍ରୀ, ଗୋଟିଏ ବିଭାଗ ଅଧୀନରେ ରହିବା ଉଚିତ ବୋଲି ମୋର ମତ । ଏଥିପାଇଁ ମୁଁ ବହୁତ ଲେଖିଛି, ବହୁତ ଲୋକଙ୍କୁ ଭେଟିଛି । ସମସ୍ତେ ମୁଣ୍ଡ ଟୁଙ୍ଗାରିଛନ୍ତି । କିନ୍ତୁ ନିଷ୍ପତ୍ତି ନେଇ ନାହାନ୍ତି । କାରଣ ଆମ ଦେଶରେ ନିଷ୍ପତ୍ତି ନିଆଯାଏ ନାହିଁ ।

ଆମ ଦେଶ ଏକ ମନ୍ଦିରମାଳିନୀ ଦେଶ । କିନ୍ତୁ ଏ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟମାନଙ୍କରେ ଆର୍କୋଲଜିକୁ ସ୍ୱତନ୍ତ୍ର ବିଷୟ ଭାବରେ ପଢ଼ାଯାଏନା, ଏହିକଥା ମୋତେ ପଚାରିଥିଲେ ନୁରୁଲ ହାସାନ (ତତ୍‌କାଳୀନ ଶିକ୍ଷାମନ୍ତ୍ରୀ) ୧୯୭୫ ମସିହା ଶେଷ ଭାଗରେ । ଆଜି ବି ତାହା ସେଇପରି ରହିଛି । ଯଦିଓ ଏହା ଭିତରେ ଦୀର୍ଘ ୨୫ ବର୍ଷ ବିତିଗଲାଣି ।

ମୋର ମନେପଡୁଛି । ଷଷ୍ଠ ଦଶକରେ ହଠାତ୍ ମୋତେ ଜଣେ ବିଶିଷ୍ଟ ଶିଳ୍ପର ଜଣେ ବିଶେଷଜ୍ଞ କହିଲେ ଯେ ସେ କଂପାନୀ କୋଣାର୍କ ମନ୍ଦିରର ରକ୍ଷଣାବେକ୍ଷଣ କରିବା ପାଇଁ ଆଗ୍ରହୀ ଏବଂ ସେ ମୋର ସାହାଯ୍ୟ ଚାହାନ୍ତି । ମୋର ନାହିଁ କରିବାର କିଛି ନ ଥିଲା । ସେ ଭଦ୍ରଲୋକ ଏବଂ ମୁଁ କୋଣାର୍କ ଗଲୁ ଏବଂ ସେଠାରେ ସାତଦିନ ରହିଲୁ । ପରେ ଏକ ବିଶେଷଜ୍ଞ ଟିମ୍ ଆମ ସାଙ୍ଗରେ ଯୋଗଦେଲେ ।

ସେମାନେ ଅନୁଧ୍ୟାନ କରି ମତ ଦେଲେ ଯେ କୋଣାର୍କ ମନ୍ଦିରର ପ୍ଲିନଥ୍ (Plinth) ହେଉଛି ମାଙ୍କଡ଼ା ପଥରରେ କିନ୍ତୁ ଉପରେ ରହିଛି ମୁଗୁନି ପଥରର ମୂର୍ତ୍ତି । ବହୁତ ଓଜନର ମୂର୍ତ୍ତି । ଫାଉଣ୍ଡେସନ ଉପରେ ଚାପ ପଡ଼ିଛି ଭୀଷଣ ଭାବରେ । ଏହାଛଡ଼ା ମାଙ୍କଡ଼ା ପଥର ହେଉଛି ପୋରସ (porus) ଅସଂଖ୍ୟ ଛିଦ୍ର ରହିଛି ତାହାର । ତା ଭିତରେ ପାଣି ଓ ପବନ ପଶି ସେଗୁଡ଼ିକୁ ଫୁଲାଇ ଦେଉଛି । ଏହାଛଡ଼ା କୋଣାର୍କ ମନ୍ଦିର ଗଢ଼ା ହୋଇଛି ମାଟି ପୋତି, ମାଟି ସେଟଲ (settle) କରିବା ପୂର୍ବରୁ । କୋଣାର୍କ ମନ୍ଦିର ତିଆରି ସରିବା ବେଳକୁ ଓଡ଼ିଶାରୁ ସୂର୍ଯ୍ୟପୂଜା ଉଠିଯାଇଥିଲା । ସୂର୍ଯ୍ୟବଂଶର ରାଜୁତି ସରି ଯାଇଥିଲା । ରାଜାନୁଗତ ଧର୍ମ । ତେଣୁ ଏହି ମନ୍ଦିର ରହିଗଲା 'ଅପୂଜା' ହୋଇ ଏବଂ ସ୍ୱାଭାବିକ ଭାବରେ ଅବହେଳିତ ହୋଇ ।

ଏହା ଉପରେ ଚୁମ୍ବକ ପଥର, ଧର୍ମପଦ କାହାଣୀ ସବୁ ହେଉଛି କିମ୍ବଦନ୍ତୀ କାହାଣୀ । ଏହାର କୌଣସି ଐତିହାସିକ ସତ୍ୟତା ନାହିଁ, ଗୋପବନ୍ଧୁ ଦାସଙ୍କ ଅମର ଲେଖନୀ 'ଧର୍ମପଦ'କୁ ଟାଣିଆଣିଛି କିମ୍ବଦନ୍ତୀରୁ ଇତିହାସକୁ ।

କୋଣାର୍କ ମନ୍ଦିର ଉପରେ ଆମର ଅନୁସନ୍ଧାନ ଚାଲିଲା ଦୁଇ ତିନି ମାସ ଧରି । ପରିଶେଷରେ, ସେମାନେ ସୁପାରିଶ କଲେ ଆର୍କୋଲଜିକାଲ ସର୍ଭେ ଅଫ ଇଣ୍ଡିଆକୁ ଯେ

Digitized by srujan ka@gmail.com

କୋଣାର୍କ ମନ୍ଦିର ଫାଉଣ୍ଡେସନକୁ 'ତମ୍ବା, ଜିଙ୍କ' ପ୍ରଭୃତିର ଇଞ୍ଜେକସନ ଦେଇ ଟାଣ କରାଯାଉ । ସେଇ ଅନୁସାରେ ଏ.ଏସ.ଆଇ. ବ୍ୟବସ୍ଥା କଲେ ଏବଂ ବର୍ତ୍ତମାନ ତାହା ବି ବିଦ୍ୟମାନ । ଏଇ ଅନୁସନ୍ଧାନରୁ ଜଣା ପଡ଼ିଲା ମଣିଷର ପାଦ ଏହି ମୁଖଶାଳା ଅବକ୍ଷୟର ଅନ୍ୟତମ କାରଣ । କାରଣ ସମସ୍ତେ ଚଢ଼ିଲେ ଉପରକୁ ଯଦିଓ କୋଣାର୍କର ମୂର୍ତ୍ତିଗୁଡ଼ିକ ଦୂରରୁ ଦେଖିବା ପାଇଁ, ବିଶେଷତଃ ନାଟ୍ୟମନ୍ଦିର ପାଖରୁ ଦେଖିବା ପାଇଁ ନିର୍ମିତ । ପାଖରୁ ଦେଖିଲେ ଏଇ ମୂର୍ତ୍ତିଗୁଡ଼ିକ ଡିସ-ପ୍ରପୋସନେଟ (Dis-propotionate) କିନ୍ତୁ କୋଣାର୍କ ମନ୍ଦିରର ଅଯୁତ ବିନ୍ଧାଣୀ ଏଗୁଡ଼ିକୁ ଗଢ଼ିଛି ଏପରି ଭାବରେ Optical vision ଦେଖି ଯେ ନାଟ୍ୟମନ୍ଦିରରୁ ହିଁ ଏହା ଦେଖାଯାଏ ଠିକ୍ । ଏ କଥା କେହି ବିଚାର ନ କରି ଚଢ଼ନ୍ତି ମନ୍ଦିର ଉପରକୁ ମୂର୍ତ୍ତିଗୁଡ଼ିକ ଦେଖିବା ପାଇଁ ପାଖରୁ । ତେଣୁ ବୈଦ୍ୟୁତିକ ଷ୍ଟେୟାର କେସ (Electric staircase) ହିଁ ଏହାର ଏକମାତ୍ର ବିକଳ୍ପ । ସେମାନେ ଅନୁସନ୍ଧାନ କରି ଜାଣିଲେ ଯେ ଲୁଣି ପବନ ହିଁ ଖାଇ ଯାଉଛି ପ୍ରସ୍ତରକୁ । ତେଣୁ ସମଗ୍ର ମନ୍ଦିରକୁ ଏକ ଗ୍ଲାସଡୋମ୍ (Glassdome) ଭିତରେ ହିଁ ରଖିଦେଲେ ଏହାର ସମାଧାନ ହୋଇଯିବ । ପ୍ରଥମଟି ହୋଇଗଲା ଏ.ଏସ.ଆଇ. ଦ୍ୱାରା । ଦ୍ୱିତୀୟ ଏବଂ ତୃତୀୟଟି ପାଇଁ ଏକ ଅଟକଳ ବି ସେମାନେ ତିଆରି କଲେ । ମୋର ଯାହା ମନେ ପଡୁଛି ଚାରି କୋଟି ଟଙ୍କାର ଅଟକଳ ହୋଇଥିଲା । ସେ ଟଙ୍କା ମଧ ମଂଜୁରୀ କରିବାର ଉପକଣ୍ଠରେ ପହଞ୍ଚିଥିଲା ସେଇ କଂପାନୀ ।

ହଠାତ୍ ଦୁଇଟି ଘଟଣା ଘଟିଗଲା । ଜେନିଭାର ହଠାତ୍ କିଛି ଭାରତୀୟ ମୂର୍ତ୍ତି ଚୋରାରେ ବିକ୍ରୀ ହେଉଥିବା ବେଳେ ପୋଲିସ ହାତରେ ଧରାପଡ଼ିଲା ଏବଂ ଉକ୍ତ କଂପାନୀ ପୋଲିସର ସନ୍ଦେହ ଘେରରେ ରହିଗଲା । ଠିକ୍ ସେତିକିବେଳେ ଓଡ଼ିଶାରୁ ମଧ ମୂର୍ତ୍ତି ଚୋରା ଚାଲାଣର ଏକ ର୍ୟାକେଟକୁ ପୁଲିସ ସନ୍ଦେହ କଲା । ଏହି ର୍ୟାକେଟରେ କିଛି କବି, ଲେଖକ କଳାକାର ଏବଂ ଆକୁ ଖୋଳୁ ଖୋଳୁ ମହାଦେବ ବାହାରିଲା ପରି ଚାରି ପାଞ୍ଚଜଣ ଆଇ.ଏ.ଏସ ଅଫିସରଙ୍କ ଧର୍ମପତ୍ନୀମାନେ ଆସିଗଲେ ପୋଲିସର ସନ୍ଦେହ ବଳୟକୁ ।

ସ୍ୱାଭାବିକ ଭାବରେ କୋଣାର୍କ ମନ୍ଦିରର ରକ୍ଷଣାବେକ୍ଷଣ କାମ ପାଇଁ ଉକ୍ତ କଂପାନୀକୁ ଆଉ ପାଖ ମଡ଼ାଇ ଦିଆଗଲା ନାହିଁ । କିନ୍ତୁ ଓଡ଼ିଶାର ର୍ୟାକେଟର ମଧ ସ୍ୱାଭାବିକ କାରଣରୁ କିଛି ହେଲା ନାହିଁ । ଅଭିଯୁକ୍ତ ସମସ୍ତେ ମୁହଁ ପୋଛି ହାତ ସଫା କରିଦେଲେ ।

ଏଇ ଲେଖା ଲେଖିଲା ବେଳକୁ କୋଣାର୍କ ମନ୍ଦିରର ରକ୍ଷଣାବେକ୍ଷଣ ସଂପର୍କରେ ଆଲୋଚନା ଚାଲିଛି ଏବଂ UNESCO ସାହାଯ୍ୟରେ ଇଟାଲୀ ସରକାର କରିବା ପାଇଁ ଆପଣାର ସମ୍ମତି ଜଣାଇଛନ୍ତି । ଏହା ଏକ ଅଭିନନ୍ଦନୀୟ ନିଷ୍ପତ୍ତି । ଓଡ଼ିଶା ପର୍ଯ୍ୟଟନ ଉପଦେଷ୍ଟା ବୋର୍ଡ଼ରେ ନୂତନ ପର୍ଯ୍ୟଟନ ନୀତି, ରକ୍ଷଣାବେକ୍ଷଣ ସଂପର୍କରେ ନୂଆ ନୀତି ପ୍ରଣୟନ କରାଯିବାର ପ୍ରସ୍ତାବନା ହେଉଛି ।

Digitized by srujan ka@gmail.com

ଓଡ଼ିଶାର ପର୍ଯ୍ୟଟନ ସଂପର୍କରେ ଯେଉଁମାନେ ନୀତି ନିର୍ଦ୍ଧାରଣ କରୁଛନ୍ତି ସେମାନଙ୍କର ଅନେକଙ୍କର ଓଡ଼ିଶାର ପର୍ଯ୍ୟଟନ ଓ ପର୍ଯ୍ୟଟକମାନଙ୍କ ସଂପର୍କରେ କେତେକ ମୌଳିକ ଧାରଣା ନାହିଁ ।

ଓଡ଼ିଶାର ଟୁରିଷ୍ଟ ପଞ୍ଚତାରକା ଟୁରିଷ୍ଟ ନୁହନ୍ତି । ଯେ ପର୍ଯ୍ୟନ୍ତ ଦିଲ୍ଲୀ, ମୁମ୍ବାଇରୁ ସିଧାସଳଖ ଉଡ଼ାଜାହାଜ ଆସିବାର ବ୍ୟବସ୍ଥା ହୋଇନାହିଁ, ଯେପର୍ଯ୍ୟନ୍ତ ଭୁବନେଶ୍ୱର ଆନ୍ତର୍ଜାତିକ ବିମାନ ବନ୍ଦରରେ ପରିଣତ ହୋଇନାହିଁ, ସେପର୍ଯ୍ୟନ୍ତ ଆମର ଟୁରିଷ୍ଟମାନଙ୍କ ଭିତରେ ପଞ୍ଚତାରକା ଟୁରିଷ୍ଟ ଆଖିଦୃଷ୍ଟିଆ ହୋଇପାରିବ ନାହିଁ । ଆମର ଟୁରିଷ୍ଟମାନଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ପିଲଗ୍ରୀମ ବା ତୀର୍ଥଯାତ୍ରୀ । ଆଉ ବେଶ କିଛି ଅଂଶ ହେଉଛନ୍ତି ଗବେଷକ, ଐତିହାସିକ ସ୍ଥାନ ପରିଭ୍ରମଣକାରୀ । ସାଧାରଣତଃ ଓଡ଼ିଶାର ବୌଦ୍ଧପୀଠ ଦର୍ଶକ-ଟୁରିଷ୍ଟ ହେଉଛନ୍ତି ଅନେକ । ସେମାନଙ୍କ ମଧ୍ୟରୁ ଜାପାନୀମାନଙ୍କ ସଂଖ୍ୟା ଅଧିକ ।

ପ୍ରତ୍ୟେକ ରାଜ୍ୟରେ ଟୁରିଷ୍ଟ ସିଜନ (Tourist Season) ଅଛି । କିନ୍ତୁ ଜଗନ୍ନାଥଙ୍କ ଦୟାରୁ ଓଡ଼ିଶାରେ ତାହା ନାହିଁ । ଜଗନ୍ନାଥଙ୍କ ରଥଯାତ୍ରା ବାହୁଡ଼ା ହୁଏ ବର୍ଷାଦିନରେ ।

କିନ୍ତୁ ଏହି ତୀର୍ଥଯାତ୍ରୀଙ୍କୁ କେବଳ ଅଧିକ ସମୟ ରଖାଯାଇପାରିଲେ ଓଡ଼ିଶାର ପର୍ଯ୍ୟଟନ ବେଶ୍ ବୃଦ୍ଧି ହୁଅନ୍ତା । ତାହା ଏ ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ । ସାଧାରଣତଃ ଭାରତବର୍ଷକୁ ଟୁରିଷ୍ଟମାନେ ଆସନ୍ତି ପ୍ୟାକେଜ୍ ଟୁରରେ । ଏହାର ସମୟ କାଳ ହେଉଛି ସବୁଠାରୁ ବେଶୀ ଏକୋଇଶ ଦିନ । ସେମାନେ ଆସନ୍ତି ଟ୍ରାଭେଲ ଏଜେଣ୍ଟମାନଙ୍କର ପ୍ୟାକେଜ ଟୁରରେ । ଏବଂ ସ୍ୱାଭାବିକ ଭାବରେ ଓଡ଼ିଶା ସେ ମାନଚିତ୍ରକୁ ପ୍ରାୟ ଆସେ ନାହିଁ ।

ଏହାର କାରଣ କ'ଣ ?

ଓଡ଼ିଶାର ପର୍ଯ୍ୟଟନ ଏ ପର୍ଯ୍ୟନ୍ତ 'ସୁବର୍ଣ୍ଣ ତ୍ରିଭୁଜ' ଭିତରେ ସୀମିତ ରହିଛି– ପୁରୀ, କୋଣାର୍କ, ଭୁବନେଶ୍ୱର । 'ହୀରକ ତ୍ରିଭୁଜ'– ଲଳିତଗିରି, ରତ୍ନଗିରି, ଉଦୟଗିରିର ପର୍ଯ୍ୟଟନ ଯେପରି ଭାବରେ ସଂଗଠିତ ହେବା ଉଚିତ ତା'ହୋଇ ପାରିନାହିଁ ।

ଓଡ଼ିଶାର ପର୍ଯ୍ୟଟନ ସ୍ଥାନ ଅନେକ, ଖୁବ୍ ଗୁରୁତ୍ୱପୂର୍ଣ୍ଣ ମଧ୍ୟ । କିନ୍ତୁ ସେସବୁ ରହିଛି ସାରା ରାଜ୍ୟରେ ବିଛୁରିତ ହୋଇ । ଓଡ଼ିଶାର ପର୍ଯ୍ୟଟନର ପଣ୍ଡାମାନଙ୍କ ଭିତରୁ କେତେଜଣ କୋରାପୁଟର ବତ୍ରିଶ ସିଂହାସନ, ଗୁମୋଲୋଇ ଜଂଗଲ, ପ୍ରଧାନ ପାଟ ପ୍ରଭୃତି ଦେଖିଛନ୍ତି ?

ଓଡ଼ିଶାର ପର୍ଯ୍ୟଟନ ଶିଳ୍ପ ଯେ ପର୍ଯ୍ୟନ୍ତ କେବଳ ପଞ୍ଚତାରକା ପଛରେ ଧାଇଁଥିବ ସେ ପର୍ଯ୍ୟନ୍ତ ପର୍ଯ୍ୟଟନର ପ୍ରକୃତ ବିକାଶ ସମ୍ଭବ ନୁହେଁ । ଓଡ଼ିଶାରେ ରହିଛି ପ୍ରଚୁର ବୌଦ୍ଧକୀର୍ତ୍ତି । ସେଥିପାଇଁ ସମଗ୍ର ବିଶ୍ୱବ୍ୟାପୀ ବୌଦ୍ଧଧର୍ମାବଲମ୍ବୀମାନେ ଆଗ୍ରହୀ । କିନ୍ତୁ ତାହାର ବିକାଶ ପାଇଁ କୌଣସି ଯୋଜନା ହୋଇନାହିଁ ଏପର୍ଯ୍ୟନ୍ତ । ଇତିହାସରୁ ପ୍ରମାଣିତ ଯେ ବୌଦ୍ଧଧର୍ମ ପରେ ବ୍ରାହ୍ମଣବାଦର ଅଭ୍ୟୁଦୟ ସହିତ ହଜାର ହଜାର ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ହତ୍ୟା କରଯାଇଥିଲା

Digitized by srujan ka@gmail.com

ଏବଂ ଅନ୍ୟମାନେ ଆତଙ୍କିତ ହୋଇ ଅନେକ ଇସଲାମ ଧର୍ମ ଗ୍ରହଣ କରିଥିଲେ । ବୌଦ୍ଧ ସ୍ତୁପକୁ (Votive Stupa) ଶିବ ଲିଙ୍ଗରେ ପରିଣତ କରାଯାଇ ସେଠାରେ ଶୈବପୂଜା ଆରମ୍ଭ ହେଲା । ଭାସ୍କରେଶ୍ୱର ଠାରୁ ଆରମ୍ଭ କରି ବହୁ ଶିବଲିଙ୍ଗ ତାହା ପ୍ରମାଣିତ କରେ ।

କିନ୍ତୁ ଏହା ବର୍ତ୍ତମାନ ବି ଚାଲିଚି । କି ଦୁଃଖାବହ ଘଟଣା । ଧଉଳିଗିରି ଉପରେ ବୌଦ୍ଧସ୍ତୁପ ତିଆରି ହେଲା । ଏଥିପାଇଁ ୰ ଶିଳ୍ପୀ ଉପେନ୍ଦ୍ର ମହାରଥୀ, କଳିଙ୍ଗ ନିପନ ବୌଦ୍ଧ ସଂଘର ସଭାପତି ୰ ଫୁଜି ମହାରାଜ, ବିହାରର ତତ୍‌କାଳୀନ ରାଜ୍ୟପାଳ ୰ ନିତ୍ୟାନନ୍ଦ କାନୁନଗୋ ଏବଂ ସମାଜ ସଂପାଦକ ୰ ରାଧାନାଥ ରଥ ମୁଖ୍ୟତଃ ଦାୟୀ । ବୌଦ୍ଧ ସ୍ତୁପ ଗଠନ ଓଡ଼ିଶାର ପ୍ରସ୍ତରଶିଳ୍ପୀମାନଙ୍କୁ ନେଇଗଲା ଆନ୍ତର୍ଜାତିକ ସ୍ତରକୁ । ବାରଶ ବଢ଼େଇଙ୍କର ଦାୟାଦ ବର୍ତ୍ତମାନ ମଧ୍ଧ ଜୀବିତ ଏକଥା ପ୍ରମାଣ କରିଦେଲେ ସୁଦର୍ଶନ ଏବଂ ରଘୁ ।

ମୋର ମନେ ପଡୁଚି । ବଂଗଳାର ଜଣେ ଗାୟକ ଓ ଶିଳ୍ପୀ ସୁଜନ ଘୋଷ ବଂଗଳା ଛାଡ଼ି ଓଡ଼ିଶା ଚାଲିଆସିଲେ । କେଉଁ କାରଣରୁ ସେ ଓଡ଼ିଶା ଚାଲି ଆସିଥିଲେ ମୋର ମନେ ପଡୁନାହିଁ । କିନ୍ତୁ ବୋଧହୁଏ ଦେଶ ବିଭାଜନର ପରବର୍ତ୍ତୀ ପରିସ୍ଥିତି ବୋଲି ହେତୁ ହେଉଛି । ସେ ବାମପନ୍ଥୀ ଥିଲେ ଏବଂ ଓଡ଼ିଶାର ଚାଷୀ, ମୂଲିଆ, ଛାତ୍ର, ଶାନ୍ତି ଆନ୍ଦୋଳନ ସହିତ ନିବିଡ଼ ଭାବରେ ଜଡ଼ିତ ହୋଇଯାଇଥିଲେ । ପ୍ରସିଦ୍ଧ ସୀମା ଆନ୍ଦୋଳନ ବେଳର କଥା । ସାଂଘ ଆଇନ ଜାରି ହୋଇଥିବା ସମୟରେ ସେ, ଆଦରମଣି ବରାଳ, ଡିଡୁ ପାତ୍ର ପ୍ରଭୃତି ଗୀତ ଗାଉଥିଲେ କଟକ ସହରର ରାସ୍ତାରେ– ''ବନ୍ଦେ ଉତ୍କଳ ଜନନୀ.....'' ଭୟାନକ ସମୟ, ସହରରେ ସାମରିକ ବାହିନୀର ପ୍ୟାରେଡ଼, ଫ୍ଲାଗ ମାର୍ଚ୍ଚ । ତାରି ଭିତରେ ଧ୍ୱନିତ ହେଉଥିଲା ଏଇ ଗୀତ । ଶୁଭୁଥିଲା ବେଦର ମନ୍ତ୍ର ଭଳି । ଆଜାନର ଡାକ ଭଳି, ଚର୍ଚ୍ଚର ବେଲପରି, ମନ୍ଦିରର ଶଙ୍ଖ ଧ୍ୱନିପରି ନା ଏସବୁର ଏକ ମିଶ୍ରଣ । ସୁଜନ ଘୋଷ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ ଥିଲେ କିନ୍ତୁ ଖୁବ୍ ଭଲ ଗୀତ ଗାଇବା ଓ ଚିତ୍ର ଆଙ୍କିବା ଯୋଗୁଁ ସମାଜର ବହୁ ବିଭାବର ବ୍ୟକ୍ତିଙ୍କ ସହିତ ତାଙ୍କର ପରିଚିତି ଥିଲା । ସେମାନଙ୍କ ମଧ୍ୟରେ ୰ ଭୈରବଚନ୍ଦ୍ର ମହାନ୍ତିଙ୍କର ନାମ ଉଲ୍ଲେଖଯୋଗ୍ୟ । ତାଙ୍କରି ଉଦ୍ୟମରେ ସୁଜନ ଘୋଷ ଏକ ଚାକିରି ପାଇଲେ ଓଡ଼ିଶା ହସ୍ତକର୍ମ କର୍ପୋରେସନରେ । ସେ ସେଠାରେ ଯୋଗଦେଲା ପରେ ଏହାର ଏକ ନୂତନ ରୂପରେଖ ଦେଲେ । ଆଗରୁ ହସ୍ତକର୍ମ ଶିଳ୍ପ ଥିଲା ପାରମ୍ପରିକ । କିନ୍ତୁ ସବୁଦିନିଆ ବ୍ୟବହୃତ ସାମଗ୍ରୀର ନୂଆ ଡିଜାଇନ ସେ କଲେ, ଓଡ଼ିଶାର ହସ୍ତକର୍ମକୁ ରୂପ ଦେଇ । ବଜାରରେ ଏହାର ଚାହିଦା ବଢ଼ିଲା । ଓଡ଼ିଶାର ନିପୁଣ ହସ୍ତକର୍ମ ସବୁଦିନିଆ ବ୍ୟବହୃତ ସାମଗ୍ରୀରେ ରୂପ ପାଇଲା । ସେ ରଘୁ ମହାପାତ୍ରଙ୍କୁ ଠାବ କଲେ । ସୁଦର୍ଶନ ତାଙ୍କ ସାଙ୍ଗରେ ଥିଲେ କି ନାହିଁ ମନେପଡୁ ନାହିଁ । ଓଡ଼ିଶା ଓଲିମ୍ପିକ୍ ଆସୋସିଏସନ୍‌ର ସିମ୍ବଲ ହେଉଛି କୋଣାର୍କ ଘୋଡ଼ା । ପଥରରେ ତିଆରି ଏକ ଘୋଡ଼ା ତିଆରିକରି ଆପଣାର ଅଫିସ୍‌ର ଗେଟ ଆଗରେ ଭୈରବବାବୁ ରଖିବାକୁ ଚାହିଁଲେ । ସୁଜନ ଘୋଷ ସେ ଦାୟିତ୍ୱ ନେଲେ ।

Digitized by srujan ka@gmail.com

ରଘୁ ସେତେବେଳକୁ ଯୁବକ । ତାଙ୍କର ବାପା, ଜେଜେବାପା ବି ଶିଳ୍ପୀ । ସେଇ ପରିବାର କୋଣାର୍କ ଘୋଡ଼ା ଗଢ଼ିଲେ । ସେଇ ଘୋଡ଼ା ବର୍ତ୍ତମାନ ଯେଉଁ ଗେଟରେ ଦଣ୍ଡାୟମାନ ତାହା ବାରବାଟୀ ଷ୍ଟାଡିୟମର ହର୍ସ ଗେଟ୍ ନାମରେ ଖ୍ୟାତ ।

ପଥର ଖୋଜିବାକୁ ଲାଗିଗଲା ଛଅ ମାସ । ଏଇ ପଥର ମାଟିତଳେ ଥାଏ । ସେତେବେଳେ ତାହା ଥାଏ କଅଁଳ । ମାଟି ଉପରକୁ ଯତ୍ନରେ ଆଣି ଥୋଇଲେ ପବନ ବାଜି ଟାଣ ହୋଇଯାଏ । ତାପଙ୍ଗ ପାଖରେ ସେଇଭଳି ଚାରୋଟି ପଥରର ସନ୍ଧାନ ମିଳିଲା । ସେତେବେଳେ ପାରାଦ୍ୱୀପ ବନ୍ଦରର କାମ ଆରମ୍ଭ ହୋଇଥାଏ । ବଡ଼ ବଡ଼ ପଥର ବୋହିବା ପାଇଁ ସ୍ୱତନ୍ତ୍ର ଟ୍ରକ ନିଯୁକ୍ତ ହୋଇଥାଏ । ଚାରୋଟି ପଥରକୁ ସେଇଥିରୁ ଚାରୋଟି ଟ୍ରକରେ ଅଣାଗଲା କଟକ । ସେ ଦିନ ସେହି ଆଣିବା ସମୟରେ ତାପଙ୍ଗ କଟକ ଟ୍ରାଫିକ ବନ୍ଦ କରି ଦିଆଗଲା । ଏସବୁ ପାଇଁ ୰ ସୁବୋଧ ବିଶ୍ୱାସ ଥିଲେ କରିତକର୍ମା ବ୍ୟକ୍ତି । ଜାତୀୟ କ୍ରୀଡ଼ା ପ୍ରତିଯୋଗିତା ସମୟରେ ମାରାଥନ ୱାକ (Marathan walk) ଏବଂ ସାଇକେଲ ରେସ୍ ପାଇଁ ମଧ ସେ ସେଇ ପ୍ରକାର ବ୍ୟବସ୍ଥା କରିଥିଲେ । ରେଭେନ୍ସା କଲେଜର ସେ ଥିଲେ 'ଟ୍ରିପଲ ବ୍ଲୁ ହୋଲ୍ଡର । ହକି, ଫୁଟବଲ ଏବଂ ଟେନିସ୍‌ର ବ୍ଲୁ । ସେତେବେଳେ ରେଭେନ୍ସା କଲେଜରେ ବ୍ଲୁ ପାଇବା ଭାରି କଠିନ ଥିଲା । କାରଣ ଆଥେଲେଟିକ୍ସ ଆସୋସିଏସନ୍ ସେଥିପାଇଁ ଏକ ସ୍ୱତନ୍ତ୍ର ବିଚାରକ ମଣ୍ଡଳୀ ମନୋନୀତ କରନ୍ତି । ସେମାନଙ୍କ ସୁପାରିଶ ପରେ ଆଥ୍ଲେଟିକ୍ସ ଆସୋସିଏସନରେ ଏହା ସର୍ବ ସମ୍ମତି କ୍ରମେ ପାଶ ହୁଏ କିନ୍ତୁ ଭିଟୋ-ଭୋଟ ଥାଏ ଆଉ ଜଣଙ୍କ ପାଖରେ । ସେ ହେଉଛି ରେଭେନ୍ସା କଲେଜର ଆଥ୍ଲେଟିକ୍ସ ପିଅନ । ରେଭେନ୍ସା କଲେଜ ସଂପର୍କରେ କୌଣସି ପ୍ରଲୋଭନ ତା' ପାଖରେ କାମ କରେନା । କେବଳ ମେରିଟ୍ ହିଁ କାମ କରେ । ତାର ନାମ ମୁଁ ବର୍ତ୍ତମାନ ଭୁଲିଯାଇଛି । ସେ ଅବସର ନେଲାପରେ ତା'ର ପୁଅ ବିହାରୀ ଠିକ୍ ସେଇ କାମ କରୁଥିଲା, ସେଇ ପଦବୀରେ ସେ ସେଠାରୁ ଅବସର ନେଇ କାମ କଲା ବାରବାଟୀ ଷ୍ଟାଡ଼ିଅମରେ, ଭୈରବବାବୁଙ୍କ ପାଖରେ । ଭୈରବବାବୁଙ୍କ ମୃତ୍ୟୁ ପରେ ପରେ ତାଙ୍କର ପ୍ରିୟ ଓ ବିଶ୍ୱସ୍ତ ଡ୍ରାଇଭର ଶ୍ରୀଧର, ତାଙ୍କର ଲିଜେଣ୍ଡ୍ରି ମାଳି କୃଷ୍ଣ ତାଙ୍କର ପିଅନ ବିହାରୀ ତିନିଜଣ ଆଖି ବୁଜି ଦେଲେ ଜଣକ ପରେ ଜଣେ । ମୋର ମନେ ପଡୁଚି । ମୋର ଜଣେ ବନ୍ଧୁ ଭଲ ଟେନିସ ଖେଳୁଥିଲେ । କୁହାବୋଲା କରି ସେ ବ୍ଲୁ ପାଇଁ ସୁପାରିଶ ପାଇଲେ ବିଶେଷଜ୍ଞ କମିଟିଠାରୁ, ପାଇଲେ ଆଥଲେଟିକ ଆସୋସିଏସନର କର୍ମକର୍ତ୍ତାମାନଙ୍କଠାରୁ କିନ୍ତୁ ବିହାରୀ ତାଙ୍କୁ ବ୍ଲୁ ଦେବା ବିପକ୍ଷରେ ମତ ଦେଲା । ରଣପୁରର ପୂର୍ବତନ ରାଜା ବ୍ରଜେନ୍ଦ୍ର ଭଲ ଟେନିସ ଖେଳୁଥିଲେ । ବିହାରୀ କହିଲା ପାଠ ପଢ଼ନ୍ତୁ । ଆଉରି ବର୍ଷେ ଅଭ୍ୟାସ କର । ବ୍ରଜେନ୍ଦ୍ର ଭଳିଆ ଖେଳିବାକୁ ଚେଷ୍ଟା କର । ତା' ପରେ ଦେଖିବା । କୌଣସି ପ୍ରଲୋଭନ କାମ କଲା ନାହିଁ ।

Digitized by srujan ka@gmail.com

ବାରବାଟୀ ଷ୍ଟାଡିୟମରେ କୋଣାର୍କ ଘୋଡ଼ା ପଥରରେ ତିଆରି ହେବ । ସେ ବର୍ଷ ଜୁଲାଇ ମାସରେ କି ତା'ର ଟିକିଏ ଆଗରୁ କାମ ଆରମ୍ଭ ହେଲା । ମୁଁ ସେତେବେଳେ ଭାରତ-ସୋଭିଏଟ୍ ମୈତ୍ରୀ ସମିତିର ସଂପାଦକ । ଆମର ଅଫିସ ପାଖ ଘରେ ସେମାନଙ୍କୁ ଗୋଟିଏ ଘରେ ବନ୍ଦ କରି ଦିଆଗଲା । ସେମାନେ ଏକ ପ୍ରକାର ଲସା ତିଆରି କଲେ । ଏକୋଇଶ ଦିନ କାଳ ପୂଜା ଏବଂ ଲସା ତିଆରି ଚାଲିଲା । ସେ ଘର ଭିତରକୁ ପଶିବା ନିଷିଦ୍ଧ, ବାହାରୁ ତାଲା ପକାଇ ଦିଆଯାଇଛି । ଏକୋଇଶ ଦିନ ପରେ ଲସା ତିଆରି କରି ରଘୁ ଏବଂ ତାର ବାପା ବାହାରିଲେ ସେ ଘରୁ । ସେ ପର୍ଯ୍ୟନ୍ତ ସେମାନେ ଏକବସ୍ତ୍ରୀ, ଦାଢ଼ି ଖିଅର ବି ହୋଇନାହାନ୍ତି । ଏଇ ଲସା ଦେଇ ଦୁଇଟି ପଥର ଯୋଡ଼ିଦେଲେ ତାହା ଗୋଟିଏ ହୋଇଯାଏ । କୋଣାର୍କର ଯେଉଁ ଘୋଡ଼ା ବର୍ତ୍ତମାନ ହର୍ସ ଗେଟ୍‌ରେ ଅଛି ସେଥିରେ ଅନେକ ପଥର ଯୋଡ଼ା ହୋଇଛି ।

ରଘୁକୁ ମୁଁ ପଚାରିଲି ଯେ ରଘୁ, ଏ କାମ କେବେ ସରିବ ? କାରଣ ଏ କାମରେ ଯେତିକି ଯୋଡ଼େଇ ସେଥିରୁ ଏ କାମ କେବେ ସରିବ ମୋର ସନ୍ଦେହ ଥିଲା । ସେମାନେ କୌଣସି ସ୍କେଲ ବ୍ୟବହାର କରୁ ନ ଥିଲେ । ଦରକାର ପଡ଼ିଲେ ଜଣଙ୍କର ଆଖିରେ ପୁଟୁଳି ବାନ୍ଧି ଦିଆଯାଏ । ସେ ହାତରେ ଆଉଁସି ଆଉଁସି କହିଦିଏ ଯେ କେଉଁଠି ଠିକ୍ ହୋଇନାହିଁ ଏବଂ ପଥର କାମରେ ବି ସେମାନେ ମ୍ୟାନିପୁଲେଶନ କରି ପାରନ୍ତି । ମୋ ପ୍ରଶ୍ନର ଉତ୍ତରରେ ରଘୁ କହିଲେ ଯେ ଛୁଟି ନେଇଚି ଚାକିରିରୁ ଡିସେମ୍ବର ୨୩ ତାରିଖ ପର୍ଯନ୍ତ । ସତକୁ ସତ ଡିସେମ୍ବର ୨୩ ତାରିଖ ଦିନ ଘୋଡ଼ା ତିଆରି କାମ ସରିଗଲା । ଅଥଚ ଏବେ ବିଖ୍ୟାତ ଇଂଜିନିଅରମାନେ ଯେଉଁସବୁ ଯୋଜନା କରୁଛନ୍ତି ସେସବୁ ଠିକ୍ ସମୟରେ ସରିପାରୁ ନାହିଁ । ଅଟକଳ ବଢ଼ି ଦୁଇଗୁଣ ହେଲାଣି ।

ସୁଜନ ଘୋଷ ଠାବ କରିଥିଲେ ସଠିକ୍ ଭାବରେ ଏଇ ଶିଳ୍ପୀମାନଙ୍କୁ । ଏବଂ ସମ୍ଭାବନାର ବିଶାଳ ସିଂହଦ୍ୱାର ସେମାନଙ୍କ ପାଇଁ ଉନ୍ମୁକ୍ତ କରି ଦେଇଥିଲେ ସେ ।

ଉଭୟ ରଘୁ ଏବଂ ସୁଦର୍ଶନର ଫୁଜି ମହାରାଜଙ୍କ ସହିତ ପରିଚିତି ହେଲା ଏବଂ ତା'ପର ହେଉଛି ଇତିହାସ ।

ଆଉ ସୁଜନ ଘୋଷଙ୍କର କୌଣସି ଖବର ମୁଁ ପାଇନାହିଁ । ତେବେ ମୋର ମନେ ପଡୁଚି, ଥରେ ବନ୍ଧୁ ୰ ପ୍ରବୀର ପାଲିତଙ୍କ ଘରେ ଏକ ଆସର ଜମିଥିଲା । ବଂଗଳା ଓ ଓଡ଼ିଶାର ଶିଳ୍ପୀମାନେ ପୁନର୍ଗଠିତ ଆଇ.ପି.ଟି.ଏ.ରେ (ଇପ୍‌ଟା) ବୈଠକରେ ଯୋଗ ଦେଇଥାନ୍ତି । ବିଡ଼ି ସରିଗଲା । ବିଡ଼ି ଆଣିବାକୁ ଡେରି ଲାଗିବ । ତେଣୁ ଜଣେ କଳାକାର ସମ୍ମୁଖରେ ଥିବା ଆସ୍‌ଟ୍ରେରୁ ଏକ ବିଡ଼ି ବାହାର କରି ଟାଣିବାକୁ ଲାଗିଲେ ତାଙ୍କର ନାମ ହେଉଚି ମୃଣାଳ ସେନ୍ । ପ୍ରସିଦ୍ଧ ନିର୍ଦ୍ଦେଶକ ଭାବରେ ବର୍ତ୍ତମାନ ସେ ଖ୍ୟାତ ଆନ୍ତର୍ଜାତିକ ସ୍ତରରେ ।

ପ୍ରବୀର ପାଲିତଙ୍କ ଘର ଏକ ଆଡ୍ଡାସ୍ଥଳୀ ଥିଲା । କଳାକାରମାନେ ସେଠାରେ ଯେପରି ଏକତ୍ରିତ ହେଉଥିଲେ ଠିକ୍ ସେଇପରି ଏକତ୍ରିତ ହେଉଥିଲେ ଟ୍ରେଡ ୟୁନିଅନିଷ୍ଟମାନେ,

Digitized by srujan ka@gmail.com

ରାଜନୈତିକ ଦଳର ନେତାମାନେ । ବନ୍ଧୁ ରାଜେନ୍ଦ୍ର ସିଂ କହନ୍ତି ଯେ ଲେମ୍ବୁ ଚା' ପିଇବା ପାଇଁ ମୁଁ ଯାଏ ପ୍ରବୀର ପାଲିତଙ୍କ ଘରକୁ ନଚେତ୍ ଆପଣଙ୍କ ଘରକୁ ।

ଥରେ ପୁରୀରେ ଜଗନ୍ନାଥ ମନ୍ଦିର ଉପରେ ଏକ ଉଚ୍ଚସ୍ତରୀୟ କମିଟି ଡକାଯାଇଥିଲା । ମୁଁ ସେଠାରେ ଉପସ୍ଥିତ ଥିଲି । ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଭାବରେ ସଭାପତିତ୍ୱ କରୁଥିଲେ ସେଇ ସଭାରେ । ସେ କହିଲେ ଯେ ଦୁଃଖର କଥା କୋଣାର୍କ ମନ୍ଦିର ଗଢ଼ିବାର ଶିଳ୍ପୀ ଆଉ ନାହାନ୍ତି । ମୋର ମନେ ପଡୁଛି ରଘୁ ମହାପାତ୍ର ସେ ଆହ୍ୱାନକୁ ଗ୍ରହଣ କଲେ ଏବଂ ତାଙ୍କ ଘରେ ଥିବା ତାଳପତ୍ର ପୋଥିର ଏକ ବିରାଟ ବସ୍ତାନୀ ଖୋଲି କହିଲେ ଯେ କୋଣାର୍କର ଶିଳ୍ପୀକୁଳର ବଂଶ ପୂରା ଲୋପ ହୋଇଯାଇ ନାହିଁ । ସମୟ ସୁଯୋଗ ମିଳିଲେ ଆମେ ସବୁ ସେଇ ବଂଶଧରମାନେ ତିଆରି କରିଦେଇ ପାରିବୁ ଏକ ନୂତନ କୋଣାର୍କ । ବିଜୁ ପଟ୍ଟନାୟକଙ୍କୁ ଲକ୍ଷ୍ୟ କରି ସେ କହିଲେ ଯେ କେବଳ ଦରକାର ଆମ ପାଇଁ ଏକ ଲାଙ୍ଗୁଳା ନରସିଂହ ଦେବ ।

ବିଜୁ ପଟ୍ଟନାୟକ ତ ପ୍ରାୟ ସେଇ ସ୍ପିରିଟ୍‌ର ଲୋକ । ନଚେତ୍ କ'ଣ ପାରାଦ୍ୱୀପ ବନ୍ଦର ବା ଏକ୍ସପ୍ରେସ ରାଜପଥ ନିର୍ମାଣ କରାଯାଇ ପାରିଥାନ୍ତା ? ପଣ୍ଡିତ ନେହେରୁଙ୍କ ପାଖରୁ ସେ ଯେପରି ଭାବରେ ପାରାଦ୍ୱୀପ ବନ୍ଦର ପାଇଁ ଦସ୍ତଖତ ନେଇପାରିଲେ, ବୋଟ୍ ଭିତରେ ତା' ସମସ୍ତେ ଜାଣନ୍ତି । ତା' ପରଦିନ ସେଇବାଟରେ ଫେରିଲାବେଳେ ପଣ୍ଡିତ ନେହେରୁ ଶହ ଶହ ଟ୍ରକ ଠିଆ ହୋଇଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ବିଜୁ ପଟ୍ଟନାୟକଙ୍କୁ ପଚାରିଲେ ଏ ସବୁ କ'ଣ ? ବିଜୁ ପଟ୍ଟନାୟକ ଉତ୍ତର ଦେଇଥିଲେ ଯେ ଆପଣ ପରା କାଲି ଆଦେଶ ଦେଲେ । ତେଣୁ କାମ ଆରମ୍ଭ ହୋଇଯାଇଛି । ପଣ୍ଡିତ ନେହେରୁଙ୍କର କିଛି କହିବାର ନ ଥିଲା । ଠିକ୍ ସେଇଦିନ ପୁରୀ ସଭାରେ ଉତ୍‌ଫୁଲ୍ଲ ବିଜୁ ପଟ୍ଟନାୟକ ଉତ୍ତର ଦେଇଥିଲେ ''ଦେଖିବା, ଭୁବନେଶ୍ୱରର ଉପକଣ୍ଠରେ ଇମିତି ଏକ ମନ୍ଦିର ନିର୍ମାଣ କରାଯାଇ ପାରିବ କି ନାହିଁ ?

ବିଜୁ ପଟ୍ଟନାୟକ ଆଉ ନାହାନ୍ତି । କିନ୍ତୁ ବୋଧଗୟାରେ ଆନ୍ତର୍ଜାତିକ ସହଯୋଗରେ ପୃଥିବୀର ସବୁଠାରୁ ବଡ଼ ବୌଦ୍ଧମୂର୍ତ୍ତି ଗଢ଼ା ହେଉଛି । ସେଇପରି ଏକ ବୌଦ୍ଧମୂର୍ତ୍ତି, ଲଳିତଗିରି ବା ରତ୍ନଗିରିରେ, ଏକ କୋଣାର୍କ ମନ୍ଦିର ଭୁବନେଶ୍ୱରରେ ଗଢ଼ା ଯାଇପାରନ୍ତା ନାହିଁ ? କୋଣାର୍କ ମନ୍ଦିରକୁ ଭଲ ପାଉଥିବା ବ୍ୟକ୍ତି ବା ଅନୁଷ୍ଠାନମାନଙ୍କ ପାଖରୁ ଜାତୀୟ ଓ ଆନ୍ତର୍ଜାତିକ ସାହାଯ୍ୟ ମିଳି ପାରନ୍ତା ନାହିଁ ? ବିଦେଶରେ ଥିବା ଓଡ଼ିଆମାନଙ୍କଠାରୁ, ବିଦେଶର ଅନ୍ୟ ଅନୁଷ୍ଠାନ ବା ବ୍ୟକ୍ତିମାନଙ୍କଠାରୁ ଏ ସାହାଯ୍ୟ ସଂଗୃହିତ ହୋଇପାରନ୍ତା ନାହିଁ ?

ସେ ଦିଗରେ ଯେହେତୁ କୌଣସି ଉଦ୍ୟମ ହୋଇନାହିଁ, ଏହାର ସମ୍ଭାବନା କେତେ ତାହାର ଅଟକଳ କରିବ କିଏ ?

ସେଇଟା ଠିକ୍ କେଉଁ ବର୍ଷ ମନେ ପଡୁନାହିଁ । ବୋଧହୁଏ ୧୯୪୩ ମସିହାର କଥା । 'ଚେତାବନୀ' ନାମକ ଏକ ପୁସ୍ତକ ବିକ୍ରୀ ହେଲା ମାର୍କେଟରେ । ବହିର ବଂଗଳା, ହିନ୍ଦୀ, ଓଡ଼ିଆ

Digitized by srujan ka@gmail.com

ସବୁ ସଂସ୍କରଣ ପ୍ରକାଶ ପାଇଲା ଏବଂ ବିକ୍ରୀ ଏତେ ଦ୍ରୁତଗତିରେ ହେଲା ଯେ ସେ ବହି ଆଦୌ ମିଳିଲା ନାହିଁ । ବୋଧହୁଏ ଅଗଷ୍ଟ ପହିଲା ତାରିଖରେ ନବଗ୍ରହ କୂଟ ହେବ ଏବଂ ସେଇଦିନ ପ୍ରଳୟ ହେବ ବୋଲି ସେଥିରେ ଚେତାବନୀ ଦିଆଯାଇଥିଲା । ପରବାସରେ ଥିବା ଲୋକ ଦୌଡ଼ିଲେ ଘର ମୁହାଁ ହୋଇ । ହଜାର ହଜାର ଲୋକ ଟ୍ରେନରେ ଆସିଲେ, ଟ୍ରେନର ସଂଖ୍ୟା ବହୁତ କମ ଥିଲା । ଝାରସୁଗୁଡ଼ାରୁ ସେତେବେଳେ ଗୋଟିଏ ଟ୍ରେନ ସକାଳେ ଆସେ ସମ୍ବଲପୁର । ଫେରିଯାଏ କିଛି ସମୟ ପରେ । ପୁଣି ଆସେ ଉପରବେଳା ଏବଂ ଫେରେ ସନ୍ଧ୍ୟାକୁ । ପୁଣି ଷ୍ଟେସନମାନଙ୍କରେ ସିଗ୍‌ନାଲ ନ ଥାଏ । ଗାଡ଼ି ଅଟକେ ଅନୁମାନ କରି ।

ସମ୍ବଲପୁରରେ ବୁଢ଼ାରାଜା, ମୋତିଝରଣ ଏବଂ କଲେକ୍ଟରଙ୍କ ଅଫିସ ସାମନା ପଳାଶ ବଣରେ ସେକ୍ରେଟେରିଏଟ ଏବଂ ରେଭିନ୍ୟୁ କମିଶନରଙ୍କ କିରାନୀମାନଙ୍କ ପାଇଁ ତିନୋଟି ବଡ଼ ବଡ଼ କଲୋନୀ ଗଡ଼ିଉଠିଲା । ସେମାନେ 'କଟକିଆ' ସଂସ୍କୃତିକୁ ନେଇ ଆସିଲେ ସମ୍ବଲପୁରକୁ, କିନ୍ତୁ କାଇଁ କୌଣସି ବୈରତାର ସମ୍ମୁଖୀନ ହେଲେ ନାହିଁ ସେମାନେ ? ତେଣୁ ମୋର ମନେହୁଏ ଏଇ ସବୁ କିଛି ବ୍ୟକ୍ତିଙ୍କ ଦ୍ୱାରା ସୃଷ୍ଟ, ଯାହା ସହିତ ସାଧାରଣ ମଣିଷର କୌଣସି ସଂପର୍କ ନାହିଁ । ଆହତ ସାମନ୍ତବାଦୀ ପ୍ରତିଷ୍ଠାର ଏହା ଏକ ବିସ୍ଫୋରଣ !

ସମ୍ବଲପୁରରେ ଥିଲାବେଳେ ଗାନ୍ଧିଜୀ ଝାରସୁଗୁଡ଼ା ଦେଇ ବମ୍ବେ ଗଲେ । ତାଙ୍କୁ ଦେଖିବା ପାଇଁ ସେ ଦିନ ଅସୁମାରି ଲୋକ ସମାଗମ ହୋଇଥିଲା । ମୁଁ ପାଠ ପଢୁଥାଏ ସ୍କୁଲରେ । ସେଇ ସମୟରେ ସମ୍ବଲପୁର ରୋଡ଼ (ଫାଟକ)ରୁ ରେଙ୍ଗାଲି ମୋର ଦୈନନ୍ଦିନ ଯିବା ବାଟ । ସକାଳୁ ଟ୍ରେନରେ ରେଙ୍ଗାଲିରୁ ସନ୍ଧ୍ୟାବେଳକୁ ଫେରେ ଟ୍ରେନରେ । ସେଦିନ ରେଙ୍ଗାଲିରେ ଓହ୍ଲାଇବା ହେଲା ନାହିଁ । ସିଧା ଚାଲିଲି ଝାରସୁଗୁଡ଼ା । ରାତି ବାରଟା ବେଳକୁ ଆସିବ ବମ୍ବେ ମେଲ୍ । ପ୍ଲାଟଫର୍ମରେ ତିଳଧାରଣ କରିବା ପାଇଁ ସ୍ଥାନ ନାହିଁ । ବହୁ ସଂଖ୍ୟକ ମାରୱାଡ଼ି, ଗୁଜରାଟୀ ସମ୍ପ୍ରଦାୟର ଲୋକଙ୍କୁ ସେଦିନ ଦେଖିଥିଲି ସେଠାରେ । ଗୁଜରାଟୀମାନଙ୍କର ମହାତ୍ମା ଗାନ୍ଧୀଙ୍କ ପ୍ରତି ଏକ ସ୍ୱତନ୍ତ୍ର ଅନୁରାଗ ନିଶ୍ଚିତ ଥିଲା । ସେମାନେ ଆଣିଥିଲେ ଅସୁମାରି ଫୁଲ ।

ମୁଁ ଆଗରୁ ଥରେ ଗାନ୍ଧିଜୀଙ୍କୁ ଦେଖିଥିଲି, ସେ ଯେତେବେଳେ ଅନୁଗୋଳ ଦେଇ ପଦଯାତ୍ରା କରିଥିଲେ । ମୁଁ କିନ୍ତୁ ଏତେ ସାନ ଥିଲି ଯେ ଗାନ୍ଧିଜୀଙ୍କୁ ଦେଖିବା ଖାଲି ଝାପସା ମନେ ପଡୁଛି । ତେଣୁ ଗାନ୍ଧିଜୀଙ୍କୁ ଦେଖିବା ପାଇଁ ଆଗ୍ରହ ଥିଲା ପ୍ରଚୁର । ଗାନ୍ଧିଜୀ ତୃତୀୟ ଶ୍ରେଣୀରେ ଯିବା ଆସିବା କରନ୍ତି ଏଇ କଥାଟା ମୋ ମନକୁ ଖୁବ୍ ଛୁଇଁଥିଲା । କାରଣ ଆମେ ସବୁ ତୃତୀୟ ଶ୍ରେଣୀର ଯାତ୍ରୀ ସବୁବେଳେ । ପଙ୍ଖା ନାହିଁ, ପାଇଖାନା ଯାହା ଥାଏ ଛାଡ଼ । ବେଞ୍ଚଗୁଡ଼ିକ ବଙ୍କା ବଙ୍କା । ଗାଡ଼ି ସଫା କ୍ୱଚିତ ହୁଏ । କେବେ ହୋସ ପାଇପରେ ଧୁଆଯାଏ ମାତ୍ର । ତେଣୁ ଗାନ୍ଧିଜୀଙ୍କୁ ଦେଖିବା ଛଡ଼ା 'ତୃତୀୟ ଶ୍ରେଣୀ'ରେ ଯାତ୍ରା ଦେଖିବା ଥିଲା ମୋର ଏକାନ୍ତ ଆଗ୍ରହ ।

Digitized by srujan ka@gmail.com

ଗାନ୍ଧିଜୀ କିନ୍ତୁ ଦର୍ଶନ ଦେବାପାଇଁ ନାରାଜ । ଗାଡ଼ି ଛାଡ଼ିବା ବେଳ ହେଲାଣି । ତଥାପି ଗାନ୍ଧିଜୀ ନାରାଜ । ଏତିକି ହାତବୁଣା ସୂତା, ଏତିକି ହରିଜନ କଲ୍ୟାଣ ପାଣ୍ଠି ପାଇଁ ଅର୍ଥ ନ ଦେଲା ପର୍ଯ୍ୟନ୍ତ ସେ ଆଦୌ ଦେଖା ଦେବାପାଇଁ ପ୍ରସ୍ତୁତ ନୁହନ୍ତି । ବାଧ ହୋଇ ମୁଖିଆମାନେ ଧାଇଁଲେ । ଆଣିଲେ ସୂତା ଏବଂ ଅର୍ଥ । ଗାନ୍ଧିଜୀଙ୍କ ମୁହଁ ଉପରେ ଖେଳିଗଲା ସେଇ ଭୁବନମୋହିନୀ ହସ । ପାକୁଆ ପାଟିରେ ସେ ହସ ସବୁ ଲୋକଙ୍କର ନୈରାଶ୍ୟକୁ ପୋଛିଦେଲା ଯେପରି !

କିନ୍ତୁ ଗାନ୍ଧିଜୀ ତ ଥାର୍ଡ଼କ୍ଲାସ କିନ୍ତୁ ଆମ ଥାର୍ଡ଼ କ୍ଲାସ ନୁହେଁ । ଲେଖା ଯାଇଛି ଅବଶ୍ୟ ଥାର୍ଡ଼କ୍ଲାସ ବୋଲି । କିନ୍ତୁ ଭିତରେ ପଙ୍ଖା । ଗାନ୍ଧିଜୀଙ୍କ ଟ୍ରୁପ ପାଇଁ ସେଇ ବଗି ସ୍ୱତନ୍ତ୍ର ଭାବରେ ସଂରକ୍ଷିତ । ଅନ୍ୟ କେହି ସେଥିରେ ବସି ବା ଚଢ଼ି ପାରିବେ ନାହିଁ । ସିଟ୍ ସବୁ ମଧ ପରିବର୍ତ୍ତନ ହୋଇଯାଇଛି ।

ମନଟା କିମିତି ହୋଇଗଲା । ପାଖରେ ଜଣେ ବୟସ୍କଙ୍କୁ ପଚାରିଲି । ସେ କହିଲେ ଯେ ଗାନ୍ଧିଜୀ ଆମ ଭଳି ତୃତୀୟ ଶ୍ରେଣିରେ ଯାଉଥିଲେ । ଏବେ ତାଙ୍କର ପ୍ରତିଷ୍ଠା ଯଥେଷ୍ଟ ବୃଦ୍ଧି ପାଇଥିବାରୁ ତାଙ୍କ ପାଇଁ ରେଳବାଇ କଂପାନୀ ସ୍ୱତନ୍ତ୍ର ବନ୍ଦୋବସ୍ତ କରୁଛି ।

ଜବାହରଲାଲ କିନ୍ତୁ କେବେ ତୃତୀୟ ଶ୍ରେଣୀରେ ଯାଉ ନ ଥିଲେ । ସେ ଗାନ୍ଧିଜୀଙ୍କର ଅନୁରକ୍ତ ଥିଲେ କିନ୍ତୁ ଗାନ୍ଧୀ-ଗୋଷ୍ଠୀର ଅଂଶୀଦାର ନ ଥିଲେ । ଠିକ୍ ଯେପରି ନୁହନ୍ତି ଆଚାର୍ଯ୍ୟ କ୍ରିପଲାନୀ । ଥରେ କାଶୀ ବିଦ୍ୟାପୀଠରେ ପଶିଥିବା ଏକ ଗୁଇନ୍ଦା ଧରାପଡ଼ିଲା । ତାକୁ ତ କ୍ରିପଲାନୀ ଯାହା ବାଡ଼େଇଲେ ଛାଡ଼, ଏବଂ କହି କହି ବାଡ଼େଇଲେ ଯେ ତୁ କ'ଣ ଭାବିଚୁ ଏଇଟା ଗାନ୍ଧୀ ଆଶ୍ରମ ବୋଲି ! ଠିକ୍ ସେପରି ନ ଥିଲେ ମୌଲାନା ଅବୁଲ କାଲାମ ଆଜାଦ । ଆଜାଦ୍ ସନ୍ଧ୍ୟା ପରେ ସୁରାପାନ କରନ୍ତି । ଏହା ଗାନ୍ଧିଜୀ ମଧ ଜାଣନ୍ତି । ଜବାହରଲାଲ ବିଲାତି ସିଗାରେଟର ଚେନ୍ ସ୍ମୋକର । କିନ୍ତୁ ସିଗାରେଟ ହାତରେ ତାଙ୍କର କୌଣସି ଫଟୋ ମୁଁ ଦେଖିନାହିଁ । ସେଭଳି ଫଟୋ ଉଠାଇବାକୁ ନିଷେଧାଦେଶ ଥିଲା ତାଙ୍କର । ଥରେ ସେ ପ୍ରଧାନମନ୍ତ୍ରୀ ଭାବରେ ଯାଉଥିଲେ ସୋଭିଏଟ୍ ୟୁନିଅନ । ସେଠାରେ ଥିବା ଆମର ରାଷ୍ଟ୍ରଦୂତ କେ.ପି.ଏସ୍. ମେନନ୍ ତାଙ୍କୁ ଲେଖିଲେ– ଆପଣ ତ ଏଠାର ଚାଲିଚଳଣ ଜାଣନ୍ତି । ସବୁ ଆଲୋଚନା ହୁଏ ଡିନରରେ ଏବଂ ଡିନର ସହିତ ମଦ୍ୟପାନ ଜଡ଼ିତ । ତେଣୁ ମୁଁ କ'ଣ କରିବି ? ପଣ୍ଡିତ ନେହେରୁ ତାଙ୍କୁ ଲେଖିଲେ Serve any drinks you like, except that vulgar British Drink called Whisky. କେ.ପି.ଏସ୍. ମେନନ ସ୍ମୃତିଚାରଣ କରି କହନ୍ତି ଯେ ମୁଁ ସେଇ ସାହସରେ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ଭାବରେ ସୋଭିଏଟ୍ ୟୁନିଅନ ଗଲାବେଳେ ସେଇକଥା ପଚାରିଲି । ଉତ୍ତର ଗଲା Nothing except Lemon Water.

Digitized by srujan ka@gmail.com

ମୋରାରଜୀ ଜଣେ ରକ୍ଷଣଶୀଳ ନେତା ଭାବରେ ପରିଚିତ । ତାଙ୍କର ମୁଖ୍ୟମନ୍ତ୍ରୀତ୍ୱ ସଂପର୍କରେ ତାଙ୍କର ପ୍ରଥମ ସମାଲୋଚକ ଥିଲେ ଆର.କେ. କରଞ୍ଜିଆ ଏବଂ ତାଙ୍କର କାଗଜ 'ବ୍ଲିଜ୍' । 'ବ୍ଲିଜ୍'ର ଏଭଳି କୌଣସି ସଂସ୍କରଣ ନାହିଁ ଯେଉଁଥିରେ ମୋରାରଜୀ ଦେଶାଇଙ୍କୁ ତୀବ୍ର ସମାଲୋଚନା କରାଯାଇଛି । ମୋରାରଜୀ ପ୍ରଧାନମନ୍ତ୍ରୀ ହେଲା ପରେ ଥରେ କରଞ୍ଜିଆ ତାଙ୍କଠାରୁ ଏକ ଇଣ୍ଟରଭିଉ ଚାହିଁଲେ । ସମୟ ମିଳିଲା କିନ୍ତୁ ପାଞ୍ଚ ମିନିଟ୍ (ନା ଦୁଇ ମିନିଟ୍ ମୋର ଠିକ୍ ମନେ ପଡୁନାହିଁ) ପାଇଁ ମାତ୍ର । ଏତେ ସଂକ୍ଷିପ୍ତ ସମୟରେ କ'ଣ ଇଣ୍ଟରଭିଉ ହୋଇପାରିବ, ଏଇପରି ଭାବି କରଞ୍ଜିଆ ପ୍ରବେଶ କଲେ ମୋରାରଜୀଙ୍କ ରୁମ୍‌କୁ । ଅଭିବାଦନ ପ୍ରତ୍ୟାଭିବାଦନ ପରେ ମୋରାରଜୀ ପଚାରିଲେ ''କରଞ୍ଜିଆ, ତମେ ତ ବର୍ଷ ବର୍ଷ ଧରି ମୋ ବିରୁଦ୍ଧରେ ଲେଖି ଚାଲିଚ, ଆଛା, ତମେ କ'ଣ ଏସବୁ ଅଭିଯୋଗକୁ ସତ୍ୟ ବୋଲି ଭାବି ଲେଖିଚ ?'' କରଞ୍ଜିଆ ସାହାସର ସହିତ ଉତ୍ତର ଦେଲେ ସତ୍ୟ ବୋଲି ଭାବି ନ ଥିଲେ ଲେଖି ନ ଥାନ୍ତି । ସାକ୍ଷାତର ନିର୍ଦ୍ଦିଷ୍ଟିକୃତ ସମୟ ଅତିକ୍ରାନ୍ତ ହୋଇ ସାରିଥିଲା । କରଞ୍ଜିଆ ଉଠି ଠିଆ ହେଲେ । ତାଙ୍କୁ ବସିବା ପାଇଁ ଇଙ୍ଗିତ ଦେଲେ ମୋରାରଜୀ ଦେଶାଇ । ସାକ୍ଷାତ ଚାଲିଲା ଏକ ଘଣ୍ଟା ଧରି, ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ।

ମୋରାରଜୀ ୧୯୧୭ ମସିହାରୁ ଭାତରୋଟି ଖାଇବା ଛାଡ଼ି ଦେଇଥିଲେ । ତାଙ୍କର ଖାଇବା ମେନୁ ଆସେ ଆଗତୁରା ସେ ଯାଉଥିବା ଜିଲ୍ଲାମାନଙ୍କର ଜିଲ୍ଲାପାଳମାନଙ୍କୁ । ସେ ମେନୁ ମୁଁ ଦେଖିଛି ଖୁବ୍ ବେଶୀ ହେଲେ ୬୦୦ ରୁ ୭୦୦ କ୍ୟାଲୋରିଜ୍ ହେବ । କିନ୍ତୁ ସେ ବଂଚି ରହିଥିଲେ କିପରି ? ସେ କହନ୍ତି ଆପଣାର ପରିସ୍ରା ପିଇବା ଯୋଗୁଁ ଏହା ସମ୍ଭବ ହୋଇପାରିଛି । ତାଙ୍କର ନୀରୋଗ ଶରୀର, ଦୀର୍ଘ ଆୟୁ ଏବଂ କର୍ମଦକ୍ଷତାର ଏହି ସ୍ୱୟଂଭୂ ପାନ ହିଁ ଏକମାତ୍ର କାରଣ ।

ଦ୍ୱିତୀୟ ମହାଯୁଦ୍ଧ ସମୟରେ ସମ୍ବଲପୁରରେ ଆତଙ୍କ ସୃଷ୍ଟି ହେଉଥିଲା । ମୋର ପିଲାଦିନର କଥା । ସେଥିରୁ କେତେ ସତ୍ୟ କେତେ ମିଥ୍ୟା କହିପାରିବି ନାହିଁ । ମୋର ମନେହୁଏ ପରାସ୍ତ ହୋଇଯାଉଥିବା ମିତ୍ରଶକ୍ତିମାନଙ୍କର ପଛଘୁଞ୍ଚା ଦେଉଥିବା ସୈନ୍ୟମାନେ ହିଁ ଏହି ଗୁଜବ ସୃଷ୍ଟି କରୁଥିଲେ ବେଶି । ସେତିକିବେଳେ ମୁଁ ଥରେ ଯାଇଥିଲି ଚକ୍ରଧରପୁର । ସେଠାରୁ ଫେରିବୁ । ଷ୍ଟେସନକୁ ଗଲୁ ସିନା, ଫେରିବା ସମ୍ଭବ ହେଲା ନାହିଁ । ତିନିଦିନ ଆମେ ରହିଲୁ ରେଳବାଇ ପ୍ଲାଟଫର୍ମରେ । ଗାଡ଼ି ଆସିବା ପାଇଁ ସିଗ୍ନାଲ ତଳକୁ ହୁଏ, କିନ୍ତୁ ତା'ବଦଳରେ ଆସେ ଏକ ସାମରିକ ଟ୍ରେନ । ସେମାନଙ୍କ ମଧ୍ୟରୁ ଅନେକ ଥାଆନ୍ତି ନିଗ୍ରୋ । ସେ ଗାଡ଼ି ଦ୍ରୁତଗତିରେ ଚାଲିଯାଏ ଏବଂ ଆମେ ଅପେକ୍ଷା କରୁ । ତିନିଦିନ ପରେ ଆମ ଗାଡ଼ି ଆସିଲା । କିନ୍ତୁ ସେ ପୁଣି ଥିଲା ଏକ ଦୁର୍ଭାଗ୍ୟଗ୍ରସ୍ତ ଟ୍ରେନ ।

Digitized by srujan ka@gmail.com

ସନ୍ଧ୍ୟା ସାତ ଆଠଟା ବେଳେ ଆମେ ଗାଡ଼ିରେ ଉଠିଲୁ । ୰ ଶ୍ରୀ ମଦନ ମୋହନ ଭଂଜ, ମୋ ବାପା ଦାଦାଙ୍କ ବନ୍ଧୁ ଏବଂ ମୁଁ । ଆମେ ଥାଉ ଇଣ୍ଟରକ୍ଲାସରେ । ସେତେବେଳେ ତୃତୀୟ ଏବଂ ଦ୍ୱିତୀୟ ଶ୍ରେଣୀ ମଝିରେ ଏଇପରି ଏକ ଇଣ୍ଟରକ୍ଲାସ ଆଗ ରେଳବାଇମାନଙ୍କରେ ଥିଲା । ଏବେ ଉଠିଗଲାଣି । ପରେ ତୃତୀୟ ଶ୍ରେଣୀ ମଧ ଉଠିଗଲା ।

ଜାମଶେଦପୁରଠାରୁ ଝାରସୁଗୁଡ଼ା ମଝିରେ ଗୋଟିଏ ଦୁଇଟି ବଡ଼ ଟନେଲ ବା ସୁଡ଼ଙ୍ଗ ଅଛି ରେଳରାସ୍ତାରେ । ସେ ମଧ୍ୟରୁ ଗୋଟିଏ ବେଶ୍ ବଡ଼ ସୁଡ଼ଙ୍ଗ । ଠିକ୍ ତାହାରି ମୁହଁ ଉପରେ ଆମ ଟ୍ରେନର ଧକ୍କା ହେଲା ସେ ପଟରୁ ଆସୁଥିବା ଆଉ ଏକ ଟ୍ରେନ ସହିତ । ସେଇଟା ପାସେଞ୍ଜର ନା ମାଲଗାଡ଼ି ତାହା ମୁଁ ଜାଣିନାହିଁ । ମୁଁ କେବଳ ଶୋଇଥିବା ବେଞ୍ଚ ଉପରୁ ଖସି ପଡ଼ିବା ଏବଂ ମୋତେ କାନ୍ଧରେ ପକାଇ ବାଙ୍ଗରା ମଦନମୋହନ ଭଂଜ ଦୂରକୁ ଦୌଡ଼ିବା ମୁଁ ଜାଣିଛି । ସେଇ ଅନ୍ଧାର ଭିତରେ ସେ ମୋତେ ନେଇଗଲେ ପ୍ରାୟ ଏକ କିଲୋମିଟର ଦୂରକୁ । ସେଠାରେ ଅନ୍ୟାନ୍ୟ କମ ଆଘାତପ୍ରାପ୍ତ ଦଳେ ଲୋକ ଥାଆନ୍ତି । ସକ୍ (Shock)ରେ କିଛି ସଚେତ ଥିବା ଲୋକ ଚେତା ହରାଇପଡୁଥାନ୍ତି ସେଇଠି ମଧ ।

ଦୂରରେ ପାଟିଗୋଳ, କାନ୍ଦ ଏବଂ ଯନ୍ତ୍ରଣାରେ ଆତୁର ରୋଗୀମାନଙ୍କର ଚିତ୍କାର । ଘଣ୍ଟେ ଦୁଇଘଣ୍ଟା ପରେ ଚାରୋଟି ଇଞ୍ଜିନ ଆସି ପହଞ୍ଚିଲା । ଗୋଟିଏ ଇଂଜିନରେ ଗୋଟିଏ ମାତ୍ର ଡବା ଲାଗିଥିଲା । ସେଥିରେ ଆସିଥିଲେ ଡାକ୍ତର ନର୍ସ ଏବଂ ଔଷଧ । ମୁଁ ନର୍ସ କିମ୍ବା ଔଷଧ ଦେଖି ନାହିଁ । ଡାକ୍ତର ଦୁଇଜଣ, ମରି ପଡ଼ିଥିବା ମଣିଷଙ୍କୁ ଏପଟ ସେପଟ ଓଲଟାଇ ଦେଖି, ଯିଏ ମରି ଯାଇଥାଏ ତା' ପିଠିରେ ଡେଡ୍ (Dead) ବୋଲି ମୋହର ମାରି ଦେଉଥିଲେ ଏବଂ ତା'ପରେ ପରେ କିଛି ଲୋକ ଆସି ସେଗୁଡ଼ିକୁ ଉଠାଇ ନେଉଥିଲେ, ମୋର୍ଗକୁ (Morgue) ନୁହେଁ, ରେଳାବାଇ ଇଂଜିନ୍‌ମାନଙ୍କ ପାଖକୁ ଏବଂ ସେଇଠାରେ ଗୋଟିଏ ପରେ ଗୋଟିଏକୁ ସେଇ ରେଳ ଇଂଜିନର ନିଆଁ ଭିତରକୁ ନିକ୍ଷେପ କରିବାକୁ । ତା'ପରେ ନା ଅଛି ପ୍ରମାଣ, ନା ଅଛି ସାକ୍ଷୀ, ନା ଅଛି କ୍ଷତିପୂରଣର ସମସ୍ୟା । ଶୁଣିଲି ଯେ କ୍ଷତିପୂରଣକୁ ଏଡ଼ାଇ ଦେବାକୁ ଏହା ହେଉଥିଲା । ପଡ଼ିଆ ଭିତରେ ମୁଁ ଯେଉଁଠି ଶୋଇଥିଲି, ସେଠାରୁ ଅଳ୍ପ ଦୂରରେ ଜଣେ ଭଦ୍ରଲୋକଙ୍କ ଶରୀର ପଡ଼ିଥିଲା । ସେ କିଛି ସମୟ ତଳେ ଟ୍ରେନରୁ ଆସିଥିଲେ, କିନ୍ତୁ ତାଙ୍କର ଚେତା ଥିଲା । ହଠାତ୍ ସେ ଅଚେତ୍ ହୋଇଯାଇଥିଲେ । ଡାକ୍ତର ତାଙ୍କୁ ସେଇ ଅବସ୍ଥାରେ ଦେଖି ତାଙ୍କ ଦେହରେ ମୃତ ବୋଲି ଲେବଲ ଦେଇ ଚାଲି ଯାଇଥିଲେ । ତାଙ୍କର ଚେତା ଫେରିଛି କିଛି କିଛି । ଏକିତିବେଳେ ତାଙ୍କର ''ମୃତ ଦେହ''କୁ ନେଇ ଇଂଜିନ ଭିତରେ ଭର୍ତ୍ତିକରିବା ପାଇଁ ଦଳେ ଲୋକ ହାଜର । ସେ ଚିତ୍କାର କରୁଛନ୍ତି ଯେ, ମୁଁ ମୃତ ନୁହେଁ ଜୀବିତ, ସେମାନେ ପାଟି କରୁଛନ୍ତି ଡାକ୍ତର କହିଛନ୍ତି ମୃତ ବୋଲି । ଟଣା ଓଟରାରେ ସେ ଭଦ୍ରଲୋକ ପ୍ରାଣ ବିକଳରେ ଠିଆ ହୋଇ ପଡ଼ିଲେ । ଠିଆ ହୋଇଯାଇଥିବା 'ମୃତ' ଲୋକଙ୍କୁ ନେବା ପାଇଁ ସେମାନଙ୍କର

Digitized by srujan ka@gmail.com

ସାହସ ହେଲା ନାହିଁ । ଉକ୍ତ ଭଦ୍ରଲୋକ ବଞ୍ଚିଗଲେ । ପରେ ଜାଣିଲି ଯେ ସେ ଥିଲେ ଆସାମର ଜଣେ ଓକିଲ ଏବଂ ବେଙ୍ଗଲ ନାଗପୁର ରେଳବାଇ ବିରୁଦ୍ଧରେ ଏକ ମୋକଦ୍ଦମା ବି କଲେ । ମୋର ମନେଅଛି ଏଥିପାଇଁ ଯେ ଏକ ଚାଇଲ୍ଡ ଉଇଟ୍‌ନେସ୍ ବା ଶିଶୁସାକ୍ଷୀ ଭାବରେ ମୋତେ ଯିବାକୁ ପଡ଼ିଥିଲା ପାଞ୍ଚ ଦଶଥର କୋର୍ଟରେ ସାକ୍ଷ୍ୟ ଦେବାପାଇଁ । ଥରେ ବୋଧହୁଏ (ନା ଦୁଇଥର ?) ମୋତେ ଯିବାକୁ ପଡ଼ିଥିଲା ନାଗପୁର ପର୍ଯ୍ୟନ୍ତ ।

ସେଇ କାଳ ରାତ୍ରିରେ ମୋର ନିଦ ହୋଇଯାଇଥିଲା ସେଇ ଉନ୍ମୁକ୍ତ ଆକାଶତଳେ ପଡ଼ିଆ ଭିତରେ । ସକାଳକୁ ଆସିଗଲେ ଡାକ୍ତର ଏବଂ ରିଲିଫ୍ ପାର୍ଟି । ସେଇ କୋଳାହଳରେ ମୋର ନିଦ ଭାଙ୍ଗି ଯାଇଥିଲା । ସେତେବେଳକୁ ମୃତ ଦୁଇ ବା ତିନି, ଆହତ ଦଶ ବା ବାର । କିନ୍ତୁ କେତେଜଣଙ୍କର ମରଦେହ ଯେ ଚାରୋଟି ଇଂଜିନରେ ପୋଡ଼ି ପାଉଁଶ ହୋଇଯାଇଛି ସେତେବେଳକୁ କିଏ କହିବ ?

ମୋର ପିଲାମନର ଅନୁମାନ ଯେ ଅନ୍ତତଃ ଶହେରୁ ଊର୍ଦ୍ଧ୍ୱ ଶରୀରକୁ ଅଚେତ ବା ଅର୍ଦ୍ଧ-ମୃତାବସ୍ଥାରେ ଦଗ୍ଧ କରାଯାଇଥିଲା ସେଇଠି ରାତିରେ । ଅନେକ ବର୍ଷ ପର୍ଯ୍ୟନ୍ତ ସେଇ ଲୋମହର୍ଷଣ ଦୃଶ୍ୟ ହେତୁ ମୁଁ ବିଳିବିଳେଇ ଉଠିଛି ରାତିରେ । ମୋ ଦେହ ବି ଖରାପ ଖରାପ ହେଲା ବେଶ୍ କିଛିଦିନ ପାଇଁ ।

ମଉସା ଥାଆନ୍ତି କୁଆଁରମୁଣ୍ଡା (ରାଉରକେଲା ପାଖରେ) ସେ ଫରେଷ୍ଟ ଅଫିସର । ଓଡ଼ିଶାର ଗଙ୍ଗା ଓ ଯମୁନା ଶଙ୍ଖ ଏବଂ କୋଇଲି ସେଇଠି ବେଦବ୍ୟାସରେ ମିଳିତ ହୋଇ ବ୍ରାହ୍ମଣୀ ନଦୀ ପାଲଟିଛନ୍ତି । ବ୍ରାହ୍ମଣୀ ନଦୀ ହେଉଛି ଓଡ଼ିଶାର ହୋ-ୟାଂ-ହୋ । ଏହା ସ୍ରୋତ ପରିବର୍ତ୍ତନ କରେ । ଏବଂ ବହୁ ଚାଷୀ ପରିବାର ଏହା ଫଳରେ ଭିଖାରୀ ହୋଇଯାଇଛନ୍ତି । ମୋ ବୋଉର ମାଉସୀଘର ସେମାନଙ୍କ ମଧ୍ୟରେ ଅନ୍ୟତମ । ଏହି ପରିବାରର 'ଫକୀରନନା' ଏ ପର୍ଯ୍ୟନ୍ତ ମୋର ସ୍ମୃତ । ସେ ମୋ ବୋଉର ମାଉସୀ ପୁଅ ଭାଇ । କିନ୍ତୁ ସମସ୍ତଙ୍କ ପାଖରେ ସେ ଫକୀରନନା ଭାବରେ ପରିଚିତ । ବ୍ରାହ୍ମଣୀ ନଈରେ ପ୍ରାୟ ୧୦/୨୦ କେଜିର ଭାକୁର ମାଛ ମାରି ସେ ତାକୁ କାନ୍ଧରେ ପକାଇ ନେଇ ଆସନ୍ତି ପୁରୁଣାଗଡ଼, ପ୍ରାୟ ୪୦ କିଲୋମିଟରରୁ ବେଶି ବାଟ । ଏତିକି ଦ୍ରୁତ ଗତିରେ ଚାଲନ୍ତି ସେ ! ପରେ ମାରାଥନ ୱାକ୍ ପ୍ରତିଯୋଗିତା ଦେଖି ମନେ ପଡ଼ିଛି ଫକୀରନନାଙ୍କ କଥା । ଇଥୋପିଆର ସମ୍ରାଟ ହେଲ୍‌ସେଲେସି ଯାଇଥିଲେ ରୋମ୍ ଅଲମ୍ପିକ୍ସ ଦେଖିବା ପାଇଁ । ସାଙ୍ଗରେ ତାଙ୍କର ଦେହରକ୍ଷୀ ଥିଲେ । ଅଲମ୍ପିକ୍ସ ଦେଖି ତାଙ୍କର ମନେହେଲା ପ୍ରତିଯୋଗିତାରେ ଓହ୍ଲାଇବା ପାଇଁ । ସେ ସମ୍ରାଟଙ୍କର ଅନୁମତି ଭିକ୍ଷା କଲେ । ସେ ଯୋଗଦେଲେ ମାରାଥନ୍ ରେସ୍‌ରେ । ବିନା ପ୍ରସ୍ତୁତିରେ । କିନ୍ତୁ ସେ ଆଦିବାସୀର ପ୍ରସ୍ତୁତି କଣ ଦରକାର ? ଜୀବନ ତାର ପ୍ରସ୍ତୁତିପର୍ବ ହୋଇ ସାରିଛି । ସେ ଯୋଗଦେଲା ଏବଂ ପ୍ରଥମ ହୋଇ ସ୍ୱର୍ଣ୍ଣ ପଦକ ଲାଭ କଲା ।

Digitized by srujan ka@gmail.com

ଏଇ ଲେଖା ଲେଖିଲା ବେଳକୁ ସିଡନୀ ଅଲମ୍ପିକ୍ସ ସରିଯାଇଛି ଏବଂ ପ୍ରାୟ ଶହେ କୋଟି ଲୋକଙ୍କର ଭାରତୀୟ ଟିମ୍ ମାତ୍ର ଗୋଟିଏ ବ୍ରୋଞ୍ଜ ପଦକ ପାଇ ''ଗୌରବାନ୍ୱିତ'' ହୋଇଛି । ଭାରତବର୍ଷର ସବୁକ୍ଷେତ୍ରରେ ପ୍ରତିଯୋଗୀ ହେଉଛି ଚୀନ, ପୃଥିବୀର ଅନ୍ୟ କୌଣସି ଦେଶ ନୁହେଁ । କାରଣ ଜନସଂଖ୍ୟା ଦୃଷ୍ଟିରୁ ଭାରତ ଓ ଚୀନ ପୃଥିବୀର ସର୍ବବୃହତ୍ ଦେଶ । ସ୍ୱାଧୀନତା ମଧ ପାଇଛନ୍ତି ସମାନ ସମୟରେ ଭାରତ ୧୯୪୭ ଏବଂ ଚୀନ ୧୯୪୯ରେ । ସ୍ୱାଧୀନତା ପାଇବା ସମୟରେ ଭାରତ ପାଇଥିଲା ଏକ ରନିଙ୍ଗ ମେସିନ ବା ଚାଲୁ ରହିଥିବା ଯନ୍ତ୍ର । କିନ୍ତୁ କ୍ରମାଗତ ଯୁଦ୍ଧ, ଗୃହଯୁଦ୍ଧରେ ଚୀନ ଥିଲା ବିଧ୍ୱସ୍ତ । ଏଇ ଦୃଷ୍ଟିରୁ ସିଡନୀ ଅଲମ୍ପିକ୍ସରେ ଭାରତ ଓ ଚୀନର ମେଡାଲ ତୁଳନା କଲେ ଲଜ୍ଜାରେ ତଳକୁ ମୁହଁ ପୋତିବାକୁ ପଡ଼େ । ପୃଥିବୀର ବହୁ ଛୋଟ ଛୋଟ ଦେଶ ସ୍ୱର୍ଣ୍ଣପଦକ ଜିତିଛନ୍ତି । ଭାରତବର୍ଷର ଏକମାତ୍ର ବ୍ରୋଞ୍ଜ ପଦକଧାରୀ ମହିଳା ବାର୍ଲା ମଧ ବିବାଦ ଘେରରେ । ତାଙ୍କୁ ସିଡନୀ ନ ପଠାଇବାକୁ ସବୁ ଚକ୍ରାନ୍ତ କରାଯାଇଥିଲା । ଦେଖାଯାଉଛି ଯେ ଭାରତବର୍ଷର ପ୍ରତିଯୋଗୀମାନଙ୍କ ଅପେକ୍ଷା, ଖେଳ ନାମରେ ଅଫିସରମାନଙ୍କ ସଂଖ୍ୟା ବେଶି । ପ୍ରତି ଜଣେ ପ୍ରତିଯୋଗୀକୁ ହାରାହାରି ତିନିଜଣ ଅଫିସର । ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେଉଁ ଇଭେଣ୍ଟମାନଙ୍କରେ ଭାରତବର୍ଷର କେହି ପ୍ରତିଯୋଗୀ ନାହାନ୍ତି, ସେ ଇଭେଣ୍ଟମାନଙ୍କ ପାଇଁ ଅଫିସର କିନ୍ତୁ ଯାଇଛନ୍ତି ସିଡନୀ, କେବଳ ସେତିକି ନୁହେଁ ସିଡନୀକୁ ଯାଇଥିବା ପ୍ରତିନିଧି ଦଳରେ ତିନିଜଣ ଷ୍ଟେନୋ ବା କିରାନୀ ଅଛନ୍ତି । ଫର୍ମରେ ନ ଥିବା ପ୍ରତିଯୋଗୀମାନଙ୍କୁ ମଧ ପଠାଯାଇଛି । ଏ ସଂପର୍କରେ କିଛି କାଳ ଆଲୋଚନା ହେବ । କୀର୍ତ୍ତି ଆଜାଦ୍ ପାର୍ଲ୍ୟାମେଣ୍ଟରେ ଏହାର ବିତର୍କ ହେବା ଉଚିତ ବୋଲି ଦାବି କରିଛନ୍ତି । ରାଜନୈତିକ ନେତା କାଲମାଡୀ ଆଇ.ଓ.ଏ.ର ଅଧକ୍ଷ ପଦରୁ ଇସ୍ତଫା ଦେବା ଉଚିତ୍ ବୋଲି ସେ ଦାବି କରିଛନ୍ତି ।

ବିତର୍କ, ହଇଚଇ ସବୁ ହେବ । କିନ୍ତୁ ଫଳ ହେବ ଶୂନ । ତା'ପରେ ଯେଉଁ କଥାକୁ ସେଇ କଥା । ସବୁ ଚାଲିବ ପୁରୁଣା ଧାରାରେ । ଅଲମ୍ପିକ୍ସରେ ଭଲ ହେବ ନାଇଁ ବୋଲି ଚୀନ ୧୯୮୪ ମସିହା ପର୍ଯ୍ୟନ୍ତ ଅଲମ୍ପିକ୍ସରେ ଭାଗ ନେଇ ନ ଥିଲା । ଏବଂ ଜାତୀୟ ପ୍ରସ୍ତୁତି ପର୍ବ ସରିଲା ପରେ ଯୋଗଦେଲା । ବର୍ତ୍ତମାନ ପୃଥିବୀରେ ତାର ସ୍ଥାନ ତୃତୀୟରେ । ସନ୍ଦେହ କରାଯାଉଥିଲା ସେ ପ୍ରଥମ ହୋଇଯାଇପାରେ ସିଡ୍‌ନୀ ଅଲମ୍ପିକ୍ସରେ ।

ରାଜନୈତିକ ଏକୀକରଣ ପୂର୍ବରୁ ପୂର୍ବ ଜର୍ମାନୀ ଦ୍ୱିତୀୟ ବା ତୃତୀୟ ଏବଂ ପଶ୍ଚିମ ଜର୍ମାନୀ ତୃତୀୟ, ଚତୁର୍ଥ ସ୍ଥାନରେ ରହୁଥିଲା ଅଲମ୍ପିକ୍ସରେ । କିନ୍ତୁ ଏକୀକରଣ ସତ୍ତ୍ୱେ ଏହା ତାହାର ପୂର୍ବ ପ୍ରତିଷ୍ଠା ହରାଇଛି ।

ସୋଭିଏଟ୍ ୟୁନିଅନ ଭାଙ୍ଗିଯିବା ସତ୍ତ୍ୱେ ଋଷ ରହିଛି ଦ୍ୱିତୀୟ ସ୍ଥାନରେ ଏବଂ ଯଦି ପୂର୍ବତନ ସୋଭିଏତ ୟୁନିଅନର ରାଷ୍ଟ୍ରମାନଙ୍କର ପଦକକୁ ମିଶାଇ ଦିଆଯାଏ ତା'ହେଲେ ଦେଖାଯିବ ଯେ ତାହା ଆମେରିକା ସହିତ ସମାନ ବା ତା'ଠାରୁ ବେଶି ।

Digitized by srujan ka@gmail.com

ମନେହେଉଛି ଭାରତୀୟ କ୍ରୀଡ଼ା କ୍ରିକେଟଠାରୁ ଅଲମ୍ପିକ୍ସ ପର୍ଯ୍ୟନ୍ତ ଏକ ଅନ୍ଧକାର ଟନେଲ ଭିତରେ । ସରକାରଙ୍କର ଇଚ୍ଛାଶକ୍ତି, ନିଷ୍ପତ୍ତିମୂଳକ ପଦକ୍ଷେପ ନାହିଁ । ନଚେତ୍ ଏତେବେଳକୁ ସବୁଯାକ କ୍ରୀଡ଼ା ସଂସ୍ଥା ଭାଙ୍ଗିଦିଆଯାଇ ସାରନ୍ତାଣି । ଅନ୍ୟ କୌଣସି ଦେଶ ହୋଇଥିଲେ କ୍ରୀଡ଼ାମନ୍ତ୍ରୀ ବିଦା ହୋଇ ସାରନ୍ତେଣି । କେବଳ ଭାରତବର୍ଷରେ ହିଁ ତାହା ସମ୍ଭବ ହେଉନାହିଁ ।

କାରଣ ଭାରତୀୟ କ୍ରୀଡ଼ା ଦେଶର ରାଜନୀତି ପରି ପଙ୍କିଳ ଏବଂ ସେଇ ପଙ୍କ ଭିତରେ ହିଁ ଉବୁଟୁବୁ ହେଉଛି କ୍ରୀଡ଼ା ଓ ରାଜନୀତି । ଆଗ କ୍ରୀଡ଼ାବିତ୍, କଳାକାରମାନଙ୍କୁ ରାଜକୀୟ ପୃଷ୍ଠପୋଷକତା ମିଳୁଥିଲା । ବର୍ତ୍ତମାନ ରାଜା ନାହାନ୍ତି, ମନ୍ତ୍ରୀ ଅଛନ୍ତି । କିନ୍ତୁ ପୃଷ୍ଠପୋଷକତା କେବଳ ତୋଷାମଦକାରୀମାନଙ୍କ ପାଇଁ ମିଳୁଛି । ରାଜାନୁଗତ ଧର୍ମ । ରାଜା ଯେପରି ପ୍ରଜା ସେପରି ।

ସମ୍ବଲପୁରରେ ରହଣୀ ପ୍ରାୟ ପାଞ୍ଚ ଛଅ ବର୍ଷ । ୧୯୪୨ ଆନ୍ଦୋଳନର ଜୁଆର ଧିମେଇ ଯାଇଛି । ସମଗ୍ର ନେତୃତ୍ୱ ଗିରଫ ହୋଇଗଲେ ଅଗଷ୍ଟ ୮ ତାରିଖ ଦିନ ବମ୍ବେରେ । ଏ ଖବର ଅନ୍ୟମାନେ ପାଇ କର୍ମପନ୍ଥା ସ୍ଥିର କରିବା ପୂର୍ବରୁ ପୁଲିସ ସେମାନଙ୍କୁ ଗରିଫ କରି ନେଇଗଲା । ରହିଗଲେ କେଉଁଠି କାଁ ଭାଁ ନେତା, ସେମାନେ ଓ ନେତୃତ୍ୱ-ବିହୀନ ଦେଶପ୍ରେମୀ ଜନତା ଆନ୍ଦୋଳନକୁ ବଂଚାଇ ରଖିଲେ କିଛି କାଳ ପାଇଁ କିନ୍ତୁ କେତେଦିନ ଚାଲିପାରିବ ଅସଙ୍ଗଠିତ ସ୍ୱତଃସ୍ଫୂର୍ତ୍ତ ଆନ୍ଦୋଳନ ?

ଏଣେ ଜାପାନ ସୈନ୍ୟବାହିନୀ ଏବଂ ସୁଭାଷଚନ୍ଦ୍ର ବୋଷ ଭାରତ ସୀମାନ୍ତରେ । ଜର୍ମାନ ସୈନ୍ୟବାହିନୀର ପଦାନତ ସମଗ୍ର ୟୁରୋପ । ଇଂଲଣ୍ଡ ଉପରେ ଅବିରତ ବୋମାମାଡ଼ ଚାଲିଛି ଜର୍ମାନ ସୈନ୍ୟବାହିନୀର । ପ୍ରାୟ ସମଗ୍ର ଆଫ୍ରିକା ମୁସୋଲିନୀର କବଳିତ । ପ୍ରଚଣ୍ଡ ଡିମୋରାଲାଇଜେଶନ ବ୍ରିଟିଶ ଅଫିସରମାନଙ୍କ ଭିତରେ ।

ଏତିକିବେଳେ ଝାରସୁଗୁଡ଼ା ବାଟ ଦେଇ ସାମରିକ ଟ୍ରେନ ଯାଏ ପ୍ରତ୍ୟେକ ଦିନ ଅନେକ ଥର । ସାଧାରଣ ଟ୍ରେନ ସବୁ ଦିନ ଦିନ ଧରି ବାତିଲ ହୋଇଯାଏ । ଏଇ ସୈନ୍ୟବାହିନୀ ନେଉଥିବା ଟ୍ରେନସବୁ ଝାରସୁଗୁଡ଼ାରେ ଅଟକିଲେ ଝାରସୁଗୁଡ଼ାରେ ଅସ୍ୱାଭାବିକ ପରିସ୍ଥିତି ଦେଖାଯାଏ । ସମୟ ସମୟରେ ସେମାନଙ୍କ ମଧ୍ୟରୁ ଶହ ଶହ ଶୁଦ୍ଧ ଲଙ୍ଗଳା ହୋଇ ରାସ୍ତାକଡ଼ରେ ଥିବା ପାଇପ୍‌ରେ ଗାଧୁଅନ୍ତି । ତାଟି କବାଟ ପଡ଼ିଯାଏ ବିଶେଷତଃ ନିଗ୍ରୋସେନାଙ୍କୁ ଦେଖିଲେ ଭୟଜାତ ହେଉଥିଲା ଲୋକଙ୍କ ଭିତରେ । କିନ୍ତୁ କେତେକ ସେଥିରୁ ଫାଇଦା ବି ଉଠାଇଛନ୍ତି ପ୍ରଚୁର । ମୋର ଜଣେ ପାରିବାରିକ ପରଚିତି ବ୍ୟକ୍ତି ଝାରସୁଗୁଡ଼ା ରେଳବାଇ ଷ୍ଟେସନରେ ସରବତ ଦୋକାନ କରିଥିଲେ । ଖରାଦିନ, ବରଫଦିଆ ସରବତ ଖାଇ ଯାଆନ୍ତି ସେମାନେ ଏବଂ ଦେଇ ଯାଆନ୍ତି ବେଶ୍ ଟଙ୍କା, ଯାହା ପଡ଼ିଲା ହାତରେ । ସେଥିରୁ ପ୍ରଚୁର ଲାଭକରି ସେ ଖୋଲିଲେ ଏକ ବିରାଟ ହୋଟେଲ ସମ୍ବଲପୁରରେ ।

Digitized by srujan ka@gmail.com

ସେଇ ସମୟରେ ମୁଁ ଦେଖିଲି ଡାକ୍ତର ବିଧାନଚନ୍ଦ୍ର ରାୟଙ୍କୁ । ଡାକ୍ତର ଭାବରେ ସେ ଥିଲେ ପ୍ରବାଦ ପୁରୁଷ । ପରେ ବଙ୍ଗଳା ଦେଶର ମୁଖ୍ୟମନ୍ତ୍ରୀ ଭାବରେ ତାଙ୍କର ଖ୍ୟାତି ଥିଲା ବହୁତ । ପ୍ରାୟ ୧୬ ବର୍ଷ ସେ ବଙ୍ଗଳାର ମୁଖ୍ୟମନ୍ତ୍ରୀ ରହିଗଲେ । ସମସ୍ତେ ଭାବିଥିଲେ ଯେ ତାଙ୍କର ରେକର୍ଡ଼ କେହି ଭାଙ୍ଗିପାରିବେ ନାହିଁ । କିନ୍ତୁ ଜ୍ୟୋତି ବସୁ ତାଙ୍କର ସେ ରେକର୍ଡ଼ ଭାଙ୍ଗି ପ୍ରାୟ ୨୩ ବର୍ଷ ମୁଖ୍ୟମନ୍ତ୍ରୀ ରହିଛନ୍ତି । ବୋଧହୁଏ ଏ ରେକର୍ଡ଼ ଭାଙ୍ଗିବା ଅନ୍ୟ କାହା ପକ୍ଷରେ ସମ୍ଭବ ନୁହେଁ । ବିଧାନବାବୁ କିନ୍ତୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ନ ଥିଲେ ବା ଜେଲ ଯାଇନାହାନ୍ତି । ସେ ଅସୁସ୍ଥ ବୌଦରାଜାଙ୍କୁ ଦେଖିବାକୁ ଆସିଥିଲେ । ତାଙ୍କୁ ଦେଖିବା ପାଇଁ ବେଶ୍ ଜନଗହଳି ହୋଇଥିଲା । କାରଣ ସେ କେବଳ ପ୍ରସିଦ୍ଧ ଡାକ୍ତର ନ ଥିଲେ, ଥିଲେ ଗାନ୍ଧିଜୀଙ୍କ ଡାକ୍ତର । ଗାନ୍ଧିଜୀଙ୍କ ଉପରେ ଦେବତ୍ୱ ଆରୋପିତ ହୋଇ ସାରିଥିଲା ଭାରତୀୟ ଜନଗଣଙ୍କ ଦ୍ୱାରା । ତେଣୁ ତାଙ୍କର ଡାକ୍ତରଙ୍କୁ ମଧ୍ୟ ଦେଖିବା ପାଇଁ ସେଦିନ ପ୍ରବଳ ଭିଡ଼ ହୋଇଥିଲା ।

ବିଧାନବାବୁ ଥିଲେ ଏକ ବିଚିତ୍ର ମଣିଷ । ତାଙ୍କର ନାରୀ ପ୍ରତି ଦୁର୍ବଳତା ପାଇଁ ମଧ୍ୟ ଥିଲେ ସେ ପ୍ରବାଦ ପୁରୁଷ । ଥରେ କୌଣସି ଏକ ନିର୍ବାଚନରେ ସେ ଜୟଲାଭ କରିସାରିଲା ପରେ କଲିକତାର ରାସ୍ତାଘାଟରେ ପୋଷ୍ଟର ମରାହେଲା—

''ଏବାର ଏସେଛେ ନଲିନୀ ବିଧାନ,
ବାଂଲାର ବଧୂ ହଓ ସାବଧାନ'' ।

ନଳିନୀ ରଂଜନ ସରକାର ଥିଲେ ତାଙ୍କର ଅର୍ଥମନ୍ତ୍ରୀ ଏବଂ କୁହାଯାଏ ସେ ଥିଲେ ଜଣେ Financial Wizard ବା ଅର୍ଥନୀତିର ଯାଦୁକର ।

ଥରେ କମ୍ୟୁନିଷ୍ଟ ପାର୍ଟିର ନେତା ଅସୁସ୍ଥ ଗୁରୁଚରଣ ପଟ୍ଟନାୟକଙ୍କୁ ନେଇ ଯାଇଥିଲେ ଜ୍ୟୋତି ବସୁ ବିଧାନବାବୁଙ୍କୁ ଦେଖାଇବା ପାଇଁ । ରୋଗୀ ଦେଖା ସରିଲା । ଜ୍ୟୋତିବସୁ କ'ଣ ଗୋଟାଏ କହିବାକୁ ଯାଇ କହିଲେ ''ବିଧାନବାବୁ, ଆପଣଙ୍କ ସାଙ୍ଗରେ ପୁଣି ଗୋଟାଏ ଲଢ଼ାଇ ହେବ ।''

ବିଧାନବାବୁ ଉତ୍ତରରେ ଜ୍ୟୋତି ବସୁଙ୍କୁ ପଚାରିଲେ ଜ୍ୟୋତି, (ସେ ବୟସରେ ସାନ କାହାକୁ ବାବୁ ବୋଲି ସମ୍ବୋଧନ କରନ୍ତି ନାହିଁ) ଦେଖିଲ ତମ ଘଡ଼ିରେ କେତେଟା ବାଜିଛି ? ଜ୍ୟୋତିବାବୁ ଘଡ଼ି ଦେଖି ଉତ୍ତର ଦେଲେ ଯେ ସାତଟା । ବିଧାନବାବୁ ଉତ୍ତର ଦେଇ କହିଲେ ଯେ ଶୁଣ ଜ୍ୟୋତି, ଆଠଟା ପୂର୍ବରୁ ମୁଁ ବିଧାନ ଚନ୍ଦ୍ର ରାୟ ଡାକ୍ତର ଆଉ ତୁମେ ଜ୍ୟୋତି ବସୁ, ରୋଗୀ । ସେ ସମୟରେ ମୁଁ ଆଉ କିଛି ନୁହେଁ, ବା ତମେ ବି ଆଉ କିଛି ନୁହଁ । ଆଠଟା ପରେ ମୁଁ ବିଧାନ ଚନ୍ଦ୍ର ରାୟ ବଙ୍ଗଳାର ମୁଖ୍ୟମନ୍ତ୍ରୀ, ଆଉ ତୁମେ ଜ୍ୟୋତି ବସୁ ବିରୋଧୀ ଦଳର ନେତା ।

Digitized by srujan ka@gmail.com

କଥିତ ଅଛି ଯେ, ଏକଦା ପୁସ୍ତକମାନଙ୍କର ଚିତ୍ରଶିଳ୍ପୀ ସତ୍ୟଜିତ୍ ରାୟ, ''ପଥେର ପାଞ୍ଚାଲୀ'' ନାମକ ଚଳଚିତ୍ର କରିବାକୁ ଚାହିଁଲେ । କିନ୍ତୁ ଗରିବ ଚିତ୍ରଶିଳ୍ପୀର ଅର୍ଥ କାହିଁ ? ସବୁ ଉଦ୍ୟମ ବ୍ୟର୍ଥ ହେଲା । ପରିଶେଷରେ ବିଧାନଚନ୍ଦ୍ର ରାୟଙ୍କର ଏକ ମିଷ୍ଟ୍ରେସଙ୍କୁ ବା ପ୍ରେମିକାଙ୍କୁ ସେ ଯାଇ ଧରିଲେ ଏବଂ ତାଙ୍କ ଜରିଆରେ ହିଁ ପଶ୍ଚିମବଂଗ ରାଜ୍ୟ ସରକାରଙ୍କଠାରୁ କିଛି ଅର୍ଥ ଧାର ସୂତ୍ରରେ ମିଳିଲା । ''ପଥେର ପାଞ୍ଚାଲୀ'' ପ୍ରସ୍ତୁତ ହେଲା ଏବଂ ତା'ପରେ ସତ୍ୟଜିତ୍ ରାୟ ଆଉ ପଛକୁ ଫେରି ଅନେଇ ନାହାନ୍ତି ।

ସତ୍ୟଜିତ ରାୟ ଜଣେ ସ୍ୱଳ୍ପଭାଷୀ ଲୋକ । କଥା ବେଶି କହନ୍ତି ନାହିଁ । କଥା କିମିତି ତାଙ୍କ ପାଟିରୁ ସରିଯାଏ । ସେ ଗୋପାଳପୁରକୁ ବେଶି ଭଲପାଆନ୍ତି ପୁରୀ ଅପେକ୍ଷା, ବୋଧହୁଏ ନିକାଞ୍ଚନ ଯୋଗୁଁ । ପ୍ରତିଷ୍ଠିତ ହେଲା ପରେ ସେ ଆସନ୍ତି ଗୋପାଳପୁରକୁ ଓବେରଇ ହୋଟେଲକୁ ତାଙ୍କର ନୂତନ ଚଳଚିତ୍ରର ସ୍କ୍ରିପ୍ଟ ଲେଖିବା ପାଇଁ । ସମସ୍ତେ ଜାଣନ୍ତି ଯେ ଚିତ୍ରକର ସତ୍ୟଜିତ୍ ରାୟ ତାଙ୍କର ସମଗ୍ର ସଟ୍ ଗୁଡ଼ିକୁ ପ୍ରଥମେ ଚିତ୍ରରେ ଆଙ୍କି ପରେ ସେଇ ଅନୁଯାୟୀ ସଟ୍ ନିଅନ୍ତି । ଥରେ ତାଙ୍କ ସାଙ୍ଗରେ ଅକସ୍ମାତ ଦେଖା ହୋଇଗଲା ସେଇଠି, ବ୍ରେକଫାଷ୍ଟ ଟେବୁଲରେ । ତାଙ୍କୁ ଯେ ଜଣେ ସେଠାରେ ଚିହ୍ନି ଠାବ କରି ପାରିବ ଏକଥା ବୋଧହୁଏ ସେ ଆଶା କରି ନ ଥିଲେ । ତେଣୁ ସ୍ୱାଭାବିକ ସଂକୋଚଟା କଟି ଯାଇଥିଲା ଏବଂ ସେ ମୋତେ ନିଜେ ଉପରୋକ୍ତ ଅଭିଜ୍ଞତା କଥା କହିଥିଲେ ।

ମୋର ମନେ ପଡୁଚି ଥରେ ଜଣେ କିଏ ଚଳଚିତ୍ର ନିର୍ଦ୍ଦେଶକ (ବୋଧହୁଏ ମୃଣାଳ ସେନ) କହୁଥିଲେ ଆମକୁ ତାଙ୍କର ସିନିଅର ଜଣେ ନିର୍ଦ୍ଦେଶକଙ୍କ କଥା । ସେ କହୁଥିଲେ ବିମଲ ରାୟ ନାମକ ଜଣେ ପ୍ରତିଭାବାନ ନିର୍ଦ୍ଦେଶକ କୌଣସି ସ୍କୋପ ପାଉନାହାନ୍ତି । ସେ ଦେବକୀ ବସୁଙ୍କ ଷ୍ଟୁଡ଼ିଓରେ ଫଟୋଗ୍ରାଫର ହୋଇ ଜୀବନ କାଟୁଛନ୍ତି । ସେତେବେଳକୁ 'ଦୋ ବିଘା ଜମିନ'ର ଚଳିଚିତ୍ର ନିର୍ମାଣ ହୋଇନାହିଁ ଏବଂ ସ୍କୋପ ପାଇଲା ପରେ ବିମଲରାୟ ଆଉ ମଧ ପଛକୁ ଫେରି ଅନେଇ ନାହାନ୍ତି । ବିମଲ ରାୟ ଅକାଳରେ ପରଲୋକ ଗମନ କଲେ କ୍ୟାନସର ରୋଗରେ । ବିମଲ ରାୟ କିନ୍ତୁ ସତ୍ୟଜିତ୍ ରାୟଙ୍କର ଠିକ୍ ଓଲଟା ଚରିତ୍ର । ସେ ଗଳ୍ପ କହିବାକୁ ଭଲ ପାଆନ୍ତି, ବଙ୍ଗଳା ଭାଷାରେ ଯାହାକୁ କହନ୍ତି ''ଆଡ୍ଡା'' (ଓଡ଼ିଆରେ ଖଟି ବୋଲି କୁହାଯାଇପାରେ)ର ମଣିଷ ସେ । ସାନ-ବଡ଼, ପର-ଆପଣା କିଛି ଭେଦଭାବ ନଥାଏ । ଏବଂ ନିମନ୍ତ୍ରଣ କଲେ ନାହିଁ କରନ୍ତି ନାହିଁ । ସତ୍ୟଜିତ୍ ରାୟ କିନ୍ତୁ ନିମନ୍ତ୍ରଣ ପ୍ରଭୃତିକୁ ଆଦୌ ଗ୍ରହଣ କରିପାରନ୍ତି ନାହିଁ । ତାଙ୍କୁ ଦେଖାମିଳିବା ଭାରି କଠିନ । ଏକ ଟିପିକାଲ (Typical withdrawn) ଉଇଥଡ୍ରନ ଚରିତ୍ରର ମଣିଷ ।

ଦୁହିଁଙ୍କ ଭିତରେ ସାମଞ୍ଜସ୍ୟ ହେଉଛି ଦୁହେଁ ପ୍ରସିଦ୍ଧ ଚିତ୍ର ନିର୍ଦ୍ଦେଶକ ଏବଂ ଦୁହେଁ ଆଗ୍ନୋଷ୍ଟିକ । ଦୁହେଁ ତାଙ୍କର ଶେଷ ଇଚ୍ଛାରେ ଲେଖି ଯାଇଥିଲେ ସେମାନଙ୍କର ମୃତ୍ୟୁରେ କୌଣସି କ୍ରିୟାକର୍ମ ନ କରିବା ପାଇଁ । ପୁରୋହିତବାଦ, ପଦ୍ଧତିବାଦରେ ତାଙ୍କର ବିଶ୍ୱାସ ଆଦୌ ନ ଥିଲା ।

Digitized by srujan ka@gmail.com

ସମ୍ବଲପୁରରେ ବାପା ରହିଗଲେଣି ପାଞ୍ଚ ଛ' ବର୍ଷ କାଳ । ମୋର ମଉସା ରେଢ଼ାଖୋଲର ଫରେଷ୍ଟ ଅଫିସର । ଥରେ ତାଙ୍କ ଘରେ ଆମେ ଛୁଟି କଟାଉଥାଉଁ । ସେଇଠାରେ ଦେଖିଲୁ ରାଜାଙ୍କର ଦୁଇଜଣ ଅଫିସରଙ୍କୁ ବନ୍ଦୀ କରାଯାଇଛି । ରାଜସାହୀର ବିଲୋପ ପାଇଁ ଏବଂ ଭାରତର ସ୍ୱାଧୀନତା ପାଇଁ ଆନ୍ଦୋଳନର ଅପରାଧରେ । ସେ ଦୁହିଁଙ୍କୁ ହାତକଡ଼ା ପକାଇ, ଅଣ୍ଟାରେ ଦଉଡ଼ି ବାନ୍ଧି ପୁଲିସ ନିଏ ଜେଲରୁ ରାଜଦରବାରକୁ ଏବଂ ପୁଣି ଆଣେ ଜେଲକୁ । ସେମାନଙ୍କୁ ଦେଖିବା ପାଇଁ ଭିଡ଼ ଜମେ କିନ୍ତୁ ରାଜଦରବାରର କୌଣସି କର୍ମଚାରୀ ବା ଅଫିସର ସେମାନଙ୍କୁ ଅନାନ୍ତି ବି ନାହିଁ, ଡରରେ । ଯଦିଓ ସେମାନଙ୍କ ପ୍ରତି ଦରଦ ଥାଏ ଅନେକଙ୍କର ।

ଓଡ଼ିଶାର ୨୬ ଗଡ଼ଜାତ ଭିତରୁ ଅନେକ ରାଜ୍ୟର 'ରାଜଧାନୀ'ରେ ବିଜୁଳିବତୀ ଏବଂ ଫୋନ ବ୍ୟବସ୍ଥା ଥିଲା । ରେଢ଼ାଖୋଲ ବି ସେଥିରୁ ବାଦ ପଡ଼ିନାହିଁ । ମୁଁ ଦେଖିଚି ବାମଣ୍ଡା (ଦେବଗଡ଼) ପ୍ରଭୃତିରେ ଏଇ ବ୍ୟବସ୍ଥା । ସେତେବେଳେ କଟକ ସହରରେ କେବଳ ଅକ୍ଟଭିୟସ ଷ୍ଟିଲ କମ୍ପାନୀ (Octavious steel) ରାଣୀହାଟରେ ଏକ ପାୱାର ହାଉସ ପରିଚାଳନା କରୁଥିଲେ । କିନ୍ତୁ ରାସ୍ତାରେ ଆଲୁଅ ନ ଥିଲା । ରେଭେନ୍ସା କଲେଜରେ ଥିଲା ସ୍ୱତନ୍ତ୍ର ପାୱାର ହାଉସ । ବର୍ତ୍ତମାନ ବି ତାହା ଅଛି, ଅଚଳ ଅବସ୍ଥାରେ । ଲାଇବ୍ରେରୀ, ପାୱାର ହାଉସ କନିକା ରାଜାଙ୍କ ଅବଦାନ । ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ ବିଭାଗ ମୟୂରଭଞ୍ଜ ରାଜାଙ୍କ ଅବଦାନ । ମେଡ଼ିକାଲ ସ୍କୁଲର ସ୍ୱତନ୍ତ୍ର ପାୱାର ହାଉସ ଥିଲା ନା ରାଣୀହାଟ ପାୱାର ହାଉସରୁ ସେମାନେ ବିଜୁଳିଶକ୍ତି ପାଉଥିଲେ ମୋର ଠିକ୍ ମନେପଡୁ ନାହିଁ ।

ରେଢ଼ାଖୋଲରେ ବିଜୁଳି ଲାଇନ ଥିଲା, କିନ୍ତୁ ସେଠାକାର ଅଧିକାଂଶ ଲୋକ ଟ୍ରେନ ଦେଖି ନ ଥିଲେ । ରେଢ଼ାଖୋଲରେ ଗୋଟିଏ ସ୍କୁଲ ଥିଲା । ମୋର ମନେପଡୁଛି ଥରେ ସେଇ ସ୍କୁଲର ହେଡ଼ମାଷ୍ଟର ଡାକିଥିଲେ 'ଟ୍ରେନ' ସଂପର୍କରେ ପିଲାମାନଙ୍କୁ କହିବା ପାଇଁ । କାରଣ ସେମାନେ ଦେଖି ନ ଥିଲେ ଟ୍ରେନ ।

ମୋତିଝରଣରେ ଥିଲାବେଳେ ଆମେ ସବୁ ରହୁଥିଲୁ ପ୍ରାୟ ଏକାକୀ । କାରଣ ଜଙ୍ଗଲ ଭିତରକୁ କିଏ ଆସିବ ? ସେଇଠି ସମବୟସ୍କ ବା ସମବୟସ୍କା ଥିଲେ ତିନୋଟି ଝିଅ (ଯାଜ୍ଞସେନୀ, ଶିତୁଲା, ଉକିଆ) ଏବଂ ଦୁଇଟି ପୁଅ (ଗଦାଧର ଆଉ ବଳି) ଏଇମାନେ ସେଠାରେ ଥିବା ଫରେଷ୍ଟ ଗାର୍ଡ଼ମାନଙ୍କର ବା ସେଇ ପାଖରେ ରହୁଥିବା ତିନୋଟି ଘର ଥିବା କୁଲିମାନଙ୍କର 'ସାଇ'ର ପିଲା । ସେମାନଙ୍କ ସହିତ ସବୁ ଅବସର ସମୟ କଟେ ଆମର । ସେମାନଙ୍କ ଭିତରୁ 'ଉକିଆ' (ସମ୍ବଲପୁରରେ ଉଷାର ଆଲୋକକୁ ଉକିଆ କହନ୍ତି) । ଉକିଆ ମୋର ସମବୟସୀ । ଖେଳିବା ପାଇଁ କେହି ନାହାନ୍ତି । ସୁତରାଂ ତା' ସହିତ ଖେଳକୁଦସବୁ ଚଳେ । ଏହାକୁ ଦେଖି କେହି କେହି ଥଟ୍ଟା କରନ୍ତି ଯେ, ଉକିଆ ହେବ ଆମ ଘରର ବୋହୂ । ବିବାହର ଗୁରୁତ୍ୱ, ଆବଶ୍ୟକତା ବା ଯୌନସଂପର୍କର ରହସ୍ୟ ବୁଝିବାର ବୟସ ହୋଇ ନ ଥିଲା । ତେଣୁ କେବଳ

Digitized by srujan ka@gmail.com

ସମସ୍ତେ ଏଇଭଳି ଉକ୍ତି ଶୁଣି ହସିବା ମୋର ମନେଅଛି । କାହିଁକି ହସନ୍ତି ତା' ଜାଣିବାର ବୟସ ହୋଇ ନ ଥିଲା ।

ସମ୍ବଲପୁରରୁ ରେଙ୍ଗାଲି ଚାଲିଯିବାର କିଛି ବର୍ଷ ପରେ ହଠାତ୍ ଦିନେ ଉକିଆ ସାଙ୍ଗରେ ଦେଖାହୁଏ । ତା'ର ଚେହେରାରେ ବିପୁଳ ପରିବର୍ତ୍ତନ ଘଟିଯାଇଛି ଏହା ଭିତରେ । ନା ମୁଁ ତା' ସାଙ୍ଗରେ କଥା ହୋଇ ପାରୁଛି ଫ୍ରିଲି (Freely) ଖୋଲା ହୃଦୟରେ ନା ସେ କରି ପାରୁଛି ? କିନ୍ତୁ ସେ ଦୃଶ୍ୟ ମୁଁ ଏ ପର୍ଯ୍ୟନ୍ତ ଭୁଲିପାରିବି ନାହିଁ । ଯଦିଓ ଏହା ଭିତରେ ଛଅରୁ ଉର୍ଦ୍ଧ୍ୱ ଦଶନ୍ଧି ଅତିକ୍ରାନ୍ତ ହୋଇ ସାରିଛି ।

ରେଙ୍ଗାଲିକୁ ଆସିବା ପରେ ନିର୍ଜନତା ବଢ଼ିଲା ସିନା କମିଲା ନାହିଁ । ବିରାଟ (ପ୍ରାୟ ୧୦ ଏକର) ଜମି ଉପରେ ସରକାରୀ ଘର । ପାଖରେ କେବଳ କିଛି ମୁସଲମାନ, ଗୁଜୁରାଟୀ ତଲେଇ, କେନ୍ଦୁପତ୍ର କଣ୍ଟ୍ରାକ୍ଟର । ଆଉ ଗୋଟିଏ ରେଲବାଇ ଷ୍ଟେସନ । ଜଣେ ଷ୍ଟେସନ ମାଷ୍ଟର, ଦୁଇଟି ପଏଣ୍ଟସ ମ୍ୟାନ (ଯୋଗୀ, ବିରେନ୍ଦ୍ର) ଷ୍ଟେସନମାଷ୍ଟର ଫନିଭୂଷଣ ସାନ୍ୟାଲ, ପରିବାର ସହିତ ରହନ୍ତି । ତାଙ୍କର ଗୋଟିଏ ଝିଅ, ତାଙ୍କର ସ୍ତ୍ରୀ ଏବଂ ଶାଳୀ ସମସ୍ତେ ବୟସରେ ମୋ' ଠାରୁ ବହୁତ ବଡ଼ । ସେମାନେ ଆଦର କରନ୍ତି, ଗେହ୍ଲା କରନ୍ତି କିନ୍ତୁ ଖେଳନ୍ତି ନାହିଁ ଆମ ସାଙ୍ଗରେ ।

ସେଇଠି ଥାଏ ଯୋଗୀ ନାମରେ ଏକ ପଏଣ୍ଟ୍ସ ମ୍ୟାନ, ରେଳବାଇର । ତାର ଝିଅଟିଏ ଥାଏ ନାମ ହେଉଛି ଲୀଳା । ସେ ହିଁ ଆମ ଦୁଇଭାଇଙ୍କର ଏକମାତ୍ର ସାଙ୍ଗ । ଆମେ ବଦଳି ହୋଇ ଆସିବା ଦିନ ସେ କାନ୍ଦିଥିଲା, ମନେ ପଡୁଛି । ତାର ବହୁବର୍ଷ ପରେ । ଥରେ ମୁଁ ଫେରୁଥିଲି ଝାରସୁଗୁଡ଼ାରୁ କଟକ । ବାଟରେ ହଠାତ୍ ଶାସନ ଷ୍ଟେସନର ଲେବଲକ୍ରସିଂରେ ପଏଣ୍ଟର ମ୍ୟାନକୁ ମୁଁ ପଚାରିଲି ଯୋଗୀ କଥା, ସେ କହିଲା ଯୋଗୀ ମରିଗଲାଣି ଲୀଳା ପାଖ ଗାଁରେ ବିବାହ କରିଛି । ତା'ର ସ୍ୱାମୀ ମୃଦଙ୍ଗ ବଜାଏ ଯାତ୍ରା ପାର୍ଟିରେ । ଦେଖିବାକୁ ଇଚ୍ଛା ହେଲା । ମୋ ସାଙ୍ଗରେ ଥିଲେ ଗାନ୍ଧିକ, ସ୍ଥାପତ୍ୟ ଶିଳ୍ପୀ ବନ୍ଧୁ ଶରତ ମହାପାତ୍ର । ସେ ଟିକିଏ ଥଟ୍ଟା କଲେ, କହିଲେ ଚାଲନ୍ତୁ ନିଶ୍ଚୟ ଯିବା ''ଆପଣଙ୍କର ପ୍ରଥମ ପ୍ରିୟତମାକୁ ଦେଖିବା ଆମର କର୍ତ୍ତବ୍ୟ ।''

ପ୍ରିୟତମା ହେବାପାଇଁ ନା ତାର ବୟସ ହୋଇଥିଲା, ନା ପ୍ରିୟତମ ହେବାପାଇଁ ବୟସ ହୋଇଥିଲା ମୋର । କିନ୍ତୁ ଗୋଟାଏ କିଛି ସ୍ପନ୍ଦନ ହୁଏତ ଥିଲା, ଯାହାର କୌଣସି ସଂଜ୍ଞା ନାହିଁ ଅନ୍ତତଃ ମୋର ଅଭିଧାନରେ । ପିଲାଦିନର ସାଙ୍ଗ, ଆଉ ତା' ସାଙ୍ଗରେ ଗୋଟାଏ କିଛି । ସେଇଟା କ'ଣ ମୁଁ କହିପାରିବି ନାହିଁ । ତାହାର ବିଶେଷଣ ହୁଏତ ମନସ୍ତତ୍ତ୍ୱବିଦ୍‌ମାନେ କହିପାରିବେ । ଲୀଳାର ଘର ଖୋଜି ପହଞ୍ଚିଲୁ । ଆମେ ସବୁ ସଂପୂର୍ଣ୍ଣ ଅପରିଚିତ । ଗୋଟିଏ ଜିପ୍ । ସେଥିରେ ଦୁଇଜଣ ବ୍ୟକ୍ତି 'କଟକରୁ', ଗାଁରେ ଭିଡ଼ ଜମି ଆସିଲା । ଲୀଳାର ସ୍ୱାମୀଙ୍କ ସାଙ୍ଗରେ ପ୍ରଥମେ ଭେଟ ହେଲା । ସେ କିଛି ପରିମାଣରେ ଆଶ୍ଚର୍ଯ୍ୟ, କିଛି ପରିମାଣରେ ଭୀତ । ପରିଶେଷରେ ଲୀଳା ସାଙ୍ଗରେ ଭେଟ ହେଲା । ସେ କିନ୍ତୁ ଚିହ୍ନିପାରିଲା ନାହିଁ ଆଦୌ । ପରିଚୟ ବାପାଙ୍କର

Digitized by srujan ka@gmail.com

ଦେଇ କହିଲା ପରେ, ସେ ପଚାରିଲା ତୁମେ ପାକୁ (ମୁଁ) ନା ଖୁକୁ (ସାନଭାଇ) । ମୁଁ ବଡ଼ବୋଲି କହିବାରୁ ତା'ର ମନେପଡ଼ିଲା ଏବଂ ଆସି ମୁଣ୍ଡିଆଟିଏ ମାରିଲା । ମୋର ଠିକଣା ତାର ସ୍ୱାମୀ ଟିପି ରଖିଲେ । ସାନଭାଇ କେମିତି ଅଛି ବୋଲି ପଚାରିଲା । ବାପା, ବୋଉ କେମିତି ଅଛନ୍ତି ? ବାପା ବୋଉ ଆଉ ନାହାନ୍ତି ଶୁଣି ଆଖି ତାର ଢଳେଇ ଆସିଲା । ଆମ ଘରେ ତାର ଚଳପ୍ରଚଳ ଥିଲା ଖୁବ୍ । ବୋଉ ଓ ବାପା ଝିଅରକୁଣା । ସେଇଯୋଗୁଁ ସେମାନଙ୍କର ଗେହ୍ଲା ବି ଖୁବ୍ ଥିଲା ସେ । ତମେ ମୋତେ ମନେରଖି ଆସିଲ ଯାହାହେଉ । କଥା ଏତିକିରେ ଶେଷ । ତାର ଆଖିରେ ବିସ୍ମୟ ଆନନ୍ଦ, ଭୟ ସବୁ ମିଶାମିଶି ହୋଇ ଯେପରି ପଶିଯାଇଛି । ସେ ଆଖିକୁ ଖାଲି ପୋଛିବାକୁ ଲାଗିଲା । ତୋ' ପାଇଁ କପ୍ଡାଟିଏ ଆଣିବାର କଥା । ଆଣିପାରି ନାହିଁ । କାରଣ ତୋତେ ଦେଖିପାରିବାର ଆଶା ତ ନ ଥିଲା । କିଛି ଅର୍ଥ ତା' ହାତରେ ଗେଞ୍ଜି ଦେଇ ଫେରିଲି । ସେ ଜାବୋଡ଼ି ଧରିଲା ସେଇ ନୋଟ୍‌ଟାକୁ । ସତେ ଯେପରି ମୋତେ ଜାବୋଡ଼ି ଧରି ନ ପାରି ସେ ନୋଟ୍‌ଟାକୁ ଜାବୋଡ଼ି ଧରିଛି ! ତା ସାଙ୍ଗରେ ମୋର ଆଉ ଦେଖା ହୋଇ ନାହିଁ । ଏହା ଭିତରେ ପ୍ରାୟ ପଇଁତିରିଶ ବର୍ଷ ଅତିକ୍ରାନ୍ତ କରିଗଲାଣି ଜୀବନର ।

ଯାଜ୍ଞସେନୀ (ଯଜ୍ଞ), ଶିତୁଲା ସାଙ୍ଗରେ ଆଉ ଦେଖାହୋଇ ନାହିଁ, ସେଇ ମୋତିଝରଣରେ ଥିବା ପରଠାରୁ । ସେତିକିବେଳେ ଯେଉଁ ସହପାଠୀମାନେ ଥିଲେ ସେମାନଙ୍କ ଭିତରୁ ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଅଧ୍ୟାପକ ଜନାର୍ଦ୍ଦନ ପଟେଲ ବାହୁଡ଼ି ଗଲେଣି । କେବଳ ଅଧ୍ୟାପକ ଡକ୍ଟର ହୃଷିକେଶ ପୁଝାରୀ ପୁରୀରେ ଅବସର ସମୟ ବିତାଉଛନ୍ତି, ପୁରୀ ଥାନା ପାଖରେ ତାଙ୍କ ଘର । ମୋର ସେତେବେଳର ସହପାଠୀମାନଙ୍କ ମଧ୍ୟରେ ପ୍ରସିଦ୍ଧ ଚିତ୍ରଶିଳ୍ପୀ ଯଦୁନାଥ ସୂପକାରଙ୍କର ମଧ୍ୟ ପରଲୋକ ହୋଇଯାଇଛି କିଛି ବର୍ଷ ତଳେ । ପିଲାଦିନରୁ ତାଙ୍କର ପ୍ରତିଭା ଜଣା ପଡ଼ିଥିଲା । ଜଣେ ନିପୁଣ ଚିତ୍ରକର ଭାବରେ ସେ କେବଳ ନିଜପାଇଁ ଚିତ୍ର ଆଙ୍କୁ ନ ଥିଲେ ମୋ ଭଳି ଯେଉଁ ସହପାଠୀମାନଙ୍କର ହାତରେ ଚିତ୍ର ଆଦୌ ହୁଏନା, ସେମାନଙ୍କ ପାଇଁ ମଧ୍ୟ ଚିତ୍ର ଆଙ୍କି ଦେଉଥିଲେ । ସେତେବେଳେ ଡ୍ରଇଁ ଏକ ବାଧ୍ୟତାମୂଳକ ବିଷୟବସ୍ତୁ ଭାବରେ ପଢ଼ାଯାଉଥିଲା । ଉପରକ୍ଲାସ ବେଳକୁ ଏହା ଉଠିଗଲା । ନଚେତ୍ ମୋ ଦ୍ୱାରା ମାଇନର ପାଶ୍ ମଧ୍ୟ ହୋଇ ନ ଥାନ୍ତା । ମାଟ୍ରିକ ପାଶ୍ କଲାପରେ ସେ ଆସିଥିଲେ କଟକ । ସ୍ୱରାଜ ଆଶ୍ରମରେ ଭେଟିଥିଲେ ମହତାବବାବୁ, ନବବାବୁ ପ୍ରଭୃତିଙ୍କୁ । ପିଲାଟିର ପ୍ରତିଭା ଦେଖି ସେମାନେ ବୃତ୍ତିର ବନ୍ଦୋବସ୍ତ କରିଦେଇ ଥିଲେ ଏବଂ ଯଦୁନାଥଙ୍କ ପ୍ରତିଭା ବିକଶିତ ହେବାରେ କୌଣସି ପ୍ରତିବନ୍ଧକ ରହିଲା ନାହିଁ । ସେ ପରବର୍ତ୍ତୀ କାଳରେ ଟେକ୍ସଟାଇଲ ଡିଜାଇନିଂରେ ପାରଦର୍ଶିତା ଲାଭ କଲେ । ଅବସର ଗ୍ରହଣ ପରେ ସେ ବୋଧହୁଏ ବନାରସରେ ରହୁଥିଲେ । ପୂର୍ବତନ ଚିଫ୍ କନଜରଭେଟର ଶ୍ରୀ ସଚ୍ଚିଦାନନ୍ଦ ଦାସଙ୍କ ପୁଅ ହେଉଛି ଯଦୁନାଥଙ୍କ ଜ୍ୱାଇଁ । ମୃତ୍ୟୁ ଖବର କୌଣସି ଖବରକାଗଜରେ ପ୍ରକାଶ ପାଇନାହିଁ । ଜୀବଦ୍ଦଶାରେ ତ ସେ ରହିଗଲେ ସେଆଡ଼େ । ଆଉ

Digitized by srujan ka@gmail.com

ଗଲା ପରେ କ'ଣ ପ୍ରକାଶ ପାଇଥାନ୍ତା ଖବରକାଗଜରେ ? ବଧୂହତ୍ୟା, ଧର୍ଷଣ, ଡକାୟତି ସଂବାଦମାନଙ୍କରେ ଖବରକାଗଜମାନଙ୍କର ପୃଷ୍ଠା ଭରପୂର । ଶିଳ୍ପୀ ପାଇଁ ସ୍ଥାନ କାହିଁ ? ଯଦୁନାଥଙ୍କ ଜ୍ୱାଇଁଙ୍କଠାରୁ ସଂବାଦ ପାଇ ମନ ଦୁଃଖରେ ଭରିଗଲା ।

ଓଡ଼ିଶାର ଅନ୍ୟତମ ଶିଳ୍ପୀ ଉପେନ୍ଦ୍ର ମହାରଥୀଙ୍କ ସଂପର୍କରେ ପ୍ରଥମେ ପଢ଼ିଥିଲି ମାୟାଧର ମାନସିଂହଙ୍କ ଦ୍ୱାରା ସଂପାଦିତ "ଶଙ୍ଖ" ପତ୍ରିକାରୁ । ସଂପାଦକ ଖେଦ ପ୍ରକାଶ କରିଥିଲେ ଯେ ଏଇ ପ୍ରତିଭାଶାଳୀ ଶିଳ୍ପୀ ବିହାରରେ ଲିନୋଟାଇପ ଡିଜାଇନିଂ କରି କାଳାତିପାତ କରୁଛନ୍ତି । ପାରିକୁଦରେ ଜନ୍ମ ହୋଇଥିବା ଏଇ ଶିଳ୍ପୀ ପରବର୍ତ୍ତୀ କାଳରେ ବିହାରର ଲେଜିସଲେଟିଭ କାଉନସିଲର ସଭ୍ୟ ହୋଇଥିଲେ ଏବଂ ତାଙ୍କର ଅମରକୀର୍ତ୍ତି ହୋଇଛି ବିହାରରେ ଏବଂ ଓଡ଼ିଶାର ଧଉଳିଗିରିରେ ଶାନ୍ତିସ୍ତୂପ ପ୍ରତିଷ୍ଠା । ଫୁଜି ମହାରାଜଙ୍କ ସହିତ ତାଙ୍କର ନିବିଡ଼ ସଂପର୍କକୁ ସେ ପୂର୍ଣ୍ଣ ସଦ୍‌ବ୍ୟବହାର କରିଥିଲେ ଶାନ୍ତିସ୍ତୂପ ନିର୍ମାଣରେ । ଓଡ଼ିଶାରେ ଏଥିପାଇଁ କଳିଙ୍ଗ ନିପନ ବୌଦ୍ଧ ସଂଘ ପ୍ରତିଷ୍ଠା ହୋଇଥିଲା । ସମାଜ ସଂପାଦକ ୰ ରାଧାନାଥ ରଥ, ବିହାରର ପୂର୍ବତନ ରାଜ୍ୟପାଳ ୰ ନିତ୍ୟାନନ୍ଦ କାନୁନ୍‌ଗୋ ଏହାର ସଭ୍ୟ ଥିଲେ । ଅନ୍ୟମାନେ କିଏ ଥିଲେ ଜାଣିନାହିଁ । ଫୁଂଜି ମହାରାଜଙ୍କ ନେତୃତ୍ୱରେ ଧଉଳିଗିରି ଉପରେ ଶାନ୍ତି ସ୍ତୂପ ନିର୍ମାଣ ହେଲା ଏବଂ ତା ସହିତ କିଛି ବ୍ୟକ୍ତି (ସେମାନଙ୍କ ଭିତରେ ୰ ଦୁର୍ଗା ତ୍ରିପାଠୀ ଆଇ.ଏ.ଏସ୍ ହେଉଛନ୍ତି ମୁଖ୍ୟ) ଏକ ଭୋଟିଭ ବୌଦ୍ଧ ସ୍ତୂପକୁ ଲିଙ୍ଗ ଭାବରେ ଥାପନା କରି ଶିବ ମନ୍ଦିର ନିର୍ମାଣ କଲେ । ବହୁ ଶହ ବର୍ଷ ତଳେ ଯାହା ଘଟିଥିଲା ବର୍ତ୍ତମାନ ଠିକ୍ ତାହା ହିଁ ଘଟିଲା । ଶଙ୍କରାଚାର୍ଯ୍ୟଙ୍କ ନେତୃତ୍ୱରେ ବ୍ରାହ୍ମଣବାଦର ଅଭ୍ୟୁତ୍ଥାନର ପରେ ହଜାର ହଜାର ବୌଦ୍ଧ ସ୍ତୂପକୁ ଭାଙ୍ଗି ଦିଆଗଲା । ହଜାର ହଜାର ବୌଦ୍ଧ ଧର୍ମାବଲମ୍ବୀମାନଙ୍କୁ ହତ୍ୟା କରାଗଲା ଏବଂ ବୌଦ୍ଧ ସ୍ତୂପମାନଙ୍କୁ ଶିବଲିଙ୍ଗରେ ପରିଣତ କରାଗଲା । ବୌଦ୍ଧଧର୍ମ କଳିଙ୍ଗର ବଣିକପୁତ୍ରମାନଙ୍କୁ ବିଶେଷ ଆକର୍ଷିତ କରିଥିଲା । କାରଣ ବ୍ରାହ୍ମଣବାଦର ନିୟମ-ନିଗଡ଼ ଭିତରୁ ସେମାନେ ଚାହୁଁଥିଲେ ମୁକ୍ତି । ଠିକ୍ ସେଇପରି ଜାତିଭେଦ ପ୍ରଥାର ଶିକାର ହୋଇଥିଲେ ସେଇମାନେ ଯେଉଁମାନଙ୍କୁ ସମାଜରେ 'ଅଛୁଆ' କରାଯାଇଥିଲା । ଏହା ମନୁଙ୍କର କରାମତି । କାରଣ ସେ ହିଁ ବୋଧହୁଏ ଜାତିଭେଦ ପ୍ରଥାର ସ୍ରଷ୍ଟା । କିନ୍ତୁ ସେତେବେଳେ ଜାତିପ୍ରଥା ବଂଶଗତ ନ ଥିଲା, କର୍ମଗତ ଥିଲା । ବୌଦ୍ଧଧର୍ମ କ୍ରମେ ରାଜଧର୍ମରେ ପରିଣତ ହୋଇ ତାହାର ବୈପ୍ଳବିକ ଚରିତ୍ର ହଜାଇ ବସିଥିଲା ଏବଂ ଗୋଟିଏ ସମୟରେ ଏହା ଆପଣାର ଜନପ୍ରିୟତାର ଚୂଡାନ୍ତ ଶିଖରରେ ପହଞ୍ଚି (ଓଡ଼ିଶାର ଭୌମକର ବଂଶର ରାଜୁତି ସମୟରେ ବୋଲି ମୋର ମନେହୁଏ) ଏହା କ୍ରମେ ଆପଣାର ପ୍ରଭାବ ହରାଇବାକୁ ଆରମ୍ଭ କରିଥିଲା । ତନ୍ତ୍ରଯାନ ସହିତ ମିଶି ଏହା ସହଜଯାନ, ଉଡ୍ଡୀୟଯାନ, ବଜ୍ରଯାନରେ ପରିଣତ ହୋଇଥିଲା । କାମନାର ବିନାଶରେ ଦୁଃଖର ବିନାଶ ବା ଆତ୍ମାର ମୁକ୍ତି ପରିବର୍ତ୍ତରେ କାମନାର ତୃପ୍ତିରେ ହିଁ ଦୁଃଖର ବିନାଶ ପ୍ରବର୍ତ୍ତିତ ହେଲା, ରାଜଧର୍ମ-ବୌଦ୍ଧଧର୍ମରେ । ମୋର ମନେହୁଏ

Digitized by srujan ka@gmail.com

ବୌଦ୍ଧଧର୍ମର ଲୋପ ପାଇଗଲା ସେଇଯୋଗୁଁ ତା'ର ଜନ୍ମଭୂମି ଭାରତବର୍ଷରେ । କିନ୍ତୁ ବୌଦ୍ଧଧର୍ମର ମହାନବାଣୀ ଲୋପ ପାଇନାହିଁ । ବହୁ ଯୁଗ ପରେ ସମଗ୍ର ମଣିଷ ଜାତି ତାହା ହେରିବାକୁ ଲାଗିଛି ପୁଣି ।

ତଥାପି ଯେ ଏହି ମହାନବାଣୀ ରକ୍ଷଣଶୀଳମାନଙ୍କ ଦ୍ୱାରା ଆକ୍ରମିତ ଏଥିରେ କୌଣସି ସନ୍ଦେହ ନାହିଁ ଏବଂ ଆପଣାର କୁକର୍ମକୁ ପବିତ୍ରୀକୃତ କରିବା ପାଇଁ ଧର୍ମ ଏକ ଆବରଣ ହୋଇଯାଇଛି ।

ଲଳିତଗିରିଠାରୁ କୋଣାର୍କ । ସବୁଠାରେ ଦେଖାଯିବ ଯେ, ଯେପର୍ଯ୍ୟନ୍ତ ଏକ ଧର୍ମ ରାଜଧର୍ମ ହୋଇ ରହିଛି, ସେ ପର୍ଯ୍ୟନ୍ତ ଉକ୍ତ ଧର୍ମର ଅଭିଲେଖ ବା ଶିଳ୍ପକଳା ଅକ୍ଷତ ରହିଛି । କିନ୍ତୁ ଯେଉଁ ମୁହୂର୍ତ୍ତରେ ତାହା ରାଜାମାନଙ୍କର ଅନୁଗ୍ରହରୁ ବଞ୍ଚିତ ହୋଇଛି ସେଇ ମୁହୂର୍ତ୍ତରୁ ଏହି କୀର୍ତ୍ତିରାଜି ମଣିଷର ଶରବ୍ୟ ହୋଇଛି ।

ବାରବାଟୀ ଦୁର୍ଗର ପଥର ଯେପରି କଟକ ସହରର ବହୁ ବସ୍ତିରେ ଘର ତିଆରି ପାଇଁ ନିଅଁରେ ବ୍ୟବହୃତ ହୋଇଛି ଠିକ୍ ସେଇପରି ହୋଇଛି ଲଳିତଗିରିରେ ବା କୋଣାର୍କରେ । ଏହା ଛଡ଼ା ସ୍ୱାଭାବିକ ଭାବରେ ପ୍ରକୃତି ମଧ୍ୟ ତାର ଦାଉ ସାଧିଛି । କିନ୍ତୁ ମଣିଷ ସେଥିପାଇଁ ମୁଖ୍ୟତଃ ଦାୟୀ । ୧୯୦୫ ମସିହାରେ (ବୋଧହୁଏ) କଟକର ଜିଲ୍ଲା କଲେକ୍ଟର ତାଙ୍କର ଗସ୍ତକାଳ ସମୟରେ ଦେଖିଥିଲେ ଲଳିତଗିରି ଏବଂ ଯାହା ସବୁ ଦେଖିଥିଲେ ତାର ଏକ ତାଲିକା ପ୍ରସ୍ତୁତ କରିଥିଲେ । ସେ ତାଲିକା ବର୍ତ୍ତମାନ ବି ମିଳିବ । କିନ୍ତୁ ସେ ସବୁର ମାତ୍ର କିଛି ଅଂଶ ବର୍ତ୍ତମାନ ରହିଛି । ସେ ସବୁ ଚୋରି ହୋଇଯାଇଛି ବା ବ୍ୟବହାର ହୋଇଛି ଘର ନିଅଁ ହେବାରେ ।

ବାରବାଟୀ ଷ୍ଟାଡ଼ିଅମର ନିର୍ମାଣ ହେଲାବେଳେ ଯେତେବେଳେ ତୃତୀୟ ଗ୍ୟାଲେରୀ ଖୋଳାଗଲା, ସେଠାରେ ଏକ ବିରାଟ ଡ୍ରେନ, କିଛି ମୂର୍ତ୍ତି, ଏକ ଷ୍ଟ୍ରକଚରର ଅବଶେଷାଂଶ ଦେଖାଗଲା । ଭୈରବବାବୁ ପଡ଼ିଲେ ଅସୁବିଧାରେ । ଯଦି ଏହାକୁ ଜଣାଇ ଦିଆଯାଉଛି ତା' ହେଲେ ଷ୍ଟାଡ଼ିଅମ ନିର୍ମାଣର କାମ ବନ୍ଦ ହୋଇଯିବ । ଯଦି ଜଣା ନ ଯାଉଛି ତା' ହେଲେ ଏଇ କୀର୍ତ୍ତି ମିଶିଯିବ ମାଟିରେ । ଭୈରବବାବୁ ଧାଇଁଲେ ଭୁବନେଶ୍ୱର ମହତାବବାବୁଙ୍କୁ ଦେଖାକରିବା ପାଇଁ । ଐତିହାସିକ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ । କିନ୍ତୁ ସେ ଫେରିଲା ବେଳକୁ ସେ ସବୁକୁ ଭାଙ୍ଗି ତାଙ୍କର ଜଣେ ସହକର୍ମୀ ମାଟିରେ ମିଶାଇ ଦେଇଛନ୍ତି । ମାତ୍ର ରହିଛି କିଛି ମୂର୍ତ୍ତି । ସେ ମୂର୍ତ୍ତିଗୁଡ଼ିକ ପରେ କ'ଣ ହେଲା ମୁଁ କହିପାରିବି ନାହିଁ । ଭୈରବବାବୁ କାନମୁଣ୍ଡ ଆଉଁସି ରହିଗଲେ ଚୁପ୍‌ଚାପ୍ । ଅଜାଗା ଘାଆ, ଦେଖାଇ ହେଉନାହିଁ କି କୁଣ୍ଡେଇ ହେଉନାହିଁ ।

ରାଧାନାଥ ବାବୁ, ନିତ୍ୟାନନ୍ଦ ବାବୁଙ୍କ ପରଲୋକ ପରେ କଳିଙ୍ଗ ନିପନ ବୌଦ୍ଧ ସଂଘରେ କିଏ ସବୁ ଅଛନ୍ତି, କଣ କାମ ହେଉଛି ତାହା କହିପାରିବି ନାହିଁ । କିନ୍ତୁ ଧଉଳିଗିରିର ଠିକ୍ ତଳେ ଦଶ ଏକର ଜମି କଳିଙ୍ଗ ନିପନ ବୌଦ୍ଧସଂଘ କିଣିଥିଲେ ଏବଂ ସେଠାରେ ଏକ ଡାକ୍ତରଖାନା ଖୋଲିବା ରାଧାନାଥ ବାବୁଙ୍କ ଯୋଜନାରେ ଥିଲା ।

Digitized by srujan ka@gmail.com

ଓଡ଼ିଶା ହାଇକୋର୍ଟର ବରିଷ୍ଠ ଆଡଭୋକେଟ ଶ୍ରୀ ବିଜୟକୃଷ୍ଣ ମହାନ୍ତି ମଧ୍ୟ ଏହି ପରିକଳ୍ପନା ସହିତ ସଂପୃକ୍ତ ଥିଲେ । ତାଙ୍କର ଅନୁରୋଧରେ ଇମ୍‌ଫାର ଚେୟାରମ୍ୟାନ ଡକ୍ଟର ବଂଶୀଧର ପଣ୍ଡାଙ୍କର ସ୍ଥାପତ୍ୟ ଶିଳ୍ପୀ (ଯେ ତାଙ୍କର ଘର ଏବଂ ଅଫିସ ଡିଜାଇନ୍ କରିଥିଲେ) ତା'ର ଏକ ରୂପରେଖ ମଧ୍ୟ ପ୍ରସ୍ତୁତ କରିଥିଲେ । କିନ୍ତୁ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ, ନାନା କାରଣରୁ ।

ମୋର ମନେ ପଡ଼ୁଛି । ସେଇ ମ୍ୟାପଟିକୁ ଧରି ମୁଁ ଚାଲି ଚାଲି ଯାଉଥିଲି ବାରବାଟୀ ଷ୍ଟାଡ଼ିୟମ ରାସ୍ତାରେ । ସେପଟରୁ ଆସୁଥିଲେ ଗାଡ଼ିରେ ପୁଲିସ ବିଭାଗର ପ୍ରବାଦ ପୁରୁଷ ଆର୍.କେ. ପାଢ଼ୀ, ତତ୍‌କାଳୀନ ଆଇ.ଜି. । ସେ ଥିଲେ ହ୍ୟୁମରର ଖଣି । ଶୁଣାଯାଏ ଯେ ସେ ଆଇ.ପି.ଏସ୍. ପରୀକ୍ଷାରେ ତିନିଶହ ନମ୍ବରରୁ ତିନିଶହ ପାଇଥିଲେ । ସେଦିନ ସେ ଯାଉଥିଲେ ବ୍ରହ୍ମପୁର ରୋଟାରୀ କ୍ଲବର ସମ୍ମିଳନୀରେ ଯୋଗ ଦେବାପାଇଁ । ସେ ଗାଡ଼ି ଅଟକାଇ ମୋତେ ପଚାରିଲେ— ଏଇ ମ୍ୟାପ୍ କ'ଣ ନେଇ ଚାଲିଛ ଏଇ ରାସ୍ତାରେ ଏକୁଟିଆ ? ମୁଁ କହିଲି ଯେ ଏହା ପରିକଳ୍ପନା କରାଯାଉଥିବା ଏକ ଡାକ୍ତରଖାନାର ମ୍ୟାପ୍ । ସେ ଆଗ୍ରହ ପ୍ରକାଶ କରି ମ୍ୟାପଟିକୁ ଦେଖିଲେ ବେଶ୍ କିଛି ସମୟ ଧରି । କହିଲେ ଯେ 'ମୁଁ ଆଜି ଯାଉଛି ବ୍ରହ୍ମପୁର' ଫେରି ଆସିଲେ ତମର ଏଇ ପରିକଳ୍ପନା ଦେଖିବି ଆଉଥରେ । କିଛି ସାହାଯ୍ୟ କରିପାରିଲେ ମୁଁ ସୁଖୀ ହେବି । କିନ୍ତୁ ଗୋଟିଏ ସର୍ତ୍ତରେ । କ'ଣ ସେଇ ସର୍ତ୍ତ ? ସେ ତ ହ୍ୟୁମରସ୍ ଲୋକ । କହିଲେ ମୋ ପାଇଁ ଗୋଟିଏ ସ୍ଥାନ ରହିବ ନିଶ୍ଚୟ ।

ସେଦିନ ସେ ଗଲେ ବ୍ରହ୍ମପୁର । କିନ୍ତୁ ସେ ଆଉ ଫେରିଲେ ନାହିଁ । ଫେରିଲା ତାଙ୍କର ମରଦେହ । ଆଜି ବି ସେ ବାଟରେ ଗଲେ ତାଙ୍କ କଥା ମନେପଡ଼େ ।

ᵛ ପଦ୍ମନାଭ ମିଶ୍ର (ପ୍ୟାରୀମୋହନ ମହାପାତ୍ରଙ୍କ ଶ୍ୱଶୁର) ଥିଲେ ଘରୋଇ ବିଭାଗର ସେକ୍ରେଟେରୀ । ସେ ଆର୍.କେ.ପାଢ଼ୀଙ୍କର ସହପାଠୀ । ପାଢ଼ୀ ସାହେବ ଆଇ.ଜି. । ଥରେ ପୁରୀରେ (ବୋଧହୁଏ ରଥଯାତ୍ରା) କୌଣସି ଏକ ଉତ୍ସବରେ ଅନ୍ୟାନ୍ୟ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଗହଣରେ ସେ ଦୁହେଁ ବସିଥିଲେ ପାଖାପାଖି । ଏଇ ସମୟରେ ପାଢ଼ୀ ସାହେବଙ୍କ ସାନପୁଅ ଯାଇ ସେଇଠି ପହଞ୍ଚିଥିଲା । ପଦ୍ମନାଭ ମିଶ୍ରଙ୍କୁ ପାଢ଼ୀ ସାହେବ ପରିଚୟ କରାଇଦେଲେ ପୁଅ ସାଙ୍ଗରେ । ପଦ୍ମନାଭ ବାବୁ ପଚାରିଲେ ଇଏ ତମର ଶେଷ ପୁତ୍ର (Last Son) ସାଙ୍ଗେ ସାଙ୍ଗେ ପାଢ଼ୀ ସାହେବ ଉତ୍ତର ଦେଲେ- ଦେଖ. ପଦ୍ମନାଭ ତମେ ମୋର ସହପାଠୀ, ବର୍ତ୍ତମାନ ତମେ ମୋର ବସ (Boss) ତା' ବୋଲି ତମେ ମୋର ପୌରୁଷତ୍ୱକୁ ଆଘାତ କରିବ ? କହିପାର Latest ବୋଲି, Last ବୋଲି ତମେ କହ କେମିତି ?

ପୁଅ ଠିଆ ହୋଇଛି । ସେ... ... ...ମ୍ପ ନିଷ୍ଠ ବ୍ୟକ୍ତି ବି ଅଛନ୍ତି । ହସ ଉଚ୍ଛୁଳିଲା ସମସ୍ତଙ୍କ ଭିତରେ ।

Digitized by srujan ka@gmail.com

ଆମ କଲୋନୀର ନଅ ନମ୍ବର ଘରେ ଜଣେ ତରୁଣ ଆଇ.ପି.ଏସ୍ ଅଫିସର ଥିଲେ । ନାମଟା ପୂରା ଭୁଲିଯାଇଛି । ତାଙ୍କର ସାଙ୍ଗିଆ ଥିଲା ସାଇଗଲ୍ । ତରୁଣ ଅଫିସର । ସୁଦର୍ଶନ ଚେହେରା । ଘରେ ତରୁଣୀ ସୁନ୍ଦରୀ ସ୍ତ୍ରୀ । ଦୁଇଟି ଛୋଟ ଛୋଟ ପୁଅ ଝିଅ । ତାଙ୍କର ହୃଦରୋଗ ଥିଲା ଏବଂ ଥିଲେ ଜଣେ ଶିଳ୍ପୀ । ବେଶ୍ ଚିତ୍ର ଆଙ୍କୁଥିଲେ । ସେଇ ରାତି ଥିଲା ଭୟାନକ ରାତି । ରାତିରେ ପ୍ରବଳ ବର୍ଷା ଓ ପବନ । ସାଇଗଲ ସନ୍ଧ୍ୟାବେଳେ ମଦ୍ୟପାନ କରିଛନ୍ତି କିଛି । ରାତିରେ ତାଙ୍କର ହୃଦଯନ୍ତ୍ରରେ ଯନ୍ତ୍ରଣା ଆରମ୍ଭ ହୋଇଛି । ସେ ଔଷଧ ରଖିଛନ୍ତି ସିଷ୍ଟେମାଟିକାଲି, କାହାକୁ କ'ଣ ପାଇଁ ଟେଲିଫୋନ କରାଯିବ ତାହାର ମଧ ତାଲିକା ଓ ଫୋନ ନମ୍ବର ରହିଛି । କିନ୍ତୁ ମହାକାଳର ଆହ୍ୱାନ ଆସିଲାବେଳେ ସବୁ ବିଗିଡ଼ିଯାଏ ବା ଅଚଳ ହୋଇଯାଏ । ସେଇ ରାତିରେ ବର୍ଷା ଓ ପବନ ଯୋଗୁଁ ସବୁ ଫୋନ ଅଚଳ । ତାଙ୍କ ସ୍ତ୍ରୀ ଫୋନ କରିପାରୁ ନାହାନ୍ତି କି କାନ୍ଦିପାରୁ ନାହାନ୍ତି । ପରେ ଶୁଣିଲୁ ଯେ ସାଇଗଲ ଯାଇଥିଲେ ବାଥରୁମକୁ ସେଠାରେ ଗୋଟିଏ ସାପ ଦେଖିଲେ । ତାକୁ ପିଟି ପିଟି ମାରିଦେଲେ ଏବଂ ତା'ପରେ ହିଁ ଆରମ୍ଭ ହେଲା ତାଙ୍କର ହୃଦଯନ୍ତ୍ରଣା ।

ମୋର ତ ବାରଣ୍ଡାରେ ଶୋଇବା ଅଭ୍ୟାସ । ପାହାନ୍ତିଆରୁ ମୋର ନିଦ ଭାଙ୍ଗିଗଲା କାହାର ଏକ କାନ୍ଦଣା ଶୁଣି । ନାରୀ ଓ ପିଲାମାନଙ୍କର କାନ୍ଦଣା । ମୁଁ ଦୌଡ଼ିଲି, ଦେଖିଲି ସାଇଗଲ୍ ଅଚେତ ହୋଇ ପଡିଛନ୍ତି । ତାଙ୍କୁ ମାଉଥ୍ ଟୁ ମାଉଥ୍ ଅକ୍ସିଜେନ ଦେବାକୁ ଚେଷ୍ଟାକଲି । ମୋ ସ୍ତ୍ରୀ ବି ଦୌଡ଼ି ଆସି ହାର୍ଟ ମ୍ୟାସେଜ କରିବା ପାଇଁ ଚେଷ୍ଟା କଲେ । କଲୋନୀର ପଡୋଶୀମାନେ ଆସି ହାର୍ଟ ମ୍ୟାସେଜ କରିବା ପାଇଁ ଚେଷ୍ଟାକଲେ । ଡାକ୍ତର ଆସିଲେ । ମାଉଥ୍ ଟୁ ମାଉଥ୍ ଅକ୍ସିଜେନ ଦେବାରେ ଏବଂ ହାର୍ଟ ମାସେଜ୍ କରିବା ଫଳରେ କିଛି ରେସ୍‌ପନ୍ସ ହେଲା । ଥରେ ଦୁଇଥର ସେ ଆଖି ଖୋଲିଲେ ଟିକିଏ ଟିକିଏ ଦେଖିଲେ । ଏତିକିବେଳେ ଆର.କେ.ପାଢ଼ୀ ପ୍ରମୁଖ ବନ୍ଧୁ ପୋଲିସ ଅଫିସର ଆସି ପହଞ୍ଚିଲେ । ଡାକ୍ତର କହିଲେ ଯାହା କରାଯାଇଛି ଠିକ୍ କରାଯାଇଛି । ରେସ୍‌ପନ୍ସ ଆରମ୍ଭ ହୋଇଛି ଦେଖାଯାଉ କ'ଣ ହେଉଛି ! କିନ୍ତୁ ସେ ରହିଲେ ନାହିଁ, ଠିକ୍ ସକାଳୁ ତାଙ୍କର ପରଲୋକ ହୋଇଗଲା ।

ବର୍ତ୍ତମାନ ସମସ୍ୟା ଦେଖାଗଲା । ତାଙ୍କ ସ୍ତ୍ରୀ ମରଶରୀରକୁ ନେବାକୁ ଚାହିଁଲେ ପଂଜାବର ତାଙ୍କ ଗାଁକୁ । କିନ୍ତୁ କେମିତି ଯିବ, କେତେଦିନ ଲାଗିବ, କାହାକୁ ଖବର ଦିଆଯିବ ଏଇ ସ୍ୱଳ୍ପ ସମୟ ଭିତରେ ? ପାଢ଼ୀ ସାହେବ ମୋତେ ଦାୟିତ୍ୱ ଦେଲେ ତାଙ୍କୁ ବୁଝାଇବା ପାଇଁ । ପରିଶେଷରେ ସେ ସମ୍ମତି ଦେଲେ ଏବଂ ପୂରା ପୋଲିସ ଗାର୍ଡ ଅଫ ଅନର ସହିତ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଖାନନଗରରେ ସମାପ୍ତ ହେଲା ।

ପାଢ଼ୀସାହେବ ଲୁହ ଛଳ ଛଳ ଆଖିରେ ସବୁ ପୁଲିସ ଅଫିସରଙ୍କ ସାମନାରେ ମୋତେ ଯେଉଁ ବଧେଇ ଦେଲେ ତାହା ଭୁଲି ହେବନାହିଁ ।

Digitized by srujan ka@gmail.com

ସମ୍ବଲପୁରରେ ଥିଲାବେଳେ ହିଁ 'ଶଙ୍ଖ' କାଗଜ ବନ୍ଦ ହୋଇଗଲା । କାରଣ ଏହାର ପୃଷ୍ଠପୋଷକ ବାମଣ୍ଡା ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ସହ ସଂପାଦକ ମାୟାଧର ମାନସିଂହଙ୍କ ପଡ଼ିଲା ନାହିଁ ।

ମାୟାଧର ମାନସିଂହ ଲିଡସ୍ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟକରି ଆସି ଆଠଗଡ଼ ହାଇସ୍କୁଲରେ ହେଡମାଷ୍ଟର ହେଲେ । ସବୁ ଛାତ୍ରଙ୍କୁ ଗେରୁଆ ୟୁନିଫର୍ମ ପିନ୍ଧାଇଲେ ସେ । ଆଠଗଡ଼ ରାଜା ଶ୍ରୀ ରାଧାନାଥ ଦେବବର୍ମା ଜଣେ ଦକ୍ଷ ପାଇଲଟ ଥିଲେ । ସେ ବୋଧହୁଏ ଓଡ଼ିଶାର ପ୍ରଥମ 'ସି' କ୍ଲାସ ପାଇଲଟ । ବିଜୁ ପଟ୍ଟନାୟକ ଦ୍ୱିତୀୟ । ଆଠଗଡ଼ ରାଜା ମଧ ଥିଲେ ଏକ ବିଚିତ୍ର ଧରଣର ମଣିଷ । ସମାଜ ସଂପାଦକ ୵ ରାଧାନାଥ ରଥଙ୍କ ପାଖରେ ମୁଁ ଦେଖିଥିଲି ଏକ ଗୁପ୍ତ ରିପୋର୍ଟ, ଯାହା ଆଠଗଡ଼ ରାଜା ୧୯୩୬-୩୮ ମଧରେ ଦେଇଥିଲେ ଭାଇସରାୟଙ୍କୁ ଏବଂ କପି ଦେଇଥିଲେ ପଲିଟିକାଲ ଏଜେଣ୍ଟଙ୍କୁ । ସେଥିରେ ସେ ସ୍ପଷ୍ଟ ଭାବରେ ଲେଖିଥିଲେ ଯେ ''ଆମକୁ ଇତିହାସର ରାୟ ମାନିବାକୁ ପଡିବ । ପ୍ରଜାମାନଙ୍କୁ ଶାସନ ହସ୍ତାନ୍ତର କରିବାକୁ ହେବ । ତା'ନ ହେଲେ ସଂଗ୍ରାମ ଆମକୁ ଫିଙ୍ଗିଦେବ ଅଳିଆଗଦାକୁ । ଏଇ ବାସ୍ତବତାକୁ ସବୁ ରାଜନ୍ ଗ୍ରହଣ କରିବା ଉଚିତ ବୋଲି ମୋର ବିଶ୍ୱାସ ।''

ରାଧାନାଥ ବାବୁଙ୍କୁ ମୁଁ ପଚାରିଲି ଯେ ଆପଣ ଏଇ ଡକୁମେଣ୍ଟର ତ କିଛି ସଦ୍‌ବ୍ୟବହାର କଲେ ନାହିଁ ପ୍ରଜାମଣ୍ଡଳ ଆନ୍ଦୋଳନରେ ବା ଜାତୀୟ ଆନ୍ଦୋଳନରେ । ଏହାର ସୁଦୂର ପ୍ରସାରୀ ପ୍ରଭାବ ପଡିଥାନ୍ତା । ଏହାକୁ ଇମିତି ରଖି କ'ଣ ଲାଭ ହେଲା ?

ରାଧାନାଥବାବୁଙ୍କ ପାଖରେ ଏପରି ବହୁ ଦଲିଲ୍, ଚିଠି ମୁଁ ଦେଖିଛି । ସେ ସବୁ ସାଇତି ରଖିବା ତାଙ୍କର ସଉକ କିନ୍ତୁ ତା'ର ବ୍ୟବହାର ସେ କରିପାରି ନାହାନ୍ତି ।

ମାୟାଧର ବାବୁ ଆଠଗଡ଼ରେ କିନ୍ତୁ ବେଶିଦିନ ରହିପାରିଲେ ନାହିଁ । ଆଠଗଡ଼ ରାଜା ମଧ ରାଜଗାଦିରେ ରହି ପାରିଲେ ନାହିଁ । ଶତ୍ରୁପକ୍ଷ ସହିତ ତାଙ୍କର ସଂପର୍କ ଥିବା ସନ୍ଦେହରେ ସେ ନିର୍ବାସିତ ହେଲେ ରାଜ୍ୟରୁ । ଫେରିଲେ ବହୁ ବର୍ଷ ପରେ ଏବଂ ବାବାଜୀ ହୋଇ । ସେ ପୁଣିଥରେ ଆସିଲେ ଲୋକଲୋଚନକୁ ୧୯୫୦ ମସିହାରେ, ଯେତେବେଳେ ପୁରୀରେ ନବକଳେବର ସମୟରେ ସାଧୁ ପୋଲିସ ସଂଘର୍ଷ ହୁଏ ଏବଂ ସେ ସାଧୁପକ୍ଷ ସମର୍ଥନ କରନ୍ତି ।

ମାୟାଧର ମାନସିଂହ ଜୀବନରେ ଅନେକ କଥା କରିଛନ୍ତି କିନ୍ତୁ ସବୁବେଳେ ତାଙ୍କୁ କିମିତି ବିବାଦ ଗୋଡ଼େଇଛି । କାହାରି ସହିତ ତାଙ୍କର ଭଲ ପଡ଼ିଲା ନାହିଁ ।

ସେ ଗଙ୍ଗାଧର ମେହେର କଲେଜର ପ୍ରିନ୍ସିପାଲ ଭାବରେ ଅନେକ କାର୍ଯ୍ୟ ସେ କରିଥିଲେ । ଗଙ୍ଗାଧର ଟ୍ରଷ୍ଟ ଫଣ୍ଡ, ତା' ଆନୁକୁଲ୍ୟରେ ହଷ୍ଟେଲ, କଲେଜରେ ପିଲାଙ୍କ ପାଇଁ ଗୋଶାଳାଠାରୁ ଏକ୍ସଟ୍ରା-ମ୍ୟୁରାଲ ଲେକଚର୍ ପାଇଁ ଭାରତର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ ପ୍ରଭୃତି ବହୁ କାର୍ଯ୍ୟର ପୁରୋଧା ଥିଲେ ସେ । ମୋର ବନ୍ଧୁ ଅଧାପକ ୵ ଜନାର୍ଦ୍ଦନ ପଟେଲଙ୍କ ମତରେ ସେଭଳି ପ୍ରିନ୍ସିପାଲ

Digitized by srujan ka@gmail.com

ମିଳିବା କଠିନ । ସେଠାରୁ ମଧ ସେ ବିଦାହେଲେ ଅନ୍‌ସେରିମୋନିୟସ୍‌ଲି (Unceremoniously) ।

ସେ କିଛିକାଳ ଓଡ଼ିଆ ଭାଷାରେ ବିଶ୍ୱକୋଷ ରଚନାର ସଂପାଦକ ହେଲେ । ବୋଧହୁଏ ଗୋଟିଏ ଭଲ୍ୟୁମ ବାହାରିଛି । କିନ୍ତୁ ସଂପାଦକ ମଣ୍ଡଳୀ ସହିତ ତାଙ୍କର ମତଭେଦ ହେଲା ।

ମୋର ମନେ ପଡୁଛି ।

ରବୀନ୍ଦ୍ର ଶତବାର୍ଷିକୀ ପାଳନ ହେଉଥାଏ ସାରା ଭାରତରେ । କଟକରେ ଓଡ଼ିଶା ଥିଏଟର୍ସ ରବୀନ୍ଦ୍ରନାଥଙ୍କ ଚିରକୁମାର ସଭାର ଓଡ଼ିଆ ରୂପାନ୍ତର ମଞ୍ଚସ୍ଥ କରିଥାଏ ଶହେ ଦିନରୁ ବେଶି । ଭାରତବର୍ଷରେ ଏହା ଏକ ରେକର୍ଡ । ରବୀନ୍ଦ୍ରନାଥଙ୍କ ନାଟକର କୌଣସି ଅନୁବାଦ ଅନ୍ୟ ରାଜ୍ୟମାନଙ୍କରେ ଏତେ ଦିନ ଧରି ମଞ୍ଚସ୍ଥ ହୋଇନାହିଁ । ଏହି ଅନୁବାଦ ଥିଲା ମାୟାଧର ମାନସିଂହଙ୍କର । ଏହା ତାଙ୍କର ଏକ ଅନନ୍ୟ କ୍ରେଡିଟ ନିଶ୍ଚୟ ।

ସେତେବେଳେ ଜେ.ଆର୍. କ୍ରିପଲାନୀ ଥାଆନ୍ତି ଭାରତୀୟ ସାହିତ୍ୟ ଏକାଡେମୀର ସେକ୍ରେଟାରୀ । ମାୟାଧର ମାନସିଂହ ତାଙ୍କୁ ଏକ ଚିଠି ଲେଖିଲେ ଯେ ଯଦିଓ ଓଡ଼ିଶାରେ ମଞ୍ଚସ୍ଥ ହୋଇଥିବା ନାଟକ ଭାରତୀୟ ସାହିତ୍ୟ ଏକାଡେମୀ ଦ୍ୱାରା ଅନୁଦିତ ପୁସ୍ତକ ନୁହେଁ ଏବଂ ଏହା ତାଙ୍କ ଦ୍ୱାରା ଅନୁଦିଦ ପୁସ୍ତକ, ତଥାପି ଏହି "Worshipful hands have not been soiled by a Couple of Rupess. Now that you must have decided about the bigger prizes, can I request you for a smaller prize?" ଇତ୍ୟାଦି ଇତ୍ୟାଦି । ତାର ଉତ୍ତରରେ କ୍ରିପଲାନୀ ଲେଖିଲେ ଯେ ସେ ଏହା ଜାଣନ୍ତି କିନ୍ତୁ ପ୍ରାଇଜ ଦେବାର କ୍ଷମତା ତାଙ୍କର ନାହିଁ । ଓଡ଼ିଆ ଭାଷା ପାଇଁ ହିଁ ସଭ୍ୟ ହେଉଛନ୍ତି ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ସୁତରାଂ ତାଙ୍କର ସୁପାରିଶ ଦରକାର । ସେତେବେଳେ ବିଶ୍ୱକୋଷ କମିଟିରେ କାମ କରୁଥାନ୍ତି କବି ୰ ବୈକୁଣ୍ଠନାଥ ପଟ୍ଟନାୟକ । ମାୟାଧର ମାନସିଂହ କାହିଁକି କେଜାଣି ତାଙ୍କୁ ପଠାଇଲେ କାଳିନ୍ଦୀବାବୁଙ୍କ ପାଖକୁ ସୁପାରିଶ ସକାଶେ । ବିରକ୍ତ ଓ ଅସନ୍ତୁଷ୍ଟ ହୋଇ ବୈକୁଣ୍ଠବାବୁ କାଳିନ୍ଦୀବାବୁଙ୍କୁ କହିଲେ ସବୁ କଥା । କାଳିନ୍ଦୀବାବୁ କହିଲେ ଯେ ତମେ ଏଥିରେ ଅପମାନିତ ହେବାର କିଛି ନାହିଁ । ମାୟାଧର ମାନସିଂହ ଗୋଟିଏ ଭଲ କାମ କରିଛନ୍ତି । ତାଙ୍କ ନାମ ମୁଁ ସୁପାରିଶ କରିଦେବି । ବୈକୁଣ୍ଠବାବୁ ଯାଇ ସେ କଥା କହିଲେ ମାନସିଂହଙ୍କୁ । ଆଉ ତା' ପରଦିନ ମାନସିଂହ ତାଙ୍କୁ ଧରାଇଦେଲେ ଏକ ଚିଠି, ଯାହା କାଳିନ୍ଦୀବାବୁ ଲେଖିବେ କ୍ରିପଲାନୀଙ୍କୁ ଏବଂ ତାର ଡ୍ରାଫ୍ଟ କରିଦେଇଛନ୍ତି ମାୟାଧର ମାନସିଂହ । ବୈକୁଣ୍ଠବାବୁ ସେଇଟିକୁ ନେଇ ଦେଲେ କାଳିନ୍ଦୀବାବୁଙ୍କୁ କିନ୍ତୁ ଇସ୍ତଫା ଦେଇଦେଲେ ବିଶ୍ୱକୋଷ କମିଟିରୁ । ବୋଧହୁଏ (ମୋର ଠିକ୍ ମନେ ପଡୁନାହିଁ) ପ୍ରସିଦ୍ଧ ଚିତ୍ରଶିଳ୍ପୀ ଗୋପାଳ କାନୁନଗୋ ମଧ ସେଇ ସଂସ୍ଥାରେ କାମ କରୁଥିଲେ । ସେ କମିଟିର ଭୟଙ୍କର କାମ ସରିଗଲା ।

ଏହାକୁ ଉପଲକ୍ଷ୍ୟ କରି ମହତାବବାବୁ 'ଜ୍ଞାନମଣ୍ଡଳ'ର ପ୍ରଥମ ଖଣ୍ଡ ଉନ୍ମୋଚନ କରି ଲେଖକ ବିନୋଦ କାନୁନଗୋଙ୍କୁ କହିଲେ ଯେ ବିନୋଦ ତମେ ଠିକ କାମ କଲ । ମନେରଖ

Digitized by srujan ka@gmail.com

Enemy of good is not bad, but better । ଏହାଠାରୁ ଆହୁରି ଭଲ କାମ କରିବାର ସ୍ୱପ୍ନ ଦେଖି ତମେ ଯଦି ବର୍ତ୍ତମାନର ସୁଯୋଗ ନ ନିଅ ତା' ହେଲେ ଭୁଲ୍ ହେବ । ଭୁଲ୍ ଯଦି ଥିବ, ଥାଉ । ପାଇଓନିଅରିଂ କଲେ ଭୁଲ୍ ରହିବା ସ୍ୱାଭାବିକ । ପରବର୍ତ୍ତୀ ପିଢ଼ୀ ତାହାର ସଂଶୋଧନ କରିବେ । ବ୍ୟସ୍ତ କାହିଁକି ?

ମାୟାଧର ମାନସିଂହ, ରାଧାମୋହନ ଗଡନାୟକ ଏବଂ ଅଧ୍ୟାପକ ରାଧାନାଥ ରଥଙ୍କୁ ନେଇ ସରକାର ଏକ କମିଟି ଗଠନ କଲେ ସ୍କୁଲମାନଙ୍କର ଲାଇବ୍ରେରୀ ପାଇଁ ବହି ମନୋନୟନ କରିବା ସକାଶେ । ଏ ତିନିଙ୍କ ଭିତରେ କମନ୍ ଫାକ୍ଟର ହେଲା ମାନସିଂହ ଓ ଗଡନାୟକ ବନ୍ଧୁ, ମାନସିଂହ ଓ ରାଧାନାଥବାବୁ ପାରିକୁଦ ଅଞ୍ଚଳର । କମିଟି ମନୋନୟନ କଲେ ବହି । ନିଜ ବହିମାନଙ୍କୁ ତ ମନୋନୀତ କଲେ । ଏହାଛଡ଼ା ବହିର ଦାମକୁ ଅନେକ ଗୁଣ ବଢ଼ାଇଦେଲେ । ଅବଶ୍ୟ ଡକ୍ଟର ରାଧାନାଥ ରଥ ସେଥିରୁ ବହୁ ପରିମାଣରେ ମୁକ୍ତି ପାଇଥିଲେ କାରଣ ଦୁଇ ଚାରିଟା ବୈଠକପରେ ସେ ଚାଲିଗଲେ ଆମେରିକା ବର୍ଷକ ପାଇଁ । ବିଧାନସଭା ହୁଲସ୍ଥୂଳ ହେଲା ଏବଂ ସେ କମିଟିର ଅକାଳ ମୃତ୍ୟୁ ହୋଇଗଲା ।

ମାନସିଂହ ଲେଖିଲେ ଓଡ଼ିଆ ସାହିତ୍ୟର ଇତିହାସ ଇଂରାଜୀରେ । ଏହା ବୋଧହୁଏ ଇଂରାଜୀ ଭାଷାରେ ଓଡ଼ିଆ ସାହିତ୍ୟର ପ୍ରଥମ ଇତିହାସ । କିନ୍ତୁ ସେଥିରେ ମଧ୍ୟ ବିବାଦ ଦେଖାଗଲା । ଅବଶ୍ୟ ଏହି ଇତିହାସ ଜଣଙ୍କଦ୍ୱାରା ଲେଖାଯାଇଛି ତେଣୁ ପ୍ରକାଶିତ ମତ ହେଉଛି ତାଙ୍କର ଏବଂ ନିଜର ମତ ପ୍ରକାଶ କରିବାର ସ୍ୱାଧୀନତା ପ୍ରତ୍ୟେକ ବ୍ୟକ୍ତିର ରହିଛି । ଏଇ ବହି ସଂପର୍କରେ ବିବାଦ କେବଳ ତୀବ୍ର ହେଲାନାହିଁ । ଶାଳୀନତା ସୌଜନ୍ୟର ବନ୍ଧ ବି ମାନିଲା ନାହିଁ । ମାୟାଧର ମାନସିଂହଙ୍କର ଉକ୍ତ ପୁସ୍ତକର ଅନେକ ଅବତାରଣା ସହିତ ମୁଁ ଏକମତ ନୁହେଁ । କିନ୍ତୁ ମତ ପ୍ରକାଶର ସ୍ୱାଧୀନତା ତାଙ୍କର ।

ବିକ୍ଷୁବ୍ଧ ମାୟାଧର ମାନସିଂହ କଳିଙ୍ଗ ପତ୍ରିକାରେ ଏକ ଚାରିଧାଡ଼ିଆ କବିତା ସେ ଆପଣାର କ୍ଷୋଭ ପ୍ରକାଶ କରି ଲେଖିଲେ ଯେ ସାହିତ୍ୟ ଚର୍ଚ୍ଚା କରି ଯାହା ପାଇବାର କଥା ପାଇଲି । ଆଉ ଅନୁରୋଧ କରନ୍ତୁ ନାହିଁ ଲେଖା ପାଇଁ । ମାନସିଂହ ନିଶ୍ଚିତ ଭାବରେ ସବୁ ତରୁଣଙ୍କର କବି । ଯୌବନ ଲହଡ଼ି ମାରୁଥିବା ଦିହରେ କେଉଁ ପୁଅଝିଅ ତାଙ୍କୁ ନ ପଢ଼ି ରହିପାରିବ ? ମାୟାଧର ମାନସିଂହଙ୍କର ପ୍ରାୟ ସବୁ ବହି ମୁଁ ପଢ଼ିଛି । କିନ୍ତୁ 'ହେମଶସ୍ୟ'... 

ମାୟାଧର ମାନସିଂହ ଉତ୍ତର ଜୀବନରେ ବୌଦ୍ଧ ଧର୍ମାବଲମ୍ବୀ ହୋଇ ଯାଇଥିଲେ । ବିଶେଷତଃ ଏକ ମୋଟର ଦୁର୍ଘଟଣା ପରେ । ଉଇଲରେ ଲେଖି ଯାଇଥିଲେ ଯେ କନ୍ୟା ହିଁ ତାଙ୍କର ମୁଖାଗ୍ନି ଦେବ । ଦୁର୍ଭାଗ୍ୟବଶତଃ ତାଙ୍କର ସବୁଠାରୁ ଘନିଷ୍ଠ ବନ୍ଧୁ ରାଧାମୋହନ ଗଡ଼ନାୟକଙ୍କ ସହିତ ତାଙ୍କର ଅପଡ଼ ହୋଇଯାଇଥିଲା ।

Digitized by srujan ka@gmail.com

ମାୟାଧର ମାନସିଂହ ଥିଲେ ଯୌବନର କବି, ପୂର୍ଣ୍ଣମୀର କବି । ତାଙ୍କର ପରଲୋକ ହୋଇଗଲା ଏକ କୁମାର ପୂର୍ଣ୍ଣମୀରେ । କିନ୍ତୁ ସେଦିନ ପ୍ରକୃତି କରାଳ ରୂପ ଧାରଣ କରିଥିଲା । ବର୍ଷା ଓ ପବନ ତୁହାକୁ ତୁହା । ପ୍ରାୟ ସନ୍ଧ୍ୟାବେଳକୁ ତାଙ୍କର ପରଲୋକ ହୋଇଗଲା ଏବଂ 'ସମାଜ'ର ସଂପାଦକ ୰ ରାଧାନାଥ ରଥ ତାଙ୍କର ମରଦେହକୁ ତାଙ୍କ ଗାଡ଼ିରେ ନେଇ ଆସିଥିଲେ ଥୋରିଆସାହି ଘରକୁ । ମୁଁ ସେଠାରେ ପହଞ୍ଚିଲା ବେଳକୁ ବାଟଯାକ ଆଣ୍ଠୁଏ ପାଣି । ବାରଣ୍ଡାରେ ଏକ ପଟାଖଟ ଉପରେ ଶୋଇଛନ୍ତି ମାୟାଧର ମାନସିଂହ । ଧଳା ଚଦରଟିଏ ପଡ଼ିଛି ଖଟଉପରେ । ଉପସ୍ଥିତ ଅଛନ୍ତି କିଛି ବ୍ୟକ୍ତି । କେହି ବ୍ୟସ୍ତ ନୁହନ୍ତି । କେବଳ ଜଣେ ଦୌଡ଼ାଦୌଡ଼ି କରୁଛି । ସେ ହେଉଛନ୍ତି ଅରିଜିତ ପଶାୟତ (ବର୍ତ୍ତମାନର ଦିଲ୍ଲୀ ହାଇକୋର୍ଟର ମୁଖ୍ୟ ବିଚାରପତି) । ସେ ମାନସିଂହଙ୍କ ପୁତୁରା ।

ସାଧାରଣତଃ କେହି ମରିଗଲେ ବା ଅସୁସ୍ଥ ହେବାର ଖବର ପାଇଲେ ମୁଁ ସେଠାରେ ପହଞ୍ଚେ । ସେ କେଉଁ ଧର୍ମ, କେଉଁ ଜାତି, କେଉଁ ଦଳ, କେଉଁ ବିଭାଗର ସବୁକୁ ମୁଁ ବିଚାର କରିନାଇଁ । ମୃତ୍ୟୁପରେ ସେମାନଙ୍କ ପାଇଁ 'ଶ୍ରଦ୍ଧାଞ୍ଜଳି' ଲେଖିଲାବେଳେ ମୁଁ ଦିବଙ୍ଗତ ଜୀବନର ଆସ୍ତି-ମୂଳକ ଦିଗ କେବଳ ବିଚାର କରି ଆସିଛି । ନାସ୍ତିମୂଳକ ଦିଗର ବିଚାର କରିନାହିଁ । ଯିଏ ଯାଇଛି, ସେ କିପରି ଭାବରେ ଆମକୁ ଅନୁପ୍ରାଣିତ କରିଯାଇଛି ତାହା ହିଁ ହେଜିଛି, ଲେଖିଛି । ମୋ ମତରେ ଶ୍ରଦ୍ଧାଞ୍ଜଳି ଏକ ଐତିହାସିକ କଳନା ବା Historical assesment ନୁହେଁ । ଏହା ଏକ ଟ୍ରିବିଉଟ୍ (Tribute) ମାତ୍ର । କା'ର ଜୀବନର ନାସ୍ତିମୂଳକ ଦିଗ ନିଶ୍ଚୟ ଅଛି । କାହାର ନାଇଁ ? ଯେଉଁମାନେ ଭଗବତ୍ ବିଶ୍ୱାସୀ ସେମାନେ ଏକମତ ହେବେ ସେ ସ୍ୱୟଂ ଭଗବାନଙ୍କ ଦେହରେ ବି କଳଙ୍କ ଅଛି, ଥିଲା । ତେଣୁ ଡ୍ରେନ ଇନସ୍‌ପେକ୍ଟର କାମ କରି ଲାଭ କ'ଣ ?

ଜୀବନରେ ଦୁଇହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତିଙ୍କର ମରଦେହକୁ ମୁଁ ନେଇଛି ଶ୍ମଶାନକୁ ଏବଂ ଯଦି ଜୀବନରେ କିଛି ପୁଣ୍ୟ କରିଥାଏ ତା'ହେଲେ ତାହା ମୋର ସବୁଠାରୁ ବଡ଼ ପୁଣ୍ୟ ବୋଲି ବିଚାର କରିଛି ।

ଏହା ସ୍ୱାର୍ଥହୀନତା ନୁହେଁ । ପରିବାରରେ କିଏ ମରିଗଲେ ହଠାତ୍ ସମସ୍ତେ ଅସହାୟ ମନେ କରନ୍ତି । ମୋର ବି ସେଇଆ ହୁଅନ୍ତା, ହୋଇଛି ମଧ୍ୟ । ମୁଁ ସେମାନଙ୍କ ପାଖରେ ଠିଆ ହେଲେ ଦୁଃସମୟରେ, ସେମାନେ ମଧ୍ୟ ଠିଆ ହେବେ ମୋ ପାଖରେ । ଏଇ ସ୍ୱାର୍ଥପରତା ମୋ ପାଇଁ କାମ କରିଛି ସବୁବେଳେ ଏବଂ ମୁଁ ଠିଆ ହୋଇଛି ସେଇ ପରିବାର ପାଖରେ, ଯାହାଙ୍କର କେହି ମରିଯାଇଛି ।

ମୋର ବୋଉର ମୃତ୍ୟୁ ମୁଁ ଦେଖିନାହିଁ । କିନ୍ତୁ ବାପା, ଦାଦା, ସାନଭାଇ ଏବଂ ଆମ ସାଥିରେ ରହୁଥିବା ମୋ ସ୍ତ୍ରୀଙ୍କ ବଡ଼ ଭଉଣୀ ମନୋରମା (ଟିକିଅପା)ଙ୍କ କ୍ଷେତ୍ରରେ ସେଇଆ ଘଟିଛି । ବହୁ ବନ୍ଧୁ ଆସି ପହଞ୍ଚିଛନ୍ତି ଏବଂ ଅନ୍ତ୍ୟେଷ୍ଟିକ୍ରିୟାର ସବୁ ଦାୟିତ୍ୱ ନେଇ ଯାଇଛନ୍ତି ମୁଣ୍ଡ ଉପରକୁ ।

Digitized by srujan ka@gmail.com

ମୋର ମନେପଡୁଛି ଆଇ.ପି.ଏସ୍. ମେସ୍‌ରେ ମୋର ଆତ୍ମୀୟ ଶ୍ରୀ ବ୍ରଜମୋହନ ପଟ୍ଟନାୟକ (ଅବସରପ୍ରାପ୍ତ ପୁଲିସ ଅଫିସର) ଏକ ଭୋଜି ଦେଉଥାନ୍ତି । ତାଙ୍କର ନାତିଟିଏ ହୋଇଥାଏ । ପୁଅର ପୁଅ । ଭୋଜି ପୂର୍ବରୁ ବା ପରେ ମଦ୍ୟ ପରିବେଷଣ ଏକ ନୈମିତ୍ତିକ କଥା । ଯିଏ ଖାଇବ ଖାଉ, ନଖାଇବ ନଖାଉ । ପ୍ରାୟ ସମସ୍ତେ ଆସିଛନ୍ତି ନିଜର ଡ୍ରେସରେ । ନାରୀମାନେ ଆସିଛନ୍ତି ''ପାର୍ଟିକୁ ଯିବା ଡ୍ରେସ'' ପିନ୍ଧି । ଅଳଙ୍କାର ଏବଂ ଅତରର ବିରାଟ ସମାରୋହ । ଅନେକଙ୍କୁ ଚିହ୍ନି ହେଉନି ତାଙ୍କର ବିଚିତ୍ର ମେକଅପ ଯୋଗୁଁ । କେବଳ ମୁରୁକି ହସି ନମସ୍କାର କରିବା ହିଁ ସାର ହେଉଛି । ମୋ ଭଳି ଟ୍ରାଉଜର ପଂଝାବୀ ପିନ୍ଧା ବ୍ୟକ୍ତି ଖୁବ୍ କମ୍ ଥିଲେ ଏବଂ ବାରି ହୋଇ ପଡୁଥିଲେ ।

ସେଇ ଭିତରେ, ଜଣେ ବିଶିଷ୍ଟ ବ୍ୟକ୍ତି ଆସୁଥିଲେ ଗୋଟିଏ ପଟରୁ, ହାତରେ ହୁଇସ୍କି ଗ୍ଲାସ । ନିଶ୍ଚୟ ତିନି ଚାରି ରାଉଣ୍ଡ ହୋଇଗଲାଣି । କାରଣ ପାଟି ଟିକିଏ ଖନି ବାଜୁଛି । ପାଦ ଖୁବ୍ ସ୍ଥିର ନୁହେଁ । ସେ ମୋତେ ଦେଖି ହଠାତ୍ ପଚାରିଲେ– ଆପଣଙ୍କର ଆଜି ଏକ ''ଶ୍ରଦ୍ଧାଞ୍ଜଳି'' ପ୍ରକାଶିତ ହୋଇଛି । ଆପଣ ତ ଖୁବ୍ ଭଲ ଲେଖନ୍ତି । ମୁଁ ସବୁବେଳେ ପଢ଼େ । କିନ୍ତୁ ଯେଉଁ ବ୍ୟକ୍ତିଙ୍କ ଉପରେ ଆପଣ ଲେଖିଛନ୍ତି– ସେ ପରା ଆପଣଙ୍କର ବିରୋଧୀଲୋକ । ଆପଣ ଆପଣଙ୍କର ବନ୍ଧୁମାନଙ୍କ ଉପରେ ଲେଖୁଛନ୍ତି । ବିରୋଧୀମାନଙ୍କ ଉପରେ ବି ଲେଖୁଛନ୍ତି ! ବିଚିତ୍ର ମଣିଷ ଆପଣ !

ମୁଁ ତାଙ୍କୁ ବିନୀତ ଭାବରେ କହିଲି ଯେ ଆପଣ ଠିକ୍ କହିଛନ୍ତି । ମୋର ମତାନ୍ତର ବହୁତ ବ୍ୟକ୍ତିଙ୍କ ସହିତ, କିନ୍ତୁ ମନାନ୍ତର ତ କାହାରି ସହିତ ନାହିଁ !

କଣ କହିଲେ, କଣ କହିଲେ ? ସେ ଭଦ୍ରଲୋକ ପଚାରିଲେ । ଆଉ ଥରେ କହିଲେ, ଆଉ ଥରେ କହିଲେ ?

ତାଙ୍କୁ ତ ନିଶା ଲାଗିଥିଲା । ମୋ କଥା ତାଙ୍କର ନିଶାକୁ ବଢ଼ାଇଦେଲା ହଠାତ୍ । ତା' ପରେ ଦେଖିଲି ସେ ମୋ ଗୋଡ଼ତଳେ ଶୋଇ ଯାଇଛନ୍ତି ଏବଂ କହି ଚାଲିଛନ୍ତି– ମତାନ୍ତର ବହୁତ, ମନାନ୍ତର କିନ୍ତୁ ନାହିଁ ! ବାଃ ! ଆପଣ ମୋତେ ବେଦବାକ୍ୟ ଶିକ୍ଷା ଦେଲେ ଆଜି । ଆପଣ ମୋର ଗୁରୁ ଆଜିଠାରୁ ।

ସେ ଉଠି ଠିଆ ହେଲେ ଏବଂ ଚାଲିଗଲେ ସେଠାରୁ– ମତାନ୍ତର ବହୁତ, କିନ୍ତୁ ମନାନ୍ତର ନାହିଁ ! ଘୋଷି ଘୋଷି ଚାଲିଲେ ସେ ।

ଖାଲି ହୋଇଥିବା ହୁଇସ୍କି ଗ୍ଲାସ ପଡି ରହିଥିଲା ପଛରେ ,ମାଟି ଉପରେ । ସମସ୍ତେ ଅନେଇ ଥିଲେ ।

ଶବ ପାଖରେ ପହଞ୍ଚିଲା ପରେ ସବୁବେଳେ କେତେ ଗୁଡିଏ ପ୍ରଶ୍ନ ପଚାରିଥାଏ ମୁଁ । କାହାକୁ ଖବର ଦିଆଯାଇଛି, କାହାକୁ ଦେବାକୁ ହେବ ? ଶବଦାହ କେତେବେଳେ ହେବ ଏବଂ

Digitized by srujan ka@gmail.com

କେଉଁଠି ହେବ ? ଏ ସବୁ ପଚାରିବା କ'ଣ ନିଃସ୍ୱାର୍ଥପରତା ନା ମାନବିକତା ? ମୋତେ ଏ ପ୍ରଶ୍ନ ଘାରିଛି । କାରଣ ଏହି ପ୍ରକାର କାମ ପାଇଁ ମୋତେ ପ୍ରଶଂସା ମିଳିଛି ଅନେକ । ଏପରିକି ଅନେକ ଲୋକ ମରିବା ପୂର୍ବରୁ ଇଚ୍ଛା ପ୍ରକାଶ କରି ଯାଇଛନ୍ତି ଯେ ସେ ମରିଗଲେ ପ୍ରଥମେ ମୋତେ ଖବର ଦେବାପାଇଁ ଏବଂ ମୁଁ କୁଆଡ଼େ ସବୁ ବୁଝିବି ତା'ପରେ !

ଅଧ୍ୟାପକ ବନ୍ଧୁ କ୍ଷେତ୍ରମୋହନ ଶତପଥୀ ସେଇଆ କହିଥିଲେ ତାଙ୍କର ପରିବାରକୁ । କ୍ଷେତ୍ରମୋହନ ବାବୁଙ୍କ ସହିତ ପରିଚିତି ଛାତ୍ରାବସ୍ଥାରୁ । ସେ ମୋର ସିନିଅର ଥିଲେ ଏବଂ ସୋସାଲିଷ୍ଟ ପାର୍ଟିର ଜଣେ ଛାତ୍ରନେତା ଥିଲେ । ପରବର୍ତ୍ତୀ କାଳରେ ଅଧ୍ୟାପକ ହୋଇ ସେ କିଛି କାଳ ଅଧ୍ୟାପକମାନଙ୍କର ନେତା ମଧ ଥିଲେ । ତାଙ୍କ ସହିତ ମତଭେଦ ବହୁତ କିନ୍ତୁ ବ୍ୟକ୍ତିଗତ ବନ୍ଧୁତା ଅତୁଟ । ତାଙ୍କୁ ଦେଖାଯାଏ ଭଗବତୀ ଚରଣ ପାଣିଗ୍ରାହୀଙ୍କ ମୃତ୍ୟୁଶଯ୍ୟା ପାଖରେ ୧୯୪୩ ମସିହାରେ । ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ମତଭେଦ କଥା ସମସ୍ତେ ଜାଣନ୍ତି । କିନ୍ତୁ ଏହା ବ୍ୟକ୍ତିଗତ ସଂପର୍କକୁ ଆଦୌ ମଳିନ କରିନାହିଁ ବା ସ୍ପର୍ଶ ମଧ କରିନାହିଁ । ଅନନ୍ତ ପଟ୍ଟନାୟକ-ଗୁରୁଚରଣ ପଟ୍ଟନାୟକଙ୍କ ପରିବାର ସହିତ କ୍ଷେତ୍ରମୋହନବାବୁଙ୍କ ଆତ୍ମୀୟତା ତାହାର ଏକ ଉଦାହରଣ ମାତ୍ର । କ୍ଷେତ୍ରମୋହନବାବୁ ସବୁବେଳେ ଚାହୁଁଥିଲେ ଲୋକଙ୍କ ପାଇଁ କିଛି ଗୋଟାଏ କରି ଯିବାପାଇଁ । ପ୍ରତ୍ୟେକ କାର୍ଯ୍ୟକ୍ରମ ସେମିନାର ଏପରିକି କଟକ ନଗରର ସହସ୍ର ବାର୍ଷିକୀ ପାଳନ ସମୟରେ ତାଙ୍କର ସେଇ ପ୍ରଶ୍ନ- ଲୋକଙ୍କ ପାଇଁ ଏହା କିପରି ଉପକାରରେ ଆସିବ ?

ହଠାତ୍ ଜଣାପଡ଼େ ଯେ ସେ କ୍ୟାନସର ରୋଗରେ ପୀଡ଼ିତ । ଚିକିତ୍ସା ପାଇଁ ଯାଆନ୍ତି ଦିଲ୍ଲୀ । ଫେରି ମୃତ୍ୟୁକୁ ଅପେକ୍ଷା କରନ୍ତି । ସେଦିନ ତାଙ୍କର ମରଦେହ ପାଖରେ ବସି ମୋର ସବୁ ଦିବଙ୍ଗତ ବନ୍ଧୁମାନଙ୍କ କଥା ମନେପଡୁଥିଲା । ମୋର ଚିରାଚରିତ ପ୍ରଶ୍ନ ପଚାରିଲା ବେଳେ ମୋର ମନେ ପଡୁଥିଲା ମାୟାଧର ମାନସିଂହଙ୍କ କଥା ।

ଶବ କେତେବେଳେ ଦାହ ହେବ ?

ଉତ୍ତର-ଆଜି ରାତିରେ । କାରଣ କାଲି ପର୍ଯ୍ୟନ୍ତ କାହାକୁ ଅପେକ୍ଷା କରି ହେବ ନାହିଁ ।

କାହାକୁ ଖବର ଦିଆଯାଇଛି ?

ଉତ୍ତର-କାହାକୁ ଦିଆଯିବ, ଏତେ ରାତିରେ ଏଇ ପାଗରେ ? ଦାହ କେଉଁଠି ହେବ ?

ଉତ୍ତର-ଖାନନଗର । ସତୀଚଉରା ଦୂର ହେବ । ବିଭିନ୍ନ ଅନୁଷ୍ଠାନ, ବ୍ୟକ୍ତିମାନଙ୍କୁ ଖବର ଦିଆଯିବ ନାହିଁ ?

ଉତ୍ତର-ଏତେ ରାତିରେ କାହାକୁ ଖବର ଦେବା ? କ'ଣ ବି ଲାଭ ?

ଉପରମହଲାକୁ ଉଠିଲି । ଫୋନ କରିବା ପାଇଁ । ହେମଲତା, ମାନସିଂ ଏବଂ ଝିଅ ବସିଛନ୍ତି ଗୋଟାଏ କଣରେ । ଅନେକ ସ୍ତ୍ରୀ ଲୋକ ଅଛନ୍ତି ସେଠି । ବାଳିକା, ଯୁବତୀ, ବିଗତ

Digitized by srujan ka@gmail.com

ଯୌବନା । ସେମାନେ କିନ୍ତୁ କେହି ' ଚାନ୍ଦିନୀ ରାତି ଉଠିଥିଲା ମାତି'' ବିଷୟରେ କଥା ହେଉନାହାନ୍ତି । ''କୁମାର ଉତ୍ସବଟା ମାଡ଼ ଖାଇଗଲା ଏଇ ପାଗରେ'' ଏଇ ବିଷୟରେ କଥା ହେଉଛନ୍ତି । କେବଳ ଉତ୍କଳ ସାହିତ୍ୟ ସମାଜର ତତ୍‌କାଳୀନ ସଂପାଦକ ବନ୍ଧୁ ୰ ବିଚିତ୍ରାନନ୍ଦ କରଙ୍କୁ ଫୋନ କରି ଓହ୍ଲାଇଲି ତଳକୁ ।

ତଳେ ଆସି ପହଞ୍ଚିଲା ବେଳକୁ ପଡିଛି ପଞ୍ଚମ ବେତନ କମିଶନର ସୁପାରିଶ କଥା ଏବଂ କ୍ଲୁଣ୍ଟେଡ କିପରି ମିଳିତ ଜାତିସଂଘର ଟେବୁଲରେ ଜୋତାପିଟି ଶବ୍ଦ କଲେ ସେଇକଥା ।

ମୋତେ ବି କେହି ଜଣେ ସେଇ ପ୍ରଶ୍ନ ପଚାରିବାର ମନେ ପଡୁଛି । ମୁଁ ତାଙ୍କୁ କିନ୍ତୁ ଉତ୍ତର ଦେଇଥିଲି ଯେ ମୋର ବର୍ତ୍ତମାନ କେବଳ ମନେ ପଡୁଛି –

ଫେରିବା ବହୁତ ବନ୍ଧୁ ପୁଣି ଅନ୍ଧକାରେ,
ଫେରିବାକୁ ହେବ ସତେ ହାୟ ଏ ଜୀବନ !
ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ
ଜୀବନର ହାହାକାର, ପ୍ରାଣର ଦହନ ।

ଦେହ ଅସୁସ୍ଥ ଥିଲା । ମନ ବିକ୍ଷାକ୍ତ ହୋଇଯାଇଥିଲା । ଅରିଜିତଠାରୁ ବିଦାୟ ନେଇ ଆସିଥିଲି ଲୁହ ଭରା ଆଖିରେ । ସକାଳ ପାହିଲାବେଳକୁ ସମସ୍ତେ ଜାଣିଲେ ଓଡ଼ିଶାର ଲବ୍ଧପ୍ରତିଷ୍ଠ କବି ମାୟାଧର ମାନସିଂହ ଆଉ ନାହାନ୍ତି । କିନ୍ତୁ ତାଙ୍କ ମରଦେହ ପୋଡ଼ି ପାଉଁଶ ହୋଇ ସାରିଛି ଗଲା ରାତିରୁ ।

ମାୟାଧର ମାନସିଂହ ବୌଦ୍ଧଧର୍ମାବଲମ୍ବୀ ହୋଇଯିବା ପରେ ଆମେ କରିଥିଲୁ ଆନ୍ତର୍ଜାତିକ ବୌଦ୍ଧ ଓ ଜୈନ ଦର୍ଶନ ସେମିନାର, ଲଳିତଗିରିର ଖନନ ଇତ୍ୟାଦି । ଦିନେ ମାୟାଧରବାବୁ ତାଙ୍କ ଝିଅକୁ ଧରି ହାଜର ଆମ ଘରେ । ମୁଁ ବିସ୍ମିତ ହେଲି । ସେ ତ ଭଗବତୀ ଚରଣ ପାଣିଗ୍ରାହୀଙ୍କ ବନ୍ଧୁ । ''ମୁଁ ତୁମକୁ ପଚାରିବାକୁ ଆସିଛି ଯେ ତମେ ହଠାତ୍ ଏଇ ଦର୍ଶନ ପ୍ରତି ଆକୃଷ୍ଟ ହେଲ କିପରି ?

ସାହସ ବାନ୍ଧି ପଚାରିଲି ''ମୁଁ ଯଦି ଆପଣଙ୍କୁ ସେଇ ପ୍ରଶ୍ନ ପଚାରେ ଯେ ଧୂପ, ହେମଶସ୍ୟ ପୂଜାରିଣୀର ଲେଖକ କଣ କାମନାର ତୃପ୍ତି ପରେ ନିର୍ବାଣର ସନ୍ଧାନରେ ନା କାମନାର ବିନାଶରେ ନିର୍ବାଣର ସନ୍ଧାନରେ ?''

ସେ ମୋତେ କୁଣ୍ଢାଇ ପକାଇଲେ । ଆଖିରୁ ତାଙ୍କର ଲୁହ ଧାର ଧାର ବୋହିଗଲା । ତା' ପରେ ସେ ଆସିଛନ୍ତି ଅନେକବାର, ମୁଁ ବି ତାଙ୍କ ପାଖକୁ ଯାଇଛି ଅନେକବାର ।

ମାୟାଧର ମାନସିଂହ ଥିଲେ 'ଝଙ୍କାର'ର ପ୍ରତିଷ୍ଠାତା ସଂପାଦକ ମଣ୍ଡଳୀରେ ଅନ୍ୟତମ । କିନ୍ତୁ ତାଙ୍କର ମହତାବବାବୁଙ୍କ ସହିତ ପଡ଼ିଲା ନାହିଁ ଏବଂ ତାଙ୍କୁ ଦିନେ ମହତାବବାବୁ ଅପମାନ ସହ ବିଦା କରିଦେଲେ ପ୍ରଜାତନ୍ତ୍ର ହତାରୁ । କୌଣସି କାରଣରୁ ତାଙ୍କର ରାଧାନାଥ ରଥଙ୍କ ସହ

Digitized by srujan ka@gmail.com

ପଡୁ ନଥିଲା । ମାୟାଧର ମାନସିଂହ ଜଣେ ମିସ୍-ଅଣ୍ଡରଷ୍ଟୁଡ ମଣିଷ ଭାବରେ ବିଦାୟ ନେଲେ ପୃଥିବୀରୁ ।

୧୯୪୬-୪୮ ମସିହାର କଥା । ନୂଆ ରାଜଧାନୀ ତିଆରି ହୋଇ ନଥାଏ । ଦିନେ ମୋ ଭାଇ (ରମାବଲ୍ଲଭ) ରାଧାମୋହନ ଗଡ଼ନାୟକ, ମାୟାଧର ମାନସିଂହ ଏବଂ ଅନ୍ୟ କେତେଜଣ ସାଙ୍ଗ ହୋଇଗଲୁ ଲିଙ୍ଗରାଜ ମନ୍ଦିର, କେଦାରଗୌରୀ ପ୍ରଭୃତି ଦେଖିବା ପାଇଁ । ଭାଇ ମୋତେ ସାଙ୍ଗରେ ନେଇଗଲେ । ସେମାନେ ସମସ୍ତେ ମୋଠାରୁ ବୟସରେ ବହୁତ ବଡ଼ । କେବଳ ମୁଁ, ମୋର ଦୁଇଜଣ ସହପାଠୀ ବୟସରେ ସାନ । ପ୍ରାୟ ଏକା ବୟସର । ବୁଲି ବୁଲି ଫେରି ରେଳବାଇ ଷ୍ଟେସନରେ ପହଞ୍ଚିଲା ବେଳକୁ ଗାଡ଼ି ଛାଡ଼ି ଦେଇଛି । ରାତି ଦୁଇଟାରେ ପରବର୍ତ୍ତୀ ଗାଡ଼ି । ବାଧ ହୋଇ ରେଳବାଇ ୱେଟିଂ ରୁମ୍‌ରେ ଆମେ ପ୍ରାୟ ବାରଚଉଦଜଣ ବସିଲୁ ଟ୍ରେନ ଅପେକ୍ଷାରେ । ବଡ଼ମାନେ ଗଳ୍ପ ଆରମ୍ଭ କଲେ ଏବଂ ଗଳ୍ପ ଆସି ପହଞ୍ଚିଲା ମାୟାଧର ମାନସିଂହଙ୍କ ବାଲ୍ୟଜୀବନର ପ୍ରେମ କାହାଣୀ ସଂପର୍କରେ ।.ସେମାନେ ସବୁ ପଚାରିଲେ ମାୟାଧର ମାନସିଂହଙ୍କୁ ତାଙ୍କ କାହାଣୀ କଥା । 'ଧୂପ'ତ ସମସ୍ତେ ପଢ଼ିଛନ୍ତି, ସମସ୍ତେ ଆଗ୍ରହର ସହିତ କାନ ପାତିଲେ । ଆମେ ଛୋଟମାନେ ଘୁଞ୍ଚିଗଲୁ ଘରର ଗୋଟିଏ କଣକୁ, ବାଧ ହୋଇ । ଶୋଇବାର ଛଳନା କଲୁ । କିନ୍ତୁ କାନ ଥାଏ ସେଇଠି ।

ମାୟାଧର ବାବୁ କହି ଚାଲିଲେ । ରୋମାଞ୍ଚକର ସେ କାହାଣୀ । କିନ୍ତୁ କିଛି ମନେନାହିଁ ମୋର ସେ କଥା ସବୁ । ଏତିକି ମନେ ଅଛି । ''ସଂପର୍କ ଥିଲା ମୁଖ୍ୟତଃ ମନର, ଦେହର ନୁହେଁ ।'' ବୁଝିବା ପାଇଁ ବୟସ ହୋଇ ନଥିଲା ।

ମାୟାଧର ମାନସିଂହଙ୍କ କ୍ଷେତ୍ରରେ ଯେପରି ଘଟିଲା ଠିକ୍ ସେଇପରି ଘଟିଲା ପ୍ରସିଦ୍ଧ ନାଟ୍ୟଶିଳ୍ପୀ, ନାଟ୍ୟ ନିର୍ଦ୍ଦେଶକ ଶମ୍ଭୁ ମିତ୍ରଙ୍କ କ୍ଷେତ୍ରରେ । ଆଗରୁ ତାଙ୍କର ସ୍ତ୍ରୀ ପ୍ରଖ୍ୟାତ ନାଟ୍ୟ ଅଭିନେତ୍ରୀ ତୃପ୍ତି ମିତ୍ର ଯାଇ ସାରିଥିଲେ । ଶମ୍ଭୁ ମିତ୍ର ଅଚଳ ହୋଇ ଯାଇଥିଲେ । ଗୋଡ଼ ଭାଙ୍ଗି ଯାଇଥିଲା । ସେ ଉଇଲରେ ଲେଖି ଯାଇଥିଲେ ଯେ ତାଙ୍କର ମୃତ୍ୟୁ ଖବର କାହାକୁ ଦିଆଯିବ ନାହିଁ ଏବଂ ସାଙ୍ଗେ ସାଙ୍ଗେ ପୋଡ଼ି ଦିଆଯିବ । ବଙ୍ଗଳା ଓ ଭାରତବର୍ଷର ଜନସାଧାରଣଙ୍କୁ କୃତଜ୍ଞତା ଜଣାଇ ସେ ଲେଖିଥିଲେ ଯେ ମୁଁ ସେମାନଙ୍କ ପାଖରେ କୃତଜ୍ଞ । ସେମାନେ ମୋତେ ଆପଣାର ସ୍ନେହ ଓ ସଦିଚ୍ଛାରେ ପୋତି ଦେଇଛନ୍ତି । କିନ୍ତୁ ମୋର ମରଦେହକୁ ଅଯଥାରେ ସମ୍ମାନ ଦେଖାଇବାକୁ ପସନ୍ଦ କରେ ନାହିଁ । ତେଣୁ ମୋର ମରଦେହକୁ 'ନନ୍ଦନ'କୁ ନେବାର ଆବଶ୍ୟକତା ନାହିଁ ବା ତା ଉପରେ ଫୁଲମାଳ ଦେବାର କୌଣସି ଆବଶ୍ୟକତା ନାହିଁ । କେଉରତାଲା ଶ୍ମଶାନର (Keeper) କିପର ଚମକି ପଡ଼ିଥିଲା ସେଇ ନିଝୁମ୍ ରାତିରେ ଶମ୍ଭୁ ମିତ୍ରଙ୍କ ନାମ ଶୁଣି ଏବଂ ତାକୁ ଏପରି ଭାବରେ ଦାହ କରାଯାଉଛି ଦେଖି । ବଙ୍ଗଳାର ନାଟ୍ୟଜଗତର ମଉଡମଣିଙ୍କ ଏ କିପରି ''ନାଟକୀୟ'' ବିଦାୟ ? ସ୍ତବ୍ଧ ବଙ୍ଗଳା ଜାତି । ଭାରତର ନାଟ୍ୟପ୍ରେମୀମାନେ ସକାଳେ ସେ ସଂବାଦ ଶୁଣିଲେ ଏବଂ ଜାଣିଲା ବେଳକୁ ତାଙ୍କର ମରଦେହ ପୋଡ଼ି ପାଉଁଶ ହୋଇସାରିଛି ।

Digitized by srujan ka@gmail.com

ତୃପ୍ତି ମିତ୍ର, ଶମ୍ଭୁ ମିତ୍ରଙ୍କ ସହିତ ବିଭିନ୍ନ କାର୍ଯ୍ୟକ୍ରମରେ ସାକ୍ଷାତ ହୋଇଛି । ତାଙ୍କ ଘରେ ବହୁବାର ଖାଇବାକୁ ପଡ଼ିଛି ସେମାନଙ୍କର ସାଦର ନିମନ୍ତ୍ରଣରେ । ଶମ୍ଭୁ ମିତ୍ର, ତୃପ୍ତି ମିତ୍ରଙ୍କ ସବୁ କଥାବାର୍ତ୍ତା ମଧ ନାଟକୀୟ । ତୃପ୍ତି ମିତ୍ରଙ୍କ ବଡ଼ ଭଉଣୀ ବିବାହ କରିଥିଲେ ବଙ୍ଗଳାର ବିଶିଷ୍ଟ ଓକିଲ ଶ୍ରୀ ସ୍ନେହାଂଶୁ ଆଚାର୍ଯ୍ୟଙ୍କୁ । ଦୁଇ ସତ୍ତ୍ୱ, ଦୁଇଭଉଣୀ ଉଭୟେ ଡେଡ଼ି କେଟେଡ଼ (Dedicated) ଆପଣାର କର୍ମରେ ଏବଂ ବିଶ୍ୱାସରେ ।

ମୋର ମନେ ପଡୁଚି ଶ୍ରୀ ସ୍ନେହାଂଶୁ ଆଚାର୍ଯ୍ୟ ଆସିଥାନ୍ତି କଟକ ରାମଚନ୍ଦ୍ର ରାମଙ୍କ ମୋକଦ୍ଦମା ଲଢ଼ିବା ପାଇଁ । ରାମଚନ୍ଦ୍ର ରାମ ଥିଲେ ଛାତ୍ରନେତା, ଅଭିନେତା ଏବଂ ପରେ ଜଣେ ପ୍ରସିଦ୍ଧ ଓକିଲ । ସେ ଏବଂ ରଘୁରାୟ (ଜରିପଡ଼ା ରାଜା ନାମରେ ଖ୍ୟାତ) ଠିଆ ହୋଇଥିଲେ ନିର୍ବାଚନରେ ଏବଂ ମାତ୍ର ପାଞ୍ଚୋଟି ଭୋଟ ବ୍ୟବଧାନରେ ରାମଚନ୍ଦ୍ର ରାମ ଜିତିଥିଲେ । ସେ ହାଇକୋର୍ଟର ଜଣେ ବିଶିଷ୍ଟ ଆଇନଜୀବୀ, କାଳେ କୋର୍ଟର ତାଙ୍କ ପ୍ରତି କିଛି ଦୁର୍ବଳତା ରହିଯିବ ଭାବି ରଘୁରାୟ ଓକିଲ ଦେଇଥିଲେ ବାର କାଉନସିଲର ସଭାପତି ଶ୍ରୀ ବାଞ୍ଛାନିଧି ମହାପାତ୍ର ଏବଂ ଶ୍ରୀ ରଙ୍ଗନାଥ ମିଶ୍ରଙ୍କୁ (ପରେ ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ଏବଂ ବର୍ତ୍ତମାନ ପାର୍ଲ୍ୟାମେଣ୍ଟ ସଭ୍ୟ) ରାମଚନ୍ଦ୍ର ରାମଙ୍କ ସପକ୍ଷରେ ଯୁକ୍ତି କରୁ କରୁ ତାଙ୍କ ଓକିଲ କହିଲେ ""Me Lord, while riding together in scotland, Lord Dauson told me, do you know Acharya, we do not decide cases, we simply dispose off them". ମୋ ପାଖରେ ବସିଥିଲେ ବିଶିଷ୍ଟ ଆଇନଜୀବୀ ମାଧବାନନ୍ଦ ଦାସ । ସେ ମୋର ଆଇନ ଶିକ୍ଷକ ଏବଂ ତାଙ୍କର ସ୍ତ୍ରୀ ମୋର ବଡ଼ବାପା ଝିଅ ଭଉଣୀ । ତାଙ୍କୁ ମୁଁ ପଚାରିଲି, ସାର୍ ଏପରି ଏକ ଉକ୍ତି ଦେଇଥିଲେ ତ ଆମ୍ଭମାନଙ୍କୁ କୋର୍ଟ ଅବମାନନାରେ ଅଭିଯୁକ୍ତ କରାଯାଇଥାନ୍ତା । ମାଧବାନନ୍ଦବାବୁ ବେଶ୍ ଉଇଟି (witty) ସେ ଦାନ୍ତକୁ ଚିପି ମୁରୁକି ହସି କହିଲେ ଯେ ବୁଝିଲ, Advocacy is very good if the judges are afraid of you. ମୋକଦ୍ଦମାରେ ରଘୁରାୟଙ୍କର ପରାଜୟ ହେଲା । ଯାହାକୁ ଇଂରାଜୀରେ କୁହାଯାଏ The Court was Carried away by Sri Acharya. ବାଞ୍ଛାନିଧିବାବୁ ପ୍ରବୀଣ ଆଇନଜୀବୀ । ଆପଣା ଶିଙ୍ଗରେ ମାଟି ତାଡ଼ି ସେ ପ୍ରତିଷ୍ଠିତ ଓକିଲ ହୋଇ ପାରିଥିଲେ । ସେ ଠଉରାଇ କହି ପକାଇଲେ ଯେ ରାମଚନ୍ଦ୍ର ରାମ ଯେହେତୁ ଏଇ ହାଇକୋର୍ଟରେ ଓକିଲ, ସେଇ କାରଣରୁ ତାଙ୍କ ପ୍ରତି କୋର୍ଟର ଗୋଟାଏ ଦୁର୍ବଳ କୋଣ ରହିପାରେ.... ତାଙ୍କ କଥା ସରିବାକୁ ନ ଦେଇ କୋର୍ଟରୁ ଉତ୍ତର ଆସିଲା, ଯଦି କାହାରି ରାମଚନ୍ଦ୍ର ରାମଙ୍କ ପ୍ରତି ଦୁର୍ବଳତା ରହିବାର କଥା ତା' ହେଲେ ତ ପ୍ରଥମେ ବାର୍‌ର ରହିବା ଉଚିତ ବା ତାଙ୍କ ସହକର୍ମୀ ଓକିଲମାନଙ୍କର ଏବଂ ତାହାକୁ ଖଣ୍ଡନ କରିବା ପାଇଁ ତ ଆପଣ ଦୁଇଜଣ ଦଣ୍ଡାୟମାନ... ଆଉ କିଛି କାହାର କହିବାର ନଥିଲା ।

Digitized by srujan ka@gmail.com

ଏଇଠି ଗୋଟିଏ କଥା ମନେ ପଡୁଛି । ସି.କେ.ଦପ୍ତରୀ ଭାରତର ଜଣେ ବିଶିଷ୍ଟ ଓକିଲ ଭାବରେ ପରିଚିତ । ତାଙ୍କର ହ୍ୟୁମର ଏବଂ ସାଟାୟାର ପାଇଁ ସେ ପ୍ରସିଦ୍ଧି ଲାଭ କରିଥିଲେ । କୌଣସି ଏକ କମ୍ପାନୀ ସହିତ ସଂପୃକ୍ତ ଥାଇ ମୋର ତାଙ୍କ ସହିତ କିଛି ପରିଚିତ ଥିଲା । ସେ କଟକ ଆସିବା ଖବର ପାଇ ମୁଁ ଯାଇଥିଲି କଚେରୀକୁ ତାଙ୍କୁ ଭେଟିବା ପାଇଁ । ସେ କୋର୍ଟରୁ ବାହାରି କହିଲେ Let us go to the Bar. ପ୍ରଥମତଃ ଓଡ଼ିଶା ହାଇକୋର୍ଟ ପାଖାପାଖି କୌଣସି ବାର୍ ନାହିଁ । ଦ୍ୱିତୀୟ କଥା ହେଉଛି ତାଙ୍କ ସାଙ୍ଗରେ ବାର୍‌କୁ ଯିବ କିଏ ? ସେତେବେଳେ କଟକର ବୁଢ଼ା ଓକିଲମାନେ ପ୍ରାୟ ପିଉ ନଥିଲେ । ଟୋକା ଓକିଲ ଭିତରୁ ଦପ୍ତରୀଙ୍କ ସାଙ୍ଗରେ ଯିବ କିଏ ? ଦପ୍ତରୀ ହସି ଦେଇ କହିଲେ I thought that Bar inside the Court is poor but it seems the Bar outside the Court is also poor.

ଦପ୍ତରୀ ଥରେ ସୁପ୍ରିମକୋର୍ଟରେ କୌଣସି ଏକ ମୋକଦ୍ଦମା ଯୁକ୍ତି କରୁଥିଲେ ଏବଂ କରିବା ଅବସରରେ ନଜିର ଦେବାପାଇଁ ଗୋଟିଏ ବହି ବଢ଼ାଇଲେ ବେଞ୍ଚକୁ । ଜଣେ ବିଚାରପତି ସେ ବହି ଭିତରେ ଏକ ଓଡଶ ଦେଖି ତାଙ୍କୁ କହିଲେ Mr. Dapthary a bug has travelled with the Book. ତୁରନ୍ତ ଉତ୍ତର ମିଳିଲା Me Lord, I can't help it. They have always travelled from Bar to the Bench. ବିଚାରକ ମଣ୍ଡଳୀ, ଓକିଲ, ଦର୍ଶକ ସମସ୍ତେ ହସରେ ଫାଟି ପଡ଼ିଲେ ।

ମାୟାଧର ମାନସିଂହଙ୍କର ମରଦେହକୁ ଖାନନଗରରେ ପୋଡ଼ିଲାବେଳେ ଆଉ ଏକ କବିଙ୍କ ଅନ୍ତ୍ୟେଷ୍ଟିକ୍ରିୟା ମନେପଡ଼େ । କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କର ପରଲୋକ ହୋଇଗଲା ବଡ଼ମ୍ବାରେ । ଶେଷ ଜୀବନ ତାଙ୍କର ହୋଇଗଲା ଦୁର୍ବିସହ । ଦୁଇଟି ପୁଅଙ୍କୁ ହତ୍ୟା କରାଗଲା । ଗୋଟିଏ ପୁଅ ପଳାତକ ହୋଇଗଲା । ସେ ଆଉ ଫେରିନାହିଁ । ସ୍ତ୍ରୀ ପାଗଳ ପ୍ରାୟ । ଗୋଟିଏ ଝିଅ ବିବାହ କରିଥିଲା ଟାଙ୍ଗୀରେ (ପୁରୀ ଜିଲ୍ଲା) ଜ୍ୱାଇଁ ବିମଳ କୁଷ୍ଠ ରୋଗାକ୍ରାନ୍ତ ହେଲା ଏବଂ ଜଣେ ଆଧୁନିକ ଚିନ୍ତାସମ୍ପନ୍ନ ହୋଇ ମଧ୍ୟ ସେ ରୋଗକୁ ଲୁଚାଇ ରଖିଲା । ଦ୍ୱିତୀୟ ଥର କଲେଜକୁ ପଢ଼ିବା ପାଇଁ ଆସିଲାବେଳେ ସେ ମୋର ସହପାଠୀ ଥିଲା ଏବଂ ପ୍ରଗତିଶୀଳ ଚିନ୍ତାଧାରାର ବ୍ୟକ୍ତି ଥିଲା, ତାଙ୍କର ପରଲୋକ ହୋଇଗଲା ଅକାଳରେ । ବଡ଼ ଝିଅ ବିଭା ହୋଇଛି ମୋର ବନ୍ଧୁ, ସହଯୋଦ୍ଧା ବଂଶୀଧର ପଟ୍ଟନାୟକଙ୍କୁ । ତା'ର ମଧ୍ୟ ପାଗଳାମୀ ଅଛି । ମନସ୍ତତ୍ତ୍ୱବିଦ୍‌ମାନେ କହନ୍ତି ଯେ Genius ବା ପ୍ରତିଭା ଏବଂ madness ବା ପାଗଳାମୀର ଅବସ୍ଥିତି ପାଖାପାଖି । ଏହା ସେଇ ପରିବାର ପ୍ରତି ପ୍ରଯୁଜ୍ୟ ଏକଦମ ପୂରାପୂରି । ବୈକୁଣ୍ଠବାବୁଙ୍କ ଅନ୍ୟତମ କନ୍ୟା ସୁନନ୍ଦା ପଟ୍ଟନାୟକଙ୍କୁ ସମସ୍ତେ ଜାଣନ୍ତି ଏବଂ ଜାଣନ୍ତି ସଙ୍ଗୀତ ହେଉଛି ତାଙ୍କର ସବୁ । ତାଙ୍କର ଆଉ ଗୋଟିଏ ଝିଅ ବିଭା କରିଥିଲା ମୋର ବନ୍ଧୁ ରବୀନ୍ଦ୍ରନାଥ ମହାନ୍ତିଙ୍କୁ । ଦୁଇ ପୁଅର ମାଆ, ତଥାପି ରବି ଓ ସେ ସ୍ୱତନ୍ତ୍ର ରହୁଛନ୍ତି ବିଗତ ବହୁ ବର୍ଷ ଧରି । ରବି ଜଣେ ପ୍ରଗତିଶୀଳ ଚିନ୍ତାର

Digitized by srujan ka@gmail.com

ଯୁବକ ଥିଲେ । ପାରିବାରିକ ବିପର୍ଯ୍ୟୟ ତାଙ୍କୁ ଟାଣିନେଲା ସତ୍ୟ ସାଇବାବାଙ୍କ ପାଖକୁ ଏବଂ ସେ ବର୍ତ୍ତମାନ 'ସତ୍ୟସାଇ ଆଶ୍ରିତ' । ଏ.ଡି.ଏମ୍. ଭାବରେ ଅବସର ନେଲାପରେ ସେ ବର୍ତ୍ତମାନ ରହୁଛନ୍ତି କଟକର ଫ୍ରେଣ୍ଡସ କଲୋନୀରେ । ସତ୍ୟସାଇ ଆଶ୍ରୟ ତାଙ୍କୁ ବିପର୍ଯ୍ୟସ୍ତ ଭିତରେ ଶାନ୍ତି ଓ ସ୍ଥିରତା ଦେଇଛି । ତେଣୁ ତାଙ୍କ ସହିତ ବିବାଦ ଲାଗେ ନାହିଁ ତାଙ୍କର ସତ୍ୟସାଇ ବିଶ୍ୱାସ ସଂପର୍କରେ ।

ବୈକୁଣ୍ଠବାବୁଙ୍କର ମରଦେହକୁ ବଡ଼ଘାରେ ନିଆଁ ଲଗାଇଲାବେଳେ ତାଙ୍କର ବନ୍ଧୁ କାଳିନ୍ଦୀଚରଣ ପାଣିଗ୍ରାହୀ କରୁଣ ଭାବରେ କାନ୍ଦୁଥିଲେ ଏବଂ କହୁଥିଲେ ବିଳାପ କଲାଭଳି ''ଆମେ ସବୁ କବିତା ଲେଖୁଥିଲୁ, କିନ୍ତୁ ଆମ ଭିତରେ ଯଦି କେହି କବିପ୍ରାଣ ଥିଲା ସେ ହେଉଛି ବୈକୁଣ୍ଠ ।''

କବି ବୈକୁଣ୍ଠନାଥ ଥିଲେ ମାର୍କ୍ସବାଦ-ଗାନ୍ଧୀବାଦ-ବୈଷ୍ଣବଧର୍ମର ସମନ୍ୱୟ । କିନ୍ତୁ କିଛି କାଳ ପରେ ତାଙ୍କର କବିତା ରହସ୍ୟବାଦରେ ପରିଚିତ ହୋଇଛି । ଚାରୋଟି ବିଷୟରେ ଏମ୍.ଏ.ପାଶ୍ କରିଥିଲେ । ଶିକ୍ଷକ, ପ୍ରଧାନଶିକ୍ଷକ, ଲେକ୍‌ଚରର୍, ରିକ୍ରୁଟିଂ ଅଫିସର ଇତ୍ୟାଦି ବହୁ ପ୍ରକାରର କାର୍ଯ୍ୟ ସେ କରିଛନ୍ତି । ''ମାଟିର ମଣିଷ'' ବହି ଥିଲା ମୋର ଅଷ୍ଟମ ଶ୍ରେଣୀରେ ପାଠ୍ୟ ପୁସ୍ତକ । ସେଥିରେ ଥିଲା- ବୈକୁଣ୍ଠନାଥ ପଟ୍ଟନାୟକଙ୍କର ''ମୂକ ଭଗବାନ'' କବିତା ବହିର ମୁଖବନ୍ଧ ଭାବରେ । ସେଇ କବିତା ଆମ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ନଥିଲା । କାରଣ ତା'ର ଦାର୍ଶନିକ ଚିନ୍ତା ଆମ ବୟସର ପିଲାଙ୍କ ପାଇଁ ବୋଧଗମ୍ୟ ହେବନାହିଁ ବୋଲି ବିଚାର କରାଯାଇଥିଲା । ମୁଁ କିନ୍ତୁ ସେ କବିତାଟିକୁ ମୁଖସ୍ଥ କରି ଦେଇଥିଲି । ପଞ୍ଚାବନ ବର୍ଷରୁ ଊର୍ଦ୍ଧ୍ୱ ସମୟ ବିତିଗଲାଣି । ତଥାପି ସେ କବିତା ମୋର ପ୍ରାୟ ପୂରା ମନେଅଛି ।

ବୈକୁଣ୍ଠବାବୁ ଆସିବା ପରଦିନ ମୁଁ ତାଙ୍କୁ ସେ କବିତା ମୋତେ ବୁଝାଇ ଦେବାପାଇଁ ଅନୁରୋଧ କଲି । ସେ କହିଲେ ଯେ ତମ ବୟସର ପିଲାମାନେ ବୁଝି ପାରିବାର ଥିଲେ ତାହା ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥାନ୍ତା ।

ମୁଁ ନଛୋଡ଼ବନ୍ଧା । ଆପଣ ଏହାର ଲେଖକ ! ଆପଣ ବୁଝାଇ ପାରିବେ ନାହିଁ ? ବୁଝାଇଲେ ବୁଝିଯିବି ।

କବି ବୋଧହୁଏ ଭାବବିହ୍ୱଳ ହୋଇ ଉଠିଲେ ସାନ ପିଲାଠାରୁ ଏଇଭଳି ଉକ୍ତି ଶୁଣି । ସବୁ କାର୍ଯ୍ୟକ୍ରମକୁ ବାତିଲ କରି ସେ ମୋତେ ବୁଝାଇବାକୁ ଲାଗିଲେ ତାହା ମୋ ପାଇଁ ବେଶି ବେଶି ଅବୋଧ ହୋଇ ଉଠିଲା । ମୁଁ କିନ୍ତୁ ତନ୍ମୟ ହୋଇ ଶୁଣୁଥିଲି । ସେ ବୁଝାଇ ଚାଲିଥିଲେ । ସେ ଆନନ୍ଦିତ ହୋଇ ବୁଝାଇବାକୁ ଲାଗିଲେ । କିନ୍ତୁ ତାହା ଟି.ଏସ୍.ଇଲିଅଟଙ୍କ 'ୱେଷ୍ଟଲ୍ୟାଣ୍ଡ'' (Wasteland) ବୟାନ ପରି ହେଲା । କଥିତ ଅଛି ଯେ ଇଲିଅଟଙ୍କ ଏହି ମହାନ୍ କାବ୍ୟକୁ କେହି ବୁଝିପାରିଲେ ନାହିଁ । ତେଣୁ ସେ ଏହାର ଏକ ବ୍ୟାଖ୍ୟା କଲେ ଭୂମିକା ଭାବରେ ଏବଂ ଦେଖାଗଲା

Digitized by srujan ka@gmail.com

ଯେ ତାହା କାବ୍ୟକୁ ଆହୁରି ଅବୋଧ କରିଦେଲା ।

ଆମେ ଥାଉଁ ବୁଢ଼ାରଜା କଲୋନୀରେ, ସେକ୍ରେଟେରିଏଟ କଲୋନୀରେ । ମୋର ଜଣେ ସଂପର୍କୀୟ ମାମୁଁ ୰ ନନ୍ଦ କିଶୋର ମହାନ୍ତିଙ୍କ ଘରେ । ସେ ସେକ୍ରେଟେରୀଏଟରେ ଚାକିରି କରୁଥିଲେ ଡାଇରିଷ୍ଟ-କିରାନୀ ବା ଏଇପରି କଣ ଗୋଟିଏ ଚାକିରି । କିନ୍ତୁ ଆପଣାର ସାମାଜିକତା ଯୋଗୁଁ ସେ ବହୁ ବଡ଼ ବଡ଼ ଅଫିସରଙ୍କଠାରୁ ଆରମ୍ଭ କରି ତଳ ପିଅନ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ପରିଚିତ ଥିଲେ । ଯେଉଁ ଲୋକର ସାହାଯ୍ୟ ଦରକାର ନନ୍ଦମାମୁଁ ନିଶ୍ଚୟ ସେଠାରେ ପହଞ୍ଚିଯିବେ । ମୋର ମନେ ପଡୁଚି । ୧ ୯ ୪ ୭ ମସିହା ବେଳକୁ ସେ କଟକର ବେପାରୀ ସାହିରେ ରହୁଥିଲେ । ବୁଢୁ (ସୁନନ୍ଦା ପଟ୍ଟନାୟକ) ତାଙ୍କ ପାଖରେ ରହୁଥିଲା । ମୁଁ କଲେଜରେ ପଢ଼ିବାକୁ ଆସି ଅନୁଗୋଳ ମେସ୍ (କଟକ ହୋଟେଲ ପାଖରେ ଏକ ଅମୁହାଁ ଗଳି)ରେ ରହୁଥାଏ । ନନ୍ଦମାମୁଁ ମୋ ଖବର ବୁଝିବାକୁ ଆସି ସେଇଠି ପହଞ୍ଚି ଦେଖିଲେ ଯେ ପାଞ୍ଚସାତ ଜଣ ଯୁବକ ଆଇନ ପଢୁଛନ୍ତି ସକାଳେ । ଦିନଯାକ ବେକାର । ସେ ସମ୍ଭାଳି ପାରିଲେ ନାହିଁ । ସେ ସମସ୍ତଙ୍କୁ ଗୋଟି ଗୋଟି କରି ନେଇ ବିଭିନ୍ନ ବିଭାଗରେ ସେକ୍ରେଟାରୀମାନଙ୍କୁ କୁହାବୋଲା କରି କିରାନୀ ଚାକିରିରେ ଭର୍ତ୍ତି କରିଦେଲେ । ସେମାନଙ୍କ ମଧ୍ୟରୁ ଅନେକ ଆଜି ପ୍ରତିଷ୍ଠିତ ବ୍ୟକ୍ତି । ନନ୍ଦମାମୁଁ ଅବସର ନେଇ ରହୁଥିଲେ ଶହୀଦନଗରରେ । ଶହୀଦନଗର ପୂଜା କମିଟିର ସେ ଥିଲେ ଜଣେ କର୍ମକର୍ତ୍ତା ମଧ୍ୟ । କିଛି ବର୍ଷ ତଳେ ତାଙ୍କର ପରଲୋକ ହୋଇଯାଇଛି ।

ବାପା ବୋଉ ରେଙ୍ଗାଲିରେ । ଆମେ ଦୁଇଭାଇ ବୁଢ଼ାରଜା କଲୋନୀରେ । ସେଇଠି ମୋର ଦେଖାହୁଏ ଭୈରବଚନ୍ଦ୍ର ମହାନ୍ତିଙ୍କ ସାଙ୍ଗରେ । ଏତିକିବେଳେ ସେଠାରେ ପହଞ୍ଚିଲେ ବୈକୁଣ୍ଠନାଥ ପଟ୍ଟନାୟକ, ଯୁଦ୍ଧପାଇଁ ସୈନିକ ରିକ୍ରୁଟିଙ୍ଗ ଅଫିସର ଭାବରେ । ଲଣ୍ଡନରେ ଖଣ୍ଡେ କାଗଜ ନ ଦେଲେ ସେ ପଢ଼ିପାରନ୍ତି ନାହିଁ । ଆଖିରେ ଯେପରି ସିଧାସଳଖ ଆଲୁଅ ନ ପଡିବ ଏବଂ ସେ ବିଷୟରେ ସେ ଏତେ ମେଟିକୁଲସ୍ ଯେ ସେ ଆସିବା ଜାଣି ସବୁ ଲଣ୍ଡନରେ କାଗଜ ଲଗାଗଲା ।

ସେ ଆସିଲେ । ଦଶବାର ଦିନ ରହିଲେ । ରିକ୍ରୁଟିଂ ହେଲା । ମୋର ଯାହା ମନେ ପଡୁଛି ସେ ବେଶ୍ ଫାସିବାଦ ବିରୋଧୀ ଥିଲେ ଏବଂ ଯୁଦ୍ଧର ସେଇ ସମୟରେ ଫାସିବାଦର ପରାଜୟ ଏକାନ୍ତ ଆବଶ୍ୟକ ଥିଲା, ଯଦିଓ ଆମେ ସବୁ ବ୍ରିଟିଶ ସାମ୍ରାଜ୍ୟବାଦ ଅଧୀନରେ ଥିବାରୁ ଆମ ପାଇଁ ସାମ୍ରାଜ୍ୟବାଦ କବଳରୁ ମୁକ୍ତି ମଧ୍ୟ ସେଇପରି ଆବଶ୍ୟକ ଥିଲା । ମୋର ମନେପଡୁଛି । କାହାର 'ସ୍ମୃତି ଚାରଣ'ରେ ଏହା ଉଲ୍ଲେଖ ଅଛି ମୋର ମନେପଡୁ ନାହିଁ । ସେ ଲେଖିଛନ୍ତି ଯେ ଷ୍ଟାଲିନଗ୍ରାଡ୍ ଯୁଦ୍ଧ ଚାଲିଛି । ପଣ୍ଡିତ ନେହେରୁ ବ୍ୟସ୍ତ ହୋଇ ପଚାରୁଛନ୍ତି କମ୍ୟୁନିଷ୍ଟ ପାର୍ଟିର ନେତା ପି.ସି. ଯୋଶୀଙ୍କୁ । ''କ'ଣ ପୃଥିବୀ ଅନ୍ଧକାରରେ ବୁଡିଯିବ ?'' ପି.ସି. ଯୋଶୀ ଉତ୍ତର ଦେଇ କହିଲେ ଯେ ମଣିଷଜାତିର ରକ୍ଷା ପାଇଁ ଏହା ବୋଧହୁଏ ସବୁଠାରୁ ମୂଲ୍ୟବାନ ବଳିଦାନ,

Digitized by srujan ka@gmail.com

କିନ୍ତୁ ମୋର ମନେହୁଏ ନାଜୀ ସୈନ୍ୟବାହିନୀଙ୍କୁ ଏଇଠାକୁ ଫେରିବାକୁ ପଡ଼ିବ । ସେଥିପାଇଁ ଯାହା ମୂଲ୍ୟ ଦରକାର ତା' ସୋଭିଏଟବାସୀ ଦେବେ ପୃଥିବୀକୁ ଫାସିବାଦ କବଳରୁ ମୁକ୍ତ କରିବା ପାଇଁ ।

ସେଇ ସହରର ନାମ ବଦଳାଇ ଦିଆଯାଇଛି ।

ମୋର ମନେ ପଡୁଛି । ମସ୍କୋ ସହରର ଉପାନ୍ତରେ ନାଜୀ ସୈନ୍ୟବାହିନୀ ସହରରୁ ଲେନିନଙ୍କ ମୃତ ଦେହ ନେଇ ନିଆଗଲାଣି ସୁରକ୍ଷା ବଳୟକୁ । ଷ୍ଟାଲିନ କିନ୍ତୁ ଯିବା ପାଇଁ ନାରାଜ । କମ୍ୟୁନିଷ୍ଟ ପାର୍ଟିର ପଲିଟବ୍ୟୁରୋର ଚୂଡାନ୍ତ ନିର୍ଦ୍ଦେଶ-ଷ୍ଟାଲିନଙ୍କୁ ମସ୍କୋ ଛାଡିବାକୁ ପଡିବ । ଉଡ଼ାଜାହାଜରେ ଯିବା ଆଉ ସମ୍ଭବ ନୁହେଁ ତେଣୁ ଟ୍ରେନରେ ହିଁ ଯିବାକୁ ପଡ଼ିବ । ମସ୍କୋ ରେଲଷ୍ଟେସନରେ ସ୍ପେଶାଲ ଟ୍ରେନ ଲାଗିଲାଣି ତାଙ୍କୁ ନେବାପାଇଁ । ଅନିଚ୍ଛୁକ ଷ୍ଟାଲିନ ଷ୍ଟେସନରେ ପହଞ୍ଚି ପଦଚାରଣା କରୁଛନ୍ତି ପ୍ଲାଟଫର୍ମ ଉପରେ । ଦୀର୍ଘ ସମୟ ଧରି ପଦଚାଳନା ପରେ ସେ ନିଷ୍ପତ୍ତି ଜଣାଇଦେଲେ– ନା ମୁଁ ଯିବିନାହିଁ । ମୋର ସୈନ୍ୟବାହିନୀ ସହିତ ମୁଁ ରହିବି ଏଇଠି, ଶତ୍ରୁ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ । ସେ ଫେରିଗଲେ ଏବଂ ଏଇ ସମ୍ବାଦ ବିଜୁଳି ବେଗରେ ଖେଳିଗଲା । ସୋଭିଏଟ ସୈନ୍ୟବାହିନୀ ଭିତରେ । ଆଉ ତା' ପରେ ଯାହାହେଲା ତାହା ଲିପିବଦ୍ଧ କରିଛନ୍ତି ଜର୍ମାନ ସେନାପତି ତାଙ୍କ ଡାଇରୀରେ । ''ମନେହେଲା ହଠାତ୍ ଯେମିତି ସେମାନେ ଉନ୍ମାଦ ହୋଇଯାଇଛନ୍ତି ଏବଂ ଅଭୂତପୂର୍ବ ଶକ୍ତିରେ ଆମ ଉପରେ ଆକ୍ରମଣ କରି ଆମକୁ ଠେଲି ନେଇଗଲେ ପଛକୁ ଗୋଟାଏ ଦିନରେ ପ୍ରାୟ ଷାଠିଏ କିଲୋମିଟର ।

ଷ୍ଟାଲିନଙ୍କ ସବୁ କାର୍ଯ୍ୟର ଯାଥାର୍ଥ୍ୟ ପ୍ରମାଣିତ କରିବା ମୋର ଉଦ୍ଦେଶ୍ୟ ନୁହେଁ । ଷ୍ଟାଲିନ ଭୁଲ୍ କରିଛନ୍ତି ଅକଳନ୍ତି । ତାଙ୍କ ସହିତ ଯାହାର ମତଭେଦ ହେଲା ତାକୁ ସେ ଶତ୍ରୁ ବୋଲି ବିବେଚନା କରି ତାକୁ ଏଲିମିନେଟ୍ (Eliminate) ବା ବିଲୋପ କରି ଦେଇଛନ୍ତି । ଷ୍ଟାଲିନ ବଢ଼ିଥିଲେ ଷଡ଼ଯନ୍ତ୍ର ଭିତରେ । ଜାର୍‌ସାହୀର ଷଡ଼ଯନ୍ତ୍ର, ସାମ୍ରାଜ୍ୟବାଦୀଙ୍କ ହସ୍ତକ୍ଷେପକାରୀଙ୍କ ଷଡ଼ଯନ୍ତ୍ର ଏବଂ ସର୍ବୋପରି ଭାସିଲେଟର (Vaciliator) ମାନଙ୍କର ଷଡ଼ଯନ୍ତ୍ର ଏବଂ ତା'ରି ଭିତରେ ବଢ଼ି ବଢ଼ି ତାଙ୍କର ମନ ଏବଂ ଆଖି ସେଇଭଳି ହୋଇଗଲା, ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ଖାଲି ସେତିକିରେ ଦେଖିଲେ କଥାଟାକୁ ତଉଲ କରିହେବ ନାହିଁ ଠିକ୍ ଭାବରେ ।

ମୁଁ ବହୁତ ଥର ସୋଭିଏଟ ୟୁନିଅନ ଯାଇଛି । ଲେନିନ ଓ ଷ୍ଟାଲିନଙ୍କ ଶବ ଥିଲାବେଳେ ଏବଂ ପରବର୍ତ୍ତୀ କାଳରେ ଷ୍ଟାଲିନଙ୍କ ଶବ ଉଠାଇ ନିଆଯାଇ ସାରିଲା ପରେ । ୧୯୫୭ ମସିହାରେ ମୁଁ ସୋଭିଏଟ ୟୁନିୟନ ଗଲାବେଳକୁ ଲେନିନଙ୍କ ମରଦେହ ସହିତ ଷ୍ଟାଲିନଙ୍କ ମରଦେହ ମଧ୍ୟ ସେଇଠି ଥିଲା ପାଖାପାଖି । କିନ୍ତୁ ସେତେବେଳକୁ କ୍ରୁଶ୍ଚେଭ ତାଙ୍କର ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ବିଂଶ କଂଗ୍ରେସରେ ତାଙ୍କର ଐତିହାସିକ ବକ୍ତୃତା ଦେଇ ସାରିଥିଲେ ଏବଂ ଷ୍ଟାଲିନ-ଷ୍ଟାଲିନବାଦ ବିରୁଦ୍ଧରେ ସୋଭିଏଟ କମ୍ୟୁନିଷ୍ଟ ପାର୍ଟି ଆରମ୍ଭ କରିଥିଲା ଅଭିଯାନ ।

Digitized by srujan ka@gmail.com

ମୁଁ ସେତେବେଳେ ବହୁଥର ଯାଇଛି ମସୋଲିୟମ ଦେଖିବାପାଇଁ, ସେଠାରେ ପ୍ରବଳ ଭିଡ଼ହୁଏ । ଲୋକେ ଲମ୍ବା ଲମ୍ବା ଧାଡ଼ିରେ ଠିଆ ହୋଇଥାନ୍ତି କ୍ୟୁରେ ଫୁଲମାଳ ଦେବାପାଇଁ । ମୁଁ ବହୁବାର ଗଲାପରେ ମୋତେ ଜଣେ ସୋଭିଏଟ ଯୁବ କମ୍ୟୁନିଷ୍ଟ ନେତା ପଚାରିଲେ– ଆପଣ କ'ଣ ସବୁଦିନେ ଯିବା ଆସିବା ବାଟରେ ମସୋଲିୟମ ପାଖରେ ଠିଆ ହେଉଛନ୍ତି ଘଣ୍ଟାଏ ଦୁଇଘଣ୍ଟା ? ମୁଁ ହସିଦେଇ କହିଲି ଯେ ମୁଁ ଷ୍ଟାଲିନବାଦୀ ଅତ୍ୟାଚାରର ଫଳ ଦେଖିବାକୁ ଯାଉଛି । ସେ ଆଶ୍ଚର୍ଯ୍ୟ ହୋଇ ମୋତେ ଅନେଇଲେ କିପରି ? ଏବଂ ପଚାରିଲେ, ଆପଣମାନେ ତ ଷ୍ଟାଲିନଙ୍କ ଅତ୍ୟାଚାର ତ୍ରୁଟି ଉପରେ ବହୁ ଆଲୋଚନା ପ୍ରଚାର କରି ସାରିଛନ୍ତି ସାରା ପୃଥିବୀରେ । ଆପଣଙ୍କ ଦେଶରେ ଜନସାଧାରଣ ସେଥିରେ ଅନ୍ତର୍ଭୁକ୍ତ । ମାର୍ଶାଲ ଟିଟୋ ଆସି ଦୁଇଟି ମରଦେହ ଥିବା ସତ୍ତ୍ୱେ କେବଳ ଲେନିନଙ୍କ ପାଇଁ ସ୍ତବକ ରଖି ଯାଇଛନ୍ତି । ତେଣୁ ଷ୍ଟାଲିନଙ୍କୁ ସମ୍ମାନ ଜଣାଇବା ଆଉ ଅଫିସିଆଲ ନୁହେଁ । ମୁଁ ଦେଖିବାକୁ ଚାହୁଁଛି ଯେ, କେତେଜଣ ଦର୍ଶକ ଦୁଇଟି ସ୍ତବକ ପରିବର୍ତ୍ତେ ଗୋଟିଏ ସ୍ତବକ ଆଣି ଆସିଛନ୍ତି । ଏ ପର୍ଯ୍ୟନ୍ତ ମୁଁ ଗୋଟିଏ ହେଲେ ଲୋକକୁ ସେପରି କରିବା ଦେଖି ନାହିଁ, ତା' ହେଲେ ''ଅତ୍ୟାଚାରୀ'' ଷ୍ଟାଲିନଙ୍କ ପ୍ରତି କାହିଁକି ଏ ଦରଦ !

ମୋର ମନେହୁଏ ଜନତା ଯାହା ବୁଝୁଛି ନେତାମାନେ ତାହା ବୁଝିନାହାନ୍ତି । ଭାରତବର୍ଷ ପାଇଁ ମଧ ତାହା ପ୍ରଯୁଜ୍ୟ– ଗାନ୍ଧିଜୀଙ୍କ ନୀତି ସହିତ ମତଭେଦ ଅନେକ ଥାଇପାରେ । ନେହେରୁଙ୍କ ନୀତି ସହିତ ମତଭେଦ ବି ଥାଇପାରେ । କିନ୍ତୁ ସେତିକିରେ କଣ କଳନା ଠିକ୍ ହୋଇଗଲା ? ସେମାନଙ୍କର ଅବଦାନ, ଜୀବନର ଆସ୍ତିମୂଳକ ଦିଗ ସଂପର୍କରେ ବିଚାର ହେବା ଉଚିତ କି ନୁହେଁ ? ସେ ଦୃଷ୍ଟିରୁ ୰ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କର ଜନ୍ମ ଶତବାର୍ଷିକୀ ଉତ୍ସବକୁ ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟଙ୍କର ନ ଯିବାଟା ମୁଁ ଗ୍ରହଣ କରି ପାରୁନାହିଁ । ଗଣତନ୍ତ୍ରର ମୌଳିକ କଥା ହେଲା ଯେ ଆପଣଙ୍କର ଯେଉଁ ନୀତି ସହିତ ମୁଁ ଏକମତ ନୁହେଁ, ତାକୁ ମୁଁ ଜୀବନ ଥିବା ପର୍ଯ୍ୟନ୍ତ ବିରୋଧ କରିବି, କିନ୍ତୁ ଆପଣଙ୍କୁ ଆପଣଙ୍କର ମତ କହିବା ପାଇଁ ସଂପୂର୍ଣ୍ଣ ସୁଯୋଗ ଦେବା ସକାଶେ ମଧ ମୁଁ ଆଜୀବନ ସଂଗ୍ରାମ କରିବି । ବୁଦ୍ଧଦେବ ସେଦିନ ଯାଇ ଧେଇକଥା କହିପାରିଥାନ୍ତେ ।

୧୯୪୫ ମସିହାର କଥା । ବୁଦ୍ଧଦେବଙ୍କର ମନେଥିବ କି ନାଇଁ ମୁଁ ଜାଣେନା । ଡେଲହାଉସୀ ସ୍କୋୟାର ଯାହା ବର୍ତ୍ତମାନ ବି.ବି.ଡି. (ବିଜୟ-ବାଦଲ ଦୀନେଶ ବାଗ) ନାମରେ ନାମିତ ଥିଲା ନିଷିଦ୍ଧ ଅଞ୍ଚଳ । ଏକ ବିରାଟ ଶୋଭାଯାତ୍ରାରେ ବଙ୍ଗ ଦେଶର ବିଦ୍ରୋହୀ ଜନତା ପଶିବାକୁ ଚାହିଁଲେ ସେଇ ଅବରୁଦ୍ଧ ଅଞ୍ଚଳକୁ । ପୁଲିସ ସର୍ଜେଣ୍ଟ ଆପଣା ପିସ୍ତଲକୁ ରାମେଶ୍ୱର ବାନାର୍ଜୀ ନାମକ ସ୍କୁଲ ଛାତ୍ରର ମୁଣ୍ଡରେ ରଖି ପଚାରିଲା– ଜାଣୁ କଣ ଦଶା ହେବ ତୋହର ? ଦୃପ୍ତ କଣ୍ଠରେ ସେ ଉତ୍ତର ଦେଲା ଯେ ତାହା ମୁଁ ଜାଣେ, ତା ସତ୍ତ୍ୱେ ମୁଁ ପଶିବି ଏଇ ଭିତରକୁ, ତା' ପରେ ? ପିସ୍ତଲର ଗୁଳିରେ ରାମେଶ୍ୱର ଟଳି ପଡ଼ିଲା ।

ସେ ଥିଲା ପିତାମାତାଙ୍କ ଏକମାତ୍ର ସନ୍ତାନ । ଆଉ ସେଦିନ ତା' ବାପା ଯେଉଁ ଘୋଷଣା କଲେ ତାହା ମୋର ଅଦ୍ୟାବଧି ମନେ ରହିଛି ।

Digitized by srujan ka@gmail.com

''ମହାଯଜ୍ଞରେ ବଳିର ପ୍ରୟୋଜନ । ଏଥିପାଇଁ ବହୁ ବଳିଦାନ ମଧ୍ୟରେ ମୋର ପୁତ୍ର ଅନ୍ୟତମ । ଯାହାର ସନ୍ତାନ ମୃତ ହୁଏ ତା'ର ବ୍ୟକ୍ତିଗତ କ୍ଷତି ଅପୂରଣୀୟ । କିନ୍ତୁ ଦେଶର ଯଜ୍ଞ ସଂପୂର୍ଣ୍ଣ କରିବାକୁ ହେଲେ ଦେଶର ପିତାମାତାଙ୍କୁ ଏଇ ବଳି ଯୋଗାଇବାକୁ ହିଁ ହେବ ।'' ତା' ପରେ ସେ ମୂର୍ଚ୍ଛିତ ହୋଇଯାଇଥିଲେ । ସେଦିନ ବିକ୍ଷୁବ୍ଧ ଜନତାର ନେତୃତ୍ୱ ନେବା ପାଇଁ ନାନାକାରଣରୁ (ସେ ସବୁ କାରଣ ଲେଖିବା ପାଇଁ ସ୍ୱତନ୍ତ୍ର ପୋଥି ଲେଖିବାକୁ ପଡ଼ିବ) କୌଣସି ତୁଙ୍ଗ ରାଜନୈତିକ ନେତା ସେଠାକୁ ଆସି ନଥିଲେ । କେବଳ ଆସିଥିଲେ ଶ୍ୟାମାପ୍ରସାଦ ମୁଖାର୍ଜୀ । ସେ କହିଲାବେଳେ ମେଘ ଗର୍ଜନ ପରି ଶୁଭେ । ବିରାଟ ବେକ । ତାଙ୍କ କଣ୍ଠରୁ ନିନାଦିତ ହେଲା– ମୁଁ ଅଛି ତମ ପାଖରେ । ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ନୀତି ସହିତ ମୁଁ ଆଦୌ ଏକମତ ନୁହେଁ । ତାଙ୍କର ମତବାଦର ସଂପୂର୍ଣ୍ଣ ବିରୋଧୀ ଏବଂ ତାହା ମଧ୍ୟ ଖୋଲା ଖୋଲି କହିବାକୁ ମୁଁ କୁଣ୍ଠିତ ହେବି ନାହିଁ । ସମୀର ଦେ ନିର୍ବାଚନ ପ୍ରଚାରରେ ପଦଯାତ୍ରା କରି ପହଞ୍ଚିଲେ ମୋ ପାଖରେ । ମୁଁ ତାଙ୍କୁ ଶୁଭେଚ୍ଛା ଜଣାଇ କହିଲି, ସମୀର ମୁଁ ତୁମକୁ ଭଲପାଏ । କିନ୍ତୁ ତୁମକୁ ଭୋଟ ଦେଇ ପାରିବି ନାହିଁ । ସୁଖର କଥା ସେ ଭୁଲ୍ ବୁଝିନାହାନ୍ତି, ଆମେ ଏକା ସାଙ୍ଗରେ କଟକ ମେଡିକାଲ କଲେଜ ଓ ଡାକ୍ତରଖାନାର ଗଭର୍ଣ୍ଣିଂବଡିରେ କାମ କରିଛୁ । ମୁଁ ଦସ୍ତଖତ ନ ଦେଲେ ସେ ଦସ୍ତଖତ ଦେବା ପାଇଁ ମନାକରି ଦେଇଛନ୍ତି । ଏପରିକି ସ୍ୱର୍ଣକାତର ପରଚେଜ୍ କମିଟିର ମଧ୍ୟ । ସେ ଯେତେବେଳେ ବିଦେଶୀ କୋକାକୋଲା ଖାଇବା ପାଇଁ ମନାକରି ଦେଇଛନ୍ତି, ମୁଁ ମଧ୍ୟ ମନା କରି ଦେଇଛି । କାରଣ ଖାଦ୍ୟରେ ବୈଦେଶିକ ବଣିକଙ୍କର ଅନୁପ୍ରବେଶ ମୁଁ ଗ୍ରହଣ କରି ପାରିନାହିଁ ।

ସମ୍ବଲପୁରରେ ଆମର ଶିକ୍ଷକମାନଙ୍କ ମଧ୍ୟରୁ କେତେକ ମୋର ଚିରଦିନ ସ୍ମୃତ ହୋଇ ରହିବେ । ଆଗରୁ କହିଛି ଶିଳ୍ପୀ ଗୋପାଳ କାନୁନଗୋଙ୍କ କଥା । ସେ ଚିତ୍ର ଆଙ୍କନ୍ତି ଏବଂ ଉପର ମହଲାରେ ଆମକୁ ସ୍ୱାଧୀନତା ସଂଗ୍ରାମ ଓ ସମାଜବାଦ କଥା କହନ୍ତି । ଆମର ଶିକ୍ଷକ ଥାଆନ୍ତି ମନମୋହନ ପଟ୍ଟନାୟକ ସେ ମର୍ଚ୍ଚାଣ୍ଟ ଅଫ ଭେନିସ (Merchant of venice) ନାଟକ ପଢ଼ାଇଲା ବେଳେ ସାଇଲକ୍ ଦି ଜୀଉ ( Shylock the Jew) କିପରି ସବୁ ଦେଶରେ ଦଣ୍ଡିତ, ସେମାନଙ୍କର କଳା, ସାହିତ୍ୟ, ବିଜ୍ଞାନକୁ ବିପୁଳ ଅବଦାନ ସହ ସେମାନେ କିପରି ବିଭିନ୍ନ ଦେଶରେ ଦଣ୍ଡିତ ସେ ବିଷୟରେ କହନ୍ତି । ଶିକ୍ଷକ କୁଳର ଏଇ ଶେଷ ପ୍ରବାଦ ପୁରୁଷଙ୍କର ଗଲାବର୍ଷ ପରଲୋକ ହୋଇଯାଇଛି । ସେ ଏବଂ ତାଙ୍କ ଭଉଣୀ ✓ ମନୋରମା ଦେବୀଙ୍କ ଘର ଗଞ୍ଜାମ ଜିଲ୍ଲାରେ (ନା ଦକ୍ଷିଣ ଉପାନ୍ତ ଅଞ୍ଚଳରେ ତାହା ଠିକ୍ ମନେପଡୁ ନାହିଁ) କିନ୍ତୁ ଏଇ ପ୍ରବାଦ ପୁରୁଷ ରହିଗଲେ ସମ୍ବଲପୁରରେ । ସେ ସମ୍ବଲପୁରର ସବୁ ଶ୍ରେଣୀର ଭକ୍ତି ଓ ସ୍ନେହର ମଣିଷ ଥିଲେ । ତାଙ୍କର ଦୁଇ ଶିଷ୍ୟ ତାଙ୍କ ପାଇଁ ଘର କରି ଦେଇଥିଲେ ଏବଂ ସବୁ ଯତ୍ନ ନେଉଥିଲେ । ତାଙ୍କୁ ଯେତେବେଳେ ଦୂରଦର୍ଶନର ଏକ ସାକ୍ଷାତ କାରରେ ପଚାରିଲା ଯେ ଆପଣଙ୍କର ପୁଅଝିଅ

Digitized by srujan ka@gmail.com

ନାହାନ୍ତି, ସେଥିପାଇଁ କଣ କିଛି ଅବଶୋଷ ନାହିଁ ? ହସି ହସି ସେ ଉତ୍ତର ଦେଲେ ଯେ ପୁଅ ଥିଲେ ଏଇ ଛାତ୍ରମାନଙ୍କ ଅପେକ୍ଷା ଅଧିକ କ'ଣ କରିଥାନ୍ତା ? ବିଶିଷ୍ଟ ଜନପ୍ରିୟ ଅଧ୍ୟାପକ ପ୍ରଫୁଲ୍ଲ ପତି ତାଙ୍କର ସ୍ୱଭାବସୁଲଭ ହାସ୍ୟରସରେ ମନମୋହନ ବାବୁଙ୍କୁ ବଧେଇ ଜଣେଇ କହିଲେ– ''ଆମକୁ ପିଲାଏ ଭକ୍ତି କରନ୍ତି । କିନ୍ତୁ ମନମୋହନ ବାବୁଙ୍କୁ ପୂଜା କରନ୍ତି ।'' ଏହାଠାରୁ ବଡ଼ ଟ୍ରିବିଉଟ (Tribute) ଆଉ କ'ଣ ହୋଇପାରେ ? ଆମର ଶିକ୍ଷକ-ପ୍ରଧାନଶିକ୍ଷକ ଥିଲେ ଅଧିରାଜ ମୋହନ ସେନାପତି ଯାହାଙ୍କର କନ୍ୟା ୰ ଗାୟତ୍ରୀ ଥିଲା ମୋର ସହପାଠୀ । କୌଣସି ପିଲା ଦୁଷ୍ଟାମି କଲେ ସେ ଗୋଟିଏ ଗଧ ଟୋପି ମୁଣ୍ଡରେ ପିନ୍ଧାଇ ତାକୁ ବୁଲାନ୍ତି ସ୍କୁଲରେ ସବୁ କ୍ଲାସରେ । ସେତେବେଳେ ସେକ୍ରେଟେରିଏଟ ଥାଏ ଜିଲ୍ଲା ସ୍କୁଲ ପାଖରେ । ଜଣେ ପ୍ରତିପତ୍ତିଶାଳୀ ଉଚ୍ଚପଦସ୍ଥ ଅଫିସରଙ୍କ ପୁଅକୁ ଦିନେ ସେ ଏଇପରି ଦଣ୍ଡ ଦେଲେ । ତାଙ୍କ ଉପରେ ବହୁତ ଚାପ ପଡ଼ିଲା, ଏପରିକି ତତ୍‌କାଳୀନ ଜିଲ୍ଲାପାଳ ତାଙ୍କୁ ଏହା ନ କରିବା ପାଇଁ ''ଉପଦେଶ'' ଦେଇଥିଲେ କିନ୍ତୁ ଅଧିରାଜ ମୋହନ ସେନାପତି ତାଙ୍କର ସେ ଉପଦେଶକୁ ଗ୍ରହଣ କରି ନଥିଲେ । ମୁଁ ପ୍ରଧାନ ଶିକ୍ଷକ, ସ୍କୁଲର ପରିଚାଳକ । ମୋ ଉପରେ କାହାରି ହାକିମ ଚଳିବ ନାହିଁ । ତାଙ୍କର ପୁଅ ଡାକ୍ତର ଯୋଗେନ୍ଦ୍ର ମୋହନ ସେନାପତି ଏବଂ ଶ୍ରୀ ରବୀନ୍ଦ୍ର ମୋହନ ସେନାପତି ମୋର ପାରିବାରିକ ବନ୍ଧୁ । ଆମର ଶିକ୍ଷକମାନଙ୍କ ଭିତରେ ଥିଲେ ୰ କ୍ଷିତିଶ ଚନ୍ଦ୍ର ଦେବ । ଭୂଗୋଳକୁ ସେ ଇତିହାସ, ଉପନ୍ୟାସରେ ପରିଣତ କରିଥିଲେ ।

ଏଇମାନେ ସମସ୍ତେ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କୁ ଭେଟିବାକୁ ଆସିଥିଲେ ତାଙ୍କର ରହଣୀ କାଳରେ । ମନେ ହେଉଥିଲା ଯେପରି ସେମାନଙ୍କ ଭିତରେ ଏପରି କୌଣସି ସାଧାରଣ ଗୁଣିତକ ରହିଛି ଯାହା ସେମାନଙ୍କ ଭିତରେ ଘଣ୍ଟା ଘଣ୍ଟା ଧରି ଆଲୋଚନାକୁ ସମ୍ଭବ କରୁଥିଲା ।

ଦିନେ ସେ ମୋତେ ପଚାରିଲେ ଗେହ୍ଲାରେ ତମେ ଯିବ ସୈନ୍ୟବାହିନୀରେ ? ମୁଁ ଉତ୍ତର ଦେଲି ଯେ ଭଲପୋଷ୍ଟ ମିଳିଲେ ନିଶ୍ଚୟ ଯିବି । କ'ଣ ପଦବୀରେ ଯିବ ? ତାଙ୍କର ପ୍ରଶ୍ନ ।

ସେତେବେଳେ କମାଣ୍ଡର ଇନ୍-ଚିଫ୍ ପଦବୀଟା ବେଶ୍ ଜନପ୍ରିୟ ଏବଂ ଖବରକାଗଜରେ ପ୍ରତିଦିନ ପଢ଼ିବାକୁ ମିଳେ । ମୁଁ ସେଇ ପଦବୀଟା ମିଳିଲେ ଯିବି ବୋଲି କହିବାରୁ ସେ ଆନନ୍ଦରେ ମୋତେ କୁଣ୍ଢାଇ ପକାଇଲେ ଏବଂ ଏକ ପ୍ରତିଶ୍ରୁତି ଦେଲେ ଯାହା ପୂରଣ ହୋଇ ପାରିଲା ନାହିଁ । ସେ ପୂରଣ କରିବାକୁ ଚାହିଁଥିଲେ କିନ୍ତୁ ତାହା ତାଙ୍କ କର୍ତ୍ତୃତ୍ୱରେ ନଥିଲା ।

ରାଣୀହାଟ ଗଉଡ଼ସାହିରେ ଆମେ ପଡ଼ୋଶୀ ଭାବରେ ରହିଛୁ କିଛିକାଳ । ଦେଖିଛି ତାଙ୍କର ଉଦ୍‌ଭ୍ରାନ୍ତତା, ତାଙ୍କର ମାନସିକ ଉଦ୍‌ବେଳନ ।

ସମ୍ବଲପୁରଠାରେ କିଛିକାଳ ଥିଲି ବ୍ରୁକ୍‌ସିଲରେ ଥିବା ସେକ୍ରେଟେରିଏଟ କଲୋନୀରେ । ମୋର ଅଭିଭାବକ ଥିଲେ ୰ ମାନଗୋବିନ୍ଦ ଭୂୟାଁ । ସେ ନିଜେ ବି.ଏ. ପାଶ୍ କରି ପାରି ନଥିଲେ । କିନ୍ତୁ ଟିଉସନ କରିବାରେ ସେ ଥିଲେ ଅପୂର୍ବ ଏବଂ ଅନେକ ବି.ଏ. ପଢୁଥିବା ପିଲାଙ୍କୁ ମଧ୍ୟ ସେ

Digitized by srujan ka@gmail.com

ଟିଉସନ କରି ସେମାନଙ୍କ ପାଇଁ ଆଣି ଦେଇଛନ୍ତି ସାଫଲ୍ୟ । ৺ ମାନଗୋବିନ୍ଦ ବାବୁ ଥିଲେ ৺ ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ସହକର୍ମୀ । ସେକ୍ରେଟେରିଏଟରେ ଏବଂ ପରେ ଅବସର ନେଲା ପରେ ସେ ଗୋପାଳ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ ''ପଟ୍ଟନାୟକ ଏଣ୍ଡ କୋ''ରେ ଚାକିରି କରୁଥିଲେ । ସେଭଳି ଦୁର୍ଲ୍ଲଭ ମଣିଷ ମିଳିବା କଠିନ । ତାଙ୍କର ବଡ଼ ଝିଅ ଡାକ୍ତର ନିରୂପମା ଭୂୟାଁ ଆତ୍ମହତ୍ୟା କରେ ନିଜର ଇଚ୍ଛାକୁ କାର୍ଯ୍ୟକାରୀ କରି ନ ପାରି, ସାନଝିଅ ଲେକଚରର୍ କିନ୍ତୁ କେଉଁଠି ଅଛି ମୁଁ ଜାଣିନାଇଁ । ମାନଗୋବିନ୍ଦ ବାବୁ ଆମର ପରିବାରଭୁକ୍ତ ହୋଇଯାଇଥିଲେ । ସେ ଏବଂ ତାଙ୍କର ବଡ଼ଝିଅ ନିରୂପମା ଦେହର ନର୍ମାଲ ଉତ୍ତାପ ପ୍ରାୟ ୧୦୦° ଥିଲା ସବୁବେଳେ । କ୍ୟାନସର ରୋଗରେ ତାଙ୍କର ପରଲୋକ ହୋଇଗଲା । କିନ୍ତୁ ତାଙ୍କର ନିମୀଳିତ ଚକ୍ଷୁରେ କହୁଥିବା କଥା ଏ ପର୍ଯ୍ୟନ୍ତ ମୋର ସ୍ମୃତ ହୋଇ ରହିଛି ।

ସମ୍ବଲପୁରରେ ଥିଲାବେଳେ ମୋ ବୋଉର ଟାଇଫଏଡ ହୁଏ । ମୋତେ ବି ଟାଇଫଏଡ ହୁଏ । ରିଲାପ୍ସ ବି କରେ ଥରେ । ସେତେବେଳେ ଟାଇଫଏଡ ଏକ ମାରାତ୍ମକ ବ୍ୟାଧି । ତା'ର କୌଣସି ଔଷଧ ନଥିଲା, ପ୍ୟାଟେଣ୍ଟ ମେଡିସିନ ତ ଥିଲା ଖୁବ୍‌କମ୍ । ଜର୍ମାନୀରୁ ଆସୁଥିଲା ସେ ଔଷଧ ଏବଂ ଯୁଦ୍ଧ ଯୋଗୁଁ ଜର୍ମାନୀରୁ ଔଷଧ ଆସିବା ବନ୍ଦ ହୋଇଯାଇଥିଲା । ମୋର ମନେ ପଡୁଛି ଥର୍ମୋମିଟର ମିଳୁ ନଥିଲା । ବୋଉର ଚିକିତ୍ସା ସମୟରେ ଆମର ଏକମାତ୍ର ଥର୍ମୋମିଟରଟି ଭାଙ୍ଗିଗଲା । ଅବହେଳାରୁ ନୁହେଁ, ଜଣେ ଲୋକର ନର୍ଭସନେସ୍ ଯୋଗୁଁ । ଥର୍ମୋମିଟର ପାଇଁ ଖୋଜା ଚାଲିଲା ସମ୍ବଲପୁର । ଥର୍ମୋମିଟର ବଜାର ଦାମ ଥିଲା ଟଙ୍କାଏ, କିନ୍ତୁ ପାଞ୍ଚଗୁଣ ଅର୍ଥାତ ପାଞ୍ଚ ଟଙ୍କା ଦେଇ କିଣାଗଲା ଥର୍ମୋମିଟର । ମୋତେ ଟାଇଫଏଡ ହୁଏ ୧୯୪୩ ମସିହାରେ । ଔଷଧ ମିଳେନା । ସେତେବେଳେ ଟାଇଫଏଡ ରୋଗୀକୁ କେବେଳ ପଇଡ଼ପାଣି ଦିଆଯାଉଥିଲା ଖାଇବା ପାଇଁ । ଏବେ ଭାତ ଡାଲି ତରକାରୀ ସବୁ ଦିଆଯାଉଛି । ସେଇପରି କିଛିବର୍ଷ ତଳ ପର୍ଯ୍ୟନ୍ତ ଇନସୁଲିନ ନେଉଥିବା ବହୁମୂତ୍ର ରୋଗୀ ଖାଦ୍ୟ ବଡ଼ା ହୋଇସାରିଲା ପରେ ଇଂଜେକସନ ନେଉଥିଲେ । କାରଣ ଇଂଜେକସନ୍ ନେଇ ସାଙ୍ଗେ ସାଙ୍ଗେ ଖାଇବା ଥିଲା ନିୟମ । ବର୍ତ୍ତମାନ ଇଂଜେକସନ୍ ନେବାର ଅଧଘଣ୍ଟା ପରେ ହିଁ ଖାଦ୍ୟ ଖାଇବା ନିୟମ ହେଲାଣି ।

ମୋର ମନେ ପଡୁଛି, ମୋତେ ଟାଇଫଏଡ୍ ହେବା ସତ୍ତ୍ୱେ ବାପା ଯାଇଥିଲେ କ୍ୟାମ୍ପ ଆଟେଣ୍ଡ୍ କରିବା ପାଇଁ । କାରଣ ପଲିଟିକାଲ ଏଜେଣ୍ଟ, ଫରେଷ୍ଟ କଂଜରଭେଟର ଇଷ୍ଟର୍ଣ୍ଣ ଷ୍ଟେଟ୍‌ସର ଫରେଷ୍ଟ ଆଡଭାଇଜର, ସମସ୍ତେ ମିଶି ଏକ ଶିକାର କ୍ୟାମ୍ପରେ ଥିଲେ । ସେମାନଙ୍କୁ ମଧ୍ୟ ଏକ ଅନୁମତି ନେବାକୁ ପଡୁଥିଲା ଫରେଷ୍ଟ ରେଞ୍ଜ ଅଫିସରଙ୍କଠାରୁ । ଯେପରି ଜମି ସଂକ୍ରାନ୍ତରେ କାଗଜର ମାଲିକ ହେଉଛନ୍ତି ତହସିଲଦାର ଠିକ୍ ସେଇପରି ଅରଣ୍ୟର ମାଲିକ ହେଉଛନ୍ତି ଫରେଷ୍ଟ ରେଞ୍ଜ ଅଫିସର । କେଉଁ ଋତୁରେ କେଉଁ ଜନ୍ତୁ ମରାଯାଇ ପାରିବ, ସେଥିପାଇଁ କେତେ ଫିସ ଦେବାକୁ ପଡ଼ିବ ତାହା ସ୍ଥିର ହୋଇଥିଲା ନିୟମାବଳୀରେ । ସେ ନିୟମ ବୋଧହୁଏ

Digitized by srujan ka@gmail.com

ବର୍ତ୍ତମାନ ବଣୁଆ ହୋଇଯାଇଛି । କ୍ୟାମ୍ପରେ ବାପାଙ୍କର ଶୁଖିଲା ମୁହଁ ଦେଖି କାରଣ ପଚାରିଲେ ପଲିଟିକାଲ ଏଜେଣ୍ଟ । ମୋତେ ଟାଇଫଏଡ ହୋଇଛି ଜାଣି ସେ କିଛି ଜର୍ମାନ ବଟିକା ଦେଲେ ତାଙ୍କୁ । ସେ ବଟିକାସବୁ ଦେଖି ମୋର ଚିକିତ୍ସକ ଡାକ୍ତର ଜଲାଲୁଦ୍ଦିନ କୋଟିନିଧି ପାଇଲା ପରି ମନେକଲେ । ସେଇଥିରେ ମୋର ଟାଇଫଏଡ ଭଲ ହୋଇଗଲା ।

ସମ୍ବଲପୁରରେ ଶୀତଳଷଷ୍ଠୀ ଯାତ୍ରା ମହା ସମାରୋହରେ ପାଳିତ ହୁଏ । ନନ୍ଦପଡ଼ା ଏବଂ ଝାଡ଼ୁଆପଡ଼ା ଭିତରେ ଏଥିପାଇଁ ତୀବ୍ର ପ୍ରତିଯୋଗିତା । ଦୁଇ ସାହି ଯଦିଓ ପାଖାପାଖି, ତଥାପି ପଡ଼େ ନାହିଁ ଦୁଇ ସାହି ଭିତରେ । ସେଥିପାଇଁ ବାଡ଼ିଆବାଡ଼ି, ପିଟାପିଟି ହୁଏ । ଦୁଇ ସାହି (ଯଦିଓ ଅଧିକାଂଶ ବ୍ରାହ୍ମଣ) ଭିତରେ ବିବାଦ ନିଷିଦ୍ଧ । କିନ୍ତୁ ସେ ବର୍ଷ ଏକ ଅଚାନକ କଥା ଘଟିଲା ।

ପ୍ରସିଦ୍ଧ ଶ୍ରୀ ଭରତଚନ୍ଦ୍ର ନାୟକ (କଦାପି ସେ ଭରତ ଚନ୍ଦ୍ର ନାୟକ ବୋଲି କହନ୍ତି ନାହିଁ) ତାଙ୍କର ଝିଅ ସୁଷମା (ଡାକ୍ତର) ଙ୍କୁ ବିବାହ ଦେଲେ ଆଉ ଏକ ଡାକ୍ତରଙ୍କ ସହିତ । ବିବାହ ସେମାନେ ସ୍ଥିର କରିଥିଲେ ପାଟନାରେ ପଢ଼ିଲାବେଳେ । ଜଣେ ଝାଡ଼ୁଆପଡ଼ାର ଆଉ ଜଣେ ନନ୍ଦପଡ଼ାର । ତେଣୁ ବିବାହ ହେଲା ପୁରୀରେ ।

ଭରତଚନ୍ଦ୍ର ନାୟକ ଜଣେ ସ୍ମରଣୀୟ ବ୍ୟକ୍ତି । ସେ ଥିଲେ ଡେପୁଟି ମାଜିଷ୍ଟ୍ରେଟ ପୁରୀରେ । ଦିନେ ଚାଲି ଚାଲି ଯାଉଛନ୍ତି, ଦେଖିଲେ ଗୋଟିଏ କିଏ ଲୋକ ଛୋଟିଆ ଝିଅଟିକୁ ବାଡ଼େଉଛି । ଆଉ କହୁଛି, ରାଣ୍ଡୀ...... ସେ ସହି ପାରିଲେ ନାହିଁ । ସେ ଲୋକକୁ ଦୁଇ ଥାପଡ଼ ଦେଲେ ଏବଂ ପଚାରିଲେ ଯେ କ'ଣ ଛୋଟ ଛୁଆଟାକୁ ରାଣ୍ଡୀ ବୋଲି କହୁଛ ? ଶୁଣିଲେ ଯେ ଛଅ ବର୍ଷରେ ପଇତା, ନଅ ବର୍ଷରେ ଘଇତା ନ୍ୟାୟରେ ତାକୁ 'ବିବାହ' ଦେଇଥିଲେ ନଅବର୍ଷରେ । ଆଉ ଛଅମାସ ପରେ ସେ 'ବିଧବା' ହୋଇଯାଇଛି । ଝିଅଟିକୁ ନେଇ ଭରତବାବୁ ଚାଲି ଆସିଲେ ଘରକୁ ଏବଂ ସ୍ତ୍ରୀଙ୍କୁ କହିଲେ ତୋର ତ ଅନେକ ଝିଅ, ଆଉ ଗୋଟିଏ ଝିଅକୁ ଆଣିଚି । ଝିଅଟିକୁ ଘରେ ରଖି ପାଠ ପଢ଼ାଇଲେ । ଝିଅ ଆଇ.ଏସ୍.ଏସି. ପାଶ କଲା । ପାଟନା ବିଶ୍ୱବିଦ୍ୟାଳୟରେ ଡାକ୍ତରୀ ପଢ଼ିବ । ଓଡ଼ିଶା ଛାତ୍ରଙ୍କ ପାଇଁ ମାତ୍ର ତିନୋଟି ପ୍ରାପ୍ୟ । ଝିଅର ପ୍ରାପ୍ୟ ଗୋଟିଏ । କିନ୍ତୁ ସେଇଟି ତାଙ୍କୁ ମିଳିଲା ନାହିଁ । ଭରତଚନ୍ଦ୍ର ନାୟକ ଛାଡ଼ିବା ଲୋକ ନୁହନ୍ତି, ସେ ସରକାରୀ ଚାକିରି କରନ୍ତି । କିନ୍ତୁ ବସିଲେ ଅନଶନ ଧର୍ମଘଟରେ ଶିକ୍ଷା ଓ ସ୍ୱାସ୍ଥ୍ୟ ମନ୍ତ୍ରୀ ଗୋଦାବରୀଶ ମିଶ୍ରଙ୍କ ଘର ଆଗରେ । ତାଙ୍କର ଜୟ ହେଲା । ସିଟ୍ ମିଳିଲା ସେ ଝିଅକୁ ।

ସେ ଝିଅଟି ପାଟଣାରେ ପଢୁଥିଲାବେଳେ ତାର ଆଖିରେ କ'ଣ ଗୋଟାଏ ଦୁରାରୋଧ ରୋଗ ହେଲା । ଡାକ୍ତର କହିଲେ ଯେ ଏଇ ଜର୍ମାନ ଔଷଧ ମିଳିଲେ ହିଁ ସେ ଭଲ ହୋଇପାରିବ । ଯୁଦ୍ଧ ସମୟ, ଔଷଧ ମିଳିବ କେଉଁଠୁ ? ଭରତଚନ୍ଦ୍ର ନାୟକ ଚାଲିଲେ କଲିକତା । ଓହ୍ଲାଇଲେ ହାଓଡ଼ା ଷ୍ଟେସନରେ । ସେଇଠାରୁ ପଦଯାତ୍ରା ଆରମ୍ଭ ହେଲା । ଗୋଟିକ ପରେ ଗୋଟିଏ ଔଷଧ ଦୋକାନ ଖୋଜି ଚାଲିଲେ । ଯେଉଁଠି ସରିଲା, ସେଇଠାରେ ଶୋଇଲେ ଏବଂ ସକାଳୁ ଆରମ୍ଭ କଲେ ପୁଣି ଖୋଜିବା । ପ୍ରାୟ ଦଶ ପନ୍ଦର ଦିନ ଏଇପରି ଖୋଜିଲା ପରେ ଦିନେ କୌଣସି ଏକ

Digitized by srujan ka@gmail.com

ଔଷଧ ଦୋକାନରେ ସେ ଔଷଧ ଖୋଜିବାକୁ ଯାଇ ସେ ଭେଟିଥିଲେ କିଛି ଆମେରିକାନ ସୈନ୍ୟଙ୍କୁ ତାଙ୍କ ଭିତରୁ ଜଣେ କହିଲା ଯେ ସେ ଔଷଧ ତାଙ୍କ ପାଖରେ ଅଛି । କିନ୍ତୁ ସେ ଅଧିକ ଦାମ ନେବେ । ତାଙ୍କୁ ବୋଧହୁଏ ତିନିଶହ ଟଙ୍କା (ସେତେବେଳେ ତିନିଶହ ଟଙ୍କା ବହୁତ ଦୁର୍ମୂଲ୍ୟ) ଦେଇ ସେ ଔଷଧ ନେଇ ପାଟନା ଡାକ୍ତରଖାନାରେ ହାଜର । ଡାକ୍ତର ତାଙ୍କର ଚେହେରା ଓ ଔଷଧ ଦେଖି ତଟସ୍ଥ ।

ଅନୁଗୋଳରେ ସେ ଥାଆନ୍ତି ଡେପୁଟି ମାଜିଷ୍ଟ୍ରେଟ । ତାଙ୍କର ସୁନ୍ଦର ବଗିଚାରେ କଲେକ୍ଟରଙ୍କ ଗାଈ ପଶି ଉଜାଡ଼ି ଦେଲା । ସେ ଗାଈମାନଙ୍କୁ ନିର୍ଘାତ ବାଡ଼େଇଲେ ଏବଂ ତା'ର 'ପ୍ରତିବାଦ' କରିବାରୁ ସେ କଲେକ୍ଟରଙ୍କୁ ମଧ ପିଟି ପକାଇଲେ ।

ତାଙ୍କର ବଡ଼ପୁଅ ଜୟନାରାୟଣ ନାୟକ ଡେପୁଟି ମାଜିଷ୍ଟ୍ରେଟ ଥିଲେ । ଅକାଳରେ ତାଙ୍କର ପରଲୋକ ହୋଇଗଲା । ସାନପୁଅ ବିଭୁରଂଜନ ମୋର ସହପାଠୀ । ସେ ବହୁଦିନ ବିଦେଶରେ ଥିଲା । କ'ଣ କରୁଥିଲା କହିପାରିବି ନାହିଁ । ଅନେକ ବର୍ଷ ପରେ ତାକୁ ଜାନକୀ ବଲ୍ଲଭ ପଟ୍ଟନାୟକ ଠାବ କରି ଆଞ୍ଚଳିକତାବାଦକୁ ତୃପ୍ତ କରିବା ପାଇଁ ଆଣି କୁଳପତି କଲେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ । ସେଇଠାରେ ସେ ଗୋଟିଏ କମ ବର୍ଷ ବୟସ୍କ ଝିଅଟିକୁ ବିବାହ କରିଥିଲା । ମୋର ମନେହୁଏ ଯେ ସେ ବୋହେମିଆନ ହୋଇଯାଇଥିଲା ଏବଂ ଅକାଳରେ ତା'ର ସ୍ତ୍ରୀଙ୍କର ଓ ତା'ର ପରଲୋକ ହୋଇଯାଏ । ଭରତଚନ୍ଦ୍ର ନାୟକଙ୍କର ଗୋଟିଏ ଝିଅ ସତ୍ୟଭାମାକୁ ମୋର ବନ୍ଧୁ ଡାକ୍ତର ବିମଳ କର ବିବାହ କରି ଅବସର ପରେ ସମ୍ବଲପୁରରେ ହିଁ ରହିଯାଇଛନ୍ତି ବସବାସ କରି ।

ଠିକ୍ ଯେପରି ମୋର ବନ୍ଧୁ ଅଧ୍ୟାପକ ହଳଧର ପଣ୍ଡା ରହି ଯାଇଛନ୍ତି ସମ୍ବଲପୁରରେ ବସବାସ କରି । ମୋର ଜଣେ ବାନ୍ଧବ ଜନାର୍ଦ୍ଦନ ପଟ୍ଟନାୟକ ମଧ ସେଇପରି ରହିଯାଇଛନ୍ତି ବରପାଲି ପାଖରେ । ରାଜନୀତିଜ୍ଞ, ଅଭିନେତା ହରିଶ ମହାପାତ୍ରଙ୍କର ମଧ ବରପାଲି ଦ୍ୱିତୀୟ ଗୃହ ପାଲଟିଛି ।

ବିଦାୟ ସମ୍ବଲପୁର । ପରପାଟୀ ପର୍ବତରେ ଥିଲା ଅଠର ହଜାର ଚନ୍ଦନ ଗଛ । ସେ ସବୁକୁ ଚିହ୍ନଟ କରି ରଖାଯାଇଥିଲା । ସେ ବାଟରେ ରେଙ୍ଗାଲି ଗଲାବେଳେ ଚନ୍ଦନ ଗଛର ମହକ ବାଜୁଥିଲା ନାକରେ । ଅନେକ ବର୍ଷ ପରେ ରେଙ୍ଗାଲି ରେଞ୍ଜ ଅଫିସରଙ୍କୁ ଦିନେ ପଚାରିଲି, ସେଇବାଟ ଦେଇ ସମ୍ବଲପୁରକୁ ଆସିବା ବାଟରେ ସେ ଚନ୍ଦନ ଗଛ କଥା । ସେ ବିସ୍ମିତ ହେଲେ ଶୁଣି । କହିଲେ, କାଇଁ ଗୋଟିଏ ବି ତ ଚନ୍ଦନ ଗଛ ନାହିଁ ।

କିନ୍ତୁ ସେଇ ଚନ୍ଦନ ଗଛର ମହକ ଭରି ରହିଥିବ ଏଇ ପ୍ରାଣରେ ସାରା ଜୀବନ । ପରେ ଗୋଦାବରୀଶ ମହାପାତ୍ରଙ୍କ "ଉଠ କଙ୍କାଳ" ପଢ଼ିଲି– ସମ୍ବଲପୁର ସମ୍ବଳ ବୀର ଧୈର୍ଯ୍ୟ କି ଧରିପାରେ ?" କଙ୍କାଳକୁ ଉଠିବାକୁ ହେବ । ବର୍ତ୍ତମାନ କୁଆଡ଼େ କୋଶଳୀ ଭାଷାକୁ ସ୍ୱତନ୍ତ୍ର ଭାଷାରେ ରୂପଦେବା ପାଇଁ ଉଦ୍ୟମ ହେଉଛି । ଏହା ଶୁଭଙ୍କର କଥା । କିନ୍ତୁ ସ୍ୱତନ୍ତ୍ର କୋଶଳ

Digitized by srujan ka@gmail.com

ରାଜ୍ୟର ପ୍ରଶ୍ନ ଏହା ସହିତ ଉଠୁଛି । କୋଶଳ ରାଜ୍ୟ ହୋଇଗଲେ କ'ଣ ବିକାଶ ହୋଇଯିବ ? ନା ଏକ ପୂର୍ଣ୍ଣାଙ୍ଗ ଓଡ଼ିଶାର ବିକାଶ ହିଁ ହେବ ସାମୂହିକ ବିକାଶର ଏକମାତ୍ର ବାଟ ? ଏ ସଂପର୍କରେ ଜାତୀୟ ବିଚାର କରିବାର ବେଳ ଆସିଛି । ନଚେତ୍ କୋଶଳ ରାଜ୍ୟ ହେବ କି ନାହିଁ ସ୍ୱତନ୍ତ୍ର କଥା । କିନ୍ତୁ ମୟୂରଭଂଜ, କେଉଁଝର, ସୁନ୍ଦରଗଡ଼, ସମ୍ବଲପୁରରୁ କିଛିକୁ ଝାଡ଼ଖଣ୍ଡ ରାଜ୍ୟକୁ ଅର୍ପଣ କରିବାକୁ ଆମେ ବାଧ ହେବା ।

ସମ୍ବଲପୁର ଛାଡ଼ିଲାବେଳକୁ ମୋର ବୟସ ପନ୍ଦର ଷୋହଳ ବର୍ଷ । ବର୍ତ୍ତମାନ ବୟସ ୭୦ ଟପି ୭୧ ଧରିଲାଣି । କିଛି ନୋଟ ନାହିଁ, କିଛି ଟିପି ନାହିଁ । ସ୍ମୃତି ହିଁ ଏକମାତ୍ର ପାଥେୟ । ବୟସ କଞ୍ଚା । ତେଣୁ ଟିପିବାରେ ଏପଟ ସେପଟ ଭୁଲ ଭ୍ରାନ୍ତି ଦେଖାଯିବା ସ୍ୱାଭାବିକ । କିନ୍ତୁ ମୁଁ ଯାହା ଦେଖିଛି, ଯାହା ଶୁଣିଛି ତାକୁ ଇ ଟିପିଯିବି ଉତ୍ତରପୀଢ଼ି ପାଇଁ । ଅନ୍ତତଃ ଷାଠିଏ ବର୍ଷ ତଳର ଏକ ଚିତ୍ର ସେଥିରୁ ମିଳିପାରିଲେ ମୁଁ ସୁଖୀ ହେବି ।

ଆଗରୁ କହିଛି ନାନା କାରଣରୁ ସମଗ୍ର ଓଡ଼ିଶା ଘର ହୋଇଯାଇଛି । ସମ୍ବଲପୁର ଯେପରି ହୋମଲି ଠିକ୍ ସେଇପରି ଗଞ୍ଜାମ ଜିଲ୍ଲା ମୋର ହୋମ୍‌ଲି । ମୋର ମନେପଡୁଛି ଗାର୍ଲ ଚାଇଲ୍ଡ ଉପରେ ଆମେ ଏକ ସେମିନାର କରିଥିଲୁ କଟକରେ । ସମ୍ବଲପୁର, ଗଞ୍ଜାମ, ଢେଙ୍କାନାଳ, ବାଲେଶ୍ୱର ଓଡ଼ିଶାର ପ୍ରାୟ ସବୁ ଜିଲ୍ଲାରୁ ପ୍ରତିନିଧିମାନେ ଆସିଥିଲେ । ସେମାନଙ୍କ ସହିତ ବସି କଥାବାର୍ତ୍ତା ହେଲାବେଳେ ମୁଁ ସେମାନଙ୍କ କଥିତ ଭାଷାରେ ହିଁ କଥାବାର୍ତ୍ତା କରୁଥିଲି । ପ୍ରତିନିଧିମାନେ କଥାବାର୍ତ୍ତା ହେଉଥିଲେ ଯେ ଏଇ ଲୋକଟା କିମିତିକା ଲୋକ, ଏହାର ଘର କେଉଁଠି ? ବିଭିନ୍ନ ଜିଲ୍ଲାର ପ୍ରତିନିଧିମାନଙ୍କ ସହିତ କଥାବାର୍ତ୍ତା କଲାବେଳେ ସେମାନଙ୍କ ଭାଷାରେ କଥାବାର୍ତ୍ତା ହେଉଛି ।

ଜଣେ ପ୍ରତିନିଧି ଆଗ୍ରହ ସମ୍ଭାଳି ନ ପାରି ପ୍ରଶ୍ନ କଲେ, ଆପଣଙ୍କ ନିଜ ଘର କେଉଁଠି ? ମୁଁ ଉତ୍ତର ଦେବା ପୂର୍ବରୁ ମୋର ବନ୍ଧୁ ୰ ଶ୍ରୀମତୀ ସୌରିନ୍ଦ୍ରୀ ନାୟକ ଉତ୍ତର ଦେଲେ, ତାଙ୍କ ଘର ଓଡ଼ିଶାରେ । ତାଙ୍କର ନିଜ ଘର ନାହିଁ । ସୌରିନ୍ଦ୍ରୀ ନାୟକ ଆଉ ନାହାନ୍ତି । ତାଙ୍କର ସ୍ୱାମୀ ଦୁର୍ଗା ପ୍ରସାଦ ନାୟକ ମୋର ଛାତ୍ର ଜୀବନରେ ନେତା ଥିଲେ । ଚାକିରିରୁ ଅବସର ନେଲାପରେ ସେ ବର୍ତ୍ତମାନ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜଣେ ନେତା ।

ଜୀବନ ଗଡ଼ି ଚାଲିଛି । ପୁଣି ଥରେ ଓଡ଼ିଶାର ଦକ୍ଷିଣ ଅଞ୍ଚଳ ଏବଂ ରାଜନୈତିକ ଜୀବନର ଅୟମାରମ୍ଭ । ଓଡ଼ିଶାକୁ ଦକ୍ଷିଣ, ପଶ୍ଚିମ, ପୂର୍ବ ବୋଲି ମୁଁ ବିଚାର କରି ପାରି ନାହିଁ ।

ସମଗ୍ର ଓଡ଼ିଶା ସମଗ୍ର ଭାରତବର୍ଷ ମୋର ଜନ୍ମଭୂମି, ତାହା ହିଁ ମୋତେ ଆନ୍ତର୍ଜାତିକ କରିଛି । ମୁଁ ଓଡ଼ିଆ, ସେଇ ଯୋଗୁଁ ମୁଁ ଭାରତୀୟ ଏବଂ ସେଇଯୋଗୁଁ ହିଁ ମୁଁ ଆନ୍ତର୍ଜାତିକ ।



Digitized by srujan ka@gmail.com

# ସ୍ମୃତି ଓ ବିସ୍ମୃତି

ଅନେକ ଦିନର କଥା । ଏହା ଭିତରେ ପ୍ରାୟ ଷାଠିଏ ବର୍ଷ ଅତିକ୍ରାନ୍ତ ହୋଇସାରିଛି । ଆଜି ସମ୍ବଲପୁରର ମାନଚିତ୍ର ବି ବଦଳି ସାରିଛି । ବୁର୍ଲା, ରମ୍ଭେଲା ପ୍ରଭୃତି ଭୂଗୋଳରୁ ଯାଇ ଇତିହାସରେ । ହୀରାକୁଦର ଅତଳ ପାଣିର ଗର୍ଭରେ ସେଇ ଗ୍ରାମସବୁ ବର୍ତ୍ତମାନ । ମୋତିଝରଣର ସେ ଜଙ୍ଗଲ ଆଉ ସଂରକ୍ଷିତ ନୁହେଁ । ସମ୍ବଲପୁରର ଅସହ୍ୟ ଗରମକୁ ଶୀତଳାଇବା ପାଇଁ ଏଇ ପାହାଡ଼ରେ ଥିବା ଜଙ୍ଗଲକୁ ସଂରକ୍ଷିତ କରି ରଖାଯାଇଥିଲା ଏବଂ ଏହା ଭିତରେ ଥିବା କୌଣସି ଗଛରେ ହାତ ଦେବା ମଧ୍ୟ ନିଷିଦ୍ଧ ଥିଲା । ମୋତିଝରଣ ପାହାଡ଼ ଚାରିପଟରେ ଘେରିରହିଛି ରାସ୍ତା । ସମ୍ବଲପୁର ଦାନଗଦିରୁ ରାସ୍ତାଟିଏ ଉପରକୁ ଉଠିଯାଇଛି ବୁଲି ଆସିଛି ମୋତିଝରଣ ପାହାଡ଼ର ଚାରିପଟରେ ଆସି ମିଶିଯାଇଛି ଜେଲ ପାଖରେ ମୁଖ୍ୟ ରାସ୍ତାରେ ।

ପାହାଡ଼ ଘୁମାଏ । ଘୁମନ୍ତ ପାହାଡ଼ କଥା କୁହେ । କାନପାତି ଶୁଣିଲେ ସେ କହେ ଇତିହାସର କଥା । ମହାନଦୀ ବୋହି ଯାଇଛି ସମ୍ବଲପୁରର ପଦ ଧୌତ କରି । ତା'ର ଆରପଟରେ ବାର ପାହାଡ଼ ଲମ୍ବିଯାଇଛି ଦିଗ୍‌ବଳୟ ଭିତରେ । ସତେଯେପରି ଏକ ନାରୀର ଅଳସ ଦେହ ଲତାୟିତ ହୋଇଯାଇଛି ଚକ୍ରବାଡର କୋଳରେ । ଏଇ ପାହାଡ଼ କହେ ଇତିହାସର କଥା, ସୁରେନ୍ଦ୍ର ସାଏର କଥା ।

ଓଡ଼ିଶା ଗଲା ବ୍ରିଟିଶ ଶାସନକୁ ୧୮୦୩ ମସିହାରେ । କିନ୍ତୁ ଭଂଜନଗର, ଅନୁଗୋଳ, ସମ୍ବଲପୁର ରହିଗଲା ଅନେକ ଦିନ ପର୍ଯ୍ୟନ୍ତ ଅଜେୟ ହୋଇ । ବ୍ରିଟିଶ ସରକାର ତାଙ୍କର ଚିରାନୁଚରିତ କୌଶଳ ପ୍ରୟୋଗ କରିବାକୁ ହେଲା ଏହି ତିନୋଟିକୁ ଜୟ କରିବା ପାଇଁ । ଦୁରାରୋଧ ବାରପାହାଡ଼ର ଅରଣ୍ୟ ଆଶ୍ରୟ ଦିଏ ବୀର ସୁରେନ୍ଦ୍ର ସାଏଙ୍କୁ । ଏବେ ମହାନଦୀରେ ପୋଲ ତିଆରି ହୋଇ ଗଲାଣି । କିନ୍ତୁ ସେତେବେଳେ ତାହା ନ ଥିଲା । ବରଗଡ଼କୁ ଯିବା ପାଇଁ ଖରାଦିନିଆ ରାସ୍ତା ନଚେତ୍ ଡଙ୍ଗାରେ ନଦୀ ପାର ହୋଇ ଯିବାକୁ ପଡୁଥିଲା ।

ଆଗରୁ କହିଛି ଯେ ମୋର ପାରିବାରିକ ସମ୍ପର୍କୀୟମାନେ ଏକଦା ଟିକରପଡ଼ାରେ ଘାଟୀ ଜଗୁଥିଲେ, ବଣିକମାନଙ୍କଠାରୁ ଶୁଳ୍କ ଆଦାୟ ପାଇଁ । ତାଙ୍କୁ ପାଞ୍ଜିଆ କୁହାଯାଉଥିଲା । ଏ କାହାଣୀ ଶୁଣି ଇଚ୍ଛା ହୋଇଛି ମହାନଦୀରେ ଥରେ ସମ୍ବଲପୁରରୁ କଟକ ଆସିବା ପାଇଁ । ଡଙ୍ଗାରେ ଯାତ୍ରା ସମୟ ସାପେକ୍ଷ, ବିପଦସଂକୁଳ । ବାପା ମାଆ କ'ଣ ସହଜରେ ରାଜି ହେବେ ଛାଡ଼ିବାପାଇଁ । ଦୈବାତ୍ ଦାଦା ବିରଞ୍ଚିନାରାୟଣଙ୍କର କ'ଣ ଗୋଟାଏ କାମ ପଡ଼ିଲା କଟକରେ । ଆଗରୁ ମଧ୍ୟ କହିଛି ସେତେବେଳେ ପେଟ୍ରୋଲ ମିଳୁ ନ ଥିଲା । ତେଣୁ କୋଇଲା ଇଞ୍ଜିନରେ ସେ ସବୁ ଆସୁଥିଲା ସମ୍ବଲପୁରରୁ ମେରାମୁଣ୍ଡଳୀ ପର୍ଯ୍ୟନ୍ତ । ହଠାତ୍ ସେତିକିବେଳେ କୋଇଲା ମଧ୍ୟ ମିଳିଲା ନାହିଁ ।

Digitized by srujan ka@gmail.com

ସୁତରାଂ ଗୋଟିଏ ଚାପରେ (ଦୁଇଟି ଡଙ୍ଗାକୁ ଯୋଡ଼ି ଯେଉଁ ଡଙ୍ଗା ହୁଏ ତାକୁ ଚାପ କୁହାଯାଏ) ଯିବାକୁ ହେବ କଟକ । ଅନେକ ଚାପରେ ସେତେବେଳକୁ କାଠ ବୁହା ହୋଇ ମହାନଦୀ ସୁଅରେ ଅଣାଯାଉଥିଲା କଟକ ।

ଆମେମାନେ ଦାଦା ଏବଂ ତାଙ୍କର ଦୁଇ ପୁତୁରା, ମୁଁ ଓ ମୋର ସାନ ଭାଇ । ଆଗରୁ କହିଛି ଯେ ଆମ ଘରେ ଦାଦାଙ୍କ କଥାକୁ କେହି ଅମାନ୍ୟ କରନ୍ତି ନାହିଁ । ସେ ନିଜେ ମୋ ବାପାଙ୍କ କଥାକୁ କଦାପି ଅମାନ୍ୟ କରେ ନାହିଁ । ସେ ଚାହିଁଲା ମାନେ ବାପା ନିଶ୍ଚୟ ହଁ କରିବେ । ତେଣୁ ଯାତ୍ରା ଆରମ୍ଭ ହେଲା ସମ୍ବଲପୁରରୁ କୌଣସି ଏକ ସକାଳରେ । ମୋର ଯାହା ମନେପଡୁଛି ପ୍ରାୟ ପାଞ୍ଚଦିନ ଲାଗିଥିଲା କଟକରେ ଚହଟା ପାଖରେ ଲାଗିବା ପାଇଁ । ସେଇ ଯାତ୍ରାର ସ୍ମୃତି କ୍ଷୀଣ ହୋଇଗଲାଣି । ତେବେ ପ୍ରଥମ ଥର ପାଇଁ ତତଲା ନଈ ବାଲିରେ ପୋତି ସିଝିଯାଇଥିବା ମାଛ ତରକାରୀ ଖାଇବାର ସ୍ମୃତି ଭୁଲି ହେଉନାହିଁ । ମାଛ ଧରାଯାଏ ନଈରୁ । ସେଇ ମାଛକୁ ବାଛି ଦେଇ ମସଲା ଗୋଳାଇ ତତଲା ବାଲିରେ ପତ୍ର ଗୁଡ଼ାଇ ପୋତି ଦିଆଯାଏ ଏବଂ ଦୁଇଘଣ୍ଟା ପରେ ତାକୁ ଖିଆଯାଏ, କେବେ କେବେ ଭାତ ସହିତ, କେବେ କେବେ ସେଇପରି । ମୋର ସେପରି ଅଭିଜ୍ଞତା ନ ଥିଲା । ତେବେ ଟଟକା ମାଛ ବେଶ୍ ସୁସ୍ୱାଦୁ ଲାଗିଲା । ପରେ ଠିକ୍ ସେହିପରି ଠେକିରେ ଚାଉଳ ରଖି ବାଲିରେ ପୋତିଦେଲେ କିଛି ସମୟ ପରେ ଭାତ ହୋଇଯାଏ ଖାଇବା ପାଇଁ । ମହାପ୍ରସାଦ ଖାଇଲା ପରି ଲାଗେ । କିନ୍ତୁ ସବୁଠାରୁ ମନୋରଞ୍ଜନ ଥିଲା ଟିକରପଡ଼ାଠାରୁ ବଡ଼ମୂଳ ପର୍ଯ୍ୟନ୍ତ । ନାଉରିମାନେ ଦେବୀ ଆରାଧନା କରି ଟିକରପଡ଼ାରୁ ଡଙ୍ଗା ଛାଡ଼ନ୍ତି । ସାତ କୋଶ ବାଟ । କିନ୍ତୁ ନଈରେ କୁମ୍ଭୀର, ଜଙ୍ଗଲରେ ବାଘ, ହାତୀ ସମସ୍ତେ ସ୍ୱତନ୍ତ୍ର ଅବସ୍ଥାରେ ଥାଆନ୍ତି । ପିଲାଦିନର କଥା । ବିଶେଷ କିଛି ମନେ ନାହିଁ । ପରେ ଉତ୍ତର ଜୀବନରେ ଇଚ୍ଛା ହୋଇଛି ସେଇପରି ଆଉ ଥରେ ଆସିବା ପାଇଁ । କିନ୍ତୁ ସମ୍ଭବ ହୋଇପାରି ନାହିଁ । ଅବଶୋଷ ରହିଯାଇଛି । କାରଣ ପିଲା ଆଖିରେ ଯାହାସବୁ ଯେମିତି ଦିଶୁଥିଲା, ପରେ ତାହା ଦେଖିଲା ବେଳକୁ ସେପରି ଲାଗେ ନାହିଁ ।

ବ୍ରହ୍ମପୁରା ଗୁଡ଼ି (ସମ୍ବଲପୁରରେ ମନ୍ଦିରକୁ ଗୁଡ଼ି କହନ୍ତି) ପିଲା ଆଖିରେ କେତେବଡ଼, କେତେ ଉଚ୍ଚ ଦେଖାଯାଉଥିଲା । କିନ୍ତୁ ୩୦/୪୦ ବର୍ଷ ବ୍ୟବଧାନ ପରେ ସେଇ ଗୁଡ଼ି ବା ମନ୍ଦିର ତ କେତେ ଉଚ୍ଚର ଭଳି ମନେହେଲା । ଠିକ୍ ସେଇପରି ମୋତିଝରଣ ପାହାଡ଼ ଭିତରେ ଥିବା ଆମେ ରହୁଥିବା ଘରଟା ବିଶାଳକାୟ ମନେ ହେଉଥିଲା । ପରେ ଯାଇଛି, ଦେଖିଛି, ଅନେଇଛି । ସେତେବଡ଼ ଆଉ ଦେଖାଯାଉ ନାହିଁ, ଘର, ପାହାଡ଼ ସବୁ ।

ମନେପଡ଼ିଲା ପାବ୍‌ଲୋ ପିକାଶୋଙ୍କ କଥା । ସେ ଜଣେ ପ୍ରସିଦ୍ଧ ସଫଳ କଳାକାର । ପ୍ରସିଦ୍ଧ ଚତ୍ରକର ଭାନ୍‌ଗଗ୍ ନିଜ ଜୀବଦ୍ଦଶାରେ ଖଣ୍ଡିଏ ଚିତ୍ର ବି ବିକ୍ରୀ କରିପାରି ନ ଥିଲେ । କ୍ଷୁଧାର ତାଡ଼ନାରେ ସେ ନିଜ କାନକୁ କାଟି ଖାଇଗଲେ । ମୃତ୍ୟୁ ପରେ ତାଙ୍କର ଖଣ୍ଡିଏ ଖଣ୍ଡିଏ

Digitized by srujan ka@gmail.com

ଚିତ୍ର କୋଟି କୋଟି ଟଙ୍କାରେ ବିକ୍ରୀ ହୋଇଛି । ଥରେ ମାଲିକାନା ବଦଳି ହେଲେ ଦାମ୍ ବଢ଼ି ଯାଇଛି ଲକ୍ଷ ଲକ୍ଷ ଟଙ୍କା । କିନ୍ତୁ ପାବଲୋ ପିକାଶୋ ତାର ଏକ ଅତିକ୍ରମ ।

ସ୍ପେନରେ ଜନ୍ମ ଏଇ କଳାକାର ବଢ଼ିଥିଲେ ଫ୍ରାନ୍ସରେ ଏବଂ ସେଇଠି ରହି ଯାଇଥିଲେ ଶେଷ ପର୍ଯ୍ୟନ୍ତ । ଏପରିକି ହିଟଲର ଯେତେବେଳେ ଫ୍ରାନ୍ସ ଅଧିକାର କରିଗଲା ସେତେବେଳେ ମଧ୍ୟ ସେ ଫ୍ରାନ୍ସ ଛାଡ଼ିବାକୁ ମନା କରିଥିଲେ । ଆଗରୁ ଲା ପାସୋନୋରିଆ ବା ଡଲଭିସ ଇବାସୁରିଙ୍କ ନେତୃତ୍ୱରେ ଗଠିତ ସ୍ପେନ ରିପବ୍ଲିକକୁ ରକ୍ଷା କରିବା ପାଇଁ ଗଠିତ ଆନ୍ତର୍ଜାତିକ ବିଗ୍ରେଡ଼ରେ ଯୋଗ ଦେଇଥିଲେ । ଜେନେରାଲ ଫ୍ରାଙ୍କୋଙ୍କ ସାମରିକ ବାହିନୀ ଦ୍ୱାରା ସ୍ପେନ ଅଧିକୃତ ହେଲାପରେ ସେ ସ୍ପେନ ଛାଡ଼ି ଫ୍ରାନ୍ସରେ ରହିବାକୁ ବାଛି ନେଇଥିଲେ ।

କଳାର ବିକାଶର ସବୁ ଧାରା ସବୁ ସ୍ତରକୁ ଟପି ସାଫଲ୍ୟର ପାହାଚରେ ଚଢ଼ି ଯାଇଥିଲେ ପିକାଶୋ । ସରରିଏଲିଜମ୍, ଫ୍ୟୁଚରିଜମ୍, ଟୁ ଡାଇମେନ୍‌ସାଲ୍ ଠାରୁ ଆରମ୍ଭ କରି ଫୋର ଡାଇମେନସାଲ ପର୍ଯ୍ୟନ୍ତ ସବୁ ଧାରାରେ ସେ ଆପଣାର ସାଫଲ୍ୟ ଏବଂ ପ୍ରାଧାନ୍ୟ ପ୍ରତିଷ୍ଠା କରିଥିଲେ । ଅଥଚ ଗୋଟିଏ ଧାରାରେ ବହୁ ପ୍ରତିଷ୍ଠିତ କଳାକାର ପରବର୍ତ୍ତୀ କାଳକୁ ଧାରାର ପରିବର୍ତ୍ତନରେ ଆପଣାକୁ ହଜାଇ ଦେଇଛନ୍ତି । ପିକାଶୋଙ୍କ କ୍ଷେତ୍ରରେ ତାହା ଘଟିପାରି ନାହିଁ ।

ଠିକ୍ ସେଇପରି ଘଟିଛି ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଅଭିନେତା ଚାର୍ଲି ଚାପଲିନଙ୍କ କ୍ଷେତ୍ରରେ । ନିର୍ବାକରୁ ସବାକ ଚଳଚିତ୍ର ଉଭୟରେ ସେ ଆପଣାର ସାଫଲ୍ୟ ପ୍ରତିଷ୍ଠା କରି ପାରିଛନ୍ତି ।

ଭାରତବର୍ଷରେ ଚଳଚିତ୍ର ଅଭିନେତା 'ଦାଦାମଣି' ଅଶୋକ କୁମାର ମଧ୍ୟ ସେଇ ଶ୍ରେଣୀଭୁକ୍ତ । ନିଜେ ଗୀତ ଗାଇ ଚଳଚିତ୍ରରେ ଅଭିନୟ କରିବା ଯୁଗଠାରୁ ଆରମ୍ଭ କରି ପ୍ରଚ୍ଛଦପଟ୍ଟ ଗାୟକଙ୍କ ଯୁଗ ପର୍ଯ୍ୟନ୍ତ ଏକ ବିରାଟ କାନଭାସ ଉପରେ ସେ ଆପଣାକୁ ପ୍ରତିଷ୍ଠିତ କରି ରଖି ପାରିଛନ୍ତି ଏବଂ 'କାକାମଣି' ଭାବରେ ପରିଚିତ ଅଶୋକ କୁମାର ତିନିପୁରୁଷକୁ ଦେଇଛନ୍ତି ଆପଣାର ଅବଦାନ । ଓଡ଼ିଶାର ସାହିତ୍ୟ ଜଗତରେ ଶ୍ରୀ ସଚ୍ଚି ରାଉତରାୟ ଠିକ୍ ସେଇପରି ସାହିତ୍ୟ ଧାରାର ବିଭିନ୍ନ ରୂପାନ୍ତରର ପ୍ରତିବନ୍ଧକକୁ ଅତିକ୍ରମ କରି ଆପଣାକୁ ପ୍ରତିଷ୍ଠିତ କରି ରଖିପାରିଛନ୍ତି । ପଲ୍ଲୀଶ୍ରୀରୁ ଭାନୁମତିର ଦେଶ, ବାଜିରାଉତରୁ ପାଣ୍ଡୁଲିପି ବା ତାଙ୍କର ଆଧୁନିକ କବିତା ସଂକଳନ ତାହାର ପ୍ରତିଛବି ବହନ କରେ ।

କିନ୍ତୁ ପାଣ୍ଡୁଲିପି ପରେ ତାଙ୍କର କବିତା ମନକୁ ଛୁଏଁ କିନ୍ତୁ ଆଉ ମନେ ରହେ ନାହିଁ । ସ୍ମରଣର ସୀମାକୁ ତାହା ଛୁଇଁ ପାରେ ନାହିଁ । ଏକଥା ସଚ୍ଚିବାବୁଙ୍କୁ କହିଲେ ସେ ଓଲଟି କହିଲେ ଯେ ନୂତନତ୍ୱକୁ ଗ୍ରହଣ କରିବା ତମ ପାଇଁ ସମ୍ଭବ ହୋଇ ପାରିନାହିଁ ।

ପାବଲୋ ପିକାଶୋଙ୍କ ସହ ଭେଟ ହୁଏ ଏକ ଆନ୍ତର୍ଜାତିକ ସମ୍ମିଳନୀରେ ବୋଧହୁଏ ଷ୍ଟକହଲମ ସହରରେ । ସାହସ ବାନ୍ଧି ପଚାରିଲି ତାଙ୍କୁ– ''ଆପଣଙ୍କର ଚିତ୍ର କ୍ରମେ ଅବୋଧ

Digitized by srujan ka@gmail.com

ହୋଇଯାଉଛି ।'' ସେ ହସିଦେଇ କହିଲେ, ''ଜଣେ ଚାରିବର୍ଷର ଶିଶୁ ଯେପରି ଭାବରେ ପ୍ରକୃତିକୁ ଦେଖେ ମୁଁ ତାରି ଆଖି ନେଇ ଚିତ୍ର ଆଙ୍କୁଛି ।'' ତାଙ୍କୁ ସେତେବେଳକୁ ନବେ ବର୍ଷ ପାଖାପାଖି ହୋଇଥିଲା । କିନ୍ତୁ ତା'ର କିଛି ବର୍ଷ ପରେ ସେ ହଠାତ୍ କହିବାକୁ ଆରମ୍ଭ କଲେ ଯେ ମୁଁ ମୋର ଯାହା ଇଚ୍ଛା ସେହିପରି ଆଙ୍କିଛି । ଧନାଢ଼୍ୟ କିନ୍ତୁ କଳା ସଂପର୍କରେ ଅବୋଧ ବ୍ୟକ୍ତିମାନଙ୍କର ଅଜ୍ଞତାର ଫାଇଦା ଉଠାଇଛି ମୁଁ । ମୋର ପବ୍ଲିସିଟି ମୋତେ ଏଥିପାଇଁ ସାହାଯ୍ୟ କରିଛି ।

ମୁଁ କିନ୍ତୁ ଏଇ ମୋତିଝରଣ ପାହାଡ଼, ବ୍ରହ୍ମପୁରା ଗୁଡ଼ି ବା ନନ୍ଦପଡ଼ାର ଗୁଡ଼ିକୁ ବେଶ୍ କିଛି ବର୍ଷ ବ୍ୟବଧାନରେ ଦେଖିଲାବେଳେ ଏକ ସ୍ୱତନ୍ତ୍ର ଶିହରଣ ଅନୁଭବ କରିଛି ।

ସେଇ ପାହାଡ଼, ସେଇ ଗଛ, ସେଇ ମହୁଲ ଫୁଲ, କଣ୍ଟେଇ କୋଳି ଫଳ ଏକ ନୂତନ ଅନୁଭବର ଝଲକ ସୃଷ୍ଟି କରିଛି । ଏପରିକି ସେମାନଙ୍କର ବାସ୍ନା ବଦଳି ଯାଇଛି, କେମିତି କେମିତି ।

ମୋତିଝରଣରୁ ଆମେ ଉଠିଯାଇଥିଲୁ କିଛି ମାସ ପାଇଁ କରବଗା ଗ୍ରାମକୁ । ଆଗରୁ କହିଛି ଯେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଓଡ଼ିଶା ହେଉଛି ଏକମାତ୍ର ରାଜ୍ୟ ଯାହାର ରାଜଧାନୀ ଉଠି ଯାଇଥିଲା କଟକରୁ ସମ୍ବଲପୁରକୁ । ସମ୍ବଲପୁରରେ ମଧ ରହିବା ନିରାପଦ ହେଲା ନାହିଁ । ଆମର ରହଣୀ ସ୍ଥାନ ଦୃଷ୍ଟିରୁ । କତରବଗା ଗାଁ । ଗାଁ ମଝିରେ ଛୋଟିଆ ନାଳଟିଏ ବୋହିଯାଉଥାଏ । କେତେ ବା ପାଣି ? ଆଣ୍ଠୁଏ ହେବ କି ନାହିଁ ସନ୍ଦେହ ! ସେଇ ପାଣିରେ ଆମେସବୁ ଖେଳୁ ଗାଁର ପିଲାମାନଙ୍କ ସହିତ । ପାଣି କାଦୁଅ ପାଲଟେ । ନାଳ ପାଖରେ ଥିବା ବୁଦା ଭିତରେ ଗୁଣ୍ଡୁଚିମୂଷାଙ୍କ ଖେଳ, ସାଧବବୋହୂ ପୋକ ସବୁ ଆଜି ବି ମନେପଡ଼େ । ସେଇ ପାଖରେ ବଡ଼ ପୋଖରୀ, ଶହଶହ ପଦ୍ମଫୁଲ ଫୁଟେ । ମୋର ମନେପଡୁଛି । ସେଇ ଗ୍ରାମରେ ଥିବା ସ୍ୱଳ୍ପ ସମୟ ଭିତରେ ଥରେ ପଡ଼ିଥିଲା ସରସ୍ୱତୀ ପୂଜା । ବାପା ପୂଜାର ଆୟୋଜନ କରିଥିଲେ ଏବଂ ଗ୍ରାମ ସ୍କୁଲର ସବୁ ଛାତ୍ରଛାତ୍ରୀମାନଙ୍କୁ ଖାଇବାକୁ ଦେଇଥିଲେ । ସ୍କୁଲ ପିଲାମାନେ ଆସିଲେ, କିନ୍ତୁ ଗାଁରେ ଯେ ଅନେକ ସ୍କୁଲକୁ ଯାଇପାରୁ ନ ଥିବା ପିଲା ରହିଗଲେ ତା'ର ଖିଆଲ ସେ କରି ନ ଥିଲେ ବୋଧହୁଏ । ସ୍କୁଲ ପିଲାମାନେ ଆସିଲେ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ସହିତ । କିନ୍ତୁ ଖାଇବା ସ୍ଥାନର ବାହାରେ ଠିଆ ହେଲେ ଅନେକ ପିଲା । ସେମାନେ ପଶିବାକୁ ସାହସ କରି ପାରୁନାହାନ୍ତି । କିନ୍ତୁ ବିକଳ ଭାବରେ ଅନେଇଛନ୍ତି । କି କରୁଣ ସେ ଦୃଶ୍ୟ !

ମୋର ଟିକିଏ ଟିକିଏ ମନେପଡୁଛି । ଆମେ ଦୁଇ ଭାଇ ଯାଇ ବାପାଙ୍କୁ ଅଳି କଲୁ, ସେମାନଙ୍କୁ ଡାକିବା ପାଇଁ । କିନ୍ତୁ ସେଦିନ ତ ବାପା ତାଙ୍କୁ ଡାକିପାରିବେ ନାହିଁ । କାରଣ ଖାଇବା ଅଣ୍ଟିବ ନାହିଁ । ତେଣୁ ତା' ପରଦିନ ସେମାନଙ୍କ ପାଇଁ ଆଉ ଗୋଟିଏ ଭୋଜି ହେଲା ।

ସେଇଦିନଠାରୁ ସେଇ ସ୍କୁଲକୁ ଯାଇପାରୁ ନ ଥିବା ବା ସ୍କୁଲରୁ drop-out ପିଲାଙ୍କ ପାଇଁ ମୋର ଏକ ଦରଦ ରହିଛି, ଏକ ଅହେତୁକ ଦରଦ ।

Digitized by srujan ka@gmail.com

ଆଜି କୁଜଙ୍ଗ, ନିଆଳୀ, ଏରସମା ବ୍ଲକରେ ସେଇ ପିଲାମାନଙ୍କୁ ପଢ଼ାଇବାର କାର୍ଯ୍ୟକ୍ରମ ଭିତରେ ମୁଁ ପାଇଚି ତୃପ୍ତି । ସେମାନଙ୍କୁ ଶିକ୍ଷା ଦେଉଥିବା ଶିକ୍ଷୟିତ୍ରୀ ଶିକ୍ଷକମାନଙ୍କ ପାଇଁ ରହିଛି ଏକ ସ୍ୱତନ୍ତ୍ର ଅନୁକଂପା । ସେଇ ଛାତ୍ରଛାତ୍ରୀ, ସେମାନଙ୍କର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଦେଖିଲେ ଆଖିରେ ଲୁହ ଭରିଯାଏ ।

ସମ୍ବଲପୁର ସହରରେ ଥିବାବେଳେ ପ୍ରଥମେ ପଢୁଥିଲି ପଟ୍ଟନାୟକପଡ଼ା ମାଇନର ସ୍କୁଲରେ । ପରେ ମାଇନର ପରୀକ୍ଷା ପାଶ୍ ପରେ ଗଲି ଜିଲ୍ଲା ସ୍କୁଲକୁ । ପ୍ରାୟ ଚାରି ପାଞ୍ଚ କିଲୋମିଟର ଚାଲି ଚାଲି ଯାଉ ।

ପଟ୍ଟନାୟକ ପଡ଼ା ମାଇନର ସ୍କୁଲରେ ପାଠ ପଢୁଥିଲାବେଳେ ଦିନେ ସ୍କୁଲରେ ମୋତେ ହଠାତ୍ ଜର ହେଲା । ଜରର ଉତ୍ତାପ ବଢ଼ିଚାଲିଲା । ମୋତେ ଶୋଷ ହେବାରୁ ମୁଁ ଶିକ୍ଷକଙ୍କ ଅନୁମତି ମାଗିଲି ପାଣି ପିଇବା ଲାଗି ଯିବା ସକାସେ । କାରଣ ଜଣାଇବାଟା ବୋଧହୁଏ ଭୁଲ୍ ହୋଇଗଲା । କାରଣ ଜ୍ୱର ହେଉଛି, ଜ୍ୱର ଥିବାବେଳେ ପାଣି ପିଇବା ଉଚିତ୍ ନୁହେଁ, ଏହା ହିଁ ଥିଲା ଶିକ୍ଷକମାନଙ୍କ ଧାରଣା । ସେ ମୋତେ ପାଣି ପିଇବାକୁ ଛାଡ଼ିଲେ ନାହିଁ କି ଘରକୁ ଯିବାକୁ ବି ଛାଡ଼ିଲେ ନାହିଁ । କାଳେ ମୁଁ ବାଟରେ ପାଣି ପିଇଦେବି ! କିଛି ସମୟ ପରେ ମୁଁ ଅଚେତ ହୋଇଗଲି । ପାଖରେ ଥିବା ଏ ଲକ୍ଷ୍ମଣ ମିଶ୍ର (ପୋଲିସ ଇନ୍ସପେକ୍ଟର ବୋଧହୁଏ ସେତେବେଳେ)ଙ୍କ ଘରକୁ ଖବର ଦିଆଗଲା । କାରଣ ସେ ମୋ ବାପାଙ୍କର ବନ୍ଧୁଥିଲେ । ସେ ମୋତେ ଡାକ୍ତର ଦେଖାଇ, ପାଣିପିଇବାକୁ ଦେଇ, ଘରକୁ ପଠାଇଦେଲେ ଏବଂ ପାଣି ପିଇବାକୁ ଛାଡ଼ି ନ ଥିବା ଉକ୍ତ ଶିକ୍ଷକଙ୍କୁ ଭର୍ତ୍ସନା କଲେ । ଉକ୍ତ ଶିକ୍ଷକ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଜ୍ୱର ସମୟରେ ପାଣି ପିଇବାକୁ ଦେବା ଉଚିତ ମନେକଲେ କି ନାହିଁ, ଜାଣେ ନାହିଁ, କିନ୍ତୁ ପୁଲିସ ଇନ୍ସପେକ୍ଟର କହିଛନ୍ତି ତାହା ଅନ୍ୟଥା ଆଉ ହେବା ଉଚିତ ହେବନାହିଁ ।

୧୯୪୩ ମସିହାର ପ୍ରାରମ୍ଭ କାଳରେ ବାପା ଚାଲିଗଲେ ରେଙ୍ଗାଲୀକୁ । ସେଠାରେ ତାଙ୍କର ନୂତନ ସରକାରୀ ଘର ନିର୍ମାଣ ସରିଗଲା । ସମ୍ବଲପୁରରେ ସେକ୍ରେଟେରିଏଟ୍‌ରେ ଥିବା ଆମର ବନ୍ଧୁବାନ୍ଧବ, ପରିଚିତ ସମସ୍ତଙ୍କର ମେଳା ଜମେ । ଶନିବାର ସନ୍ଧ୍ୟା ଏବଂ ରବିବାର ଦିନ ରେଙ୍ଗାଲିରେ ଛୁଟି କଟାଇବାକୁ ସେମାନେ ଆସନ୍ତି । କୁକୁଡ଼ା ମାଂସ ଏବଂ କେବେ କେବେ କୁଟୁରା ମାଂସର ଭୋଜି ହୁଏ । କୁକୁଡ଼ା ଖାଇବା ସେତେବେଳେ ଅଣ-ହିନ୍ଦୁ ଏବଂ ବାବୁଆନି ଲୋକମାନଙ୍କ ମଧ୍ୟରେ ସୀମିତ ଥିଲା । ଏବେ କୁକୁଡ଼ା ସାଧାରଣ ମଣିଷର ଖାଦ୍ୟ ହୋଇଯାଇଛି ଏବଂ କୁକୁଡ଼ା ମାଂସ ଖାସି ମାଂସଠାରୁ ଶସ୍ତା ହୋଇଯାଇଛି । ସେତେବେଳେ ଥିଲା ତା'ର ଠିକ ଓଲଟା କୁକୁଡ଼ା ମାଂସକୁ ଆରିଷ୍ଟୋକ୍ରାଟିକ ଖାଦ୍ୟ ବୋଲି ବିବେଚନା କରାଯାଉଥିଲା ।

ସେଇଠିକୁ ଆସନ୍ତି ମୋର ମାମୁଁ ଶ୍ରୀ ରାଜକିଶୋର ପଟ୍ଟନାୟକ । ଘର ଖୁଣ୍ଟକଟା । ଆସେ ସୁଲି ମାଉସୀ । ଦିହେଁ ଆଉ ନାହାନ୍ତି । ରାଜମାମୁଁ ଥିଲେ ବିଜୁ ପଟ୍ଟନାୟକଙ୍କର ସହପାଠୀ

Digitized by srujan ka@gmail.com

ବନ୍ଧୁ । କିନ୍ତୁ କେବେ ତାଙ୍କଠାରୁ କୌଣସି ସାହାଯ୍ୟ ଲୋଡ଼ିନାହାନ୍ତି । ସେଇ ସାଇକେଲ ପ୍ୟାଡଲରେ ଗୋଡ଼ ଦେଇ ଖୋଜିବେ ବିଜୁବାବୁଙ୍କୁ । କିରେ ତୁ କିମିତି ଅଛୁ ? ତୋତେ ଖାଲି ଦେଖିବା ପାଇଁ ଆସିଥିଲି । ସେତିକି ମାତ୍ର । ବିଜୁ ପଟ୍ଟନାୟକ ଖେଦରେ କହନ୍ତି କୁଆଡ଼େ ଆସିଥିଲା କିଛି ତ କହିଲା ନାହିଁ ?

ଏଇ କଟକ ବସାକୁ ମାମୁଁ ଆସନ୍ତି । ବରାଦ କରି ଯାଆନ୍ତି ମୋ ସ୍ତ୍ରୀଙ୍କୁ ସେ ରାତିରେ ଶୋଇବେ, ତେଣୁ ବିଛଣାଟିଏ ପାରି ରଖିବା ପାଇଁ । ଏବଂ ପଡ଼ୋଶୀ ବନ୍ଧୁ ଭିକାରୀ ମିଶ୍ରଙ୍କୁ କହନ୍ତି ଆମର ଭଣଜା (ମାନେ ମୁଁ) ଦେଖାମିଳେ ନାହିଁ । କୁଆଡ଼େ ବୁଲୁଛି କେଜାଣି !

କିନ୍ତୁ ଭଣଜାବୋହୂ ଆମର ଭାରି ଭଲ । ତା'ରି ପାଖରେ ଆମର ସବୁ କାମ ! ସେ ଜୀବନରେ ବହୁ କାର୍ଯ୍ୟରେ ହାତ ଦେଇଥିଲେ । ସେକ୍ରେଟେରିଏଟ୍‌ରେ କିରାନୀ, ଅଫିସର, ଗଡ଼ଜାତରେ ଦେବାନ, ଜେଲ ବିଭାଗରେ ଜେଲର ଇତ୍ୟାଦି ବହୁ ପ୍ରକାର କାମ । ସମସ୍ତଙ୍କ ସହିତ ତାଙ୍କର ପରିଚିତି ଏବଂ ସର୍ବଦା ଅନ୍ୟର ସାହାଯ୍ୟ ପାଇଁ ପ୍ରସ୍ତୁତ ।

ରେଙ୍ଗାଲିକୁ ଆସିବା ଭିତରେ ମୋର ମନେପଡୁଛି ସୁର ମାମୁଁଙ୍କ କଥା । ସୁର ମାମୁଁ ସେତେବେଳେ ବି ଖଦଡ଼ ପିନ୍ଧୁଥିଲେ । ପରେ ସେ ସରକାରୀ ଚାକିରି ଛାଡ଼ି ରାଜନୀତିରେ ଯୋଗ ଦେଇଥିଲେ ଏବଂ ଢେଙ୍କାନାଳ ନିର୍ବାଚନ ମଣ୍ଡଳୀରୁ ଜୟଲାଭ କରି ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେ ଥିଲେ ଜଣେ ଖେଳାଳୀ । ବିଶେଷତଃ ଟେନିସ ଥିଲା ତାଙ୍କର ଖୁବ୍ ପ୍ରିୟ ଖେଳ । ତାଙ୍କର ପୁଅ ଦେବେନ୍ଦ୍ର ମୋହନ ପଟ୍ଟନାୟକ ଓଡ଼ିଶା ହାଇକୋର୍ଟର ପୂର୍ବତନ ବିଚାରପତି ।

ରେଙ୍ଗାଲିରୁ ପ୍ରତିଦିନ ଦୁଇଭାଇ ଟ୍ରେନ୍‌ରେ ଆସୁ କଟକ ବା ସମ୍ବଲପୁର ରୋଡ଼ । ଗାଡ଼ି ପହଞ୍ଚୁଥାଏ ଆଠଟା ବେଳକୁ । ତା'ପରେ ଦୁଇ ଘଣ୍ଟା ଷ୍ଟେସନରେ ଥିବା ତୃତୀୟ ଶ୍ରେଣୀ ବିଶ୍ରାମାଗାରରେ 'ପଠନ' । ଅବଶ୍ୟ ସେତେବେଳକୁ ଯାତ୍ରୀ ସଂଖ୍ୟା ନଗଣ୍ୟ । ବର୍ଷକୁ କେବଳ କେତୋଟି ଦିନ ଭିଡ଼ ହୁଏ, ଯେଉଁ ଦିନମାନଙ୍କରେ ଆସାମ ଚାହା ବଗିଚାମାନଙ୍କୁ କୁଲି ଚାଲାଣ ହୁଏ । ସେମାନେ କାନ୍ଦନ୍ତି ସମ୍ମିଳିତ ଭାବରେ, ରେଳ ଲାଇନ ଉପରେ ଇଂଜିନ ପାଖରେ ନଡ଼ିଆ ଭାଙ୍ଗନ୍ତି । କାରଣ ଯିଏ ଯାଏ ସେ କେବେ ଫେରିବ ତାହାର କୌଣସି ଠିକଣା ନାହିଁ । ସେଇ ଯୋଗୁଁ ବୁକୁର ଲୁହସବୁ ଆଖି ଫଟାଇ ବାହାରି ଆସେ । ଟ୍ରେନ ଆସିବାର ଦୁକୁ ଦୁକୁ ଶବ୍ଦ ସହିତ, ସେମାନଙ୍କର ବୁକୁର ଦୁକୁ ଦୁକୁ ଶବ୍ଦ ମିଶିଯାଏ ।

ତା' ପୂର୍ବଦିନ ବୁକ୍‌ସିଲର ପଛ ପାଖରେ ଥିବା ଏକ ମନ୍ଦିରରେ ଭିଡ଼ ଜମିଯାଏ । ପାହାଡ଼ର ଖୋଲ ଦେହରେ ମୂର୍ତ୍ତି । କି ମୂର୍ତ୍ତି ମୋର ମନେପଡୁ ନାହିଁ । ପ୍ରତି ଅରଣ୍ୟର ଭିତରେ, ପ୍ରତି ଘାଟୀ ପାଖରେ ଦେବୀମୂର୍ତ୍ତି ଅଛି । ସେମାନଙ୍କୁ ମୁଣ୍ଡିଆ ମାରି ଲୋକେ ଘାଟୀ ଚଢ଼ନ୍ତି, ଅରଣ୍ୟ ଭିତରକୁ ମଣିଷ ଆଶ୍ରା ଖୋଜେ, ସାହା ଖୋଜେ । କାରଣ ଆଗରେ ଥିବା ପ୍ରକୃତି ଆଗରେ ସେ ନଗଣ୍ୟ, ଅସହାୟ !

Digitized by srujan ka@gmail.com

ସେଇ ଦେବୀମୂର୍ତ୍ତି ନାଲି ରଙ୍ଗ ବୋଳା ହୋଇ ଟହ ଟହ ଦିଶନ୍ତି । ମୋର ସେତିକି ମନେ ଅଛି । ତାଙ୍କ ପାଖରେ କେବେ କେବେ ପୁରୁଷ ସ୍ତ୍ରୀ ମଧ ଅଧା ପଡ଼ନ୍ତି । ସେମାନଙ୍କର ମନସ୍କାମନା ପୂରଣ କରିବା ପାଇଁ ଦେବୀଙ୍କ ପାଖରେ ପ୍ରାର୍ଥନା କରି । ସେମାନଙ୍କର ମନସ୍କାମନା ସବୁ ପୂରଣ ହୋଇଛି କି ନାହିଁ ଜାଣିପାରି ନାହିଁ ବା ଜାଣିବା ବୟସ ହୋଇ ନ ଥିଲା ।

କିନ୍ତୁ ସମଲାଇ ମନ୍ଦିରରେ ଜଣେ ଯୁବକକୁ ଆପଣା ଜିଭ କାଟି ପଡ଼ିଥିବା ଦେଖିଛି । ସମଲାଇ ହେଉଛନ୍ତି ସମ୍ବଲପୁରର ଅଧିଷ୍ଠାତ୍ରୀ ପ୍ରତ୍ୟକ୍ଷ ଦେବୀ । ତାଙ୍କର ପଛପାଖ ହିଁ ଦୃଶ୍ୟମାନ କାରଣ ତାଙ୍କ ଆଗରେ ଯିଏ ଠିଆ ହେବ ସେ ଜଳି ପାଉଁଶ ହୋଇଯିବ । ଏହିପରି କାହାଣୀ ପ୍ରଚଳିତ ଏବଂ ଭକ୍ତି ସହିତ ଆତଙ୍କ ସୃଷ୍ଟି କରେ । ସେଇ ପାଖରେ ଏକ ଗହ୍ବର ଥିଲା । ସେଇ ବାଟ ଦେଇ ସମ୍ବଲପୁର ରାଜନବରରୁ ରାଣୀମାନେ ଆସୁଥିଲେ ସମଲାଇ ଦର୍ଶନ ପାଇଁ ।

ମୁଁ ଦେଖିଲାବେଳକୁ ସେ ସୁଡ଼ଙ୍ଗ ରାସ୍ତା ଅଗମ୍ୟ । ଏହି ସୁଡ଼ଙ୍ଗକୁ ପ୍ରତ୍ନତତ୍ତ୍ୱ ବିଭାଗ କାହିଁକି ଖନନ କଲେ ନାହିଁ ତାହା କହି ପାରିବି ନାହିଁ । ମୋ ମତରେ ଏହା କରାଯିବା ଉଚିତ ଥିଲା । ବାରବାଟୀ ଦୁର୍ଗଠାରୁ ଆରମ୍ଭ କରି ବୁଦ୍ଧଖୋଲ ପର୍ଯ୍ୟନ୍ତ କୌଣସି ସ୍ଥାନରେ ପ୍ରତ୍ନତାତ୍ତ୍ୱିକ ବିଭାଗ ଦୃଷ୍ଟି ଦେଇ ନାହାନ୍ତି । ଏହାର ଅନ୍ୟତମ କାରଣ ହେଉଛି ଓଡ଼ିଶା ସରକାରଙ୍କର ଏହି ଦିଗପ୍ରତି ଚରମ ଉଦାସୀନତା । ଏହା ନ ହେଲେ ଆଠୋଟି ଅସ୍ଥାୟୀ ଘର ପାଇଁ (ଯାହା ପୁଣି ବହୁକାଳରୁ ବସବାସ ଯୋଗ୍ୟ ନୁହେଁ ବୋଲି ଘୋଷିତ ହୋଇସାରିଛି) ବାରବାଟୀ ଦୁର୍ଗ ଖନନ ଅସଂପୂର୍ଣ୍ଣ ରହିଥାଆନ୍ତା ? ଆମେ ଆପଣାକୁ ସଂସ୍କୃତି ସମ୍ପନ୍ନ ବୋଲି ମନେକରୁ । ଆମର ଇତିହାସ ଉପରେ ଡିଣ୍ଡିମ ପିଟୁ କିନ୍ତୁ କାମରେ କ'ଣ କରୁ ?

ପଶ୍ଚିମ ଓଡ଼ିଶାକୁ ନେଇ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ପାଇଁ ଦାବି ହୋଇ ଆସିଲା ବହୁ ବର୍ଷ ଧରି । ଆପଣାକୁ ଅବହେଳିତ ମନେ କରିବାର ଦାବି ସେମାନଙ୍କର ଯଥାର୍ଥ ଅନେକ ଦୃଷ୍ଟିରୁ । କିନ୍ତୁ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଗଢ଼ା ହେଉଣୁ ନ ହେଉଣୁ ଖଇଚିଆ ଧରିଲାଣି । ଚେୟାରମ୍ୟାନ ପଦବୀ ପାଇଁ ଲଢ଼େଇ ପୁଣି ଏହାକୁ ପୁନର୍ଗଠନ କରିବା ପାଇଁ ଦାବି ଆରମ୍ଭ ହୋଇଛି । ମୂଳରୁ ମାଇପ ନାହିଁ ନା ପୁଅ ନାମ...... ।

ଏଥିରେ ବି କିଛିଲୋକ ସନ୍ତୁଷ୍ଟ ହେଲେ ନାହିଁ । ସେମାନଙ୍କ ଇଗୋ (Ego) ତୃପ୍ତ ହେଲା ନାହିଁ । ବର୍ତ୍ତମାନ ସେମାନେ ଦାବି କରିବା ଆରମ୍ଭ କରିଛନ୍ତି କୋଶଳ ରାଜ୍ୟ । କିନ୍ତୁ ଏହା କ'ଣ ସମସ୍ୟାର ସମାଧାନ କରିବ ନା ସମସ୍ୟାକୁ ଅଧିକ ଜଟିଳ କରିବ ? ପଶ୍ଚିମ ଓଡ଼ିଶାର ଜଣେ ବ୍ୟକ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ସେମାନଙ୍କ ଭିତରୁ ଅନେକ ବେଶ୍ ପ୍ରତିପତ୍ତିଶାଳୀ ଏବଂ ଦକ୍ଷ ମନ୍ତ୍ରୀ ବି ଥିଲେ । କିନ୍ତୁ ସେମାନେ କ'ଣ କଲେ ନିଜ ଅଞ୍ଚଳ ପାଇଁ ? ତାହାର କୈଫିୟତ ବି ଦେବାକୁ ପଡ଼ିବ ନା ନାହିଁ ? ଏବଂ ଗୁର୍ଖାଲ୍ୟାଣ୍ଡର ଅଭିଜ୍ଞତା ବି ଆମକୁ କ'ଣ ଶିକ୍ଷା ଦେଲା ? ଗୋଟିଏ ପଟରେ ଜ୍ୟୋତି ବସୁଙ୍କ ସରକାର ଇଚ୍ଛାରେ ବା ଅନିଚ୍ଛାରେ ହେଉ ସେମାନଙ୍କର

Digitized by srujan ka@gmail.com

ଯାହା ପ୍ରାପ୍ୟ ତାହା ଦେଲେ, ଅନ୍ୟ ପଟରେ କେନ୍ଦ୍ର ସରକାରଙ୍କର ତାହା ଲାଭ କଲା ଅନୁଗ୍ରହ । କିନ୍ତୁ ଗୁର୍ଖାମାନଙ୍କର କ'ଣ ଅବସ୍ଥାର କିଛି ପରିବର୍ତ୍ତନ ଘଟିଲା କି ?

ସ୍ୱାଧୀନତା ସଂଗ୍ରାମ କାଳରେ କବିଙ୍କର ଆପ୍ତବାଣୀ–

ଧଳା ବଦଳରେ କଳା ହେଲେ ଚୋକ
ମେଣ୍ଟିବ କି କୋଟି ଗରିବଙ୍କ ଦୁଃଖ
ହେରିବା ସାର ହେଲା ?

ଭାଷା ଭିତ୍ତିରେ ରାଜ୍ୟ ଗଠନ ଏକ ଗୃହୀତ ଜାତୀୟ ନୀତି । ଏହା ସତ୍ତ୍ୱେ ଷଢ଼େଇକଳା ଖରସୁଆଁ ସମେତ ବହୁ ଓଡ଼ିଆ ଭାଷାଭାଷୀ ଉପାନ୍ତ ଅଂଚଳ ଓଡ଼ିଶାକୁ ଫେରିଲା ନାହିଁ । କିନ୍ତୁ ଜାତି, ସମ୍ପ୍ରଦାୟ ଭିତ୍ତିରେ ରାଜ୍ୟଗଠନ ପାଇଁ କେବେ ଜାତୀୟ ନୀତି ଆଲୋଚିତ ହୋଇଛି ନା ସେ ଉପରେ ଜନମତ ଲୋଡ଼ା ଯାଇଛି ? ଏବଂ ଭାରତବର୍ଷ କେତେ ଖଣ୍ଡରେ ବିଭକ୍ତ ହେବାରେ ସମସ୍ୟା ତୁଟିବ ?

ସେ ସଂପର୍କରେ ଏକ ଜାତୀୟ ବିତର୍କ ହେବା ଉଚିତ । କାରଣ ତିନୋଟି ନୂଆ ରାଜ୍ୟ ହେଲା ପରେ ସମସ୍ୟା ତୁଟି ନାହିଁ । ଆଉରି ନୂଆ ରାଜ୍ୟ ପାଇଁ ଦାବି ଉଠିଲାଣି । ମୋ ମତରେ ଏ ସଂପର୍କରେ ଗୋଟାଏ ସୀମାରେଖା ଟପିଯିବା ଉଚିତ । କାରଣ ଯଦି କୋଶଳ ରାଜ୍ୟ କଥା ଉଠିବ, ତା'ହେଲେ କେଉଁଝର, ମୟୂରଭଂଜ, ସୁନ୍ଦରଗଡ଼ ପ୍ରଭୃତି ଜିଲ୍ଲା ଝାଡ଼ଖଣ୍ଡ ରାଜ୍ୟରେ ଅନ୍ତର୍ଭୁକ୍ତ ହେବନାହିଁ କାହିଁକି ?

ସମ୍ବଲପୁର ଛାଡ଼ିଲାବେଳକୁ ହୀରାକୁଦ ବନ୍ଧ ନିର୍ମାଣ ଏବଂ ତା' ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠିବାକୁ ଆରମ୍ଭ କରିଥିଲା । ତାହା ପରେ ରାଜନୈତିକ ରୂପ ଧାରଣ କଲା ଏବଂ ତାହାକୁ ଭିତ୍ତିକରି ଦଳ ସୃଷ୍ଟି ହେଲା । ଏହା କେତେଦିନ ତିଷ୍ଠି ରହିଲା ସେ ସ୍ୱତନ୍ତ୍ର କଥା ।

ଦେଶର ବିକାଶରେ ସମାନତା ସୃଷ୍ଟି କରିବା ପାଇଁ ଉଦ୍ୟମ ବ୍ୟାହତ ହେବା ହେତୁ, ଅନୁନ୍ନତ ଅଂଚଳକୁ ଅନ୍ୟ ରାଜ୍ୟମାନଙ୍କ ସହିତ ସମତୁଲ ହେବାପାଇଁ ଉଦ୍ୟମ ନ ହେବା ଯୋଗୁଁ ଆଞ୍ଚଳିକବାଦ ମୁଣ୍ଡ ଟେକିଲା, ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ତା'ର କ'ଣ ସମାଧାନ ହୋଇଯାଇ ପାରିବ ଖାଲି ନୂଆ ରାଜ୍ୟ ଗଠନ କଲେ ?

ସମ୍ବଲପୁରରୁ ବିଦାୟ ନେଲାବେଳେ ଏଇ ପ୍ରଶ୍ନ ଉଙ୍କି ମାରିଥିଲା । ତାହା ମୋତେ ପରବର୍ତ୍ତୀ କାଳରେ ଗଭୀର ବ୍ୟଥିତ କରିଛି କାରଣ ସମ୍ବଲପୁର, ଗଂଜାମ ଜିଲ୍ଲାରେ ମୁଁ ବଢ଼ିଛି ଏବଂ ଏଇ ଅଂଚଳ ସହିତ ସମଗ୍ର ଓଡ଼ିଶା ମୋର ଘର ପାଲଟିଛି ।



Digitized by srujan ka@gmail.com



ନିଖିଳ ଉତ୍କଳ ଛାତ୍ର ସଂଘର କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କ ଗହଣରେ ଲେଖକ ।

(ବାମରୁ ଦକ୍ଷିଣକୁ) ପ୍ରଥମ ଧାଡ଼ି– ଶ୍ରୀମତୀ ନନ୍ଦିନୀ ଶତପଥୀ, ଗିରିଜା ଭୂଷଣ ପଟ୍ଟନାୟକ, ଗାନ୍ଧିକ ଅଖିଳ ମୋହନ ପଟ୍ଟନାୟକ, ଓ.ପି. ସଦରବାଲା, ଶୈଳବାଳା ପଟ୍ଟନାୟକ, ଆଡଭୋକେଟ, ବ୍ରଜବନ୍ଧୁ ମିଶ୍ର, ପ୍ରବୀର ପାଲିତ, ଆଡ଼ଭୋକେଟ ।

ଦ୍ୱିତୀୟ ଧାଡ଼ି– ଅନାଦି ମହାନ୍ତି, ବିମଳ ମୁଖର୍ଜୀ, ଆଡ଼ଭୋକେଟ, ନୀଳକଣ୍ଠ ଦାସ, ଆଡ଼ଭୋକେଟ, ଶିବାଜୀ ପଟ୍ଟନାୟକ, (ଜଣାନାହିଁ) ରାମକୃଷ୍ଣ ବେହେରା, ସାମ୍ବାଦିକ, (ଜଣାନାହିଁ) ରାମଚନ୍ଦ୍ର ବକ୍ସିପାତ୍ର, ଆଡ଼ଭୋକେଟ ।

ତୃତୀୟ ଧାଡ଼ି– ଗୋକୁଳାନନ୍ଦ ମହାପାତ୍ର, ବିଶ୍ୱମ୍ଭର ସାମନ୍ତ, ଯୋଗେନ୍ଦ୍ର କୁମାର ଦାସ, କାଳୀଚରଣ ପଣ୍ଡା, ଶ୍ୟାମାନନ୍ଦ ଦାସ, ଡାକ୍ତର ଭଗବାନ ମିଶ୍ର ।

Digitized by srujan ka@gmail.com



ମାଆ ଚନ୍ଦ୍ରମଣି ପଟ୍ଟନାୟକଙ୍କ ସହ ଗିରିଜା ଭୂଷଣ ପଟ୍ଟନାୟକ,
ସାନ ଭାଇ ବିଭୂତି ଭୂଷଣ ପଟ୍ଟନାୟକ ଓ ମାମୁଁ ।



ଲେଖକଙ୍କର ବାପା ଶଶୀଭୂଷଣ ପଟ୍ଟନାୟକଙ୍କ କୋଳରେ
ତାଙ୍କ ନାତୁଣୀ ପ୍ରଜ୍ଞା ।

Digitized by srujan ka@gmail.com



ଶ୍ରୀ ଶିଶିର କୃଷ୍ଣ ପଟ୍ଟନାୟକଙ୍କ ଦାଦା ଶ୍ରୀ ବିରଞ୍ଚି ନାରାୟଣ ପଟ୍ଟନାୟକ ।



ଶ୍ରୀ ଶିଶିର କୃଷ୍ଣ ପଟ୍ଟନାୟକଙ୍କ ଭାଇ ଶ୍ରୀ ବିଭୂତି କୃଷ୍ଣ ପଟ୍ଟନାୟକ ।

Digitized by srujan ka@gmail.com



ଝିଅ ପ୍ରଜ୍ଞାର ବିବାହ ବେଦୀରେ ବାପା ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ
ଓ ମାଆ ଅଧାପିକା ଡଃ କମଳ କୁମାରୀ ପଟ୍ଟନାୟକ ।



ସାନ ପୁଅ ବ୍ୟାପ୍ତି, ଝିଅ ପ୍ରଜ୍ଞା ସହିତ ଲେଖକ ଓ ତାଙ୍କର ପତ୍ନୀ ।

Digitized by srujan ka@gmail.com



ପ୍ରସିଦ୍ଧ ଐତିହାସିକ ଏବଂ ଭାରତବିଦ୍ ପ୍ରଫେସର ଏ. ଏଲ୍. ବାସମଙ୍କ ସହିତ
ଡକ୍ଟର ହରିଶ୍ଚନ୍ଦ୍ର ଦାସ, ଲେଖକ ଏବଂ ବହିରାଗତ ଗବେଷକଗଣ ।




ଭାରତର ରାଷ୍ଟ୍ରପତି ଶ୍ରୀ ଭେଙ୍କଟରମଣ, ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ, କଟକ୍ ନଗର
ସହସ୍ରବାର୍ଷିକୀ କମିଟିର ସଭାପତି ଜଷ୍ଟିସ ହରିହର ମହାପାତ୍ରଙ୍କ ସହିତ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ।

Digitized by srujan ka@gmail.com



ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ, ଶ୍ରୀ ଅମୀୟ ଭୂଷଣ ତ୍ରିପାଠୀ,
ଶ୍ରୀ ଟି.ଏନ୍. ଶେଷାନ ଓ ଶ୍ରୀ ସହଦେବ ସାହୁ ।




ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ଶ୍ରୀ ଦାମୋଦର ରାଉତ, ସୟଦ ମୁସ୍ତାଫିଜ ଅହମ୍ମଦଙ୍କ ସହ
ଲେଖକ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ।

Digitized by srujan ka@gmail.com



ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ଓ ପତ୍ନୀ କମଳ କୁମାରୀ ପଟ୍ଟନାୟକ ।



ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ, ପତ୍ନୀ କମଳ କୁମାରୀ ପଟ୍ଟନାୟକଙ୍କ ସହ ଦୁଇ ପୁଅ ଏବଂ ଝିଅ ।

Digitized by srujan ka@gmail.com

ଶ୍ରୀ ଗିରିଜା ଭୂଷଣ ପଟନାୟକ, ପତ୍ନୀ ଅଧାପିକା ଡଃ କମଳ କୁମାରୀ ପଟନାୟକ ଓ ପରିବାର ବର୍ଗ ।



ବିବାହ ମଣ୍ଡପରେ ପୁଅ ଓ ବୋହୂଙ୍କ ସହ ଲେଖକଙ୍କ ବନ୍ଧୁ ଓ ପରିବାରବର୍ଗ ।

Digitized by srujan ka@gmail.com



ଭାରତର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସହିତ ଲେଖକ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ରେଭେନ୍ସା କଲେଜରେ, (୧୯୫୭) ।

(ବାମରୁ ଦକ୍ଷିଣକୁ) ଗିରିଜା ଭୂଷଣ ପଟ୍ଟନାୟକ, ପଣ୍ଡିତ ନେହେରୁ, ତତ୍‌କାଳୀନ ଓଡ଼ିଶାର ରାଜ୍ୟପାଳ ଭୀମସେନ ସାଚାର, ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ।



ଶ୍ରୀ ନବକୃଷ୍ଣ ଚୌଧୁରୀ ଓ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥଙ୍କ ସହିତ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ଏବଂ ଅନ୍ୟମାନେ ।

Digitized by srujan ka@gmail.com



ଏକ ସ୍ମରଣୀୟ ଅବସରରେ ଶ୍ରୀ ଗରିଜା ଭୂଷଣ ପଟ୍ଟନାୟକ
ଏବଂ ପତ୍ନୀ ଅଧ୍ୟାପିକା ଡଃ କମଳ କୁମାରୀ ପଟ୍ଟନାୟକ



ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକଙ୍କ ସହ
ପତ୍ନୀ ଅଧ୍ୟାପିକା ଡଃ କମଳ କୁମାରୀ ପଟ୍ଟନାୟକ ।

Digitized by srujan ka@gmail.com



ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଡକ୍ଟର ବୈଦ୍ୟନାଥ ମିଶ୍ର
ଓ ଲେଖକ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ।



ଡକ୍ଟର ହରିଶ୍ଚନ୍ଦ୍ର ଦାସ, ଜଷ୍ଟିସ ହରିହର ମହାପାତ୍ର, ଲର୍ଡ଼ ଟେମ୍ପଲମ୍ୟାନ, ଡକ୍ଟର ସିଙ୍ଘଭି,
ଜଷ୍ଟିସ ରଙ୍ଗନାଥ ମିଶ୍ରଙ୍କ ସହିତ ଲେଖକ ଗିରିଜା ଭୂଷଣ ପଟ୍ଟନାୟକ ।

Digitized by srujan ka@gmail.com



ଶ୍ରୀ ସନ୍ତୋଷ ରାୟଚୌଧୁରୀ, ଶ୍ରୀ ଗଣେଶ ପ୍ରସାଦ ଦାସ, ଶ୍ରୀ ହୃଦୟ ନାଥ ଦାସ,
ଶ୍ରୀଯୁକ୍ତ ବିଶ୍ୱନାଥ ପଣ୍ଡିତ ଏବଂ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ।



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ସହ ଲେଖକ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ।

Digitized by srujan ka@gmail.com



ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଲେଖକ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ।



ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହିତ ଲେଖକ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ।

Digitized by srujan ka@gmail.com



ପୁଅ ଅଭିଜିତ୍ ଓ ବୋହୂ ସୁଚରିତାଙ୍କ ଗହଣରେ ବାପା ଗିରିଜା ଭୂଷଣ ପଟ୍ଟନାୟକ
ଓ ମାଆ ଶ୍ରୀମତୀ କମଳ କୁମାରୀ ପଟ୍ଟନାୟକ ।



ଲେଖକଙ୍କ ଝିଅ ପ୍ରଜ୍ଞା ଓ ଜ୍ୱାଇଁ ବିଶ୍ୱଜିତ୍ ।

Digitized by srujan ka@gmail.com